# ଆଧୁନିକ ୟୁରୋପ ଇତିହାସ

ପ୍ରଫେସର ଗଜେନ୍ଦ୍ର କୁମାର ଦାସ



ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା



**HISTORY OF MODERN EUROPE**

For Degree level (Pass & Hons.) Students

Published under the centrally sponsored scheme of production of books and literature in Regional Languages at the University level by the Govt. of India in the Ministry of Education & Social Welfare ( Department of Education ), New Delhi.

*Written by :*

Prof. R. K. Das,
Head of the P. G. Department of History.
Gangadhar Mehera College, Sambalpur (presently retired)

*Reviewed by :*

Dr. B. C. Ray,
Prof. & Head of the Department of History,
Berhampur University, Berhampur ( presently retired )

*Language Scrutinised by :*

Smt. H. Mohapatra,
Lecturer in Oriya,
B. J. B. Evening College, Bhubaneswar.

*Published by :*

THE ORISSA STATE BUREAU OF
TEXT BOOK PREPARATION AND PRODUCTION,
BHUBANESWAR.

First Edition : 1982/2100 Copies



Publication No : 344

Paper used for printing of this book was made available by the Government of Orissa at concessional rate.

Printed at :

M/S Grantha Prakasini.
Sutahat, Cuttack
( From Page 1 to 104 )
M/S Panchasakha Prakasan
Sutahat, Cuttack
( From page 105 to 546 & inner )

**Price : 22-50**

# ଭୂମିକା

ଉଚ୍ଚଶିକ୍ଷା ସଂପ୍ରସାରଣ ଦିଗରେ ମାତୃଭାଷାକୁ ମାଧ୍ୟମ ରୂପେ ଗ୍ରହଣ କରିବାପାଇଁ ଶିକ୍ଷାବିତ୍‌ମାନେ ଏକ ପ୍ରଗାଢ଼କାଙ୍କ୍ଷା ନିଷ୍ପତ୍ତି ନେବା ଫଳରେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ରଚନା ଓ ପ୍ରକାଶନ ଦିଗରେ ନୂତନ ପ୍ରେରଣା ମିଳିଲା । ଓଡ଼ିଶାର ବିଶ୍ୱବିଦ୍ୟାଳୟ-ମାନଙ୍କରେ ଉପାଧି ସ୍ତରରେ ଇଉରୋପ ଇତିହାସର ପ୍ରଚଳନ ଥିବା ହେତୁ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନେ ଓଡ଼ିଆ ଭାଷାରେ ଲିଖିତ ଇଉରୋପ ଇତିହାସର ଅଭାବ ଅନୁଭବ କଲେ । ସେହି ଅଭାବ ଦୂର କରିବାପାଇଁ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଅନୁକୂଳ ପଦକ୍ଷେପ ନେଇ ଲେଖକଙ୍କୁ ଯେଉଁ ସୁଯୋଗ ପ୍ରଦାନ କଲେ, ତାହାର ଫଳ ସ୍ୱରୂପ ଏହି ପୁସ୍ତକ ରଚିତ ହେଲା । ଓଡ଼ିଆ ଭାଷାରେ ପୁସ୍ତକ ଲେଖିବା ଏହା ମୋର ପ୍ରଥମ ଉଦ୍ୟମ । ଦୀର୍ଘ ତ୍ରିଂଶ ବର୍ଷ ଇତିହାସ ଅଧ୍ୟାପନା କ୍ଷେତ୍ରରେ ଇଂରାଜୀ ଭାଷା ବ୍ୟବହାର କରିଥିବାରୁ ଓଡ଼ିଆ ଭାଷାରେ ବିଷୟବସ୍ତୁ ଏବଂ ଭାବର ଅଭିବ୍ୟକ୍ତି ଆୟାସକର ହେବାର ମୁଁ ଅନୁଭବ କରିଛି । ତଥାପି ପୁସ୍ତକଟିର ମାନ ଏବଂ ଅଧ୍ୟାପକ ଭାବରେ ମୋର ଅଭିଜ୍ଞତା, ଏହି ଦୁଇ କଥାକୁ ଲକ୍ଷ୍ୟ ରଖି ମୁଁ ଇଉରୋପ ଇତିହାସ ସଙ୍କଳନରେ ଆଗଭର ହୋଇଛି । ଗଙ୍ଗାଧର ମେହେର କଲେଜର ପ୍ରଶାସନିକ ଦାୟିତ୍ୱ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସହ ପ୍ରତ୍ୟକ୍ଷ ସଂପର୍କ ଦୃଷ୍ଟିରୁ ଏହି ପୁସ୍ତକ ରଚନାରେ ମୁଁ ବିଶେଷ ସମୟ ବିନିଯୋଗ କରି ନପାରିବାରୁ ଏହାର ପ୍ରକାଶନରେ ବହୁ ବିଳମ୍ବ ଘଟିଲା । ସେଥିପାଇଁ ମୁଁ ଦୁଃଖିତ । ଏହି ଗୁରୁଦାୟିତ୍ୱ ସମ୍ପନ୍ନରେ ମୋର ସହଧର୍ମିଣୀ ଶ୍ରୀମତୀ ବିଷ୍ଣୁପ୍ରିୟାଙ୍କର ନିରବଚ୍ଛିନ୍ନ ପ୍ରେରଣା ମୋତେ ଅଶେଷ ସାହାଯ୍ୟ କରିଛି । ତାଙ୍କ ଛଡ଼ା ମୋର ପ୍ରିୟ ଛାତ୍ର ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ଶ୍ରୀଯୁକ୍ତ ପ୍ରବୋଧ କୁମାର ମିଶ୍ର ମଧ୍ୟ ମୋ କାମରେ ଅନେକ ଭାବରେ ସହଯୋଗ କରିଅଛନ୍ତି । ସେଥିପାଇଁ ଉଭୟଙ୍କ ପ୍ରତି ମୁଁ କୃତଜ୍ଞ ।

ଏହି ପୁସ୍ତକରେ ବି. ଏ. ପାସ୍ ଏବଂ ଅନର୍ସ ଛାତ୍ରଙ୍କ ଆବଶ୍ୟକତା ଦୃଷ୍ଟିରୁ ଉପାଦାନମାନ ସନ୍ନିବିଷ୍ଟ ହୋଇଛି । ଛାତ୍ର ତଥା ଅଧ୍ୟାପକମାନଙ୍କୁ ଇଉରୋପ ଇତିହାସ ଅଧ୍ୟୟନ ଓ ଅଧ୍ୟାପନାରେ ପୁସ୍ତକଟି ସହାୟକ ହେଲେ ମୁଁ ମୋର ଶ୍ରମର ସାର୍ଥକତା ଉପଲବ୍ଧି କରିବି । କୌଣସି ତ୍ରୁଟି କିମ୍ବା ଭ୍ରମ ସଂଶୋଧନ ପାଇଁ ପାଠକମାନେ ମୋତେ ଜଣାଇଲେ ପରବର୍ତ୍ତୀ ସଂସ୍କରଣରେ ସେଥିପ୍ରତି ଦୃଷ୍ଟି ଦିଆଯିବ ।

ଏହି ପୁସ୍ତକ ଲେଖିବା ପାଇଁ ସୁଯୋଗ ଦେଇଥିବାରୁ ମୁଁ 'ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା' ନିକଟରେ ବିଶେଷ କୃତଜ୍ଞ ।

ଲେଖକ

# ସୂଚୀପତ୍ର

---

# ପ୍ରଥମ ଅଧ୍ୟାୟ

## ଫରାସୀ ବିପ୍ଳବର ପ୍ରାକ୍‌କାଳ ଓ ଇଉରୋପର ତତ୍‌କାଳୀନ ପରିସ୍ଥିତି

ଫରାସୀ ରାଷ୍ଟ୍ରବିପ୍ଳବ ପୂର୍ବରୁ ଇଉରୋପୀୟ ଦେଶମାନଙ୍କରେ ପୁରାତନ ଶାସନ ପଦ୍ଧତି (old regime) ପ୍ରଚଳିତ ଥିଲା । ପୁରାତନ ଶାସନ ପଦ୍ଧତି କହିଲେ ପୁରାତନ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାକୁ ବୁଝାଏ । ଇଉରୋପର ଯେକୌଣସି ଦେଶରେ ରାଜତନ୍ତ୍ର ଶାସନ ଥାଉ କି ସମ୍ଭ୍ରାନ୍ତବଂଶୀୟ ଶାସନ ଥାଉ କି ସାଧାରଣତନ୍ତ୍ର ଶାସନ ଥାଉ, ଶାସନକ୍ଷମତା କିନ୍ତୁ ସାମାନ୍ୟ କେତେକ ଲୋକଙ୍କ ହାତରେ ନ୍ୟସ୍ତ ଥିଲା ଏବଂ ପ୍ରତ୍ୟେକ ଦେଶରେ ଶାସନକଳ କେବଳ କେତେକ ଲୋକଙ୍କ ଉପକାର ପାଇଁ ବ୍ୟବହୃତ ହେଉଥିଲା ।

ସାଧାରଣତଃ ଇଉରୋପର ସାମାଜିକ ବିଭାଗ ଠିକ୍ ମଧ୍ୟଯୁଗର ସାମାଜିକ ବିଭାଗ ପରି ଉଚ୍ଚ ନୀଚ ଭେଦଭାବ ଉପରେ ପର୍ଯ୍ୟବସିତ ଥିଲା । ଅଧିକାଂଶ ଦେଶମାନଙ୍କରେ ଧର୍ମଯାଜକଗୋଷ୍ଠୀ ସମାଜର ଶୀର୍ଷ ସ୍ତରରେ ଥିଲେ । ତାଙ୍କ ପରେ ସାମନ୍ତଗୋଷ୍ଠୀଙ୍କର ସ୍ଥାନ ନିର୍ଣ୍ଣୀତ ହୋଇଥିଲା । ଏମାନଙ୍କ ବ୍ୟତୀତ ସମାଜର ଅନ୍ୟ ଲୋକେ ତୃତୀୟ ଶ୍ରେଣୀ ସର୍ବନିମ୍ନ ସ୍ତରର ବ୍ୟକ୍ତି ରୂପେ ଗଣ୍ୟ ହେଉଥିଲେ । କେବଳ ସ୍ୱୀଡ଼େନ ଦେଶର ସମାଜ ଏହିଭଳି ଶ୍ରେଣୀ ବିଭାଗର ବହିର୍ଭୂତ ଥିଲା । ସ୍ୱୀଡ଼େନରେ ମଧ୍ୟବିତ୍ତଗୋଷ୍ଠୀର ଲୋକମାନଙ୍କୁ ତୃତୀୟ ଶ୍ରେଣୀର ଓ କୃଷକମାନଙ୍କୁ ଚତୁର୍ଥ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇଥିଲା । ଉଚ୍ଚଶ୍ରେଣୀର ଧର୍ମଯାଜକମାନେ ଓ ଅଧିକାଂଶ ସାମନ୍ତଗୋଷ୍ଠୀର ଲୋକେ ଜମିଦାର (feudal lords) ହୋଇଥିଲେ ।

ପ୍ରତ୍ୟେକ ଦେଶରେ ସମାଜ ସାଧାରଣତଃ ଦୁଇଭାଗରେ ବିଭକ୍ତ ହୋଇଥିଲା — ସୁବିଧା ଉପଭୋଗୀ ଶ୍ରେଣୀ (Privileged class) ଏବଂ ସୁବିଧା ଉପଭୋଗରୁ ବଞ୍ଚିତ ଶ୍ରେଣୀ (unprivileged class) । ଧର୍ମଯାଜକଗୋଷ୍ଠୀ ଓ ସାମନ୍ତଗୋଷ୍ଠୀର ଲୋକେ ଉଚ୍ଚଶ୍ରେଣୀର ବୋଲି ବିବେଚିତ ହେଉଥିଲେ ଓ ସେମାନଙ୍କୁ ସୁବିଧା ଉପଭୋଗୀ ଶ୍ରେଣୀରେ

ମଧ୍ୟବିତ୍ତଶ୍ରେଣୀ ବିଦ୍ୟା ଓ ସମ୍ପଦର ଅଧିକାରୀ ହେଲେ ମଧ୍ୟ ସମାଜରେ ସେମାନଙ୍କର ସ୍ଥାନ ନ ଥିବାରୁ ଗଭୀର ମାନସିକ ଅଶାନ୍ତିରେ କାଳଯାପନ କରୁଥିଲେ ।

ଇଉରୋପର ବିଭିନ୍ନ ସ୍ଥାନରେ କ୍ଷେତ ମଜଦୁର ଓ ଅନ୍ୟ ମଜଦୁରମାନେ ପଇସା ଅଭାବରୁ ବଡ଼ ଦୁଃଖରେ ଦିନ କଟାଉଥିଲେ । ସେମାନଙ୍କର ଅର୍ଥନୈତିକ ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ସେମାନଙ୍କର ଆୟର ପ୍ରଧାନ ଅଂଶଟି ସରକାରଙ୍କୁ କର ଦେବାରେ, ଜମିଦାରଙ୍କୁ ଖଜଣା ଦେବାରେ ଓ ଗିର୍ଜାକୁ ଗିର୍ଜାକର ବା ଟିଥ୍ ଦେବାରେ ବ୍ୟୟ ହେଉଥିଲା । ଯାହା କିଛି ବଞ୍ଚୁଥିଲା ସେଥିରେ ସେମାନେ କୌଣସି ପ୍ରକାରେ ଗୁଜୁରାଣ ମେଣ୍ଟାଉଥିଲେ । ଶତ ଚେଷ୍ଟା କରି ମଧ୍ୟ ନିରଙ୍କୁଶ ପ୍ରବୁଦ୍ଧ ଶାସକମାନେ (benevolent despots) ସେମାନଙ୍କ ଭାଗ୍ୟ ପରିବର୍ତ୍ତନ କରିବାକୁ ସକ୍ଷମ ହୋଇନଥିଲେ ।

କେନ୍ଦ୍ର ଓ ପୂର୍ବ ଇଉରୋପରେ, ଜର୍ମାନୀର ଏକ ବଡ଼ ଭୂଖଣ୍ଡରେ, ପୋଲାଣ୍ଡ ଓ ରୁଷିଆରେ ବାସକରୁଥିବା କୃଷକମାନଙ୍କୁ ଭୂମିଦାସ (serf) କୁହାଯାଉଥିଲା । କାରଣ ସେମାନଙ୍କର କିଛି ସ୍ୱତନ୍ତ୍ରତା ନ ଥିଲା ଓ ସେମାନେ ଜମି ସହିତ ବନ୍ଧାହୋଇ ରହୁଥିଲେ । ଯଦି ଜଣେ ଭୂମିଦାସ ଦ୍ୱାରା ଚାଷ ହେଉଥିବା ଖଣ୍ଡିଏ ଜମି ବିକି କରିଦିଆଯାଉଥିଲା; ସେ ଜମି ସହିତ ସେ ଭୂମିଦାସ ମଧ୍ୟ ବିକି ହୋଇଯାଉଥିଲା । ସପ୍ତାହରେ ୩ ଦିନରୁ ୬ ଦିନଯାଏଁ ଜଣେ ଭୂମିଦାସକୁ ତାର ଜମିଦାର (lord) ଜମି ଚାଷ କରିବାକୁ ପଡ଼ୁଥିଲା । ଭୂମିଦାସ-ମାନେ ସେମାନଙ୍କର ଜମିଦାରମାନଙ୍କର ବିନା ଅନୁମତିରେ ବିବାହ କରିପାରୁନଥିଲେ କି ଜମିକୁ ହସ୍ତାନ୍ତରିତ କରିପାରୁନଥିଲେ । ଅଷ୍ଟ୍ରିଆର ସମ୍ରାଟ ଦ୍ୱିତୀୟ ଯୋସେଫଙ୍କୁ ହଙ୍ଗେରୀର ଜଣେ କୃଷକ ତାହାର ଅବସ୍ଥା ବିଷୟରେ ନିମ୍ନଲିଖିତ ମର୍ମରେ ଆବେଦନ କରିଥିଲା । ସେ ପ୍ରାର୍ଥନା କରିଥିଲା, "ହେ ମହାଦୟାଳୁ ସମ୍ରାଟ ! ମୋର ଜମିଦାରଙ୍କ ପାଇଁ ଚାରିଦିନ ବେଠି କରିବାରେ, ପଞ୍ଚମଦିନ ତାଙ୍କ ପାଇଁ ମାଛ ଧରିବାରେ, ଷଷ୍ଠଦିନ ତାଙ୍କ ସହିତ ଶିକାର କରିବାରେ ଓ ସପ୍ତମଦିନ ଭଗବାନଙ୍କ ଉପାସନାରେ କଟେ । ହେ ମହାଦୟାଳୁ ସମ୍ରାଟ ! ବିଚାର କରନ୍ତୁ କିପରି ମୁଁ ମୋର ଦେୟ ଏବଂ କରଗୁଡ଼ିକ ଦେବି ?"("Most merciful Emperor, petitioned one Hungerian peasant to Joseph II 'four days' forced labour for the Seigneur (feudal lord), the fifth day fishing for him, the sixth day hunting with him and the seventh belongs to God· Consider most merciful Emperor, how can I pay dues and taxes ?"

ଇଉରୋପର ବିଭିନ୍ନ ଦେଶରେ କାରିଗରମାନଙ୍କ ଅବସ୍ଥା ମଧ୍ୟ ସ୍ୱଚ୍ଛଳ ନ ଥିଲା । ସେମାନେ ମଧ୍ୟ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଜିନିଷପତ୍ର ନିଜ ଇଚ୍ଛାନୁସାରେ ବିକ୍ରୟ କରିବାର

ସ୍ୱାଧୀନତା ପାଇ ନ ଥିଲେ । ସେମାନଙ୍କର ସ୍ୱାଧୀନ କାରବାର ବାଣିଜ୍ୟ ସଙ୍ଘ (trade guild) ଦ୍ୱାରା ସଙ୍କୁଚିତ କରାଯାଇଥିଲା । ତେଣୁ ସେମାନେ ବାଣିଜ୍ୟ ସଂଘର ନୀତିକୁ ତୀବ୍ରଭାବରେ ସମାଲୋଚନା କରୁଥିଲେ ।

ଇଉରୋପର ରାଜନୀତି ଅତି ଜଘନ୍ୟସ୍ତରରେ ଥିଲା । ଶାସକମାନେ ଶକ୍ତିଶାଳୀ ଓ ସ୍ୱେଚ୍ଛାଚାରୀ ଥିଲେ । ପରସ୍ପର ପ୍ରତି ବ୍ୟବହାରରେ ସେମାନେ ଅସାଧୁତା ଓ ନୀତିହୀନତାର ପରିଚୟ ଦେଉଥିଲେ । ମଧ୍ୟଯୁଗରେ ଧର୍ମନୀତି ଓ ରାଜନୀତି ଇଉରୋପକୁ ଏକୀକରଣ କରିବାରେ ସାହାଯ୍ୟ କରିଥିଲା । ପୋପଙ୍କ ଆଧ୍ୟାତ୍ମିକ ଓ ସମ୍ରାଟଙ୍କର ପାର୍ଥିବ କର୍ତ୍ତୃତ୍ୱ ବଳରେ ଇଉରୋପ ଗୋଟିଏ ବଡ଼ ଖ୍ରୀଷ୍ଟଧର୍ମାବଲମ୍ବୀ ରାଜ୍ୟଗୋଷ୍ଠୀ (christendom)ରେ ପରିଣତ ହୋଇଥିଲା । ଧର୍ମସଂସ୍କାର ଓ ତ୍ରିଂଶତିବର୍ଷୀୟ ଯୁଦ୍ଧ ଏହି ଗୋଷ୍ଠୀର ଏକତାକୁ ନଷ୍ଟ କରିଦେଇଥିଲା । ଧର୍ମସଂସ୍କାର ଏ ଗୋଷ୍ଠୀର ଏକତାକୁ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ପୋପଙ୍କ ପ୍ରଭୁତ୍ୱକୁ ମଧ୍ୟ ଧ୍ୱଂସ କରିଦେଇଥିଲା । ତ୍ରିଂଶତିବର୍ଷୀୟ ଯୁଦ୍ଧ ମଧ୍ୟ ଏହି ଗୋଷ୍ଠୀର ଏକତା ଭାଙ୍ଗିବାରେ ସାହାଯ୍ୟ କରିବା ବ୍ୟତୀତ ସମ୍ରାଟଙ୍କ ପ୍ରଭୁତ୍ୱକୁ କ୍ଷୁଣ୍ଣ କରିଥିଲା । ତେଣୁ ଇଉରୋପୀୟ ଦେଶଗୁଡ଼ିକୁ ଏକତ୍ରିତ କରି ରଖିବାପାଇଁ କୌଣସି ସଂଯୋଜକ ବସ୍ତୁ ନ ଥିଲା । ଏହି ଖ୍ରୀଷ୍ଟଧର୍ମାବଲମ୍ବୀ ରାଜ୍ୟଗୋଷ୍ଠୀ ପ୍ରଭାବଶାଳୀ ଥିଲାବେଳେ, ରାଜବଂଶୀୟ ଅଧିକାର ଓ ସମ୍ପତ୍ତିକୁ ବିଶେଷ ସମ୍ମାନ ପ୍ରଦର୍ଶନ କରାଯାଉଥିଲା । କିନ୍ତୁ ତାହାର ଏକତା ଭାଙ୍ଗିଗଲାପରେ ଇଉରୋପୀୟ ଦେଶମାନଙ୍କ ମଧ୍ୟରେ ଦେଶ ଓ ବଜାର ଲାଭ ପାଇଁ ପ୍ରତିଦ୍ୱନ୍ଦ୍ୱିତା ଲାଗିଯାଇଥିଲା । ଇଉରୋପର ବିଭିନ୍ନ ଜାତିମାନଙ୍କ ମଧ୍ୟରେ ଗୁଣର ମର୍ଯ୍ୟାଦା ଆଉ ରହିଲା ନାହିଁ ଓ ଇଉରୋପର ଗୋଟିଏ ରାଜ୍ୟ ଅନ୍ୟ ଗୋଟିଏ ରାଜ୍ୟର ଦୁର୍ବଳତାର ସୁଯୋଗ ନେବାକୁ ଛାଡ଼ିଲା ନାହିଁ ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଯେଉଁ ଭାରସାମ୍ୟ ନୀତି (doctrine of Balance of power) ଯୁଦ୍ଧର ପ୍ରତିରୋଧ କରିପାରୁଥିଲା ଓ ଛୋଟ ଛୋଟ ରାଜ୍ୟ-ଗୁଡ଼ିକୁ ବଡ଼ ବଡ଼ ରାଜ୍ୟମାନଙ୍କର ଲୋଲୁପଦୃଷ୍ଟିରୁ ରକ୍ଷାକରିପାରୁଥିଲା । ଅଷ୍ଟାଦଶ ଶତାବ୍ଦୀରେ ସେ ନୀତିର ବିକୃତାର୍ଥ କରାଯାଇଥିଲା । ବଡ଼ ବଡ଼ ରାଜ୍ୟମାନଙ୍କୁ ଏ ନୀତି ରକ୍ଷା କରୁଥିଲାବେଳେ, ଛୋଟ ଛୋଟ ରାଜ୍ୟଗୁଡ଼ିକ ଏହାର ଶିକାର ହୋଇଥିଲେ । ପାରସ୍ପରିକ ବୁଝାମଣାଦ୍ୱାରା କେତେକ ବଡ଼ ବଡ଼ ରାଜ୍ୟ ମିଶି ଅନ୍ୟ ଏକ ରାଜ୍ୟର ଦୁର୍ବଳତା ଓ ଅବନତିର ସୁଯୋଗ ନେଇ ତାକୁ ଭାଗ ଭାଗ କରି ଅସଦୁପାୟରେ ନିଜ ନିଜ ମଧ୍ୟରେ ବାଣ୍ଟି ନେଇ ଭାରସାମ୍ୟ ରକ୍ଷାକରୁଥିଲେ । ପୋଲାଣ୍ଡ ଏ ନୀତିର ଶିକାର ହୋଇଥିଲା । ରୁଷିଆ, ପ୍ରୁସିଆ ଓ ଅଷ୍ଟ୍ରିଆ ଏହାର ଦୁର୍ବଳତାର ସୁଯୋଗ ନେଇ ଏହାକୁ ଆକ୍ରମଣ କରି ଏହାର କେତେକାଂଶ ଅଧିକାର କରିନେଇଥିଲେ ଓ ଅଧିକୃତ ଅଞ୍ଚଳକୁ ପରସ୍ପର ମଧ୍ୟରେ ବାଣ୍ଟିନେଇ ଭାରସାମ୍ୟ ରକ୍ଷାକରିଥିଲେ । ଏହାଛଡ଼ା ବଡ଼ ବଡ଼ ରାଜ୍ୟମାନଙ୍କର ପରିସର

ବିବାହବନ୍ଧନ କିମ୍ବା ରାଜ୍ୟଜୟ ଫଳରେ ବୃଦ୍ଧି ପାଇବାକୁ ଲାଗିଲା । ଏହିସବୁ ଉପାୟରେ ବୃଦ୍ଧିପ୍ରାପ୍ତ ରାଜ୍ୟର ସୀମା ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ବୋଲି ପରବର୍ତ୍ତୀ ରାଜାମାନେ ଦାବି କରିବାରେ ଲାଗିଲେ । ଅନେକ କ୍ଷେତ୍ରରେ ରାଜା ଯେଉଁ ଜାତିର ଲୋକମାନଙ୍କୁ ଶାସନ କରୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ରାଜାଙ୍କର ଭାଷାକୁ ନିଜର ଭାଷାବୋଲି ଗ୍ରହଣ କରିନେଇଥିଲେ ଓ ରାଜାଙ୍କ ସହିତ ଗୋଟିଏ ଜାତୀୟତା ବନ୍ଧନରେ ଆବଦ୍ଧ ରହିଥିଲେ ।

ସାଧାରଣତଃ ଗୋଟିଏ ରାଷ୍ଟ୍ର ମାତ୍ର ଗୋଟିଏ ଜାତିକୁ ଅନ୍ତର୍ଭୁକ୍ତ କରିବାକୁ ବାଧ୍ୟ ନ ଥିଲା । ମୁଖ୍ୟତଃ ସେହି ଅର୍ଥରେ ରାଷ୍ଟ୍ର ଜାତୀୟ ନ ହୋଇ ରାଜବଂଶୀୟ ହୋଇଥିଲା । ଉଦାହରଣ ସ୍ୱରୂପ ଅଷ୍ଟ୍ରିଆ ଥିଲା ଗୋଟିଏ ରାଷ୍ଟ୍ର; ଯାହାର ପ୍ରଧାନ ଅଂଶ ଜର୍ମାନ ହେଲେ ମଧ୍ୟ ତାହାର ସୀମା ଭିତରେ ବିଭିନ୍ନ ଜାତିର ଲୋକେ ବାସକରୁଥିଲେ ଏବଂ ହାବ୍‌ସବର୍ଗ ରାଜବଂଶ ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ଅଧିକାରବଳରେ ସେମାନଙ୍କୁ ସବୁ ଏକଶାସନାଧୀନ କରି ରଖିଥିଲେ । ତେଣୁ କୌଣସି ଯୁକ୍ତ ଜାତୀୟତା ନାମରେ ଘୋଷଣା କରାଯାଇ ନ ଥିଲା । ପ୍ରକୃତରେ କହିବାକୁ ଗଲେ ପୋଲାଣ୍ଡର ବିଭାଜନ ଜାତୀୟତା ନୀତିର ବିରୁଦ୍ଧାଚରଣ କରିଥିଲା ।

ଜଣେ ଶକ୍ତିଶାଳୀ ରାଜା ତାର ଦୁର୍ବଳ ପ୍ରତିବେଶୀ ରାଜ୍ୟର ସ୍ୱାଧୀନତାକୁ ଅପହରଣ କରିବାକୁ ଚାହିଁଲେ ସାଧାରଣତଃ ବଂଶଗତ ଅଧିକାର ବା ସନ୍ଧିସର୍ତ୍ତ ବଳରେ ତାହା କରୁଥିଲେ ବୋଲି ଛଳନା କରୁଥିଲେ । କିନ୍ତୁ ନିଃସନ୍ଦେହରେ ଏପରି କାର୍ଯ୍ୟକୁ ଆକ୍ରମଣାତ୍ମକ କାର୍ଯ୍ୟ ବୋଲି କୁହାଯାଇପାରେ । ପ୍ରତ୍ୟେକ ରାଜା ଯାହା କରିବାକୁ ସାହସ କରୁଥିଲେ, ତାହା କରୁଥିଲେ । ଆବଶ୍ୟକତା ଦୃଷ୍ଟିରୁ ରାଷ୍ଟ୍ରର ବୈଦେଶିକ ନୀତି ସ୍ଥିର କରାଯାଉଥିଲା । ଆବଶ୍ୟକତା ଅନୁଯାୟୀ କେତେକ ରାଜା ଅନ୍ୟ ରାଜ୍ୟକୁ ଆକ୍ରମଣ କରିବାକୁ ପ୍ରବୃତ୍ତ ହେଉଥିଲେ, ଅନ୍ୟ କେତେକ ରାଜା ସେଥିରୁ ନିବୃତ୍ତ ହେଉଥିଲେ । ମାଜାରିନ୍ ଚତୁର୍ଦ୍ଦଶ ଲୁଇଙ୍କ ସହିତ ସ୍ପେନର ରାଜକୁମାରୀଙ୍କର (infanta) ବିବାହ ପ୍ରସ୍ତାବ ଉତ୍ଥାପନ କଲାବେଳେ, ଭବିଷ୍ୟତରେ ଆବଶ୍ୟକତା ଦୃଷ୍ଟିରୁ ଫ୍ରାନ୍ସ ସହିତ ସ୍ପେନକୁ ସଂଯୋଗ କରିବାର ସମ୍ଭାବନା ଥିବା କଥା ସୂଚନା ଦେଇଥିଲେ ଏବଂ ପ୍ରକାଶ କରିଥିଲେ ଯେ ବିବାହ-ଚୁକ୍ତିରେ ଫ୍ରାନ୍ସ ତ୍ୟାଗ ବିଷୟରେ ଯେତେ ଯାହା କୁହାଗଲେ ମଧ୍ୟ ଏ ସମ୍ଭାବନାକୁ ସେ ଏଡ଼ିଦେଇପାରିବେ ନାହିଁ । ସେ କାଳରେ ଚୁକ୍ତିଭଙ୍ଗ କରିବା ଗୋଟିଏ ସାଧାରଣ ଅଭ୍ୟାସ ହୋଇଯାଇଥିଲା । ଥରେ ପ୍ରୁସିଆର ରାଜା ମହାନ୍ ଫ୍ରେଡ଼୍‌ରିକ ଗମ୍ଭୀର ଭାବରେ ମନ୍ତବ୍ୟ କରିଥିଲେ ଯେ "ପ୍ରତ୍ୟେକ ରାଜା ପାଇଁ ପ୍ରତାରଣା ବେଳେ ବେଳେ କର୍ତ୍ତବ୍ୟରେ ପରିଣତ ହୁଏ ।" (Frederick the Great solemnly observed that "for every sovereign fraud was sometimes a duty.") ଠିକ୍ ସେହିପରି ରୁଷିଆର ସମ୍ରାଜ୍ଞୀ ମହୀୟସୀ କାଥାରାଇନ୍ ଥରେ କହିଥିଲେ, "ଯେ ଲାଭ କରିପାରେ ନାହିଁ

ତାର କ୍ଷତି ହୁଏ ।" ("He who gains nothing loses", said Catherine the Great.)

ସେ ସମୟରେ ଅଧିକାଂଶ ରାଜା ଆକ୍ରମଣାତ୍ମକ ନୀତିକୁ ଅଗ୍ରାଧିକାର ଦେଉଥିଲେ । ଅଷ୍ଟାଦଶ ଶତାବ୍ଦୀରେ ରାଜ୍ୟ ବିସ୍ତାର ନୀତି କିପରି ରାଷ୍ଟ୍ରର ପ୍ରୟୋଜନୀୟତା ଉପରେ ନିର୍ଭର କରୁଥିଲା ତାହାର ଅନେକ ଦୃଷ୍ଟାନ୍ତ ରହିଛି । ଗୋଟିଏ ଇଉରୋପୀୟ ଜାତି ତା' ରାଜ୍ୟର ପ୍ରାକୃତିକ ଓ ଭୌଗୋଳିକ ପରିସ୍ଥିତିକୁ ସୁଦୃଢ଼ କରିବାକୁ ଚାହିଁଲେ ଅନ୍ୟ ଗୋଟିଏ ଇଉରୋପୀୟ ଜାତିର ରାଜ୍ୟରୁ କେତେକାଂଶ ଆକ୍ରମଣ କରି ଅଧିକାର କରିନେଉଥିଲା । ଇଉରୋପର ସେତେବେଳର ମାନଚିତ୍ର ଦେଖିଲେ ବିଭିନ୍ନ ରାଷ୍ଟ୍ରଗୁଡ଼ିକର ପ୍ରକୃତ ଲକ୍ଷ କ'ଣ ଜଣାଯାଏ । ହାନୋଭର, ବ୍ରେମେନ ଓ ଭର୍ଦେନ୍ ଲାଭ କରି, ଉତ୍ତରସାଗର ଆଡ଼କୁ ମାଡ଼ି-ଚାଲିଲା । ରୁଷିଆ କୃଷ୍ଣସାଗରରେ ତାର ଆସ୍ଥାନ ଜମାଇବାକୁ ଚାହୁଁଥିଲା । ଅଷ୍ଟ୍ରିୟା ଅଡ୍ରିଆଟିକ୍ ସାଗରରେ ତାର ଆସ୍ଥାନ ସୁଦୃଢ଼ କରିବାକୁ ଇଚ୍ଛା କରୁଥିଲା । ବ୍ରାଣ୍ଡେନବର୍ଗ ପ୍ରୁସିଆ, ସ୍ୱିଡ଼େନଠାରୁ ପୋମରାନିଆର ଗୋଟିଏ ଅଂଶ ନେଲା ପରେ ବଲକା ଅଞ୍ଚଳକୁ ନେଇ ବଲ୍ଟିକ୍ ସାଗରକୂଳରେ ଥିବା ତା ରାଜ୍ୟର ପରିସରକୁ ବଢ଼ାଇବାକୁ ଚାହୁଁଥିଲା । ମହାନ୍ ଫ୍ରେଡ଼୍ରିକ, ସାଇଲେସିଆ ଲାଭକରିବା ପରେ ତାଙ୍କ ରାଜ୍ୟର ପାର୍ବତ୍ୟ ସୀମାକୁ ବୃଦ୍ଧି କରିପାରିଥିଲେ ଏବଂ ପୋଲାଣ୍ଡ୍ ପ୍ରୁସିଆ ଅଞ୍ଚଳ ଦଖଲ କରିବା ପରେ ସେ ତାଙ୍କ ଶାସନାଧୀନ ରାଜ୍ୟକୁ ସୁଦୃଢ଼ କରିବାକୁ ସକ୍ଷମ ହୋଇଥିଲେ । ଅଷ୍ଟ୍ରିଆର ସମ୍ରାଟ ଦ୍ୱିତୀୟ ଯୋଷେଫ ତାଙ୍କ ଶାସନାଧୀନ ରାଜ୍ୟକୁ ଦୃଢ଼ୀଭୂତ କରିବା ପାଇଁ Beveria ଅଧିକାର କରିବା ପାଇଁ ଉଦ୍ୟମ କରୁଥିଲେ । ରୁଷିଆ ଗୋଟିଏ ବଡ଼ ଇଉରୋପୀୟ ଶକ୍ତି ହେବାର ଅଭିଳାଷ ରଖି ପୋଲାଣ୍ଡ ଉପରେ ଲୋଲୁପଦୃଷ୍ଟି ପକାଇଥିଲା ।

ବ୍ରିଟେନକୁ ବାଦ୍ ଦେଲେ ପ୍ରାୟ ସବୁ ବଡ଼ ବଡ଼ ରାଷ୍ଟ୍ରଗୁଡ଼ିକରେ ନିରଙ୍କୁଶ ଶାସନ ପ୍ରତିଷ୍ଠିତ ହୋଇଥିଲା । ଯଦିଓ କୁହାଯାଉଥିଲା ଯେ ରାଜା ରୋମାନ ଆଇନ କିମ୍ବା ଦେବଦତ୍ତ ଅଧିକାରବଳରେ ଶାସନ କରୁଥିଲେ; ପ୍ରକୃତପକ୍ଷରେ ତାଙ୍କର କ୍ଷମତା ନିଜ ବଳର (force) ପରିଚୟ ଉପରେ ନିର୍ଭର କରୁଥିଲା । ରାଷ୍ଟ୍ରଗୁଡ଼ିକ ଏପରି ଭାବରେ ସଙ୍ଗଠିତ ହୋଇଥିଲେ ଯେ ରାଜକ୍ଷମତା ରାଜ୍ୟର ଯେକୌଣସି ସ୍ଥାନରେ ଅନୁଭୂତ ହେଉଥିଲା । ରାଜାଙ୍କ ଇଚ୍ଛା ବିରୁଦ୍ଧରେ ଯାଉଥିବା ବ୍ୟକ୍ତିକୁ ପୋଲିସ୍ କିମ୍ବା ସୈନ୍ୟଙ୍କ ସହ ମୁକାବିଲା କରିବାକୁ ପଡ଼ୁଥିଲା । ଅଧିକାଂଶ ରାଷ୍ଟ୍ରରେ ଅମଲାତନ୍ତ୍ର ଏତେ ଶକ୍ତିଶାଳୀ ହୋଇଥିଲା ଯେ ସାଧାରଣ ସ୍ୱାର୍ଥରକ୍ଷା କରିବା ସମ୍ଭବପର ହେଉନଥିଲା ।

ଏକଥା ସ୍ୱୀକାର କରିବାକୁ ହେବ ଯେ ସୁଶୃଙ୍ଖଳ ଶାସନ ବ୍ୟବସ୍ଥା ଅନେକ ପରିମାଣରେ ରାଜାଙ୍କର ଚରିତ୍ର ଉପରେ ନିର୍ଭର କରୁଥିଲା । ଫ୍ରାନ୍ସର ରାଜା ପଞ୍ଚଦଶ

ଲୁଇଙ୍କ ରାଜତ୍ୱରେ ଶାସକଙ୍କର ଦାୟିତ୍ୱହୀନତା ହେତୁ ଓ ଅଯୋଗ୍ୟ ପ୍ରଶାସକମାନେ ଶାସନକଳକୁ ବେଢ଼ି ନେଇଥିବାରୁ ଠିକ୍ ବାଟରେ ତାକୁ ଚଳାଇବା ସମ୍ଭବପର ହୋଇନଥିଲା । ତେଣୁ ଶାସନକଳ ନିଜ ଇଚ୍ଛାରେ ଚାଲିବାକୁ ଲାଗିଲା ଓ ଶାସନର ଦୋଷ-ଦୁର୍ଗୁଣ ସବୁ ପଦାରେ ପଡ଼ିଲା । ଅଧସ୍ତନ କର୍ମଚାରୀମାନେ ଉପଯୁକ୍ତ ନିର୍ଦ୍ଦେଶ ଓ ପରିଚାଳନା ଅଭାବରୁ କ୍ଷମତା ଅପବ୍ୟବହାର କରିବାର ସୁଯୋଗ ପାଇଲେ ।

କେତେକ ରାଷ୍ଟ୍ରର ଶାସନ ବ୍ୟବସ୍ଥା ଉତ୍କୃଷ୍ଟ ଧରଣର ହେଲେ ମଧ୍ୟ, ପ୍ରଶାସନିକ ବିଶୃଙ୍ଖଳତା ସେଠାରେ ଦେଖାଯାଉଥିଲା । ଅନେକ ସ୍ଥାନରେ ଅଧିକୃତ ପ୍ରଦେଶମାନଙ୍କର ବିଶେଷ ଅନୁଷ୍ଠାନଗୁଡ଼ିକ ରାଜ୍ୟର ଶୃଙ୍ଖଳା ଦୃଷ୍ଟିରୁ ଚାଲୁରଖିବା ବାଞ୍ଛନୀୟ ବୋଲି ଅନୁଭୂତ ହେଉଥିଲା । ଅଷ୍ଟ୍ରିଆର ସମ୍ରାଟ ଦ୍ୱିତୀୟ ଯୋସେଫ ନେଦରଲ୍ୟାଣ୍ଡ ବ୍ୟାପାରରେ ତାଙ୍କର ତିକ୍ତ ଅନୁଭୂତିରୁ ଏ ଶିକ୍ଷା ଲାଭ କରିଥିଲେ । ରାଜ୍ୟର ହିତ ଦୃଷ୍ଟିରୁ ପ୍ରୁସିଆର କେତେକାଂଶରେ ଅନ୍ୟ କେତେକାଂଶ ଅପେକ୍ଷା ଅଧିକ କଠୋର ଶାସନର ବ୍ୟବସ୍ଥା କରାଯାଇଥିଲା । ସାମନ୍ତବାଦର ରାଜନୈତିକ କ୍ଷମତା ଭାଙ୍ଗି ଦିଆଯାଇଥିଲେ ସୁଦ୍ଧା ଶାସନକ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ତାହାର ଯଥେଷ୍ଟ ଶକ୍ତି ଥିଲା । ପ୍ରାଦେଶିକ ବ୍ୟବସ୍ଥାପକ ସଭାଗୁଡ଼ିକର ମତ ନେବାକୁ ଚାହିଁଲେ ସେମାନେ ତାହା ଦେବାରେ ଅଯଥା ବିଳମ୍ବ କରୁଥିଲେ ।

ଅଷ୍ଟାଦଶ ଶତାବ୍ଦୀରେ ପୁରାତନ ଶାସନ ପଦ୍ଧତି ପ୍ରଚଳିତ ଥିଲା ଏବଂ ରାଜାମାନେ ସାଧାରଣତଃ ସ୍ୱେଚ୍ଛାଚାରୀ ଶାସକ ଥିଲେ । ରାଜତନ୍ତ୍ର ପୁରୁଷାନୁକ୍ରମିକ ଥିବାରୁ ନିପୁଣ ନିରବଚ୍ଛିନ୍ନ ଶାସନ ବିଷୟରେ ଦାୟିତ୍ୱ ଗ୍ରହଣ କରିବାର ପ୍ରତିଶ୍ରୁତି କିଛି ଦିଆଯାଇ ପାରୁନଥିଲା । ରାଜତନ୍ତ୍ର ଶାସନ ଦକ୍ଷ ଶାସକଙ୍କ ପରିଚାଳନାରେ କେବଳ ସୁଚାରୁରୂପେ ଚାଲୁଥିଲା । ଅନେକ ସମୟରେ କେନ୍ଦ୍ରରୁ ଯେଉଁ କ୍ଷମତା ଗ୍ରହଣ କରାଯାଉଥିଲା ରାଜ୍ୟର ନିମ୍ନସ୍ତରରେ ପହଞ୍ଚିବା ପୂର୍ବରୁ ତାହାର ଦକ୍ଷତା କ୍ରମେ ପ୍ରାୟ ହ୍ରାସ ପାଇଯାଉଥିଲା । କେନ୍ଦ୍ରୀଭୂତ ଶାସନ ସର୍ବଦା ନୀରସ କାର୍ଯ୍ୟକ୍ରମ (routine) ଆଡ଼କୁ ଢଳୁଥିଲା । ଫ୍ରାନ୍ସର ସହର ଓ ଗ୍ରାମଗୁଡ଼ିକ କେନ୍ଦ୍ର ଶାସନ ସହିତ ସଂଯୋଗ କରାଯାଇଥିବାରୁ ଗୋଟିଏ ଗ୍ରାମରେ ସର୍ବସାଧାରଣଙ୍କ ପାଇଁ ନିର୍ମିତ କୋଠାଘରଟିର ମରାମତି ସମସ୍ତ ସମୟରେ ପାଞ୍ଚବର୍ଷ ପୂର୍ବରୁ ହୋଇ ପାରୁନଥିଲା ।

ପୁରାତନ ଶାସନ ପଦ୍ଧତି ଅନୁଯାୟୀ ନିରଙ୍କୁଶ ରାଜତନ୍ତ୍ର ବିଭିନ୍ନ ରାଜ୍ୟରେ ପ୍ରତିଷ୍ଠିତ ହୋଇଥିଲା; କିନ୍ତୁ ସାଧାରଣତଃ ଏହା ପୁରୁଷାନୁକ୍ରମିକ (paternal) ଥିଲା । ସପ୍ତଦଶ ଶତାବ୍ଦୀ ଅପେକ୍ଷା ଅଷ୍ଟାଦଶ ଶତାବ୍ଦୀରେ ରାଜାମାନେ ଅଧିକ ବିଦ୍ୟା ଓ ଜ୍ଞାନ ଅର୍ଜନ କରିଥିଲେ ଏବଂ ପ୍ରବୁଦ୍ଧ ଶାସନ ପ୍ରଚଳନ କରିବା ପାଇଁ ଆଗ୍ରହୀ ଥିଲେ । ସେମାନେ କେବଳ ଆମୋଦ-ପ୍ରମୋଦରେ ରତ ନଥିଲେ କି ଫ୍ରାନ୍ସ ପରି ରାଜୋଚିତ ମର୍ଯ୍ୟାଦା ଓ ଅଭିରୁଚି

ଦିଗରେ ବିଶେଷ ଧ୍ୟାନ ଦେଉନଥିଲେ । କ୍ଷମତା ଜାରୁଣ୍ଡଧର ମନମୁଖୀ ଶାସନ ଚଳାଇବାର ସେମାନେ ପକ୍ଷପାତୀ ନ ଥିଲେ । ଦୃଷ୍ଟି ଆକର୍ଷଣକାରୀ କେତେକ ସାମାଜିକ ସମସ୍ୟା ବିଷୟରେ ବାସ୍ତବିକ ସେମାନେ ସଚେତନ ଥିଲେ । ପରନ୍ତୁ ବିଷୟ ଏହି ଯେ ସେମାନେ ସମସ୍ୟା-ଗୁଡ଼ିକର ସମାଧାନ ଦିଗରେ ବିଶେଷ ଆଗେଇ ପାରିନଥିଲେ । 'ନିରଙ୍କୁଶ ପ୍ରବୁଦ୍ଧ ଶାସକମାନେ' (the benevolent despots) ପ୍ରଜାମାନଙ୍କର ହିତସାଧନ ନିମନ୍ତେ ବହୁତ କିଛି ଦାୟିତ୍ୱ ନେଇଥିଲେ; କିନ୍ତୁ ସେମାନେ ପାରମ୍ପରିକ ମାର୍ଗ ଅନୁସରଣ କରି ସମସ୍ତ କ୍ଷମତା ନିଜ ହାତରେ ଠୁଳ କରିଥିଲେ । ତେଣୁ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ଶାସିତମାନଙ୍କୁ କୌଣସି ପ୍ରସ୍ତାବ ଦେବାର ଅଗ୍ରାଧିକାର (initiative) ଦେଉ ନଥିଲେ ।

ଅନ୍ୟ ଦିଗରେ ସେମାନେ ସମସ୍ତ କ୍ଷମତାର ଅଧିକାରୀ ହେଲେ ମଧ୍ୟ ଲୋକମାନଙ୍କର ସାମାଜିକ ଓ ଅର୍ଥନୈତିକ ବିକାଶ ଦିଗରେ ବିଶେଷ ଦୃଷ୍ଟି ଦେଉନଥିଲେ । ପ୍ରୁସିଆର ରାଜା ମହାନ ଫ୍ରେଡେରିକ୍, ଅଷ୍ଟ୍ରିୟାର ସମ୍ରାଟ ଦ୍ୱିତୀୟ ଯୋସେଫ ଓ ରୁଷିଆର ସମ୍ରାଟ ପିଟର୍ ଓ ସମ୍ରାଜ୍ଞୀ ମହୀୟସୀ କାଥାରାଇନ୍ ଉଦାର ନିରଙ୍କୁଶ ଶାସକ ଥିଲେ ଏବଂ ପ୍ରଜାମାନଙ୍କ ମଙ୍ଗଳ ପାଇଁ ତତ୍ପର ଥିଲେ । କିନ୍ତୁ ଫ୍ରାନ୍ସର ରାଜା ଚତୁର୍ଦ୍ଦଶ ଲୁଇ ଜଣେ ନିରଙ୍କୁଶ ଶାସକ ଥିଲେ ଓ ଉଚ୍ଚଶ୍ରେଣୀରେ ଥିବା ଧର୍ମଯାଜକ ଓ ସମ୍ଭ୍ରାନ୍ତ ଲୋକମାନଙ୍କୁ ବିଶେଷ ଅନୁଗ୍ରହ ଦେଖାଉଥିଲାବେଳେ ସାଧାରଣ ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ମହାନ୍ ଫ୍ରେଡ଼େରିକ୍ ନିଜକୁ 'ରାଷ୍ଟ୍ରର ପ୍ରଥମ ସେବକ' ('First servant of the State') କହୁଥିଲା ବେଳେ ଚତୁର୍ଦ୍ଦଶ ଲୁଇ 'ମୁଁ ରାଷ୍ଟ୍ର' (I am the State) ବୋଲି କହୁଥିଲେ ।

ମୋଟାମୋଟି କହିବାକୁ ଗଲେ ପୁରାତନ ଶାସନ ପଦ୍ଧତି ନିରଙ୍କୁଶ ଶାସନ, ସାମାଜିକ ଅସମାନତା ଓ ଅର୍ଥନୈତିକ ବିଶୃଙ୍ଖଳାର ପ୍ରତୀକ ଥିଲା । ରାଜାମାନେ ସାଧାରଣତଃ ଉଦାର ଶାସକ ହେଲେ ମଧ୍ୟ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବାରେ କୃତକାର୍ଯ୍ୟ ହୋଇ ପାରି ନ ଥିଲେ । ମାତ୍ର ଇଂଲଣ୍ଡରେ ସୀମିତ ରାଜତନ୍ତ୍ର ପ୍ରତିଷ୍ଠିତ ହୋଇଥିଲା ଓ ଭୂସମ୍ପତ୍ତିଶାଳୀ ଅଭିଜାତବର୍ଗଙ୍କ ହାତରେ ଶାସନକ୍ଷମତା ନ୍ୟସ୍ତ ଥିଲା । ଫରାସୀ ରାଷ୍ଟ୍ରବିପ୍ଳବର ସୂତ୍ରପାତ ହେବା ପୂର୍ବରୁ ଇଉରୋପୀୟ ଦେଶମାନଙ୍କର ରାଜନୈତିକ ଓ ସାମାଜିକ ଅବସ୍ଥା ପ୍ରାୟତଃ ସମାନ ଥିଲା ।

ଫ୍ରାନ୍ସର ଦୋଷ-ଦୁର୍ବଳତା, ଇଉରୋପର ଅନ୍ୟ ଦେଶମାନଙ୍କ ଅପେକ୍ଷା ଅଧିକ ତୀବ୍ର ଆକାର ଧାରଣ କରି ନ ଥିଲା; କିନ୍ତୁ ସେଗୁଡ଼ିକର ସେଠାରେ ପୁଙ୍ଖାନୁପୁଙ୍ଖ ସମୀକ୍ଷା କରାଯାଇଥିଲା । ଫଳରେ ସେଠାରେ ଜନଜାଗରଣ ହୋଇ ପୁରାତନ ଶାସନପଦ୍ଧତିକୁ ପ୍ରଥମେ କବର ଦିଆଯାଇଥିଲା ।

---

# ଦ୍ୱିତୀୟ ଅଧ୍ୟାୟ

## ଫରାସୀ ରାଷ୍ଟ୍ର-ବିପ୍ଳବ

ଅଷ୍ଟାଦଶ ଶତାବ୍ଦୀ ଶେଷ ହେବା ପୂର୍ବରୁ ପୃଥିବୀରେ ଦୁଇଟି ବଡ଼ ଧରଣର ବିପ୍ଳବ ହୋଇଥିଲା । ଗୋଟିଏ ହେଲା ଆମେରିକୀୟ ବିପ୍ଳବ ବା ଆମେରିକାର ସ୍ୱାଧୀନତା ସଂଗ୍ରାମ (୧୭୭୫-୮୩), ଅନ୍ୟଟି ହେଲା ଫରାସୀ ରାଷ୍ଟ୍ର-ବିପ୍ଳବ (୧୭୮୯-୯୫) । ଏହି ଦୁଇଟିଯାକ ବିପ୍ଳବ ନିରଙ୍କୁଶ ରାଜତନ୍ତ୍ରବାଦକୁ କୁଠାରାଘାତ କରିବା ସଙ୍ଗେ ସଙ୍ଗେ ମାନବଜାତିର ପରବର୍ତ୍ତୀ ଇତିହାସକୁ ବିଶେଷଭାବରେ ପ୍ରଭାବିତ କରିଥିଲା ।

୧୭୮୯ ମସିହାରୁ ୧୮୧୫ ପର୍ଯ୍ୟନ୍ତ ଶାସନକାଳକୁ ପରିବର୍ତ୍ତନର ଯୁଗ (the Era of Transition) ବୋଲି ଅଭିହିତ କରାଯାଇଅଛି । ଏହି ଯୁଗରେ ହୋଇଥିଲା ସାମନ୍ତବାଦର ପତନ ଓ ଗଣତନ୍ତ୍ରର ଅଭ୍ୟୁଦୟ । ଯେଉଁବେଳେ ଫ୍ରାନ୍ସରେ ବିପ୍ଳବ ହୋଇ ଶାସନ-ସଂସ୍କାର ହେଲା ଏବଂ ଦୁର୍ବଳ ଶାସକର ସୁବିଧା ନେଇ ନେପୋଲିୟନ ଶାସନ କ୍ଷମତା ଅଧିକାର କଲେ ସେତେବେଳେ ଇଉରୋପର ପୁରାତନ ଶାସନ ପଦ୍ଧତି କ୍ରମେ କ୍ରମେ ଲୋପ ପାଇଲା ଏବଂ ସମାଜ ଓ ଶାସନରେ ନୂତନ ନୀତିଗୁଡ଼ିକର ପ୍ରଚଳନ ହେଲା ।

ଫରାସୀ ରାଷ୍ଟ୍ର-ବିପ୍ଳବ ଫରାସୀମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାର କହିବା ଯୁକ୍ତିସଙ୍ଗତ ହେବ ନାହିଁ; ଏହା ପ୍ରକୃତ ମାନବଜାତିର ବିଭିନ୍ନ କ୍ଷେତ୍ରରେ ପ୍ରଗତିର ସନ୍ଧାନ । ଏହି ବିପ୍ଳବ ଯେଉଁ ତିନୋଟି ନୀତିକୁ (ସାର୍ବଭୌମତ୍ୱ, ସମାନତା ଓ ଜାତୀୟତା) ଜନ୍ମ ଦେଇଥିଲା, ସେ ସବୁ ଇଉରୋପର ପ୍ରତ୍ୟେକ ଜାତିର ଭାଗ୍ୟକୁ ପ୍ରଭାବିତ କରି ପାରିଥିଲା । ଭିକ୍ଟର ହ୍ୟୁଗୋ ଯଥାର୍ଥରେ କହିଥିଲେ, 'ସେନାବାହିନୀର ଆକ୍ରମଣକୁ ପ୍ରତିରୋଧ କରାଯାଇପାରେ; କିନ୍ତୁ ଭାବସମୂହର ଆକ୍ରମଣକୁ ପ୍ରତିରୋଧ କରାଯାଇପାରେନା ।' ('An invasion of armies can be resisted, an invasion of ideas can not be resisted.')

ବାସ୍ତବିକ ଉପରୋକ୍ତ ନୀତିଗୁଡ଼ିକ ପ୍ରତିଷ୍ଠା ଲାଭ କରିବା ପୂର୍ବରୁ ପୁରାତନ ଶାସନ ପଦ୍ଧତିର ପ୍ରତିରୋଧକୁ ପ୍ରତିହତ (defeat) କରିବାକୁ ପଡ଼ିଥିଲା । ଏକଥା ସତ ଯେ ଊନବିଂଶ ଶତାବ୍ଦୀର ପ୍ରତ୍ୟେକ ପ୍ରଗତିମୂଳକ ପଦକ୍ଷେପ ଏହି ନୀତିଗୁଡ଼ିକ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । ତେଣୁ ଫରାସୀ ରାଷ୍ଟ୍ର-ବିପ୍ଳବ ପୁରାତନ ଶାସନକ୍ଷମତା ଓ ବିଶେଷ ସୁବିଧା ଓ ଅଧିକାର ବିରୁଦ୍ଧରେ ସଫଳ ସଂଗ୍ରାମ ଏବଂ ଭାବନା, ସମାଜ ଓ ରାଜନୀତି କ୍ଷେତ୍ରରେ ବିଜୟର ପ୍ରତୀକ ।

ଫରାସୀ ରାଷ୍ଟ୍ର-ବିପ୍ଳବର ସୂତ୍ରପାତ ହେଲା ୧୭୮୯ ମସିହାରେ । ସାଧାରଣତଃ ଏ ବିପ୍ଳବକୁ ଫରାସୀ ଜନତାର ବୁରବନ୍ ରାଜବଂଶର ନିରଙ୍କୁଶ ଶାସନ ଓ ଅତ୍ୟାଚାରୀ ଖାନ୍ଦାନ ଗୋଷ୍ଠୀର ଶୋଷଣ ନୀତି ବିରୁଦ୍ଧରେ ବିଦ୍ରୋହ ବୋଲି କୁହାଯାଏ । ବାସ୍ତବିକ୍ ଏ ବିପ୍ଳବର ସୂତ୍ରଧାର ହେଲେ ଉଚ୍ଚ ମଧ୍ୟବିତ୍ତମାନେ । ସେମାନେ ଉଚ୍ଚଶିକ୍ଷିତ ଏବଂ ବାଣିଜ୍ୟ-ବ୍ୟବସାୟ ଦ୍ୱାରା ବିତ୍ତଶାଳୀ ହେଲେ ମଧ୍ୟ କୃଷକ ଓ ମଜଦୁରମାନଙ୍କ ସହିତ ତୃତୀୟ ଗୋଷ୍ଠୀରେ ସାମିଲ ହୋଇଥିଲେ । ସେମାନଙ୍କ ପରି ସମାଜରେ ଉପେକ୍ଷିତ ଓ ଉଚ୍ଚ ସମ୍ମାନରୁ ବଞ୍ଚିତ ହେଉଥିଲେ । ରାଜାନୁଗ୍ରହ ପାଇ ପ୍ରଥମ ଦୁଇ ଗୋଷ୍ଠୀର ଲୋକେ ବଡ଼ ବଡ଼ ଚାକିରିର ଅଧିକାରୀ ହୋଇଥିଲେ ଏବଂ ସମାଜକୁ ନିୟନ୍ତ୍ରଣ କରୁଥିଲେ । ଉଚ୍ଚ ମଧ୍ୟବିତ୍ତମାନେ ଏଥିରେ କ୍ଷୁବ୍ଧ ହୋଇ ବୁରବନ୍ ରାଜତ୍ୱର ଅବସାନ ଘଟାଇବା ନିମନ୍ତେ ବଦ୍ଧପରିକର ହୋଇଥିଲେ ଏବଂ କୃଷକ ଓ ମଜଦୁରମାନଙ୍କୁ ନିରଙ୍କୁଶ ବୁରବନ ଶାସକ ଓ ସୁବିଧା ଉପଭୋଗୀ ପ୍ରଥମ ଦୁଇଗୋଷ୍ଠୀର ଲୋକମାନଙ୍କ ବିରୁଦ୍ଧରେ ସେମାନଙ୍କ ସହିତ ଯୋଗ ଦେଇ ସଂଗ୍ରାମ ଚଳାଇବାକୁ ଆହ୍ୱାନ ଦେଇଥିଲେ । ତେଣୁ ଏ ବିପ୍ଳବକୁ ଉଚ୍ଚ ମଧ୍ୟବିତ୍ତଗୋଷ୍ଠୀଙ୍କର ବିପ୍ଳବ (Bourgeoisie Revolution) ବୋଲି କୁହାଯାଏ ।

୧୭୮୯ ମସିହା ବିପ୍ଳବକୁ ଦୁଇଟି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇପାରେ । ପ୍ରଥମ ପର୍ଯ୍ୟାୟରେ ଆନ୍ଦୋଳନ ଆରମ୍ଭ ହୋଇଗଲା ଯେତେବେଳେ ରାଷ୍ଟ୍ରୀୟ ସଭାକୁ (States General) ଅର୍ଥ ସମ୍ବନ୍ଧୀୟ ଆଇନ ପ୍ରଣୟନ କରିବା ପାଇଁ ଆହ୍ୱାନ କରାଗଲା ଏବଂ ତୃତୀୟ ଗୋଷ୍ଠୀର ପ୍ରତିନିଧିମାନେ ପ୍ରଥମ ଦୁଇ ଗୋଷ୍ଠୀର ଲୋକମାନଙ୍କୁ ବୁରବନ୍ ରାଜା ଅନୁଗ୍ରହ ଦେଖାଉଥିବାରୁ ସେଥିରେ ଅସନ୍ତୁଷ୍ଟ ହୋଇ ଏହି ସଭାକୁ ଜାତୀୟ ସଭା (National Assembly) ବୋଲି ଘୋଷଣା କଲେ । ପୁରାତନ ଶାସନ ପଦ୍ଧତିକୁ ବାତିଲ କରିଦେଲେ ଓ ବୁରବନ୍ ରାଜବଂଶକୁ ତିଷ୍ଠି ରହିବା ପାଇଁ ସିଦ୍ଧାନ୍ତ କଲେ ସତ; କିନ୍ତୁ ବୁରବନ ରଜାଙ୍କର କ୍ଷମତାକୁ ସଙ୍କୁଚିତ କରି ଦେଇଥିଲେ । ଜାତୀୟ ସଭା ଫ୍ରାନ୍ସ ପାଇଁ ୧୭୯୧ ମସିହା ସମ୍ବିଧାନ ପ୍ରସ୍ତୁତ କରିବା ପରେ ନିଜର କାର୍ଯ୍ୟ ସମାପ୍ତ କରିଥିଲା । ସମ୍ବିଧାନ ଅନୁଯାୟୀ ବିଧାନ ସଭା (Legislative Assembly)

୧୭୯୧ ରୁ ୧୭୯୨ ମସିହା ପର୍ଯ୍ୟନ୍ତ ବସି ବିଭିନ୍ନ ବିଷୟ ବିଚାର କରିଥିଲା । ଲୁଇବନ୍ ରାଜା ବିଦେଶୀ ରାଷ୍ଟ୍ରମାନଙ୍କ ସହିତ ଗୁପ୍ତ ମେଣ୍ଟ କରି ସେମାନଙ୍କ ସାହାଯ୍ୟରେ ନିଜର ନିରଙ୍କୁଶ ଶାସନକୁ ପୁନଃ ପ୍ରତିଷ୍ଠା କରିବାକୁ ଯୋଜନା କରୁଥିବାର ସନ୍ଦେହ କରି, ପ୍ୟାରିସ୍‌ର ଜନତା ରାଜାଙ୍କୁ କିଛି କାଳ ରାଜଚ୍ୟୁତ (Suspend) କରିବା ପାଇଁ ବିଧାନସଭାକୁ ବାଧ୍ୟ କରିଥିଲେ ।

ଫରାସୀ ରାଷ୍ଟ୍ର-ବିପ୍ଳବ ଦ୍ୱିତୀୟ ପର୍ଯ୍ୟାୟରେ ପହଞ୍ଚିଲା ୧୭୯୩ ମସିହାରେ, ଯେତେବେଳେ ଜାତୀୟ କନଭେନସନ (National Convention) ରାଜତନ୍ତ୍ର ଶାସନର ଅବସାନ ଘଟାଇ ସାଧାରଣତନ୍ତ୍ର ପ୍ରତିଷ୍ଠା କଲା । ସାଧାରଣତନ୍ତ୍ର ଶାସନ ବିଦେଶୀ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରିବାରେ ସଫଳ ହେବା ସଙ୍ଗେ ସଙ୍ଗେ ଆତଙ୍କରାଜ (Reign of Terror) ପ୍ରତିଷ୍ଠା କରି ଆଭ୍ୟନ୍ତରୀଣ ଗଣ୍ଡଗୋଳକୁ ଦବାଇଦେଇଥିଲା ଓ ଗଣତାନ୍ତ୍ରିକ ସମ୍ବିଧାନ ପ୍ରସ୍ତୁତ କରିଥିଲା ।

ଗଣତାନ୍ତ୍ରିକ ସମ୍ବିଧାନ ଅନୁଯାୟୀ ୧୭୯୫ ମସିହାରେ ଡାଇରେକ୍‌ଟରି (Directory) ନାମକ ଗୋଟିଏ ସାଧାରଣତନ୍ତ୍ର ସରକାର ପ୍ରତିଷ୍ଠିତ ହେଲା ଓ ଏ ସରକାର ୧୭୯୯ ମସିହା ପର୍ଯ୍ୟନ୍ତ ଶାସନ କ୍ଷମତାରେ ରହିଥିଲା । କିନ୍ତୁ ନେପୋଲିୟନ୍ ବୋନାପାର୍ଟ କୌଶଳରେ ଏ ସରକାରର ପତନ ଘଟାଇଥିଲେ ଏବଂ ନୂତନ ସମ୍ବିଧାନ ପ୍ରଣୟନ କରାଇ କନସଲେଟ (Consulate) ନାମକ ଗୋଟିଏ ସାଧାରଣତନ୍ତ୍ର ସରକାର ୧୭୯୯ ମସିହାରେ ପ୍ରତିଷ୍ଠିତ କରି ତାର ମୁଖ୍ୟ ଶାସନକର୍ତ୍ତା ହେଲେ । ୧୮୦୪ ମସିହାରେ ସେ ନିଜକୁ ସମ୍ରାଟ ବୋଲି ଘୋଷଣା କଲେ । ୧୮୧୫ ମସିହାରେ ତାଙ୍କର ପତନ ହେଲା । ନେପୋଲିୟନ୍‌ଙ୍କ ପତନ ପର୍ଯ୍ୟନ୍ତ ଫ୍ରାନ୍ସ ଇଉରୋପ ମହାଦେଶର ଭାଗ୍ୟ ନିୟନ୍ତ୍ରଣ କରୁଥିଲା ।

ଫରାସୀ ରାଷ୍ଟ୍ର-ବିପ୍ଳବ ସଂଘଟିତ ହେଲା ସାମାଜିକ, ରାଜନୈତିକ, ବୌଦ୍ଧିକ ଓ ଅର୍ଥନୈତିକ କାରଣଗୁଡ଼ିକ ଯୋଗୁ ।

## ସାମାଜିକ କାରଣ (Social Cause)

ଫରାସୀ ସମାଜରେ ଦୋଷ-ଦୁର୍ବଳତା ପୂରି ରହିଥିଲା । ଅସମାନତା ଉପରେ ଫରାସୀ ସମାଜ ଆଧାରିତ ଥିଲା ଏବଂ ତାହା ସମାଜକୁ କ୍ରମେ କ୍ରମେ ଦୁର୍ବଳ କରି ପକାଉଥିଲା । ଗୋଟିଏ ପୁରୁଣା ଫରାସୀ ପ୍ରବାଦ ଥିଲା—'ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଯୁଦ୍ଧ କରନ୍ତି, ଧର୍ମଯାଜକମାନେ ପ୍ରାର୍ଥନା କରନ୍ତି, ସାଧାରଣ ଲୋକେ ସେମାନଙ୍କର ଦେୟ ଦିଅନ୍ତି ।' (The nobles fight, the clergy pray, the people pay'.) ଏହା ମୁଖ୍ୟତଃ ସାମନ୍ତବାଦୀ

ମତ ଏବଂ ଏହା କେବଳ କର୍ତ୍ତବ୍ୟ ଓ ଦାୟିତ୍ୱଗୁଡ଼ିକର ପୃଥକୀକରଣର ସୂଚନା ଦେଉ-ନଥିଲା । ଏହା ମଧ୍ୟ ଗୋଷ୍ଠୀଗୁଡ଼ିକର ପୃଥକୀକରଣର ସୂଚନା ଦେଉଥିଲା । ଫରାସୀ ସମାଜ ଉପରେ ଯେ ଏହାର ବ୍ୟାପକ ପ୍ରଭାବ ପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ । ଏଥିରୁ ଜାତ ହେଲା ସାମାଜିକ ବୈଷମ୍ୟ ଓ ଭେଦଭାବ । ସମ୍ଭ୍ରାନ୍ତଗୋଷ୍ଠୀ ଓ ଧର୍ମଯାଜକଗୋଷ୍ଠୀର ଲୋକେ ରାଜାଙ୍କଠାରୁ ବିଶେଷ ସୁବିଧା ଓ ଅଧିକାର ପାଇ ସମାଜରେ ଆଧିପତ୍ୟ ବିସ୍ତାର କଲେ ଓ ସାଧାରଣ ଲୋକଙ୍କୁ ହେୟଜ୍ଞାନ କରି ସମାଜରେ କୌଣସି ସ୍ଥାନ ଦେଲେ ନାହିଁ । ସାମାଜିକ ବ୍ୟବସ୍ଥା ପକ୍ଷପାତିତା, ଦୁର୍ନୀତି, ଅନ୍ୟାୟ ଓ ଅତ୍ୟାଚାରକୁ ପ୍ରଶ୍ରୟ ଦେଲା ଓ ସମାଜ ପତନର ସମସ୍ତ ସଙ୍କେତ ମଧ୍ୟ ଦେଉଥିଲା । ଉଚ୍ଚ ପାହ୍ୟାର ଧର୍ମଯାଜକମାନେ ଓ ରାଜ-ଦରବାରର ସମ୍ଭ୍ରାନ୍ତ ଲୋକେ ରାଜାଙ୍କଠାରୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ପାଉଥିବା ସ୍ଥଳେ ଦରିଦ୍ର କୃଷକ ଓ ମଜଦୁରମାନେ ସୁବିଧା ଉପଭୋଗୀ ଶ୍ରେଣୀର ଲୋକମାନଙ୍କ କବଳରେ ପଡ଼ି ପେଷି ହୋଇ ଯାଉଥିଲେ । ଗିର୍ଜାଗୁଡ଼ିକ ଆଧ୍ୟାତ୍ମିକ ଶକ୍ତି ଓ ଉତ୍ସାହ ହରାଇଥିଲା ଓ ଧର୍ମଭ୍ରଷ୍ଟ ହୋଇ ଲମ୍ପଟ ଓ ଚରିତ୍ରହୀନ ବ୍ୟକ୍ତିମାନଙ୍କର ସମ୍ପର୍କ ସଂସ୍ଥାରେ ପରିଣତ ହୋଇଥିଲା ଏବଂ ଏହା ଫରାସୀ ଜାତିର କୌଣସି ହିତସାଧନ ନ କରି ତାହାର ଏକ-ପଞ୍ଚମାଂଶ ଜମିକୁ ଉପଭୋଗ କରୁଥିଲା ।

ମୋଟାମୋଟି କହିବାକୁ ଗଲେ ଫରାସୀମାନେ ତିନୋଟି ଗୋଷ୍ଠୀ (estate)ରେ ବିଭକ୍ତ ହୋଇଥିଲେ; ଯଥା : ଧର୍ମଯାଜକଗୋଷ୍ଠୀ, ସମ୍ଭ୍ରାନ୍ତ ବା ସାମନ୍ତ ଗୋଷ୍ଠୀ ଓ ସାଧାରଣ (ମଧ୍ୟବିତ୍ତ, କୃଷକ ଓ ମଜଦୁର ମାନେ) ଗୋଷ୍ଠୀ । ପ୍ରଥମ ଦୁଇଗୋଟି ଗୋଷ୍ଠୀ ସୁବିଧା ଉପଭୋଗୀ ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇଥିଲେ ଓ ସେମାନଙ୍କ ସଂଖ୍ୟା ପାଞ୍ଚଲକ୍ଷରୁ କିଛି ଊଣା ଥିଲା । ସାଧାରଣ ଗୋଷ୍ଠୀର ଲୋକେ ସୁବିଧା ଉପଭୋଗରୁ ବଞ୍ଚିତ ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇଥିଲେ ଓ ସେମାନଙ୍କର ସଂଖ୍ୟା ଥିଲା ପ୍ରାୟ ଦୁଇକୋଟି ପଚିଶଲକ୍ଷ ।

ଧର୍ମଯାଜକଗୋଷ୍ଠୀ ସମାଜର ଶୀର୍ଷ ସ୍ଥାନରେ ରହିଥିଲେ । ଏହି ଗୋଷ୍ଠୀକୁ ଦୁଇ ଭାଗରେ ବିଭକ୍ତ କରାଯାଉଥିଲା; ଯଥା : ଉଚ୍ଚ ପାହ୍ୟାର ଧର୍ମଯାଜକ ଓ ନିମ୍ନ ପାହ୍ୟାର ଧର୍ମଯାଜକ । ଉଚ୍ଚ ପାହ୍ୟାର ଧର୍ମଯାଜକମାନେ ପ୍ରକୃତରେ ସୁବିଧା ଉପଭୋଗୀ ଥିଲେ ଓ ବିଶେଷ ଅଧିକାର ପାଇଥିଲେ । ସେମାନେ ହିଁ ଗିର୍ଜାଗୁଡ଼ିକ ନିୟନ୍ତ୍ରଣ କରୁଥିଲେ ଓ ଗିର୍ଜାର ସମ୍ପତ୍ତିକୁ ନିଜର ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ କରିଥିଲେ । ଗିର୍ଜାଗୁଡ଼ିକ ଫ୍ରାନ୍ସର ଏକ-ପଞ୍ଚମାଂଶ ଜମି ଅଧିକାର କରିଥିବାରୁ ବିପୁଳ ସମ୍ପତ୍ତିର ଅଧିକାରୀ ଥିଲା । ଏହି ସମ୍ପତ୍ତି ବସ୍ତୁତଃ କରରୁ ଅବ୍ୟାହତି ପାଇଥିଲା । ଏତଦ୍‌ବ୍ୟତୀତ ଗିର୍ଜାସବୁ କୃଷିଜାତ ଦ୍ରବ୍ୟ ଉପରୁ ଗିର୍ଜାକର (tithe) ଏବଂ ଗିର୍ଜା ଜମି ଚାଷ କରୁଥିବା ପ୍ରଜାଙ୍କଠାରୁ ନାନା ପ୍ରକାର ଖଜଣା (feudal dues) ଆଦାୟ କରୁଥିଲା । ଏହି ବିପୁଳ ସମ୍ପତ୍ତି ଜାତିର ଆଧ୍ୟାତ୍ମିକ ବିକାଶ ଦିଗରେ କିମ୍ବା ଜନହିତକର କାର୍ଯ୍ୟରେ ବ୍ୟବହୃତ

ହୋଉନଥିଲା । ଏ ସମ୍ପତ୍ତିକୁ ଉପଭୋଗ କରୁଥିଲେ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର କନିଷ୍ଠ ପୁତ୍ରମାନେ ଓ ଜମି ଭାଗରୁ ବଞ୍ଚିତ (Portionless) ସେମାନଙ୍କର କନ୍ୟାମାନେ । କାରଣ ଗିର୍ଜାର ଧର୍ମାଧ୍ୟକ୍ଷ (Bishop), ମଠାଧୀଶ (Abbot), ସନ୍ନ୍ୟାସିନୀ (Nun) ପ୍ରଭୃତି ଉଚ୍ଚପଦଗୁଡ଼ିକୁ ଏମାନେ ଏକଚାଟିଆ (monopolise) କରିଥିଲେ ଏବଂ ଧର୍ମଯାଜକଗୋଷ୍ଠୀରେ ଆଉ ଗୋଟିଏ ଉଚ୍ଚ ପାହ୍ୟାର ଧର୍ମଯାଜକଦଳ କରି ଗୋଷ୍ଠୀ ମଧ୍ୟରେ ବିଭେଦ ସୃଷ୍ଟି କରୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ବିଭବଶାଳୀ ଧର୍ମାଧ୍ୟକ୍ଷ ସେମାନଙ୍କର କର୍ତ୍ତବ୍ୟକୁ ଉପେକ୍ଷା କରି ନିଜ ନିଜର ଧର୍ମକ୍ଷେତ୍ର (diocesses) ଛାଡ଼ି ଭର୍ସାଇଲରେ ଅବସ୍ଥାନ କରିଥିଲେ ଏବଂ ଆମୋଦ-ପ୍ରମୋଦରେ ସମୟ କଟାଉଥିଲେ । ଏମାନଙ୍କର କଳଙ୍କମୟ ପାପାସକ୍ତ ଜୀବନଯାପନ ପ୍ରଣାଳୀ ଧର୍ମସଂସ୍ଥାକୁ ବଦନାମ କରିବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟଧର୍ମ ଉପରେ ମଧ୍ୟ ଆଞ୍ଚ ଆଣିଥିଲା ।

ନିମ୍ନ ପାହ୍ୟାର ଧର୍ମଯାଜକମାନଙ୍କୁ କୃଷକଶ୍ରେଣୀରୁ ଗ୍ରହଣ କରାଯାଉଥିଲା । ସେମାନଙ୍କର ବେତନ ଉଚ୍ଚପାହ୍ୟା ଧର୍ମଯାଜକଙ୍କର ଆୟ ତୁଳନାରେ ଅତି ସାମାନ୍ୟ । ତେଣୁ ସେମାନଙ୍କ ପକ୍ଷେ ନିଜ ନିଜର ଗୁଜୁରାଣ ମେଣ୍ଟାଇବା କଷ୍ଟକର ହୋଇପଡ଼ୁଥିଲା । ଏପରି ଦୀନହୀନ ଭାବରେ ଜୀବନଯାପନ କରିବା ହେତୁ ସେମାନଙ୍କର ଉଚ୍ଚ-ପଦସ୍ଥ ବ୍ୟକ୍ତିମାନଙ୍କ (ଉଚ୍ଚପାହ୍ୟାର ଧର୍ମଯାଜକ) ପ୍ରତି ଘୃଣା ଓ ହିଂସାଭାବ ଜାତ ହେଉଥିଲା । ସେମାନେ ଉଚ୍ଚ ପାହ୍ୟାକୁ ପଦୋନ୍ନତି ଆଶା କେବେହେଲେ କରିପାରୁ ନ ଥିଲେ । ପଲ୍ଲୀ ଗିର୍ଜାରେ (parish) ସେମାନେ ପୁରୋହିତ କାମ କରୁଥିଲେ । ସେମାନେ ନିଷ୍ଠାପର, ସାଧୁ ଓ କଠିନ ପରିଶ୍ରମୀ ଥିଲେ । କୃଷକଶ୍ରେଣୀରୁ ଆସିଥିବାରୁ ସେମାନଙ୍କର କୃଷକମାନଙ୍କ ପ୍ରତି ସହାନୁଭୂତି ଥିଲା । ପରସ୍ପର ପ୍ରତି ସହାନୁଭୂତି ଥିବାରୁ ଓ ସମଦଶା ଭୋଗୁଥିବାରୁ ନିମ୍ନ ପାହ୍ୟାର ଧର୍ମଯାଜକ ଓ କୃଷକ ଉଭୟ ଯଦି ସେମାନଙ୍କ ପ୍ରତି ଏପରି ଦୁର୍ବ୍ୟବହାର ଦେଖାଉଥିବା ସରକାର ବିରୁଦ୍ଧରେ ମିଳିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଧର୍ମଯାଜକଗୋଷ୍ଠୀର ସଂଖ୍ୟା ଏକଲକ୍ଷରୁ କିଛି ଅଧିକ ଥିଲା । ଏହା ଫ୍ରାନ୍ସର ଶତକଡ଼ା ଦୁଇଭାଗ ଲୋକସଂଖ୍ୟାରୁ କମ୍ ହେଲେ ମଧ୍ୟ ଫ୍ରାନ୍ସର ସମୁଦାୟ ଜମିର ପାଞ୍ଚ ଭାଗରୁ ଭାଗେ ଅଧିକାର କରି ରହିଥିଲେ । ସେମାନଙ୍କର ଅର୍ଥନୈତିକ କ୍ଷମତା ଯଥେଷ୍ଟ ଥିଲା । ଷୋଡ଼ଶ ଶତାବ୍ଦୀରୁ ଉଚ୍ଚ ପାହ୍ୟାର ଧର୍ମଯାଜକମାନେ ସେମାନଙ୍କ ସ୍ଥିତି (position) ପାଇଁ ରାଜାଙ୍କ ନିକଟରେ ଋଣୀ ହୋଇ ରହିଥିଲେ । କାରଣ ରାଜା ଧର୍ମବୃତ୍ତି ସବୁ (benefices) ସଂଭ୍ରାନ୍ତ ବ୍ୟକ୍ତିମାନଙ୍କ ପାଇଁ ସଂରକ୍ଷିତ କରୁଥିଲେ । ଏହା ଫରାସୀ ଗିର୍ଜାର ନିରପେକ୍ଷତା ଉପରେ ଆଞ୍ଚ ଆଣିଥିଲା । ଯେଉଁ ସନ୍ନ୍ୟାସୀ ସମ୍ପ୍ରଦାୟ ନିୟମାନୁଗତ ଧର୍ମଯାଜକମାନଙ୍କୁ ନେଇ ଗଠନ କରାଯାଇଥିଲା, ତାହାର ଦ୍ରୁତ ଅଧୋଗତି

ଅନୁଭୂତ ହୋଇଥିଲା; କାରଣ ଧର୍ମଯାଜକମାନେ ଜନତାର ସେବା ପ୍ରତି ଆଗ୍ରହୀ ହେଉ ନ ଥିଲେ । ବାସ୍ତବିକ ଫରାସୀ ଗିର୍ଜା ତାର ସମ୍ପତ୍ତି ଅନୁପାତରେ ସମାଜସେବା କରୁ ନ ଥିଲା । ଶିକ୍ଷା ସମ୍ବନ୍ଧୀୟ ଓ ଜନହିତୈଷୀ କାର୍ଯ୍ୟ ନିମିତ୍ତ ଅଭିପ୍ରେତ ହୋଇଥିଲେ ମଧ୍ୟ ସେ ସବୁ କାର୍ଯ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରୁଥିଲା । ତେଣୁ ସମାଜରୁ ନିରକ୍ଷରତା ଏବଂ ଦାରିଦ୍ର୍ୟ ଦୂରୀକରଣ ଦିଗରେ ଗିର୍ଜାଗୁଡ଼ିକର ଅବଦାନ ଅତି ନଗଣ୍ୟ । ସେମାନେ ସରକାରକୁ ସ୍ୱେଚ୍ଛାକୃତ ଅର୍ଥ ସାହାଯ୍ୟ କରୁଥିଲେ ସତ; କିନ୍ତୁ ଧନ ତୁଳନାରେ ଏ ସାହାଯ୍ୟ ଅତି ସାମାନ୍ୟ ଥିଲା ।

ବୃଇ-ତୃତୀୟାଂଶ ଧର୍ମଯାଜକ ନିମ୍ନ ପାଦ୍ରୀର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ସୁବିଧା ଉପଭୋଗୀ ଶ୍ରେଣୀରେ ସାମିଲ ହୋଇଥିଲେ । କିନ୍ତୁ କ୍ଷୋଭର ବିଷୟ ଯେ ସେ ଶ୍ରେଣୀରେ ସାମିଲ ହେଲେ ସୁଦ୍ଧା ସେଥିରୁ କୌଣସି ଫାଇଦା ଉଠାଇ ପାରୁନଥିଲେ । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଏହି ନିମ୍ନ ଶ୍ରେଣୀର ଧର୍ମଯାଜକମାନେ ହିଁ ଲୋକମାନଙ୍କୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରୁଥିଲେ ।

ଧର୍ମଯାଜକମାନେ ସାମାଜିକ ଓ ଅର୍ଥନୈତିକ ଦିଗରୁ ଭାଗ ଭାଗ ହୋଇଥିବାରୁ, ସେମାନେ ଗୋଟିଏ ନୈତିକ ସଂଘରେ ପରିଣତ ହୋଇପାରିନଥିଲେ । ତଥାପି ସେମାନଙ୍କର ବୃତ୍ତି ସମାନ (common calling) ଥିଲା ଓ ଗୋଟିଏ ଶ୍ରେଣୀବଦ୍ଧ ସଂଗଠନ (hierarchical organisation) ଥିଲା ।

ଅନ୍ୟ ଦିଗରେ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସ୍ୱାଧିକାର ରୂପକ ବନ୍ଧନ ବ୍ୟତୀତ ଅନ୍ୟ କୌଣସି ବନ୍ଧନରେ ଆବଦ୍ଧ ହୋଇ ନ ଥିଲେ । ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସମାଜରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ମୋଟଉପରେ କହିବାକୁ ଗଲେ ଏମାନଙ୍କ ପରି ଦାୟିତ୍ୱହୀନ ଦଳ କ୍ୱଚିତ୍ ଦେଖାଯାଆନ୍ତି । ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ସଂଖ୍ୟା ପ୍ରାୟ ଚାରି ଲକ୍ଷ ଥିଲା । ଏମାନେ ଏତେ ବେଶି ସଂଖ୍ୟାରେ ଥିଲେ ଯେ ଫ୍ରାନ୍ସର ୬୫୦ ଜଣ ବ୍ୟକ୍ତିଙ୍କ ଅନୁପାତରେ ଜଣେ ବ୍ୟକ୍ତି ସମ୍ଭ୍ରାନ୍ତ ବଂଶୀୟ ଥିଲେ । ଏମାନଙ୍କ ସମ୍ପ୍ରଦାୟକୁ ଯେଉଁ ପଦମର୍ଯ୍ୟାଦା ସଂଲଗ୍ନ କରା-ଯାଇଥିଲା ସେଥିରେ ବିଶେଷ ପାର୍ଥକ୍ୟ ଦେଖାଯାଉ ନ ଥିଲା । ସମ୍ଭ୍ରାନ୍ତ ଗୋଷ୍ଠୀକୁ ସାଧାରଣତଃ ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ । ଗୋଟିଏ ହେଲା ଖଣ୍ଡାଧାରୀ ସମ୍ଭ୍ରାନ୍ତ (Nobility of the Sword); ଅନ୍ୟଟି ହେଲା ପୋଷାକଧାରୀ ସମ୍ଭ୍ରାନ୍ତ (Nobility of the Robe) । ଖଣ୍ଡାଧାରୀ ସମ୍ଭ୍ରାନ୍ତମାନଙ୍କୁ ପୁରୁଷାନୁକ୍ରମିକ ସମ୍ଭ୍ରାନ୍ତ ବା ସାମନ୍ତ କୁହାଯାଉଥିଲା । ଏମାନଙ୍କ ମଧ୍ୟରୁ କେତେକ ଧନୀ; ତେଣୁ ଅନ୍ୟମାନଙ୍କର ଚକ୍ଷୁଶୂଳ ହୋଇଥିଲେ । ଯେଉଁମାନଙ୍କର ଧନ ଥିଲା ଓ ସବୁ ସୁବିଧା ଥିଲା, ସେମାନେ କୌଣସି ଶାସନଗତ ସାମର୍ଥ୍ୟ ନ ଦର୍ଶାଇ ନାଏବମାନଙ୍କ ଜିମାରେ ଜମିଦାରୀ ଛାଡ଼ି ସୁଖ-ସ୍ୱାଚ୍ଛନ୍ଦ୍ୟରେ ଜୀବନ ଯାପନ କରିବା ପାଇଁ ଭର୍ସାଇଲକୁ ଚାଲିଯାଉଥିଲେ । ଏମାନଙ୍କ ମଧ୍ୟରୁ କେତେକ ରାଜ-

ଦରବାରରେ ସ୍ଥାନ ପାଉଥିଲେ; ସେମାନଙ୍କୁ ପାରିଷଦ କୁହାଯାଉଥିଲା । ସେମାନେ ରାଜାଙ୍କର ବିଶେଷ ଅନୁଗ୍ରହ ପାଉଥିଲେ । କେତେକ ଉଚ୍ଚ ଚାକିରି, କେତେକ ସୈନ୍ୟ-ବାହିନୀରେ ଯୋଗଦେବା ପାଇଁ ନିଯୁକ୍ତିପତ୍ର ଓ ଆଉ କେତେକ ଅବସର-ବୃତ୍ତି (Pension) ପାଉଥିଲେ । ଦ୍ୱିତୀୟ ଗୋଷ୍ଠୀର ଅଧିକାଂଶ ପଲ୍ଲୀ-ଜୀବନ ଯାପନ କରୁଥିଲେ ଓ ସେମାନଙ୍କୁ ପଲ୍ଲୀବାସୀ ସମ୍ଭ୍ରାନ୍ତ ବ୍ୟକ୍ତି (Country nobles) କୁହାଯାଉଥିଲା । ଏମାନଙ୍କର ଜମିଦାରୀ ଥିବା ସତ୍ତ୍ୱେ ଏମାନେ ଏତେ ଦରିଦ୍ର ଯେ ଭର୍ସାଇଲ ଯିବା ଏମାନଙ୍କ ପକ୍ଷରେ ସମ୍ଭବପର ହେଉ ନ ଥିଲା । ନିଭୃତରେ ରହି (Seclusion) ଉଦ୍ଭଟଭାବ ପୋଷଣ କରୁଥିବାରୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରଜାମାନଙ୍କଠାରୁ ବଳପୂର୍ବକ ପାଉଣା ଆଦାୟ କରୁଥିଲେ ଓ ସେମାନଙ୍କ ପ୍ରତି ତାଚ୍ଛଲ୍ୟଭାବ ପ୍ରକାଶ କରିବାରେ ଆନନ୍ଦ ପାଉଥିଲେ । ଏମାନେ ସବୁପ୍ରକାର ଶାରୀରିକ ପରିଶ୍ରମ ଓ ବ୍ୟବସାୟ-ବାଣିଜ୍ୟକୁ ଘୃଣା କରୁଥିଲେ ଓ ସେସବୁ କରିବା ଅପମାନଜନକ ବୋଲି ମନେକରୁଥିଲେ । ଦାରିଦ୍ର୍ୟଜନିତ ଦୁଃଖରେ ସଢ଼ୁଥିଲେ ମଧ୍ୟ ଏମାନେ ସାମାଜିକ ବାସନ୍ଦକୁ (Social seclusion) ବଜାୟ ରଖିଥିଲେ । ରାଜଦରବାରରେ ସ୍ଥାନ ପାଇଥିବା ସମ୍ଭ୍ରାନ୍ତ ଲୋକଙ୍କୁ ଏମାନେ ହିଂସା କରୁଥିଲେ ଏବଂ ଯେଉଁ ମନମୁଖୀ ଶାସନ ସଂସ୍ଥା ଏମାନଙ୍କୁ ଉଚ୍ଚ ଚାକିରିରୁ ବଞ୍ଚିତ କରିଥିଲା, ତାହାର ଆମୂଳଚୂଳ ପରିବର୍ତ୍ତନ ଚାହୁଁଥିଲେ ।

ସମ୍ଭ୍ରାନ୍ତଲୋକମାନଙ୍କୁ ଏକତ୍ର ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ ସାଧାରଣତଃ ସମ୍ଭ୍ରାନ୍ତ ଲୋକେ ଧନୀ ନ ଥିଲେ । କାରଣ ସେମାନଙ୍କର ଜମିଦାରୀ ପୈତୃକ ସ୍ୱତ୍ୱ ଆଇନ ('Laws of inheritance') ପ୍ରଣୟନ ଫଳରେ ଉପବିଭାଜନ କମିବାରେ ଲାଗିଥିଲା । ଏତଦ୍‌ବ୍ୟତୀତ କେତେକ ଧନୀ ମଧ୍ୟବିତ୍ତ ଓ ଦରିଦ୍ର ସମ୍ଭ୍ରାନ୍ତ ଲୋକଙ୍କର ଜମିଦାରୀ କିଣିନେଇ ସମ୍ଭ୍ରାନ୍ତ ଉପାଧିରେ ଭୂଷିତ ହେଉଥିଲେ । ସମ୍ଭ୍ରାନ୍ତ ଗୋଷ୍ଠୀର ଯେଉଁ ଅଖଣ୍ଡତା ଥିଲା ତାହା କ୍ରମେ ଦୁର୍ବଳ ହୋଇପଡ଼ୁଥିଲା । ତେଣୁ ଅଧିକାଂଶ ସମ୍ଭ୍ରାନ୍ତ ଲୋକ ସେମାନଙ୍କର ପୂର୍ବ ବଂଶାବଳୀ ଖୋଜି ବାହାର କରିବାକୁ ସକ୍ଷମ ହେଉନଥିଲେ ।

ଏହି ସାମନ୍ତବାଦୀ ସମ୍ଭ୍ରାନ୍ତ ଲୋକଙ୍କ (feudal nobles) ପାଙ୍ଗକୁ ଆସିଲେ ସରକାରୀ ସମ୍ଭ୍ରାନ୍ତ ଲୋକେ (official nobles) ବା ପୋଷାକଧାରୀ ସମ୍ଭ୍ରାନ୍ତ ଲୋକ (nobles of the robe) । ଏହି ସମ୍ଭ୍ରାନ୍ତ ସମ୍ପ୍ରଦାୟକୁ (ସମ୍ଭ୍ରାନ୍ତଗୋଷ୍ଠୀରେ ସାମିଲ କରିବାର) ସନନ୍ଦପତ୍ର (Patents of nobility) ବଳରେ ସୃଷ୍ଟି କରାଯାଇଥିଲା ଏବଂ ଏହି ସନନ୍ଦପତ୍ରକୁ ଖରିଦ କରାଯାଇପାରୁଥିଲା । ମୁଖ୍ୟତଃ ବିଚାରପତିମାନଙ୍କୁ ବା ଉଚ୍ଚତର ବିଚାରାଳୟମାନଙ୍କର ସଦସ୍ୟମାନଙ୍କୁ ନେଇ ଏହି ସମ୍ଭ୍ରାନ୍ତ ସମ୍ପ୍ରଦାୟ ଗଠିତ ହୋଇଥିଲା । ଏମାନଙ୍କ ସଂଖ୍ୟା ମୋଟରେ ଚାରି ହଜାର । ଏହି ସମ୍ପ୍ରଦାୟର ରାଜନୈତିକ ପ୍ରଭାବ କେନ୍ଦ୍ରୀଭୂତ ହୋଇଥିଲା ପ୍ୟାରିସ ଅଦାଲତରେ

(Parliament of Paris) । ଏହି ଅଦାଲତ ରାଜାଙ୍କର କ୍ଷମତାକୁ କ୍ଷୁଣ୍ଣ କରିବାକୁ ପ୍ରବଳ ଉଦ୍ୟମ କରିବାରୁ ପଞ୍ଚଦଶ ଲୁଇ ଏଥିପ୍ରତି ଉତ୍‌କ୍ଷିପ୍ତ ହୋଇ ଏହି ଅନୁଷ୍ଠାନକୁ ଉଠାଇଦେଲେ; କିନ୍ତୁ ତାଙ୍କ ଉତ୍ତରାଧିକାରୀ ଅମାୟିକ ଷୋଡ଼ଶ ଲୁଇ ତାର ପୁନଃ ପ୍ରତିଷ୍ଠା କରିଥିଲେ । ଏହାର ଧାର୍ମିକ ବିଚାରପତିମାନେ ରାଜାଙ୍କ ବିରୁଦ୍ଧରେ ଖୋଲାଖୋଲି ସଂଗ୍ରାମ ଚଳାଇଥିଲେ ମଧ୍ୟ ପ୍ରଗତିବାଦୀ ନ ଥିଲେ । ସମ୍ବାଦପତ୍ର ସ୍ୱାଧୀନତା ଓ ସାମାଜିକ, ଅର୍ଥନୈତିକ ଏବଂ ବିଚାର ସମ୍ବନ୍ଧୀୟ ସବୁ ପ୍ରକାର ସଂସ୍କାରକୁ ବିରୋଧ କରୁଥିଲେ । କ୍ଷମତା-ଶାଳୀ ରାଜାଙ୍କୁ ପ୍ରତିରୋଧ କରୁଥିବାରୁ ଏମାନେ ବିଶେଷ ଗୌରବ ଅର୍ଜନ କରିଥିଲେ । ତଥାପି ଏମାନଙ୍କୁ ସାମନ୍ତବାଦୀ ସମ୍ଭ୍ରାନ୍ତମାନେ ସେମାନଙ୍କର ସମକକ୍ଷ ବୋଲି ମନେ କରୁନଥିଲେ; କାରଣ ଏମାନେ ସାଧାରଣତଃ ମଧ୍ୟବିତ୍ତଗୋଷ୍ଠୀରୁ ଆସିଥିଲେ ଏବେ ସୁବିଧା ଉପଭୋଗୀଙ୍କ ସଂଖ୍ୟା ବୃଦ୍ଧି କରିଥିଲେ । ସାମନ୍ତବାଦୀ ସମ୍ଭ୍ରାନ୍ତମାନେ ସମାଜରେ ଅଧିକ ସମ୍ମାନ ପାଉଥିବାରୁ ସେମାନଙ୍କ ପ୍ରତି ଈର୍ଷାପରାୟଣ ହୋଇଥିଲେ ।

ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସାଧାରଣତଃ କୃଷକମାନଙ୍କୁ ରକ୍ଷା କରିବା ଏବଂ ନ୍ୟାୟ ଦେବା ଦାୟିତ୍ୱରୁ ଅବ୍ୟାହତି ପାଇଥିଲେ ସୁଦ୍ଧା ସେମାନଙ୍କଠାରୁ ଖଜଣା ଓ ଅନ୍ୟାନ୍ୟ ସେବାକାର୍ଯ୍ୟ ବଳପୂର୍ବକ ଆଦାୟ କରିବାର ଅଧିକାର ବଜାୟ ରଖିଥିଲେ । ଫରାସୀ ରାଷ୍ଟ୍ର ସାମନ୍ତବାଦୀ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କଠାରୁ ଦାୟିତ୍ୱଗୁଡ଼ିକ ନେଇଯାଇ ସେମାନଙ୍କୁ ସାନ୍ତ୍ୱନା ଦେବାପାଇଁ ସାମନ୍ତ ପ୍ରଥା ଯୁଗର ଅଧିକାରଗୁଡ଼ିକ ଛାଡ଼ିଦେଇଥିଲେ । ଅଧିକାରଗୁଡ଼ିକ ଦାୟିତ୍ୱରୁ ବିଚ୍ଛିନ୍ନ କରାଯିବାରୁ ଅସନ୍ତୋଷ ଓ ଅଶାନ୍ତିର ବହ୍ନି ଜଳିଉଠିଲା । ତେଣୁ ଲଜ୍ ଯଥାର୍ଥରେ କହିଥିଲେ ଯେ 'ଫରାସୀ ରାଷ୍ଟ୍ର-ବିପ୍ଳବ ତାହାର ଧ୍ୱଂସକାରୀ ଶକ୍ତିକୁ ସାମନ୍ତବାଦ ବିରୁଦ୍ଧରେ ପ୍ରୟୋଗ ନକରି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ତିଷ୍ଠି ରହିଥିବା ସାମନ୍ତ ଯୁଗୀୟ ପ୍ରଥା ବିରୁଦ୍ଧରେ ପ୍ରୟୋଗ କରିଥିଲେ ।' (Hence Lodge remarked, 'it was not against the feudal system, but effete survival of parts of the system, that the Revolution directed its destructive energy.")

ସମ୍ଭ୍ରାନ୍ତଗୋଷ୍ଠୀର ଲୋକେ ପ୍ରାୟ କର ଦେବାରୁ ଛାଡ଼ପାଇଥିଲେ । ସେମାନେ ଟେଲ (taille) ବା ଜମିର (କେତେକଙ୍କ ମତରେ ସମ୍ପତ୍ତିର) ଖଜଣା ଦେବାରୁ ମଧ୍ୟ ମୁକ୍ତି ପାଇଥିଲେ । ସେମାନଙ୍କ ଉପରେ ସାଧାରଣ ରାସ୍ତା ସଂରକ୍ଷଣର ଭାର ମଧ୍ୟ ନ ଥିଲା । ତେଣୁ ସେମାନେ କର୍‌ଭି (corvee)ରୁ ବା ବେଠିରୁ ଉଦ୍ଧାର ପାଇଥିଲେ । ସେମାନଙ୍କ ପ୍ରତି ବାଧ୍ୟତାମୂଳକ ସୈନ୍ୟଶ୍ରେଣୀଭୁକ୍ତି ଆଇନ ଲାଗୁ ହେଉନଥିଲା କିମ୍ବା ସେମାନଙ୍କୁ ସୈନ୍ୟ-ମାନଙ୍କର ବାସସ୍ଥାନ ଯୋଗାଇ ଦେବାପାଇଁ ନିର୍ଦ୍ଦେଶ ଦିଆଯାଇଥିବା ନିଦର୍ଶନପତ୍ରମାନ (billets) ଦିଆଯାଉ ନ ଥିଲା । ତେଣୁ ସେମାନଙ୍କ ଉପରେ ସୈନ୍ୟମାନଙ୍କର ଭରଣପୋଷଣ ଭାର କେବେ ପଡ଼ୁନଥିଲା । ସେମାନଙ୍କ ହାତରେ ଯଦୃଚ୍ଛ ଭୂସମ୍ପତ୍ତିର ଅଧିକାର ପୁରାପୁରି

ନ୍ୟସ୍ତ କରାଯାଇଥିଲା, ସେମାନେ କେବଳ ମୁଣ୍ଡପିଛା କର (capitation tax) ଅତି ଅଳ୍ପ ପରିମାଣରେ ଦେଉଥିଲେ । ସେମାନେ ମଧ୍ୟ ଧର୍ମଯାଜକମାନଙ୍କ ସହିତ ମିଳିମିଶି ଜାତୀୟ ଆୟର ମୁଖ୍ୟ ଅଂଶ ଭୋଗ କରୁଥିଲେ ଏବଂ ନିମ୍ନ ଶ୍ରେଣୀର ଲୋକମାନଙ୍କ ଉପରେ କର ଭାର ଲଦି ଦେଉଥିଲେ ।

ପ୍ରଥମ ଦୁଇ ଗୋଷ୍ଠୀରେ ଯେଉଁମାନେ ଅନ୍ତର୍ଭୁକ୍ତ ହୋଇନଥିଲେ ସେ ସମସ୍ତଙ୍କୁ ତୃତୀୟ ଗୋଷ୍ଠୀରେ ସାମିଲ କରାଯାଇଥିଲା । ଧର୍ମଯାଜକ ଗୋଷ୍ଠୀର ସଂଖ୍ୟା ଏକଲକ୍ଷରୁ କିଛି ଅଧିକ ଏବଂ ସମ୍ଭ୍ରାନ୍ତ ଗୋଷ୍ଠୀର ସଂଖ୍ୟା ପ୍ରାୟ ଚାରିଲକ୍ଷ ହେବା ସ୍ଥଳେ ସାଧାରଣ ବା ତୃତୀୟ ଗୋଷ୍ଠୀର ସଂଖ୍ୟା ଅବଶିଷ୍ଟ ଦୁଇଶହ ପଚିଶ ଲକ୍ଷ ଥିଲା । ତୃତୀୟ ଗୋଷ୍ଠୀରେ କୃଷକ ଓ ମଜଦୁର୍‌ମାନଙ୍କ ବ୍ୟତୀତ ମଧ୍ୟବିତ୍ତମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଥିଲା ।

ତେଣୁ ଏହା ଗୋଟିଏ ବ୍ୟାପକ ବିଭାଗ (comprehensive category) ଏବଂ ଏଥିରେ ଦରିଦ୍ର ଶିକ୍ଷା ନବିସ୍ (poor apprentice), ଦୋକାନ ମାଲିକ ଓ କ୍ଷେତ ମଜଦୁର୍‌ଙ୍କ ସହିତ ବଡ଼ ବଡ଼ ପୁଞ୍ଜିପତିମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇଥିଲା । ତୃତୀୟ ଗୋଷ୍ଠୀର ଅଧିକାଂଶ ଥିଲେ କୃଷକ ଓ ସେମାନେ ସମୁଦାୟ ଜନସଂଖ୍ୟାର ପ୍ରାୟ ଦଶଭାଗରୁ ନଅଭାଗ ଥିଲେ । ସେଥିମଧ୍ୟରୁ ପ୍ରାୟ ଦଶଲକ୍ଷ ଲୋକ ଥିଲେ ଭୂମିଦାସ ବା ସର୍ଫ (serf) । ଏମାନେ କ୍ରୀତଦାସ ନହେଲେ ମଧ୍ୟ ଏମାନଙ୍କର ସ୍ୱାଧୀନତା ନଥିଲା ଏବଂ ଏମାନେ (ଚାଷ କରୁଥିବା ଜମିଦାରଙ୍କ) ଜମି ବିକି ସଙ୍ଗେ ବିକି ହୋଇଯାଉଥିଲେ । ଇଉରୋପର ଅନ୍ୟାନ୍ୟ ଦେଶ ତୁଳନାରେ ଏମାନଙ୍କ ସଂଖ୍ୟା ନଗଣ୍ୟ । ସାଧାରଣତଃ କୃଷକମାନେ ଯେଉଁ ଜମି ଚାଷ କରୁଥିଲେ ସେଥିର ମାଲିକ ବିବେଚିତ ହେଉଥିଲେ ସୁଦ୍ଧା ସେମାନେ ସାମନ୍ତପ୍ରଥାରେ ନିହିତ ନାନାପ୍ରକାର ସେବାକାର୍ଯ୍ୟରୁ ଅବ୍ୟାହତି ପାଇନଥିଲେ କି ବାର୍ଷିକ ଭୂମିକର ପରି ବର୍ଷକୁ ବର୍ଷ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଦେବାରୁ ମୁକ୍ତ ପାଇନଥିଲେ । ତେଣୁ ଏମାନଙ୍କୁ ବଂଶାନୁକ୍ରମିକ ପଟ୍ଟାଦାର କହିବା ଅଧିକ ସଂଗତ ହେବ । ରାଜା କାଳକ୍ରମେ ସାମନ୍ତବାଦୀ ସମ୍ଭ୍ରାନ୍ତମାନଙ୍କଠାରୁ ବା ଜମିଦାରମାନଙ୍କଠାରୁ (Feudal lords) କୃଷକମାନଙ୍କୁ ରକ୍ଷା କରିବା ଓ ନ୍ୟାୟଦେବା ଦାୟିତ୍ୱ ଗ୍ରହଣକଲେ ମଧ୍ୟ କୃଷକମାନଙ୍କ ଉପରେ ଥିବା ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିନଥିଲେ । ସାମନ୍ତପ୍ରଥା ପ୍ରଚଳନ ଥିଲାବେଳେ କୃଷକ-ମାନଙ୍କୁ ସେମାନଙ୍କ ଜମିଦାରଙ୍କ (lord) ଜମିଦାରୀରେ ଥିବା ଜମିରେ ସପ୍ତାହରେ ନିର୍ଦ୍ଦିଷ୍ଟ କେତେଦିନ ଯେକୌଣସି କାମ କରିବା ବାଧ୍ୟତାମୂଳକ ଥିଲା । ତାହା ବିନିମୟରେ ସେମାନଙ୍କୁ ସାମାନ୍ୟ ପରିମାଣର ଅର୍ଥ ଦେବାକୁ ପଡ଼ୁଥିଲା, କିମ୍ବା ଫସଲର ୧/୨ ଭାଗରୁ ୧/୭ ଭାଗ ଭିତରେ ଦେବାକୁ ପଡ଼ୁଥିଲା । ଏହାଛଡ଼ା କୃଷକର ଘର ଓ ଜମିଦାରଙ୍କ ହାଟ ମଧ୍ୟରେ ଥିବା ରାସ୍ତା ଓ ପୋଲ ଦେଇ କୃଷକମାନେ ହାଟକୁ ଗଲାବେଳେ ସେମାନଙ୍କଠାରୁ ରାସ୍ତାରେ କିମ୍ବା ପୋଲ ଉପରେ ମାସୁଲ ଆଦାୟ କରାଯାଇ ଜମିଦାରଙ୍କୁ ଦିଆଯାଉଥିଲା ।

ଜମିଦାରମାନେ ବା ସାମନ୍ତମାନେ କେବଳ ଶିକାର କରିବା ଓ ମାଛ ଧରିବାର ଅଧିକାର ପାଇଥିଲେ । କୃଷକମାନେ ସେମାନଙ୍କର ଜମିଦାରଙ୍କ ମଦ କାରଖାନାକୁ ଦ୍ରାକ୍ଷା, ରୁଟିକାରଖାନାକୁ ମଇଦା, କଂସାଇଖାନାକୁ ଗୋ-ମହିଷାଦି ଗୃହପାଳିତ ପଶୁ ଓ କଳଚୁଲା (oven)କୁ ଶସ୍ୟ ପଠାଇବାକୁ ବାଧ୍ୟ ହେଉଥିଲେ; ପ୍ରତ୍ୟେକ ଜିନିଷକୁ ପ୍ରସ୍ତୁତ କରିବା ପାଇଁ ସେମାନଙ୍କଠାରୁ ଖରଚ୍ଚ ବା ଫିସ୍ ଆଦାୟ କରାଯାଉଥିଲା । ଗହମ ପେଷିବା ବ୍ୟବସାୟ ସାଧାରଣତଃ ଜଣେ ବ୍ୟକ୍ତିକୁ ପଟ୍ଟା ଦିଆଯାଉଥିବାରୁ ମିଲ୍ ମାଲିକମାନେ ଅଟାରେ ଚୂନ ମିଶାଉଥିବାର ଅଭିଯୋଗ ବରାବର ହେଉଥିଲା । ଜଣେ ମନ୍ତ୍ରୀ ପ୍ରମାଣ ପାଇଲା ପରେ ଦୃଢ଼ସ୍ୱରରେ କହିଥିଲେ ଯେ ରାଜ୍ୟର ଗୃହସ୍ଥରାକୁ ଅନେକ ଲୋକ ଖରାପ ରୁଟି ଖାଆନ୍ତି । କୃଷକମାନେ ଜମିମାଲିକ ହେଲେ ମଧ୍ୟ ସେମାନେ ଯେଉଁ ଜମିରେ ଘରଦ୍ୱାର କରି ରହୁ-ଥିଲେ ସେ ଜମିରେ ଫସଲକୁ ରକ୍ଷାକରିବା ପାଇଁ ବାଡ଼ ବସାଇପାରୁନଥିଲେ; କାରଣ ସାମନ୍ତମାନଙ୍କ ଶିକାରରେ ବାଧାପଡ଼ିବ । କୃଷକମାନଙ୍କର ପନିପରିବା ଓ ଶସ୍ୟ ପ୍ରଭୃତି ହରିଣ ଓ ଠେକୁଆମାନେ ଖାଇ ନଷ୍ଟ କରିଦେଲେ ମଧ୍ୟ ସେମାନେ ସାମନ୍ତମାନଙ୍କର ଶିକାର ହୋଇଥିବାରୁ ସେମାନଙ୍କୁ ଘଉଡ଼ାଇ ଦେବାକୁ କୃଷକମାନଙ୍କୁ ଅନୁମତି ଦିଆଯାଉନଥିଲା । ତିତିର ପକ୍ଷୀମାନଙ୍କୁ (partidges) ସେମାନଙ୍କ ନିଡ଼ରେ ରହିବାକୁ ବାଧାନଦେବା ଉଦ୍ଦେଶ୍ୟରେ କୃଷକମାନଙ୍କୁ ବର୍ଷର ନିର୍ଦ୍ଦିଷ୍ଟ କେତେ ଋତୁରେ ଜମି ଚାଷକରିବା ପାଇଁ ବାରଣ କରାଯାଇଥିଲା । ଶସ୍ୟ ଉତ୍ପାଦନବେଳେ ତାକୁ ଜଗିବା ପାଇଁ ଏବଂ ଶସ୍ୟ ସଂଗ୍ରହ ପରେ ତାକୁ ବିକିବା ପାଇଁ ପଇସାଦେଇ କୃଷକମାନଙ୍କୁ ଅନୁମତି ଆଣିବାକୁ ପଡ଼ୁଥିଲା । କହିବା ବାହୁଲ୍ୟ ଯେ କୃଷକମାନଙ୍କ ଉପରେ ଏସବୁ କ୍ଷମତା ପ୍ରୟୋଗ କରାଯାଉଥିବାରୁ ସେମାନେ ଅତିଶୟ କ୍ଷୁବ୍ଧ ହୋଇଥିଲେ । ସାଧାରଣତଃ କୃଷକର ଅବସ୍ଥା ଯେ ଉଦ୍‌ବେଗ-ଜନକ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । ତାକୁ ରାଷ୍ଟ୍ର-କର ବହନ କରିବା ବ୍ୟତୀତ ଗିର୍ଜା-କର (tithe) ଏବଂ ସାମନ୍ତପ୍ରଥା ଅନ୍ତର୍ଭୁକ୍ତ ବିଭିନ୍ନ କର ଓ ସେବାଭାର ମଧ୍ୟ ବହନ କରିବାକୁ ପଡ଼ୁଥିଲା । ସବୁଠାରୁ ଗ୍ରାମ୍ୟ ମଜଦୁର୍‌ମାନଙ୍କ ଅବସ୍ଥା ଅତି ଶୋଚନୀୟ ଥିଲା ଏବଂ ସେମାନେ ଯେଉଁ ମଜୁରି ପାଉଥିଲେ ସେଥିରେ ପେଟ ପୋଷିବା ମଧ୍ୟ କଷ୍ଟକର ହୋଇ-ପଡ଼ୁଥିଲା । ଫ୍ରାନ୍ସର କୃଷି ଅତି ଅନୁନ୍ନତ ଅବସ୍ଥାରେ ଥିଲା; କାରଣ କୃଷକମାନଙ୍କର ପାଣ୍ଠି ନଥିଲା କି ଇଂଲଣ୍ଡରେ ଥିବା ଭଳି ବଡ଼ ବଡ଼ ଜମିଦାରୀ ପ୍ରାପ୍ୟ ନଥିଲା ଯେଉଁଠି କି ଚାଷକୁ କେନ୍ଦ୍ରୀଭୂତ କରାଯାଇ ଅଧିକ ପରିମାଣରେ ଫସଲ ଆଦାୟ କରାଯାଇ ପାରୁଥାଆନ୍ତା ।

ଫରାସୀ କୃଷକମାନେ ଏତେ ଦୁଃଖ କଷ୍ଟ ଭୋଗୁଥିବା ସତ୍ତ୍ୱେ ସେମାନଙ୍କର ଅବସ୍ଥା ପ୍ରୁସିଆ, ରୁଷିଆ, ଅଷ୍ଟ୍ରିଆ, ସ୍ପେନ, ଇଟାଲୀ ପ୍ରଭୃତି ଦେଶମାନଙ୍କରେ ଥିବା କୃଷକମାନଙ୍କର ଅବସ୍ଥା ଅପେକ୍ଷା ଯେ ଅଧିକ ସ୍ୱଚ୍ଛଳ ଥିଲା ଏଥିରେ ସନ୍ଦେହ ନାହିଁ ।

ମଧ୍ୟବିତ୍ତମାନେ ତୃତୀୟ ଗୋଷ୍ଠୀରେ ସାମିଲ ହୋଇଥିଲେ । ଆଇନଜୀବୀ, ଇଞ୍ଜିନିୟର, ଡାକ୍ତର, ଅଧ୍ୟାପକ, ଶିକ୍ଷକ, ବଣିକ, ବ୍ୟବସାୟୀ ଓ ଶିଳ୍ପପତି ଏମାନଙ୍କ ଶ୍ରେଣୀର ଅନ୍ତର୍ଭୁକ୍ତ ଥିଲେ । ଏହି ଶ୍ରେଣୀ ଏତେ ବ୍ୟାପକ ଯେ ଏଥିରେ ଦୋକାନ କାଉଣ୍ଟରରେ କାମ ଶିଖୁଥିବା ଶିକ୍ଷାନବିସ୍‌ଠାରୁ ଆରମ୍ଭ କରି ବଡ଼ ବଡ଼ ପୁଞ୍ଜିପତିମାନଙ୍କୁ ଅନ୍ତର୍ଭୁକ୍ତ କରାଯାଉଥିଲା । ନିମ୍ନ ସ୍ତରରେ ଥିବା ଶିକ୍ଷାନବିସମାନଙ୍କ ଅବସ୍ଥା ସାଧାରଣ କୃଷକମାନଙ୍କ ଅବସ୍ଥା ଅପେକ୍ଷା ଭଲ ନଥିବା ସ୍ଥଳେ ଶୀର୍ଷ ସ୍ତରରେ ଥିବା ପୁଞ୍ଜିପତିମାନେ ନିଜ ବିଭବ ବଳରେ ଦ୍ୱିତୀୟ ଗୋଷ୍ଠୀ ବା ସମ୍ଭ୍ରାନ୍ତ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହେବାର ବହୁ ସମ୍ଭାବନା ରହିଥିଲା । ଏହି ଶ୍ରେଣୀର ଶକ୍ତି ଓ ସାମର୍ଥ୍ୟ ଏକତା ଉପରେ ଆଧାରିତ ନ ହୋଇ ଧନଶାଳୀ ଲୋକମାନଙ୍କ ଉପରେ ନିର୍ଭର କରୁଥିଲା । ଧନଶାଳୀ ଲୋକମାନଙ୍କ ସାଙ୍ଗରେ କେତେକ ବୁଦ୍ଧିମାନ (intellectuals) ଲୋକ ଆସି ଯୋଗଦେଇ ନୈତିକ ନେତୃତ୍ୱ (moral leadership) ଦେଇଥିଲେ ।

ପୁଞ୍ଜିବାଦର ବିକାଶ ଯେତେବେଳେ ଉଭୟ ଶିଳ୍ପ ଓ ବାଣିଜ୍ୟକୁ ପ୍ରଭାବିତ କଲା ସେତେବେଳେ ବଣିକ ସମ୍ପ୍ରଦାୟ (mercantile element)ର ଦୃଷ୍ଟିଭଙ୍ଗୀ ବାସ୍ତବିକ୍ ସୀମିତ ହୋଇଗଲା । ତଥାପି ଶିଳ୍ପ ଗିଲ୍‌ଡଗୁଡ଼ିକ (ସଂଘଗୁଡ଼ିକ) ମୁଠାରେ ରହିଥିଲା, କିନ୍ତୁ ଗିଲ୍‌ଡଗୁଡ଼ିକ ସରକାରଙ୍କ ହାତମୁଠାରେ ଥିଲା । କଳକବ୍ଜାର ଆବିର୍ଭାବ ପୂର୍ବରୁ କାରିଗର (master) ଚାରି ଲୋକମାନଙ୍କ ସହିତ କାମ କରୁଥିଲା, କିନ୍ତୁ ଶିଳ୍ପ ପରିବାର କେବେହେଲେ ଜଣେ ସହାନୁଭୂତିଶୀଳ ମୁଖ୍ୟ ଅଧୀନରେ ଗୋଟିଏ ସୁଖୀ ପରିବାର ହୋଇପାରୁ ନଥିଲା । ଜଣେ ଦକ୍ଷ ଶ୍ରମିକ ପକ୍ଷରେ ଜଣେ କାରିଗର ହେବାର ସମ୍ଭାବନା ପ୍ରାୟ ନଥିଲା । ତାହାର ମଜୁରି ଜୀବିକା ନିର୍ବାହର ଖର୍ଚ୍ଚ (cost of living) ତୁଳନାରେ ଅତି ସ୍ୱଳ୍ପ ଥିଲା । ଦୋକାନରେ ଥିବା ନିମ୍ନସ୍ତରର ଶିକ୍ଷାନବିସ ବେପାର ବାଣିଜ୍ୟ ଶିଖିବା ପାଇଁ ଚାରିବର୍ଷରୁ ଆଠବର୍ଷ ପର୍ଯ୍ୟନ୍ତ କାରିଗରଙ୍କ ଅଧୀନରେ ରହୁଥିଲା ଏବଂ ପାରିଶ୍ରମିକ ହିସାବରେ ଗଣ୍ଡେ ଖାଇବାକୁ ଓ ରହିବାକୁ କିଛି ପାଉଥିଲା । ବିନା ଅନୁମତିରେ ସେ ଦୋକାନ ଛାଡ଼ିଯାଇ ପାରୁନଥିଲା ଏବଂ ତାକୁ ବିଭିନ୍ନପ୍ରକାର କାମ କରିବାକୁ ପଡ଼ୁଥିଲା । ଭାଗ୍ୟର ବିଡ଼ମ୍ବନା ଏହି ଯେ କାରିଗରମାନେ ମାଲିକ ବୋଲାଉଥିଲେ ମଧ୍ୟ ସେମାନେ ସେମାନଙ୍କ ଅଧୀନରେ କାମ କରୁଥିବା ଲୋକମାନଙ୍କଠାରୁ କିଛି ଭଲରେ ନଥିଲେ । ସରକାରଙ୍କର ସହାୟତା ପାଇଁ ବର୍ଷ ବର୍ଷ ଧରି ସେମାନଙ୍କୁ ବିଭିନ୍ନ ଦେୟ ଦେବାକୁ ପଡ଼ୁଥିଲା । ପଞ୍ଚଦଶ ଲୁଇଙ୍କ ସମୟରେ ଲାଇସେନ୍‌ସ ଫିସ୍ ଏତେ ଅଧିକ ହେଲା ଯେ ଅନେକଗୁଡ଼ିଏ ଗିଲ୍‌ଡ ଦେବାଳିଆ ହୋଇଗଲେ ।

କାରିଗରମାନେ ଗିଲ୍‌ଡ ସଂସ୍ଥା ମଧ୍ୟରେ ଆବଦ୍ଧ ହୋଇଥିବାରୁ ସେମାନଙ୍କ ଅବସ୍ଥା ସ୍ୱଚ୍ଛଳ ହେବାର ଆଶା ନଥିଲା । କିନ୍ତୁ ଅନ୍ୟ ଦିଗରେ ବଡ଼ ବଡ଼ ଉତ୍ପାଦନକାରୀମାନେ

ବହୁତ ଧନ ଜମାଇ ରଖୁଥିଲେ । ଅଷ୍ଟାଦଶ ଶତାବ୍ଦୀରେ ପୁଞ୍ଜି ପୂର୍ବାପେକ୍ଷା ଅଧିକ କ୍ଷେତ୍ରରେ ଖଟା ଯାଉଥିଲା । କିନ୍ତୁ ଉତ୍ପାଦନକାରୀମାନଙ୍କ ଠାରୁ କର ସଂଗ୍ରାହକମାନେ (Intendants) ଅଧିକ ଧନୀ ଥିଲେ ଏବଂ ସେମାନେ ରାଜାଙ୍କୁ ଟଙ୍କା କରଜ ଦେଉଥିଲେ । ଅନେକ ବଣିକ ବୈଦେଶିକ ବାଣିଜ୍ୟରୁ ଲାଭ ଉଠାଇ ଧନଶାଳୀ ହୋଇଥିଲେ । ଫରାସୀମାନେ ଲେଭାଣ୍ଟ ସହିତ ବାଣିଜ୍ୟ କାରବାରରେ ଇଂରେଜମାନଙ୍କୁ ବହୁତ ପଛରେ ପକାଇ ଦେଇଥିଲେ ଏବଂ ଅଷ୍ଟାଦଶ ଶତାବ୍ଦୀର ଆରମ୍ଭରୁ ସେମାନଙ୍କର ଫରାସୀ ପଶ୍ଚିମ ଦ୍ୱୀପପୁଞ୍ଜ (the French West Indies) ସହିତ ବେପାର ପରିମାଣ ପ୍ରାୟ ଦଶଗୁଣ ବଢ଼ିଯାଇଥିଲା । ମୋଟରେ କହିବାକୁ ଗଲେ ପଞ୍ଚଦଶ ଲୁଇଙ୍କର ମୃତ୍ୟୁ ସମୟରୁ ଫ୍ରାନ୍ସର ଅର୍ଥନୈତିକ ଅବସ୍ଥା (ଅଧିକାଂଶ କୃଷକମାନଙ୍କର ଅବସ୍ଥାକୁ ବାଦଦେଲେ) କ୍ରମେ କ୍ରମେ ଉନ୍ନତ କରିଥିଲା । ମଧ୍ୟବିତ୍ତଶ୍ରେଣୀର ଲୋକେ ବିଶେଷତଃ ଉଚ୍ଚସ୍ତରରେ ଥିବା ମଧ୍ୟବିତ୍ତ ଶ୍ରେଣୀର ଗୋଷ୍ଠୀ ଉଚ୍ଚଶିକ୍ଷିତ, ଧନଶାଳୀ ଏବଂ ଶାସନ କ୍ଷେତ୍ରରେ ଅନେକ ପଦର ଅଧିକାରୀ ହେଲେ ମଧ୍ୟ ଉଚ୍ଚତମ ରାଜନୈତିକ ସମ୍ମାନରୁ ବଞ୍ଚିତ ହୋଇଥିଲେ । ଅନ୍ୟ ଦିଗରେ ଏହି ସମ୍ମାନ ଆଳସ୍ୟପରାୟଣ ଅର୍ଦ୍ଧଶିକ୍ଷିତ ସମ୍ଭ୍ରାନ୍ତଗୋଷ୍ଠୀର ଲୋକମାନଙ୍କ ପାଇଁ ସଂରକ୍ଷିତ ଥିଲା । ଏତଦ୍‌ବ୍ୟତୀତ ସମ୍ଭ୍ରାନ୍ତଗୋଷ୍ଠୀର ଲୋକେ ସମାଜକୁ ନିୟନ୍ତ୍ରିତ କରୁଥିବାରୁ ସେମାନେ ମଧ୍ୟବିତ୍ତଶ୍ରେଣୀର ଲୋକମାନଙ୍କୁ ସମାଜରେ ସେମାନଙ୍କର ସମକକ୍ଷ ବୋଲି ବିଚାରୁ ନଥିଲେ ଏବଂ ଘୃଣା ଚକ୍ଷୁରେ ଦେଖୁଥିଲେ । ମଧ୍ୟବିତ୍ତଶ୍ରେଣୀର ନେତ୍ରୀ ମ୍ୟାଡ଼ାମ୍ ରୋଲାଣ୍ଡଙ୍କର ତିକ୍ତ ଅନୁଭୂତ ଗୋଟିଏ ଅସାଧାରଣ ଘଟଣା ନୁହେଁ । ସେ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କଦ୍ୱାରା ରାତ୍ରିଭୋଜନକୁ ନିମନ୍ତ୍ରିତ ହୋଇଯାଇ ଦେଖିଲେ ଯେ ତାଙ୍କୁ ଚାକର ବାକର ରହୁଥିବା ଘରେ ଖାଇବାକୁ ପଡ଼ିବ, ଅଥଚ ନିମନ୍ତ୍ରିତ ହୋଇଯାଇଥିବା ସମ୍ଭ୍ରାନ୍ତମାନଙ୍କ ପାଇଁ ଗୋଟିଏ ବଡ଼ ସୁସଜ୍ଜିତ ଭୋଜନ ପ୍ରକୋଷ୍ଠରେ ଖାଇବାର ବନ୍ଦୋବସ୍ତ ହୋଇଥିଲା ।

ମଧ୍ୟବିତ୍ତଶ୍ରେଣୀର ଲୋକେ ଅନୁଭବ କରିଥିଲେ ଯେ ସାମାଜିକ ସ୍ୱୀକୃତି (Social recognition) ପାଇଁ ବଂଶ ମର୍ଯ୍ୟାଦା ଅପେକ୍ଷା ବରଂ ଯୋଗ୍ୟତା ମାପକାଠି ହେବା ଉଚିତ । ଫ୍ରାନ୍ସର ସାଧାରଣ ସମୃଦ୍ଧି ପାଇଁ ବହୁ ପରିମାଣରେ ଦାୟୀ ହୋଇଥିବାରୁ ଓ ସରକାରକୁ କର ଦେବା ସଙ୍ଗେ ସଙ୍ଗେ ଋଣଦେଇ ବଞ୍ଚାଇ ରଖିଥିବାରୁ ସେମାନେ ଉଚ୍ଚତମ ରାଜନୈତିକ ସମ୍ମାନରୁ ବଞ୍ଚିତ ନ ହେବା ପାଇଁ ଦାବି କରୁଥିଲେ । ସେମାନଙ୍କ ମତରେ "ବଂଶୀବାଦକଙ୍କର ଖର୍ଚ୍ଚ ଯେଉଁମାନେ ବହନ କରିବେ ସେମାନେ ହିଁ କେବଳ ତାଙ୍କୁ ବଂଶୀ ବଜାଇବା ପାଇଁ କହିପାରିବେ ।" (Those who pay the piper shall call the tune.) ଠିକ୍ ସେହିପରି ମଧ୍ୟବିତ୍ତଶ୍ରେଣୀର ଲୋକେ କର ଓ ଋଣ ଦେଇ ସରକାରଙ୍କ ଖର୍ଚ୍ଚ ବହନକରୁଥିବାରୁ ସେମାନେ ଶାସନର କର୍ଣ୍ଣଧାର ହେବା

ହଉଛି । କେତେକ ମଧ୍ୟବିତ୍ତ ଲୋକ ମଣ୍ଟେସ୍କ୍ୟୁ ପ୍ରଭୃତି ଦାର୍ଶନିକମାନଙ୍କଦ୍ୱାରା ପ୍ରଭାବିତ ହୋଇ ଫ୍ରାନ୍ସର ସ୍ୱେଚ୍ଛାଚାରୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ମଧ୍ୟ ଗୋଟିଏ ସମ୍ପ୍ରଦାୟ ହିସାବରେ ମଧ୍ୟବିତ୍ତମାନେ ରାଜତନ୍ତ୍ରକୁ ଅଗ୍ରାହ୍ୟ କରୁନଥିଲେ । ସେମାନେ କେବଳ ଉଚ୍ଚ ସୁବିଧା ଉପଭୋଗୀ ଗୋଷ୍ଠୀମାନଙ୍କ ପ୍ରଭାବରୁ ରାଜତନ୍ତ୍ରର ମୁକ୍ତି ଚାହୁଁଥିଲେ । ତେଣୁ ମଧ୍ୟବିତ୍ତଶ୍ରେଣୀର ଲୋକେ ବିପ୍ଳବ କରିବାକୁ ସ୍ଥିର କରିଥିଲେ । ନେପୋଲିୟନ୍ ଯଥାର୍ଥରେ କହିଥିଲେ ଯେ ଅହମିକା ହିଁ ଥିଲା ବିପ୍ଳବର କାରଣ, ସ୍ୱାଧୀନତା ଥିଲା ଏକ ବାହାନା ମାତ୍ର । ("What made the Revolution" exclaimed Napoleon, "Vanity, Liberty was only the excuse.")

ମଧ୍ୟବିତ୍ତଶ୍ରେଣୀର ଲୋକେ ବିପ୍ଳବ କରିବା ପାଇଁ ଚିନ୍ତା କଲାବେଳେ ସାଧାରଣ ଲୋକଙ୍କ ଅବସ୍ଥା ବିଷୟରେ କିଛି ଚିନ୍ତା କରିନଥିଲେ । ସେମାନେ ସ୍ୱାର୍ଥାନ୍ଧ ହୋଇ ସୁବିଧା ଉପଭୋଗୀ ଗୋଷ୍ଠୀମାନଙ୍କ ପରି ରାଜାନୁଗ୍ରହ ଓ ସବୁ ପ୍ରକାର ସୁବିଧା ସୁଯୋଗ ପାଇବା ପାଇଁ ବିପ୍ଳବର ପନ୍ଥା ଧରିଥିଲେ । ସେମାନେ ଦେଖିଲେ ଯେ ସେମାନଙ୍କର ସଂଖ୍ୟା କମ୍ ଏବଂ ସେମାନେ ଏକଲା ବିପ୍ଳବ କଲେ କୃତକାର୍ଯ୍ୟ ହେବାର ସମ୍ଭାବନା କ୍ଷୀଣ, ତେଣୁ (ସେମାନଙ୍କ ସହିତ ଏକା ଗୋଷ୍ଠୀରେ ଥିବା) କୃଷକମାନଙ୍କୁ ସେମାନଙ୍କ ସହିତ ମିଶି ସ୍ୱେଚ୍ଛାଚାରୀ ରାଜତନ୍ତ୍ର ଓ ସୁବିଧା ଉପଭୋଗୀ ଗୋଷ୍ଠୀମାନଙ୍କ ବିରୁଦ୍ଧରେ ବିପ୍ଳବ କରିବା ପାଇଁ ଆହ୍ୱାନ ଦେଇଥିଲେ । ସେମାନେ କୃଷକମାନଙ୍କୁ ସେମାନଙ୍କର ଅଧିକାର ବିଷୟରେ ଏବଂ ଅତ୍ୟାଚାରୀ ଶାସକ, ଧର୍ମଯାଜକ ଓ ସମ୍ଭ୍ରାନ୍ତମାନେ ସେମାନଙ୍କୁ ଶୋଷଣ କରିବା ବିଷୟରେ ସଚେତନ କରିଦେଇଥିଲେ । କୃଷକମାନେ ସେମାନଙ୍କ କଥାରେ ପ୍ରଭାବିତ ହୋଇ ସେମାନଙ୍କ ସହିତ ମିଳିମିଶି ବିପ୍ଳବ କରିବା ପାଇଁ ପ୍ରସ୍ତୁତ ହୋଇଥିଲେ । କୃଷକମାନଙ୍କ ଅବସ୍ଥା ଏପରି ଖରାପ ନଥିଲା ଯେ ସେମାନେ ସ୍ୱତଃପ୍ରବୃତ୍ତ ହୋଇ ବିପ୍ଳବ କରିବାକୁ ବାହାରିଥିଲେ । ତେଣୁ ଆର୍ଥିକ ଦୁର୍ଗତି ବିପ୍ଳବର କାରଣ ବୋଲି କହିବା ଠିକ୍ ହେବନାହିଁ । ଉଚ୍ଚସ୍ତରରେ ଥିବା ମଧ୍ୟବିତ୍ତ ଗୋଷ୍ଠୀଙ୍କର ଅସନ୍ତୋଷ ହିଁ ବିପ୍ଳବର କାରଣ ବୋଲି ବରଂ କୁହାଯାଇପାରେ । ଶ୍ରେଣୀ ସଂଘର୍ଷର ପରିଣାମ ତଥା ସମାଜରେ ସାମ୍ୟଭାବ ଆଣିବା ପାଇଁ ମଧ୍ୟବିତ୍ତଗୋଷ୍ଠୀର ଆନ୍ଦୋଳନରୁ ହିଁ ଫରାସୀ ରାଷ୍ଟ୍ର-ବିପ୍ଳବ ହୋଇଥିଲା । ଏହିସବୁ କାରଣରୁ ଫରାସୀ ବିପ୍ଳବକୁ ବୁର୍ଜ୍ୱା ବା ମଧ୍ୟବିତ୍ତଶ୍ରେଣୀର ବିପ୍ଳବ ବୋଲି ଅଭିହିତ କରାଯାଇଅଛି । ମଧ୍ୟବିତ୍ତଶ୍ରେଣୀର ଲୋକେ କୃଷକମାନଙ୍କୁ ଏପରି ସଚେତନ କରାଇଦେଲେ ଯେ ସେମାନେ ଯେଉଁ କରର ଭାର ଏପର୍ଯ୍ୟନ୍ତ ବହନ କରିଆସୁଥିଲେ ସେହି ଭାର ଆଉ ବହନ କରିବାକୁ ରାଜିହେଲେନାହିଁ ଓ ଏହି ନାରାଜ ହେବା ଯୋଗୁଁ ୧୭୮୯ରେ ବିପ୍ଳବର ସୂତ୍ରପାତ ହେଲା । (It was not a new burden but new unwillingness to bear the old burden that caused the revolution of 1789.)

## ରାଜନୈତିକ କାରଣ (Political causes) :

ଫ୍ରାନ୍ସର ରାଜନୈତିକ ବ୍ୟବସ୍ଥା ସାମାଜିକ ବ୍ୟବସ୍ଥାପରି ତ୍ରୁଟିପୂର୍ଣ୍ଣ ଥିଲା । ରାଜତନ୍ତ୍ର ଶାସନ ଅତ୍ୟଧିକ କେନ୍ଦ୍ରୀଭୂତ ହୋଇଥିଲା, କିନ୍ତୁ ସେଥିରେ ଏକତା ନଥିଲା । ଶାସନ, ଆଇନ ପ୍ରଣୟନ ଓ ବିଚାର ସମ୍ପର୍କୀୟ କ୍ଷମତାଗୁଡ଼ିକ ରାଜାଙ୍କ ହାତରେ ଠୁଳ ହୋଇଥିଲା । ମାତ୍ର ସେ ଏସବୁ କ୍ଷମତା ଲୋକମାନଙ୍କ ହିତ ଉଦ୍ଦେଶ୍ୟରେ ବ୍ୟବହାର କରୁନଥିଲେ । ରାଜାମାନେ ରାଜବଂଶୀୟ (dynastic) ଯୁଦ୍ଧରେ ଏବଂ ରାଜପରିବାର ଓ ପାରିଷଦବର୍ଗଙ୍କର ଭରଣପୋଷଣ କରିବାରେ ଜାତୀୟ ସମ୍ପଦର ଅପବ୍ୟୟ କରୁଥିଲେ । ଯେଉଁସବୁ ଅନୁଷ୍ଠାନ ଲୋକମାନଙ୍କର ମତ ପ୍ରକାଶକରୁଥିଲା ସେ ସବୁକୁ ବଳପୂର୍ବକ ଦବାଇ ଦିଆଯାଇଥିଲା । ବ୍ରିଟିଶ୍ ପାର୍ଲିଆମେଣ୍ଟ ସହିତ ସାମଞ୍ଜସ୍ୟ ରହିଥିବା ଫ୍ରାନ୍ସର ଷ୍ଟେଟ୍ସ ଜେନେରାଲ (ରାଷ୍ଟ୍ର ସଭା) ୧୬୧୪ ଖ୍ରୀ: ଅ: ରୁ ଆଉ ଡକା ହୋଇନଥିଲା । ପ୍ରାଦେଶିକ ପରିଷଦଗୁଡ଼ିକୁ (Provincial councils) ଲୁପ୍ତ ଦିଆଯାଇଥିଲା କିମ୍ବା କ୍ଷମତାହୀନ କରିଦିଆଯାଇଥିଲା । ପୌର ଅନୁଷ୍ଠାନଗୁଡ଼ିକ କାର୍ଡ଼ିନେଲ ରିଚେଲ୍ୟୁଙ୍କ ସମୟରୁ ଧ୍ୱଂସ ହୋଇଯାଇଥିଲା । ବିଚାରାଳୟଗୁଡ଼ିକ ( parlements ) ପ୍ରଶାସନିକ ବ୍ୟାପାରରେ ଅଯଥା ହସ୍ତକ୍ଷେପ କରୁଥିବାରୁ ଓ ରାଜକୀୟ ସ୍ୱେଚ୍ଛାଚାରିତାକୁ ପ୍ରତିରୋଧ କରୁଥିବାରୁ ଷୋଡ଼ଶଲୁଇଙ୍କ ରାଜସିଂହାସନ ପ୍ରାପ୍ତି ପୂର୍ବରୁ ସେଗୁଡ଼ିକୁ ଉଠାଇ ଦିଆ ଯାଇଥିଲା ।

ଫରାସୀ ବିପ୍ଳବ ପୂର୍ବରୁ ଯେଉଁ ଶାସନ ବ୍ୟବସ୍ଥା ଥିଲା ତାହା ଶୃଙ୍ଖଳିତ କିମ୍ବା ଦକ୍ଷ ନଥିଲା । ରାଜା ତାଙ୍କ ମନୋନୀତ ପରିଷଦ, କାଉନସିଲ ଡୁ ରୋୟ ( the Council Du Roi) ସାହାଯ୍ୟରେ କେନ୍ଦ୍ର ସରକାରକୁ ପରିଚାଳନା କରୁଥିଲେ । ଏହି ପରିଷଦ ରାଜାଙ୍କ ଉପରେ ପୂରାପୂରି ନିର୍ଭର କରୁଥିବାରୁ ଏହାର ଶାସନ ପରିଚାଳନା, ଆଇନ ପ୍ରଣୟନ ଓ ବିଚାର କ୍ଷମତା ଥିଲା । ରାଜାଙ୍କ ବଳରେ ଏ ବଳୀୟାନ୍ ହୋଇ ଯୁଦ୍ଧ ଘୋଷଣା କରିପାରୁଥିଲା, କର ବସାଇ ପାରୁଥିଲା, ଆଇନ ପ୍ରଣୟନ କରିପାରୁଥିଲା, ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାଗୁଡ଼ିକ ବିଚାର କରିପାରୁଥିଲା ଏବଂ ହୁକୁମନାମା ଜାରି କରିପାରୁଥିଲା । ଏ ମଧ୍ୟ କର ସଂଗ୍ରାହକମାନଙ୍କୁ ବା ଇଣ୍ଟେନଡାଣ୍ଟମାନଙ୍କୁ ନିଯୁକ୍ତ କରୁଥିଲା ।

ଏହି ଇଣ୍ଟେନଡାଣ୍ଟମାନେ ପ୍ରଦେଶଗୁଡ଼ିକ ଶାସନ କରିବା ସଙ୍ଗେ ସଙ୍ଗେ ଜିଲ୍ଲାମାନଙ୍କ ଶାସନ ପାଇଁ ଏକ ମାତ୍ର କ୍ଷମତା ପ୍ରାପ୍ତ ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲେ । ଏମାନେ ଗ୍ରାମ୍ୟପୁଲିସ୍‌ମାନଙ୍କୁ ନିୟନ୍ତ୍ରଣ କରୁଥିଲେ; ମିଲିସିଆ (militia) ବା ଦେଶରକ୍ଷା ପାଇଁ ଗଠିତ ସୁଶିକ୍ଷିତ ସେନାଦଳକୁ ଭାଗ ଭାଗ କରି ବିଭିନ୍ନ ସ୍ଥାନରେ ରଖାଉଥିଲେ । ଭୂମି ବା ସମ୍ପତ୍ତି କର (taille) ଆଦାୟ ଏବଂ ତଦାରଖ କରୁଥିଲେ । ଏମାନେ ନିଜ ନିଜ ଅଞ୍ଚଳର ଦେୱାନୀ ଓ ଫୌଜଦାରୀ ମୋକଦ୍ଦମାଗୁଡ଼ିକ ବିଚାର କରୁଥିଲେ ଏବଂ ଏମାନଙ୍କର ମୃତ୍ୟୁଦଣ୍ଡ ଦେବାର କ୍ଷମତା ମଧ୍ୟ ଥିଲା । ପ୍ରଦେଶମାନଙ୍କରେ ଏମାନଙ୍କ ଉପରେ ଗଭର୍ଣ୍ଣର ବା

ରାଜ୍ୟପାଳ ଥିଲେ କିନ୍ତୁ ରାଜ୍ୟପାଳମାନେ କିଛି କରୁନଥିଲେ, ବସିକରି ମୋଟା ଦରମା ପାଉଥିଲେ । ଇଣ୍ଟେନଡାଣ୍ଟମାନେ ପ୍ରଦେଶମାନଙ୍କର ପ୍ରକୃତ ଶାସନକର୍ତ୍ତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଯଥାର୍ଥରେ ଔପନ୍ୟାସିକ 'ଲ' ଲେଖିଥିଲେ, "ଜାଣକି ! ଏହି ରାଜ୍ୟ ତିରିଶ ଜଣ ଇଣ୍ଟେନଡାଣ୍ଟଙ୍କଦ୍ୱାରା ଶାସିତ ହେଉଛି ।" (Do you know', wrote law in surprise, "that this kingdom is governed by thirty intendants".) ବାସ୍ତବିକ ପ୍ରଦେଶମାନଙ୍କରେ କୃଷକମାନଙ୍କ ଉପରେ ସେମାନଙ୍କର କ୍ଷମତା ଥିଲା ଅସୀମ । ସେମାନେ ଓ ସେମାନଙ୍କର ଅଧସ୍ତନ କର୍ମଚାରୀମାନେ ଆଦୌ ଲୋକପ୍ରିୟ ହୋଇପାରିନଥିଲେ ।

ଫ୍ରାନ୍‌ସର କୌଣସି ଅଞ୍ଚଳରେ ସ୍ୱାୟତ୍ତ ଶାସନ ନ ଥିଲା । ଦେଶର ଶାସନ ପରିଚାଳନାଠାରୁ ଆରମ୍ଭ କରି ଗିର୍ଜା ଜମିଣ ଓ ରାସ୍ତା ମରାମତି ପର୍ଯ୍ୟନ୍ତ ସମସ୍ତ ବିଷୟ କେନ୍ଦ୍ର ସରକାରଙ୍କ ଆଦେଶରେ ପରିଚାଳିତ ହେଉଥିଲା । ସରକାର ଇଚ୍ଛାକଲେ ସରକାରୀ ଦେଣା ପରିଶୋଧ କରିବାକୁ ମନା କରିଦେଉଥିଲେ, ଚୁକ୍ତିଗୁଡ଼ିକ ଭାଙ୍ଗିଦେଉଥିଲେ, ଆଇନକୁ କ୍ଷମତାବଳରେ ଚପାଇ ଦେଉଥିଲେ ଓ ଦେଶର ଆବଶ୍ୟକତାକୁ ଆଳକରି (on the plea of State necessity) ମାଲିକାନାସ୍ୱତ୍ୱକୁ ବାତିଲ କରିଦେଉଥିଲେ । ପ୍ରତିନିଧିମୂଳକ ଓ ପ୍ରକୃତ ବ୍ୟବସ୍ଥା ନ ଥିବାରୁ ସରକାରଙ୍କୁ କୌଣସିମତେ ବାଧା ଦିଆଯାଇ-ପାରୁ ନଥିଲା । ହିସାବ କିତାବର କୌଣସି ସଂକ୍ଷିପ୍ତ ବିବରଣ ନଥିଲା । ସମ୍ବାଦପତ୍ରମାନଙ୍କର ସ୍ୱାଧୀନତା ପ୍ରାୟ ନ ଥିଲା । ସରକାରଙ୍କର ପ୍ରସ୍ତାବିତ ଆଇନ କିମ୍ବା ଅନ୍ୟ କୌଣସି କାର୍ଯ୍ୟକୁ ବିରୋଧ କରିବା ଦଣ୍ଡନୀୟ ହୋଇଥିଲା । ସମସ୍ତଙ୍କ ପାଇଁ ଏକପ୍ରକାର ଆଇନ ପ୍ରଚଳନ କରାଯାଇ ନଥିଲା । କେତେକ ପ୍ରଦେଶରେ ଦେବାନୀ ଆଇନ (Civil laws) ଚଳୁଥିଲା ବେଳେ ଅନ୍ୟ ପ୍ରଦେଶଗୁଡ଼ିକରେ ପ୍ରଥାନୁରୂପ ସାମନ୍ତ ଆଇନ (Customary feudal laws) ଚଳୁଥିଲା । ଦେଶରେ ୩୮୪ ପ୍ରକାର ଭିନ୍ନ ଭିନ୍ନ ପ୍ରଥା ଥିଲା । ବ୍ୟକ୍ତିଗତ ସ୍ୱାଧୀନତା ପାଇଁ ଦାୟୀହେବାର ଜବାବ ଦିଆଯାଉନଥିଲା । ହେବିଅ କର୍‌ପସ୍ (habeas corpus) ବା ବନ୍ଦୀ ଆସାମୀକୁ ବିଚାରପତିଙ୍କ ସମ୍ମୁଖରେ ହାଜର କରିବା ନିମନ୍ତେ କାରାଧ୍ୟକ୍ଷଙ୍କ ନିକଟକୁ ପରୱାନା ପଠାଇବା ଆଇନ ନ ଥିଲା । ତେଣୁ ଲେଟ୍‌ରେସ୍ ଡ଼ କ୍ୟାଚେଟ୍ (Lettres de Cachet) ବଳରେ ବା ଗିରଫଦାର କରିବାର କ୍ଷମତାପତ୍ର ବଳରେ, ଯେକୌଣସି ଲୋକକୁ ଗିରଫ୍‌କରି ଅଣି ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦୀଘରରେ ବନ୍ଦୀ କରି ରଖାଯାଉଥିଲା । ଲେଟ୍‌ରେସ୍-ଡ଼-କ୍ୟାଚେଟ୍ ଏତେ ବ୍ୟାପକ ଥିଲା ଯେ ଉଚ୍ଚପଦରେ ପ୍ରତିଷ୍ଠିତ ହେଲେ ମଧ୍ୟ କୌଣସିଲୋକ ମନ୍ତ୍ରୀଙ୍କର କୁ-ଦୃଷ୍ଟିରେ ପଡ଼ିଲେ ନିଜପଦରେ ରହିପାରୁନଥିଲା ଏବଂ କୌଣସି ଲୋକ ଏତେ ନଗଣ୍ୟ ନୁହେଁ ଯେ କିରାଣୀଙ୍କର କୁଦୃଷ୍ଟିରେ ପଡ଼ିଲେ ଛଡ଼ପାଇ ଯାଉଥିଲା । ସବୁ ଦେଶଗୁଡ଼ିକୁ ସମଦୃଷ୍ଟିରେ ଦେଖାଯାଉନଥିଲା । ତେଣୁ କି ପ୍ରଦେଶ ବିନା ବାଧାରେ ପରସ୍ପର ମଧ୍ୟରେ ବାଣିଜ୍ୟ ବ୍ୟବସାୟ କରିପାରୁଥିଲେ; କିନ୍ତୁ ଅନ୍ୟ

ଭିନ୍ନ ଭିନ୍ନ ପ୍ରଦେଶ ଏବଂ ବାଣିଜ୍ୟ ଶୁଳ୍କରେ ପରସ୍ପର ମଧ୍ୟରେ ବାଣିଜ୍ୟ ବ୍ୟବସାୟ କରିପାରୁନଥିବାରୁ ସେମାନଙ୍କ ମଧ୍ୟରେ ଭଲ ବୁଝାମଣା ନଥିଲା ।

ସରକାର ଶକ୍ତିଶାଳୀ ବୋଲି ପ୍ରତୀୟମାନ ହେଲେ ମଧ୍ୟ ପ୍ରକୃତରେ ଦୁର୍ବଳ ଥିଲା । ଏ ଉଚ୍ଚ ଧର୍ମଯାଜକମାନଙ୍କୁ ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ସେମାନଙ୍କର ବିଶେଷ ଅଧିକାରଗୁଡ଼ିକ ପରିତ୍ୟାଗ କରିବାପାଇଁ ବାଧ୍ୟ କରିପାରୁନଥିଲା, କି ସମସ୍ତଙ୍କ ପାଇଁ ସମାନ ଆଇନ ପ୍ରସ୍ତୁତ କରି ଆଇନ ଗ୍ରନ୍ଥ (code) ପ୍ରବର୍ତ୍ତିତ କରିପାରୁନଥିଲା । ଫ୍ରାନ୍ସର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ଓଜନ ଓ ମାପ ପ୍ରଚଳିତ ଥିଲେ ମଧ୍ୟ ସରକାର ସାରା ରାଜ୍ୟରେ ଏକପ୍ରକାର ଓଜନ ଓ ମାପ ପ୍ରଚଳନ କରିବାକୁ ସକ୍ଷମ ହୋଇନଥିଲା ।

ଫରାସୀ ରାଜତନ୍ତ୍ରର ଦୁର୍ବଳତା ଫରାସୀ ରାଷ୍ଟ୍ର ବିପ୍ଳବର କାରଣ ବୋଲି କୁହା-ଯାଇଛି । ରାଜା ଚତୁର୍ଦ୍ଦଶ ଲୁଇ ବୁରବନ ରାଜବଂଶର ଶେଷ ଶକ୍ତିଶାଳୀ ଶାସକ ଥିଲେ । ସେ ରାଜାମାନଙ୍କର ଦେବଦତ୍ତ ଅଧିକାରରେ (Divine Right of Kings) ବିଶ୍ୱାସ ରଖି ଇଚ୍ଛାନୁଯାୟୀ ଶାସନ କରୁଥିଲେ । ସେ ଥରେ କହିଥିଲେ 'ମୁଁ ହେଉଛି ରାଜ୍ୟ' (L' Etat C'est moi or I am the State) । ବାସ୍ତବିକ୍ ସେ ଯଥାର୍ଥରେ ଏହା କହିଥିଲେ, କାରଣ ସେ ଯାହା କରିବାକୁ ଚାହୁଁଥିଲେ ସେ କରୁଥିଲେ, ତାଙ୍କୁ କେହି ବାଧାଦେବାକୁ ସାହସ କରୁନଥିଲେ । ତାଙ୍କ ହାତରେ ସମସ୍ତ କ୍ଷମତା ପୁଞ୍ଜିଭୂତ ହୋଇଥିଲା । ସୈନ୍ୟବାହିନୀ ତାଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲେ । କିନ୍ତୁ ବରାବର ବିଦେଶୀରାଷ୍ଟ୍ରମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିବାରୁ ଫ୍ରାନ୍ସର ଅପୂରଣୀୟ କ୍ଷତି ହେଉଥିଲା । ଅବସର ସମୟରେ ବଡ଼ ବଡ଼ ପ୍ରାସାଦ ଓ ସୁନ୍ଦର ସୁନ୍ଦର ପ୍ରସ୍ରବଣ ନିର୍ମାଣ କରିବା ଯୋଗୁ ରାଜ୍ୟର ରାଜସ୍ୱ ଅଯଥାରେ ଖର୍ଚ୍ଚ ହେଉଥିଲା । ଏସବୁ ବ୍ୟତୀତ ସେ ବଡ଼ ରାଜ-ପରିବାର ଓ ପାରିଷଦବର୍ଗଙ୍କର ଭରଣପୋଷଣରେ ରାଜ୍ୟର ବହୁ ଅର୍ଥ ବ୍ୟୟ କରୁଥିଲେ । ଏ ସମସ୍ତ କାରଣ ପାଇଁ ରାଜ୍ୟର ଅର୍ଥନୀତି ଦୋହଲି ଯାଇଥିଲା । ଲୋକମାନେ ଦୁଃଖ ଦୁର୍ଦ୍ଦଶା ଭୋଗୁଥିଲେ । ତଥାପି ସେମାନେ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ସାହସ କରୁନ-ଥିଲେ; କାରଣ ସେମାନେ ଜାଣିଥିଲେ ଯେ ରାଜା ସୈନ୍ୟବାହିନୀ ସାହାଯ୍ୟରେ ଯେ-କୌଣସି ବିଦ୍ରୋହ ଅକ୍ଳେଶରେ ଦମନ କରିପାରିବେ । କିନ୍ତୁ ମୃତ୍ୟୁଶଯ୍ୟାରେ ତାଙ୍କର ଅନୁତାପ ଆସିଥିଲା । ସେ ଯୁଦ୍ଧରେ ସର୍ବଦା ବ୍ୟାପୃତ ହୋଇ ଲୋକମାନଙ୍କର ଯେ କ୍ଷତି କରିଛନ୍ତି ସେଥିପାଇଁ ଦୁଃଖ ପ୍ରକାଶ କରିଥିଲେ ଏବଂ ତାଙ୍କର ଭବିଷ୍ୟତ ଉତ୍ତରାଧିକାରୀ ତାଙ୍କ ପଥ ଅନୁସରଣ ନକରି ଲୋକମାନଙ୍କ ହିତ ନିମନ୍ତେ କାର୍ଯ୍ୟ କରିବାକୁ ଉପଦେଶ ଦେଇଯାଇଥିଲେ । ସେ ଦୀର୍ଘ ୭୨ ବର୍ଷ ଶାସନ କରି ୧୭୧୫ ମସିହାରେ ପ୍ରାଣତ୍ୟାଗ କରିଥିଲେ ।

ଚତୁର୍ଦ୍ଦଶ ଲୁଇଙ୍କ ମୃତ୍ୟୁପରେ ତାଙ୍କର ଅଣନାତି ଶୈଶବ ଅବସ୍ଥାରେ ପଞ୍ଚଦଶ ଲୁଇ ନାମ ଧାରଣ କରି ରାଜସିଂହାସନ ଅଧିକାର କଲେ । ସେ ୧୭୨୩ ମସିହାରେ ରାଜପ୍ରତିନିଧିଠାରୁ ଶାସନଭାର ଗ୍ରହଣ କଲେ ଓ କାର୍ଡିନାଲ ଫ୍ଲ୍ୟୁରିଙ୍କୁ ପ୍ରଧାନମନ୍ତ୍ରୀରୂପେ ନିଯୁକ୍ତ କଲେ । ଫ୍ଲ୍ୟୁରିଙ୍କ ଉପଦେଶ ଅନୁସାରେ ସେ କାର୍ଯ୍ୟ କରିବାରୁ ଫ୍ରାନ୍ସର ଅଭ୍ୟୁଦୟ ହୋଇଥିଲା, କିନ୍ତୁ ତାହା ବେଶି ଦିନ ତିଷ୍ଠି ପାରିନଥିଲା । ରାଜସଭାସଦମାନେ ରାଜାଙ୍କର ଯେକୌଣସି ଜଣେ ଉପପତ୍ନୀକୁ ଧରି ତାଙ୍କ ସାହାଯ୍ୟରେ ରାଜାଙ୍କ ଉପରେ ପ୍ରଭାବ ପକାଇ ଫ୍ଲ୍ୟୁରିଙ୍କ ବିଜ୍ଞ ଓ ସତର୍କ ନୀତିକୁ ଓଲଟାଇ ଦେଉଥିଲେ । ଫଳରେ ରାଜା ସେମାନଙ୍କଦ୍ୱାରା ପରିଚାଳିତ ହୋଇ ଚତୁର୍ଦ୍ଦଶ ଲୁଇଙ୍କ ଉପଦେଶକୁ ବରଂ କର୍ଣ୍ଣପାତ ନକରି ତାଙ୍କର ପଥ ଅନୁସରଣ କରି ଯୁଦ୍ଧରେ ବ୍ୟାପୃତ ରହୁଥିଲେ । ତାଙ୍କ ସମୟରେ ଫ୍ରାନ୍ସ ବ୍ରିଟେନ ଓ ପ୍ରୁସିଆର ମିଳିତ ଶକ୍ତିଦ୍ୱାରା ସପ୍ତବର୍ଷୀୟ ଯୁଦ୍ଧରେ (Seven Years War (1756-63) ପରାସ୍ତ ହୋଇ ତାହାର ଅଧିକାଂଶ ଉପନିବେଶ ହରାଇ ଥିଲା ଏବଂ ତା ସଙ୍ଗେ ସଙ୍ଗେ ସାମରିକ ସମ୍ମାନ ମଧ୍ୟ ହରାଇଥିଲା ।

ରାଜା ଆନନ୍ଦ ଉପଭୋଗରେ ସମୟ ବିତାଉଥିଲେ ଏବଂ ତାଙ୍କ ନୀତିକୁ ସାଧାରଣତଃ ଜଣେ ଉପପତ୍ନୀର ଖିଆଲ୍ ଉପରେ ଛାଡ଼ିଦେଉଥିଲେ । ତାଙ୍କ ଦରବାର ଚତୁର୍ଦ୍ଦଶ ଲୁଇଙ୍କ ଦରବାର ପରି ଆଡ଼ମ୍ବରପୂର୍ଣ୍ଣ ଥିଲା । ସେ ଏତେ ଦୁର୍ବଳ ଥିଲେ ଯେ ଲୋକଙ୍କୁ ରାଜ ପୂଜା (King Worship) ଆଡ଼କୁ ଆକର୍ଷଣ କରିପାରୁନଥିଲେ । ଏହି ଭିତରେ ସଭାସଦ୍‌ମାନେ ଷଡ଼ଯନ୍ତ୍ରରେ ଲିପ୍ତଥିବାବେଳେ ମ୍ୟାଡେମ୍ ଡ୍ର ପମ୍ପେଡର୍‌ଙ୍କ ପରି ତାଙ୍କର ପ୍ରିୟପାତ୍ରମାନେ ଜାତୀୟ ସମ୍ପତ୍ତିର ଅପବ୍ୟୟ କରିବାରେ ଲାଗିଥିଲେ ଏବଂ ରାଜ-ପଦର ମର୍ଯ୍ୟାଦା କ୍ଷୁଣ୍ଣ କରୁଥିଲେ । ଏହି ଶାସନକୁ ନାରୀ କର୍ତ୍ତୃତ୍ୱାଧୀନ ଶାସନ ବା ପେଟିକୋଟ୍ ଶାସନ (Petticoat Government) କହିବାରେ ଯଥାର୍ଥତା ରହିଛି । ରାଜା ମଧ୍ୟ ପ୍ରିୟାପ୍ରୀତିତୋଷଣ ନୀତି ଅବଲମ୍ବନ କରୁଥିଲେ । ନିଜର ବନ୍ଧୁବାନ୍ଧବଙ୍କୁ ଓ ପ୍ରିୟପାତ୍ରମାନଙ୍କୁ ଆରାମୀ ଚାକିରି (Sinecure jobs), ଅବସର ବୃତ୍ତି ବା ପେନସନ୍ ଦେଉଥିଲେ ଏବଂ ସେମାନଙ୍କର ପଦୋନ୍ନତି କରୁଥିଲେ । ଏସବୁ କରିବାଦ୍ୱାରା ରାଜକୋଷରୁ ମଧ୍ୟ ବହୁତ ଟଙ୍କା ବୃଥାରେ ଖର୍ଚ୍ଚ ହେଉଥିଲା । ଚତୁର୍ଦ୍ଦଶ ଲୁଇଙ୍କ ସମୟରେ ଆର୍ଥିକ ଅବସ୍ଥାର ଯେଉଁ ଅବନତି ହୋଇଥିଲା ପଞ୍ଚଦଶ ଲୁଇଙ୍କ ନୀତି ଯୋଗୁ ସେହି ଅବସ୍ଥାର ଅବନତି ଅଧିକ ହେଲା । ରାଜାଙ୍କର ସେହି ଅବସ୍ଥାକୁ ବଦଳାଇବା ପାଇଁ ସାମର୍ଥ୍ୟ ନ ଥିଲା କି ଆଗ୍ରହ ନଥିଲା । ଲୋକମାନେ ଯେ ତାଙ୍କ ଶାସନରେ ସନ୍ତୁଷ୍ଟ ନୁହନ୍ତି ସେକଥା ସେ ବେଶ୍ ଅନୁଭବ କରିପାରିଥିଲେ । ରାସ୍ତାରେ ଘୋଡ଼ା ଚଢ଼ି ଯିବାକୁ ସେ ଭୟ କରୁଥିଲେ, କାଳେ କିଏ ତାଙ୍କୁ ଟେକା ପଥର ଫିଙ୍ଗିବ । ସେ ଦୁର୍ବଳ ଥିଲେ ବି ବୁଦ୍ଧିମାନ୍ ଥିଲେ । ସେ ଅନୁଭବ କରିଥିଲେ ଯେ ଲୋକମାନେ ତାଙ୍କ ଶାସନ ନୀତିର ବିରୁଦ୍ଧାଚରଣ କଲେ ମଧ୍ୟ ବିପ୍ଳବ କରିବାକୁ ପ୍ରସ୍ତୁତ ହୋଇନଥିଲେ । ତେଣୁ ସେ କହୁଥିଲେ ଯେ ସେ ଥିବା ପର୍ଯ୍ୟନ୍ତ ଦେଶ

ସେହିପରି ଚାଲିଥିବ ଏବଂ ତାଙ୍କ ପରେ ବିପ୍ଳବ ଅବଶ୍ୟମ୍ଭାବୀ । (He said, "This will continue as long as I and after me the deluge.") ସେ ଯେଉଁ ଭବିଷ୍ୟତ-ବାଣୀ କରିଥିଲେ ତାହା ତାଙ୍କ ନାତି ଷୋଡ଼ଶ ଲୁଇଙ୍କ ଅମଳରେ ଫଳିଥିଲା ।

ପଞ୍ଚଦଶ ଲୁଇଙ୍କ ପରେ ତାଙ୍କ ନାତି ଷୋଡ଼ଶ ଲୁଇ ମାତ୍ର କୋଡ଼ିଏ ବର୍ଷ ବୟସରେ ୧୭୭୪ ମସିହାରେ ଫ୍ରାନ୍ସର ରାଜସିଂହାସନରେ ଆରୂଢ଼ ହୋଇଥିଲେ । ଏହି ନୂତନ ରାଜତ୍ୱ ଫ୍ରାନସ ପକ୍ଷରେ ଏକ ଶୁଭ ସୂଚନା ପରି ମନେହେଲା । ପଞ୍ଚଦଶ ଲୁଇଙ୍କ ଶାସନରେ ପ୍ରାୟ ସବୁ ଶ୍ରେଣୀର ଲୋକେ ଏତେ ଅସନ୍ତୁଷ୍ଟ ହୋଇପଡ଼ିଥିଲେ ଯେ ତାଙ୍କ ରାଜତ୍ୱର ଅବସାନ ହେବାରୁ ସେମାନେ ଆନନ୍ଦରେ ନିଶ୍ୱାସ ମାରିଥିଲେ ଓ ନୂତନ ରାଜତ୍ୱର ଅଭ୍ୟୁଦୟକୁ ସ୍ୱାଗତ କରିଥିଲେ । କିନ୍ତୁ ଷୋଡ଼ଶ ଲୁଇ ଶାସନଭାର ଗ୍ରହଣ କଲା ସମୟରେ ବଡ଼ ପାଟିରେ କହି ଉଠିଲେ, "ମନେହେଉଛି ସାରା ବିଶ୍ୱ ମୋ ଉପରେ ଓଲଟି ହୋଇ-ପଡ଼ୁଛି, ହେ ଭଗବାନ୍, ଏ କେତେ ବଡ଼ ବୋଝ । ସେମାନେ କିନ୍ତୁ ମୋତେ କିଛି ଶିକ୍ଷା ଦେଇନାହାନ୍ତି ।" ("It seems as if the universe is falling on me; he cried, God, what a burden is mine and they have taught me nothing.") ଲୁଇ ଦୟାଳୁ, ପୁଣ୍ୟବାନ୍ ଓ ମେଳାପୀ ଥିଲେ । ତାଙ୍କର ଉଦ୍ଦେଶ୍ୟ ସତ୍ ଥିଲା ଓ ତାଙ୍କର ଦାୟିତ୍ୱ ପ୍ରତି ସେ ସଚେତନ ଥିଲେ । କିନ୍ତୁ ସେ ଦୁର୍ବଳ ଓ ଶ୍ରମକାତର ଥିଲେ ଏବଂ ତାଙ୍କର ଦୃଢ଼ ମନୋବଳ ନଥିବାରୁ କେହି ତାଙ୍କୁ ବିଶ୍ୱାସ କରୁନଥିଲେ । ସେ ବାହାର ପ୍ରଭାବରେ ପ୍ରଭାବିତ ହୋଇ କାର୍ଯ୍ୟାନୁଷ୍ଠାନ କରିବାକୁ ବାଧ୍ୟହେଉ-ଥିଲେ । ତାଙ୍କ ମନ୍ତ୍ରୀ ଓ ସଭାସଦ୍‌ମାନଙ୍କ ଦାବି ଓ ତାଙ୍କ ସ୍ତ୍ରୀଙ୍କ ଧାରଣା ଉପରେ ତାଙ୍କର କାର୍ଯ୍ୟାନୁଷ୍ଠାନ ନିର୍ଭର କରୁଥିଲା । ଶାସନ କରିବାକୁ ଯେଉଁ କୌଶଳ ଦରକାର ତାକୁ ଶିଖିବାକୁ ତାଙ୍କର ଆଗ୍ରହ ନଥିଲା, କି ପ୍ରକୃତ ରାଜ ଭୂମିକା ପାଇଁ ତାଙ୍କର ପ୍ରତିଭା ନଥିଲା । ସେ ଶିକାର କରିବାକୁ ଖୁବ୍ ଭଲ ପାଉଥିଲେ ଏବଂ ତାଙ୍କର ଦିନପଞ୍ଜୀ (ଡାଏରୀ) ଜଣେ ଶିକାରୀର ଲିପିବଦ୍ଧ ବିବରଣୀ ବା ରେକର୍ଡ ଅଟେ । ତାଙ୍କର ଭୂଗୋଳ, ଗଣିତ ଓ ଜ୍ୟୋତିଷ ପ୍ରତି ବିଶେଷ ଅନୁରାଗ ଥିଲା । ସେ ମଧ୍ୟ ରାଜାର କର୍ତ୍ତବ୍ୟ ବିଷୟରେ ଅନେକ କିଛି ଅଧ୍ୟୟନ କରିଥିଲେ । ଫେନଲନ୍‌ଙ୍କ ପ୍ରାଦେଶିକ ସଭା ଉପରେ ସେ ଯେଉଁ ମନ୍ତବ୍ୟକୁ କରିଥିଲେ ତାହା ତାଙ୍କ ଦୂରଦର୍ଶିତାର ପରିଚୟ ଦେଇଥିଲା । ସେ ବାସ୍ତବିକ ଲୋକମାନଙ୍କର ହିତ ପାଇଁ ଅତି ଆଗ୍ରହୀ ଥିଲେ ।

ଲୁଇ ଯେତେବେଳେ କୋଡ଼ିଏ ବର୍ଷ ବୟସରେ ରାଜଗାଦିରେ ବସିଲେ ତାଙ୍କର ରାଣୀ ଅଷ୍ଟ୍ରିଆର ରାଜକୁମାରୀ ମେରୀ ଆଣ୍ଟୋନେଟ୍‌ଙ୍କୁ ଊଣେଇଶ ବର୍ଷ ହୋଇଥିଲା ଓ ସେ

ଅପୂର୍ବ ସୁନ୍ଦରୀ ଥିଲେ । ମେରିଙ୍କର ବ୍ୟକ୍ତିତ୍ୱ ତାଙ୍କ ସ୍ୱାମୀ ଲୁଇଙ୍କଠାରୁ ବଳଶାଳୀ ଓ ନିଷ୍ପତ୍ତିମୂଳକ ଥିଲା । ତେଣୁ ସେ ତାଙ୍କ ସ୍ୱାମୀଙ୍କ ଉପରେ ଅତ୍ୟଧିକ ପ୍ରଭାବ ପକାଇ-ପାରୁଥିଲେ । କିନ୍ତୁ ସେ ଲୋକମାନଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ସହାନୁଭୂତିଶୀଳା ଥିଲେ ଓ ନିଜର ବ୍ୟକ୍ତିଗତ ଭତ୍ତାକୁ ଗରିବମାନଙ୍କ ସାହାଯ୍ୟ ପାଇଁ ଦାନ କରିଦେଉଥିଲେ । କିନ୍ତୁ ତାଙ୍କର ରାଜନୈତିକ ଅଭିଜ୍ଞତା କିଛି ନଥିଲା । ରାଜନୀତି କ୍ଷେତ୍ରରେ ତାଙ୍କର ମା ମହାଯଶୀ ମେରିଆଙ୍କର ସେ ଅଯୋଗ୍ୟା କନ୍ୟା । ସେ ବୁଝିପାରୁନଥିଲେ ଯେ ତାଙ୍କର ବ୍ୟକ୍ତିଗତ ନୀତି ରୁଚି ଓ ଅନୁଗ୍ରହ ରାଜ୍ୟର ନିୟମ ହୋଇପାରେନା । ତାଙ୍କର ସୁବିଧା ଉପଭୋଗୀଙ୍କ ପ୍ରତି ସହାନୁଭୂତି ଥିବାରୁ ସେ ଅତି ସହଜରେ ସ୍ୱାର୍ଥାନ୍ୱେଷୀ ଲୋକମାନଙ୍କର ଓ ରାଜଦରବାରର ଷଡ଼ଯନ୍ତ୍ରକାରୀମାନଙ୍କର ହାତଆର ହୋଇପଡ଼ୁଥିଲେ । ସେ ଶାସନରେ ବରାବର ହସ୍ତକ୍ଷେପ କରୁଥିଲେ । ସେ ଇଚ୍ଛା କଲେ ରାଜାଙ୍କୁ କହି ପୁରୁଣା ମନ୍ତ୍ରୀଙ୍କୁ ବରଖାସ୍ତ କରାଇ ନୂଆମନ୍ତ୍ରୀ ନିଯୁକ୍ତ କରାଉଥିଲେ ଏବଂ ରାଜଦରବାରରେ ନୂଆ ଗୁଳକ ସୃଷ୍ଟି କରାଉଥିଲେ । ସମ୍ଭ୍ରାନ୍ତମାନେ ଓ ସଭାସଦ୍‌ମାନେ ତାଙ୍କୁ ପ୍ରଭାବିତ କରି ତାଙ୍କ ସାହାଯ୍ୟରେ ରାଜାଙ୍କଠାରୁ ସେମାନଙ୍କ କାମ ସହଜରେ ହାସଲ କରୁଥିଲେ । ମେରିଙ୍କ ଯୋଗୁ ରାଜ-ଦରବାର ଆଡ଼ମ୍ବରପୂର୍ଣ୍ଣ ହୋଇଥିଲା । ସେ ବଡ଼ ଅମିତବ୍ୟୟୀ ଥିଲେ । ଆମୋଦ ପ୍ରମୋଦ ଓ ଭୋଜିରେ ବହୁତ ଟଙ୍କା ଅଯଥାରେ ଖର୍ଚ୍ଚ ହେଉଥିଲା । ରାଜଦରବାରରେ ଥିବା ପ୍ରାୟ ୧୮୦୦୦ ଲୋକଙ୍କର ଭରଣପୋଷଣର ଭାର ପ୍ରାୟ ରାଜାଙ୍କ ଉପରେ ପଡ଼ୁଥିଲା । ସେଥି ମଧ୍ୟରୁ ରାଜପରିବାରର ଲୋକସଂଖ୍ୟା ପ୍ରାୟ ୪୦୦୦ ଥିଲା । କେବଳ ରାଣୀଙ୍କ ସେବାପାଇଁ ପାଞ୍ଚଶହ ଲୋକ ଥିଲେ । ରାଜାଙ୍କର ଏକ ବର୍ଷର କନ୍ୟାର ଯତ୍ନ ନେବା ପାଇଁ ଅଶୀଜଣଙ୍କୁ ନିଯୁକ୍ତ କରାଯାଇଥିଲା । ତେଣୁ ରାଜପରିବାର ବ୍ୟତୀତ ରାଜାଙ୍କୁ ଅନେକ ସଭାସଦଙ୍କୁ ଚଳାଇବାକୁ ପଡ଼ୁଥିଲା । ମୋଟରେ ରାଜପରିବାର ଓ ସଭାସଦ୍‌ବର୍ଗଙ୍କ ପାଇଁ ରାଜକୋଷରୁ ବର୍ଷକୁ ଛଅକୋଟି ଟଙ୍କା ଖର୍ଚ୍ଚ ହେଉଥିଲା । ଅତି ପରିତାପର ବିଷୟ ଯେ ଜାତୀୟ ସମ୍ପତ୍ତିର ଅପବ୍ୟୟ ଏହିପରି ଭାବରେ ହେଉଥିଲା ।

ରାଜା ଜାତୀୟ ପରମ୍ପରାର ଶିକାର ହୋଇଥିଲେ । ସେ ଖର୍ଚ୍ଚକାଟ ବ୍ୟବସ୍ଥା କରିବାକୁ ଚାହିଁଥିଲେ ମଧ୍ୟ ସମ୍ଭ୍ରାନ୍ତଗୋଷ୍ଠୀର ଶକ୍ତିଶାଳୀ ପ୍ରତିରୋଧ ଯୋଗୁ ତାହା ସମ୍ଭବ-ପର ହୋଇପାରିନଥିଲା । ସମ୍ଭ୍ରାନ୍ତ ଗୋଷ୍ଠୀଭୁକ୍ତ ରାଜ ସଭାସଦ୍‌ମାନେ ସରକାରୀ ଗୋଷ୍ଠୀ ଉପରକୁ ପ୍ରଭାବ ପକାଇ ପ୍ରଗତିର ରାସ୍ତା ସବୁ ବନ୍ଦ କରିଦେଇଥିଲେ । ଦୃଢ଼ ସରକାର ପ୍ରତିଷ୍ଠାର ବିରୁଦ୍ଧାଚରଣ କରି ସେମାନେ ସବୁଠାରୁ ବଡ଼ ଅପରାଧୀ ହୋଇଥିଲେ । ଯଥାର୍ଥରେ କୁହାଯାଇଛି "ପ୍ରକୃତରେ ଉଚ୍ଚଗୋଷ୍ଠୀମାନଙ୍କର ଶ୍ୱାସରୋଧକାରୀ ପ୍ରଭାବର ଚାପ ଦୁର୍ବଳ ରାଜା ଓ ଚପଳା ରାଣୀଙ୍କ ଉପରେ ବରାବର ପଡ଼ିବାରୁ ବିପ୍ଳବରୁ ଖସି ପଳାଇବାର ସବୁ ବାଟ (ସମସ୍ୟା ସମାଧାନର ସବୁ ରାସ୍ତା) ବନ୍ଦ ହୋଇ ଯାଇଥିଲା ।"

("It was, in fact, the stifling influence of the upper classes, pressing constantly upon a weak king and a frivolous queen, that blocked every avenue of escape from the dilemma.")

ଷୋଡ଼ଶ ଲୁଇ ରାଜା ହେଲାବେଳେ ଶାସକଶ୍ରେଣୀ ଓ ସାହିତ୍ୟିକ ସମ୍ପ୍ରଦାୟ ତାଙ୍କୁ ବିପୁଳ ସମର୍ଥନ କରିଥିଲେ; କାରଣ ସରକାରଙ୍କର ଦୃଷ୍ଟିଭଙ୍ଗୀ ଓ ଲକ୍ଷ୍ୟ ବଦଳାଇବା ପାଇଁ ସେତେବେଳେ ପ୍ରଗାଢ଼ ଉଦ୍ୟମ ହୋଇଥିଲା । କିନ୍ତୁ କ୍ରମେ ଜଣାପଡ଼ିଲା ଯେ, ରାଜା ରାଣୀଙ୍କ ହାତରେ ଗୋଟିଏ କ୍ରୀଡ଼ାପୁତ୍ତଳିକା ଓ ତାଙ୍କ କଥାରେ ପ୍ରଭାବିତ ହୋଇ କାର୍ଯ୍ୟ କରୁଥିବାରୁ ଶାସନରେ ବିଶେଷ ପରିବର୍ତ୍ତନ ଆଣି ପାରିନଥିଲେ ଓ ଲୋକମାନଙ୍କର ଦୁଃଖ-କଷ୍ଟ ଲାଘବ କରିବାକୁ ସକ୍ଷମ ହୋଇନଥିଲେ ।

ଚତୁର୍ଦ୍ଦଶ ଲୁଇଙ୍କ ପରେ ଦୁଇ ଜଣ ଦୁର୍ବଳ ରାଜା (ପଞ୍ଚଦଶ ଲୁଇ ଓ ଷୋଡ଼ଶ ଲୁଇ) ଜଣକ ପରେ ଜଣେ ଶାସନଭାର ଗ୍ରହଣ କରିବାଦ୍ୱାରା ଶାସନରେ ବିଶୃଙ୍ଖଳା, ଦେଶରେ ଅଶାନ୍ତି ଦେଖାଯାଇଥିଲା । ବୁର୍ବନ୍ ରାଜବଂଶ, ଯେ କି ଦିନେ ସମଗ୍ର ଇଉରୋପରେ ଫ୍ରାନ୍ସକୁ ବୃହତ୍ତମ ଶକ୍ତି କରିପାରିଥିଲା ସେହି ରାଜବଂଶର ଦୁଇଜଣ ଦୁର୍ବଳ ରାଜା ତାକୁ ଦ୍ରୁତଗତିରେ ରସାତଳକୁ ଟାଣିନେଇଥିଲେ ।

## ବୌଦ୍ଧିକ କାରଣ ( Intellectual Cause ) :

ଅଷ୍ଟାଦଶ ଶତାବ୍ଦୀ, ଜ୍ଞାନୋଦୟ ଓ ହେତୁବାଦ (age of enlightenment and reason)ର ଯୁଗ । ଏହି ଯୁଗରେ ବିଭିନ୍ନ ପ୍ରକାର ଲେଖକମାନେ ଫରାସୀ ରାଷ୍ଟ୍ର-ବିପ୍ଳବ ପାଇଁ ରାସ୍ତା ପ୍ରସ୍ତୁତ କରିଥିଲେ । ହିଗେଲ୍‌ଙ୍କ ମତରେ ବୌଦ୍ଧିକ ଜାଗରଣ (Renaissance) ବିପ୍ଳବ ବିନା ଅସମ୍ଭବ । ("The Revolution is impossible without Renaissance" says Hegel.) ଜ୍ଞାନ ବିସ୍ତାରଣ କରିବା ଓ ଲୋକମାନଙ୍କର ଅବସ୍ଥା ହୃଦୟଙ୍ଗମ କରିବା ବିପ୍ଳବପାଇଁ ଅତ୍ୟାବଶ୍ୟକ ଉପାଦାନ । ସାଧାରଣ ଲୋକମାନଙ୍କର ଦୁରବସ୍ଥା, ଦୁର୍ନୀତିଗ୍ରସ୍ତ ଓ ଅପାରଗ ଶାସନକଳ ବିପ୍ଳବପାଇଁ ଯଥେଷ୍ଟ କାରଣ ହେଲେ ମଧ୍ୟ, ବିପ୍ଳବ କେବଳ ସମ୍ଭବ ହୁଏ ଯେତେବେଳେ ନିରକ୍ଷର ଜନତା ଚିନ୍ତାଶୀଳ ବ୍ୟକ୍ତିଙ୍କ ଦ୍ୱାରା ଚାଳିତ ହୁଅନ୍ତି । ଅଷ୍ଟାଦଶ ଶତାବ୍ଦୀରେ ଫ୍ରାନ୍ସରେ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଅଭାବ ନ ଥିଲା । ବହୁ ଲେଖକ ସମାଜ, ସରକାର ଓ ଧର୍ମକୁ ସମାଲୋଚନା କରିଥିଲେ ଓ ଲୋକମାନଙ୍କ ମନରେ ବିଶେଷ ପ୍ରଭାବ ପକାଇଥିଲେ । ଅତଏବ ହେତୁବାଦ ଓ ଜନମତ ଜାଗରଣ ଫରାସୀ ରାଷ୍ଟ୍ର-ବିପ୍ଳବର ସକ୍ରିୟ କାରଣ (Rationalism and development of public opinion are the positive cause of the French Revolution.)

ହେତୁବାଦର ବ୍ୟାଖ୍ୟାକାରଙ୍କ ମଧ୍ୟରେ ମଣ୍ଟେସ୍କୀୟୁ ( Montesquieu ), ଭଲଟାୟର (Voltaire), ଡିଡେରୌ (Diderot) ଓ ରୁଷୋ (Rousseau) ପ୍ରମୁଖ ଦାର୍ଶନିକମାନେ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ଭାବନାରାଜ୍ୟରେ ଫ୍ରାନ୍ସ ମୁଖ୍ୟ ସ୍ଥାନ ଅଧିକାର କରିଥିଲା ଏବଂ ବୌଦ୍ଧିକ ଆନ୍ଦୋଳନକୁ ସାଧାରଣତଃ ଫରାସୀ ଆନ୍ଦୋଳନ ବୋଲି ବିବେଚନା କରାଯାଏ । ଲକ୍ ଓ ନିଉଟନ୍‌ଙ୍କ ପୁସ୍ତକମାନଙ୍କରେ ବହୁପୂର୍ବରୁ ଯେଉଁ ସାଧାରଣ ଆନ୍ଦୋଳନର ପ୍ରଚାର କରାଯାଇଥିଲା, ବାସ୍ତବିକ ଫରାସୀମାନେ ସେହି ଆନ୍ଦୋଳନର ଚାଳକ ମାତ୍ର ହୋଇଥିଲେ । ମଣ୍ଟେସ୍କୀୟୁ, ଭଲଟାୟର, ଡିଡେରୌ ଓ ରୁଷୋ ଅତୀତର ଅନ୍ଧ ବିଶ୍ୱାସ, ରାଷ୍ଟ୍ର ଓ ଗିର୍ଜା ସମ୍ପର୍କୀୟ ସମସ୍ତ ପରମ୍ପରାକୁ ଧ୍ୱଂସ କରିବା ପାଇଁ ଜୀବନର ପଣ କରିଥିଲେ । ସେମାନେ ଦାୟିତ୍ୱହୀନ ଓ ସ୍ୱେଚ୍ଛାଚାରୀ ଶାସକମାନଙ୍କର ଦୁର୍ବଳତାକୁ ପଦାରେ ପକାଇଦେଇଥିଲେ । ଏହି ଦାର୍ଶନିକମାନଙ୍କ ବ୍ୟତୀତ ଫ୍ରାନ୍ସର ଅର୍ଥନୀତିଜ୍ଞମାନେ ଶାସନର ଅତିଶକ୍ତି କେନ୍ଦ୍ରୀକରଣ ଏବଂ ବାଣିଜ୍ୟ ଓ କୃଷିରେ ହସ୍ତକ୍ଷେପର ନିନ୍ଦା କରିଥିଲେ । ଉଭୟ ଦାର୍ଶନିକ ଓ ଅର୍ଥନୀତିଜ୍ଞ ନିରଙ୍କୁଶ ବୁରବନ୍ ଶାସନର ପତନ ଚାହୁଁଥିଲେ ।

ଅଷ୍ଟାଦଶ ଶତାବ୍ଦୀରେ ଯେଉଁ ଦାର୍ଶନିକମାନେ ପ୍ରଥମେ ଫ୍ରାନ୍ସର ସରକାର, ସମାଜ ଓ ଧର୍ମ ବିରୁଦ୍ଧରେ ଲେଖନୀ ଚଳାଇଥିଲେ, ସେମାନଙ୍କ ମଧ୍ୟରେ ମଣ୍ଟେସ୍କୀୟୁ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ମଣ୍ଟେସ୍କୀୟୁ ସାଂବିଧାନିକ ସରକାରର ଜଣେ ପ୍ରଗାଢ଼ ଭକ୍ତ ଥିଲେ । ସେ ବହୁଦେଶ ବୁଲିଥିଲେ ଓ ଶାନ୍ତପ୍ରକୃତିକ ଲୋକ ଥିଲେ । ତାଙ୍କର ଅଭିମତ କମ୍ବା ଦୃଷ୍ଟିଭଙ୍ଗୀ ଜଣେ ବିପ୍ଳବୀର ବୋଲି କୁହାଯାଇନପାରେ । ସେ ଜଣେ କ୍ୟାଥଲିକ୍ ଓ ରାଜତନ୍ତ୍ରର ପୃଷ୍ଠପୋଷକ ଥିଲେ ଏବଂ ଜଣେ ନରମପନ୍ଥୀ ହିସାବରେ ଗିର୍ଜାର ଆବର୍ଜନା ଓ ନିରଙ୍କୁଶ ଶାସନର ସମାଲୋଚକ ଥିଲେ । ସେ ଇଂଲଣ୍ଡକୁ ଯାଇଥିଲେ ଓ ସେଠାକାର ସୀମିତ ଓ ସାମ୍ବିଧାନିକ ସରକାରର, ନିୟନ୍ତ୍ରଣ ଓ ଭାରସାମ୍ୟ (Checks and balances) ନୀତି ପ୍ରୟୋଗ ହୋଇଥିବା ଶାସନକଳର ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କର ସର୍ବପ୍ରଥମ ପୁସ୍ତକ ହେଲା 'ପାରସ୍ୟ ଚିଠି' (The Persian Letters) ଏବଂ ଏହା ଫରାସୀ ସମାଜ ବିଷୟରେ ଗୋଟିଏ ବ୍ୟଙ୍ଗରଚନା । ଏହି ପୁସ୍ତକରେ ଲେଖକ ପାରସ୍ୟକୁ ଗୋଟିଏ କାଳ୍ପନିକ ଆଦର୍ଶ ବୋଲି ଧରି (imaginary model) ଫ୍ରାନ୍ସର ବିଶେଷ ଅଧିକାରପ୍ରାପ୍ତ ସମ୍ଭ୍ରାନ୍ତଗୋଷ୍ଠୀ, ଦୁର୍ନୀତିଗ୍ରସ୍ତ ରାଜଦରବାର ଏବଂ ଧର୍ମ ସମ୍ବନ୍ଧୀୟ ଅସହିଷ୍ଣୁତାକୁ ନାନାପ୍ରକାର ବିଦ୍ରୂପ କରିଥିଲେ । ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଆଇନତତ୍ତ୍ୱ' (Spirit of Laws) ୧୭୪୮ ମସିହାରେ ପ୍ରକାଶ ପାଇଥିଲା ।

ଏହି ପୁସ୍ତକରେ ବିଭିନ୍ନ ଶାସନ ପଦ୍ଧତିର ସାଧାରଣ ଆଲୋଚନା କରାଯାଇଛି; ତେଣୁ ଏହା ଏକ ଜ୍ଞାନଭଣ୍ଡାର, ଯେଉଁଥିରୁ କି ରାଷ୍ଟ୍ର-ପୁନର୍ଗଠନରେ ବ୍ରତୀ ହୋଇଥିବା ଲୋକେ ସେମାନଙ୍କର ଭାବ ସଂଗ୍ରହ କରୁଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ସଂବିଧାନ ଏହାଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଅଛି । କିନ୍ତୁ ଅନ୍ୟ ଦିଗରେ ଏ ପୁସ୍ତକ ବ୍ରିଟିଶ୍ ସଂବିଧାନ-

ଦ୍ୱାରା ପ୍ରଭାବିତ ହୋଇଥିଲା । ମଣ୍ଟେସ୍କୀୟୁ ବିଭିନ୍ନ କ୍ଷମତାର ପୃଥକୀକରଣର (Separation of powers) ସଦ୍‌ଗୁଣଗୁଡ଼ିକ ବିଶଦ ବ୍ୟାଖ୍ୟା କଲାବେଳେ ବ୍ରିଟିଶ ଶାସନ ବ୍ୟବସ୍ଥା ସମ୍ପର୍କରେ ତାଙ୍କର ଅର୍ଜିତ ଜ୍ଞାନର ବିନିଯୋଗ କରିଥିଲେ । ସେ ମନ୍ତବ୍ୟ ଦେଇଥିଲେ, "ଯଦି ନ୍ୟାୟାଳୟ ସମ୍ପର୍କୀୟ କ୍ଷମତା, ଆଇନପ୍ରଣୟନ ଏବଂ ଶାସନ ସମ୍ବନ୍ଧୀୟ କ୍ଷମତାଠାରୁ ପୃଥକ ନହୁଏ ତାହାହେଲେ ବ୍ୟକ୍ତିଗତ ସ୍ୱାଧୀନତା କେବେହେଲେ ରହିବ ନାହିଁ ।" ("There is no liberty," he remarked "if judicial power be not separated from the legislative and executive".)

ସେ ରାଷ୍ଟ୍ରର ଆଇନ ପ୍ରଣୟନ, କାର୍ଯ୍ୟକାରୀ, ବିଚାର ବିଭାଗୀୟ ଶାଖାଗୁଡ଼ିକର ସ୍ୱାତନ୍ତ୍ର୍ୟତ ଦାବି କଲାବେଳେ ବ୍ରିଟିଶ୍ ଶାସନ ପ୍ରଣାଳୀକୁ ପ୍ରଶଂସା କରିଥିଲେ; କିନ୍ତୁ ତାଙ୍କର ଭୁଲ ଧାରଣା ଥିଲା ଯେ ବ୍ରିଟେନରେ କାର୍ଯ୍ୟକାରୀ କ୍ଷମତା ଆଇନ ପ୍ରଣୟନ ସମ୍ପର୍କୀୟ କ୍ଷମତାଠାରୁ ସମ୍ପୂର୍ଣ୍ଣ ପୃଥକ । ମୋଟାମୋଟି କହିବାକୁ ଗଲେ ସେ ରାଜାଙ୍କର ଦେବଦତ୍ତ ଅଧିକାର (Devine Rights of Kings) ଓ ନିରଙ୍କୁଶ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ମଧ୍ୟ ସେ ରାଜତନ୍ତ୍ର ଏବଂ ତାହାର ସୀମିତ କ୍ଷମତାରେ ପୂର୍ଣ୍ଣ ବିଶ୍ୱାସ କରୁଥିଲେ ।

ସେ କାଳରେ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଭଲଟାୟାର ଥିଲେ ଗୋଟିଏ ପରିଦୃଶ୍ୟମାନ ଉଜ୍ଜ୍ୱଳ ନକ୍ଷତ୍ର ସଦୃଶ । ସେ ଜଣେ ପରିପୂର୍ଣ୍ଣ (prolific) ଲେଖକ ହିସାବରେ କେତେ ନାଟକ, ଇତିହାସ, ବ୍ୟଙ୍ଗ କବିତା ଓ ପ୍ରବନ୍ଧ ଲେଖି ନିଜର ପ୍ରତିଭାର ପରିଚୟ ଦେଇଥିଲେ । ସବୁଶ୍ରେଣୀର ଲେଖକମାନଙ୍କ ମଧ୍ୟରେ ସେ ଥିଲେ ଜଣେ ଅତି ପ୍ରଖ୍ୟାତ ଓ ପ୍ରଭାବଶାଳୀ ଲେଖକ । ମାନବ-ପ୍ରେମ, ତୀକ୍ଷ୍ଣ ବୁଦ୍ଧି ଓ ଗିର୍ଜା ପ୍ରତି ତୀବ୍ର ବୈରିତା ତାଙ୍କୁ ବିଶେଷଭାବରେ ଅନୁପ୍ରାଣିତ କରିଥିଲା । ଗିର୍ଜା ଥିଲା ତାଙ୍କର ପ୍ରଧାନ ଶତ୍ରୁ । ତାଙ୍କ ଶାଣିତ ତୀକ୍ଷ୍ଣ ମୁନ ଗିର୍ଜାର ପ୍ରତିଷ୍ଠିତ ମତ ଓ ପଦ୍ଧତି ବିରୁଦ୍ଧରେ ପରିଚାଳିତ ହୋଇଥିଲା । ସେ ଲେଖିଥିଲେ, "ଗର୍ହିତ ବସ୍ତୁକୁ ନଷ୍ଟ କରିଦିଅ" ("Annihilate the infamous thing" he wrote) ତାଙ୍କର ଏ ବିବୃତିରେ ସେ ଧର୍ମାନ୍ଧତା ଓ କୁସଂସ୍କାରର ବିଲୋପ ଚାହିଁଥିଲେ । ବିବାହ ତାଙ୍କ ମତରେ ଗୋଟିଏ ଧର୍ମସମ୍ବନ୍ଧୀୟ ଅନୁଷ୍ଠାନ ନୁହେଁ; ବରଂ ଏହା ମୁଖ୍ୟତଃ ଗୋଟିଏ ସାମାଜିକ ଅନୁଷ୍ଠାନ ଏବଂ ଆବଶ୍ୟକୀୟ ସାମାଜିକ ବନ୍ଧନ ( civil contract ) । ତାଙ୍କ ମତରେ ସମ୍ପତ୍ତି ଅନୁପାତରେ ଗିର୍ଜାଗୁଡ଼ିକ ସେମାନଙ୍କର ଯଥାର୍ଥ କରଭାର ବହନ କରିବା ଉଚିତ । ତାଙ୍କର 'ଇଂରେଜମାନଙ୍କ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଚିଠିସବୁ' ('The Letters on the English') ଅତି ବଳିଷ୍ଠ ଲେଖା ଏବଂ ସେ ସେଥିରେ ଅନ୍ୟାନ୍ୟ ବିଷୟ ଲେଖିଲାବେଳେ ସୂଚାଇ ଦେଇଥିଲେ ଯେ ଇଂଲଣ୍ଡରେ ଗିର୍ଜା ଓ ସମ୍ଭ୍ରାନ୍ତମାନେ ପ୍ରତ୍ୟକ୍ଷ କରରୁ ଅବ୍ୟାହତି ପାଉନଥିଲେ । ତେଣୁ ଫ୍ରାନ୍ସରେ ପ୍ରତ୍ୟକ୍ଷ କରରୁ ସେମାନଙ୍କୁ ଅବ୍ୟାହତି ନ ଦେବା ସେ ଚାହୁଁଥିଲେ । ସେ ବିଶେଷ ଅଧିକାର ପ୍ରାପ୍ତ ଓ ସୁବିଧା

ଉପଭୋଗୀମାନଙ୍କ ବିପକ୍ଷରେ କହିବାକୁ ଆଦୌ ପଶ୍ଚାତ୍‌ପଦ ହେଉନଥିଲେ । ଏକଦା ପ୍ୟାରିସ୍‌ର ଅଦାଲତ (the Parlement of Paris) ଜଣେ ଲେଖକଙ୍କୁ ସାମନ୍ତବାଦ ବିରୁଦ୍ଧରେ ଲେଖିଥିବାରୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡାଦେଶ ଦେଇଥିଲା । ଭଲଟାୟାର ସେଥିରେ କ୍ଷୁବ୍‌ଧ ହୋଇ ସର୍ବସମକ୍ଷରେ ପ୍ୟାରିସ ଅଦାଲତର ତୀବ୍ର ସମାଲୋଚନା କରିଥିଲେ ।

ତାଙ୍କର କିନ୍ତୁ ସାମାଜିକ ସମାନତା ଉପରେ ବିଶ୍ୱାସ ନ ଥିଲା ଏବଂ ସେ ଶ୍ରେଣୀ ବିଭାଗଗୁଡ଼ିକ ଚୂଡ଼ାନ୍ତ ଓ ଅବଶ୍ୟମ୍ଭାବୀ ବୋଲି ସ୍ୱୀକାର କରିଥିଲେ । ଯେଉଁମାନେ ଦଣ୍ଡବିଧି ଆଇନର ଅମାନୁଷିକତା ଓ ଅତ୍ୟାଚାରର ଶିକାର ହେଉଥିଲେ, ସେମାନଙ୍କ ପ୍ରତି ସେ ବିଶେଷ ସହାନୁଭୂତିଶୀଳ ଥିଲେ । ପ୍ରଚଳିତ ସମାଜରେ ନିର୍ଯାତିତ ବହୁ ବ୍ୟକ୍ତିଙ୍କର ନ୍ୟାୟ ବିଚାର ପାଇଁ ସେ ଆପ୍ରାଣ ଚେଷ୍ଟାକରିଥିଲେ । ରାଜନୀତିରେ ସେ ଉଦାରପନ୍ଥୀ ନ ଥିଲେ କି ଗଣତନ୍ତ୍ରବାଦୀ ନ ଥିଲେ । ସେ ପ୍ରୁସିଆର ଶାସକ ମହାନ୍ ଫ୍ରେଡ଼ରିକଙ୍କର (Frederick the Great) ନ୍ୟାୟପର ଓ ପ୍ରବୁଦ୍ଧ ନିରଙ୍କୁଶ ଶାସନକୁ ଶାସନ ପଦ୍ଧତି ହିସାବରେ ଅନୁକରଣ କରିବା ପାଇଁ ଯୁକ୍ତି ବାଢ଼ିଥିଲେ । ତାଙ୍କର ନିରଙ୍କୁଶ ରାଜତନ୍ତ୍ର ଉପରେ ବିଶ୍ୱାସ ଥିଲେ ମଧ୍ୟ ଲୋକମାନଙ୍କ ମଙ୍ଗଳ ପାଇଁ ସଂସ୍କାର ସବୁ ରାଜାଙ୍କ ଦ୍ୱାରା ପ୍ରବର୍ତ୍ତିତ କରାହେବା ଉଚିତ ବୋଲି ସେ ମନେକରୁଥିଲେ । ସେ ପ୍ରାୟ ଦୁଇବର୍ଷ ମହାନ୍ ଫ୍ରେଡ଼ରିକଙ୍କର ଅତିଥି ହୋଇଥିଲେ ଏବଂ ତାଙ୍କର ଜନହିତକର କାର୍ଯ୍ୟ ଦେଖି ଅତିଶୟ ଉତ୍ସାହିତ ହୋଇଥିଲେ । ଫ୍ରେଡ଼ରିକ ଜଣେ ଶକ୍ତିଶାଳୀ ରାଜା ହେଲେ ସୁଦ୍ଧା ସେ ନିଜକୁ 'ପ୍ରଥମ ଦେଶସେବକ' (The first servant of the State) ବୋଲି କହୁଥିଲେ ।

ଏହିସବୁ କାରଣ ଯୋଗୁଁ ଫ୍ରେଡ଼ରିକଙ୍କର ପ୍ରବୁଦ୍ଧ ଶାସନ ପ୍ରତି ସେ ବିଶେଷ ଆକୃଷ୍ଟ ହୋଇଥିଲେ । ତାଙ୍କର ପ୍ରବୁଦ୍ଧ ଶାସକଙ୍କ ଉପରେ କପଟ ଆସ୍ଥା ଥିଲା ଏବଂ ଗଣତନ୍ତ୍ର ଉପରେ ଆସ୍ଥା କପଟ ନ ଥିଲା, ତାହାର ସୂଚନା ତାଙ୍କର ଉକ୍ତିରୁ ଜଣାପଡ଼େ । ଭଲଟାୟାର କହି-ଥିଲେ ଯେ 'ଦୁଇଶହ ମୂଷିକଙ୍କଦ୍ୱାରା ଶାସିତ ହେବା ଅପେକ୍ଷା ଗୋଟିଏ ଉତ୍ତମ ସିଂହ ଦ୍ୱାରା ଶାସିତ ହେବାକୁ ସେ ଅଧିକ ପସନ୍ଦ କରୁଥିଲେ ।' (Voltaire said that "for his part he preferred to be ruled by one fine lion than by two hundred rats.") ସେ ଏହି ଉକ୍ତିରେ ଜଣେ ପ୍ରବୁଦ୍ଧ ନିରଙ୍କୁଶ ଶାସକ ସ୍ଥାନରେ ଗୋଟିଏ ଉତ୍ତମ ସିଂହକୁ ଉପମା ସ୍ୱରୂପ ଓ ଗଣତନ୍ତ୍ର ଶାସନକୁ ପରିଚାଳନା କରୁଥିବା ଲୋକପ୍ରତିନିଧିମାନଙ୍କ ସ୍ଥାନରେ ଦୁଇଶହ ମୂଷାଙ୍କୁ ଉପମା ସ୍ୱରୂପ ବ୍ୟବହାର କରିଛନ୍ତି । ଏଥିରୁ ପ୍ରମାଣ ମିଳୁଛି ଯେ ତାଙ୍କର ଗଣତନ୍ତ୍ର ଶାସନରେ ଆଦୌ ଆସ୍ଥା ନ ଥିଲା ଏବଂ ପ୍ରବୁଦ୍ଧ ନିରଙ୍କୁଶ ଶାସନରେ ପୂର୍ଣ୍ଣ ଆସ୍ଥା ଥିଲା । ସେ ଖ୍ରୀଷ୍ଟଧର୍ମକୁ ଉପହାସ କଲେ ମଧ୍ୟ ଓ ଗିର୍ଜାର ଶୃଙ୍ଖଳଗୁଡ଼ିକୁ ବରାବର ଆଘାତ କଲେ ମଧ୍ୟ, ନାସ୍ତିକ ନ ଥିଲେ । ସେ ଫାରନେରେ ଗୋଟିଏ ଗ୍ରାମ୍ୟ ଗର୍ଜା ପୁନରୁଦ୍ଧାର କରିଥିଲେ । ସେହି ଗିର୍ଜାଗୃହରେ

ଗୋଟିଏ ଖୋଦିତ ଲିପିରେ ଲେଖାଅଛି ଯେ ଯଦି ପରମେଶ୍ୱର ବିଦ୍ୟମାନ ନ ଥାନ୍ତି ତାହାହେଲେ ତାଙ୍କୁ ସୃଷ୍ଟି କରିବାକୁ ହେବ । ("If God did not exist, it would be necessary to create Him.")

ଲେଖକମାନଙ୍କ ମଧ୍ୟରେ ଦିଦରୋ ମଧ୍ୟ ଜଣେ ବିଖ୍ୟାତ ଲେଖକ ଥିଲେ । ତାଙ୍କର ଲେଖା ଫରାସୀମାନଙ୍କ ଉପରେ ପ୍ରଭାବ ପକାଇପାରିଥିଲା । ସେ ଡ଼' ଆଲେମ୍‌ବର୍ଟଙ୍କ ସହଯୋଗରେ ଫରାସୀ ବିଶ୍ୱକୋଷ (French Encyclopaedia) ସତର ଖଣ୍ଡରେ ସଙ୍କଳନ କରିଥିଲେ । ସେମାନେ କହିଥିଲେ ଯେ ଜ୍ଞାନ, ଜୀବନଦର୍ଶନ ଓ ବିଶ୍ୱଦର୍ଶନର ମୂଳ ଭିତ୍ତି । ସେମାନଙ୍କର ରଚନା ଅଜ୍ଞତା ଓ କୁସଂସ୍କାରକୁ ଧ୍ୱଂସ କରିବାରେ ଓ ଖ୍ରୀଷ୍ଟ ଧର୍ମ-ତତ୍ତ୍ୱର ସୌଧଟିକୁ ଧୀରେ ଧୀରେ ଦୁର୍ବଳ କରିବାରେ ସାହାଯ୍ୟ କରିଥିଲା । ସେମାନେ ଶିକ୍ଷାକୁ ଗିର୍ଜା ନିୟନ୍ତ୍ରଣରୁ ମୁକ୍ତ କରିବା ପାଇଁ ଦୃଢ଼ମତ ପ୍ରକାଶ କରିଥିଲେ । ଏତଦ୍‌ବ୍ୟତୀତ ବିଶ୍ୱକୋଷରେ ନିରଙ୍କୁଶ ଶାସନ ଓ ସାମାଜିକ ଅସମାନତାର ଘୋର ବିରୋଧ ମଧ୍ୟ କରାଯାଇଥିଲା ।

ଫରାସୀ ଦାର୍ଶନିକମାନଙ୍କ ମଧ୍ୟରେ ରୁଷୋ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ସେ ଜଣେ ସ୍ୱତନ୍ତ୍ର ସଙ୍ଗଠକ ଥିଲେ । ହୃଦୟର ଉଚ୍ଛ୍ୱାସଦ୍ୱାରା ସେ ପରିଚାଳିତ ହେଉଥିଲେ । ତେଣୁ ସେ ଥିଲେ ପ୍ରକୃତପକ୍ଷେ ଜଣେ ଭାବପ୍ରବଣ ବ୍ୟକ୍ତି । ତାଙ୍କର ଗୁରୁତ୍ୱପୂର୍ଣ୍ଣ ମତ ସଂକ୍ଷେପରେ ବ୍ୟକ୍ତ କରିବାକୁ ଯାଇ ସେ କହିଥିଲେ ଯେ, ମନୁଷ୍ୟ ପ୍ରଧାନତଃ ସଦ୍‌ଗୁଣସମ୍ପନ୍ନ; କିନ୍ତୁ ସଭ୍ୟତା ତାକୁ ଦୁର୍ନୀତିପରାୟଣ କରିଦିଏ । ("Man was essentially good, but corrupted by civilization.") ସେ ତେଣୁ କହିଥିଲେ ଯେ ମନୁଷ୍ୟଙ୍କୁ ସରଳ ଜୀବନକୁ ଫେରାଇନେଲେ ଏବଂ ଉପଯୁକ୍ତ ଶିକ୍ଷାର ସୁବିଧା ଦିଆଗଲେ ସେ ବିଚକ୍ଷଣତା ସହିତ କାର୍ଯ୍ୟ କରିପାରିବ ବୋଲି ଆଶା କରାଯାଇପାରେ । ତାଙ୍କର ମାନବଜାତି ବିଷୟରେ ଏହି ଉଚ୍ଚ ଧାରଣା ଥିବାରୁ ସେ ଉପଲବ୍‌ଧି କରିଥିଲେ ଯେ, ସାର୍ବଭୌମ କ୍ଷମତା ଯଥାର୍ଥରେ ଲୋକମାନଙ୍କ ଉପରେ ନ୍ୟସ୍ତ କରିବା ଉଚିତ । ("It was in the people that the sovereignty should properly rest.") ରୁଷୋ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ସାମାଜିକ ଚୁକ୍ତି'ରେ (Social Contract) ସରକାର ଓ ଶାସନ ବିଷୟରେ ତାଙ୍କ ଭାବ ପ୍ରକାଶ କରିଥିଲେ । ସେ ତାଙ୍କ ପୁସ୍ତକରେ ସେକାଳର ଅତ୍ୟାଚାର ବିରୁଦ୍ଧରେ ତାଙ୍କର ପ୍ରତିବାଦକୁ ପ୍ରଥମେ ସ୍ଥାନ ଦେଇଥିଲେ । ସେ ଲେଖିଥିଲେ, 'ମନୁଷ୍ୟ ସ୍ୱାଧୀନ ଭାବରେ ଜନ୍ମଗ୍ରହଣ କରିଥାଏ, କିନ୍ତୁ କ୍ରମେ ସେ ଚାରିଆଡ଼େ ଶୃଙ୍ଖଳାବଦ୍ଧ ହୋଇପଡ଼େ ।' ("Man is born free and yet everywhere he is in chains.") ସେଥିପାଇଁ ସେ କହିଥିଲେ ଯେ ମନୁଷ୍ୟ ତାର ପୂର୍ବ ସରଳତା ଓ ସୁଖ-ସ୍ୱାଚ୍ଛନ୍ଦ୍ୟକୁ ଫେରିଆସୁ ଏବଂ ଯେଉଁସବୁ ଅନୁଷ୍ଠାନ ତାକୁ ଦାସତ୍ୱ-ପାଶରେ ଆବଦ୍ଧ କରିଛି ସେସବୁକୁ ଧ୍ୱଂସ କରିଦେଉ । ତାଙ୍କ ମତରେ ରାଷ୍ଟ୍ରର ପ୍ରଥମ ଉତ୍ପତ୍ତି ଲୋକମାନଙ୍କଦ୍ୱାରା

ହୋଇଛି, ତେଣୁ ଏହା ଅବିଚ୍ଛେଦ୍ୟ ଭାବରେ ଲୋକମାନଙ୍କର ଅଧିକାରଭୁକ୍ତ । ଲୋକମାନଙ୍କର ସାର୍ବଭୌମ ଅଧିକାରକୁ ଅପହରଣ କରିବା ପାଇଁ ରାଷ୍ଟ୍ରରେ ବହୁ ସନ୍ଧି ବା ଫନ୍ଦିବିଧାନ ହୋଇଥିଲେ ମଧ୍ୟ ଲୋକମାନଙ୍କର ସେ ଅଧିକାର ସବୁବେଳେ ଅକ୍ଷୁଣ୍ଣ ରହିଛି । ସେ ଜନମତ ଓ ସାଧାରଣ ଇଚ୍ଛା (General will) ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । 'ଜନମତ' କହିଲେ ସାର୍ବଭୌମ ଜନତାର ସର୍ବସାଧାରଣଙ୍କ ମଙ୍ଗଳ ଉଦ୍ଦେଶ୍ୟରେ କାର୍ଯ୍ୟ କରିବାର ସ୍ୱାଧୀନତାକୁ ବୁଝାଏ । କାର୍ଯ୍ୟ କରିବାର ସ୍ୱାଧୀନତା ଥିଲେ ମଧ୍ୟ ପ୍ରକୃତରେ ସାର୍ବଭୌମ ଜନତାଠାରୁ ସବୁ ସମୟରେ ସୁବିଚାର ମିଳେ ନାହିଁ । ତେଣୁ ଅଧିକାଂଶଙ୍କ ବିଚାରରେ ଯାହା ସିଦ୍ଧାନ୍ତ ହେବ ତାକୁ 'ଜନମତ' ବୋଲି ଧରିନେବା ଉଚିତ । କିନ୍ତୁ ରୁଷୋ ପାର୍ଲିଆମେଣ୍ଟ ବା ବ୍ୟବସ୍ଥାପକ ସଭା ସପକ୍ଷରେ ନ ଥିଲେ । କାରଣ ସେ କହୁଥିଲେ ଯେ ଜନତାର ପ୍ରତିନିଧିତ୍ୱ କେହି କରିପାରିବେ ନାହିଁ । ("The people cannot be represented") ଆଇନସବୁ 'ଜନମତ'ର ପରିପ୍ରକାଶ ("expression of General Will") ହେବା ଉଚିତ ।

ରୁଷୋ ଅନୁମାନ କରିଥିଲେ ଯେ ପୂର୍ବକାଳରେ ଜନତା ତାହାର ସାର୍ବଭୌମ କ୍ଷମତାକୁ ନିଜ ସମାଜ ଉପରେ ଛାଡ଼ିଦେଇଥିଲା ଏବଂ କାଳକ୍ରମେ ଜଣେ ଜଣେ ରାଜା ସେହି କ୍ଷମତାକୁ ବଳପୂର୍ବକ ଅଧିକାର କରିନେଲେ । ଏହା ସତ୍ତ୍ୱେ ସେ କ୍ଷମତା ଯଥାଯଥରୂପେ ସମାଜ ଉପରେ ନ୍ୟସ୍ତ ରହିଛି ଓ ରାଜା ଯଦି ତାଙ୍କର କର୍ତ୍ତବ୍ୟ ପାଳନ ନ କରନ୍ତି ତାହାହେଲେ ସମାଜ ତାଙ୍କୁ ଗାଦିଚ୍ୟୁତ କରିପାରିବ । ଏହି ହେଉଛି 'ସାମାଜିକ ଚୁକ୍ତି'ର ମୌଳିକ ବିଷୟବସ୍ତୁ । ରାଜାମାନେ କ୍ଷମତା ବଳପୂର୍ବକ ଅଧିକାର କରନ୍ତୁ ବା ନ କରନ୍ତୁ, ସେମାନେ ପ୍ରାଥମିକ ସାମାଜିକ ଚୁକ୍ତିରୁ (Original Social Contract) ସୃଷ୍ଟି ଓ ସେ ଚୁକ୍ତି ସର୍ବସାଧାରଣଙ୍କ ହିତସାଧନ ପାଇଁ ଉଦ୍ଦିଷ୍ଟ । ରାଜପଦ ପ୍ରଜାମାନଙ୍କର ଅଧିକାର-ଗୁଡ଼ିକୁ ରକ୍ଷାକରିବା ଉପରେ ନିର୍ଭର କରୁଥିଲା । ଫ୍ରାନ୍ସର ଲୋକମାନେ ସେମାନଙ୍କର ଅଧିକାର ହରାଇବାରୁ ଚୁକ୍ତିଭଙ୍ଗ ହେଲା ଓ ରାଜା ଜାତିର ଆନୁଗତ୍ୟ ହରାଇଲେ ।

'ସାମାଜିକ ଚୁକ୍ତି' (Social Contract) ଲୋକମାନଙ୍କ ମଧ୍ୟରେ ଏପରି ସାମ୍ୟଭାବ ଆଣିଥିଲା ଯେ ସେମାନେ ସମାନଭାବରେ ଚୁକ୍ତିର ସର୍ତ୍ତଗୁଡ଼ିକ ପାଳନ କରିବା ପାଇଁ ଏକତାବଦ୍ଧ ହୋଇଥିଲେ; ସୁତରାଂ ସେମାନେ ସମସ୍ତେ ସମାନ ଅଧିକାର ଲାଭ କରିବା ଯୁକ୍ତିସଙ୍ଗତ ।

ରୁଷୋ ନିରଙ୍କୁଶ ଓ ଏକଚ୍ଛତ୍ରବାଦୀ ଶାସକ ଓ ଦୁର୍ନୀତିଭରା ସମାଜ ବିରୁଦ୍ଧରେ ମତବ୍ୟକ୍ତ କରିଥିଲେ । ସେ ଲୋକମାନଙ୍କ ମଧ୍ୟରେ ଜନତାର ସାର୍ବଭୌମ ଅଧିକାର ଓ ରାଜନୈତିକ ସମାନତା ପ୍ରଚାର କରିଥିଲେ । ଏହି ଦୁଇଟି ଭାବ ମାନବଜାତିର ମୂଳମନ୍ତ୍ର ହୋଇଥିଲା ଓ ଆଧୁନିକ ପୃଥିବୀ ଇତିହାସ ଉପରେ ବିଶେଷ ପ୍ରଭାବ ପକାଇ-

ପାଇଥିଲା । ବାସ୍ତବିକ ରୁଷୋ ଥିଲେ ବିପ୍ଲବର ପ୍ରବର୍ତ୍ତକ (Prophet of the Revolution) ।

ଏମାନଙ୍କ ବ୍ୟତୀତ ଦଳେ ସ୍ୱାଭାବିକ ଅର୍ଥନୈତିକ କ୍ଷେତ୍ରରେ ହେତୁବାଦର (rationalism) ପ୍ରୟୋଗ କରୁଥିଲେ । ଏମାନେ ନିଜକୁ ଅର୍ଥନୀତିଜ୍ଞ ବୋଲି କହୁଥିଲେ ଏବଂ ସବୁପ୍ରକାର ସରକାରୀ କଟକଣା ବିରୁଦ୍ଧରେ ଦୃଢ଼ ମତ ପ୍ରକାଶ କରିଥିଲେ । ସେମାନଙ୍କ ମତରେ ଯଦି ସରକାର ପ୍ରତିରୋଧ କିମ୍ବା ହସ୍ତକ୍ଷେପ ନ କରନ୍ତି, ତାହାହେଲେ 'ପ୍ରାକୃତିକ ନିୟମ' (natural laws) ଅନୁସାରେ ଧନ ଆପେ ଆପେ ବାଣ୍ଟି ହୋଇଯିବ । ଏହି ମତାବଲମ୍ବୀମାନଙ୍କର ଧ୍ୱନି (watch-word) ହେଲା 'କାହାକୁ କିଛି ନ କହି ଯେପରି ଅଛି ସେହିପରି ଛାଡ଼ିଦିଅ' (laissez-faire) । ଏହି ସାଧାରଣ ଦଳରେ ଅନ୍ତର୍ଭୁକ୍ତ ହେଲେ ମଧ୍ୟ ସ୍କଟଲାଣ୍ଡବାସୀ ଆଡ଼ାମ ସ୍ମିଥ୍ ସବୁ ଅର୍ଥନୀତିଜ୍ଞଙ୍କୁ ଟପିଯାଇଥିଲେ । ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଜାତିର ସମ୍ପଦ' (the Wealth of the Nations) ବାଣିଜ୍ୟ ସମ୍ବନ୍ଧରେ ଅତି ପ୍ରଭାବଶାଳୀ ଅଭିଯୋଗପତ୍ର ଏବଂ ତାଙ୍କୁ ଅବାଧ ବାଣିଜ୍ୟର (free trade) ସବୁଠାରୁ ବଡ଼ ପୃଷ୍ଠପୋଷକ (protagonist) ବୋଲି ଧରାଯାଏ । ଫ୍ରାନ୍ସର ଅର୍ଥନୀତିଜ୍ଞମାନେ ଆଡ଼ାମ୍ ସ୍ମିଥ୍‌ଙ୍କ ଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଥିଲେ । ସେମାନଙ୍କର ମୁଖ୍ୟ ପ୍ରତିନିଧିମାନେ ହେଲେ ଫରାସୀ ରାଷ୍ଟ୍ରବିପ୍ଳବର ଖ୍ୟାତନାମା ରାଜନୀତିଜ୍ଞଙ୍କ ପିତା ମିରାବ୍ୟୁ ଏବଂ ଆନ୍ଦୋଳନର ପ୍ରତିଷ୍ଠାତା ସ୍ୱାଭାବିକ କ୍ୱେସ୍‌ନେ । କ୍ୱେସ୍‌ନେଙ୍କର ଅସ୍ପଷ୍ଟ ଓ କଠିନ ପୁସ୍ତକ 'ଅର୍ଥନୀତି ନିର୍ଘଣ୍ଟକୁ' (Tablean Economique-Economics table) କେବଳ ଫ୍ରାନ୍ସର ଅଶାନ୍ତିର ଅବ୍ୟର୍ଥ ମହୌଷଧି ବୋଲି ଅଭିହିତ କରିଥିଲେ । ଏହି ଅର୍ଥନୀତିଜ୍ଞମାନଙ୍କର ଲେଖାଗୁଡ଼ିକରୁ ଜଣାଯାଏ ଯେ ଶ୍ରମ ଜମିରେ ଖଟାଇଲେ ସବୁ ଧନ ମିଳେ ଏବଂ ମଜଦୁରମାନେ ବାସ୍ତବିକ ସବୁଠାରୁ ବେଶି ଉତ୍ପାଦନକାରୀ— ସମ୍ଭବତଃ ଏକମାତ୍ର ଉତ୍ପାଦନକାରୀ ଶ୍ରେଣୀ । ଏମାନଙ୍କ ମତରେ ସରକାରଙ୍କ କାର୍ଯ୍ୟାନୁଷ୍ଠାନକୁ ଆବଶ୍ୟକ ପରିମାଣରେ ସୀମିତ କରିବା ଉଚିତ; କାରଣ ସମ୍ପୂର୍ଣ୍ଣ ଅବାଧ ବାଣିଜ୍ୟ ଓ ବ୍ୟାପକ ଶିକ୍ଷା ପଦ୍ଧତିର ପ୍ରତିଷ୍ଠା ପାଇଁ ସଂସ୍କାର ତୁରନ୍ତ ଆବଶ୍ୟକ ଏବଂ ତତ୍ସଙ୍ଗେ ସଙ୍ଗେ ସବୁ କରଗୁଡ଼ିକୁ ଉଠାଇଦେଇ ଏକମାତ୍ର ଭୂମିକର ବସାଇବା ସମୀଚୀନ । ଟରଗଟ୍ ଏହି ଦଳର ସିଦ୍ଧାନ୍ତ ଗ୍ରହଣ କରିଥିଲେ ଏବଂ କ୍ୱେସ୍‌ନେଙ୍କ ପରି ଭୂମି, ସମ୍ପତ୍ତିର ଏକମାତ୍ର ଉତ୍ପତ୍ତିସ୍ଥଳ ଏବଂ ଭୂମିରୁ ଉତ୍ପାଦନ ହେଉଥିବା ଫସଲ ଉପରେ କର ବସାଇବା ଉଚିତ ବୋଲି ସେ କହୁଥିଲେ । ଏହାଛଡ଼ା କ୍ୱେସ୍‌ନେଙ୍କ ଭଳି ସେ ବିଶ୍ୱାସ କରିଥିଲେ ଯେ ଲୋକମାନଙ୍କର ପ୍ରାରମ୍ଭରୁ ସମାନ ଅଧିକାର ଥିଲା ଏବଂ ସୁବିଧା ଅନୁସାରେ ପ୍ରତ୍ୟେକ ଲୋକ ତାର ହସ୍ତ ଓ ମସ୍ତିଷ୍କ ବ୍ୟବହାର କରିବାର ସ୍ୱାଧୀନତା ମଧ୍ୟ ଥିଲା । କ୍ୱେସ୍‌ନେ ଏବଂ ତାଙ୍କର ଅନୁଗାମୀମାନେ କୃଷି, ଶିଳ୍ପ, ବାଣିଜ୍ୟ ଓ ଛାପାଖାନାର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ପ୍ରକୃତ ଜାତୀୟ ସମୃଦ୍ଧିର ଭିତ୍ତି ବୋଲି ସାଧାରଣରେ ପ୍ରଚାର କରିଥିଲେ । ମୋଟରେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧକୁ

ଭଲଟାୟାରଙ୍କ ଯୁଗ ବୁଝାଯାଉଥିବାବେଳେ, ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ରୁଷୋଙ୍କ ଯୁଗ ହେବ ବୋଲି ପୂର୍ବରୁ ନିର୍ଦ୍ଧାରିତ କରାଯାଇଥିଲା ।

ଏହିସବୁ ଲେଖକମାନଙ୍କ ଲେଖାମାନପ୍ରତି ମଧ୍ୟବିତ୍ତଶ୍ରେଣୀର ଲୋକେ ବିଶେଷଭାବରେ ଉଦ୍‌ବୁଦ୍ଧ ହୋଇଥିଲେ । ବିଭିନ୍ନ କ୍ଲବ, ସଭା ସମିତି ଓ ବୈଠକଖାନାମାନଙ୍କରେ ଦାର୍ଶନିକମାନଙ୍କର ଲେଖାର ଚର୍ଚ୍ଚା ହେଉଥିଲା । ସର୍ବସାଧାରଣଙ୍କ ଅଭିମତ (Public opinion) ସାଧାରଣତଃ ମଧ୍ୟବିତ୍ତଶ୍ରେଣୀର ଅଭିମତ ବୋଲି ଧରାଯାଉଥିଲା । ସର୍ବସାଧାରଣଙ୍କ ମଧ୍ୟରେ ଓକିଲ, ଧନୀ, ବ୍ୟବସାୟୀ, ସରକାରୀ ଚାକିରିଆ ଓ କେତେକ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ଥିଲେ । କ୍ରମେ କ୍ରମେ ସାଧାରଣ ଜନତାକୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଲୋକସଂଖ୍ୟା ଅନୁପାତରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଖୁବ୍ କମ୍ ଥିବାରୁ ସାଧାରଣ ଜନତା ପ୍ରାୟ ପଢ଼ି ଶିଖି ନ ଥିଲେ । ନିମ୍ନ ପ୍ରାଥମିକ ବିଦ୍ୟାଳୟ ଅଭାବରୁ ଅଧିକାଂଶ ସାଧାରଣ ଲୋକେ ଶିକ୍ଷାରୁ ବଞ୍ଚିତ ହେଲେ ମଧ୍ୟ ସେମାନେ ନୂତନ ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇ ରାସ୍ତାକଡ଼ କିମ୍ବା ସର୍ବସାଧାରଣ ଚୌକରେ, ଯେ ସବୁ ଆଲୋଚନା କରୁଥିଲେ । ଏହିସବୁ କାରଣରୁ ନିରଙ୍କୁଶ ଶାସକ ଓ ସୁବିଧା-ଉପଭୋଗୀ ଗୋଷ୍ଠୀ ବିରୁଦ୍ଧରେ ଜନମତ ପ୍ରକାଶ ପାଇଲା ।

ଇଂଲଣ୍ଡରେ ଯେଉଁ ବିପ୍ଳବ ୧୬୪୦ ମସିହାରେ ସ୍ୱେଚ୍ଛାଚାରୀ ଷ୍ଟୁଆର୍ଟ୍ ରାଜା ପ୍ରଥମ ଚାର୍ଲସ୍‌ଙ୍କ ବିରୁଦ୍ଧରେ ସଂଘଠିତ ହୋଇଥିଲା, ତାହା ଫରାସୀ ଲୋକମାନଙ୍କୁ ସେମାନଙ୍କ ସ୍ୱେଚ୍ଛାଚାରୀ ବୁରବନ୍ ରାଜା ଷୋଡ଼ଶ ଲୁଇଙ୍କ ବିରୁଦ୍ଧରେ ବିପ୍ଳବ କରିବା ପାଇଁ ପ୍ରେରଣା ଦେଇଥିଲା । ଫରାସୀ ଲୋକେ ମଧ୍ୟ ଇଂଲଣ୍ଡର ଅନ୍ୟ ଜଣେ ଷ୍ଟୁଆର୍ଟ୍ ରାଜା ଦ୍ୱିତୀୟ ଜେମସ୍‌ଙ୍କ ବିରୁଦ୍ଧରେ ୧୬୮୮ ମସିହାରେ ହୋଇଥିବା 'ଗୌରବମୟ ବିପ୍ଳବ' (Glorious Revolution) ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଫ୍ରାନ୍ସର ବୁରବନ ରାଜା ଷୋଡ଼ଶ ଲୁଇଙ୍କ ବିରୁଦ୍ଧରେ ବିପ୍ଳବ କରିବା ପାଇଁ ସୁବିଧା ଖୋଜୁଥିଲେ । ବିଶେଷତଃ ବ୍ରିଟିଶ୍ ଦାର୍ଶନିକ ଜନ ଲକ୍‌ଙ୍କର ଗୌରବମୟ ବିପ୍ଳବ ସପକ୍ଷରେ ଲେଖା ଫରାସୀମାନଙ୍କୁ ଅନୁପ୍ରାଣିତ କରିଥିଲା । ତାଙ୍କ ରଚିତ 'ଶାସନ ସମ୍ବନ୍ଧୀୟ ଦୁଇଟି ନିବନ୍ଧ' (Two Treatises of Government) ଇଂଲଣ୍ଡରେ ହୋଇଥିବା ବିପ୍ଳବର ଯେଉଁ ରାଜନୈତିକ ସିଦ୍ଧାନ୍ତ (Political theory) ଉପସ୍ଥାପିତ କରିଥିଲା, ତାହା ଫରାସୀମାନଙ୍କ ମନରେ ଗଭୀର ରେଖାପାତ କରିଥିଲା । ତାଙ୍କ ବିଚାରରେ ନିର୍ବାଚନ ଦ୍ୱାରା ନିଯୁକ୍ତି ଲୋକପ୍ରତିନିଧିଙ୍କ ହାତରେ ନ୍ୟସ୍ତ ଗଣତନ୍ତ୍ର ଶାସନ ସବୁଠାରୁ ଉତ୍କୃଷ୍ଟ ଶାସନ । ସେ ରାଜାଙ୍କୁ ରଖିବାକୁ ରାଜିଥିଲେ; ଯଦି ରାଜା ଆଇନ ପ୍ରଣୟନ କ୍ଷମତାରୁ ବଞ୍ଚିତ ହୁଅନ୍ତି ଏବଂ ତାଙ୍କର ଶାସନ କରିବାର ଅଧିକାର ଜନତାର ସମ୍ମତି ଉପରେ ନିର୍ଭର କରୁଥାଏ । ସେ ପୁଣି କହିଥିଲେ ଯେ ଯଦି ରାଜା ପ୍ରଜାମାନଙ୍କର ଧନ, ଜୀବନ ଓ ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ଅସମର୍ଥ ହୁଅନ୍ତି, ତାହାହେଲେ ପ୍ରଜାମାନଙ୍କର ରାଜାଙ୍କୁ ଗାଦିଚ୍ୟୁତ କରିବାର ଅଧିକାର ରହିଛି । ଏହି ଦୁଇଟି

ବିପ୍ଳବ ଛଡ଼ା ଆମେରିକା ସ୍ୱାଧୀନତା ସଂଗ୍ରାମ ମଧ୍ୟ ଫରାସୀ ରାଷ୍ଟ୍ରବିପ୍ଳବକୁ କେତେକ ପରିମାଣରେ ପ୍ରଭାବିତ କରିଥିଲା । ଫ୍ରାନ୍ସର ସ୍ୱେଚ୍ଛାସେବୀମାନେ ଇଂରେଜମାନଙ୍କ ଉପରେ ସପ୍ତବର୍ଷ ବ୍ୟାପୀ ଯୁଦ୍ଧର ପ୍ରତିଶୋଧ ନେବା ପାଇଁ ଆଟଲାଣ୍ଟିକ ମହାସାଗର ପାରହୋଇ, ଆମେରିକାର ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ କରିଥିଲେ ଏବଂ ଔପନିବେଶିକମାନଙ୍କୁ ସେମାନଙ୍କର ସ୍ୱାଧୀନତା ହାସଲ କରିବାରେ ସହାୟ ହୋଇଥିଲେ । ସେଠାରୁ ସେମାନେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଭାବ ନେଇ (ideas of individual liberty) ଫ୍ରାନ୍ସକୁ ଫେରିଥିଲେ ଓ ନିରଙ୍କୁଶ ରାଜତନ୍ତ୍ରର ଅତ୍ୟାଚାରକୁ ଆଉ ସହ୍ୟ କରି ନ ପାରି ଲୋକମାନଙ୍କ ମଧ୍ୟରେ ବିପ୍ଳବର ମଞ୍ଜି ବୁଣିବାକୁ ଲାଗିଲେ ।

ଫରାସୀ ଦାର୍ଶନିକ, ଅର୍ଥନୀତିଜ୍ଞ ଓ ଅନ୍ୟାନ୍ୟ ଲେଖକମାନେ ମଞ୍ଚସ୍ଥ ହେବାକୁ ଯାଉଥିବା ବୈପ୍ଳବିକ ନାଟକ ପାଇଁ ରଙ୍ଗମଞ୍ଚ ପ୍ରସ୍ତୁତ କରିଥିଲେ ସତ; କିନ୍ତୁ ଫ୍ରାନ୍ସର ଆର୍ଥିକ ଅଧୋଗତି ସେ ନାଟକ ୧୭୮୯ ମସିହାରେ ମଞ୍ଚସ୍ଥ କରିବାରେ ବିଶେଷ ସାହାଯ୍ୟ କରିଥିଲା ।

## ଅର୍ଥନୈତିକ କାରଣ
(Economic Cause)

ଫରାସୀ ରାଷ୍ଟ୍ରର ଦେବାଳିଆ ଅବସ୍ଥା ବିପ୍ଳବର ଆଶୁ କାରଣ । ଚତୁର୍ଦ୍ଦଶ ଲୁଇଙ୍କ ରାଜୁତିରେ ଯେଉଁ ଅର୍ଥନୈତିକ ପରିସ୍ଥିତି ଅସନ୍ତୋଷଜନକ ଥିଲା, ତାହା ପଞ୍ଚଦଶ ଲୁଇଙ୍କ ରାଜୁତିକାଳରେ ଶୋଚନୀୟ ହୋଇପଡ଼ିଥିଲା । ରାଷ୍ଟ୍ରର ବାର୍ଷିକ ଆୟ ବ୍ୟୟ ତୁଳନାରେ ଯଥେଷ୍ଟ ନ ଥିଲା । ତେଣୁ ରାଷ୍ଟ୍ରର ଖର୍ଚ୍ଚ ତୁଲାଇବା ପାଇଁ ଚଢ଼ା ସୁଧରେ ଋଣ ଉଠାଇବାକୁ ପଡ଼ୁଥିଲା ଓ ଋଣ ପରିଶୋଧ କରିବାରେ ରାଜସ୍ୱର ଗୋଟିଏ ବଡ଼ ଅଂଶ ବ୍ୟୟ ହେଉଥିଲା । ଉଚ୍ଚଶ୍ରେଣୀର ଲୋକେ ଅଧିକାଂଶ ପ୍ରତ୍ୟକ୍ଷ କରରୁ ଅବ୍ୟାହତି ପାଉଥିଲାବେଳେ ସାଧାରଣ ଲୋକଙ୍କୁ ସେସବୁ କର ଦେବାକୁ ପଡ଼ୁଥିଲା । ପ୍ରତ୍ୟକ୍ଷ କର ଜମି, ଘର, ଶିଳ୍ପ ଓ ଆୟ ଉପରେ ଧାର୍ଯ୍ୟ କରାଯାଉଥିଲା । ଏସବୁ ପ୍ରତ୍ୟକ୍ଷ କର ବ୍ୟତୀତ ଲବଣ କର (gabell) ପରି କେତେକ ପରୋକ୍ଷ କର ଲୋକମାନଙ୍କଠାରୁ ଆଦାୟ କରାଯାଉଥିଲା । ପ୍ରତ୍ୟକ୍ଷ କରଗୁଡ଼ିକ ଅପେକ୍ଷା ପରୋକ୍ଷ କରଗୁଡ଼ିକ ଅଧିକ ଅହେତୁକ ଓ ପୀଡ଼ାଦାୟକ ଥିଲା । ପରୋକ୍ଷ କରଗୁଡ଼ିକ ମଧ୍ୟରେ ଲବଣକର ସବୁଠାରୁ ଦୁର୍ନୀତିପୂର୍ଣ୍ଣ ଥିଲା । ଏ କର ରାଷ୍ଟ୍ର କର୍ତ୍ତୃକ ଆଦାୟ ନ ହୋଇ କର-ସଂଗ୍ରାହକମାନଙ୍କ ଦ୍ୱାରା ଆଦାୟ କରାଯାଉଥିଲା ଓ ସେମାନେ ଗରିବ କୃଷକମାନଙ୍କଠାରୁ ଯେତେ ଇଚ୍ଛା ସେତେ କର ଆଦାୟ କରୁଥିଲେ । ସେମାନଙ୍କୁ କେବଳ ଲୁଣ ବିକିବାର ଏକଚାଟିଆ ଅଧିକାର ଦିଆଯାଇଥିଲା । ସେମାନେ ମୁଣ୍ଡପିଛା କର (poll-tax) ପରି ସାତବର୍ଷରୁ ଅଧିକ ହୋଇଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ବାର୍ଷିକ ସାତପାଉଣ୍ଡ ଲୁଣ କେବଳ ରନ୍ଧାବଢ଼ା ପାଇଁ କିଣିବାକୁ ବାଧ୍ୟ କରାଯାଉଥିଲା ।

ତା'ଛଡ଼ା ଅନ୍ୟାନ୍ୟ ଜିନିଷ ପାଇଁ ଲୋକମାନଙ୍କୁ ଅଧିକ ଲୁଣ ଖରିଦ କରିବାକୁ ପଡ଼ୁଥିଲା । ସାଧାରଣ ଲୋକମାନଙ୍କୁ ମହମବତି, ଇନ୍ଧନ, ଶସ୍ୟ, ଅଟା ଓ ମଦ ପ୍ରଭୃତି ନିତ୍ୟ-ବ୍ୟବହାର୍ଯ୍ୟ ଜିନିଷ ପାଇଁ ଅବକାରୀ ଶୁଳ୍କ ଏବଂ କେତେକ କ୍ଷେତ୍ରରେ ଦେଶର ଗୋଟିଏ ଜାଗାରୁ ଅନ୍ୟ ଗୋଟିଏ ଜାଗାକୁ ଜିନିଷ ନେବା ଆଣିବା ପାଇଁ ସୀମା ଶୁଳ୍କ (customs duty) ଦେବାକୁ ପଡ଼ୁଥିଲା । ତେଣୁ କର ବ୍ୟବସ୍ଥା କେବଳ ଯେ ସନ୍ତୋଷଜନକ ଓ ନ୍ୟାୟସଙ୍ଗତ ନ ଥିଲା, ତାହା ଶିଳ୍ପ ଓ ବାଣିଜ୍ୟ ପକ୍ଷରେ ମଧ୍ୟ ଅତି କ୍ଷତିକାରକ ଥିଲା । ମୋଟରେ କହିବାକୁ ଗଲେ ଷୋଡ଼ଶ ଲୁଇ ରାଜ୍ୟଭାର ଗ୍ରହଣ କରିବାବେଳକୁ ଫ୍ରାନ୍‌ସର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିଲା ।

ଷୋଡ଼ଶ ଲୁଇ ଏ ଶୋଚନୀୟ ଅବସ୍ଥାକୁ ସୁଧାରିବା ପାଇଁ ଉଦାର ଅର୍ଥନୀତିଜ୍ଞ ଟରଗଟ୍‌ଙ୍କୁ ଅର୍ଥମନ୍ତ୍ରଣାଳୟର ସର୍ବୋଚ୍ଚ କର୍ତ୍ତା ରୂପେ (Controller General) ନିଯୁକ୍ତ କଲେ ଓ ତାଙ୍କୁ ସବୁ କାର୍ଯ୍ୟରେ ସମର୍ଥନ କରିବେ ବୋଲି କଥାଦେଲେ । ଟରଗଟ୍ ତାଙ୍କ ନୀତି ଅନୁସାରେ କାର୍ଯ୍ୟ କରିବାକୁ ଦ୍ୱିଧା କରି ନଥିଲେ ସେ ଆର୍ଥିକ ସମ୍ପଦକୁ ସୁଶୃଙ୍ଖଳିତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ସେ ନିର୍ଭୀକ ଭାବରେ ସବୁକ୍ଷେତ୍ରରେ ମିତବ୍ୟୟିତା ଅବଲମ୍ବନ କରିଥିଲେ । ସେ ବିଶ୍ୱାସ କରୁଥିଲେ ଯେ ଜମି, ଧନର ଏକମାତ୍ର ଉତ୍ପତ୍ତି ସ୍ଥଳ ଓ ଜମିର ଫସଲ ଉପରେ କର ଧାର୍ଯ୍ୟ କରିବା ଉଚିତ । ତେଣୁ ସେ ଆଭ୍ୟନ୍ତରୀଣ ବାଣିଜ୍ୟର ଅବାଧ ଗତି ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରିଥିଲେ । ଦେଶ ଭିତରେ ଶସ୍ୟ ଓ ମଦ୍ୟର ବେପାର ଉପରୁ ସବୁ କଟକଣା ଉଠାଇ ଦେଇଥିଲେ । ସେ ଫରାସୀ ଜାତିକୁ ତାହାର ସମ୍ପଦକୁ ନିଜର ସ୍ୱାର୍ଥରେ ଲଗାଇବା ପାଇଁ ଅଧିକ ସୁବିଧା ଦେବାକୁ ଯାଇ ବାଣିଜ୍ୟ ସଙ୍ଘ (guild) ଏବଂ ବେଠି (corvee) ଉଠାଇ ଦେଇଥିଲେ । ବାଣିଜ୍ୟ ସଙ୍ଘ ଉଠାଇଦେବା ଦ୍ୱାରା କାରିଗରମାନେ ଅବାଧରେ କାରବାର କଲେ ଓ ବେଠି ଉଠାଇଦେବା ଦ୍ୱାରା କୃଷକମାନେ ବିନା ପାରିଶ୍ରମିକରେ ଖଟିବାରୁ ମୁକ୍ତ ପାଇଲେ । ବ୍ୟୟ ପାଇଁ ନିଅଣ୍ଟ ପଡ଼ୁଥିବା ଟଙ୍କା ପୂରଣ କରିବା ସକାଶେ ସେ ଅବସର ବୃତ୍ତି (pensions) ଓ ଆରାମୀ ଚାକିରିସବୁ (sinecure posts) ଉଠାଇ ଦେଇଥିଲେ । ତାଙ୍କ ଚାକିରିର ଦେଢ଼ବର୍ଷ ପରେ ସେ ଏଗାର ନିୟୁତ ଫ୍ରାଙ୍କସ୍ ବଳକା ଦେଖାଇଥିଲେ । ସେ କିନ୍ତୁ ବୁଝିପାରିଥିଲେ ଯେ ଫ୍ରାନ୍‌ସର ଅର୍ଥନୈତିକ ସମସ୍ୟାର ସ୍ଥାୟୀ ସମାଧାନ କରିବାକୁ ହେଲେ ଫ୍ରାନ୍‌ସର ଉଭୟ ଉଚ୍ଚଶ୍ରେଣୀ ଓ ନିମ୍ନଶ୍ରେଣୀର ଲୋକମାନଙ୍କଠାରୁ ସାମର୍ଥ୍ୟ ଅନୁଯାୟୀ କର ଆଦାୟ କରିବାକୁ ପଡ଼ିବ । ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଟରଗଟ୍ ସମସ୍ତଙ୍କ ଉପରେ ଭୂମିକର ବସାଇବାକୁ ସ୍ଥିର କରି ପ୍ରସ୍ତାବ ଦେଲେ । ଟରଗଟ୍‌ଙ୍କର ସଂସ୍କାରମୂଳକ ପ୍ରସ୍ତାବଗୁଡ଼ିକ ବିଶେଷତଃ ଭୂମିକର ପ୍ରସ୍ତାବ ସୁବିଧା-ଉପଭୋଗୀ ଶ୍ରେଣୀର ଲୋକମାନଙ୍କର ସ୍ୱାର୍ଥବିରୋଧୀ ହୋଇଥିବାରୁ, ସେମାନେ ଆତଙ୍କିତ ହୋଇପଡ଼ିଲେ ଓ ସେଗୁଡ଼ିକ ବିରୁଦ୍ଧରେ ଦୃଢ଼ ପ୍ରତିବାଦ କଲେ । ତାଙ୍କ ବିରୁଦ୍ଧରେ ରାଜଦରବାରରେ ଗୋଟିଏ

ଗୁପ୍ତ ସମିତି (court cabal) ଗଢ଼ାଗଲା ଓ ସେଥିରେ ରାଣୀ ମେରି ଆଣ୍ଟୋନାଟ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସଭାସଦ୍‌ମାନେ ତାଙ୍କୁ ମନ୍ତ୍ରୀପଦରୁ ତଡ଼ିବା ପାଇଁ ରାଣୀଙ୍କ ସହିତ ମନ୍ତ୍ରଣା କଲେ ଓ ରାଣୀ ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଟରଗଟ୍‌ଙ୍କୁ ବରଖାସ୍ତ କରିବା ପାଇଁ ରାଜା ଷୋଡ଼ଶ ଲୁଇଙ୍କୁ ମତାଇଲେ । ଏପରି ସୁଦକ୍ଷ ମନ୍ତ୍ରୀଙ୍କୁ ସମର୍ଥନ କରିବା ପାଇଁ ରାଜାଙ୍କର ସାହସ ନ ଥିଲା । ତେଣୁ ରାଣୀଙ୍କ କଥାରେ ପଡ଼ି ଟରଗଟ୍‌ଙ୍କୁ ବରଖାସ୍ତ କରିଥିଲେ । ସେ ପ୍ରାୟ ବର୍ଷେ ଆଠମାସ ଚାକିରିରେ ରହିଥିଲେ । ଟରଗଟ୍ ମନ୍ତ୍ରୀ ପଦରୁ ବିଦାୟ ନେବା ପୂର୍ବରୁ ରାଜାଙ୍କୁ ଯେଉଁ ସତର୍କବାଣୀ ଶୁଣାଇଥିଲେ, ତାହା ଆଶ୍ଚର୍ଯ୍ୟଜନକ ଭାବରେ ଭବିଷ୍ୟତବାଣୀ ସଦୃଶ ସତ୍ୟ ବୋଲି ପ୍ରମାଣିତ ହେଲା । ତାଙ୍କର ବିଦାୟକାଳୀନ ମନ୍ତବ୍ୟ ହେଲା, "ମହାରାଜ, ଭୁଲିଯାଆନ୍ତୁ ନାହିଁ ଯେ ସେହି ଦୁର୍ବଳତା ଯୋଗୁ ଇଂଲଣ୍ଡର ଷ୍ଟୁଆର୍ଟ୍ ରାଜା ପ୍ରଥମ ଚାର୍ଲ୍‌ସଙ୍କର ମୁଣ୍ଡକାଟ ହୋଇଥିଲା ।" ("Do not forget, Sire, was the minister's parting comment, "that weakness cost Charles-I his head") ରାଜା ତାଙ୍କୁ ବରଖାସ୍ତ କରିବା ଦ୍ୱାରା ଆତ୍ମଘାତୀ ପଦକ୍ଷେପ ନେଲେ; କାରଣ ଟରଗଟ୍ ତାଙ୍କର ସମସାମୟିକ ବ୍ୟକ୍ତିମାନଙ୍କ ମଧ୍ୟରେ ସମ୍ଭବତଃ ଏକମାତ୍ର ଯୋଗ୍ୟ ବ୍ୟକ୍ତି, ଯେ କି ନିରଙ୍କୁଶ ରାଜତନ୍ତ୍ରକୁ ରକ୍ଷାକରି ପାରିଥାଆନ୍ତେ । ତେଣୁ ଟରଗଟ୍‌ଙ୍କ ପରି ଜଣେ ସୁଦକ୍ଷ ଅର୍ଥନୀତିଜ୍ଞଙ୍କୁ ବରଖାସ୍ତ କଲାବେଳେ ନିରଙ୍କୁଶ ରାଜତନ୍ତ୍ର ତାହାର ମୃତ୍ୟୁଘଣ୍ଟି ବଜାଇଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଟରଗଟଙ୍କ ବରଖାସ୍ତ ଘଟଣାରୁ ଦୁର୍ବଳ ସରକାର ଧ୍ୱଂସ ଅଭିମୁଖରେ ଗତି କରିବାରେ ଲାଗିଲା । ଟରଗଟ୍‌ଙ୍କ ପରେ ନେକର ହେଲେ ତାଙ୍କର ଉତ୍ତରାଧିକାରୀ । ନେକର ଜେନେଭାର ଜଣେ ବ୍ୟାଙ୍କ ମାଲିକ (banker) ଥିଲେ । ସେ ନିଃସ୍ୱାର୍ଥପର, ସଚ୍ଚୋଟ ଓ ଜନପ୍ରିୟ ଥିଲେ । ସେ ଜନତାର ଆଶା-ଆକାଂକ୍ଷାକୁ ରୂପ ଦେଇପାରିବେ ବୋଲି ବିଶ୍ୱାସ କରୁଥିଲେ । ସେ ଜଣେ ଦକ୍ଷ ଅର୍ଥବିଦ୍ୟାବିଶାରଦ ହେଲେ ମଧ୍ୟ ବିଚକ୍ଷଣ ରାଜନୀତିଜ୍ଞ ନଥିଲେ । ଶାସନ ଓ ଅର୍ଥନୈତିକ ବ୍ୟବସ୍ଥା ଯାହା ଥିଲା ତାକୁ ସେ ଗ୍ରହଣ କରିନେଇଥିଲେ ଏବଂ କୌଣସି ମୌଳିକ ପରିବର୍ତ୍ତନ ନ ଆଣି ମିତବ୍ୟୟ ଓ ଋଣ ସାହାଯ୍ୟରେ ସେ ଶାସନ ପରିଚାଳନା କରିପାରିବେ ବୋଲି ଆଶା ପୋଷଣ କରିଥିଲେ । ଏକଥା ସତ ଯେ ତାଙ୍କର ଅର୍ଥ ସମ୍ବନ୍ଧୀୟ ଜ୍ଞାନ ଓ ଯଶଃ ତାଙ୍କୁ ପୂର୍ବାପେକ୍ଷା କମ୍ ସୁଧ-ହାରରେ ଋଣ ଚୁକ୍ତି କରିବାରେ ସମର୍ଥ କରିଥିଲା; କିନ୍ତୁ ଅର୍ଥନୈତିକ ସମସ୍ୟାର ସ୍ଥାୟୀ ସମାଧାନ ଦିଗରେ ଏହା ଦୃଢ଼ ପଦକ୍ଷେପ ନ ଥିଲା । ଦୁର୍ଭାଗ୍ୟବଶତଃ ଫରାସୀ ସ୍ୱେଚ୍ଛାସେବୀବାହିନୀର ଆମେରିକୀୟ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ଦ୍ୱାରା ଅର୍ଥନୈତିକ ସମସ୍ୟା ଅଧିକ ଜଟିଳ ହୋଇପଡ଼ିଥିଲା । ପ୍ରଥମେ ଫ୍ରାନ୍‌ସ ସରକାର ଅର୍ଥନୀତି ବିପର୍ଯ୍ୟୟ ହେବା ଆଶଙ୍କାରେ ଓ ଶତ୍ରୁର ନୌଶକ୍ତି ଭୟରେ ସ୍ୱେଚ୍ଛାସେବୀବାହିନୀର ଏ ସଂଗ୍ରାମରେ ଯୋଗଦାନ ବିପଜ୍ଜନକ ବୋଲି ମନେକରିଥିଲେ । ସରକାରଙ୍କ ନିଷ୍କ୍ରିୟତା ଦୁଃସାହସିକ ବ୍ୟକ୍ତିଗତ ଉଦ୍ୟମ ଦିଗରେ

କୌଣସି ବାଧା ସୃଷ୍ଟି କରି ପାରି ନଥିଲା । ସାହସୀ, ଭାବପ୍ରବଣ ଓ ଆମେରିକୀୟମାନଙ୍କର ନ୍ୟାଯ୍ୟ ଦାବି ପ୍ରତି ସହାନୁଭୂତିଶୀଳ ଲଫାୟେତ୍ ଦଳେ ସ୍ୱେଚ୍ଛାସେବୀବାହିନୀକୁ ନେଇ ଆଟଲାଣ୍ଟିକ ମହାସାଗର ପାରହୋଇ ଆମେରିକୀୟମାନଙ୍କ ସ୍ୱାଧୀନତା ସଂଗ୍ରାମରେ ଯୋଗ-ଦେଇଥିଲେ । ଫ୍ରାନ୍ସ ସରକାର ଜନମତ ଯୋଗୁ ବାଧ୍ୟ ହୋଇ ଲଫାୟେତ୍ଙ୍କ ଉଦ୍ୟମକୁ କାର୍ଯ୍ୟାନୁଷ୍ଠାନ ଦ୍ୱାରା ସମର୍ଥନ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଆମେରିକୀୟମାନଙ୍କର ବିଜୟ ପ୍ରତି ଫ୍ରାନ୍ସର ଯେ ବିଶେଷ ଅବଦାନ ରହିଛି, କହିବା ବାହୁଲ୍ୟ । ଏ ସଂଗ୍ରାମର ଅଶୁଭ ଫଳାଫଳ ଫ୍ରାନ୍ସର ଅର୍ଥନୀତି ଉପରେ ପଡ଼ିଥିଲା । ନେକର ଶାସନ ବ୍ୟବସ୍ଥାରେ ସାବଧାନତା ସହିତ ମିତବ୍ୟୟିତା ଅବଲମ୍ବନ କରିଥିଲେ ମଧ୍ୟ ତାଙ୍କ ପକ୍ଷରେ ଯୁଦ୍ଧଖର୍ଚ୍ଚ ତୁଲାଇବା ସମ୍ଭବପର ହୋଇନଥିଲା । ତେଣୁ ସେ ଫ୍ରାନ୍ସର ଆର୍ଥିକ ଅବସ୍ଥା ବିଷୟରେ ଗୋଟିଏ ସଂକ୍ଷିପ୍ତ ବିବରଣ ପ୍ରକାଶ କରିଥିଲେ ଓ ଲୋକମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା-ପାଇଁ ସେଥିରେ ରାଜାଙ୍କ ଆୟବ୍ୟୟର ହିସାବ ଫର୍ଦ୍ଦ ଦେଇଥିଲେ । ରାଜପରିଷଦ ତାଙ୍କର ଏ ପଦକ୍ଷେପ ବିପଜ୍ଜନକ ବୋଲି ବିଚାରିଥିଲେ ଓ ସେଥିପାଇଁ ନେକରଙ୍କୁ ଶେଷରେ ବରଖାସ୍ତ କରାଯାଇଥିଲା । ନେକର କିନ୍ତୁ କେତେଗୁଡ଼ିଏ ସଂସ୍କାର ପ୍ରବର୍ତ୍ତନ କରି ଲୋକପ୍ରିୟ ହୋଇଥିଲେ । ସେ ରାଜାଙ୍କ ରାଜକୀୟ ଭୂମିଦାସମାନଙ୍କୁ ମୁକ୍ତିଦେବା ପାଇଁ ଓ ସାମନ୍ତବାଦୀ ଅଧିକାର ପରିହାର କରିବା ପାଇଁ ପ୍ରବର୍ତ୍ତାଇଥିଲେ । ସେ ପ୍ରାଦେଶିକ ବିଧାନସଭାମାନ ପ୍ରତିଷ୍ଠିତ କରିବା ପାଇଁ ପଦକ୍ଷେପ ନେଇଥିଲେ । ସେ ଟୁରଗଟଙ୍କର ଅର୍ଥନୈତିକ ସଂସ୍କାର ଚଳାଇଥିଲେ ଓ ଉତ୍ପୀଡ଼ନ କରିବାର ମାର୍ଗକୁ (the use of tortuse) ସୀମିତ କରିଦେଇଥିଲେ । ସେ ପ୍ରୋଟେଷ୍ଟାଣ୍ଟମାନଙ୍କୁ ପୂର୍ଣ୍ଣ ନାଗରିକ ଅଧିକାର ଦେବାପାଇଁ ପ୍ରସ୍ତାବ ଦେଇଥିଲେ । ମୋଟଉପରେ କହିବାକୁ ଗଲେ ନେକର ରାଜାଙ୍କ ହିସାବଫର୍ଦ୍ଦ ଲୋକ-ଗୋଚରକୁ ଆଣି ଓ କର ବସାଇବା ପାଇଁ ଲୋକମାନଙ୍କ ସମ୍ମତି ଲୋଡ଼ା ବୋଲି ମତ ଦେଇ, ଫରାସୀ ରାଷ୍ଟ୍ର-ବିପ୍ଳବ ପାଇଁ ରାସ୍ତା ପ୍ରସ୍ତୁତ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ।

ନେକରଙ୍କ ପରେ କ୍ୟାଲନ୍ ଅର୍ଥନୀତି ମନ୍ତ୍ରଣାଳୟର ସର୍ବୋଚ୍ଚ କର୍ତ୍ତା ହେଲେ । କ୍ୟାଲନ୍ ରାଜପରିଷଦର ପ୍ରିୟପାତ୍ର ହୋଇଥିବାରୁ ସେଠାକାର ବହୁ ବ୍ୟୟସାପେକ୍ଷ ଆମୋଦ-ପ୍ରମୋଦରେ ହସ୍ତକ୍ଷେପ କରିବାକୁ କୌଣସି ଉଦ୍ୟମ କରିନଥିଲେ । ସେ ବିଚାରି-ଥିଲେ ଯେ ଏପରି ପରିଷଦ ଥିଲେ ତାଙ୍କୁ ଋଣ କରିବା ଅଧିକ ସହଜ ହେବ । ସେ ମଧ୍ୟ ନିଜର ଅର୍ଥ ସମ୍ବନ୍ଧୀୟ ବିଷୟ ଯେଉଁ ନୀତି ଅନୁସାରେ ପରିଚାଳନା କରୁଥିଲେ, ଠିକ୍ ସେହି ନୀତି ଅନୁସାରେ ରାଜ୍ୟର ଅର୍ଥ ସମ୍ବନ୍ଧୀୟ ବିଷୟ ପରିଚାଳନା କରୁଥିଲେ । ତାଙ୍କ ନୀତି ହେଲା "ଯଦି ଜଣେ ଲୋକ ଋଣ କରିବାକୁ ଚାହେଁ ସେ ନିଜକୁ ଧନୀ ବୋଲି ଦେଖେଇହେବା ଉଚିତ, ଏବଂ ସେ ଧନୀ ଦେଖାଯିବା ପାଇଁ ମୁକ୍ତହସ୍ତରେ ଖର୍ଚ୍ଚ କରିବା ଉଚିତ ।" (If a man wants to borrow he must appear to be rich; to appear rich he must spend profusely") ସେ ତେଣୁ ଅଧିକ ସୁଧହାରରେ ଋଣ କରି

ତାହା ଅପବ୍ୟୟ କରିଥିଲେ । ସମସ୍ତ ଆସିଲା ଯେତେବେଳେ ରାଜ୍ୟର ସବୁତକ ଅର୍ଥସମ୍ପଦ ଶେଷ ହୋଇଗଲା । ପ୍ୟାରିସ୍‌ର ବିଷ୍ୱରାଜ୍ୟ ବାଣିଜ୍ୟର ଋଣ ରେଜିଷ୍ଟ୍ରି କରିବାକୁ ଆପତ୍ତି କରିଥିଲା । କ୍ୟାଲନ ଅର୍ଥ ଉଠାଇବାର ଆଉ କୌଣସି ନୂତନ ଫନ୍ଦି ବାହାର କରିପାରିଲେ ନାହିଁ । ତାଙ୍କ ମତରେ ଏକମାତ୍ର ପ୍ରତିକାର ହେଉଛି ଅଧିକା କର ବସାଇବା । ସେ ଦେଖିଲେ ଯେ ସାଧାରଣ ଲୋକେ କରଭାରରେ ବ୍ୟତିବ୍ୟସ୍ତ ହୋଇପଡ଼ିଲେଣି । ତେଣୁ ସୁବିଧା-ଉପଭୋଗୀମାନଙ୍କ ଉପରେ କର ବସାଇବା ଏକ ସମ୍ଭବପର ସମାଧାନର ପନ୍ଥା ବୋଲି ଧରିନେଇଥିଲେ । କିନ୍ତୁ ତାଙ୍କର କିମ୍ବା ରାଜାଙ୍କର ରାଜକୀୟ ହୁକୁମନାମାବଳୀରେ ଏପରି କଠୋର ପଦକ୍ଷେପ ନେବାକୁ ସାହସ ନଥିଲା । ଅବଶେଷରେ କ୍ୟାଲନ ବିଶିଷ୍ଟ ବ୍ୟକ୍ତିମାନଙ୍କର ସଭା (Assembly of the Notables) ଡାକିବା ପାଇଁ ରାଜାଙ୍କୁ ପ୍ରବର୍ତ୍ତାଇ ଥିଲେ । ବିଶିଷ୍ଟ ବ୍ୟକ୍ତିମାନେ ସୁବିଧା-ଉପଭୋଗୀ ଶ୍ରେଣୀର ସଭ୍ୟ ଥିଲେ । କ୍ୟାଲନ ଭାବିଥିଲେ ଯେ ସେମାନେ ରାଜତନ୍ତ୍ରର ପ୍ରକୃତ ଅବସ୍ଥା ବିଷୟରେ ଥରେ ଅବଗତ ହେଲେ, ସେମାନଙ୍କ ଉପରେ କର ବସାଇବା ପାଇଁ ସଙ୍କେତ ଦେବେ; ଫଳରେ ରାଜ୍ୟର ସଙ୍କଟାବସ୍ଥା ପାର ହୋଇଯିବ ଓ କୌଣସିମତେ ରାଜତନ୍ତ୍ର ତିଷ୍ଠିଯିବ । ବିଶିଷ୍ଟ ଲୋକମାନଙ୍କର ସଭା ୧୭୮୭ ମସିହାରେ ବସିଲା ଓ କିଛି ଗୋଟାଏ ମୀମାଂସା ହୋଇଯିବାର ସମ୍ଭାବନା ଥିଲା; କିନ୍ତୁ ଏ ସଭା ସରକାରଙ୍କୁ ସଙ୍କଟରୁ ଉଦ୍ଧାର କରିବା ପରିବର୍ତ୍ତେ, ରାଜତନ୍ତ୍ର ବିରୁଦ୍ଧରେ ବିଦ୍ରୋହର ସୂଚନା ଦେଇଥିଲା । କ୍ୟାଲନ, ଟରଗଟ୍‌ଙ୍କ ପରି ଭୂମିକର ବିନାଭେଦରେ ସବୁଶ୍ରେଣୀର ଲୋକମାନଙ୍କ ଉପରେ ବସାଇବା ପାଇଁ ପ୍ରସ୍ତାବ ଦେଇଥିଲେ । ଏହାଛଡ଼ା ସେ ଟରଗଟ୍‌ଙ୍କର କେତେକ କାର୍ଯ୍ୟବ୍ୟବସ୍ଥା ପୁନଃ ପ୍ରବର୍ତ୍ତନ କରିଥିଲେ । ପ୍ରାଦେଶିକ ସୀମାରେ ବସୁଥିବା ଶୁଳ୍କ ଉଠାଇଦେବା, ଶସ୍ୟ ବ୍ୟବସାୟକୁ ସରକାର ନିୟନ୍ତ୍ରଣରୁ ମୁକ୍ତ କରିଦେବା ଏବଂ ଭୂମି ବା ସମ୍ପତ୍ତି କରକୁ (taille) କମାଇଦେବା ପାଇଁ ପ୍ରସ୍ତାବ ଦେଇଥିଲେ । କିନ୍ତୁ ବିଶିଷ୍ଟ ବ୍ୟକ୍ତି-ମାନଙ୍କ ସଭା ଏସବୁ ପ୍ରସ୍ତାବକୁ, ବିଶେଷତଃ ଭୂମି-କରକୁ ବିରୋଧ କରିଥିଲା । ସେମାନଙ୍କ ମତରେ, "ସବୁ ଶ୍ରେଣୀଗୁଡ଼ିକୁ ସମାନ ଅବସ୍ଥାରେ ରଖାଗଲେ, ରାଜତନ୍ତ୍ରକୁ ରକ୍ଷାକରିବା ପାଇଁ ଯେଉଁ ଶ୍ରେଣୀବିଭକ୍ତ ସମାଜର ଆବଶ୍ୟକତା ରହିଛି ତାହା ଅଚିରେ ଧ୍ୱଂସ ହୋଇଯିବ ।" ('to put all classes on equal footing would destroy the (existing) hierarchy necessary to the maintenance of monarchy.") ଏ ସଭା ଦେଶର ଆର୍ଥିକ ଅବସ୍ଥା ବିଷୟରେ ଠିକଣା ଖବର ଜାଣିବାକୁ ଚାହିଁଥିଲା । କ୍ୟାଲନ ଯେତେବେଳେ ନିଅଣ୍ଟିଆ ବଜେଟ କଥା ସ୍ୱୀକାର କଲେ ସେଥିରେ ସଭାର ହୃଦବୋଧ ହେଲାନାହିଁ; ତେଣୁ ସେ ଏହାର ପ୍ରମାଣ ଦାବି କରିଥିଲା । ଅର୍ଥ ସମ୍ବନ୍ଧୀୟ ହିସାବଖାତାଗୁଡ଼ିକ ଗୋଳମାଳିଆ ଅବସ୍ଥାରେ ଥିବାରୁ କ୍ୟାଲନ ପ୍ରମାଣ ଦେବାକୁ ମନା କରି ଦେଲେ ଏବଂ ରାଜା ଆୟବ୍ୟୟ ହିସାବ ମଞ୍ଜୁର କରିଥିବାରୁ ଆଉ ପ୍ରମାଣ ଲୋଡ଼ାନାହିଁ ବୋଲି କହିଥିଲେ । ସଭା କର ଦେବାକୁ ଖୋଲ୍‌ଖୋଲ୍ ମନା କରିଦେଲା । ଲଫାୟେଟ୍ ଏ ସଭା ପକ୍ଷରୁ 'ରାଷ୍ଟ୍ରସଭା' (States General) ଆହ୍ୱାନ କରିବା ପାଇଁ ଦାବି କରିଥିଲେ;

କାରଣ ବିଶିଷ୍ଟ ବ୍ୟକ୍ତିମାନେ 'ରାଷ୍ଟ୍ରସଭା' ଫ୍ରାନ୍‌ସର ଅଭାବ ମେଣ୍ଟାଇବା ପାଇଁ କେବଳ ସମର୍ଥ ବୋଲି ବିଚାରିଥିଲେ । ଏହି ଉପାଖ୍ୟାନର ପରିଣାମ ହେଲା ରାଜାଙ୍କ ନିକଟରେ ଗୁରୁତର ପ୍ରତିବାଦ । ରାଜା ଶେଷରେ ମୁଣ୍ଡ ନୁଆଁଇଲେ ଓ କ୍ୟାଲନଙ୍କୁ ମନ୍ତ୍ରୀପଦରୁ ଅନ୍ତର କଲେ ।

କ୍ୟାଲନ ୧୭୮୭ ମସିହାରେ ପଦଚ୍ୟୁତ ହେଲା ପରେ କାର୍ଡ଼ିନେଲ ବ୍ରିନେ ତାଙ୍କ ସ୍ଥାନରେ ନିଯୁକ୍ତ ପାଇଲେ । କ୍ୟାଲନ ଯେଉଁ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଆୟତ୍ତ କରିପାରିଲେ ନାହିଁ, ବ୍ରିନେଙ୍କ ପକ୍ଷରେ ସେମାନଙ୍କୁ ଆୟତ୍ତ କରିବା ସମ୍ଭବପର ହୋଇନଥିଲା । ସେ ବାଧ୍ୟ ହୋଇ ବିଶିଷ୍ଟବ୍ୟକ୍ତିମାନଙ୍କ ସଭାକୁ ଭାଙ୍ଗିଦେଇଥିଲେ । ଏକଥା ସତ ଯେ ଏହି ସଭାରେ ଫରାସୀ ରାଷ୍ଟ୍ର-ବିପ୍ଳବର ବୀଜ ରୋପଣ କରାଯାଇଥିଲା । ବ୍ରିନେ ସୁବିଧା-ଉପଭୋଗୀ ଶ୍ରେଣୀର ଲୋକମାନଙ୍କ ଉପରେ କର ବସାଇବା ପାଇଁ ରାଜକୀୟ କ୍ଷମତା ବ୍ୟବହାର କରିବାକୁ ପ୍ରସ୍ତାବ କରିଥିଲେ । ସେ ପ୍ରସ୍ତାବିତ କରକୁ ରାଜାନୁମୋଦିତ ଆଇନ (royal enactment) ବଳରେ ଧାର୍ଯ୍ୟ କରିବାକୁ ନିଷ୍ପତ୍ତି କଲାକ୍ଷଣି, ତାଙ୍କୁ ପ୍ୟାରିସ୍ ବିଚାରାଳୟର ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଲା । ଯେତେବେଳେ ପ୍ୟାରିସ୍ ବିଚାରାଳୟକୁ କର ରେଜିଷ୍ଟ୍ରି କରିବା ପାଇଁ ଅନୁରୋଧ କରାଗଲା, ସେତେବେଳେ ସେ ଆର୍ଥିକ ବ୍ୟାପାର ସମ୍ବନ୍ଧରେ ଗୋଟିଏ ବିବରଣ ଉପସ୍ଥାପିତ କରିବାପାଇଁ ଦାବି କରିଥିଲା ଏବଂ ଘୋଷଣା କରିଥିଲା ଯେ (ଫରାସୀ) ଜାତି କେବଳ ଗୋଟିଏ ରାଷ୍ଟ୍ରସଭାରେ ସମ୍ମିଳିତ ହୋଇ ଗୋଟିଏ ସ୍ଥାୟୀ କର ବସାଇବାକୁ ସମ୍ମତି ଦେଇପାରନ୍ତି ।' ('The nation alone in an states general assembled, can consent to a perpetual impost') ପ୍ୟାରିସ ବିଚାରାଳୟ ୧୭୮୭ ମସିହା ଜୁଲାଇ ୨୪ ତାରିଖରେ ଆନୁଷ୍ଠାନିକଭାବରେ ରାଷ୍ଟ୍ରସଭା ଡାକିବା ପାଇଁ ଦାବି କରିଥିଲା ଓ ଜନତା ସମର୍ଥନ ବିଷୟରେ ଦୃଢ଼ ଜବାବ ପାଇ ରାଜାନୁମୋଦିତ ଆଇନଗୁଡ଼ିକ ରେଜିଷ୍ଟ୍ରିଭୁକ୍ତ କରିବାକୁ ମନାକରିଦେଲା । ଫ୍ରାନ୍‌ସର ନିୟମ ଅନୁସାରେ ରାଜାନୁମୋଦିତ ଆଇନଗୁଡ଼ିକ ରେଜେଷ୍ଟ୍ରିଭୁକ୍ତ କରିବାର କର୍ତ୍ତବ୍ୟ ହେଲା ପ୍ୟାରିସ ବିଚାରାଳୟର ଓ ସେଗୁଡ଼ିକ ରେଜେଷ୍ଟ୍ରିଭୁକ୍ତ ନ ହେବା ପର୍ଯ୍ୟନ୍ତ କାଏମ ହୋଇପାରୁନଥିଲା । ପୋଷାକଧାରୀ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ରାଜାଙ୍କୁ ହଇରାଣରେ ପକାଇବାପାଇଁ ଏବଂ ରାଜକୀୟ କ୍ଷମତାକୁ ସଙ୍କୁଚିତ କରିବାପାଇଁ, ଜନ୍ମାଧିକାର ପ୍ରାପ୍ତ ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କ ସହିତ ଯୋଗ ଦେଇଥିଲେ । ରାଜା ରାଗିଯାଇ ପୋଷାକଧାରୀ ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କଦ୍ୱାରା ପରିଚାଳିତ ପ୍ୟାରିସ୍ ବିଚାରାଳୟକୁ ନିର୍ବାସିତ କରିଥିଲେ; କିନ୍ତୁ ଏଥିରେ କିଛି ଫଳ ହେଲାନାହିଁ । ପ୍ୟାରିସ୍ ବିଚାରାଳୟର ମତକୁ ପ୍ରାଦେଶିକ ବିଚାରାଳୟଗୁଡ଼ିକ ଗ୍ରହଣ କରିନେଇ ରାଜାଙ୍କ କାର୍ଯ୍ୟ ଅବୈଧ ବୋଲି ଘୋଷଣା କରିଥିଲେ । ବ୍ରିନେ ଆତ୍ମସମର୍ପଣ କଲେ ଏବଂ ପ୍ୟାରିସ୍ ବିଚାରାଳୟକୁ ପୁନରାହ୍ୱାନ କରାଗଲା । ଏହାଦ୍ୱାରା ସରକାରଙ୍କ ସମସ୍ୟାର ସମାଧାନର କୌଣସି ବାଟ ଫିଟିଲା ନାହିଁ । ପ୍ୟାରିସ୍ ବିଚାରାଳୟ ପୁନଃ ସ୍ଥାପିତ ହେବାପରେ ଯେଉଁ ଯୁକ୍ତି ରାଷ୍ଟ୍ରସଭା ଡାକିବା ପାଇଁ ପୂର୍ବରୁ ଦର୍ଶାଇଥିଲା ତାହାର କେବଳ ପୁନରାବୃତ୍ତି ହେଲା ।

ସାଧାରଣ ଲୋକେ ବିଶେଷ ସୁବିଧା-ଉପଭୋଗୀ ଶ୍ରେଣୀର ଲୋକମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ରାଜାଙ୍କ ବିରୁଦ୍ଧରେ ଗଲେ । ଭଲ୍‌ଟାୟାର ଓ ତାଙ୍କର ସାଥୀମାନେ ଫରାସୀ ଲୋକମାନଙ୍କୁ ସେମାନଙ୍କର ଶକ୍ତି ବିଷୟରେ ସଚେତନ କରିଦେଇଥିଲେ । ଲୋକମାନେ ଅହଙ୍କାରପୂର୍ଣ୍ଣ ନିରଙ୍କୁଶ ଶାସନରୁ ମୁକ୍ତି ପାଇବା ପାଇଁ ପ୍ରବଳ ଉଦ୍ୟମ ଚଳାଇଲେ । ଇତିମଧ୍ୟରେ ରାଣୀ ଜନସାଧାରଣଙ୍କର ଆସ୍ଥା ହରାଇଥିବାରୁ ଲୋକମାନଙ୍କ ମଧ୍ୟରେ ବିଶେଷ ଉତ୍ତେଜନା ଦେଖାଦେଇଥିଲା । ଜନମତ ଏପରି ଏକ ରାଜନୈତିକ ଶକ୍ତିରେ ପରିଣତ ହେବା ପୂର୍ବରୁ କେବେ ଦେଖାଯାଇନଥିଲା । ସରକାର ପ୍ରମାଦ ଗଣିଲେ । ଷୋଡ଼ଶ ଲୁଇ ଅବସ୍ଥା ସୁଧାରିବା ପାଇଁ କେତେକ ଉପାୟ ପାଞ୍ଚିଲେ । ଯେଉଁସବୁ ଉପାୟ ଅତୀତରେ ଫଳପ୍ରଦ ହୋଇଥିଲା, ସେସବୁ ଉପାୟ ଅବଲମ୍ବନ କଲେ; କିନ୍ତୁ ସବୁ ବୃଥା ହେଲା । ଆଉ କର ବସାଇବାର ଆଶା ନ ଦେଖି, ଆବଶ୍ୟକ ଖର୍ଚ୍ଚ ସବୁ ତୁଲାଇବା ପାଇଁ ନୂଆ ଋଣ କରିବାକୁ ବ୍ୟଗ୍ରତା ପ୍ରକାଶ କରିଥିଲେ ଏବଂ ଶେଷରେ ରାଷ୍ଟ୍ରସଭା ପାଞ୍ଚବର୍ଷ ମଧ୍ୟରେ ଆହ୍ୱାନ କରିବେ ବୋଲି ସମ୍ମତି ଦେଲେ । ପ୍ୟାରିସ୍‌ର ବିଚାରାଳୟ ଏଥିରେ ଆପତ୍ତି ଉଠାଇଲା ଏବଂ ରାଷ୍ଟ୍ରସଭା ଅବିଳମ୍ବେ ଡାକିବା ପାଇଁ ଦାବି କଲା । ସରକାର ଏଥିରେ କ୍ଷୁବ୍ଧ ହୋଇ ବିଚାର ବିଭାଗ ପୁନର୍ଗଠନ କରିବାପାଇଁ ସଂକଟଜନକ ପଦକ୍ଷେପ ନେଲେ । ପ୍ୟାରିସ ବିଚାରାଳୟ ନୂତନ ହୁକୁମନାମାକୁ (decree) ରେଜେଷ୍ଟ୍ରିଭୁକ୍ତ କରିବାକୁ ବାଧ୍ୟ ହେଲା ପରେ, ପ୍ରାଦେଶିକ ବିଚାରାଳୟଗୁଡ଼ିକ ସରକାରବିରୋଧୀ ଆନ୍ଦୋଳନରେ ଯୋଗଦେଲେ ଓ ସରକାରଙ୍କ କାର୍ଯ୍ୟକୁ ସମାଲୋଚନା କଲେ । ଜନଆନ୍ଦୋଳନ ଏ ସମୟରେ ଏପରି ତୀବ୍ର ଆକାର ଧାରଣ କରିଥିଲା ଯେ ରାଜାନୁମୋଦିତ କାର୍ଯ୍ୟାନୁଷ୍ଠାନ ଦ୍ୱାରା ବହୁଦିନ ଧରି ଦବାଇରଖାଯାଇଥିବା ପ୍ରାଦେଶିକ ଡଫିନି ଇଲାକାଗୁଡ଼ିକ (provincial estates of Dauphiny) ପୁଣି ମୁଣ୍ଡ ଟେକିଲେ ଏବଂ ସଙ୍ଗେ ସଙ୍ଗେ ରାଜବିରୋଧୀ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । 'ରାଷ୍ଟ୍ରସଭା' ଦାବି କରି ରାଜାଙ୍କୁ ଗୋଟିଏ ନିବେଦନପତ୍ର କେବଳ ପଠାଇ ନଥିଲେ, ସେମାନେ ମଧ୍ୟ ସେ ସଭା ଡକାନଗଲା ପର୍ଯ୍ୟନ୍ତ କୌଣସି କର ଦେବେ ନାହିଁ ବୋଲି ଶପଥ ନେଇଥିଲେ । ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ରାଜକୋଷରେ ପ୍ରାୟ ଆଉ ଟଙ୍କା ନଥିଲା ଓ ସରକାରଙ୍କ ଋଣ ବାବଦରେ ଦେୟ ସୁଧ ତୁଲାଇବା ସରକାରଙ୍କ ପକ୍ଷରେ ସମ୍ଭବପର ହେଲନାହିଁ । ସରକାର ଦେବାଳିଆ ଅବସ୍ଥାରେ ଆସି ପହଞ୍ଚିଲେ । ଷୋଡ଼ଶ ଲୁଇ ଜନତାର ବିକ୍ଷୋଭ ଓ ପ୍ରତିରୋଧ ଆଉ ସମ୍ଭାଳି ନ ପାରି ସେମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଯଥାର୍ଥ ପଦକ୍ଷେପ ନେଇଥିଲେ । ବ୍ରିନେଙ୍କୁ ପଦଚ୍ୟୁତ କରି ନେକରଙ୍କୁ ତାଙ୍କ ସ୍ଥାନରେ ପୁନର୍ନିଯୁକ୍ତ କରିଦେଇଥିଲେ । ସେ ଦେଖିଲେ ଯେ ଦେଶରେ ଯେଉଁ ଆର୍ଥିକ ସମସ୍ୟା ଉପୁଜିଛି ତାର ସମାଧାନର ଏକମାତ୍ର ପନ୍ଥା ହେଉଛି ତୁରନ୍ତ ରାଷ୍ଟ୍ରସଭା ଡାକିବା । ତେଣୁ ସେ ୧୭୮୮ ମସିହା ଜୁଲାଇ ୫ ତାରିଖରେ ରାଷ୍ଟ୍ରସଭା (states general) ଆହ୍ୱାନ କରିଥିଲେ । ଏହା କରିବା ଦ୍ୱାରା ଫରାସୀ ରାଷ୍ଟ୍ର-ବିପ୍ଳବ ପାଇଁ ପଥ ଉନ୍ମୁକ୍ତ ହୋଇଗଲା ।

ପ୍ରବଳ ଉତ୍ତେଜନା ମଧ୍ୟରେ ଜାନୁଆରୀ ୧୭୮୯ ମସିହାରେ ରାଷ୍ଟ୍ରସଭା ପାଇଁ ନିର୍ବାଚନ ଆରମ୍ଭ ହେଲା । ଏକଶହ ପଞ୍ଚସ୍ତରୀ ବର୍ଷ ସ୍ଥଗିତ ଅବସ୍ଥାରେ ରହିଲା ପରେ, ଅବଶେଷରେ ଏ ସଭା ଡକାଗଲା । ସାଧାରଣତଃ ଏପରି ପରିସ୍ଥିତିରେ ନିର୍ବାଚନବେଳେ ଉତ୍ତେଜନା ସୃଷ୍ଟି ହେବା ସ୍ୱାଭାବିକ । ନିର୍ବାଚନ ଶେଷ ହେବା ପରେ, ୧୭୮୯ ମସିହା ମେ ୧ ତାରିଖରେ ତାଙ୍କର ନିର୍ବାଚିତ ପ୍ରତିନିଧିମାନେ ପ୍ୟାରିସ୍ ନିକଟବର୍ତ୍ତୀ ଭର୍ସାଇଲସ୍ ସହରରେ ବସୁଥିବା ରାଷ୍ଟ୍ରସଭା ଅଧିବେଶନରେ ଯୋଗଦେବା ପାଇଁ ସ୍ଥିର ହୋଇଥିଲା । ନିର୍ବାଚନବେଳେ ଗୋଟିଏ ଜଟିଳ ପ୍ରଶ୍ନ ଉଠିଲା । ରାଷ୍ଟ୍ରସଭାକୁ ୧୬୧୪ ମସିହାର ରାଷ୍ଟ୍ରସଭା ପରି ତିନୋଟି ଗୋଷ୍ଠୀରେ ବିଭକ୍ତ କରାଯାଇ ସଭ୍ୟମାନଙ୍କୁ ଗୋଷ୍ଠୀ ହିସାବରେ ଭୋଟ ଦେବାର ସୁବିଧା ଦିଆଯିବ, ନା ଗୋଟିଏ ଦଳ ବୋଲି ଧରାଯାଇ ସଭ୍ୟମାନଙ୍କୁ ଏକାଠି ବସାଇ ଭୋଟ ଦେବାର ସୁବିଧା ଦିଆଯିବ । ପ୍ରଥମ ଦୁଇ ଗୋଷ୍ଠୀର ପ୍ରତିନିଧିମାନେ ବିଶେଷ ସୁବିଧା-ଉପଭୋଗୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇଥିବାରୁ ପ୍ରଥମ ପ୍ରସ୍ତାବ ଗ୍ରହଣ କରିନେବାକୁ ଦାବି କରିଥିଲେ; କାରଣ ସେମାନେ ଜାଣିଥିଲେ ଯେ ଗୋଷ୍ଠୀ ଭୋଟ ମାତ୍ର ତିନୋଟି; ପ୍ରତି ଗୋଷ୍ଠୀ ପାଇଁ ଗୋଟିଏ ଲେଖାଏଁ ଭୋଟ । ପ୍ରଥମ ପ୍ରସ୍ତାବ ଗ୍ରହଣ କରିନିଆଗଲେ, ସେମାନଙ୍କର ଦୁଇଟି ଭୋଟ, ତୃତୀୟ ଗୋଷ୍ଠୀର ଗୋଟିଏ ଭୋଟ ବିରୁଦ୍ଧରେ ସବୁବେଳେ ଯିବ; ତେଣୁ ତୃତୀୟ ଗୋଷ୍ଠୀ ସବୁବେଳେ ହାରିବ ଏବଂ ତାହାର ସବୁ ପ୍ରସ୍ତାବ କାଟ ଖାଇଯିବ । ଫଳରେ ସେମାନେ ରାଷ୍ଟ୍ରସଭାକୁ ନିଜ ଆୟତ୍ତାଧୀନ କରିପାରିବେ । ତୃତୀୟ ଗୋଷ୍ଠୀର ପ୍ରତିନିଧିମାନେ ପ୍ରଥମ ପ୍ରସ୍ତାବକୁ ବିରୋଧ କରିଥିଲେ । ସେମାନେ ନିଜକୁ ଜାତୀୟ ଦଳ (National Party) ବୋଲି ଘୋଷଣା କରିଥିଲେ । ସେମାନେ ଦ୍ୱିତୀୟ ପ୍ରସ୍ତାବ ଗ୍ରହଣ କରିନେବା ପାଇଁ ଯୁକ୍ତି ବାଢ଼ିଥିଲେ । ସେମାନେ ଭାବିଥିଲେ ଯେ ଯଦି ସେମାନଙ୍କ ପାଇଁ ଅଧିକ ସଂଖ୍ୟକ ସ୍ଥାନ ରାଷ୍ଟ୍ରସଭାରେ ରଖାଯାଏ ଏବଂ ନିମ୍ନ ସ୍ତରରେ ଥିବା ଧର୍ମଯାଜକମାନେ ଯଦି ସେମାନଙ୍କ ସହିତ ମିଶି ଏକାଠି ଭୋଟ ଦିଅନ୍ତି, ତାହାହେଲେ ତୃତୀୟ ଗୋଷ୍ଠୀର ଲୋକମାନେ ରାଷ୍ଟ୍ରସଭାକୁ ନିଜ ଆୟତ୍ତରେ ରଖି ପାରିବେ । ଏ ବିଷୟରେ ନିଷ୍ପତ୍ତି କରିବାର ଯୋଗ୍ୟତା କେବଳ ରାଜାଙ୍କର ଥିଲା । ରାଜା ନେକର୍‌ଙ୍କ ଉପରେ ମୀମାଂସା କରିବାର ଭାର ଦେଇଥିଲେ । ଇତ୍ୟବସରେ ପ୍ୟାରିସ୍ ବିଶ୍ୱବିଦ୍ୟାଳୟ ପ୍ରାଚୀନ ପ୍ରଥା ଅନୁଯାୟୀ ତିନୋଟି ଗୋଷ୍ଠୀ ପୃଥକ ଭାବରେ ସମ୍ମିଳିତ ହେବା ଯୁକ୍ତିଯୁକ୍ତ ବୋଲି ମତ ବ୍ୟକ୍ତ କରିଥିଲା । ନେକର୍ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଭା ପୁନର୍ବାର ଆହ୍ୱାନ କରିଥିଲେ । ସେ ସଭା ମଧ୍ୟ ପ୍ୟାରିସ ବିଶ୍ୱବିଦ୍ୟାଳୟର ମତ ସପକ୍ଷରେ ଯୁକ୍ତି ବାଢ଼ିଥିଲା । ନେକର୍ ତାଙ୍କର ନିଷ୍ପତ୍ତି ଦେବା ବିଷୟରେ କାଳକ୍ଷେପ ନୀତି ଅବଲମ୍ବନ କରିଥିଲେ । ଲୋକମାନଙ୍କ ଶ୍ରଦ୍ଧାରୁ ବଞ୍ଚିତ ନ ହେବା ପାଇଁ ୧୭୮୮ ମସିହା ଶେଷଆଡ଼କୁ ଘୋଷଣା କଲେ ଯେ ରାଷ୍ଟ୍ରସଭାରେ ପ୍ରଥମ ଦୁଇଗୋଷ୍ଠୀର ମିଳିତ ସଭ୍ୟସଂଖ୍ୟା ସଙ୍ଗେ, ତୃତୀୟ ଗୋଷ୍ଠୀର ସଭ୍ୟସଂଖ୍ୟା ସମାନ ହେବ । କିନ୍ତୁ ଅଧିକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଲା କିପରି ତିନିଗୋଷ୍ଠୀର ସଭ୍ୟମାନେ ସମବେତ ହେବେ ? ସେମାନେ ପୃଥକ ପୃଥକ ଭାବେ

ତନୋଟି ଗୋଷ୍ଠୀରେ ସମବେତ ହେବେ, ନା ସେମାନେ ଏକତ୍ର ସମବେତ ହେବେ ? ଏ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ସେ ସମାଧାନ କରିନଥିଲେ । ସେ ଦେଖିଲେ ଯେ ରାଜା ଗୋଟିଏ ପଟରେ ରାଷ୍ଟ୍ରପତ୍ତି ହାତରେ କର ବସାଇବା ଓ ଅନ୍ୟାନ୍ୟ ସଂସ୍କାର ପ୍ରବର୍ତ୍ତନ କରିବା ଭାର ଛାଡ଼ିଦେବାକୁ ପ୍ରତିଶ୍ରୁତି ଦେଇଥିଲାବେଳେ ଅନ୍ୟ ପଟରେ ସେ ସୁବିଧା-ଉପଭୋଗୀଙ୍କୁ ପୂର୍ଣ୍ଣମାତ୍ରାରେ ସମର୍ଥନ କରୁଥିଲେ । ଏ କ୍ଷେତ୍ରରେ ନେକର୍ ରାଜାଙ୍କୁ ତାଙ୍କର ନେତୃତ୍ୱ ଫେରିପାଇବା ଉଦ୍ଦେଶ୍ୟରେ ସାହାଯ୍ୟ ଦେବାକୁ ସକ୍ଷମ ହୋଇନଥିଲେ । ଏ ସବୁର ପରିଣାମ ହେଲା, ସୁବିଧା-ଉପଭୋଗୀ ଓ ସୁବିଧାରୁ ବଞ୍ଚିତ ଶ୍ରେଣୀଦ୍ୱୟ ମଧ୍ୟରେ ରାଷ୍ଟ୍ରପତିକୁ ଆୟତ୍ତାଧୀନ କରିବା ପାଇଁ ଚୂଡ଼ାନ୍ତ ପ୍ରତିଦ୍ୱନ୍ଦ୍ୱିତା ।

---

# ତୃତୀୟ ଅଧ୍ୟାୟ

## ଫରାସୀ ରାଷ୍ଟ୍ର-ବିପ୍ଳବ (୧୭୮୯-୧୯୫)

### ସମ୍ବିଧାନ ସଭା (The Constituent Assembly May 1789-September 1791)

ତିନୋଟି ଗୋଷ୍ଠୀର ନିର୍ବାଚିତ ପ୍ରତିନିଧିମାନେ ୧୭୮୯ ମସିହା ମେ ମାସ ଆରମ୍ଭରେ ପ୍ୟାରିସ୍‌ଠାରୁ ପ୍ରାୟ ୧୨ ମାଇଲ ଦୂରରେ ଅବସ୍ଥିତ ଭର୍ସାଇଲ୍ସ୍‌ରେ ଆସି ରୁଣ୍ଡ ହେଲେ । ସେମାନେ ସଭା କରିବା ପାଇଁ, ରାଜପ୍ରାସାଦରେ ବିଭିନ୍ନ କକ୍ଷ ସବୁ ରଖାଯାଇଥିଲା । ମେ ୩ ତାରିଖ ଦିନ ରାଜପ୍ରାସାଦରେ ସେମାନଙ୍କୁ ସାଦର ସମ୍ବର୍ଦ୍ଧନା କରାଯାଇଥିଲା ଓ ରାଜା ସରକାରୀ ଭାବରେ ସେମାନଙ୍କୁ ଅଭିନନ୍ଦନ କରିଥିଲେ । ମେ ୪ ତାରିଖ ରବିବାର ହୋଇଥିବାରୁ ସେମାନେ ସବୁ ରାଜକୀୟ ଉପାସନା ମନ୍ଦିରକୁ ଯାଇ ପ୍ରାର୍ଥନାରେ ଯୋଗ ଦେଇଥିଲେ । ମେ ୫ ତାରିଖ ଦିନ ରାଷ୍ଟ୍ରସଭା (States General) ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରାଯାଇଥିଲା । ରାଜା ପ୍ରଥମେ ତାଙ୍କ ଭାଷଣ ଦେଇଥିଲେ । ତା'ପରେ ଜଣେ ମନ୍ତ୍ରୀ ବକ୍ତୃତା ଦେଇଥିଲେ । ଶେଷରେ ବକ୍ତୃତା ଦେଇଥିଲେ ନେକର୍ ।

ରାଜା ତାଙ୍କ ଅଭିଭାଷଣରେ ସରକାରଙ୍କର ଅତ୍ୟଧିକ ଋଣଭାର ଓ ଦେଶରେ ଅସମାନ କରଭାର ବିଷୟରେ ସୂଚନା ଦେଇଥିଲେ । ସେ ଆଶା କରିଥିଲେ ଯେ ପ୍ରଥମ ଦୁଇଗୋଷ୍ଠୀର ସୁବିଧା-ଉପଭୋଗୀମାନେ ପୂର୍ବକାଳରୁ ପାଇଆସୁଥିବା କରରୁ ଅବ୍ୟାହତି ସ୍ୱେଚ୍ଛାରେ ପରିତ୍ୟାଗ କରିବେ । ସେ ମଧ୍ୟ ବ୍ୟୟ-ସଙ୍କୋଚ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଶାନ୍ତି-ଶୃଙ୍ଖଳା ପୁନଃ ପ୍ରତିଷ୍ଠିତ କରିବା ପାଇଁ ରାଷ୍ଟ୍ର-ସଭାକୁ ଅନୁରୋଧ କରିଥିଲେ । ନେକରଙ୍କ ବକ୍ତୃତା କେବଳ ନିଅଣ୍ଟ ପଡ଼ୁଥିବା ଅର୍ଥ ପୂରଣ ସମ୍ପର୍କରେ ଉପୁଜିଥିବା ଆଶୁ ସମସ୍ୟା ବିଷୟରେ ସୂଚନା ଦେଇଥିଲା । ଜଣେ ଫରାସୀ ଲେଖକ ଯଥାର୍ଥରେ କହିଥିଲେ, "ଯେତେବେଳେ ସେ (ନେକର୍) ପ୍ରକୃତ ବିପ୍ଳବର ସମ୍ମୁଖୀନ ହୋଇଥିଲେ, ସେ ଏକ ଆର୍ଥିକ ସଙ୍କଟର ମୁହାଁମୁହିଁ ହୋଇଥିଲେ ବୋଲି ବିଶ୍ୱାସ କରି ଚାଲିଥିଲେ ।" (As a Frech writer puts it, "he continued to believe himself face to face with a financial crisis when he was really confronted with a revolution.")

ଉଦ୍‌ଘାଟନ ସଭା ତୃତୀୟ ଗୋଷ୍ଠୀର ସଭ୍ୟମାନଙ୍କୁ ହତାଶ କରିଥିଲା । ରାଜା ତାଙ୍କ ଭାଷଣରେ, ସେମାନେ ସଂପୃକ୍ତ ଥିବା ସମସ୍ୟା ଉପରେ କୌଣସି ଆଲୋକପାତ କରିନଥିଲେ । ସମସ୍ୟା ହେଲା—ରାଷ୍ଟ୍ରସଭା କିପରି ଭାବରେ ଗଢ଼ାହେବ,—ଗୋଟିଏ ସଭାରେ ନା ତିନୋଟି ସଭାରେ ଏବଂ ଭୋଟ ଦେବାର ରୀତି କଣ ହେବ—ମୁଣ୍ଡଗଣତି ଦ୍ୱାରା ନା ଗୋଷ୍ଠୀଦ୍ୱାରା ? ରାଜା ବକ୍ତୃତା ଶେଷ ହେଲାପରେ, ରାଣୀ ଓ ରାଜସମ୍ପ୍ରଦାୟ ସହିତ ବିଦାୟ ନେଇଥିଲେ । ସେମାନଙ୍କ ପଛେ ପଛେ ଧର୍ମଯାଜକଗୋଷ୍ଠୀ ଓ ସମ୍ଭ୍ରାନ୍ତଗୋଷ୍ଠୀର ପ୍ରତିନିଧିମାନେ ସାଧାରଣ-ଗୋଷ୍ଠୀର ପ୍ରତିନିଧିମାନଙ୍କୁ ଏକାକୀ ସେମାନଙ୍କର ସମସ୍ୟାଗୁଡ଼ିକ ଆଲୋଚନା କରିବାପାଇଁ ଛାଡ଼ିଦେଇ ପୃଥକ ପୃଥକ ପ୍ରକୋଷ୍ଠକୁ ଫେରିଗଲେ । ଏହାପରେ ଲେଖିଏନରୁ ଜଣେ ପ୍ରତିନିଧି ଲେଖିଥିଲେ, 'ସଂଗ୍ରାମ ଆରମ୍ଭ ହୋଇଗଲା' ('The battle has begun') ।

ମନେହେଲା ରାଜା ରାଷ୍ଟ୍ରର ନେତୃତ୍ୱକୁ ଆଉ ଜାବୁଡ଼ି ଧରି ରଖିପାରିବେ ନାହିଁ । ରାଷ୍ଟ୍ରସଭା ମଧ୍ୟ ସେ ନେତୃତ୍ୱ ନିଜ ଆୟତ୍ତକୁ ଆଣିବାକୁ ଅସମର୍ଥ । କିନ୍ତୁ ତୃତୀୟ ଗୋଷ୍ଠୀ ଅତି ଶୀଘ୍ର ରାଜାଙ୍କଠାରୁ ନେତୃତ୍ୱ ଛଡ଼ାଇନେବାକୁ ସକ୍ଷମ ହୋଇଥିଲେ । ରାଷ୍ଟ୍ରସଭା ବସିବାର ପ୍ରଥମ ଆଠସପ୍ତାହ ରାଜ୍ୟରେ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଉଦ୍‌ଘାଟନ ଉତ୍ସବ ପରେ ପରେ ତୃତୀୟଗୋଷ୍ଠୀର ପ୍ରତିନିଧିମାନେ ବିପ୍ଳବାତ୍ମକ ନାଟକ ଅଭିନୟ କରିବା ଆରମ୍ଭ କରିଦେଲେ ଏବଂ ଏହା ଜୁଲାଇ ପ୍ରଥମ ସପ୍ତାହ ଆଡ଼କୁ ଶେଷ ହେଲା । ସେମାନେ ପୂର୍ଣ୍ଣ ସଫଳତା ହାସଲ କଲେ ।

ନେକର୍‌ଙ୍କ ପ୍ରତିପତ୍ତି ଯୋଗୁ ତୃତୀୟ ବା ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କ ସଂଖ୍ୟା ୬୨୧ ହେବା ସ୍ଥଳେ, ଦ୍ୱିତୀୟ ବା ସମ୍ଭ୍ରାନ୍ତ ଗୋଷ୍ଠୀର ସଂଖ୍ୟା ୨୮୫ ଓ ପ୍ରଥମ ବା ଧର୍ମଯାଜକଗୋଷ୍ଠୀର ସଂଖ୍ୟା ୩୦୮ ଥିଲା । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଖଜଣା ଖାତାରେ ନାମ ଥିବା ପଚିଶବର୍ଷ ଓ ପଚିଶବର୍ଷରୁ ଊର୍ଦ୍ଧ୍ୱ ଲୋକମାନଙ୍କଦ୍ୱାରା ନିର୍ବାଚିତ ହୋଇଥିଲେ । କେତେଜଣଙ୍କୁ ଛାଡ଼ିଦେଲେ ତୃତୀୟ ଗୋଷ୍ଠୀର ଅଧିକାଂଶ ପ୍ରତିନିଧି ମଧ୍ୟବିତ୍ତ ଶ୍ରେଣୀର ଲୋକ ଥିଲେ । ଧର୍ମଯାଜକ ଗୋଷ୍ଠୀର ପ୍ରତିନିଧିମାନଙ୍କ ମଧ୍ୟରୁ ତିନିଭାଗରୁ ଦୁଇଭାଗ ହେଲେ ପୁରୋହିତମାନେ (parish priests) ।

ତୃତୀୟ ଗୋଷ୍ଠୀର ପ୍ରତିନିଧିମାନେ ସ୍ଥିର କଲେ ଯେ ରାଜା ସେମାନଙ୍କୁ ଅଧିକ ସଂଖ୍ୟକ ସ୍ଥାନ ରାଷ୍ଟ୍ରସଭାରେ ଦେଇଛନ୍ତି । ଯଦି ରାଷ୍ଟ୍ରସଭା ତିନୋଟି ପ୍ରକୋଷ୍ଠରେ ବସେ ଏବଂ ଗୋଷ୍ଠୀ ହିସାବରେ ଭୋଟ ଦିଏ, ତାହାହେଲେ ତୃତୀୟ ଗୋଷ୍ଠୀ ତାର ଦ୍ୱିଗୁଣ ପ୍ରତିନିଧିତ୍ୱର ସୁବିଧା ହରାଇବ । ତାହାହେଲେ ରାଜା ନିଶ୍ଚୟ ସବୁ ଗୋଷ୍ଠୀର ପ୍ରତିନିଧିମାନେ ଗୋଟିଏ ପ୍ରକୋଷ୍ଠରେ ବସି ଏକାଠି ଭୋଟଦେବା ଚାହିଁଥିଲେ । ଯଦି ସେ ତା' ଚାହିଁଥିଲେ ତାହାହେଲେ ସେ ସ୍ପଷ୍ଟ ନିର୍ଦ୍ଦେଶ ଦେଲେନାହିଁ କାହିଁକି ଏବଂ କାହିଁକି ତାହାହେଲେ ସେ ପୃଥକ ପୃଥକ ପ୍ରକୋଷ୍ଠ ତିନିଗୋଷ୍ଠୀର ପ୍ରତିନିଧିମାନଙ୍କ ବ୍ୟବହାର ପାଇଁ ନିର୍ଦ୍ଦିଷ୍ଟ କରି ରଖିଥିଲେ ? ପୂର୍ବରୁ ସେମାନେ

ରାଜାଙ୍କ ପକ୍ଷପାତିତା ବିଷୟରେ ଅବଗତ ଥିଲେ; ତେଣୁ ଏ କ୍ଷେତ୍ରରେ ରାଜାଙ୍କର ସାଧୁତା ବିଷୟରେ ସେମାନଙ୍କର ସଂଶୟ ଜାତ ହେବା ସ୍ୱାଭାବିକ । ସେ ଯାହାହେଉ, ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଗୋଟିଏ ପ୍ରକୋଷ୍ଠ ପାଇଁ ସଂଗ୍ରାମ ଚଳାଇବାକୁ ବଦ୍ଧପରିକର ହୋଇଥିଲେ । ପତି ଗୋଷ୍ଠୀର କର୍ତ୍ତବ୍ୟ ଥିଲା ଯେ ସଂଘଠିତ ଭାବରେ ତାଙ୍କ ପ୍ରତିନିଧିମାନଙ୍କର ନିର୍ବାଚନ ଯାଞ୍ଚ କରିବା ଓ ଉଚିତ କର୍ମଚାରୀମାନଙ୍କୁ ନିଯୁକ୍ତି ଦେବା । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ପରିଷ୍କାର କହିଦେଲେ ଯେ, ଯେପର୍ଯ୍ୟନ୍ତ ଅନ୍ୟ ଦୁଇ ଗୋଷ୍ଠୀର ପ୍ରତିନିଧିମାନେ ସେମାନଙ୍କ ସହିତ ଯୋଗ ନ ଦେଉଛନ୍ତି, ସେମାନେ ସେମାନଙ୍କର କର୍ତ୍ତବ୍ୟ ପାଳନ କରିବେ ନାହିଁ । ସେମାନେ ସୁଚିନ୍ତିତ ଓ କୂଟନୀତିପୂର୍ଣ୍ଣ ନିଶ୍ଚେଷ୍ଟତା ନୀତି ଅବଲମ୍ବନ କଲେ । ସେମାନେ ପାଞ୍ଚ-ସପ୍ତାହ ଯାଏଁ ଅପେକ୍ଷା କଲେ । ଇତ୍ୟବସରରେ ସେମାନେ ଅନ୍ୟ ଦୁଇଗୋଷ୍ଠୀର ପ୍ରତିନିଧିମାନଙ୍କୁ ସେମାନଙ୍କ ସହିତ ଯୋଗଦେବା ପାଇଁ କଥାବାର୍ତ୍ତା ଚଳାଇଲେ । ଅନ୍ୟ ଦୁଇ ଗୋଷ୍ଠୀର ପ୍ରତିନିଧିମାନେ ସେମାନଙ୍କ ପ୍ରସ୍ତାବକୁ ବାରମ୍ବାର ପ୍ରତ୍ୟାଖ୍ୟାନ କଲେ ମଧ୍ୟ ସେମାନେ ତାକୁ ଉପେକ୍ଷା କରି ଉଦ୍ୟମ ଅବ୍ୟାହତ ରଖିଥିଲେ । ସେମାନଙ୍କର ସଂକଳ୍ପ ମେ ମାସ ୨୮ ତାରିଖରେ ପ୍ୟାରିସ୍ ପ୍ରତିନିଧିମାନଙ୍କ ଆଗମନ ଫଳରେ ସୁଦୃଢ଼ ହୋଇଥିଲା । ନିର୍ଦ୍ଦିଷ୍ଟ ସମୟରେ ନ ଆସି ବିଳମ୍ବରେ ପହଞ୍ଚିଲେ ସୁଦ୍ଧା, ସେମାନେ ଅତି ଉତ୍ସାହୀ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଗଣିତ-ଜ୍ୟୋତିଷୀ 'ବେଲି' ଓ ସୁପରିଚିତ ପୁସ୍ତିକା (pamphlet) ଲେଖକ 'ଆବିସିଏସ୍' । ଆବିସିଏସ୍ ତୃତୀୟ ଗୋଷ୍ଠୀ ସମ୍ବନ୍ଧରେ ଖଣ୍ଡିଏ ପୁସ୍ତିକା ପ୍ରକାଶ କରିଥିଲେ ଓ ସେଥିରେ କେତୋଟି ପ୍ରଶ୍ନ ଓ ଉତ୍ତର ଥିଲା—'ତୃତୀୟ ଗୋଷ୍ଠୀଟି କ'ଣ ? କିଛି ନୁହେଁ ? ଏହା କ'ଣ ହେବା ଉଚିତ ? ସବୁକିଛି ।' ("What is the Third Estate ? Nothing. What should it be ? Everything.") ପ୍ୟାରିସର ପ୍ରତିନିଧିମାନେ ଆସିଲାପରେ ମଧ୍ୟ ଜୁନ ୧୦ ତାରିଖ ପର୍ଯ୍ୟନ୍ତ ତୃତୀୟ ଗୋଷ୍ଠୀ ପ୍ରତିନିଧିମାନଙ୍କର ଅସହଯୋଗ ଆନ୍ଦୋଳନ ବ୍ୟବସ୍ଥା ଚାଲୁରହିଥିଲା । ରାଜା ଓ ତାଙ୍କର ପରାମର୍ଶଦାତାମାନେ ଉପୁଜିଥିବା ପରିସ୍ଥିତି ବିଷୟରେ ଉଦ୍‌ବେଗ ପ୍ରକାଶ କରିଥିଲେ । ରାଜ୍ୟରେ ଗୁରୁତର ବିଶୃଙ୍ଖଳା ଦେଖାଦେଇଥିଲା ଓ ଶାନ୍ତିଭଙ୍ଗର ଆଶଙ୍କା ଥିଲା; କର ଆଦାୟ କରିଯାଇ ପାରୁନଥିଲା । ରାଷ୍ଟ୍ରସଭା ଅବାଧ୍ୟ ଓ ରାଜଦ୍ରୋହୀ ହୋଇଥିବାରୁ ତାକୁ ଭାଙ୍ଗିଦେବା ପାଇଁ କଳ୍ପନାଜଳ୍ପନା ଚାଲିଥିଲା । କିନ୍ତୁ ଆର୍ଥିକ ସମସ୍ୟା ଅଧିକ ଜଟିଳ ହୋଇପଡ଼ିଥିଲା । କିଛି କରିହେଲା ନାହିଁ । ସରକାରଙ୍କ ନିଷ୍କ୍ରିୟତା, ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କ ମନରେ ଦୃଢ଼ବିଶ୍ୱାସ ଜନ୍ମାଇଥିଲା । ସେମାନେ ସେମାନଙ୍କର ନେତାମାନଙ୍କୁ ଜାଣିପାରିଲେ ଓ ସେମାନଙ୍କର ଶକ୍ତିର ପରିଚୟ ମଧ୍ୟ ପାଇଲେ ।

ଆବିସିଏସ୍ ଜୁନ୍ ୧୦ ତାରିଖ ଦିନ ପ୍ରସ୍ତାବ କଲେ ଯେ, ଶେଷ ଥର ପାଇଁ ଧର୍ମଯାଜକମାନଙ୍କୁ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ସେମାନଙ୍କ ସହିତ ଯୋଗଦେବାପାଇଁ ଆହ୍ୱାନ

ଉଠିଯିବ ଏବଂ ଯଦି ସେମାନେ ଯୋଗଦେବାକୁ ଅନିଚ୍ଛା ପ୍ରକାଶ କରନ୍ତି, ତାହାହେଲେ ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଏକାକୀ ଗୋଟିଏ ସଭା ଗଠନ କରିବା ପାଇଁ ପଦକ୍ଷେପ ନେବେ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଅନ୍ୟ ଦୁଇ ଗୋଷ୍ଠୀ ନିକଟରେ ଆତ୍ମସମର୍ପଣ ନ କରିବା ପାଇଁ ପ୍ରତିଜ୍ଞାବଦ୍ଧ, ଏବଂ ସେମାନେ ଅନୁଭବ କରିଥିଲେ ଯେ ସେମାନଙ୍କର ଯଥେଷ୍ଟ ଶକ୍ତି ଅଛି ଅନ୍ୟ ଦୁଇ ଗୋଷ୍ଠୀ ଉପରେ ପ୍ରାଧାନ୍ୟ ବିସ୍ତାର କରିବା ପାଇଁ । ଧର୍ମଯାଜକମାନେ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଯେକୌଣସି ନିଷ୍ପତ୍ତି ନିଅନ୍ତୁ ପଛକେ, ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ବହୁପରିମାଣରେ ଶାସନଭାର ନିଜ ହାତକୁ ନେବାପାଇଁ ସଂକଳ୍ପ କରିଥିଲେ । ତା ଛଡ଼ା ସେମାନେ ସିଦ୍ଧାନ୍ତ କରିଥିଲେ ଯେ ସେମାନେ ଏପରି ଏକ ନାମ ଗ୍ରହଣ କରିବେ, ଯାହା ବିଶ୍ୱକୁ କି କ୍ଷମତା ସେମାନେ ଦାବି କରୁଛନ୍ତି ଜଣାଇଦେବେ । ବହୁ ସପ୍ତାହ ସାଧାରଣ ଗୋଷ୍ଠୀର ପ୍ରତିନିଧି ଓ ଅନ୍ୟ ଦୁଇ ଗୋଷ୍ଠୀର ପ୍ରତିନିଧିମାନଙ୍କ ମଧ୍ୟରେ ବୃଥା ସମ୍ବାଦ ଆଦାନ-ପ୍ରଦାନରେ କଟିଗଲା । ଶେଷରେ ମୋଟେ ୧୨ ଜଣ ପଲ୍ଲୀ ପୁରୋହିତ (parish priests) ସେମାନଙ୍କର ଗୋଷ୍ଠୀ ଛାଡ଼ି ସାଧାରଣ ଗୋଷ୍ଠୀରେ ଯୋଗଦେଲେ । ଜୁନ୍ ୧୪ ତାରିଖ ଦିନ ପ୍ରକୃତ ତର୍କ ଉଠିଲା—ସେମାନଙ୍କର ନାମକରଣ କ'ଣ ହେବ ? ଆବେସିଏସ୍ ପ୍ରସ୍ତାବ କଲେ ଯେ ସେମାନେ 'ଜାତୀୟ ସଭା' (the National Assembly) ନାମ ଗ୍ରହଣ କରିବେ । ସେ ଯୁକ୍ତି ବାଢ଼ିଲେ ଯେ ଏହି ନାମ ନେବାଦ୍ୱାରା ସେମାନେ ଅନ୍ୟ ଦୁଇ ଗୋଷ୍ଠୀର ସମର୍ଥନ ନ ପାଇଲେ ମଧ୍ୟ, ସେମାନଙ୍କର ଫରାସୀ ଜାତି ପାଇଁ କହିବାର ଓ କାର୍ଯ୍ୟ କରିବାର ଅଧିକାର ରହିବ । ମିରାବ୍ୟୁ ଏ ନାମକରଣ ବିଷୟରେ ଆପତ୍ତି ଉଠାଇ କହିଲେ ଯେ ଏପରି ଏକ ନାମ ଗ୍ରହଣ କରିବା ଉଚିତ ଯାହା କି ବିବାଦୀୟ ହେବନାହିଁ । କିନ୍ତୁ ତାଙ୍କ ଆପତ୍ତି ବିଷୟରେ ଅଧିକାଂଶ ପ୍ରତିନିଧି ବିଶେଷ ଗୁରୁତ୍ୱ ଆରୋପ କରି ନ ଥିଲେ ।

ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଜୁନ୍ ୧୭ ତାରିଖ ଦିନ ବିପ୍ଲବ ଘଟାଇବା ଉଦ୍ଦେଶ୍ୟରେ ପ୍ରଥମ ପଦକ୍ଷେପ ନେଲେ । ସେମାନେ ଯୁକ୍ତି ଦର୍ଶାଇଲେ ଯେ ରାଜା ଯଦି କଠିନ ପ୍ରଶ୍ନର ସମାଧାନ ନ କରିପାରିବେ, ସେମାନେ ନିଜେ ତାହା ସମାଧାନ କରିବେ । ସେମାନଙ୍କ କାର୍ଯ୍ୟର ପରିଣାମ ଭୋଗକରିବାକୁ ପ୍ରସ୍ତୁତ ହୋଇ ନିଷ୍ପତ୍ତି କଲେ ଯେ, ସେମାନେ ଫରାସୀଜାତିର ୯୬ ଭାଗ ଲୋକଙ୍କର ପ୍ରତିନିଧିତ୍ୱ କରୁଥିବାରୁ ସେମାନଙ୍କର କେବଳ ଜାତିର ମତ ବ୍ୟକ୍ତ କରିବାର ଅଧିକାର ରହିଛି । ରାଜାଙ୍କ ଅନୁମୋଦନକୁ ଅପେକ୍ଷା ନ କରି, ସାଧାରଣ ଗୋଷ୍ଠୀ ନିଜକୁ ଫ୍ରାନସର ଏକମାତ୍ର ପ୍ରତିନିଧି-ସଭା ବୋଲି ଘୋଷଣା କରିଥିଲେ ଏବଂ ଅତ୍ୟଧିକ ଭୋଟରେ 'ଜାତୀୟ ସଭା' (the National Assembly) ନାମ ଗ୍ରହଣ କରିଥିଲେ । ସେମାନଙ୍କର ଏ ପଦକ୍ଷେପ ବେଆଇନ; କାରଣ ରାଜାଙ୍କ ବ୍ୟତୀତ କାହାର ଏ ପଦକ୍ଷେପ ନେବାର ଆଇନସଙ୍ଗତ ଅଧିକାର ନାହିଁ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଏପରି କରିବାଦ୍ୱାରା ଆଇନକୁ ନିଜ ହାତକୁ ନେଲେ ।

ସେମାନେ ରାଜାଙ୍କ ସେମାନଙ୍କର ଭବିଷ୍ୟତ କାର୍ଯ୍ୟଗୁଡ଼ିକ ଉପରେ ଭେଟୋ (ନାମଞ୍ଜୁର କ୍ଷମତା) ପ୍ରୟୋଗ କରିବାକୁ ଅଧିକାର ଦେଇ ନ ଥିଲେ । ଏହିସବୁ ଘଟଣା ଫରାସୀ ରାଷ୍ଟ୍ର-ବିପ୍ଳବର ସୂତ୍ରପାତର ସୂଚନା ଦେଇଥିଲା । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ରାଜା ଓ ସୁବିଧା-ଉପଭୋଗୀ ଶ୍ରେଣୀଙ୍କ ବିନା ସାହାଯ୍ୟରେ ତାଙ୍କର ସ୍ୱାର୍ଥରକ୍ଷା ପାଇଁ କାର୍ଯ୍ୟ କରିବାକୁ ଦାବି ଉପସ୍ଥାପିତ କରିଥିଲେ ।

ରାଜା ଓ ତାଙ୍କର ପରାମର୍ଶଦାତାମାନେ ଆସନ୍ନ ବିପଦର ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ହେଲେ । ପରାମର୍ଶଦାତାମାନେ ରାଜାଙ୍କୁ ରାଷ୍ଟ୍ରସଭାର ରାଜକୀୟ ଅଧିବେଶନ (royal session) ବସାଇବା ପାଇଁ ପ୍ରବର୍ତ୍ତାଇଥିଲେ । ପୁରାକାଳରେ ରାଜା ଯେତେ ରାଷ୍ଟ୍ରସଭାକୁ ନିଜେ ଯାଇ ରାଜକୀୟ ଅଧିବେଶନ ବସାଉଥିଲେ, ତାହାହେଲେ ତାଙ୍କ କଥା ମାନିବାକୁ ସମସ୍ତେ ବାଧ୍ୟ ହେଉଥିଲେ । ତେଣୁ ସ୍ଥିର ହୋଇଗଲା ଯେ, ରାଜା ରାଜକୀୟ ଅଧିବେଶନ ବସାଇବେ, ସେ ତାଙ୍କର ମତ ପ୍ରକାଶ କରିବେ ଏବଂ ଫ୍ରାନ୍ସ ତାକୁ ଗ୍ରହଣ କରିବ; କିନ୍ତୁ ଏ ଯୋଜନା ଫସରଫାଟିଗଲା । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଆତ୍ମସମର୍ପଣ କରିବାକୁ କୌଣସିମତେ ରାଜି ହେଲେ ନାହିଁ । ରାଜା ତାଙ୍କ ପରାମର୍ଶଦାତାଙ୍କ ସ୍ପରେ ତାଙ୍କସ୍ଥ ସଭା ବସୁଥିବା ପ୍ରକୋଷ୍ଠକୁ ଗୃହ ପକାଇ ଦେଇଥିଲେ ଓ ଫାଟକରେ ସୈନ୍ୟ ଜଗାଇଥିଲେ । ସେ ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କୁ ଏ ବିଷୟ କିଛି ଜଣାଇ ନ ଥିଲେ । ଯେତେବେଳେ ଜୁନ୍ ୨୦ ତାରିଖରେ ସେମାନେ ସେ ପ୍ରକୋଷ୍ଠରେ ସମବେତ ହେବାକୁ ଗଲେ, ସେମାନଙ୍କୁ ପ୍ରବେଶ କରିବାକୁ ଦିଆଗଲା ନାହିଁ । ସେମାନଙ୍କୁ ପିଛରେ କୁହାଗଲା ଯେ, ରାଜକୀୟ ଅଧିବେଶନ ପାଇଁ ପ୍ରକୋଷ୍ଠଟି ପ୍ରସ୍ତୁତ କରାଯାଉଥିବାରୁ ସେମାନଙ୍କୁ ପ୍ରବେଶ କରିବାକୁ ଅନୁମତି ଦିଆଯିବ ନାହିଁ । କିନ୍ତୁ ସେମାନେ ଏ କଥାରେ ବିଶ୍ୱାସ କଲେ ନାହିଁ । ଜାଣିଶୁଣି ସେମାନଙ୍କୁ ଅପଦସ୍ତ କରିବା ପାଇଁ ଏହା କରାହୋଇଛି ବୋଲି ବିଶ୍ୱାସ କରିଥିଲେ । ସେମାନେ ନିକଟରେ ଥିବା ଟେନିସ କୋର୍ଟକୁ ଯାଇ ସେମାନଙ୍କ ସଭାପତି ବେଲିଙ୍କ ଅଧ୍ୟକ୍ଷତାରେ ଏହି ଶପଥ ନେଲେ ଯେ "ପରିସ୍ଥିତି ଯେତେବେଳେ ସୁବିଧାଜନକ ହେବ ସେମାନେ ପୁଣି ସମବେତ ହେବେ । ରାଜ୍ୟର ସମ୍ବିଧାନ ପ୍ରସ୍ତୁତ ନ ହେବା ପର୍ଯ୍ୟନ୍ତ ସେମାନେ କଦାପି ଅଲଗା ରହିବେ ନାହିଁ ।" ("They took the Tennis court oath 'never to separate and to reassemble whenever circumstances shall require, until the constitution of the kingdom shall be established.'") ସାଧାରଣ ଗୋଷ୍ଠୀ ଫ୍ରାନ୍ସରେ ଗୋଟିଏ ସାଂବିଧାନିକ ରାଜତନ୍ତ୍ର ପ୍ରତିଷ୍ଠା କରିବାପାଇଁ ଶପଥ ନେଇଥିଲେ । ପ୍ରବୁଦ୍ଧ ମଧ୍ୟବିତ୍ତଶ୍ରେଣୀର ଲୋକେ ବିପ୍ଳବର ରୂପରେଖ ଦେବାକୁ ଯାଉଥିବାର ବେଶ୍ ସୂଚନା ମିଳିଥିଲା । ଉକ୍ତ ସୁବିଧା-ଉପଭୋଗୀ ଶ୍ରେଣୀ କ୍ରମେ କ୍ରମେ ସଭାମରୁ ଓହରି ଯାଉଥିବାର ଦେଖାଗଲା । ଇତ୍ୟବସରରେ ପ୍ରଥମ ଗୋଷ୍ଠୀର ପ୍ରତିନିଧିମାନେ ବହୁ ପୁରୋହିତଙ୍କ

ପରେ 'ଜାତୀୟ ସଭାରେ' ଯୋଗଦେବା ପାଇଁ ଗୋଟିଏ ଅଧିକା ଭୋଟରେ ନିଷ୍ପତ୍ତି ଗ୍ରହଣ କଲେ ଏବଂ ଜୁନ୍ ୨୩ ତାରିଖରେ ହେବାକୁ ଯାଉଥିବା ରାଜକୀୟ ଅଧିବେଶନର ପୂର୍ବ ରାତ୍ରରେ ଧର୍ମଯାଜକଗୋଷ୍ଠୀର ଅଧାଅଧି ପ୍ରତିନିଧି ଆସି 'ଜାତୀୟ ସଭାରେ' ଯୋଗ-ଦେଲେ । ଏ ଘଟଣା ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କୁ ବିଶେଷ ଉତ୍ସାହିତ କରିଥିଲା । ରାଜା ଓ ତାଙ୍କର ପରାମର୍ଶଦାତାମାନେ ପ୍ରମାଦ ଗଣିଲେ । ସେମାନଙ୍କର ଆଶଙ୍କା ହେଲା ଯେ ଅଳ୍ପଦିନ ମଧ୍ୟରେ ତିନି ଗୋଷ୍ଠୀର ପ୍ରତିନିଧିମାନେ 'ଜାତୀୟ ସଭା'ରେ ମିଳିତ ହେବେ ।

ରାଜା ଏ ପରିସ୍ଥିତି ଉପୁଜିବାକୁ ନ ଦେବାପାଇଁ ଜୁନ୍ ୨୩ ତାରିଖରେ ରାଜକୀୟ ଅଧିବେଶନ ବସାଇଲେ ଏବଂ ସେ ସେହି ଦିନଠାରୁ ତିନୋଟି ଗୋଷ୍ଠୀକୁ ପୃଥକ ପୃଥକ ସଭାରେ ମିଳିତ ହେବାପାଇଁ ହୁକୁମ ଦେଲେ ଏବଂ ଶ୍ରୋତାମାନଙ୍କୁ ଉଚ୍ଚ ଦୁଇ ଗୋଷ୍ଠୀର ସମ୍ପତ୍ତି ଓ ସ୍ୱାଧିକାର ଉପରେ ହସ୍ତକ୍ଷେପ ନ କରିବାକୁ ସତର୍କ କରାଇଦେଇଥିଲେ । ପୁଣି ଥରେ ରାଜା ସୁବିଧା-ଉପଭୋଗୀଙ୍କ ପକ୍ଷ ନେବାକୁ ବାଛିନେଲେ । ରାଜା ତାଙ୍କର ଭାଷଣ ଦେଇ ସଭାଗୃହ ଛାଡ଼ି ଚାଲିଗଲେ । ତାଙ୍କ ପଛେ ପଛେ ସଂଭ୍ରାନ୍ତ ଗୋଷ୍ଠୀର ପ୍ରତିନିଧିମାନେ ଏବଂ ଧର୍ମଯାଜକ-ଗୋଷ୍ଠୀର ପ୍ରତିନିଧିମାନେ ସଭାଗୃହରୁ ବାହାରିଯାଇଥିଲେ; କିନ୍ତୁ ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ସଭାଗୃହ ନ ଛାଡ଼ି ରହିଗଲେ । ଉତ୍ସବାଦିର କାର୍ଯ୍ୟକ୍ରମ ପରିଚାଳନକାରୀ (Master of the ceremonies) ସେମାନଙ୍କୁ ସ୍ମରଣ କରାଇଦେଇ କହିଲେ, 'ମହିମାଙ୍କ ହୁକୁମ ତ ଆପଣମାନେ ଶୁଣିଲେ ।' ବଜ୍ରଗମ୍ଭୀର ସ୍ୱରରେ ଦୁର୍ଦ୍ଧର୍ଷ ମିରାବ୍ୟୁ ଉତ୍ତର ଦେଲେ, 'ଆପଣ ଜାଣିରଖନ୍ତୁ ଯେ ଫ୍ରାନ୍ସର ସାଧାରଣ ଲୋକଙ୍କୁ ସଙ୍ଗୀନ୍ ବ୍ୟବହାର ବିନା ଆଉ କୌଣସି ଉପାୟ ଅବଲମ୍ବନ କରି ବିଚ୍ଛିନ୍ନ କରାଯାଇ ପାରିବନା ।" ("Know you" answered a thunderous voice of redoubtable Mirabeau, "that nothing but the bayonet will avail to disperse the Commoners of France.") ଏପରି ଅବଜ୍ଞା ପ୍ରକାଶ ଦ୍ୱାରା ଉତ୍ସାହିତ ହୋଇ, ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ସେଠାରୁ ହଟି ନ ଥିଲେ । ସେମାନେ ନିଜକୁ ଫ୍ରାନ୍ସର ସାର୍ବଭୌମ ଶକ୍ତିରେ ପରିଣତ କଲେ ଓ ନିଜ ଦାବିରୁ ଓହରି ନ ଯିବାକୁ ପ୍ରତିଜ୍ଞା କଲେ ।

ରାଜାଙ୍କୁ ଯେତେବେଳେ ପରିଚାଳନକାରୀ ସାଧାରଣ ଗୋଷ୍ଠୀ ଜଣାଇଥିବା ଖବର ଦେଲେ, ରାଜା ସଭାଗୃହରୁ ସେମାନଙ୍କୁ ତଡ଼ି ନ ଦେବାକୁ ରାଜି ହୋଇଗଲେ । ସେ ଦୀର୍ଘନିଃଶ୍ୱାସ ପକାଇ ବାରମ୍ବାର କହିଲେ, "ସେମାନେ ରହିବାକୁ ଚାହାନ୍ତି ? ଖୁବ୍ ଭଲ, ସେମାନେ ରହନ୍ତୁ ।" ("They mean to stay ? Very well, let them stay.") ରାଜା ବାଧ୍ୟ ହେଲେ ମୁଣ୍ଡ ନୁଆଁଇବାକୁ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ବିଜୟ ହାସଲ କଲେ । ଜୁନ୍ ୨୭ ତାରିଖ ଦିନ ରାଜା ତୃତୀୟ ଧର୍ମଯାଜକଗୋଷ୍ଠୀ ଓ ସମ୍ଭ୍ରାନ୍ତ-ଗୋଷ୍ଠୀର ପ୍ରତିନିଧିମାନଙ୍କୁ ସାଧାରଣ ଗୋଷ୍ଠୀ ସହିତ ଯୋଗଦେଇ ଗୋଟିଏ ସଭା କରିବାକୁ

ନିର୍ଦ୍ଦେଶ ଦେଲେ । 'ଜାତୀୟ ସଭା' ପ୍ରାରମ୍ଭିକ ସଫଳତାରେ ଉଲ୍ଲସିତ ହେଲା । ଜଣେ ଫରାସୀ ଅଧିବାସୀ କହିଲେ ଯେ 'ବିପ୍ଳବ ଶେଷ ହୋଇଗଲା' । ପ୍ରକୃତରେ ଫରାସୀ ରାଷ୍ଟ୍ର-ବିପ୍ଳବର ପ୍ରଥମ ଅଧ୍ୟାୟ ସରିଲା ।

ଜୁଲାଇ ୨ ତାରିଖ ଦିନ ତିନୋଟି ଗୋଷ୍ଠୀର ପ୍ରତିନିଧିମାନେ ଗୋଟିଏ ସଭାରେ ମିଳିତ ହେଲେ ଏବଂ ଜୁଲାଇ ୭ ତାରିଖ ଦିନ ଫ୍ରାନ୍ସ ପାଇଁ ଗୋଟିଏ ସମ୍ବିଧାନର ଚିଠା ପ୍ରସ୍ତୁତ କରିବାକୁ ଗୋଟିଏ କମିଟି ନିଯୁକ୍ତ କରାଗଲା । ତେଣୁ 'ଜାତୀୟ ସଭା' 'ସମ୍ବିଧାନ ସଭା' ଆଖ୍ୟା ମଧ୍ୟ ନେଲା ।

ଫ୍ରାନ୍ସରେ ସେତେବେଳେ ତିନୋଟି ପ୍ରଧାନ ଶକ୍ତି ଥିଲେ । ପ୍ରଥମ ଶକ୍ତି ହେଲେ ରାଜା ଓ ତାଙ୍କର ଅନୁଚରବର୍ଗ । ସେମାନେ ସାଧାରଣ ଗୋଷ୍ଠୀର ଲୋକମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ; କିନ୍ତୁ ରାଣୀ ଆଣ୍ଟୋନେଟ ଓ ରାଜାଙ୍କର ସାନଭାଇ କାଉଣ୍ଟ ଅଫ୍ ଆରଟଇସ (Count of Artois) ଏ ଆତ୍ମସମର୍ପଣ ପାଇଁ ଦୁଃଖ ପ୍ରକାଶ କରିଥିଲେ ଏବଂ ପୂର୍ବ ଅବସ୍ଥିତିକୁ ଫେରି ପାଇବାପାଇଁ ସୁବିଧା ଖୋଜୁଥିଲେ । ତା'ପରେ ଥିଲା 'ସଭା' ଯେ କି ଭିନ୍ନ ଭିନ୍ନ ସମୟରେ ତିନୋଟି ଭିନ୍ନ ଭିନ୍ନ ନାମ ନେଇଥିଲା । ପ୍ରଥମେ ଏ ଥିଲା 'ରାଷ୍ଟ୍ରସଭା' (States General), ତା'ପରେ ହେଲା 'ଜାତୀୟ ସଭା' (National Assembly) ଏବଂ ଶେଷରେ ହେଲା 'ବିଧାନ ସଭା' (Constituent Assembly) । ସମ୍ବିଧାନ ସଭାରେ ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ସାଧାରଣ ଗୋଷ୍ଠୀର ଅଧିକାଂଶ ପ୍ରତିନିଧି ମଧ୍ୟବିତ୍ତ ଶ୍ରେଣୀରୁ ବଛାଯାଇଥିଲେ । ମଧ୍ୟବିତ୍ତ ଶ୍ରେଣୀରୁ ବଛାହୋଇଥିବା ପ୍ରତିନିଧିମାନଙ୍କ ମଧ୍ୟରୁ ଅନେକେ ଥିଲେ ସମ୍ପତ୍ତିଶାଳୀ । ମଜଦୁରମାନଙ୍କର ପ୍ରାୟ କେହି ପ୍ରତିନିଧି ନିର୍ବାଚିତ ହୋଇ ନଥିଲେ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ରାଜନୈତିକ ସମ୍ବିଧାନ ଗଢ଼ିବା ପାଇଁ ଚାହୁଁଥିଲେ ଓ ଅଧିକାଂଶ ମଧ୍ୟବିତ୍ତ ଶ୍ରେଣୀରୁ ନିଆଯାଇଥିବାରୁ ସେମାନେ ସାମାଜିକ ପ୍ରଶ୍ନଗୁଡ଼ିକ ବିଷୟରେ ପ୍ରାୟ ଆଗ୍ରହ ଦେଖାଉ ନ ଥିଲେ । ଏହି ଦୁଇଟି ଶକ୍ତି ପରିଷ୍କାର ଭାବରେ ଜଣାପଡ଼ୁଥିଲେ; କିନ୍ତୁ ତୃତୀୟ ପ୍ରଧାନ ଶକ୍ତିକୁ ବର୍ଣ୍ଣନା କରିବା କଠିନ ହେଲେ ମଧ୍ୟ ସାଧାରଣତଃ ପ୍ୟାରିସ ଜନତାକୁ ଏହା ବୁଝାଯାଉଥିଲା ଓ ସମୟ ସମୟରେ ବିପ୍ଳବୀ ସେନାକୁ ଏହା ବୁଝାଯାଉଥିଲା ।

ଫରାସୀ ରାଷ୍ଟ୍ର-ବିପ୍ଳବର ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହେଲା ରାଜଧାନୀ ପ୍ୟାରିସ୍‌ରେ । ସେଠାରେ ବିପ୍ଳବୀ ସଂଘମାନ ଗଢ଼ାଯାଇଥିଲା । ସେମାନଙ୍କ ସାଙ୍ଗକୁ ବିଦେଶୀ ପ୍ରତିନିଧି ଓ ବିକ୍ଷୋଭକାରୀମାନେ ଥିଲେ । ଏମାନଙ୍କ ସହିତ ବୁରବନ୍ ରାଜତନ୍ତ୍ରକୁ ବିଡ଼ମ୍ବଣାରେ ପକାଇବା ପାଇଁ ଚାହୁଁଥିବା ଏ ଲୋକେ ଆସି ଏକତ୍ରିତ ହେଲେ ଓ ସେମାନେ ସମସ୍ତେ ଦେଖିଲେ ଯେ ସେମାନଙ୍କର ବୈପ୍ଳବିକ କାର୍ଯ୍ୟାନୁଷ୍ଠାନ ପାଇଁ ପ୍ୟାରିସ୍ ଏକ ଚମତ୍କାର କ୍ଷେତ୍ର । ସେମାନଙ୍କ ମଧ୍ୟରେ ଥିଲେ କେତେକ ଲୋକ, ଯାହାଙ୍କର ସମୟ ରାଜାଙ୍କର ଆତ୍ମୀୟ ଡ୍ୟୁକ୍ ଅଫ୍ ଅରଲିନସଙ୍କ ପାଲେସ ରୟାଲର (ସହରରେ ଥିବା ଘର) ବଗିଚାରେ ଆଳସ୍ୟରେ କଟୁଥିଲା ଓ ଯାହାଙ୍କର ଲଜ୍ଜା ଓ ଅପମାନ ପ୍ରତି ଭୟ ନ ଥିଲା । ସମଗ୍ରବ-

ସମ୍ପନ୍ନ ବକ୍ତାମାନେ ତେଣ୍ଡ ଇଚ୍ଛାନୁକ ଓ ସହଜରେ ଉତ୍ତେଜିତ ଦଳେ ଶ୍ରୋତା ସେଠାରେ ପାଉଥିଲେ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କୁ ସାହାଯ୍ୟ କରିବା ପାଇଁ ପ୍ୟାରିସର ଜନତା ଉତ୍ୟକ୍ତ ହୋଇ ସରକାରୀ କଳକୁ ଅକାମୀ କରି ଦେଇଥିଲେ । ଖଜଣା ଆଉ କେହି ଦେଉ ନ ଥିଲେ । ସମ୍ଭ୍ରାନ୍ତବ୍ୟକ୍ତି ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିମାନଙ୍କ ଘରଗୁଡ଼ିକ ଉପରେ ଆକ୍ରମଣ ହୋଇଥିଲା । ବାଣିଜ୍ୟ ବ୍ୟବସାୟ ମାନ୍ଦା ପଡ଼ିଯାଇଥିଲା ଏବଂ ବେକାର ସମସ୍ୟା ଜଟିଳ ହୋଇପଡ଼ିଥିଲା । ଯେତିକ ଦୁର୍ବୃତ୍ତ ଗୁଣ୍ଡା, ବଦମାସ୍ ସବୁ ଯାଇ ପ୍ୟାରିସ୍‌ରେ ରୁଣ୍ଡ ହୋଇଥିଲେ ଓ ଲୋକମାନଙ୍କୁ ଭୀତତ୍ରସ୍ତ କରି ରଖିଥିଲେ । ସାଧାରଣତଃ ପ୍ୟାରିସ୍ ସହରରେ ପ୍ରାୟ ଛଅଲକ୍ଷ ଅଧିବାସୀ ବାସ କରିବା କଥା; କିନ୍ତୁ ସେହି ସମୟରେ ଅନାହାରରେ ରହୁଥିବା କୃଷକମାନେ ସରକାରଙ୍କଠାରୁ ଭିକ୍ଷା ମାଗି ଚଳିବା ପାଇଁ ହଜାର ହଜାର ସଂଖ୍ୟାରେ ସେଠାକୁ ଆସି ସହରଟିକୁ ଅତ୍ୟଧିକ ଜନାକୀର୍ଣ୍ଣ କରି ଦେଇଥିଲେ । ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ଶରଣାର୍ଥୀମାନଙ୍କ ମଧ୍ୟରେ ଖାଦ୍ୟ ବାଣ୍ଟିବା ପାଇଁ କେତେକ ସଫଳ ଉଦ୍ୟମ କରିଥିଲେ; କିନ୍ତୁ ସମସ୍ୟା କେବଳ ଆଂଶିକ ଭାବରେ ସମାଧାନ ହେଲା । ମରୁଡ଼ି ଓ ଶସ୍ୟହାନିର ଶିକାର ହୋଇଥିବା ଲୋକଙ୍କ ପରେ ପରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଦସ୍ୟୁଦଳ ବଳପୂର୍ବକ ସହରରେ ପ୍ରବେଶ କଲେ ଏବଂ ସତର୍କମୂଳକ ବ୍ୟବସ୍ଥା ସତ୍ତ୍ୱେ ସେମାନେ ଯଥେଷ୍ଟ ଲୁଟ୍‌ପାଟ କରିଥିଲେ । ସହରରେ ରଖାଯାଇଥିବା ପହରାଦେବା ଫରାସୀ ସୈନ୍ୟଙ୍କର (the French Guards) ଦୁଇଟି ରେଜିମେଣ୍ଟ ମଧ୍ୟରୁ ଗୋଟିଏ ରେଜିମେଣ୍ଟର ସୈନ୍ୟମାନେ ବୈପ୍ଳବିକ ଆନ୍ଦୋଳନ ଓ ଉତ୍ତେଜନା ଦ୍ୱାରା ଏତେଦୂର ପ୍ରଭାବିତ ହୋଇଥିଲେ ଯେ ସେମାନଙ୍କଦ୍ୱାରା ଶାନ୍ତି-ଶୃଙ୍ଖଳା ରକ୍ଷା କରିବା ଆଶା କରାଯାଉ ନ ଥିଲା । ଫିଲିପ୍ ଏଗାଲିଟାଇନ, ଡ୍ୟୁକ ଅଫ ଅରଲିନସ୍ ମଧ୍ୟ ବୈପ୍ଳବିକ ଆନ୍ଦୋଳନରୁ ଫାଇଦା ଉଠାଇବାକୁ ଚାହୁଁଥିଲେ ଓ ଲୋକମାନଙ୍କ ଉନ୍ମାଦନାକୁ ନିଜ ସ୍ୱାର୍ଥରେ ଲଗାଇ ସମ୍ପର୍କୀୟ ଭାଇ ଷୋଡ଼ଶ ଲୁଇଙ୍କୁ ରାଜଗାଦିରୁ ତଡ଼ି ରାଜା ହେବାକୁ ଆଶା ରଖିଥିଲେ ଏବଂ ତାଙ୍କ ଉଦ୍ଦେଶ୍ୟ ସିଦ୍ଧି ପାଇଁ ବାହାରୁ ଭଡ଼ାଟିଆ ଗୁଣ୍ଡା ମଗାଇଆଣି ରଖିଥିଲେ । ପାଲେସ ରୟାଲର ବଗିଚାରେ ମିଶାମିଶି ହୋଇ ରହିଥିବା ବିଭିନ୍ନ କିସମର ଲୋକଙ୍କୁ, ସେ କାଳର ଶ୍ରେଷ୍ଠ ରାଜପଥ-ବକ୍ତା ଡେସମାଉଲିନ୍ ବିପ୍ଳବ ଓ ଶ୍ରେଣୀ ସଂଘର୍ଷ କରିବାକୁ ମତାଇଥିଲେ ।

ରାଜା ଓ ତାଙ୍କର ପରାମର୍ଶଦାତାମାନେ ସାଧାରଣ ଗୋଷ୍ଠୀର ପ୍ରତିନିଧିମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ ସୁଦ୍ଧା କେତେକ ପରାମର୍ଶଦାତା ସୁବିଧା ଉଣ୍ଡି ସେମାନଙ୍କୁ ଆକ୍ରମଣ କରିବେ ବୋଲି ମନେ ମନେ ପାଞ୍ଚୁଥିଲେ ଏବଂ ସେମାନଙ୍କର ପ୍ରତିକ୍ରିୟାର ପ୍ରଭାବ ରାଜାଙ୍କ ଉପରେ ପଡ଼ିଲା । ରାଜା ଏହି ନିଷ୍ପତ୍ତିରେ ପହଞ୍ଚିଲେ ଯେ, ସେ ରାଜ୍ୟରେ ତାଙ୍କର କର୍ତ୍ତୃତ୍ୱ ପୁଣି ଥରେ ସାବ୍ୟସ୍ତ କରିବାକୁ ହେଲେ ତାଙ୍କ ହାତରେ କେତେକ ସୈନ୍ୟ ରହିବା ଏକାନ୍ତ ପ୍ରୟୋଜନ ଏବଂ ସେଥିପାଇଁ ତାଙ୍କୁ ବିଦ୍ରୋହୀ ଫରାସୀ ପହରାଦାର

ସୈନ୍ୟମାନଙ୍କ ଉପରେ (the French Guards) ନିର୍ଭର ନକରି ଭଡ଼ାଟିଆ ଜର୍ମାନ ଓ ସୁଇସ୍ ସୈନ୍ୟମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ତଦନୁସାରେ ରାଜା ଜୁନ୍ ୨୬ ତାରିଖ ଦିନ ୨୦,୦୦୦ ଭଡ଼ାଟିଆ ସୈନ୍ୟ ଡକାଇ ଭର୍ସାଇଲ ନିକଟରେ ରଖାଇଲେ । ସାଧାରଣ ଗୋଷ୍ଠୀର ପ୍ରତିନିଧିମାନେ ଏପରି ସୈନ୍ୟସମାବେଶ ଦେଖି, ସେମାନଙ୍କର ସଂଘବଦ୍ଧ ସ୍ଥିତି ଓ ବ୍ୟକ୍ତିଗତ ନିରାପତ୍ତା ବିଷୟରେ ଆଶଙ୍କା ପ୍ରକାଶ କଲେ । ମିରାବ୍ୟୁ ଗୋଟିଏ ପ୍ରସ୍ତାବ ମଞ୍ଜୁର କରାଇ ନେଇ ରାଜାଙ୍କୁ ସୈନ୍ୟ ପ୍ରତ୍ୟାହାର କରିନେବା ପାଇଁ ଚାପ ଦେଲେ । ରାଜା ତାଙ୍କ ଉତ୍ତରରେ ଜଣାଇଥିଲେ ଯେ ସୈନ୍ୟମାନଙ୍କୁ କେବଳ ଗଣ୍ଡଗୋଳ ସମ୍ଭାଳିବା ପାଇଁ ସେଠାରେ ମୁତୟନ କରାଯାଇଛି ଓ ଯଦି ସେମାନେ ଭର୍ସାଇଲରେ ବିଧି ସଭାକାର୍ଯ୍ୟ ଚଳାଇବା ନିରାପଦ ମଣୁନାହାଁନ୍ତି, ତାହାହେଲେ ସଭା ଅନ୍ୟ ସହରକୁ ଉଠାଇ ନିଅନ୍ତୁ । ରାଜାଙ୍କର ହାବଭାବ ସାଧାରଣ ଲୋକମାନଙ୍କ ମନରେ ସନ୍ଦେହ ଜାତ କଲା । ଭର୍ସାଇଲ ନିକଟରେ ସୈନ୍ୟସମାବେଶ ଓ ଆସନ୍ନ ଦୁର୍ଭିକ୍ଷର ଆଶଙ୍କା ପ୍ୟାରିସର ଜନତାଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କଲା । ପ୍ୟାରିସ୍ ହେଲା ଜାତିର ହୃତ୍ପିଣ୍ଡର ସ୍ପନ୍ଦନ । ଏ ସବୁ ଘଟଣା ଯୋଗୁଁ ସହରଟି ଗୋଟିଏ ବାରୁଦଭଣ୍ଡାର ପରି ଜଣାପଡ଼ୁଥିଲା । ଏହାର ବିସ୍ଫୋରଣ ପାଇଁ ଗୋଟିଏ ଅଗ୍ନିସ୍ଫୁଲିଙ୍ଗର ଆବଶ୍ୟକତା ଅନୁଭବ କରା-ଯାଉଥିଲା ।

ରାଜା ମୂଢ଼ ପଦକ୍ଷେପ ନେଇ ସେ ସ୍ଫୁଲିଙ୍ଗଟି ଯୋଗାଇ ଦେଇଥିଲେ । ସେ ଲୋକପ୍ରିୟ ମନ୍ତ୍ରୀ ନେକର୍ଙ୍କୁ ଜୁଲାଇ ୧୧ ତାରିଖ ଦିନ ବରଖାସ୍ତ କଲେ ଏବଂ ପ୍ରତିକ୍ରିୟା-ଶୀଳ ମତବାଦୀମାନଙ୍କୁ ନେଇ ଗୋଟିଏ ନୂତନ ମନ୍ତ୍ରିମଣ୍ଡଳ ଗଠନ କଲେ । ଲୋକମାନଙ୍କର ଅତି ଆଦରଣୀୟ ନେକରଙ୍କର ପଦଚ୍ୟୁତି ଖବର ଯେତେବେଳେ ଭର୍ସାଇଲରୁ ଆସି ପ୍ୟାରିସ୍ରେ ପହଞ୍ଚିଲା ସେତେବେଳେ ସେମାନଙ୍କର ସନ୍ଦେହ ଓ ଆଶଙ୍କା ଯୁକ୍ତିଯୁକ୍ତ ବୋଲି ମନେହେଲା । ରାଜା ଲୋକମତ ବିରୁଦ୍ଧରେ ସହସା ବଳପ୍ରୟୋଗଦ୍ୱାରା ଶାସନ ପରିବର୍ତ୍ତନ (Coup d'etat) କରିବାକୁ ଶୀଘ୍ର ଯାଉଛନ୍ତି ବୋଲି ସେମାନେ ଅନୁମାନ କଲେ । ପ୍ୟାରିସ୍ ଆଉ କାଳବିଳମ୍ବ ନ କରି ପରିସ୍ଥିତିର ସମ୍ମୁଖୀନ ହେବାକୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲା । ବାରୁଦଭଣ୍ଡାରର ବିସ୍ଫୋରଣ ଆରମ୍ଭ ହୋଇଗଲା ।

ନେକର୍ଙ୍କ ପଦଚ୍ୟୁତ ଖବର ପାଇବାମାତ୍ରେ ଲୋକେ ହଜାର ହଜାର ସଂଖ୍ୟାରେ ଆସି ଜମାହୋଇଗଲେ । ସେମାନେ ଜାତୀୟ ସଭାକୁ ଷଡ଼ଯନ୍ତ୍ରରୁ ଓ ସହରକୁ ଦସ୍ୟୁଙ୍କ କବଳରୁ ରକ୍ଷାକରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ଜୁଲାଇ ୧୨ ତାରିଖ ଦିନ ଡେସାମାଉଲିନ୍ ପାଲେସ ରୟାଲ ବଗିଚାକୁ ଧାଇଁଯାଇ ଗୋଟିଏ ହୋଟେଲ ସାମନାରେ ପଡ଼ିଥିବା ମେଜ ଉପରକୁ ଡେଇଁପଡ଼ି ଲୋକମାନଙ୍କୁ ଅସ୍ତ୍ର ଧରିବାପାଇଁ ଓ ନେକର୍ଙ୍କ ପଦଚ୍ୟୁତିପରେ ଆଉ ମୁହୂର୍ତ୍ତେ ସମୟ ନଷ୍ଟ ନ କରିବା ପାଇଁ ଆହ୍ୱାନ ଦେଇଥିଲେ । ସେ ଲୋକମାନଙ୍କୁ ସତର୍କ କରାଇ ଦେଇଥିଲେ ଯେ, ସେହି ରାତିରେ ସୁଇସ୍ ଓ ଜର୍ମାନ ସୈନ୍ୟଦଳ

ବୃତ୍ତିକ ବୃମଣ୍ଡ ମାରଣରୁ ବାହାର ସମସ୍ତଙ୍କୁ ହତ୍ୟା କରିବେ; ତେଣୁ ସେମାନଙ୍କୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବା ପାଇଁ ଏକମାତ୍ର ସୁଯୋଗ ରହିଯାଇଛି । ତାଙ୍କର ଓଜସ୍ୱିନୀ ବକ୍ତୃତାରେ ଅନୁପ୍ରାଣିତ ହୋଇ ବିକ୍ଷୁବ୍ଧ ଜନତା ଚେଷ୍ଟ୍‌ନଟ ଗଛରୁ ପତ୍ର ତୋଳି ସେଗୁଡ଼ିକୁ ବ୍ୟାଜ ଭଳି ଲଗାଇ ବଗିଚାରୁ ଦଳ ବାନ୍ଧି ବାହାରି ପଡ଼ିଥିଲେ । ଗୋଟିଏ ପ୍ରତିକୃତି ମଞ୍ଚରୁ (gallery) ନେକର୍‌ ଓ ଅରଲିନସ୍‌ଙ୍କ ପ୍ରତିକୃତି ଜବରଦସ୍ତ ନେଇ ମୁଣ୍ଡରେ ରଖି ପଟୁଆରରେ ଯାଇଥିଲେ । ବାଟରେ ଗଲାବେଳେ ଜର୍ମାନ ସୈନ୍ୟଦଳକୁ ଭେଟିଲେ ଏବଂ ତାଙ୍କ ଉପରକୁ ଟେକାପଥର ଫିଙ୍ଗିଲେ । ସେ ସୈନ୍ୟଦଳ ସେମାନଙ୍କ ପିଛା ଧରି ଟ୍ୟୁଲରିଜର ବଗିଚାପାଏଁ ଯାଇଥିଲେ ଏବଂ ଯଦି ଫରାସୀ ସୈନ୍ୟବାହିନୀର କେତେକ ସୈନ୍ୟ ଉପର ହାକିମଙ୍କ ବିନା ଅନୁମତିରେ ବିକ୍ଷୁବ୍ଧ ଜନତା ସହିତ ଯୋଗଦେବା ପାଇଁ ସଙ୍କଟ ମୁହୂର୍ତ୍ତରେ ପହଞ୍ଚି ନ ଥାନ୍ତେ, ତାହାହେଲେ ସମ୍ଭବତଃ ଜର୍ମାନ ସୈନ୍ୟଦଳଟି ସେମାନଙ୍କୁ ଦମନ କରି ପ୍ରତିଶୋଧ ନେଇପାରିଥାନ୍ତା । ଜର୍ମାନ ସୈନ୍ୟଦଳର ସେନାପତି ରକ୍ତପାତ ଏଡ଼ିବାପାଇଁ ସୈନ୍ୟମାନଙ୍କୁ ଫେରିଯିବା ପାଇଁ ହୁକୁମ ଦେଲେ । ଜର୍ମାନ ସୈନ୍ୟଦଳ ପଛକୁ ହଟିଯିବା ଦ୍ୱାରା ବିକ୍ଷୋଭକାରୀଙ୍କ ହାତରେ ସହରଟିକୁ ଛାଡ଼ିଦେଲେ । ଜନତା ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦ ପାଇବା ଆଶାରେ ଅନେକ ଗୋଳାବାରୁଦ ଦୋକାନ ଓ କେତେକ ପୁରୁଖା ସୈନ୍ୟଙ୍କ ଘର ଲୁଟ୍‌ପାଟ କରିଥିଲେ । କେତେକ ବିକ୍ଷୋଭକାରୀ ଖାଦ୍ୟଦ୍ରବ୍ୟସବୁ ବିନା ପ୍ରବେଶ ଶୁଳ୍କରେ (octroi) ସହରରେ ଅବାଧ ପ୍ରବେଶ କରିବା ପାଇଁ, ବିଭିନ୍ନ ଶୁଳ୍କ ଆଦାୟ ଗୃହ ଓ ଫାଟକ ପୋଡ଼ିଜାଳି ଦେଇଥିଲେ । ଅନେକ ରୁଟି କାରଖାନା କ୍ଷୁଧାତୁରଙ୍କ ଦ୍ୱାରା ଲୁଣ୍ଠିତ ହୋଇଥିଲା । ବିପ୍ଳବର ସଙ୍କେତ ପାଇଲାକ୍ଷଣି ସେ ରାତ୍ରରେ ଚୋରମାନେ ଏବଂ ହଜାର ହଜାର ଡକାଏତ ସହରରେ ପଶି ଲୁଟ୍‌ପାଟ କରି ଆତଙ୍କ ସୃଷ୍ଟି କରିଥିଲେ ।

ତା' ପରଦିନ କ୍ରୁଦ୍ଧ ଜନତା ହଜାର ହଜାର ସଂଖ୍ୟାରେ ଫ୍ରାନ୍ସର ଅସ୍ତ୍ରାଗାର, ହୋଟେଲ ଡେସ୍‌ ଇନ୍‌ଭାଲିଡେସ୍‌ (the Hotel Des Invalides)କୁ ଧାଇଁଥିଲେ ଏବଂ ସେଠାରେ ବଳପୂର୍ବକ ପ୍ରବେଶ କରି ଗୋଟିଏ ବଡ଼ ଅସ୍ତ୍ରଶସ୍ତ୍ରର ଭଣ୍ଡାର ଲୁଟିନେଇ ଥିଲେ । ତେଣୁ ପ୍ୟାରିସ ପ୍ରତିରକ୍ଷାର କିଛି ସମ୍ଭାବନା ରହିଲା । ଶେଷରେ ଜାତୀୟ ରକ୍ଷୀବାହିନୀ (National Guards) ସଂଗଠିତ ହୋଇ କୌଣସିମତେ ସେଦିନ ଶାନ୍ତି ଶୃଙ୍ଖଳା ରକ୍ଷାକଲେ ।

ଜୁଲାଇ ୧୪ ତାରିଖ ଦିନ ପ୍ୟାରିସର ଜନତା ପୁଣି ରୁଣ୍ଡହେଲେ । ସେମାନେ ଆଉ କାହାରି କଥା ମାନିବାକୁ ରାଜିହେଲେ ନାହିଁ ଏବଂ ସହରର ମଧ୍ୟସ୍ଥଳରେ ଅବସ୍ଥିତ ବାସ୍‌ଟାଇଲ ଦୁର୍ଗ ଆକ୍ରମଣ କରି, ସେଥିରେ ରଖାହୋଇଥିବା ଅସ୍ତ୍ରଶସ୍ତ୍ର ଅଧିକାର କରି ନେବାକୁ ପ୍ରତିଜ୍ଞା କଲେ । ବୈପ୍ଳବିକ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ପ୍ୟାରିସରେ ଅବସ୍ଥାପିତ ସ୍ଥାୟୀ ସେନାବାହିନୀର ପହରାଦାର ସୈନ୍ୟମାନେ ଜନତାଙ୍କ ସହିତ ଆସି ଯୋଗଦେଲେ । ଡେସ୍‌ମଉଲିନ୍‌ଙ୍କ ନେତୃତ୍ୱରେ ସମସ୍ତେ ମିଶି ବାସ୍‌ଟାଇଲ ଦୁର୍ଗ ଉପରେ ଚଢ଼ାଉକଲେ ।

କାରାଗାର ପାଇଁ ବାସ୍‌ଟାଇଲ ମୁଖ୍ୟତଃ ବନ୍ଦଶାଳାରୂପେ ବ୍ୟବହୃତ ହେଉଥିଲା; ତେଣୁ ଅନେକେ ଏହାକୁ ଅତ୍ୟାଚାରୀ ନିରଙ୍କୁଶ ଶାସନର ପ୍ରତୀକ ବୋଲି ମନେକରୁଥିଲେ । କିନ୍ତୁ ପ୍ରକୃତରେ ଆକ୍ରମଣ ବେଳେ ସେଠାରେ ମୋଟେ ସାତଜଣ ବନ୍ଦୀ ଥିଲେ । ଏହାକୁ ଆକ୍ରମଣରୁ ରକ୍ଷାକରିବା ପାଇଁ ଯଥେଷ୍ଟ ସୈନ୍ୟ ନ ଥିଲେ । ଦୁର୍ଗପତି ଡେଲନେ ମଧ୍ୟ ରକ୍ତାକ୍ତ ସଂଘର୍ଷ ଏଡ଼ିବା ପାଇଁ ଉଦ୍ୟମ କରିଥିଲେ । ତଥାପି ଆକସ୍ମିକ ଭାବରେ ସାମାନ୍ୟ ଧସ୍ତାଧସ୍ତି ହୋଇଗଲା । ଆକ୍ରମଣକାରୀମାନଙ୍କ ସହିତ ରକ୍ତପାତ ଏଡ଼ିବାପାଇଁ ବହୁବାର ଆଲୋଚନା ହେଲା ପରେ ଯେତେବେଳେ ଦୁଇଜଣ ଲୋକ ଧାଇଁଯାଇ ବାସ୍‌ଟାଇଲର ଭିତର ଅଗଣାରେ ପ୍ରବେଶ କରି ଟଣା ପୋଲକୁ ତଳକୁ ଖସାଇଦେଲେ, ସେତେବେଳେ ତାଙ୍କ ଅଧୀନରେ ଥିବା ସୁଇସ୍ ସୈନ୍ୟଙ୍କ ବିଦ୍ରୋହ-ମନୋଭାବ ଦେଖି ନିରୁପାୟ ହୋଇ ଡେଲନେ ପ୍ରାୟ ଅପରାହ୍ଣ ବେଳକୁ ଆତ୍ମସମର୍ପଣ କଲେ । ତାଙ୍କ ଜୀବନ ପ୍ରତି କୌଣସି ଆଞ୍ଚ ଆସିବ ନାହିଁ ବୋଲି ପ୍ରତିଶ୍ରୁତି ଦିଆହୋଇଥିଲେ ମଧ୍ୟ ଗଣ୍ଡଗୋଳ ପରିସ୍ଥିତିରେ ଅନ୍ୟ କେତେକଙ୍କ ସହିତ ତାଙ୍କୁ ନିଷ୍ଠୁର ଭାବରେ ହତ୍ୟା କରାଯାଇଥିଲା । ତେଣୁ ଏପରି ପ୍ରଚଣ୍ଡ ଓ ଅତର୍କିତ ଆକ୍ରମଣ ଦ୍ୱାରା ବାସ୍‌ଟାଇଲ ଦୁର୍ଗ ଜୁଲାଇ ୧୪ ତାରିଖ ଦିନ ଅଧିକାର କରି ନିଆଯାଇଥିଲା । ସ୍ମୃତି ଉଦ୍ଦେଶ୍ୟରେ ଫରାସୀମାନେ ଜୁଲାଇ ୧୪ ତାରିଖକୁ ଜାତୀୟ ଦିବସ ରୂପେ ପାଳନ କରି ଆସୁଛନ୍ତି ।

କିନ୍ତୁ ଏହି ବିସ୍ଫୋରଣରେ ଫଳାଫଳ ଅତି ଗୁରୁତ୍ୱପୂର୍ଣ୍ଣ । ରାଜା ନେକରଙ୍କୁ ପୁନର୍ବାର ନିଯୁକ୍ତ ଦେଲେ ଓ ଭଡ଼ାଟିଆ ବିଦେଶୀ ସୈନ୍ୟମାନଙ୍କୁ ବିଦାୟ କରିଦେଲେ । କିଛିଦିନ ପରେ ରାଜା ତିରଙ୍ଗ (ବିପ୍ଳବର ସଙ୍କେତ) ଟୋପି ପିନ୍ଧି ପ୍ୟାରିସ୍ ପରିଦର୍ଶନରେ ଯାଇଥିଲେ । ଏହାଦ୍ୱାରା ରାଜା ଲୋକମାନଙ୍କ ପ୍ରତି ଅନୁରକ୍ତିର ପ୍ରଦର୍ଶନ କଲେ । କିନ୍ତୁ ରାଜଦରବାର ଅନ୍ୟ ଏକ ପନ୍ଥା ଅନୁସରଣ କଲା । ଅନେକ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସହ ରାଜାଙ୍କର ଭାଇ କାଉଣ୍ଟ ଅଫ୍ ଏରଟଏସ (Count of Artois) ଦେଶ ଛାଡ଼ି ପଳାଇଲେ । ଗୋଟିଏ ବିପ୍ଳବୀ ସମ୍ବାଦପତ୍ର ଯଥାର୍ଥରେ ମନ୍ତବ୍ୟ ଦେଲା, 'ମୂଷାମାନେ ବୁଡ଼ିଯାଉଥିବା ଜାହାଜକୁ ଛାଡ଼ି ପଳାଉଛନ୍ତି ।' ("The rats are leaving the sinking ship.")

ମଧ୍ୟବିତ୍ତମାନେ ନିର୍ଦ୍ଦିଷ୍ଟ ଭାବେ କହିଲେ ପ୍ୟାରିସର ନିର୍ବାଚକମାନଙ୍କର କମିସନ୍ (the Commission of Electors) ବହୁ ଜନତାର ଅମାନୁଷିକ କାର୍ଯ୍ୟାନୁଷ୍ଠାନରୁ ତିକ୍ତ ଅନୁଭୂତି ନେଇ ସତର୍କତାମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ । ସତର୍କତା ଅବଲମ୍ବନପୂର୍ବକ ପୌରଶାସନ ପୁନଃ ସଗଠିତ କରିଥିଲେ ଏବଂ ତାକୁ କମ୍ୟୁନ (Commune) ଆଖ୍ୟା ଦେଇଥିଲେ । ବେଲିଙ୍କୁ ପ୍ୟାରିସ୍‌ର ପ୍ରଥମ ମେୟର ନିଯୁକ୍ତ କରାଯାଇଥିଲା । ଜାତୀୟ ରକ୍ଷୀବାହିନୀର ସଗଠନ ସମ୍ପୂର୍ଣ୍ଣ କରାଯାଇଥିଲା ଏବଂ ଲଫାୟେତ୍‌ଙ୍କୁ ଏହାର ସେନାନାୟକ କରାଗଲା । ଏପରି ପଦକ୍ଷେପ ମଧ୍ୟବିତ୍ତଶ୍ରେଣୀ ଓ ଜନତା ମଧ୍ୟରେ ଆସନ୍ନ ବିବାଦର ଆଭାସ ଦେଲେ ମଧ୍ୟ ଏ କଥା ସ୍ୱୀକାର କରିବାକୁ ହେବ ଯେ, ଉପୁଜିଥିବା

ପରିସ୍ଥିତିରେ ଜନତା ମଧ୍ୟବିତ୍ତଶ୍ରେଣୀକୁ ରକ୍ଷା କରିବା ପାଇଁ ସମ୍ମିଳିତ ଉଦ୍ୟମ କରିଥିଲେ । ଜାତୀୟ ସଭାକୁ ବା ସମ୍ବିଧାନ ସଭାକୁ ରକ୍ଷା କରିଥିଲେ । ସମ୍ଭବତଃ ବିପ୍ଳବକୁ ମଧ୍ୟ ରକ୍ଷା କରିଥିଲେ । ଶେଷ ଥର ପାଇଁ ନୁହେଁ, ବରଂ ପ୍ରଥମ ଥର ପାଇଁ ବିପ୍ଳବ ଜନତାର ହାତଆର ହେଲା । ତା ଛଡ଼ା ରାଜଧାନୀ ପ୍ୟାରିସ୍‌ରେ ଯେଉଁସବୁ ଦଙ୍ଗାହାଙ୍ଗାମ ହେଲା, ସେସବୁ ଫରାସୀ ଜାତି ଭିତରେ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ପ୍ରଦେଶମାନଙ୍କରେ ବିକ୍ଷୋଭକୁ ତୀବ୍ରତର କରିଥିଲା । ତେଣୁ ଏହିପରି ଭାବରେ ବିପ୍ଳବ ଜନ-ଆନ୍ଦୋଳନରେ ପରିଣତ ହେଲା ।

ରାଜଧାନୀ ପ୍ୟାରିସ୍‌ରେ ଏତେ ବିକ୍ଷୋଭ ଓ ଦଙ୍ଗାହାଙ୍ଗାମ ଚାଲିଥିଲାବେଳେ ପ୍ରଦେଶଗୁଡ଼ିକ କ'ଣ ସବୁ କଥା ଜାଣିଶୁଣି ନୀରବଦ୍ରଷ୍ଟା ପରି ଚୁପ୍ ହୋଇ ରହିଯିବେ ? ପ୍ୟାରିସ୍‌ରେ ସିନା ଗୋଟିଏ ବାସ୍ଟାଇଲ୍ ଦୁର୍ଗକୁ ଧ୍ୱଂସ କରିଦିଆଗଲା; କିନ୍ତୁ ପ୍ରଦେଶଗୁଡ଼ିକର ବିଭିନ୍ନ ପଲ୍ଲୀରେ ଯେ ଚାଳିଶ ହଜାର ଛୋଟ ଛୋଟ ବାସ୍ଟାଇଲ୍ ଦୁର୍ଗ (Chateaux) ଧ୍ୱଂସ କରିବାକୁ ବାକି ରହିଥିଲା । ତା'ଛଡ଼ା ଖାଦ୍ୟଦ୍ରବ୍ୟର ଅଭାବ, ଦରଦାମ ବୃଦ୍ଧି, ଦୁର୍ଭିକ୍ଷର ଆଶଙ୍କା ଓ ବେକାର ସମସ୍ୟା ସେଠାରେ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଲିଓଁ (Lyons) ସହରରେ ଜୁଲାଇ ମାସ ଆରମ୍ଭରେ ଦଳେ ବେକାର କାରିଗର ଦରଦାମ୍ ବୃଦ୍ଧି ରୋକିବା ଓ ଜୀବନଧାରଣର ଖର୍ଚ୍ଚ କମାଇଦେବା ଉଦ୍ଦେଶ୍ୟରେ ଶୁଳ୍କ ଫାଟକଗୁଡ଼ିକ ପୋଡ଼ିଦେଇଥିଲେ । କିନ୍ତୁ ପ୍ୟାରିସ୍‌ରେ ଜୁଲାଇ ମାସରେ ଆରମ୍ଭ ହୋଇଥିବା ଦଙ୍ଗା ବିଷୟରେ ଖବର ଯେତେବେଳେ ଚାରିଆଡ଼େ ପ୍ରଚାର ହୋଇଗଲା, ସେତେବେଳେ ପଲ୍ଲୀଅଞ୍ଚଳଗୁଡ଼ିକର ବାତାବରଣ ଅତି ଉତ୍ତେଜନାପୂର୍ଣ୍ଣ ହୋଇପଡ଼ିଥିଲା । ପୁଣି ଫରାସୀ ଇତିହାସରୁ ଜଣାପଡ଼େ ଯେ ପ୍ୟାରିସ୍ ସବୁବେଳପାଇଁ ପଥପ୍ରଦର୍ଶକ ହୋଇଛି ଏବଂ ତାଠାରୁ ଅନ୍ୟମାନେ ସେ ପଥ ଅନୁସରଣ କରିଆସିଛନ୍ତି । ତେଣୁ ପ୍ୟାରିସ୍‌ର ଜୁଲାଇ ଗଣ୍ଡଗୋଳ ଅନ୍ୟାନ୍ୟ ସହରମାନଙ୍କୁ ଶୀଘ୍ର ବ୍ୟାପିଗଲା । ସୌଭାଗ୍ୟବଶତଃ ପ୍ରଦେଶମାନଙ୍କରେ ଥିବା ପୌରକେନ୍ଦ୍ର-ଗୁଡ଼ିକରେ କାମଧନ୍ଦା ନଥିବା ବେକାର ମଜଦୁର ବେଶି ନଥିଲେ । ତେଣୁ ଏହି ସବୁ ବିସ୍ଫୋରଣ ହେଲା ମାତ୍ରକେ ମଧ୍ୟବିତ୍ତଶ୍ରେଣୀର ଲୋକେ ଏଥିରୁ ପ୍ରେରଣା ପାଇ ପ୍ୟାରିସ୍ ଅନୁରୂପ ପୌର ଶାସନର ପୁନର୍ଗଠନ କରିବା ସଙ୍ଗେ ସଙ୍ଗେ ଜାତୀୟ ରକ୍ଷୀବାହିନୀ ଗଠନ କରିଥିଲେ । ଉଣା ଅଧିକେ ଗଣତାନ୍ତ୍ରିକ ଭିତ୍ତିରେ ସହରଗୁଡ଼ିକ କମ୍ୟୁନ ହିସାବରେ ପୁନର୍ଗଠନ କରିବାକୁ ସାଧାରଣତଃ ପୌରବିପ୍ଳବ (municipal revolution) କୁହାଯାଏ । କର ସଂଗ୍ରାହକ ବା ଇଣ୍ଟେଣ୍ଡାଣ୍ଟମାନଙ୍କ (intendant) କ୍ଷମତା ଅଚଳ କରିଦିଆଯିବାଦ୍ୱାରା ଯେଉଁ ଅମଲାତନ୍ତ୍ର, ରାଜତନ୍ତ୍ର ସ୍ତମ୍ଭ ପରି କାର୍ଯ୍ୟ କରୁଥିଲା ତାହା ଦ୍ରୁତଗତିରେ ଭାଙ୍ଗିପଡ଼ିବାକୁ ଲାଗିଲା ।

କିନ୍ତୁ ପ୍ରଦେଶଗୁଡ଼ିକ କହିଲେ ପ୍ରଧାନତଃ କୃଷକ ସମ୍ପ୍ରଦାୟକୁ ବୁଝାଏ । ମାନବ ସମାଜରେ ଯେଉଁ କୃଷକମାନଙ୍କୁ ଅତି ମନ୍ଥର ପ୍ରକୃତିର ବୋଲି କୁହାଯାଉଥିଲା, ସେମାନେ ମଧ୍ୟ

ଶେଷରେ ପ୍ୟାରିସ୍‌ରେ ହୋଇଥିବା ରକ୍ତାକ୍ତ ଆନ୍ଦୋଳନ ବିଷୟ ଜାଣିଲାକ୍ଷଣି, ସେମାନଙ୍କର ଦାବି ହାସଲ କରିବା ପାଇଁ ଜାଗ୍ରତତର ହୋଇଗଲେ । ସେମାନଙ୍କର ଦୃଷ୍ଟିରେ ସାମନ୍ତବାଦ (feudalism) ହେଲା ସବୁ ଅନର୍ଥର ମୂଳ ଏବଂ ସେମାନଙ୍କର ସର୍ବନାଶ ପାଇଁ ଦାୟୀ । ସାମନ୍ତମାନଙ୍କ ପ୍ରତି ସେମାନଙ୍କର ବହୁଦିନର ବୈରଭାବ, ଦୁର୍ଭିକ୍ଷର ଆଶଙ୍କା ବଢ଼ିବା ସଙ୍ଗେ ସଙ୍ଗେ ଅଧିକ ତିକ୍ତ ହୋଇଥିଲା । ଏହିପରି ସମୟରେ ଦସ୍ୟୁମାନେ ପ୍ୟାରିସ୍‌ରେ ଯେଉଁଭଳି ଲୁଟ୍‌ତରାଜ ଚଳାଇଥିଲେ, ସାରା ଦେଶରେ ସେହିଭଳି ଲୁଟ୍‌ତରାଜ ଚଳାଇ ଆତଙ୍କ ସୃଷ୍ଟି କଲେ । କୃଷକମାନଙ୍କୁ ଆତ୍ମରକ୍ଷା ପାଇଁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବାକୁ ପଡ଼ିଲା । ଏ କଥା ସତ ଯେ ଥରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେଲେ ସେମାନଙ୍କୁ ସାମନ୍ତମାନଙ୍କ (ଜମିଦାରମାନଙ୍କ) ବିରୁଦ୍ଧରେ ଲଗାଇଦେବା ଅତି ସହଜ । କୃଷକମାନଙ୍କୁ ସାମନ୍ତମାନଙ୍କ ବିରୁଦ୍ଧରେ ମତାଇବା ସକାଶେ ବୃଥା ଗୁଜବମାନ ପ୍ରଚାର କରାଗଲା—କେତେକ ତ କହିଲେ ସାମନ୍ତମାନେ ଶସ୍ୟସବୁ ନିଜ ଅକ୍ତିଆରରେ ରଖି ସାଧାରଣ ଲୋକଙ୍କୁ ହଇରାଣ କରୁଛନ୍ତି; ଆଉ କେତେକ କହିଲେ, ବିଶପମାନେ (ଧର୍ମାଧ୍ୟକ୍ଷମାନେ) କୂଅମାନଙ୍କରେ ବିଷ ପକାଇ ଦେଉଛନ୍ତି । ବିକ୍ଷୋଭକାରୀମାନଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ରାଜା ମଧ୍ୟ ନିଜେ ସାମନ୍ତମାନଙ୍କୁ ଧ୍ୱଂସ କରିଦେବା ପାଇଁ କୃଷକମାନଙ୍କ ସାହାଯ୍ୟ ଚାହିଁଥିଲେ ବୋଲି ସେମାନେ ଦାବି ଉପସ୍ଥାପିତ କଲେ । ତେଣୁ କର-ସଂଗ୍ରାହକ ବା ଅର୍ଥନୈତିକ ପ୍ରତିନିଧିମାନେ ହେଉନ୍ତୁ, କି ବିଶପ୍ ବା ମଠାଧୀଶମାନେ ହେଉନ୍ତୁ, କି ମେୟର୍ ବା କୃଷକମାନେ ମଧ୍ୟ ହେଉନ୍ତୁ, ଯଦି ସେମାନେ ଦଙ୍ଗାକାରୀମାନଙ୍କ ସହିତ ସହଯୋଗ କରୁନଥିଲେ, ତାହାହେଲେ ସେମାନଙ୍କୁ ଧରିଆଣି ସେମାନଙ୍କ ପ୍ରତି ଦୁର୍ବ୍ୟବହାର କରାଯାଉଥିଲା ଏବଂ ସେମାନଙ୍କର ଘରଗୁଡ଼ିକ ଲୁଣ୍ଠନ କରାଯାଉଥିଲା । ଦୁର୍ଗଗୁଡ଼ିକ କୃଷକମାନଙ୍କର କରଭାର ଓ ଦାସତ୍ୱ ବନ୍ଧନର ପ୍ରତୀକ ହୋଇଥିବାରୁ ସେଗୁଡ଼ିକ ଉପରେ ଚଢ଼ାଉକରାଯାଇ, ସେମାନଙ୍କର ଦେୟ ସମ୍ବନ୍ଧରେ ଯେତେ ଯାହା ଦଲିଲ-ପତ୍ର ଥିଲା ସବୁ ଧ୍ୱଂସ କରିଦିଆଯାଉଥିଲା । ଧର୍ମସମ୍ବନ୍ଧୀୟ ଯେତେ ଘର ହାବୁଡ଼ରେ ପଡ଼ୁଥିଲା, ସେସବୁକୁ ଲୁଟପାଟ୍ କରି ଛାରଖାର କରିଦିଆଯାଉଥିଲା । ସାମନ୍ତମାନଙ୍କୁ ପଲ୍ଲୀଅଞ୍ଚଳରୁ ତଡ଼ିଦିଆଗଲା । ଉଚ୍ଚ କର୍ମଚାରୀମାନେ ଭୀତତ୍ରସ୍ତ ହୋଇ ଲୁଚିରହିଲେ । କରସଂଗ୍ରାହକ-ମାନଙ୍କର ପ୍ରତିନିଧିମାନଙ୍କୁ କେତେବେଳେ ମାଡ଼ ଦିଆଯାଉଥିଲା ତ କେତେବେଳେ ପିଟି ପିଟି ମାରିଦିଆଯାଉଥିଲା । ପେଷଣକଳର ମାଲିକମାନେ କୃଷକମାନଙ୍କୁ ସବୁବେଳେ ଠକୁଥିବାରୁ, ସେମାନଙ୍କୁ ମଧ୍ୟ ସମଦଶା ଭୋଗକରିବାକୁ ପଡ଼ିଥିଲା । ମନେହେଉଥିଲା, ଶାସନକଳ ପୁରାପୁରି ଅଚଳ ହୋଇଯାଇଥିଲା । ଏକଦିଗରେ ସଂଗଠିତ ଗଣ୍ଡଗୋଳ ସାଙ୍ଗକୁ ଆସିଲା ସ୍ୱତଃପ୍ରବୃତ୍ତ ଅରାଜକତା; ଅନ୍ୟଦିଗରେ ବିକ୍ଷୋଭକାରୀମାନେ ଉତ୍ତ୍ୟକ୍ତ ହୋଇ ଖମାର-ଗୁଡ଼ିକ ପୋଡ଼ିଦେବା ଓ ଶସ୍ୟସବୁ ପାଦରେ ଦଳି ନଷ୍ଟ କରିବାଦ୍ୱାରା ସେମାନେ ଦୁର୍ଭିକ୍ଷ ବିରୁଦ୍ଧରେ ଯେଉଁ ସଂଗ୍ରାମ ଚଳାଇଥିଲେ, ତାହା ଦୁର୍ଭିକ୍ଷକୁ ରୋକିବା ପରିବର୍ତ୍ତେ ତାର

ପ୍ରକୋପକୁ ବଢ଼ାଇଦେଇଥିଲା । ସହରଗୁଡ଼ିକ ପରି ପଲ୍ଲୀମାନଙ୍କରେ ମଧ୍ୟ ଶାସନର ପରିବର୍ତ୍ତନ ହୋଇଥିଲା; କିନ୍ତୁ ନୂତନ ଶାସନର ଏସବୁ ବେଆଇନ୍ କାର୍ଯ୍ୟଗୁଡ଼ିକର ପ୍ରତିରୋଧ କରିବା ପାଇଁ ଯଥେଷ୍ଟ ଶକ୍ତି ନ ଥିଲା । ପ୍ରକୃତରେ କହିବାକୁ ଗଲେ, ପ୍ୟାରିସ୍‌ରେ ହୋଇଥିବା ବିପ୍ଳବ ଅପେକ୍ଷା ପ୍ରଦେଶମାନଙ୍କରେ ହୋଇଥିବା ବିପ୍ଳବକୁ ସାମାଜିକ ବିପ୍ଳବ (Social upheaval) କହିବା ଅଧିକ ସମୀଚୀନ ହେବ ।

ଯେତେବେଳେ ଏସବୁ ସମାଚାର ଭର୍ସାଇଲ (Versailles) ରେ ବସିଥିବା ଜାତୀୟ (ସମ୍ବିଧାନ) ସଭା ନିକଟରେ ପହଞ୍ଚିଲା, ସେଠାରେ ଅନେକେ ଅନୁଭବ କଲେ ଯେ, ସେମାନଙ୍କୁ ନିଶ୍ଚୟ କିଛି କରିବାକୁ ପଡ଼ିବ; ତାହା ନ ହେଲେ ପ୍ରଦେଶଗୁଡ଼ିକରେ ଗଣ୍ଡଗୋଳ ବନ୍ଦ ହେବ ନାହିଁ । ସଭାରେ ପ୍ରଦେଶମାନଙ୍କରେ ଘଟିଥିବା ଗଣ୍ଡଗୋଳ ବିଷୟ ଆଲୋଚନା ହେଲାବେଳେ, ନରମପନ୍ଥୀ ସଭ୍ୟମାନେ ଉଦ୍‌ବେଗ ପ୍ରକାଶ କଲାବେଳେ, ଚରମପନ୍ଥୀ ସଭ୍ୟମାନେ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ନିର୍ବାଚକମାନଙ୍କୁ ଆହୁରି ଉତ୍ତେଜିତ କରିବାକୁ ଚେଷ୍ଟା କରିଥିଲେ । ମିରାବ୍ୟୁଙ୍କ ସହିତ ଅନ୍ୟ କେତେକ ବିଶ୍ୱାସ କରିଥିଲେ ଯେ, "ଜାତି ତାହା'ର ଶିକାରଗୁଡ଼ିକ ପାଇବା ଉଚିତ; ତା' ନ ହେଲେ ଅସନ୍ତୁଷ୍ଟ ହୋଇ ସବୁ କିଛି ସେ ଧ୍ୱଂସ କରିଦେବ ।" ("The Nation must have its victims or being unsatisfied, it would destroy everything.")

ଏହିପରି ଆଲୋଚନା ଚାଲିଥିଲାବେଳେ, ଅଗଷ୍ଟ ୪ ତାରିଖରେ ନୋଏଲେସ୍ (Noailles) ନାମକ ଜଣେ କପର୍ଦ୍ଦକଶୂନ୍ୟ ସମ୍ଭ୍ରାନ୍ତ ବ୍ୟକ୍ତି ହଠାତ୍ ତାଙ୍କ ଆସନରୁ ଉଠିପଡ଼ି କହିଲେ, "ସବୁ ଅଶାନ୍ତିର କାରଣ ହେଲା ସାମନ୍ତପ୍ରଥାଜନିତ ଦେୟସବୁର (feudal dues) ଘୃଣ୍ୟ ବୋଝ; ତେଣୁ ସେ ସବୁକୁ ନିଶ୍ଚୟ ଉଠାଇଦେବାକୁ ପଡ଼ିବ ।" ("The cause of the trouble was odious burden of feudal dues; they must be done away with.") ଏ କଥା ତାଙ୍କ ପାଟିରୁ ବାହାରୁ ନ ବାହାରୁଣୁ ସଭ୍ୟମାନଙ୍କ ମଧ୍ୟରେ ଏପରି ଏକ ସ୍ୱାର୍ଥତ୍ୟାଗର ଢେଉ ଖେଳିଗଲା ଯେ ସମ୍ଭ୍ରାନ୍ତ ଓ ଧର୍ମଯାଜକମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଲା—କିଏ କାହାକୁ ବିଶେଷ ଅଧିକାର ଓ ସୁବିଧାଗୁଡ଼ିକ ଛାଡ଼ିଦେବାରେ ଟପିଯିବ । ତେଣୁ ଗୋଟିଏ ରାତି ମଧ୍ୟରେ ସମାନ୍ତବାଦର ସବୁ ଚିହ୍ନ ଓ ସବୁ ଅସମାନତା ଲୋପ ପାଇଗଲା । ଏହି ହେଲା ପ୍ରଦେଶମାନଙ୍କୁ 'ସଭା'ର ଜବାବ । ସୁତରାଂ ଲୋକେ ଭାବିଲେ ଯେ ସେମାନେ ଯାହା ଚାହିଁଥିଲେ, ତାହା କରିପାରିଲେ । ବାସ୍ତବିକ୍ ଶେଷରେ ଅରାଜକତା ହେଲା ବିଜୟୀ ।

ପ୍ୟାରିସ୍ ସହରରେ ମଧ୍ୟ ଜୁଲାଇ ଗଣ୍ଡଗୋଳ ପରେ ଶାନ୍ତି ଫେରିଲା ନାହିଁ । ପୌର ଶାସନର ପରିବର୍ତ୍ତନ ଓ ଜାତୀୟ ରକ୍ଷୀବାହିନୀ ସଂଗଠନ ସତ୍ତ୍ୱେ ପ୍ୟାରିସ୍‌ରେ ରକ୍ତପାତ

ଏଡ଼ିଦିଆଯାଇ ପାରି ନ ଥିଲା । ଗଣ୍ଡଗୋଳ ପରେ ପରେ ହେଲା ଅନେକ ହତ୍ୟାକାଣ୍ଡ । ପ୍ୟାରିସ୍ ପ୍ରଥମ ଥର ପାଇଁ ତା ଶକ୍ତିର ପରିଚୟ ଦେଲା । ଏହାଛଡ଼ା ପ୍ରେସ ସକ୍ରିୟ ଶକ୍ତି ହୋଇଥିବାରୁ ଜନମତକୁ ଚରମ ସଂସ୍କାର ଦିଗରେ ପରିଚାଳିତ କରିଥିଲା । ଶହ ଶହ ସମ୍ବାଦପତ୍ର ପ୍ରକାଶ ପାଇଲା ଏବଂ ସେଥିରେ ସମ୍ବାଦ ଥିଲା ଖୁବ୍ କମ୍; କିନ୍ତୁ ଅଭିମତ ଥିଲା ଖୁବ୍ ବେଶି । ସବୁଠାରୁ ଲୋକପ୍ରିୟ ପତ୍ରିକା ଥିଲା 'ଜନତାର ବନ୍ଧୁ' (the Friend of the People) ଏବଂ ତାହାର ଲେଖକ ଥିଲେ ପ୍ରଚଣ୍ଡ ଉତ୍ତେଜନା ସୃଷ୍ଟିକାରୀ ଅର୍ଦ୍ଧପାଗଳ ମାରାଟ (Marat) । ପତ୍ରପତ୍ରିକାଗୁଡ଼ିକ ଯେ କେବଳ ଜନମତ ସୃଷ୍ଟି ଦିଗରେ ସାହାଯ୍ୟ କରୁଥିଲେ ତାହା ନୁହେଁ, ଡ୍ୟୁକ-ଅଫ୍-ଅରଲିନସଙ୍କର ପାଲେସର ଉଦ୍ୟାନ ବଗିଚା, ଭୋଜନାଳୟ ବା ମଦଦୋକାନଗୁଡ଼ିକ ନିମ୍ନଶ୍ରେଣୀମାନଙ୍କ ମଧ୍ୟରେ ଜନମତ ସୃଷ୍ଟି ପାଇଁ ପ୍ରକୃଷ୍ଟ କେନ୍ଦ୍ରସ୍ଥଳୀ (nursery) ଥିଲା । ମଧ୍ୟବିତ୍ତମାନଙ୍କର ବୈଠକଖାନା ଓ ଆଡ୍ଡା-ଘରଗୁଡ଼ିକ (clubs) ମଧ୍ୟ ଜନମତ ବିକାଶ ପାଇଁ ବ୍ୟବହୃତ ହେଉଥିଲା । ସେମାନଙ୍କ ମଧ୍ୟରେ ଜାକୋବିନ କ୍ଲବ (Jacobin club) ସବୁଠାରୁ ପ୍ରସିଦ୍ଧ ଏବଂ ଏହାର ସଭା-ଗୁଡ଼ିକୁ ସାଧାରଣଙ୍କ ପ୍ରବେଶ ପାଇଁ ଖୋଲିଦିଆଗଲା ପରେ, ଏହା ଜନସାଧାରଣଙ୍କୁ ପ୍ରଭାବିତ କରିବା ଦିଗରେ ଏକ ପ୍ରଧାନ ମାଧ୍ୟମ (agency) ହୋଇଥିଲା । ତେଣୁ ପ୍ୟାରିସ ଯେ ଉତ୍ତେଜିତ ଅବସ୍ଥାରେ ଥିଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ରାଜା ଷୋଡ଼ଶ ଲୁଇଙ୍କ ଆତ୍ମୀୟ ଫିଲିପ୍ ଏଗାଲିଇଟ୍, ଡ୍ୟୁକ-ଅଫ୍-ଅରଲିନସ୍ ମଧ୍ୟ ତାଙ୍କୁ ତଡ଼ି ରାଜଗାଦି ପାଇବା ଆଶାରେ ଦଳେ ବିକ୍ଷୋଭକାରୀଙ୍କୁ ରଖିଥିଲେ ଏବଂ ଏକସମୟରେ ମିରାବ୍ୟୁ ଓ ଡାନ୍‌ଟନ୍‌ଙ୍କ ପରି ଲୋକପ୍ରିୟ ନେତା ଏହି ଦଳର ଅନ୍ତର୍ଭୁକ୍ତ ହୋଇଥିଲେ ଏବଂ ଏହି ଦଳଟି ଲୋକମାନଙ୍କୁ ରାଜାଙ୍କ ବିରୁଦ୍ଧରେ ଉତ୍ତେଜାଇବାରେ ଲାଗିଥିଲା । ପୁନଶ୍ଚ ରାଜା କେତେକ ଆଇନ (decree) ଅନୁମୋଦନ କରିବାକୁ ଦ୍ୱିଧା କରିବାରୁ, ବିଶେଷତଃ, ଗୋଟିଏ ରେଜିମେଣ୍ଟର ସୈନ୍ୟମାନଙ୍କୁ ଭର୍ସାଇଲସ୍‌କୁ ଯିବା ପାଇଁ ଆଦେଶ ଦେବାରୁ, ଉତ୍ତ୍ୟକ୍ତ ହୋଇ କେତେଜଣ ଉଗ୍ରପନ୍ଥୀ ବିକ୍ଷୋଭକାରୀ ରାଜାଙ୍କୁ ପୁରାପୁରି ଧରି ଆଣି ସ୍ଥାୟୀ-ଭାବରେ ପ୍ୟାରିସ୍‌ରେ ରଖିବାକୁ ଦାବି କରିଥିଲେ । ଅଭାବ ଓ ଅନଟନ ଯୋଗୁଁ ସାରା ସହରରେ ଲୋକମାନଙ୍କ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଥିଲା । ସମ୍ଭ୍ରାନ୍ତମାନେ ପ୍ରତିଦିନ ଛାଡ଼ି ବିଦେଶରେ ଘର କରି ରହିବା ପାଇଁ ଅହରହ ଛୁଟୁଥିବାରୁ ପ୍ୟାରିସ୍ ସହରର ରାସ୍ତାଘାଟ ଯେଉଁ ସବୁ ବିଳାସସାମଗ୍ରୀରେ ଭରପୂର ହୋଇ ରହୁଥିଲା, ସେ ସବୁର ଚାହିଦା ଦିନକୁ ଦିନ କମିବାରେ ଲାଗିଲା । ଅନ୍ୟ ଦିଗରେ ବିଳାସସାମଗ୍ରୀର ବିକ୍ରି କମିଯିବାରୁ ବେକାରମାନଙ୍କର ସଂଖ୍ୟା ଦିନକୁଦିନ ବଢ଼ିବାକୁ ଲାଗିଲା । ପ୍ରତିଦିନ ମହିଳାମାନେ ଲମ୍ବା ଲମ୍ବା ଧାଡ଼ି ଧରି ରୋଟିକାରଖାନାଗୁଡ଼ିକ ସାମନାରେ ସେମାନଙ୍କ ରୋଟି ପଡ଼ି ପାଇବା ପାଇଁ ଘଣ୍ଟା ଘଣ୍ଟା ଧରି ଠିଆହୋଇ ରହୁଥିଲେ । ଏତେ କଷ୍ଟ ସହି ଯେଉଁ ରୋଟି ପାଉଥିଲେ, ତାହା ମହଙ୍ଗା ଓ ନିକୃଷ୍ଟ ଧରଣର ଥିଲା ଏବଂ ସେ ବି ସବୁସମୟରେ

ମିଳୁ ନ ଥିଲା । ତେଣୁ ଅକ୍ଟୋବର ମାସ ଆରମ୍ଭବେଳକୁ ପ୍ୟାରିସ୍ ସହର ଆଉ ଏକ ବିସ୍ଫୋରଣ ପାଇଁ ପ୍ରସ୍ତୁତ ହୋଇଯାଇଥିଲା ।

ଏଥର ବିସ୍ଫୋରଣର ଲକ୍ଷ୍ୟସ୍ଥଳୀ ଥିଲା ଭର୍ସାଇଲସ୍; ତେଣୁ ପ୍ୟାରିସ୍ ଜନତା ଗଣ୍ଡଗୋଳ ଲଗାଇବା ପାଇଁ ସୁଯୋଗ ଖୋଜୁଥିଲେ । ଇତିମଧ୍ୟରେ ଖବର ଆସିଲା ଯେ ଭର୍ସାଇଲ୍ସରେ ପହଞ୍ଚିଯାଇଥିବା ଦଳେ ସୈନ୍ୟଙ୍କ (regiment) ସମ୍ମାନାର୍ଥେ ଆୟୋଜିତ ଭୋଜ-ସଭାରେ କେତେକ ସମ୍ଭ୍ରାନ୍ତ ଯୁବକ ତ୍ରିରଙ୍ଗ ଜାତୀୟ ଟୋପିକୁ ପାଦରେ ଦଳିଦେଇ ବିପ୍ଳବର ଅବମାନନା କରିଛନ୍ତି । ପ୍ୟାରିସ୍‌ରେ ଦୃଢ଼ ମତ ପ୍ରକାଶ ପାଇଲା ଯେ ରାଜଦରବାର ସଭା ବିରୁଦ୍ଧରେ ଗୋଟିଏ ନୂଆ ଷଡ଼ଯନ୍ତ୍ରରେ ଲିପ୍ତ ଅଛି ଓ ପ୍ୟାରିସ୍ ଉପରେ ପ୍ରତିଶୋଧ ନେବା ପାଇଁ ଉଦ୍ୟମ ଚଳାଇଛି । ବିପ୍ଳବର ଅବମାନନାର ସମ୍ବାଦ, ମାରାଟଙ୍କର ଉତ୍ତେଜନାପୂର୍ଣ୍ଣ ବକ୍ତୃତା ଓ ପ୍ୟାରିସ୍‌ର ଦରିଦ୍ର ଲୋକମାନଙ୍କର କ୍ଷୁଧାର ଆର୍ତ୍ତନାଦ—ଏସବୁ ପ୍ୟାରିସ୍ ଜନତାକୁ ବିଶେଷତଃ ମହିଳାମାନଙ୍କୁ ଭର୍ସାଇଲସ ଯାଇ ସଭା ଓ ରାଜାଙ୍କ ନିକଟରେ ସେମାନଙ୍କର ଅଭାବ-ଅଭିଯୋଗ ଉପସ୍ଥାପିତ କରିବା ପାଇଁ ଅତିମାତ୍ରାରେ ପ୍ରବର୍ତ୍ତାଇଥିଲା । ରୋଟି ସଂଗ୍ରହ କରିବା ପାଇଁ ଦୃଢ଼ସଂକଳ୍ପ କରି, ରୋଟିବାଲା କୁହାଯାଉଥିବା ରାଜାଙ୍କୁ (royal baker) ସଙ୍ଗରେ ଧରି ପ୍ୟାରିସ୍ ଆଣିବାକୁ ସ୍ଥିର କରି, ହଜାର ହଜାର ମହିଳା ଅକ୍ଟୋବର ୫ ତାରିଖ ଦିନ ଗୋଟିଏ ବଡ଼ ପଟୁଆରରେ ପ୍ୟାରିସ୍‌ରୁ ଭର୍ସାଇଲସ ଅଭିମୁଖେ ଯାତ୍ରା କଲେ । ଲାଫାୟେତ୍ ତାଙ୍କ ଅଧୀନରେ ଥିବା ରକ୍ଷୀବାହିନୀକୁ ସଙ୍ଗରେ ଧରି ସେମାନଙ୍କ ପଛେ ପଛେ ଚାଲିଲେ । ପଟୁଆର ଅପରାହ୍ଣରେ ଭର୍ସାଇଲସ୍‌ରେ ପହଞ୍ଚିଲା । ଲାଫାୟେତ୍ ମଧ୍ୟ ତାଙ୍କ ଜାତୀୟ ରକ୍ଷୀବାହିନୀ ସହିତ ସେତିକିବେଳେ ପହଞ୍ଚିଲେ । ଜନତା ଭର୍ସାଇଲସ୍‌ରେ ପହଞ୍ଚିବାବେଳକୁ ଏତେ କ୍ଳାନ୍ତ ହୋଇପଡ଼ିଥିଲେ ଯେ ଦିନଟା ଖାଲି ଆବେଦନ ଓ ବିକ୍ଷୋଭ କରିବାରେ କଟିଗଲା । ଅବଶ୍ୟ କେତେକ ବିକ୍ଷୋଭକାରୀ ସଭାଗୃହରେ ଉପସ୍ଥିତ ଥିବା ସଭ୍ୟମାନଙ୍କୁ ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ସେମାନଙ୍କୁ ଅସ୍ତବ୍ୟସ୍ତ କରିପକାଇଥିଲେ । ଯାହାହେଉ ଏ ସବୁର ଗୁରୁତ୍ୱ ସେତେ ନ ଥିଲା; କିନ୍ତୁ ମଧ୍ୟରାତ୍ର ପରେ ପ୍ରାୟ ଭୋର୍ ହେଲାବେଳକୁ କେତେକ ଦୁର୍ଦ୍ଦାନ୍ତ ଲୋକ ମାତାଲ ହୋଇ ଭର୍ସାଇଲସ୍ ରାଜପ୍ରାସାଦ ନିକଟରେ ରୁଣ୍ଡ ହେଲାପରେ, ରାଜପ୍ରାସାଦ ଉପରେ ଚଢ଼ାଉ କରାଗଲା ଓ ଦୁଇଜଣ ଜଗୁଆଳଙ୍କୁ ଜୀବନରେ ମାରିଦିଆଗଲା । ଏହାର ସୁଯୋଗ ନେଇ ମହିଳା-ବିକ୍ଷୋଭକାରୀମାନେ ଜବରଦସ୍ତି ରାଜପ୍ରାସାଦ ଭିତରେ ପ୍ରବେଶ କଲେ । ସେମାନେ କ୍ଷୁଧାତୁର ହିଂସ୍ରଜନ୍ତୁମାନଙ୍କ ପରି ରାଣୀଙ୍କୁ ଚିରି ଟିକିଟିକି କରିଦେବା ଉଦ୍ଦେଶ୍ୟରେ ତାଙ୍କୁ ଖୋଜିବୁଲିଲେ । ରାଣୀଙ୍କର ଅନୁରକ୍ତ ଦେହରକ୍ଷୀ ନ ଥିଲେ, ସେମାନେ ସେହି ରାତିରେ ସେମାନଙ୍କର ମନସ୍କାମନା ପୂର୍ଣ୍ଣ କରିପାରିଥାନ୍ତେ । ଏସବୁ କାଣ୍ଡ ଘଟିଲାବେଳେ, ଲାଫାୟେତ୍ ଗୋଟିଏ ପାନ୍ଥ ନିବାସରେ ଘୁମାଇପଡ଼ିଥିଲେ । ଲାଫାୟେତ୍‌ଙ୍କ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ତାଙ୍କର ଜଣେ ଶତ୍ରୁ କହିଲେ, "ସେ ତାଙ୍କ ରାଜାଙ୍କ ବିରୋଧ କରି

ଶୋଇପଡ଼ିଥିଲେ ।" ("He slept against his King.") ଏହି ଉକ୍ତିର ସତ୍ୟତା ଅବଶ୍ୟ ପ୍ରତିପାଦିତ ହୋଇନାହିଁ । ଇତ୍ୟବସରରେ ସଭା ଏବଂ ରାଜପ୍ରାସାଦ ମହିଳା-ବିକ୍ଷୋଭକାରୀମାନଙ୍କ ହାତରେ ପଡ଼ିଲା । ରାଜା ଓ ରାଣୀ ଯେତେବେଳେ ବିପଦର ସମ୍ମୁଖୀନ ହୋଇଥିଲେ, ଠିକ୍ ସେହି ସଙ୍କଟବେଳେ ଲାଫାୟେତ୍ ପହଞ୍ଚିଯାଇ ତାଙ୍କ ଜାତୀୟ ରକ୍ଷୀବାହିନୀକୁ ରାଜପ୍ରାସାଦରୁ ବିକ୍ଷୋଭକାରୀମାନଙ୍କୁ ବାହାର କରିଦେବା ପାଇଁ ନିର୍ଦ୍ଦେଶ ଦେଲେ । ପ୍ରକୃତରେ ରାଜା ଓ ରାଣୀଙ୍କୁ ବିପଦରୁ ଉଦ୍ଧାର କରି ସେମାନଙ୍କର ବ୍ୟକ୍ତିଗତ ନିରାପତ୍ତା ବଜାୟ ରଖିଥିଲେ । କିନ୍ତୁ ଉଚ୍ଛୃଙ୍ଖଳ ଜନତା ରାଜା, ରାଣୀ ଓ ଯୁବରାଜଙ୍କୁ ଦେଖିବା ପାଇଁ ଜିଦ୍ ଧରିବାରୁ ସେମାନେ ସମସ୍ତେ ପ୍ରାସାଦର ଉପର ମହଲାର ଗୋଟିଏ ବାଲକନିରେ (ବାରଣ୍ଡାରେ) ଠିଆହୋଇ ଜନତାକୁ ଦେଖାଦେଇଥିଲେ । ବିକ୍ଷୋଭକାରୀମାନେ ରାଜାଙ୍କୁ ପ୍ୟାରିସ୍ ନେବା ପାଇଁ ଦାବି କରିବାରୁ, ଲାଫାୟେତ୍ ସେମାନଙ୍କର ଦାବି ଗ୍ରହଣ କରିନେବା ନିମନ୍ତେ ତାଙ୍କୁ ରାଜି କରାଇଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ ବିକ୍ଷୁବ୍ଧ ଜନତା ରାଜାଙ୍କୁ ଲକ୍ଷ୍ୟ କରି ଚିତ୍କାର କରି ଉଠିଲେ, "ଆମ୍ଭେମାନେ ରୋଟିବାଲା, ତାହାର ସ୍ତ୍ରୀ ଓ ତାହାର ଶ୍ରେଷ୍ଠ ପିଲାକୁ ପାଇଛୁ ।" ("We have got the baker and the baker's wife and the baker's little boy", the rabble shouted.) ଅକ୍ଟୋବର ୬ ତାରିଖ ଅପରାହ୍ଣରେ ଛଅହଜାର ମହିଳା ଲୁଟ୍ କରାଯାଇଥିବା ଖାଦ୍ୟସାମଗ୍ରୀ ଗାଡ଼ିଗୁଡ଼ିକରେ ବୋଝାଇ କରି ଲାଫାୟେତ୍ ଓ ତାଙ୍କର ଜାତୀୟ ରକ୍ଷୀବାହିନୀ ସହିତ ମିଳି, ରାଜପରିବାରଙ୍କୁ ସଙ୍ଗରେ ଧରି ଏକ ଶୋଭାଯାତ୍ରାରେ ପ୍ୟାରିସ୍‌କୁ ଫେରିଆସିଥିଲେ । ଏହାକୁ ଯଥାର୍ଥରେ "ପୁରାତନ ରାଜତନ୍ତ୍ରର ଶବଦାହ ପଟୁଆର" ବୋଲି କୁହାଯାଇଅଛି । ("It has been appropriately called, "the funeral march of the old monarchy.") ରାଜା ସେହିଦିନଠାରୁ ଭର୍ସାଇଲସ ରାଜପ୍ରାସାଦ ଛାଡ଼ି ତାଙ୍କ ପରିବାରବର୍ଗଙ୍କୁ ନେଇ ମଧ୍ୟଯୁଗରେ ଫରାସୀ ରାଜପରିବାର ରହୁଥିବା ପ୍ୟାରିସ୍‌ର ଟ୍ୟୁଲରିସ୍ ରାଜପ୍ରାସାଦରେ ବାସକଲେ । ଜାତୀୟ (ସମ୍ବିଧାନ) ସଭାର ସଭ୍ୟମାନେ ରାଜାଙ୍କ ପଛେ ପଛେ ପ୍ୟାରିସ୍‌କୁ ଆସିଲେ । ଜଣେ ନବଜଆ କୌତୁକ କରିବାପାଇଁ ଭର୍ସାଇଲସ୍‌ରେ ଗୋଟିଏ ବିଜ୍ଞାପନ ଟାଙ୍ଗି ଦେଲା— 'ଭର୍ସାଇଲସ୍ ଭଡ଼ାଲାଗିବ ।' (A joker put up a notice, 'Versailles to let.') ଏ କଥା ସତ ଯେ ଅକ୍ଟୋବର ୬ ତାରିଖ ଦିନ ରାଜା ଭର୍ସାଇଲସ୍ ରାଜପ୍ରାସାଦକୁ ଶେଷ ଥର ପାଇଁ ଦେଖିଥିଲେ ଏବଂ ଜୀବନରେ ଆଉ ସେ କେବେ ଭର୍ସାଇଲସ୍ ଯିବାକୁ ସୁଯୋଗ ପାଇନଥିଲେ ।

ଏ ଘଟଣାକୁ ଲଗାଇ ଜନତା ଦୁଇ ଥର ବିପ୍ଳବରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ; କିନ୍ତୁ ଏଥର ଜନତା ଅଧିକ ଆଗ୍ରହର ସହିତ ରାଜାଙ୍କ ଉପରେ ତାର କ୍ଷମତା ବିସ୍ତାର କରିଥିଲା । ସଭା ପ୍ୟାରିସ୍‌କୁ ଚାଲିଆସିଥିବାରୁ ମଧ୍ୟବିତ୍ତଶ୍ରେଣୀର ଲୋକେ ମଧ୍ୟ ଆନୁଷଙ୍ଗିକ

ସହରରେ ଜନତାଦ୍ୱାରା ପ୍ରଭାବିତ ହୋଇଥିଲେ । ଏଣିକି ରାଜତନ୍ତ୍ର ପ୍ୟାରିସ ଜନତାର ବକ୍ଷସ୍ଥଳରେ ଆଶ୍ରୟ ନେଲା । ସେ କ'ଣ ଏହି ନିବିଡ଼ ଆଲିଙ୍ଗନରୁ ବର୍ତ୍ତିପାରିବ ?

ବାସ୍ତବରେ ପ୍ୟାରିସ୍ ଫରାସୀ ସରକାରକୁ ନିଜର ଅଙ୍କୁଆରରେ ରଖିବାକୁ ଲାଗିଲା । ବିପ୍ଳବ ଅଧିକରୁ ଅଧିକତର ପ୍ୟାରିସ ସହରରେ କେନ୍ଦ୍ରୀଭୂତ ହେଲା ଏବଂ ଏହାର ବୈଶିଷ୍ଟ୍ୟ (character) ଗୋଟିଏ ବଡ଼ ସହରର ବୈଶିଷ୍ଟ୍ୟର ପ୍ରତିବିମ୍ବ ମାତ୍ର । ଫରାସୀ ଐତିହାସିକ ସାଗନାକ୍ ରାଜାଙ୍କ ଉପରେ ମନ୍ତବ୍ୟ ଦେଇ କହିଲେ, "ରାଜା ଥିଲେ ବନ୍ଦୀ; କିନ୍ତୁ ତଥାପି ଲୋକେ ତାଙ୍କୁ ଭକ୍ତି କରୁଥିଲେ । ନିଜକୁ ଲୋକପ୍ରିୟ ଏବଂ ସମ୍ଭବତଃ ବିପ୍ଳବର ଗତିକୁ ନିୟନ୍ତ୍ରିତ କରିବା ପାଇଁ ଚାହିଁଥିଲେ ସେ ଯେକୌଣସି ସୁଯୋଗ ନେଇପାରିଥାନ୍ତେ । ସବୁ ନିର୍ଭର କରୁଥିଲା ତାଙ୍କ ଦକ୍ଷତା ଓ ସାହସ ଉପରେ ।" ("The king was a prisoner", remarks the French historian Sagnac, "but he was still revered. He could yet find an occasion to make himself popular and perhaps to moderate the course of the revolution. All depended on his skill and courage.") ଜଣକର ଯେଉଁ ଗୁଣ ନାହିଁ ତାହାଠାରୁ ସେ ଗୁଣ ଆଶା କରିବା ଯାହା, ରାଜାଙ୍କଠାରୁ ଦକ୍ଷ ନେତୃତ୍ୱ ଆଶା କରିବା ଠିକ୍ ସେହିଆ ।

ମିରାବ୍ୟୁ ରାଜାଙ୍କୁ ପ୍ୟାରିସ୍ ଛାଡ଼ି ପ୍ରାଦେଶିକ ସହର ରୋଏନ୍‌କୁ ଯାଇ, ସେଠାକୁ ସଭା ଡକାଇନେବା ପାଇଁ କହାଇଥିଲେ ଏବଂ ରାଜଭକ୍ତିର ପ୍ରମାଣସ୍ୱରୂପ ପ୍ରଦେଶଗୁଡ଼ିକୁ ପ୍ୟାରିସ୍ ବିରୁଦ୍ଧରେ ସାହାଯ୍ୟ ମାଗିବା ପାଇଁ ଗୁପ୍ତ ପରାମର୍ଶ ଦେଇଥିଲେ । ରାଜା ଓ ରାଣୀଙ୍କର ତାଙ୍କ ଉପରୁ ବିଶ୍ୱାସ ତୁଟିଯାଇଥିବାରୁ ରାଜା ତାଙ୍କର ପରାମର୍ଶ ଗ୍ରହଣ କରି ନଥିଲେ । ତା'ଛଡ଼ା ପ୍ରଦେଶଗୁଡ଼ିକରେ ବୈପ୍ଳବିକ ପରିସ୍ଥିତି ସୃଷ୍ଟି ହୋଇଥିବାରୁ ରାଜାଙ୍କର ସେମାନଙ୍କଠାରୁ ସାହାଯ୍ୟ ପାଇବା ଆଶା ମଧ୍ୟ ଖୁବ୍ କମ୍ ଥିଲା । ଫ୍ରାନ୍ସ ପ୍ରତି ଶୁଭସଙ୍କେତ ହୋଇଥାନ୍ତା ଯଦି ରାଜା ଏବଂ ବିପ୍ଳବୀମାନଙ୍କ ମଧ୍ୟରେ ପୁଣି ଗୋଟାଏ ମିଳାମିଶା ହୋଇଯାଇଥାନ୍ତା ଓ ପରସ୍ପର ପ୍ରତି ଆସ୍ଥା ଏବଂ ସମ୍ମାନ ରହିଥାଆନ୍ତା । କିନ୍ତୁ ଫରାସୀ ସମ୍ଭ୍ରାନ୍ତମାନଙ୍କର ବିଦେଶଗମନ ଏ ମିଳାମିଶା ପାଇଁ ବାଧା ସୃଷ୍ଟି କରିଥିଲା । ଅଧିକାଂଶ ସମ୍ଭ୍ରାନ୍ତ ଲୋକେ ଜର୍ମାନ ସହରମାନଙ୍କରେ ଯାଇ ବସବାସ କରି ଫ୍ରାନ୍ସରେ ବିପ୍ଳବର ଆସନ୍ନ ପତନ ବିଷୟ ଅବାଧରେ ଆଲୋଚନା କରୁଥିଲେ ଏବଂ ସେ ପତନ ଲାଗି ପ୍ରସ୍ତୁତ ହୋଇ ରହିବା ପାଇଁ ସୈନ୍ୟ ସଂଗ୍ରହ କରିବାରେ ଲାଗିଥିଲେ । ସେମାନେ ପ୍ରଚାର କରିଥିଲେ ଯେ, ରାଜା ବିପ୍ଳବକୁ ଯେଉଁ ସୁବିଧା ଦେଇଛନ୍ତି, ତାହା ସେ ଅସୁବିଧାରେ ପଡ଼ି ଦେଇଛନ୍ତି; ତେଣୁ ତାକୁ ମାନି ଚଳିବାକୁ ସେ ବାଧ୍ୟ ନୁହନ୍ତି । ସେହି ସମ୍ଭ୍ରାନ୍ତମାନଙ୍କର ପରିପ୍ରଚାର ଯେ ଦେଶପ୍ରତି ଅନିଷ୍ଟକର ଥିଲା ଏଥିରେ ସନ୍ଦେହ ନାହିଁ । ଜଣେ ବଡ଼ ସମସାମୟିକ ଐତିହାସିକ ସମ୍ଭ୍ରାନ୍ତ-ମାନଙ୍କର ବିଦେଶଗମନର ପରିଣାମ ବିଷୟ ଯଥାର୍ଥରେ ଲେଖିଥିଲେ, "ରାଜତନ୍ତ୍ର ପ୍ରତି

କୌଣସି ଘଟଣା ଏହାଠାରୁ ଅଧିକ ବିପଜ୍ଜନକ ନ ଥିଲା କି ବିପ୍ଳବର କ୍ରମବୃଦ୍ଧି ପାଇଁ ଆଉ କିଛି ଏହାଠାରୁ ଅଧିକ ମାରାତ୍ମକ ନ ଥିଲା ।" (A great contemporary historian wrote, "There was no event more disastrous for the monarchy; none more fatal to the development of the Revolution.")

ଏ ସବୁ ବିପଦସଙ୍କେତ ସତ୍ତ୍ୱେ ସମ୍ବିଧାନ ପ୍ରସ୍ତୁତି ଅବ୍ୟାହତ ରହିଥିଲା । ସମ୍ବିଧାନ ସଭା ଯେତେଦିନ ପର୍ଯ୍ୟନ୍ତ ବସିଥିଲା, ମଧ୍ୟବିତ୍ତମାନଙ୍କର ପ୍ରାଧାନ୍ୟ ସେତେଦିନ ପର୍ଯ୍ୟନ୍ତ ତିଷ୍ଠି-ରହିଥିଲା । ସେମାନେ ଏହି ସମୟରେ ବହୁପରିମାଣରେ ସଭା ମାଧ୍ୟମରେ ଏବଂ କେତେକ ପରିମାଣରେ କମ୍ୟୁନ୍ (ପୌରଶାସନ) ଓ ଜାତୀୟ ରକ୍ଷୀବାହିନୀ ଜରିଆରେ ଆଧିପତ୍ୟ ବିସ୍ତାର କରିଥିଲେ । ଏହି ହେଉଛି ପ୍ରକୃଷ୍ଟ ସମୟ ଯେତେବେଳେ ମଧ୍ୟବିତ୍ତଶ୍ରେଣୀ ବିପ୍ଳବର ଗତିକୁ ନିୟନ୍ତ୍ରିତ କରିବାକୁ ଉଦ୍ୟମ କରିଥିଲେ । ଏହି ଶ୍ରେଣୀର ସ୍ୱାର୍ଥ ବ୍ୟବସାୟ ସହିତ ଏବଂ କେତେକ ପରିମାଣରେ ଜମି ସହିତ ଜଡ଼ିତ ଥିବାରୁ, ଯଦି ସାମାଜିକ ଦୃଷ୍ଟିକୋଣରୁ ବିଚାର କରାଯାଏ, ତାହାହେଲେ ସେମାନେ ରକ୍ଷଣଶୀଳ ହେବା ଅବଶ୍ୟମ୍ଭାବୀ । ରାଜନୈତିକ ଅଧିକାର ବା ଅର୍ଥନୈତିକ କ୍ଷମତା ବିଷୟରେ ପ୍ରଶ୍ନ ଉଠିଲେ, ଧର୍ମଯାଜକ ଏବଂ ସମ୍ଭ୍ରାନ୍ତମାନଙ୍କ ସହିତ ସାଧାରଣତଃ ସେମାନଙ୍କର କୌଣସି କଳହ ନ ଥିଲା । କିନ୍ତୁ ସେମାନେ ଏହି ଦୁଇ ଗୋଷ୍ଠୀର ବିଶେଷ ଅଧିକାର ଓ ସୁବିଧାଗୁଡ଼ିକ ଲୋପ କରିଦେବାକୁ ଚାହୁଁଥିଲେ । ତା' ଛଡ଼ା ସେମାନେ ଉଚ୍ଚ ଗୋଷ୍ଠୀମାନଙ୍କ ପରି ରାଜ ଦରବାରର ବଶବର୍ତ୍ତୀ ହୋଇ ଶାସନ କରିବା ପସନ୍ଦ କରୁ ନ ଥିଲେ; ବରଂ ଉଚ୍ଚଗୋଷ୍ଠୀର ଲୋକମାନଙ୍କଠାରୁ ଅଧିକ ସଂଖ୍ୟାରେ ଥିବାରୁ ସେମାନେ ରାଜନୈତିକ ଅନୁଷ୍ଠାନମାନଙ୍କର ପୁନର୍ଗଠନ କରି ପ୍ରତ୍ୟକ୍ଷଭାବରେ ଶାସନ ନିୟନ୍ତ୍ରଣ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ତଥାପି ସାମାଜିକ ସ୍ତରରେ ଉଚ୍ଚରେ ଥିବା କିମ୍ବା ନିଚରେ ଥିବା ଶତ୍ରୁମାନଙ୍କର ମୁହାଁମୁହିଁ ହେବା ସେମାନଙ୍କ ପକ୍ଷରେ ଏକ ଜଟିଳ ସମସ୍ୟା ହୋଇଥିଲା । ଉଚ୍ଚଗୋଷ୍ଠୀର ଲୋକମାନଙ୍କ ପାଖରୁ କିପରି ବିପଦର ଆଶଙ୍କା ରହିଛି ତାହାର ଦୃଷ୍ଟାନ୍ତ ମିଳିଲା ଯେତେବେଳେ ସେମାନେ ଷଡ଼ଯନ୍ତ୍ର କରି ଜୁଲାଇ ଗଣ୍ଡଗୋଳ ଭିଆଇଲେ । ଜନତା ଯେ କିପରି ସେମାନଙ୍କର ଶକ୍ତି ପ୍ରୟୋଗ କରିପାରନ୍ତି ତାହାର ନମୁନା ଏହି ଗଣ୍ଡଗୋଳରୁ ମିଳିଥିଲା । ମଧ୍ୟବିତ୍ତଶ୍ରେଣୀର ସଭ୍ୟମାନେ ଏହି ଦୁଇ ସଙ୍କଟରୁ ଉଦ୍ଧାର ପାଇବା ପାଇଁ ଏକ ମଧ୍ୟବର୍ତ୍ତୀ ପନ୍ଥା ଅବଲମ୍ବନ କଲେ । ତଥାପି ସେମାନଙ୍କର ପ୍ରାଧାନ୍ୟ ଓ କାର୍ଯ୍ୟକଳାପ ଅଚିରେ ଲୋପ ପାଇଯିବାର ଆଶଙ୍କା ରହିଥିଲା । ଯେ ଯାହା ହେଉ, ଅନ୍ତତଃ କିଛି ଦିନ ପାଇଁ ମଧ୍ୟବିତ୍ତଶ୍ରେଣୀର ସଭ୍ୟମାନେ ସୁବିଧାରେ ସମ୍ବିଧାନ କାର୍ଯ୍ୟ କରିଥିଲେ । ସେଥିରୁ ସେମାନଙ୍କର ବିଚକ୍ଷଣ ରାଜନୀତି ଓ ଦକ୍ଷତାର ପରିଚୟ ମିଳିଥିଲା । ଫରାସୀ ରାଷ୍ଟ୍ର-ବିପ୍ଳବକୁ ଏକସଙ୍ଗେ ବିଚାର କଲେ ଜଣେ ସ୍ପଷ୍ଟ ଜାଣିପାରିବ ଯେ, ବିପ୍ଳବର ପ୍ରଥମ ଯୁଗରେ

ଜନତାର ହିତଦୃଷ୍ଟିରୁ ପୁରାତନ ଶାସନର ସବୁ କ୍ଷତିକାରକ ବିଷୟକୁ ମୂଳପୋଛ କରି ଦିଆଯାଇଥିଲା। ବିପ୍ଳବପକ୍ଷରେ ସଂଗଠିତ ହେବା ଅପେକ୍ଷା ଏପରି ଭାଙ୍ଗିବା ହେଲା ସବୁବେଳେ ଅଧିକ ସହଜସାଧ୍ୟ। ସଂଗଠନ କାର୍ଯ୍ୟ ସମାଜର ପୁଷ୍ଟିକାରକ ପଦାର୍ଥ ଭଳି ବିପ୍ଳବର ପ୍ରକୃତ ଶକ୍ତିକୁ ପରୀକ୍ଷା କରି ଦେଖେ।

ପ୍ରଥମେ ନୂତନ ଶାସନପଦ୍ଧତିର ଦୃଢତା ବିଷୟରେ ଅନୁସନ୍ଧାନ କରାଯାଉ। ଏ ସମ୍ବିଧାନ ସଭା ଯେ କି ଫ୍ରାନ୍ସ ପାଇଁ ନୂତନ ବ୍ୟବସ୍ଥା କରିବାର ଭାର ବହନ କରିଥିଲା ତାହାର ବ୍ରିଟିଶ୍ ବ୍ୟବସ୍ଥାପକ ସଭା ବା ପାର୍ଲିଆମେଣ୍ଟ ଭଳି କୌଣସି ପରମ୍ପରା ନ ଥିଲା। ବିପ୍ଳବ ସମୟର ପରିସ୍ଥିତିରୁ ଏହାର ହେଲା ସୃଷ୍ଟି। ବିପ୍ଳବ ଫଳରେ ମଧ୍ୟବିତ୍ତଶ୍ରେଣୀର ଲୋକେ କ୍ଷମତାକୁ ଆସିଥିବାରୁ ସେମାନଙ୍କୁ ପାରୁପର୍ଯ୍ୟନ୍ତ ଆଇନ ପ୍ରଣୟନ କାର୍ଯ୍ୟ ଶିକ୍ଷା କରିବାକୁ ପଡ଼ିଥିଲା। ଏ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିବାରୁ ସେମାନେ ବିବେଚନା କାର୍ଯ୍ୟ କରିବାକୁ କେତେକ ସୁବିଧା ମଧ୍ୟ ପାଇଲେ। ତା' ଛଡ଼ା ସେମାନଙ୍କର ଥିଲା ବିଶେଷ ଉତ୍ସାହ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିରପେକ୍ଷଭାବରେ ସେମାନଙ୍କର ନେତୃତ୍ୱ ନ୍ୟାୟସଙ୍ଗତ ବୋଲି ପ୍ରମାଣ କରିବାକୁ ଚାହିଁଥିଲେ। ଏ କଥା ନିଃସନ୍ଦେହରେ କୁହାଯାଇପାରିବ ନାହିଁ ଯେ ସେମାନେ ସେମାନଙ୍କର ସମ୍ପ୍ରଦାୟର ସ୍ୱାର୍ଥକୁ ଜାଣିଶୁଣି ଉଚ୍ଚ ଆଦର୍ଶ ଦୃଷ୍ଟିରୁ ବିଚାର କରିଥିଲେ। ମୋଟଉପରେ ସେମାନେ ଜାଣିଥିଲେ ଯେ ଫରାସୀ ଜାତି ମଧ୍ୟରେ ସେମାନଙ୍କର ସଂଖ୍ୟା ଅଧିକ ଓ ସେମାନେ ଅଧିକ ଶିକ୍ଷିତ। ବାସ୍ତବିକ ସେମାନେ ଅର୍ଥନୈତିକ ନ୍ୟାୟ ବିଷୟରେ ଉଦାର ମନୋଭାବ ପୋଷଣ କରି ନ ଥିଲେ; ତେଣୁ ମଜଦୁର୍ ଓ ସାନସାନ କୃଷକମାନଙ୍କୁ କୌଣସି ନୂତନ ସୁଯୋଗ ଦେଇ ନ ଥିଲେ। ଆଉ ମଧ୍ୟ ସେ କାଳରେ ସମ୍ପଦର ସୁଷମ ବଣ୍ଟନ ସମସ୍ୟା ବିପ୍ଳବୀମାନଙ୍କର ଦୃଷ୍ଟି ଆକର୍ଷଣ କରି ନ ଥିଲା ଏବଂ ବିଂଶଶତାବ୍ଦୀର ଶେଷ ଭାଗରେ ମଧ୍ୟ ସେ ସମସ୍ୟାର ସମାଧାନ ହୋଇପାରିନାହିଁ। ମଧ୍ୟବିତ୍ତଶ୍ରେଣୀର ଉଦାର ଦୃଷ୍ଟିଭଙ୍ଗୀ, ଶାନ୍ତିଶୃଙ୍ଖଳା ପ୍ରତି ପ୍ରଗାଢ଼ ଅନୁରକ୍ତି ଓ ଅଟଳ ବିଶ୍ୱାସ ଯୋଗୁଁ ବିପ୍ଳବର ଗତି ନିର୍ବିଘ୍ନ ଓ ଯୁକ୍ତିସଙ୍ଗତ ହେବ ବୋଲି ଆଶା କରାଯାଉଥିଲା।

ଏ କଥା ସତ ଯେ ସମ୍ବିଧାନ ସଭାରେ କେତେଜଣ ବିଶିଷ୍ଟ ନେତା ଥିଲେ। କୌତୂହଳର ବିଷୟ ପ୍ରତିକ୍ରିୟାଶୀଳମାନଙ୍କ ମଧ୍ୟରେ କେହି ଯୋଗ୍ୟ ନେତାମାନେ ନଥିଲେ ଏବଂ ଯେଉଁ କେତେଜଣ ଯୋଗ୍ୟ ନେତା ଥିଲେ ସେମାନେ ସମସ୍ତେ ଉଦାରପନ୍ଥୀ ଓ ଅଭିଜାତ ସମ୍ପ୍ରଦାୟଭୁକ୍ତ। ବିଶପ୍‌ମାନଙ୍କ ମଧ୍ୟରେ ଟାଲେରାଣ୍ଡ (Talleyrand) ଜଣେ ନୀତିଜ୍ଞାନ ସୁବିଧାବାଦୀ ହେଲେ ମଧ୍ୟ ଅତି ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ଥିଲେ। ଲଫାୟେଟ୍ ଥିଲେ ଜଣେ ନିସ୍ୱାର୍ଥପର ଓ ସାହସୀ ଉଦାରପନ୍ଥୀ। ତାଙ୍କର ନିଜର ଖ୍ୟାତି ବିଷୟରେ ବିଶେଷ ଅହଙ୍କାର ଥିବାରୁ ସେ ଜଣେ ସଫଳ ରାଜନୀତିଜ୍ଞ ହୋଇପାରିନଥିଲେ। କିନ୍ତୁ ଦୁଇ ମହାଦେଶର (ଇଉରୋପ ଏବଂ

ଆମେରିକା) ବିପ୍ଳବରେ ଅଭିଜ୍ଞତାଯୋଗୁ ତାଙ୍କ ବୁଦ୍ଧି ଓ ଜ୍ଞାନର ପ୍ରସାର ହୋଇଥିଲା । ମୌନିଅର (Mounier) ଯେ କି ଟେନିସ୍ କୋର୍ଟସ୍ ଶପଥ (Tennis Court Oath) ପାଇଁ ପ୍ରବର୍ତ୍ତାଇଥିଲେ ଏବଂ ସମ୍ବିଧାନ ଗଠାପ୍ରସ୍ତୁତିରେ ଅଗ୍ରଣୀ କରିଥିଲେ, ସେ ଥିଲେ ପ୍ରକୃତରେ ଜଣେ ସଂଯମୀ ଓ ଚିନ୍ତାଶୀଳ ନାଗରିକ । ତା'ଛଡ଼ା ସେ କିଛିଏ ଆତ୍ମାଭିମାନୀ ଥିଲେ ଏବଂ ଜନତାର ଚକ୍ରାବରେ ପ୍ରଭାବିତ ହେଲ ଭଳି ବ୍ୟକ୍ତି ସେ ନଥିଲେ । ବେଲି ଥିଲେ ବୈଜ୍ଞାନିକମାନଙ୍କ ମଧ୍ୟରେ ଅଗ୍ରଣୀ ଏବଂ କିଛିଦିନ ତଳେ ସେ ପ୍ୟାରିସ୍‌ର ମେୟର ନିଯୁକ୍ତ ହୋଇଥିଲେ । ବାରନେଭ ଜଣେ ବିଚକ୍ଷଣ ଖ୍ରୀକ ଓ ଦକ୍ଷ ବକ୍ତା ଥିଲେ । ରୋବେସ୍‌ପୀୟର (Robespierre) ଥିଲେ ଜଣେ ଆଇନ ବ୍ୟବସାୟୀ । ସେ ଆସନ ନେଇଥିଲେ ସଭାଗୃହର ଅତି ବାମପଟେ ଏବଂ କିଛିଦିନ ପରେ ତାଙ୍କୁ ସଭାଗୃହର ଅନତିଦୂରରେ ଥିବା ଜାକୋବିନ୍ କ୍ଲବ ଉପରେ ପୂରା ନିର୍ଭର କରିବାକୁ ପଡ଼ିଥିଲା; କାରଣ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସେ କ୍ଲବ୍‌ରେ ସବୁ ଶକ୍ତି ନିହିତ ଅଛି । ଏହି ବିଶିଷ୍ଟ ବ୍ୟକ୍ତିମାନେ ସାଧାରଣ ଜନତାଠାରୁ ସହଜରେ ବାଛିହୋଇ ଯାଉଥିଲେ । ସଭାରେ ସବୁଠାରୁ ଖ୍ୟାତନାମା ବ୍ୟକ୍ତି ଥିଲେ ମିରାବ୍ୟୁ । ଦେଖିବାକୁ ଏପରି କଦାକାର ଥିଲେ ଯେ ସେ ଯେକୌଣସି ଜନଗହଳରେ ବାରିହୋଇ ଯାଉଥିଲେ । ସେ ଅନେକ ହସି ହସି ମନ୍ତବ୍ୟ କରିଥିଲେ, 'ତାଙ୍କର କୁତ୍ସିତ ରୂପ ହେଲା ତାଙ୍କର ଶକ୍ତି ।' (He laughigly remarked that 'his ugliness was his power.') ଅନ୍ୟ ପ୍ରତି ତାଙ୍କ ବ୍ୟବହାରରେ ସବୁବେଳେ ସାଧୁତାର ପରିଚୟ ମିଳୁ ନ ଥିବାରୁ, ତାଙ୍କ ଗୋଷ୍ଠୀରୁ (ସମ୍ଭ୍ରାନ୍ତଗୋଷ୍ଠୀ) ତାଙ୍କୁ ବାହାର କରି ଦିଆଯାଇଥିଲା । କିନ୍ତୁ ତୃତୀୟ ଗୋଷ୍ଠୀ (Third Estate) ତାଙ୍କୁ ପ୍ରତିନିଧି ହିସାବରେ ବାଛିଥିଲା । ସେ ଜଣେ ବଡ଼ ବକ୍ତା ଥିଲେ ଓ ସଭ୍ୟମାନଙ୍କୁ ଅତି ସହଜରେ ପ୍ରଭାବିତ କରିପାରୁଥିଲେ । ସେ ଖାଲି ଫମ୍ପା ଆବାଜ କରୁନଥିଲେ । ଅର୍ଥନୀତି ଓ ବୈଦେଶିକ ନୀତି ଉପରେ ସେ ଅତି ଚମତ୍କାର ନିଷ୍ପତ୍ତି ନେଉଥିଲେ । ସେ ବେଶ୍ ବୁଦ୍ଧିମାନ୍ ଥିଲେ ଓ ଜଣେ ରାଜନୀତିଜ୍ଞ ହିସାବରେ ବାସ୍ତବ ପରିସ୍ଥିତିକୁ ହୃଦୟଙ୍ଗମ କରିପାରୁଥିଲେ । ସେ ନିର୍ଭୀକ ଭାବରେ ତାଙ୍କର ଗୋଷ୍ଠୀର ଅଧିକାଂଶଙ୍କ ପ୍ରତି ତାଚ୍ଛଲ୍ୟଭାବ ପ୍ରକାଶ କରୁଥିବାରୁ ଏବଂ କାହାର ମତ ପ୍ରତି ଖାତିର ନ କରୁଥିବାରୁ ସେ ଜଣେ ସଫଳ ରାଜନୀତିଜ୍ଞ ହୋଇପାରିନଥିଲେ । ତେଣୁ ତାଙ୍କର ସାମର୍ଥ୍ୟ ଅନୁଯାୟୀ ସଭା ଉପରେ ସେ ଯେଉଁ ପ୍ରତିପତ୍ତି ବିସ୍ତାର କରିବା କଥା ତାହା ସେ କରିପାରି-ନ ଥିଲେ ।

ଏହି ସଭା କିନ୍ତୁ ସୃଷ୍ଟି କରିଥିଲା ବିଜ୍ଞ ନେତୃତ୍ୱ । ସଭା ସପକ୍ଷରେ କେତେକ ଭଲ କଥା କୁହାଯାଉଥିଲେ ମଧ୍ୟ ସଂସ୍କାର ଆଣିବା କ୍ଷେତ୍ରରେ ଅଗ୍ରଣୀ ହୋଇଥିବାରୁ ଏହାର କେତେକ ତ୍ରୁଟି ରହିଯାଇଥିଲା । ସଭାରେ ଥିବା ପ୍ରତିନିଧିମାନେ ଦାର୍ଶନିକମାନଙ୍କଠାରୁ ବିଶେଷତଃ ରୁଷୋଙ୍କଠାରୁ ସେମାନଙ୍କର ନୀତିଗୁଡ଼ିକ ଗ୍ରହଣ କରିଥିଲେ ସତ; କିନ୍ତୁ ସେ ନୀତିଗୁଡ଼ିକ

କପରି କାର୍ଯ୍ୟରେ ପରିଣତ କରାଯିବ ତାହା ସେମାନେ ଜାଣି ନଥିଲେ । ବିପ୍ଳବ ସମୟରେ ମନର ଯେଉଁ ସ୍ଥିରତା ଦରକାର, ଅନଭିଜ୍ଞତା ଅଭାବରୁ ତାହା ସେମାନଙ୍କର ନ ଥିଲା । ଦେଶ ଅରାଜକତା ଆଡ଼କୁ ଗତି କରୁଥିଲାବେଳେ, ସେମାନେ ନିଜର କର୍ତ୍ତବ୍ୟଗୁଡ଼ିକ ନିର୍ଦ୍ଧାରଣ ନ କରି ସେମାନଙ୍କର ମୂଲ୍ୟବାନ ସମୟ ଖାଲି ଅଧିକାରଗୁଡ଼ିକ ବ୍ୟାଖ୍ୟା କରିବାରେ ନଷ୍ଟ କରିଥିଲେ । ସେମାନଙ୍କର କ୍ଷମତାର ଲାଳସା ଏତେ ଥିଲା ଯେ ସେମାନେ ସଂସଦୀୟ କାର୍ଯ୍ୟବିଧି (Parliamentary procedure) ଯଥାଯଥ ଭାବେ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ତା'ଛଡ଼ା ସଭାର ଆକାର ବଡ଼ ହୋଇଥିବାରୁ କୌଣସି କାର୍ଯ୍ୟ ଶୀଘ୍ର ଶେଷ ହୋଇ ପାରୁ ନ ଥିଲା । କାରଣ ପ୍ରତ୍ୟେକ ମନୁଷ୍ୟ ଯେପରି ନିଜର ଜୟ-ଜୟକାର 'ଗାନ ଶୁଣିବାକୁ ଭଲପାଏ, ସେମାନେ ମଧ୍ୟ ତାହା ଶୁଣିବାକୁ ଆଗ୍ରହୀ ଥିଲେ । ବିଶେଷତଃ ପ୍ୟାରିସ୍‌ରୁ ସଭାର ଅଧିବେଶନ ଉଠିଗଲା ପରେ ଅନେକ ସଭ୍ୟ ମଞ୍ଚରେ (gallery) ବସିଥିବା ଦର୍ଶକ-ମାନଙ୍କଠାରୁ ବାହା ବାହା ପାଇବା ପାଇଁ ଲୋକପ୍ରିୟ ବିପ୍ଳବୀ ନେତା ଭଳି ଜାଣିଶୁଣି ଅଭିନୟ କରୁଥିଲେ । ସଭାରେ କୌଣସି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା ଚାଲିଥିଲାବେଳେ, ମହିଳାମାନଙ୍କର କିମ୍ବା ପିଲାମାନଙ୍କର ଯଦି ଗୋଟିଏ ପ୍ରତିନିଧିଦଳ ଆସି ପହଞ୍ଚିଯାଉଥିଲେ, ତାହାହେଲେ ସେମାନଙ୍କୁ ଅଭ୍ୟର୍ଥନା କରିବା ପାଇଁ ଆଲୋଚନା ସ୍ଥଗିତ ରଖାଯାଉଥିଲା । ତଥାପି ଏ କଥା ସ୍ୱୀକାର କରିବା ଉଚିତ ଯେ, ପ୍ୟାରିସ୍‌କୁ ସଭା ଉଠିଗଲା ପରେ ସଭ୍ୟମାନଙ୍କୁ କପରି ଜଟିଳ ପରିସ୍ଥିତିରେ କାର୍ଯ୍ୟ କରିବାକୁ ପଡ଼ିଥିଲା । ସେମାନେ ଜାଣିଥିଲେ, ପ୍ୟାରିସ୍ ଜନତାର ବିରୋଧ କଲେ ସେମାନଙ୍କୁ ଭୟାବହ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ । ଯେ ଯାହାହେଉ ଏହିସବୁ ଆତଙ୍କଜନକ ପରିସ୍ଥିତି ମଧ୍ୟରେ ସମ୍ବିଧାନ ପ୍ରସ୍ତୁତି କାର୍ଯ୍ୟ ଅବ୍ୟାହତ ରହିଥିଲା । ଏ କଥା ସତ ଯେ ସେମାନଙ୍କୁ ଯଦି ସମ୍ବିଧାନ ତିଆରି କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ମିଳିଥାନ୍ତା, ତାହାହେଲେ ସେମାନେ ଗଠନମୂଳକ, ସ୍ଥାୟୀ ଓ ଜନହିତକର ବ୍ୟବସ୍ଥା କରିଥାନ୍ତେ; ମାତ୍ର ତାହା ନ ମିଳିବାରୁ ସେମାନେ ସେପରି ବ୍ୟବସ୍ଥା କରିବାକୁ ସକ୍ଷମ ହୋଇ ନ ଥିଲେ ।

## ୧୭୯୧ ମସିହାର ସମ୍ବିଧାନ
## (The Constitution of 1791)

ସମ୍ବିଧାନ ସଭା ସର୍ବପ୍ରଥମେ 'ମାନବ ଓ ନାଗରିକର ଅଧିକାର ଘୋଷଣା' ('Declaration of the Rights of man and citizen') ନାମକ ଗୋଟିଏ ପ୍ରସ୍ତାବନାପତ୍ର ଲିପିବଦ୍ଧ କରିଥିଲା । ଏହି ପ୍ରସ୍ତାବନାପତ୍ର ରୁଷୋଙ୍କର ମତବାଦ, ଇଂଲଣ୍ଡର ଅଧିକାରପତ୍ର (Bill of Rights) ଏବଂ ଆମେରିକାର ସ୍ୱାଧୀନତା ଘୋଷଣା-ପତ୍ର ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲା । ସମ୍ବିଧାନ ସଭା ତାହାର ମୌଳିକ ଭାବଗୁଡ଼ିକୁ ରୂପାୟିତ କରିବା ପାଇଁ ପ୍ରଥମେ ଉଦ୍ୟମ କରିଥିଲା; କାରଣ ଫରାସୀମାନେ

ସାଧାରଣତଃ ସେହିରଳରେ କାର୍ଯ୍ୟ କରିବାକୁ ପସନ୍ଦ କରୁଥିଲେ । ଯେଉଁ ଲୋକମାନଙ୍କର ଜୀବନ ଊଣା-ଅଧିକେ ରାଜାଙ୍କ ହାତରେ ନ୍ୟସ୍ତ ଥିଲା, ପ୍ରଥମ ଥର ପାଇଁ ସ୍ୱାଧୀନତା ପାଇଥିବାରୁ ସେମାନେ ସେମାନଙ୍କର ପ୍ରକୃତିଗତ ଅଧିକାର (natural rights) ରୁଷୋଙ୍କର ବିଚାରଧାରା ଅନୁସାରେ ନିର୍ଣ୍ଣୟ କରିଥିଲେ । ଉପରୋକ୍ତ ଘୋଷଣା ରୁଷୋଙ୍କ ଅନୁସରଣ କରି ଲୋକମାନଙ୍କ ଉପରେ ନିର୍ଦ୍ଦିଷ୍ଟଭାବରେ ସାର୍ବଭୌମ ଅଧିକାର ନ୍ୟସ୍ତ କରିଥିଲା । ଏହି ସାର୍ବଭୌମ ଅଧିକାର ଆଇନରେ ପ୍ରକାଶ କରାଗଲେ, ତାକୁ 'ଜନମତର ପ୍ରକାଶକରଣ' (Expression of General will) କୁହାଯାଏ । ଏହି ଘୋଷଣାରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ, ସମ୍ପତ୍ତି ଭୋଗକରିବାର ସ୍ୱାଧୀନତା, ଜୀବନ ଓ ସମ୍ପତ୍ତିର ନିରାପତ୍ତା ଏବଂ ଅତ୍ୟାଚାରର ବିରୁଦ୍ଧତା ଏସବୁ ମଣିଷର ମୌଳିକ ଅଧିକାର ବୋଲି କୁହାଗଲା । ତା'ଛଡ଼ା ଆଇନଚକ୍ଷୁରେ ସମସ୍ତେ ସମାନ ହୋଇଥିବାରୁ ବେଆଇନରେ କୌଣସି ଲୋକକୁ ଅଭିଯୁକ୍ତ ବା ଗିରଫ୍ କରିବା ଦୋଷାବହ ହେବ ବୋଲି ଜଣାଇ ଦିଆଗଲା ଓ ନାଗରିକମାନଙ୍କର ସମାନ ଅଧିକାର ସ୍ୱୀକାର କରାଗଲା । 'ସ୍ୱାଧୀନତା ଲୋକମାନଙ୍କର ଜନ୍ମଗତ ଅଧିକାର ଏବଂ ସେମାନେ ସମାନ ଅଧିକାରର ଅଧିକାରୀ' ('Men are born free and equal in rights') ହେଲା ବିପ୍ଳବର ମୌଳିକ ନୀତି । ପ୍ରତ୍ୟେକ ବ୍ୟକ୍ତିର ଧର୍ମ ସମ୍ବନ୍ଧରେ ସ୍ୱାଧୀନତା ଓ ମତାମତ ବ୍ୟକ୍ତ କରିବାର ସ୍ୱାତନ୍ତ୍ର୍ୟ ଅଛି ବୋଲି ଗ୍ରହଣ କରି ନିଆଯାଇଥିଲା । ଦୁଃଖର ବିଷୟ ଯେ ସମ୍ବିଧାନ ସଭା ଏହି ନୀତିଗୁଡ଼ିକ କାର୍ଯ୍ୟରେ ପରିଣତ ହୋଇପାରିବ କି ନାହିଁ, ବିଚାର କରି ନ ଥିଲେ । ବାସ୍ତବବାଦୀ ମିରାବ୍ୟୁ ଅନୁଭବ କଲେ ଯେ ଏହିସବୁ ମତାମତ ଜନତା ମନରେ ଉନ୍ମାଦନା ସୃଷ୍ଟି କରିପାରେ । ସେ କହିଲେ, 'ଏହାଦ୍ୱାରା କନ୍ଥ ପର୍ଦ୍ଦାଟିକୁ ଅତିଶୀଘ୍ର ଖୋଲିଦିଆଗଲା ।' (The practical Mirabeau felt that such views might be intoxicating to the people; it was, he siad, 'lifting a veil too quickly.') ମିରାବ୍ୟୁଙ୍କ ଉକ୍ତିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ସେ ଲୋକମାନଙ୍କର ମୌଳିକ ଅଧିକାର ବିଷୟରେ ଘୋଷଣା କରାଯିବା ଏତେ ଶୀଘ୍ର ଚାହୁଁ ନ ଥିଲେ । ଆଉ ଜଣେ ପ୍ରତିନିଧି ଆପତ୍ତି ଉଠାଇ କହିଲେ ଯେ, 'ଲୋକମାନେ ସେମାନଙ୍କର କର୍ତ୍ତବ୍ୟ ସମ୍ପାଦନ କରିବା ଅପେକ୍ଷା ଅଧିକାର ଉପରେ ଜୋର୍ ଦେବାରେ ଅଧିକ ଆଗ୍ରହୀ ।' (Another deputy objected that men are more prone to insist on their rights than to fulfil their duties.') ଏକଥା ସତ ଯେ ଏହିପରି ଖିଆଲି ଆଲୋଚନା ଚାଲିଥିବାରୁ, ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକ ସେମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରି ନ ଥିଲା । ସେ ଯାହାହେଉ 'ମାନବ ଅଧିକାର ଘୋଷଣାପତ୍ର' ସୂଚାଇ ଦେଇଥିଲା ଯେ ଏହାର ପ୍ରବର୍ତ୍ତକମାନେ କିପରି ଦୃଢ଼-ବିଶ୍ୱାସର ସହିତ ଗୋଟିଏ ନୂତନ ଯୁଗର ଭିତ୍ତି ସ୍ଥାପନ କରିବାକୁ ଯାଉଛନ୍ତି । ଏହା ମଧ୍ୟ ଗଣତନ୍ତ୍ରର ସନନ୍ଦ ହିସାବରେ ଭବିଷ୍ୟତ ବଂଶଧରଙ୍କ ପାଇଁ ଥିଲା ଏକ ନୈତିକ ପ୍ରେରଣାର ଉତ୍ସ । ଅଗଷ୍ଟ ମାସରେ ଏହା ଆଇନରେ ପରିଣତ ହେଲା ସମୟରେ ଲୋକମାନେ ବିପ୍ଳବର

ଆନନ୍ଦ ଉନ୍ମାଦନାରେ ଏପରି ମାତିଥିଲେ ଯେ ଏହାର ସମ୍ପୂର୍ଣ୍ଣ କାର୍ଯ୍ୟକାରିତା ବିଷୟରେ ବିଶେଷ ଧ୍ୟାନ ଦିଆଯାଇ ପାରି ନ ଥିଲା ।

ସମ୍ବିଧାନ ସଭାର ଜନହିତକର କାମ ଦେଖିବାକୁ ମିଳିଲା ଯେତେବେଳେ ସେ ସଭା ପୁରାତନ ଶାସନ ବ୍ୟବସ୍ଥାର ଅନ୍ୟାୟ, ଅତ୍ୟାଚାର ଓ ଅସମାନତାର ଉଚ୍ଛେଦସାଧନ କଲା । ଭୂମିଦାସ ପ୍ରଥା (serfdom), ସାମନ୍ତ ପ୍ରଥାଜନିତ ସମସ୍ତ ସେବାକାର୍ଯ୍ୟ (feudal services), ଗିର୍ଜାକର (tithe), ଆଭ୍ୟନ୍ତରୀଣ ଶୁଳ୍କ (internal tariff), ବାଣିଜ୍ୟ ସଙ୍ଘ (trade guild) ଏବଂ ଅର୍ଥ ଓ ବିଚାରାଳୟ ସମ୍ବନ୍ଧୀୟ ସବୁପ୍ରକାର ଅପବ୍ୟବହାରକୁ ଏକାବେଳକେ ଲୋପ କରି ଦିଆଗଲା । ପୁରାତନ ବ୍ୟବସ୍ଥା ସମ୍ପର୍କୀୟ ବିଶେଷ ଅଧିକାର ଓ ସୁବିଧାଗୁଡ଼ିକ ଉଠାଇଦେବା ଦ୍ୱାରା ଆଇନଦୃଷ୍ଟିରେ ସମସ୍ତେ ସମାନ ବୋଲି ଏକ ନୂତନ ନୀତି ପ୍ରତିଷ୍ଠା କରାଗଲା । ସାମାଜିକ ଅନ୍ୟାୟଗୁଡ଼ିକ ଲୋପ କରିଦେବା ଦ୍ୱାରା ସମ୍ବିଧାନ ସଭା ଜନସାଧାରଣଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲା । ସ୍ୱେଚ୍ଛାଚାରୀ ଶାସନର ଅବସାନ ଘଟିଥିଲେ ମଧ୍ୟ ପ୍ରଚଳିତ ରାଜନୈତିକ ବ୍ୟବସ୍ଥା ପ୍ରତି ସେପରି ଅସନ୍ତୋଷ ଦେଖାଯାଇ ନ ଥିଲା । ତେଣୁ ରାଜତନ୍ତ୍ର ତିଷ୍ଠି ରହିଲା ସତ; କିନ୍ତୁ ତାହାର କ୍ଷମତାକୁ କଠୋର ଭାବରେ ସୀମିତ କରିଦିଆଗଲା । ପରିତାପର ବିଷୟ ଏହି ଯେ କୌଣସି ନୂତନ ସାମାଜିକ ବ୍ୟବସ୍ଥା କରିବା ପୂର୍ବରୁ ପୁରାତନ ସାମାଜିକ ବ୍ୟବସ୍ଥାର (ବିଶେଷ ସୁବିଧା ଓ ଅଧିକାରପ୍ରାପ୍ତ ଶ୍ରେଣୀମାନଙ୍କର) ଉଚ୍ଛେଦସାଧନ କରାଯାଇଥିଲା । ମିରାବ୍ୟୁ ଯଥାର୍ଥରେ ସତର୍କ କରି ଦେଇ କହିଥିଲେ, "କୃଷକମାନେ ସେମାନଙ୍କର ସାମନ୍ତ ପ୍ରଥାଜନିତ କର୍ତ୍ତବ୍ୟରୁ ଉଦ୍ଧାର ପାଇଲା ପରେ ସେମାନଙ୍କର ରାଷ୍ଟ୍ର ପ୍ରତି ଆଉ କୌଣସି କର୍ତ୍ତବ୍ୟ ନାହିଁ ବୋଲି ଭାବିବାର ସମ୍ଭାବନା ରହିଛି ।" (Mirabeau warned that the peasants, relieved of their feudal obligations might feel that now they had none even to the state.) ପୁନର୍ଗଠନ କାର୍ଯ୍ୟ ଭଲଭାବରେ ଆରମ୍ଭ କରିବା ପୂର୍ବରୁ ସମସ୍ତ ପୁରାତନ ବ୍ୟବସ୍ଥାକୁ ଉଚ୍ଛେଦ କରିଦେବା ପ୍ରକୃତପକ୍ଷରେ ଏକ ମସ୍ତବଡ଼ ଭୁଲ କାର୍ଯ୍ୟ ବୋଲି କୁହାଯାଇପାରେ । କିନ୍ତୁ ସଭା ଯେଉଁ ପରିସ୍ଥିତିରେ କାର୍ଯ୍ୟ କରୁଥିଲା, ସେଥିରେ ଏସବୁକୁ ଏଡ଼ିଦେବା ସମ୍ଭବପର ହୋଇ ନଥାନ୍ତା । ସେ ଯାହାହେଉ ଧର୍ମ-ନିରପେକ୍ଷ ନୀତିର ଦୃଢ଼ ସମର୍ଥନ ସଭାର ଗୋଟିଏ ବିଶିଷ୍ଟ କାର୍ଯ୍ୟ ବୋଲି ସ୍ୱୀକାର କରାଯାଏ ।

ସମ୍ବିଧାନ ସଭା ଏକ ନୂତନ ଶାସନ ବ୍ୟବସ୍ଥା କରିବା ଦିଗରେ ପଦକ୍ଷେପ ନେଲା । ସଭ୍ୟମାନେ ଉପଲବ୍ଧି କଲେ ଯେ ରାଷ୍ଟ୍ରର ପୁନର୍ଗଠନ କରିବାକୁ ହେଲେ ସେଥିରେ ରାଜାଙ୍କର ସ୍ଥାନ, ଅର୍ଥାତ୍ ରାଜାଙ୍କର କ୍ଷମତା ଓ କାର୍ଯ୍ୟର ପ୍ରକୃତ ସ୍ୱରୂପ କ'ଣ ହେବ ନିରୂପଣ କରିବାକୁ ପଡ଼ିବ । ରାଜାଙ୍କର ନିର୍ଭରଶୀଳତା ବିଷୟରେ ନିଶ୍ଚିତ ରହିବା ପାଇଁ ସଙ୍ଗେ ସଙ୍ଗେ ସେମାନେ ତାଙ୍କର ବ୍ୟକ୍ତିଗତ ଭୂସମ୍ପତ୍ତିକୁ ବାଜ୍ୟାପ୍ତ କରିଥିଲେ ଓ ରାଜାଙ୍କର

ସାଂସାରିକ ବ୍ୟୟଫର୍ଦ୍ଦ (Civil list) ପ୍ରସ୍ତୁତ କରିଥିଲେ । ରାଜାଙ୍କର କ୍ଷମତା ସଙ୍କୁଚିତ କରିବା ଉଦ୍ଦେଶ୍ୟରେ ଘୋଷଣା କରାଯାଇଥିଲା ଯେ ବିଧାନ ସଭାର (legislature) ବିନା ଅନୁମୋଦନରେ ଯୁଦ୍ଧ ଘୋଷଣା କିମ୍ବା ସନ୍ଧିପତ୍ର ସ୍ୱାକ୍ଷର କରାଯାଇ ପାରିବ ନାହିଁ । ରାଜାଙ୍କୁ ନୂତନ ଆଇନର ବା ଆଇନ ପରିବର୍ତ୍ତନର ପ୍ରସ୍ତାବ ଦେବାକୁ କ୍ଷମତା ଦିଆଯାଇ ନ ଥିଲା । ରାଜାଙ୍କୁ ପୁରାପୂରି ଆଇନ ନାମଞ୍ଜୁର କ୍ଷମତା (Veto) ଦିଆଯାଇ ନ ଥିଲେ ମଧ୍ୟ ତାଙ୍କୁ ଆଇନ ସ୍ଥଗିତ ରଖିବା କ୍ଷମତା (suspensive veto) ଦିଆଯାଇଥିଲା । ଏହି କ୍ଷମତା ବଳରେ ରାଜା ଯେକୌଣସି ଆଇନ ସାମୟିକ ଭାବରେ ସ୍ଥଗିତ ରଖି ପାରିବେ; କିନ୍ତୁ ଯଦି କୌଣସି ଆଇନକୁ କ୍ରମାଗତ ବିଧାନସଭାର ତିନୋଟି ଅଧିବେଶନରେ ଅନୁମୋଦନ କରାଯାଏ, ତାହା ହେଲେ ରାଜା ତାଙ୍କର ସ୍ଥଗିତ ରଖିବା କ୍ଷମତା ପ୍ରତ୍ୟାହାର କରିବାକୁ ବାଧ୍ୟ ହେବେ । ରାଜାଙ୍କର ମନ୍ତ୍ରୀମାନଙ୍କୁ ନିଯୁକ୍ତ କରିବାର ଅଧିକାର ରହିଲା; କିନ୍ତୁ ସେମାନଙ୍କୁ ବିଧାନସଭାରେ ସ୍ଥାନ ଦିଆଯାଇ ନ ଥିଲା । ସବୁକର କ୍ଷେତ୍ରରେ ନିର୍ବାଚନ ନୀତି ଅବଲମ୍ବନ କରାଯାଇଥିବାରୁ ରାଜାଙ୍କର ନିଯୁକ୍ତି ଦେବା କ୍ଷମତା ଖର୍ବ ହେବା ସଙ୍ଗେ ସଙ୍ଗେ କେନ୍ଦ୍ର ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରୁ ନ ଥିବା ଗୋଟିଏ ପ୍ରଶାସକଦଳ ଗଢ଼ି ଉଠିଥିଲା ।

ପୂର୍ବରୁ ରହିଥିବା ଫ୍ରାନ୍ସର ୩୨ଟି ପ୍ରଦେଶକୁ ଉଠାଇ ଦିଆଯାଇ ସମଗ୍ର ଦେଶକୁ ୮୩ଟି ଡିପାର୍ଟମେଣ୍ଟ (Department) ଅର୍ଥାତ୍ ପ୍ରଦେଶରେ ବିଭକ୍ତ କରାଗଲା । ପ୍ରତ୍ୟେକ ଡିପାର୍ଟମେଣ୍ଟକୁ ପୁଣି କେତେଗୋଟି ଜିଲ୍ଲାରେ (Arrondisement), ପ୍ରତ୍ୟେକ ଜିଲ୍ଲାକୁ ପୁଣି କେତେ ଗୋଟି କ୍ୟାଣ୍ଟନରେ (Cantons), ପ୍ରତ୍ୟେକ କ୍ୟାଣ୍ଟନକୁ ପୁଣି କେତେ ଗୋଟି କମ୍ୟୁନରେ (Commune) ବା ମ୍ୟୁନିସିପାଲିଟିରେ ବିଭକ୍ତ କରାଗଲା । ସ୍ଥାନୀୟ (local) ଶାସନ କାର୍ଯ୍ୟ ତୁଲାଇବା ପାଇଁ ପ୍ରାୟ ସବୁ କର୍ମଚାରୀମାନେ ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେବାର ସ୍ଥିର କରାଗଲା । ତେଣୁ ପ୍ରତ୍ୟେକ ଡିପାର୍ଟମେଣ୍ଟର ଶାସନକାର୍ଯ୍ୟ ପରିଚାଳନାଭାର ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ଗୋଟିଏ ପ୍ରଶାସକ-ଦଳ ଉପରେ ନ୍ୟସ୍ତ କରାହେଲା । ପ୍ରତ୍ୟେକ ଜିଲ୍ଲାର ଶାସନକାର୍ଯ୍ୟ ସେହିପରି ନିର୍ବାଚିତ କର୍ମଚାରୀମାନେ ତୁଲାଇଲେ ଏବଂ ସେମାନେ ଡିପାର୍ଟମେଣ୍ଟର ପ୍ରଶାସକଦଳଙ୍କ ଶାସନାଧୀନରେ ରହିଲେ । କ୍ୟାଣ୍ଟନଗୁଡ଼ିକ ନିର୍ବାଚନ ପ୍ରକ୍ରିୟାର ଏକ ଏକ ଇଉନିଟ (unit) ବା ଅଙ୍ଗ ଭଳି କାର୍ଯ୍ୟ କରୁଥିଲା । ମ୍ୟୁନିସିପାଲିଟିଗୁଡ଼ିକୁ ବିଶେଷ କ୍ଷମତା ଦିଆଯାଇଥିଲା । ଏକଥା ମାନିବାକୁ ହେବ ଯେ ଡିପାର୍ଟମେଣ୍ଟଗୁଡ଼ିକୁ ସମ ସ୍ତରରେ ରଖିବା ଦ୍ୱାରା ଦେଶରେ ରାଜନୈତିକ ଏକତା ପ୍ରତିଷ୍ଠା କରାଯାଇପାରିଥିଲା ।

ବିଚାର ବିଭାଗରେ ବୈପ୍ଳବିକ ପରିବର୍ତ୍ତନ କରାଯାଇଥିଲା । ସମସ୍ତଙ୍କ ପ୍ରତି ଏକା ପ୍ରକାର ଆଇନ ଲାଗୁକରାଯିବାର ସ୍ଥିର ହେଲା । ଯେଉଁ ପୁରାତନ ବିଚାର ସମ୍ବନ୍ଧୀୟ ବ୍ୟବସ୍ଥା ପୁରୁଷାନୁକ୍ରମିକ ବିଚାରପତିମାନଙ୍କୁ ନେଇ ଗଠିତ ହୋଇଥିଲା, ତାକୁ ଉଠାଇ

ଦିଆଗଲା ଏବଂ ତା ପରିବର୍ତ୍ତେ ବିଚାରପତିମାନଙ୍କୁ ନିର୍ବାଚନ ଭିତ୍ତିରେ ନିଯୁକ୍ତ କରାଯାଇ ସେମାନଙ୍କୁ ସରକାର ବେତନ ଦେବାର ନୂତନ ବ୍ୟବସ୍ଥା ହେଲା । ପୁରାତନ ଅମଲାତନ୍ତ୍ରକୁ ଉଠାଇଦେବା ଦ୍ୱାରା ପୋଷାକଧାରୀ ସମ୍ଭ୍ରାନ୍ତମାନେ କ୍ଷମତାରୁ ବାହାରିଗଲେ । ଫଳରେ ଏହି ଅବଶିଷ୍ଟ ବିଶେଷ ସୁବିଧା-ଉପଭୋଗୀ ଓ ଅଧିକାରପ୍ରାପ୍ତମାନେ ଅନ୍ୟମାନଙ୍କ ସହିତ ସମାନ ହୋଇଗଲେ । ସର୍ବନିମ୍ନ ବିଚାରପତିଠାରୁ ଆରମ୍ଭ କରି ସର୍ବୋଚ୍ଚ ବିଚାରପତି ପର୍ଯ୍ୟନ୍ତ ସମସ୍ତଙ୍କ ନିର୍ବାଚନ ମାଧ୍ୟମରେ ନିଯୁକ୍ତ ଦିଆହେବାର ସ୍ଥିର କରାଗଲା । ପ୍ରତି କ୍ୟାଣ୍ଟନରେ ସାଧାରଣ ଶାନ୍ତିରକ୍ଷା ପାଇଁ ଜଷ୍ଟିସେସ୍-ଅଫ-ପିସ୍ (Justices of peace) ନାମକ ବିଚାରପତିମାନଙ୍କୁ ନିର୍ବାଚିତ କରିବାକୁ ହେଲା ଏବଂ ସେମାନେ ଛୋଟ ଛୋଟ ମୋକଦ୍ଦମା ନିଷ୍ପତ୍ତି କରିପାରିବେ ବୋଲି କୁହାଗଲା । ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଫୌଜଦାରୀ ଅଦାଲତ ଓ ପ୍ରତି ଡିପାର୍ଟମେଣ୍ଟରେ ଗୋଟିଏ ଲେଖାଏଁ ଦେବାନୀ ଅଦାଲତ ପ୍ରତିଷ୍ଠା କରାଯିବାର ହେଲା ଏବଂ ଉଭୟ ଫୌଜଦାରୀ ଅଦାଲତ ଓ ଦେବାନୀ ଅଦାଲତରେ ବିଚାରପତିମାନଙ୍କୁ ଯଥାକ୍ରମେ ଜିଲ୍ଲା ଓ ଡିପାର୍ଟମେଣ୍ଟର ନିର୍ବାଚକମାନେ ନିର୍ବାଚନ କରିବାର ଠିକ୍ ହେଲା । ଫୌଜଦାରୀ ମୋକଦ୍ଦମାଗୁଡ଼ିକ ଜୁରି (Jury) ସାହାଯ୍ୟରେ ବିଚାର କରାଯିବାର ସ୍ଥିର କରାଗଲା । ଗୋଟିଏ ନୂଆ ଦଣ୍ଡବିଧି ଆଇନ (Penal Code) ପ୍ରସ୍ତୁତ କରାଯାଇଥିଲା ଏବଂ ସେଥିରେ ଉତ୍ପୀଡ଼ନର ସ୍ଥାନ ନ ଥିଲା ଓ ମୃତ୍ୟୁଦଣ୍ଡ କେବଳ ବୁର ପାଞ୍ଚଟି ଦୋଷ ପାଇଁ ସୀମାବଦ୍ଧ ହୋଇଥିଲା ।

ବିଧାନସଭାର ନିୟମଗୁଡ଼ିକ ସେହିପରି ଚରମ ସଂସ୍କାରମୂଳକ ହୋଇଥିଲା । ମୌନିଅର କମିଟିର ସୁପାରିଶ ସତ୍ତ୍ୱେ ବିଧାନସଭା ଅନେକ ତର୍କବିତର୍କ ପରେ ଏକପ୍ରକୋଷ୍ଠବିଶିଷ୍ଟ ହେବାର ଓ ଏହାର ସଭ୍ୟସଂଖ୍ୟା ୭୪୫ ରହିବାର ସ୍ଥିର ହେଲା ଓ ଏହାର ସଭ୍ୟମାନେ ଲୋକମାନଙ୍କର ଭୋଟ ଦ୍ୱାରା ନିର୍ବାଚିତ ହେବାର ନିଷ୍ପତ୍ତି ମଧ୍ୟ ନିଆଗଲା । ଭୋଟ ଅଧିକାର ଯେ କେବଳ ପରୋକ୍ଷ ହୋଇଥିଲା ତାହା ନୁହେଁ, ଭୋଟର ହେବା ପାଇଁ ସମ୍ପତ୍ତି ଯୋଗ୍ୟତା ଓ ବିଧାନ ସଭାର ସଦସ୍ୟ ହେବାପାଇଁ ଅଧିକ ସମ୍ପତ୍ତି ଯୋଗ୍ୟତା ରଖାଯାଇଥିଲା । କିନ୍ତୁ ଭୋଟ ଅଧିକାର ବ୍ୟାପାରରେ ଫରାସୀ ଲୋକମାନଙ୍କୁ 'ସକ୍ରିୟ' ନାଗରିକ ଏବଂ 'ନିଷ୍କ୍ରିୟ' ନାଗରିକ—ଏହି ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । 'ସକ୍ରିୟ' ନାଗରିକମାନଙ୍କର କେବଳ ଭୋଟ ଅଧିକାର ରହିଲା । ଯେଉଁମାନେ ତିନି ଦିନର ମଜୁରି ପ୍ରତ୍ୟକ୍ଷ-କର ହିସାବରେ ଦେଉଥିଲେ ସେମାନଙ୍କୁ 'ସକ୍ରିୟ' ନାଗରିକ କୁହାଗଲା । ଯେଉଁମାନେ ଏତିକି ପରିମାଣର କର ଦେବାକୁ ସକ୍ଷମ ନ ଥିଲେ ସେମାନଙ୍କୁ 'ନିଷ୍କ୍ରିୟ' ନାଗରିକ କୁହାଗଲା ଏବଂ ସେମାନେ ଭୋଟ ଅଧିକାରରୁ ବଞ୍ଚିତ ହେଲେ । ଫଳରେ ତିରିଶ ଲକ୍ଷ ଫରାସୀ ନାଗରିକ ଭୋଟ ଅଧିକାର ହରାଇଲେ ଏବଂ ବୟାଳିଶ ଲକ୍ଷ ଫରାସୀ ନାଗରିକ ଭୋଟ ଅଧିକାର ପାଇଲେ । ବିଧାନସଭାର ସଦସ୍ୟ ହେବାପାଇଁ ପ୍ରାୟ ପଇଁତିରିଶ ହଜାର ଲୋକ ଯୋଗ୍ୟ ବୋଲି ବିବେଚିତ ହେଲେ । ଏହା କରିବା ଦ୍ୱାରା ସମ୍ବିଧାନ ସଭା ଜାଣିଶୁଣି ଲୋକମାନଙ୍କର ସମାନ ଅଧିକାର ଅଛି

ବୋଲି ପ୍ରଚାର କରୁଥିବା 'ମାନବ ଓ ନାଗରିକ ଅଧିକାର ଘୋଷଣା' ଉପରେ ଖିଲାପ କରିଥିଲା । ଏକଥା ସ୍ପଷ୍ଟ ଜଣାପଡ଼ିଲା ଯେ ମଧ୍ୟବିତ୍ତଶ୍ରେଣୀର ଲୋକମାନଙ୍କର ଜନତାର ଶକ୍ତି ବିଷୟରେ ଅଭିଜ୍ଞତା ଥିବାରୁ ସେମାନେ ବିପ୍ଳବକୁ ଜନତାର ଅନ୍ତଃପୁରରେ ଛାଡ଼ିଦେବା ପାଇଁ ପ୍ରସ୍ତୁତ ନ ଥିଲେ । ଏହାଛଡ଼ା ସେମାନେ ମଧ୍ୟ ଯୁକ୍ତି ଦର୍ଶାଇଲେ ଯେ ଜନସାଧାରଣ ଅତି ଅଜ୍ଞ ଥିବାରୁ ସେମାନଙ୍କୁ ରାଜନୈତିକ ଅଧିକାର ଦେବା ସମୀଚୀନ ହେବ ନାହିଁ ।

ସମ୍ବିଧାନ ସଭା ଯେଉଁସବୁ ସମସ୍ୟାର ସମ୍ମୁଖୀନ ହୋଇଥିଲା ସେମାନଙ୍କ ମଧ୍ୟରେ ଅର୍ଥନୈତିକ ସମସ୍ୟା ଅତି ସାଙ୍ଘାତିକ ହୋଇଥିଲା । ଏହି ସମସ୍ୟା ମଧ୍ୟ ବିପ୍ଳବର ଆଶୁ କାରଣ ହୋଇଥିଲା । ବୁରବନ୍ ରାଜତନ୍ତ୍ର ଏହି ଅର୍ଥନୈତିକ ସଙ୍କଟ ଫଳରେ ଜାତି ନିକଟରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୋଇଥିଲା । ତେଣୁ ଏ ସମସ୍ୟାର ବାସ୍ତବ ସମାଧାନ ଦିଗରେ ଆଉ ବିଳମ୍ବ କରିବା ଚଳିବ ନାହିଁ ବୋଲି ସମ୍ବିଧାନ ସଭା ଅନୁଭବ କରିଥିଲା । ସଭା ଅର୍ଥନୈତିକ ସାମ୍ୟ ଏବଂ ଜାତୀୟ ଐକ୍ୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ପୁରାତନ ଶାସନ ଅମଳର ପରୋକ୍ଷ କରଗୁଡ଼ିକ ବାତିଲ କରିଦେଇ ଭୂସମ୍ପତ୍ତି ଏବଂ ଅନ୍ୟାନ୍ୟ ସମ୍ପତ୍ତି ଉପରେ ପ୍ରତ୍ୟକ୍ଷ କର ବସାଇଥିଲା । ବିପ୍ଳବର ଅଶୁଭ ଲକ୍ଷଣ ହେଲା କର ଆଦାୟ ନ ହେବା । ଫ୍ରାନ୍ସରେ କର ଆଦାୟ ନ ହେବାରୁ କ୍ରମେ କ୍ରମେ ନୈତିକ ଶୃଙ୍ଖଳା ଭାଙ୍ଗିପଡ଼ୁଥିଲା । ପ୍ରକୃତରେ ରାଜସ୍ୱ ଆଦାୟ ଖୁବ୍ କମ୍ ହେଉଥିଲା; ଫଳରେ ଶାସନ ପରିଚାଳନା ପାଇଁ ଆବଶ୍ୟକ ଅର୍ଥ ମିଳୁ ନଥିଲା । ନେକର ନିରୂପାୟ ହୋଇ ରାଷ୍ଟ୍ରର ଉପକାର ସାଧନ ଉଦ୍ଦେଶ୍ୟରେ ଲୋକମାନଙ୍କୁ ସ୍ୱେଚ୍ଛାରେ ସରକାରକୁ ଅର୍ଥଦାନ କରିବାକୁ ଅନୁରୋଧ କରିଥିଲେ; କିନ୍ତୁ ତାହାର କିଛି ଫଳ ହୋଇ ନ ଥିଲା । ଅବଶେଷରେ ଉଚ୍ଚ ଧର୍ମଯାଜକଗୋଷ୍ଠୀର ସଭ୍ୟ ଟାଲେରାଣ୍ଡ (Talleyrand) ଦେଶକୁ ଦେବାଳିଆ ଅବସ୍ଥାରୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ସରକାରଙ୍କୁ ଗିର୍ଜାର ବିପୁଳ ସମ୍ପତ୍ତି ଅଧିକାର କରିନେବା ପାଇଁ ସମ୍ବିଧାନ ସଭାରେ ପ୍ରସ୍ତାବ ଦେଲେ । ଏପରି ପ୍ରସ୍ତାବ ପ୍ରେରଣାର ଉତ୍ସପରି ମନେହେଲା ଏବଂ ମିରାବୁଙ୍କ ଦୃଢ଼ ସମର୍ଥନ ହେତୁ ପ୍ରସ୍ତାବଟି କାର୍ଯ୍ୟରେ ପରିଣତ ହୋଇଥିଲା । ସମ୍ବିଧାନ ସଭା ସବୁ ଗିର୍ଜାଗୁଡ଼ିକର ଭୂସମ୍ପତ୍ତି ବାଜ୍ୟାପ୍ତ କରି ଦେଇ ତା'ରି ଭିତ୍ତିରେ ଏସାଇନେଟ୍ (assignat) ନାମକ କାଗଜ ମୁଦ୍ରା ଅର୍ଥାତ୍ ସୁଧ ବହନ କରୁଥିବା ଚୁକ୍ତିପତ୍ର ପ୍ରବର୍ତ୍ତନ କରିଥିଲା । ଏ ଚୁକ୍ତିପତ୍ର ଅଧିକାରୀଙ୍କୁ ଏହାର ସମତୁଲ୍ୟ ଜମି ଦାବି କରିବାର ଅଧିକାର ଦିଆଯାଇଥିଲା । ତେଣୁ ଅନେକ ଲୋକ ଟଙ୍କା ଦେଇ ଏ ଚୁକ୍ତିପତ୍ର କ୍ରୟ କଲେ । ଏହି ଉପାୟ ଅବଲମ୍ବନ କରିବା ଦ୍ୱାରା ବହୁଲୋକ ନିଃସନ୍ଦେହରେ ନିଜର ବ୍ୟକ୍ତିଗତ ସ୍ୱାର୍ଥରକ୍ଷା ପାଇଁ ବିପ୍ଳବ ସହିତ ଜଡ଼ିତ ହୋଇପଡ଼ିଥିଲେ । ଏତେ ଭୂସମ୍ପତ୍ତି କିପରି ଏକାଥରକେ ବିକି ହେବ; ଏହି ଚିନ୍ତାରେ ନେକର ଅସ୍ଥିର ହୋଇପଡ଼ିଲେ । ବାସ୍ତବିକ୍ ଏକାଥରକେ ଏତେ ଜମି ବଜାରକୁ ଛାଡ଼ିବା ଦ୍ୱାରା ଜମିର ମୂଲ୍ୟ କମିଯିବା ସ୍ୱାଭାବିକ । ସୁତରାଂ ଅତ୍ୟଧିକ ପରିମାଣରେ ଏସାଇନେଟ୍ ପ୍ରବର୍ତ୍ତନ କରି ଏକ

ମନ୍ତ୍ରବଳ ଭୂଲ କରିବା ପୂର୍ବରୁ ଏହାର ମୂଲ୍ୟହ୍ରାସ ଯେ ଆରମ୍ଭ ହୋଇଯାଇଥିଲା, ଏଥିରେ ସନ୍ଦେହ ନାହିଁ । ଯେ ଯାହାହେଉ ଏହାଦ୍ୱାରା କିଛି ଦିନ ପାଇଁ ଅନ୍ତତଃ ଅର୍ଥନୈତିକ ସମସ୍ୟାର ସମାଧାନ ହୋଇପାରିଥିଲା । ଏହାଛଡ଼ା ରାଷ୍ଟ୍ର, ଗିର୍ଜାର ଅଧିକାଂଶ ଶିକ୍ଷା ସମ୍ବନ୍ଧୀୟ ଓ ଜନହିତୈଷୀ କାର୍ଯ୍ୟଗୁଡ଼ିକ ହାତକୁ ନେଇଥିଲା ଏବଂ ଧର୍ମଯାଜକମାନଙ୍କ ଚଳିବା ପାଇଁ ମାସିକ ବେତନ ଦେବାର ବନ୍ଦୋବସ୍ତ କରିଥିଲା । ତେଣୁ ରାଷ୍ଟ୍ରର କର୍ମପରିସର ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଥିଲା ।

ଗିର୍ଜା ଯେ ଖାଲି ଟାଇଥ୍ (ଗିର୍ଜାକର) ଓ ଭୂସମ୍ପତ୍ତି ହରାଇ କ୍ଷତିଗ୍ରସ୍ତ ହେଲା ସେତିକି ନୁହେଁ । ତାକୁ ଅଧିକ କ୍ଷତି ସହିବାକୁ ପଡ଼ିଲା, ଯେତେବେଳେ ସମ୍ବିଧାନ ସଭା ସିଭିଲ କନଷ୍ଟିଚ୍ୟୁସନ-ଅଫ୍-କ୍ଲର୍ଜି (Civil constitution of clergy) ନାମକ ଏକ ନୂତନ ଆଇନ ପ୍ରଣୟନ କରି ଗିର୍ଜା ସହିତ ରାଷ୍ଟ୍ରର ସମ୍ପର୍କ ଠିକ୍ କରିଦେଲା (regulated) ଏବଂ ଧର୍ମଯାଜକମାନଙ୍କୁ ଏ ଆଇନ ମାନି ଚଳିବା ନିମନ୍ତେ ଶପଥ ନେବାକୁ କହିଲା । ଏ ଆଇନ ଅନୁଯାୟୀ ପ୍ରତ୍ୟେକ ଡିପାର୍ଟମେଣ୍ଟରେ ଗୋଟିଏ ଲେଖାଏଁ ଡାଓସେସ୍ (dioces) ବା ଧର୍ମାନୁଷ୍ଠାନ ସ୍ଥାପନ କରାଗଲା; ଯାହା ଫଳରେ କି ଡାଓସେସ୍‌ଗୁଡ଼ିକର ସଂଖ୍ୟା ଡିପାର୍ଟମେଣ୍ଟଗୁଡ଼ିକର ସଂଖ୍ୟା ସଙ୍ଗେ ସମାନ ହୋଇଯାଇଥିଲା । ଏହିସବୁ ଡାଓସେସ୍‌ର ଧର୍ମଯାଜକମାନେ ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ ହେବାର ସ୍ଥିର କରାଗଲା । ଏହିସବୁ ନିର୍ବାଚନ ପୋପ (Pope)ଙ୍କର ଅନୁମୋଦନକୁ ଅପେକ୍ଷା କରିବ ନାହିଁ ବୋଲି ମଧ୍ୟ କୁହାଗଲା । ସେହି ସମୟରୁ ଏସବୁ ଧର୍ମଯାଜକମାନେ ରାଜ୍ୟର ଅନ୍ୟାନ୍ୟ କର୍ମଚାରୀମାନଙ୍କ ପରି ମାସିକ ବେତନ ପାଇବାର ନିଷ୍ପତ୍ତି କରାଗଲା । ଏହି ବ୍ୟବସ୍ଥା ଫଳରେ କ୍ୟାଥଲିକ୍ ଗିର୍ଜାଗୁଡ଼ିକ (Catholic Churches) ରାଷ୍ଟ୍ରର ଏକ ବିଭାଗ ହିସାବରେ ଗଣ୍ୟ ହେଲେ । ମୋଟଉପରେ କହିବାକୁ ଗଲେ ଫ୍ରାନ୍‌ସର ସବୁ ଧର୍ମାନୁଷ୍ଠାନଗୁଡ଼ିକ ରାଷ୍ଟ୍ରର କର୍ତ୍ତୃତ୍ୱାଧୀନରେ ରହିଲେ ।

ଜନସାଧାରଣଙ୍କ ଦ୍ୱାରା ଧର୍ମଯାଜକମାନଙ୍କର ନିର୍ବାଚନ ନୀତିକୁ ପୂରାପୂରି ଚରମ ନୀତି ବୋଲି ଅଭିହିତ କରାଯାଇନପାରେ; କାରଣ ପ୍ରାୟ ଦୁଇଶହ ବର୍ଷ ପୂର୍ବରୁ ରାଜା ହିଁ ଧର୍ମଯାଜକମାନଙ୍କୁ ମନୋନୀତ କରିଆସୁଥିଲେ, ଯଦିଓ ତାହା ପୋପଙ୍କ ଅନୁମୋଦନ ଉପରେ ନିର୍ଭର କରୁଥିଲା । ଏ କଥା ସ୍ୱୀକାର କରିବାକୁ ହେବ ଯେ ଏହି ବ୍ୟବସ୍ଥା ପୋପ ଓ ରାଜାଙ୍କ ମଧ୍ୟରେ ହୋଇଥିବା କନକରଡାଣ୍ଟ ଅଫ୍ ବଲ୍‌ଗନା ( Concordant of Bolgna ) ନାମକ ଦ୍ୱିପାକ୍ଷିକ ଚୁକ୍ତି ଅନୁଯାୟୀ କରାଯାଇଥିଲା, ତେଣୁ ଏପରି ମନୋନୟନ ସମ୍ଭବପର ହୋଇଥିଲା । କିନ୍ତୁ ସିଭିଲ କନ୍‌ଷ୍ଟିଚ୍ୟୁସନ-ଅଫ୍-କ୍ଲର୍ଜି ପୋପଙ୍କ ବିନା ଅନୁମୋଦନରେ ପ୍ରଣୟନ କରାଯାଇଥିବାରୁ ଏବଂ ତାଙ୍କର ପାରମ୍ପରିକ ସ୍ଥିତିକୁ ଉପେକ୍ଷା କରୁଥିବାରୁ, ଧର୍ମଯାଜକମାନଙ୍କ ପକ୍ଷରେ ଏହାକୁ ଗ୍ରହଣ କରିନେବା ସହଜ

ନୁହେଁ । ସୁତରାଂ ଏପରି ଆଇନ ବ୍ୟବସ୍ଥା ଗିର୍ଜାଗୁଡ଼ିକରେ ବିଶୃଙ୍ଖଳା ସୃଷ୍ଟି କରିବା ସ୍ୱାଭାବିକ ।

ସମ୍ବିଧାନ ସଭା ଶିଳ୍ପ-ମଜଦୁରମାନଙ୍କର ସଂହତି ( combinations )କୁ ଭାଙ୍ଗି ଦେବା ଉଦ୍ଦେଶ୍ୟରେ ଚ୍ୟାପେଲିୟରର ଆଇନ (Chapelier law) ପାଶ କରିଥିଲା । ଏହା କରିବା ଦ୍ୱାରା ମଜଦୁରମାନଙ୍କୁ ସେମାନଙ୍କର ସାଧାରଣ ସ୍ୱାର୍ଥରକ୍ଷା କରିବା ପାଇଁ ସଂଗ୍ରାମ ଚଳାଇବା ଅଧିକାରରୁ ବଞ୍ଚିତ କରାଯାଇଥିଲା ।

ଶେଷରେ ସମ୍ବିଧାନ ସଭା ରୋବସପୀୟରଙ୍କର ପ୍ରସ୍ତାବ ଗ୍ରହଣ କରିନେଇ ସ୍ଥିର କଲା ଯେ ସମ୍ବିଧାନ ସଭାର କୌଣସି ସଭ୍ୟ ନୂତନ ସମ୍ବିଧାନ ଅନୁଯାୟୀ ଗଠିତ ହେବା ବିଧାନ-ସଭାର ସଭ୍ୟ ହୋଇପାରିବେ ନାହିଁ ।

କେହି ଅସ୍ୱୀକାର କରିପାରିବେ ନାହିଁ ଯେ ସମ୍ବିଧାନ ସଭା ଫ୍ରାନ୍ସ ପାଇଁ ଏକ ନୂତନ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିଥିଲା; କିନ୍ତୁ ଦୁର୍ଭାଗ୍ୟବଶତଃ ଏହି ନୂତନ ଶାସନ ବ୍ୟବସ୍ଥାରେ ନାନା ପ୍ରକାର ତ୍ରୁଟି ରହିଯାଇଥିବାରୁ ତାହା ବେଶି ଦିନ ତିଷ୍ଠି ପାରିଲା ନାହିଁ ।

ସର୍ବପ୍ରଥମେ ଦେଖିବାକୁ ଗଲେ, ସମ୍ବିଧାନ ସଭା ଅତି ଦ୍ରୁତଗତିରେ ପୁରାତନ ବ୍ୟବସ୍ଥାର ଉଚ୍ଛେଦସାଧନ କଲେ ମଧ୍ୟ ସେହି ଗତିରେ ଫ୍ରାନ୍ସର ପୁନର୍ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ କରିପାରିନଥିଲା । ଗୋଟିଏ ଗୋଟିଏ ବିଷୟ ଉପରେ ଆଲୋଚନା ଓ ତର୍କ-ବିତର୍କରେ ବହୁ ସମୟ ନଷ୍ଟ ହେଉଥିଲା । ତେଣୁ ସଙ୍ଗଠନ କାର୍ଯ୍ୟରେ ବିଳମ୍ବ ହେଉଥିବାରୁ ସ୍ୱରାଆଡ଼େ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ଏହିପରି ବାସ୍ତବ ପରିସ୍ଥିତିକୁ ଅବଜ୍ଞା କରି କାର୍ଯ୍ୟ କରିବାର ଏକମାତ୍ର କାରଣ ହେଲା ଏହି ଯେ ବ୍ରିଟିଶ୍ ପାର୍ଲିଆମେଣ୍ଟ ପରି ଫରାସୀ ସମ୍ବିଧାନ (ଜାତୀୟ) ସଭାର କୌଣସି ଅଭିଜ୍ଞତା ବା ଐତିହ୍ୟ ନ ଥିଲା । ଏହି ସଭାକୁ ପ୍ରାୟ ଦୁଇ ଶତାବ୍ଦୀ ପରେ ହଠାତ୍ ଡକାଯାଇଥିଲା । ସୁତରାଂ ଅଭିଜ୍ଞତା ନ ଥିବା ଯୋଗୁ ଏହାର ସଭ୍ୟଗଣ ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ହୋଇ ଏବଂ ବାସ୍ତବ ପରିସ୍ଥିତିକୁ ଉପେକ୍ଷା କରି ଲୋକସେବାରେ ବ୍ୟସ୍ତ ରହିଥିଲେ । ଯଦିଓ ଅନେକ ବିଷୟରେ ସେମାନେ ନିଜ କ୍ଷମତାର ପରିଚୟ ଦେଇ-ଥିଲେ, ତଥାପି ସଭାକୁ ନେତୃତ୍ୱ ଦେବାର ଅଭିଜ୍ଞତା ସେମାନଙ୍କର ନ ଥିଲା । ତା'ଛଡ଼ା ସେମାନେ ଶ୍ରୋତାମାନଙ୍କଠାରୁ ବାହାବା ପାଇବାର ଲୋଭ ସମ୍ବରଣ କରି ନ ପାରି ନିଜର ବାହାଦୁରି ଦେଖାଇବା ପାଇଁ ବୃଥା ତର୍କରେ ବହୁ ସମୟ ଅତିବାହିତ କରୁଥିଲେ । ଆଲୋଚନାକୁ ନିୟନ୍ତ୍ରଣ କରିବା ନିମନ୍ତେ ସଭାରେ କୌଣସି ନିୟମ ବା ବ୍ୟବସ୍ଥା ନ ଥିବା ହେତୁ ଗୋଟିଏ ବିଷୟ ଉପରେ ବହୁଦିନ ଧରି ତର୍କବିତର୍କ ଚାଲୁଥିଲା । ଏତଦ୍‌ବ୍ୟତୀତ ସମ୍ବିଧାନ ସଭାରେ ବହୁସଂଖ୍ୟକ ସଭ୍ୟ ଥିବାରୁ ଏବଂ ତର୍କବିତର୍କରେ ଭାଗ ନେଉଥିବାରୁ ଦ୍ରୁତଗତିରେ ସମ୍ବିଧାନ କାର୍ଯ୍ୟ ସମ୍ପନ୍ନ କରିବାରେ ବାଧା ସୃଷ୍ଟି ହୋଇଥିଲା ।

ଏହି ସମ୍ବିଧାନ ସଭା ସାମନ୍ତପ୍ରଥାଜନିତ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବୈଷମ୍ୟ ପ୍ରଭୃତି (ପୁରାତନ ଶାସନ ବ୍ୟବସ୍ଥାର) ଦୋଷତ୍ରୁଟି ଦୂର କରି ଲୋକମାନଙ୍କ ଶ୍ରଦ୍ଧାଭାଜନ ହୋଇଥିଲା; କିନ୍ତୁ ଦୋଷ ତ୍ରୁଟିଗୁଡ଼ିକର କେବଳ ଉଚ୍ଛେଦ ସାଧନ କଲେ କାର୍ଯ୍ୟ ସମାପ୍ତ ହୁଏନା । ତା ପରବର୍ତ୍ତିରେ ନୂତନ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ ଏକାନ୍ତ ଆବଶ୍ୟକ । ତେଣୁ ଏ ଦିଗରେ ସମ୍ବିଧାନ ସଭା ସଫଳତା ହାସଲ କରିପାରି ନ ଥିଲା । ସମ୍ବିଧାନ ସଭା ଯେଉଁ ନୂତନ ଶାସନ ପଦ୍ଧତି ବିଳମ୍ବରେ ଗ୍ରହଣ କରିଥିଲା, ସେଥିରେ ଜାତୀୟ ଏକତା, ସ୍ୱାୟତ୍ତଶାସନ ଓ ସୁବିଚାରର ବ୍ୟବସ୍ଥା କରାଯାଇଥିଲା ବୋଲି କୁହାଯାଉଥିଲା; କିନ୍ତୁ ଶାସନକାର୍ଯ୍ୟ ପରିଚାଳନା କରିବା ପାଇଁ ସ୍ଥାନୀୟ ନିର୍ବାଚନ ଭିତ୍ତିରେ କର୍ମଚାରୀ ନିଯୁକ୍ତି ପ୍ରଥା କେନ୍ଦ୍ର ସରକାରଙ୍କ ପକ୍ଷରେ ଅତି ବିପଜ୍ଜନକ ହୋଇପଡ଼ିଥିଲା । ନିର୍ବାଚିତ କର୍ମଚାରୀ-ମାନେ କେନ୍ଦ୍ର ସରକାରଙ୍କ ଆଦେଶ ଅମାନ୍ୟ କରିବାରେ ପଶ୍ଚାଦ୍‌ପଦ ହେଉ ନ ଥିଲେ । ସେମାନେ ଭାବୁଥିଲେ ଯେ କେନ୍ଦ୍ର ସରକାରଙ୍କ ଆଦେଶ ଅବଜ୍ଞା କଲେ ମଧ୍ୟ ସେମାନେ ଯଦି ନିଜ ନିଜର ନିର୍ବାଚକମାନଙ୍କୁ ସନ୍ତୁଷ୍ଟ କରି ରଖିପାରିବେ, ତାହାହେଲେ ପୁନର୍ବାର ସେମାନେ ନିର୍ବାଚିତ ହୋଇପାରିବେ । ଏତଦ୍ୱାରା କେନ୍ଦ୍ରଶାସନ ଦୁର୍ବଳ ହୋଇପଡ଼ିଥିଲା । ରାଜାଙ୍କୁ ଆଇନକାନୁନ୍ ସ୍ଥଗିତ ରଖିବା ପାଇଁ କ୍ଷମତା (suspensive veto) ଦେଇ, ସମ୍ବିଧାନ ସଭା ରାଜା ଏବଂ ବିଧାନସଭା ମଧ୍ୟରେ ପରସ୍ପର ପ୍ରତି ସନ୍ଦେହ ଓ ବିଦ୍ୱେଷଭାବ ଉପୁଜାଇବା ପାଇଁ ପଥ ପରିଷ୍କାର କରିଦେଇଥିଲା; ଯଦିଓ ରାଜାଙ୍କର ଆଇନ ନାକଚ କରିବାର କୌଣସି କ୍ଷମତା ନ ଥିଲା । କାର୍ଯ୍ୟ-ନିର୍ବାହକ ବିଭାଗକୁ ଆଇନ ପ୍ରଣୟନ ବିଭାଗଠାରୁ ପୃଥକ କରାଯାଇ କ୍ଷମତାଗୁଡ଼ିକ ସେ ଦୁହିଁଙ୍କ ମଧ୍ୟରେ ବାଣ୍ଟିଦେବା ଦ୍ୱାରା ମଣ୍ଟେସ୍କ୍ୟୁଙ୍କର କ୍ଷମତା ପୃଥକୀକରଣ (Separation of powers) ମତବାଦର ପରାକାଷ୍ଠା ଦେଖାଇ ଦିଆଯାଇଥିଲା; କିନ୍ତୁ ଶାସନ ବ୍ୟବସ୍ଥାର ସ୍ୱଚ୍ଛନ୍ଦଗତି ତାହାଦ୍ୱାରା ବାଧାପ୍ରାପ୍ତ ହୋଇଥିଲା । କେନ୍ଦ୍ରୀୟ ଶାସନ ବ୍ୟବସ୍ଥାକୁ ଦୁର୍ବଳ କରି ଏବଂ ସ୍ଥାନୀୟ ବିଭାଗଗୁଡ଼ିକୁ ନାନା ବିଷୟରେ ସ୍ୱାୟତ୍ତଶାସନ ଅଧିକାର ଦେଇ ସମ୍ବିଧାନ ସଭା ପ୍ରତ୍ୟେକ ଡିପାର୍ଟମେଣ୍ଟକୁ (ପ୍ରଦେଶକୁ) ଗୋଟିଏ ଗୋଟିଏ ସ୍ୱାଧୀନ ସାଧାରଣତନ୍ତ୍ରରେ ପରିଣତ କଲା ପରି ମନେହେଉଥିଲା । ତେଣୁ ୮୩ଟି ଡିପାର୍ଟମେଣ୍ଟ, ୮୩ଟି ଛୋଟ ଛୋଟ ସାଧାରଣତନ୍ତ୍ର ରାଷ୍ଟ୍ରଭଳି କାର୍ଯ୍ୟ କରିବାରେ ଲାଗିଲେ । ଏପରି ବ୍ୟବସ୍ଥା ଫଳରେ ଯେ ଜାତୀୟ ସଂହତି ବାଧା ପାଇଥିଲା, ଏଥିରେ ସନ୍ଦେହ ନାହିଁ । ବିଚାରପତି ପଦଗୁଡ଼ିକ ନିର୍ବାଚନସାପେକ୍ଷ କରିବା ଦ୍ୱାରା ନିର୍ଭୀକଭାବରେ ବିଚାର କରିବାର ପଥ ରୁଦ୍ଧ ହୋଇଯାଇଥିଲା । ଏହାଛଡ଼ା ଏକକକ୍ଷଯୁକ୍ତ ବିଧାନସଭା ଯୁକ୍ତିତର୍କ ଦିଗରେ ଯେତେ ସୁବିଧାଜନକ ହେଲେ ମଧ୍ୟ ଶାସନକ୍ଷେତ୍ରରେ ତାହା କାର୍ଯ୍ୟକାରୀ ହେବା ସମ୍ଭବପର ନ ଥିଲା । କାରଣ ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଓ ଭବିଷ୍ୟତକୁ ଦୃଷ୍ଟି ନ ଦେଇ ଏକକକ୍ଷଯୁକ୍ତ ବିଧାନସଭାର ସଭ୍ୟମାନେ କେତେକ ଆଇନ ପ୍ରଣୟନ କରନ୍ତି, ଯେଉଁଗୁଡ଼ିକ ଭବିଷ୍ୟତରେ ଦେଶ ପ୍ରତି କ୍ଷତିକାରକ ହୁଏ । ସେହି ଦୃଷ୍ଟିରୁ ବିଚାର କଲେ ଦ୍ୱିକକ୍ଷବିଶିଷ୍ଟ ବିଧାନସଭା ଦେଶ ପ୍ରତି ହିତକର; କାରଣ ଏକକକ୍ଷଯୁକ୍ତ ବିଧାନସଭାର ସଭ୍ୟମାନେ

ଭବିଷ୍ୟତ ବିଷୟର ନ କରି ଯେଉଁ ଭୁଲ୍ କାର୍ଯ୍ୟ କରିବସନ୍ତି ତାହାକୁ ସୁଧାରିବା ପାଇଁ ଅନ୍ୟ ଏକ କକ୍ଷର (Se:ond Chamber) ଆବଶ୍ୟକତା ରହିଛି । ଗଣତାନ୍ତ୍ରିକ ମତବାଦ ଅନୁସାରେ ଏକକକ୍ଷଯୁକ୍ତ ବିଧାନସଭା ଯୁକ୍ତିଯୁକ୍ତ ବୋଲି ଯେତେ କୁହାଗଲେ ମଧ୍ୟ ତାହା ସୁସ୍ଥରୂପେ କୌଣସି କାର୍ଯ୍ୟ ସମ୍ପାଦନ କରିବାକୁ ସକ୍ଷମ ହୁଏନା; ବିଶେଷତଃ ବିପ୍ଳବ ସମୟରେ ଜନତାର ଚାପରେ ପଡ଼ି ସୁରୁଖୁରୁରେ କୌଣସି କାର୍ଯ୍ୟ ଚଳାଇବା ତା' ପକ୍ଷରେ ଦୁରୂହ ହୋଇପଡ଼େ ।

ଫରାସୀ ଲୋକମାନଙ୍କୁ 'ସକ୍ରିୟ' ଓ 'ନିଷ୍କ୍ରିୟ' ନାଗରିକ—ଏହି ଦୁଇ ଶ୍ରେଣୀରେ ବିଭକ୍ତ କରିବା ଦ୍ୱାରା ଗଣତନ୍ତ୍ରବିରୋଧୀ କାର୍ଯ୍ୟ କରାଯାଇଥିଲା । ଏକ ଦଗରେ ବହୁ ( ୩୦ ଲକ୍ଷ ) ନିଷ୍କ୍ରିୟ ନାଗରିକଙ୍କୁ ଭୋଟାଧିକାରରୁ ବଞ୍ଚିତ କରାଯାଇଥିଲା ଏବଂ ଅନ୍ୟ ଦଗରେ 'ମାନବ ଓ ନାଗରିକ ଅଧିକାରର ଘୋଷଣା' ( Declaration of rights of man and citizen)ର ବିରୁଦ୍ଧାଚରଣ କରାଯାଇଥିଲା ।

'ସିଭିଲ କନଷ୍ଟିଚ୍ୟୁସନ ଅଫ କ୍ଲର୍ଜି' ନାମକ ଆଇନ ପ୍ରଣୟନ ଫଳରେ ଫରାସୀ ଗିର୍ଜାରେ ଦୁଇଟି ବିରୋଧୀ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ଯେଉଁ ଧର୍ମଯାଜକମାନେ ଏ ଆଇନକୁ ଗ୍ରହଣ କରିନେଲେ, ସେମାନଙ୍କୁ ଜୁର୍‌ରର୍ସ (jurors) ବୋଲି କୁହାଗଲା ଏବଂ ଯେଉଁମାନେ ପୋପ୍‌ଙ୍କ ପ୍ରରୋଚନାରେ ଏ ଆଇନ୍‌କୁ ଅଗ୍ରାହ୍ୟ କଲେ ସେମାନଙ୍କୁ ନନ୍-ଜୁର୍‌ରର୍ସ (non-jurors) ବୋଲି ଅଭିହିତ କରାଗଲା ଏବଂ ପ୍ରାୟ ଦୁଇ-ତୃତୀୟାଂଶ ଧର୍ମଯାଜକ ଏ ଆଇନକୁ ଗ୍ରହଣ କରି ନ ଥିଲେ । ଏହି ଆଇନ୍ ସମ୍ବିଧାନ ସଭାର ସଭ୍ୟମାନଙ୍କ ମଧ୍ୟରେ ଥିବା ଏକତାକୁ ନଷ୍ଟ କରିଦେଇଥିଲା ଏବଂ ଫ୍ରାନ୍‌ସରେ ଗୃହଯୁଦ୍ଧର ବୀଜ ବପନ କରିଥିଲା ।

ଗିର୍ଜାର ଭୂ-ସମ୍ପତ୍ତି ବାଜ୍ୟାପ୍ତ କରିବା ଓ ଏସାଇନେଟ୍ ନାମକ କାଗଜମୁଦ୍ରା ପ୍ରବର୍ତ୍ତନ କରିବା ସତ୍ତ୍ୱେ ଜାତିର ଆର୍ଥିକ ସଂକଟ ଦୂର ହୋଇପାରିନଥିଲା । ଜାମିନ ରହିଥିବା ଭୂ-ସମ୍ପତ୍ତିର ମୂଲ୍ୟ ଅପେକ୍ଷା ଅଧିକ ପରିମାଣରେ ଏସାଇନେଟ୍ ପ୍ରବର୍ତ୍ତନ କରିବା ଦ୍ୱାରା ସେଗୁଡ଼ିକର ବଜାର ଦର କମିଯାଇଥିଲା ।

ରୋବସ୍‌ପୀୟରଙ୍କ ପ୍ରସ୍ତାବ ଅନୁଯାୟୀ ସମ୍ବିଧାନ ସଭା ସ୍ଥିର କଲା ଯେ ସଭାର କୌଣସି ସଦସ୍ୟ ନୂତନ ବିଧାନସଭାର ସଭ୍ୟ ହୋଇପାରିବେ ନାହିଁ । ଏପରି ନିୟମ ନିର୍ବୋଧତାର କାର୍ଯ୍ୟ ବୋଲି କହିବା ଯୁକ୍ତିସଂଗତ ହେବ । କାରଣ ଏପରି ନିୟମ ଫଳରେ ସମ୍ବିଧାନ ତିଆରି କରିବାରେ ସଦସ୍ୟମାନେ ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ ତାହାର ସୁଯୋଗ ନେବାର ପଥ ବନ୍ଦ ହୋଇଗଲା ।

ମୋଟଉପରେ କହିବାକୁ ଗଲେ ସମ୍ବିଧାନ ସଭାର ଗୁରୁତର ଭୁଲ୍‌ଗୁଡ଼ିକ ହେଲା ନୂଆ ସମ୍ବିଧାନ ଅନୁସାରେ କାର୍ଯ୍ୟ-ନିର୍ବାହକ (Executive) ବିଭାଗର ଦୁର୍ବଳତା, ପ୍ରଶାସନିକ ବିକେନ୍ଦ୍ରୀକରଣ (Administrative decentralisation) ଏବଂ

ଧର୍ମଯାଜକ ସମ୍ପ୍ରଦାୟ ପାଇଁ ସାମାଜିକ ବିଧାନ (civil constitution of clergy) । କାର୍ଯ୍ୟନିର୍ବାହକ ବିଭାଗଠାରୁ ଆଇନପ୍ରଣୟନ ବିଭାଗକୁ ପୃଥକ୍ କରାଯାଇ ସେ ଦୁଇଟି ବିଭାଗ ମଧ୍ୟରେ କ୍ଷମତା ବଣ୍ଟନ କରିବାଦ୍ୱାରା ମଣ୍ଟେସ୍କ୍ୟୁଙ୍କର ଏ ବିଷୟରେ ଥିବା ଭ୍ରାନ୍ତ ଧାରଣାକୁ କାର୍ଯ୍ୟରେ ପରିଣତ କରାଗଲା; ଫଳରେ କାର୍ଯ୍ୟନିର୍ବାହକ ବିଭାଗର ବିଧାନସଭା ପ୍ରତି କୌଣସି ଦାୟିତ୍ୱ ରହିଲା ନାହିଁ କି ଶାସନ ସୁରୁଖୁରୁରୂପେ ଚାଲିବା ପାଇଁ ସେ ଦୁଇଟି ମଧ୍ୟରେ ଯେଉଁ ବୁଝାମଣା ଦରକାର ତାହା ସମ୍ଭବପର ହେଲା ନାହିଁ । କେବଳ ଯେ ମଣ୍ଟେସ୍କ୍ୟୁଙ୍କ ମତବାଦକୁ କାର୍ଯ୍ୟରେ ପରିଣତ କରିବା ପାଇଁ ପୃଥକୀକରଣ ବ୍ୟବସ୍ଥା କରାଯାଇଥିଲା ତାହା ନୁହେଁ, କେତେକାଂଶରେ ରାଜାଙ୍କ ପ୍ରତି ଅତ୍ୟଧିକ ସନ୍ଦେହ ଜାତ ହେବା ଯୋଗୁ ଏବଂ ଆଉ କେତେକାଂଶରେ ମନ୍ତ୍ରୀ ହେବା ପାଇଁ ଆଶା ପୋଷଣ କରିଥିବା ମିରାବ୍ୟୁଙ୍କ ପ୍ରତି ଈର୍ଷା ଯୋଗୁ ଏପରି ବ୍ୟବସ୍ଥା କରାଯାଇଥିଲା । ଏହିସବୁ କାରଣରୁ ସମ୍ବିଧାନ ସଭାର କାର୍ଯ୍ୟ ଦୀର୍ଘକାଳ ସ୍ଥାୟୀ ହୋଇପାରିଲା ନାହିଁ ।

ବିପ୍ଳବର ପ୍ରଥମ ପର୍ଯ୍ୟାୟରେ ମିରାବ୍ୟୁ ହେଉଛନ୍ତି ଏକମାତ୍ର ଦୂରଦର୍ଶୀ, ଯେ କି ଅବସ୍ଥାର ପ୍ରକୃତ ଗତି କେଉଁଆଡ଼କୁ ତାହା ହୃଦୟଙ୍ଗମ କରିପାରିଥିଲେ । ସେ ଏକଚ୍ଛତ୍ରବାଦର ଶିକାର ହୋଇ ବହୁଦିନ କାରାଦଣ୍ଡ ଭୋଗିଥିବାରୁ ସେ ତାହାର ଲୋପସାଧନ ଏବଂ ତାହା ପରିବର୍ତ୍ତେ ସାମ୍ବିଧାନିକ ରାଜତନ୍ତ୍ରର ( Constitutional monarchy ) ପ୍ରତିଷ୍ଠା ଚାହିଁଥିଲେ । ସେ ଅନୁଭବ କରିଥିଲେ ଯେ ରାଜନୈତିକ ମତବାଦୀମାନେ ଗଣତାନ୍ତ୍ରିକ ପରିବର୍ତ୍ତନର ଯେଉଁ ପ୍ରସ୍ତାବ ଦେଇଥିଲେ, ତାହା କେବଳ ବିଶୃଙ୍ଖଳା ସୃଷ୍ଟି କରିବା ଛଡ଼ା ଆଉ କିଛି କରିପାରିବ ନାହିଁ । ତେଣୁ ସେ ପ୍ରଚଳିତ ଶାସନ ବ୍ୟବସ୍ଥା ପୂରାପୂରି ଉଠାଇ ଦେଇ ନୂତନ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ବିରୁଦ୍ଧରେ ମତ ଦେଇଥିଲେ । ସେ ମନ୍ତବ୍ୟ ଦେଇ କହିଲେ ଯେ, "ରାଜ୍ୟର ଅବ୍ୟବସ୍ଥାରେ ଏହାଠାରୁ ଅଧିକ ଭଲଭାବରେ ଯୋଜନା କରାଯାଇ ପାରି ନଥାନ୍ତା ।" (He remarked, "the disorganisation of the kingdom could not have been better planned.") ମିରାବ୍ୟୁ ସାମ୍ବିଧାନିକ ରାଜତନ୍ତ୍ରର ସୀମା ମଧ୍ୟରେ ରାଜଶକ୍ତିକୁ ବଳୀୟାନ କରିବା ପାଇଁ ଏବଂ କାର୍ଯ୍ୟନିର୍ବାହକ ବିଭାଗକୁ ଦୁର୍ବଳ ହେବାକୁ ନ ଦେବା ପାଇଁ ବୃଥା ଉଦ୍ୟମ ଚଳାଇଥିଲେ । ବିଶେଷତଃ ତାଙ୍କର ସକଳ ଉଦ୍ୟମ ରାଜାଙ୍କୁ ବିଧାନସଭାରୁ ମନ୍ତ୍ରୀ ବାଛିବା ପାଇଁ ଅନୁମତି ଦେବା ପ୍ରଶ୍ନ ଉପରେ କେନ୍ଦ୍ରୀଭୂତ ହୋଇଥିଲା । ତାଙ୍କର ମଧ୍ୟ ମନ୍ତ୍ରୀ ହେବାଲାଗି ଉଚ୍ଚ ଅଭିଳାଷ ଥିଲା । ସେ ଯଦି ମନ୍ତ୍ରୀ ହୋଇଥାନ୍ତେ, ତାହାହେଲେ ସମ୍ବିଧାନସଭାର ଜଣେ ମୁଖ୍ୟ ସଦସ୍ୟ ହିସାବରେ ରାଜା ଏବଂ ବିଧାନସଭା ମଧ୍ୟରେ ଗୋଟିଏ ଆଦର୍ଶ ଯୋଗସୂତ୍ର (ideal link) ହୋଇପାରି ଥାଆନ୍ତେ । ଅନେକାଂଶରେ ତାଙ୍କର ଅଭିଳାଷକୁ ବ୍ୟର୍ଥ କରିଦେବା ପାଇଁ, ସମ୍ବିଧାନ ସଭା ମନ୍ତ୍ରୀମାନଙ୍କୁ ବିଧାନସଭାର ସଦସ୍ୟ ପଦରୁ ବଞ୍ଚିତ କରିଥିଲା । ତାଙ୍କୁ କୌଣସି ପ୍ରକାରେ ମନ୍ତ୍ରୀପଦରୁ ବାଦ୍ ଦିଆଯାଇ ମନ୍ତ୍ରୀମାନଙ୍କୁ ବିଧାନସଭାର

ସଦସ୍ୟ ହେବା ମତ ପଦ ଗ୍ରହଣ କରାଯାଇଆନ୍ତା, ତାହାହେଲେ ମିରାବ୍ୟୁ ମଧ୍ୟ ବିଶେଷ ସନ୍ତୁଷ୍ଟ ହୋଇଆନ୍ତେ । ତେଣୁ ତାଙ୍କୁ ବାଦ୍‌ଦେବା ପାଇଁ ସମ୍ବିଧାନ ସଭା ଏପରି ପଦକ୍ଷେପ ନେବାରୁ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇ କହିଲେ, "ଗୃହ କେବଳ ଭୋଟ ଦେଉ ଯେ, ମହାଶୟ ମିରାବ୍ୟୁଙ୍କୁ ମନ୍ତ୍ରିମଣ୍ଡଳରୁ ବାଦ୍ ଦିଆଗଲା ।" (Let the house simply vote that Monsieur de Mirabeau is excluded from the ministry," he exclaimed in rage.)

ସେ ଯାହାହେଉ ମିରାବ୍ୟୁ ତାଙ୍କର ଜଣେ ବନ୍ଧୁଙ୍କ ସାହାଯ୍ୟରେ ରାଜପରିଷଦ ସହିତ ସଂଯୋଗ ସ୍ଥାପନ କରିବାରେ କୃତକାର୍ଯ୍ୟ ହୋଇଥିଲେ; କିନ୍ତୁ ଦୁର୍ଭାଗ୍ୟର ବିଷୟ ଏହି ଯେ ରାଜା ତାଙ୍କର ପରାମର୍ଶ ଗ୍ରହଣ କରିବାକୁ ଆଦୌ ରାଜିହେଲେ ନାହିଁ । ତାହାର ପ୍ରଧାନ କାରଣ ହେଲା, ରାଣୀ ତାଙ୍କୁ ମିରାବ୍ୟୁଙ୍କ ବିରୁଦ୍ଧରେ ମତାଇଥିଲେ । ମିରାବ୍ୟୁଙ୍କର ଦୁଃସାହସିକ କାର୍ଯ୍ୟକଳାପ ଯୋଗୁ ରାଣୀଙ୍କର ତାଙ୍କ ପ୍ରତି ଯେଉଁ ଘୃଣାଭାବ ଜାତ ହୋଇଥିଲା, ତାହା ଦୂର ହୋଇ ପାରି ନ ଥିଲା । ତଥାପି ସହଜରେ ସେମାନେ ବିଶ୍ୱାସ କରିଥିଲେ ଯେ ମିରାବ୍ୟୁଙ୍କ ପରାମର୍ଶ ଗ୍ରହଣ ନ କଲେ ମଧ୍ୟ ତାଙ୍କପରି ଜଣେ ଶତ୍ରୁଙ୍କୁ କିଛି ଭତ୍ତା ଦେଇ କିଣି ନେଇ-ପାରିଲେ ସେମାନଙ୍କ ପକ୍ଷରେ ମଙ୍ଗଳ ହେବ । କିନ୍ତୁ ମିରାବ୍ୟୁ ତାଙ୍କର ଋଣ ପରିଶୋଧ କରିବା ପାଇଁ ଏ ଯେଉଁ ଅର୍ଥ-ସାହାଯ୍ୟ ନେଲେ ତାହା ତାଙ୍କ ପକ୍ଷରେ ଗୋଟାଏ ବଡ଼ ଭୁଲ୍ କାର୍ଯ୍ୟ ହେଲା । ଏହି ଘଟଣା ଯେତେବେଳେ ଜଣାପଡ଼ିଲା, ସଭାରେ ତାଙ୍କ ପ୍ରଭାବ ପ୍ରକୃତରେ କମିଯାଇଥିଲା । ଯେତେବେଳେ ସେ ଦେଖିଲେ ଯେ ସଭା ତାଙ୍କ ମତ ବିରୁଦ୍ଧରେ ଚରମ ସଂସ୍କାର ଆଣିବା ପାଇଁ ବଦ୍ଧପରିକର, ସେତେବେଳେ ସେ ସଂସ୍କାରବିରୋଧୀ ପ୍ରତିକ୍ରିୟା ସୃଷ୍ଟି କରାଇବା ଆଶାରେ ସଭାକୁ ଜାଣିଶୁଣି ସେ ଦିଗରେ ପ୍ରବର୍ତ୍ତାଇବାରେ ଲାଗିଲେ । ଜୀବନର ଶେଷଭାଗରେ ତାଙ୍କର ସ୍ଥିତି କେତେକ ପରିମାଣରେ ଦୃଢ଼ ହେଲା ଭଳି ମନେହେଉଥିଲା; କିନ୍ତୁ ପରିତାପର ବିଷୟ ଯେ ସେ ଆମୋଦ-ପ୍ରମୋଦରେ ମାତିହେଉଥିବାରୁ ବହୁଦିନରୁ ତାଙ୍କର ସ୍ୱାସ୍ଥ୍ୟହାନି ଘଟିଥିଲା ଏବଂ ଶେଷରେ ତାଙ୍କର ଭଗ୍ନ ଶରୀର ଆଉ ପରିଶ୍ରମର ଚାପ ସହ୍ୟ କରି ପାରିଲା ନାହିଁ । ତେଣୁ ମିରାବ୍ୟୁ ଯେ କି ସମ୍ଭବତଃ ବିପ୍ଳବକୁ ନେତୃତ୍ୱ ଦେବା ପାଇଁ ସବୁଠାରୁ ଉପଯୁକ୍ତ ବୋଲି ବିବେଚିତ ହୋଇଥିଲେ, ସେ ୧୭୯୧ ମସିହା ଅପ୍ରେଲ ୨ ତାରିଖରେ ମାତ୍ର ୪୨ ବର୍ଷ ବୟସରେ ଇହଧାମରୁ ବିଦାୟ ନେଇଥିଲେ । ତାଙ୍କ ଜୀବନର ଶେଷ ସମୟରେ ସେ କହିଲେ, "ମୁଁ ଧ୍ୱଂସପ୍ରାପ୍ତ ରାଜତନ୍ତ୍ରକୁ ସଙ୍ଗରେ ନେଇଯାଉଛି । ମୋର ମୃତ୍ୟୁ ପରେ ଛୋଟ ଛୋଟ ଦଳମାନଙ୍କ ମଧ୍ୟରେ ଏହାର ଭଗ୍ନାବଶେଷ ପାଇଁ କଳହ ଲାଗିଯିବ ।" ("I carry with me", Mirabeau said during his last days, "the ruin of the monarchy. After me the factions will dispute about its fragments.")

ନୂତନ ସମ୍ବିଧାନ ସମ୍ଭ୍ରାନ୍ତମାନଙ୍କର ବିଶେଷ ସୁବିଧା ଓ ଅଧିକାରଗୁଡ଼ିକ ନେଇ-ଯାଇଥିବାରୁ ଓ ଗିର୍ଜାର ସଂଗଠନକୁ ଧର୍ମନିରପେକ୍ଷ କରିବାରୁ ରାଜା ତାଙ୍କୁ ବିଶେଷ ଘୃଣା କରୁଥିଲେ । ସମ୍ବିଧାନ ଦ୍ୱାରା ତାଙ୍କର ସ୍ଥାନ ନିରୂପଣ ଏବଂ ଟ୍ୟୁଲେରିସ୍ ରାଜପ୍ରାସାଦରେ ତାଙ୍କୁ ଅଟକାଇ ରଖିବାର ଉଦ୍ୟମ ତାଙ୍କୁ ବିଶେଷ ଆଘାତ ଦେଇଥିଲା । ତେଣୁ ସେ ଚିତ୍କାର କରି କହିଲେ, "ଫ୍ରାନ୍ସରେ ଏପରି ଏକ ଅବସ୍ଥାରେ ରାଜା ହୋଇ ରହିବା ଅପେକ୍ଷା ମୁଁ ବରଂ ମେଟଜ୍‌ର ରାଜା ହେବାକୁ ପସନ୍ଦ କରେ ।" ( He exclaimed, "I would rather be king of Metz than remain king of France in such a position.")

ସମ୍ଭ୍ରାନ୍ତମାନଙ୍କର ବିଶେଷ ସୁବିଧା ଓ ଅଧିକାରଗୁଡ଼ିକ କାଢ଼ି ନିଆଗଲା ପରେ ପରେ ସେମାନେ ଫ୍ରାନ୍ସରେ ସେମାନଙ୍କର ଅବସ୍ଥା ନିରାପଦ ନ ମଣି ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ସ୍ୱଦେଶ ଛାଡ଼ି ଅଷ୍ଟ୍ରିଆ, ଇଂଲଣ୍ଡ, ଜର୍ମାନୀ ପ୍ରଭୃତି ଦେଶମାନଙ୍କୁ ପଳାଇ ଯାଇଥିଲେ ଓ ବିଦେଶୀ ଶକ୍ତିମାନଙ୍କ ସାହାଯ୍ୟରେ ବିପ୍ଳବକୁ ଧ୍ୱଂସ କରିଦେବା ପାଇଁ ଉଦ୍ୟମ ଚଳାଇଥିଲେ । ରାଣୀ ବିଭିନ୍ନ ସମୟରେ ରାଜାଙ୍କୁ ପ୍ୟାରିସ୍ ଛାଡ଼ି ବିଦେଶରେ ସ୍ୱଦେଶ-ତ୍ୟାଗୀମାନଙ୍କ ସହିତ ଯୋଗଦେବା ପାଇଁ ପ୍ରସ୍ତାବ ଦେଇଥିଲେ; କିନ୍ତୁ ରାଜା ତାକୁ ଗ୍ରହଣ କରି ନଥିଲେ । ମିରାବ୍ୟୁ ଯେ କି ସଦାସର୍ବଦା ସମ୍ଭ୍ରାନ୍ତମାନଙ୍କର ପ୍ରଭାବ ବିରୁଦ୍ଧରେ ରାଜାଙ୍କୁ ସତର୍କ କରି ଦେଉଥିଲେ, ସେ ବିପ୍ଳବକୁ ଧ୍ୱଂସ ନ କରି ବଞ୍ଚାଇ ରଖିବା ପାଇଁ ଥରେ ରାଜାଙ୍କୁ ତାଙ୍କର ଅବାଧ ରାଜଧାନୀ ପ୍ୟାରିସ୍ ଛାଡ଼ି ପ୍ରଦେଶମାନଙ୍କର ଆନୁଗତ୍ୟ ଉପରେ ପରିପୂର୍ଣ୍ଣ ନିର୍ଭର କରିବାକୁ ପରାମର୍ଶ ଦେଇଥିଲେ । ଯେତେବେଳେ ରାଜା ତାଙ୍କୁ ବିଶ୍ୱାସ କରୁ ନ ଥିବାରୁ ତାଙ୍କ ପରାମର୍ଶ ଗ୍ରହଣ କରି ନ ଥିଲେ । ଶେଷରେ ଯେତେବେଳେ ରାଜା ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ସେ ଆଉ ତାଙ୍କର ସାମ୍ବିଧାନିକ କ୍ଷମତା ରକ୍ଷା କରିବାକୁ ଇଚ୍ଛା କରନ୍ତି ନାହିଁ, ସେତେବେଳେ ମିରାବ୍ୟୁଙ୍କର ପ୍ୟାରିସ୍ ଛାଡ଼ିବା ପରାମର୍ଶ କଥା ତାଙ୍କର ମନେପଡ଼ିଗଲା । ଅବଶ୍ୟ ମିରାବ୍ୟୁଙ୍କ ଉଦ୍ଦେଶ୍ୟଠାରୁ ରାଜାଙ୍କର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ଭିନ୍ନ । ମିରାବ୍ୟୁ ଚାହିଁଥିଲେ ଯେ ରାଜା ପ୍ୟାରିସ୍ ଛାଡ଼ି ଚାଲିଗଲେ, ବିପ୍ଳବକୁ ଧ୍ୱଂସ-ମୁଖରୁ ରକ୍ଷା କରାଯାଇ ପାରିବ; କିନ୍ତୁ ରାଜା ବିପ୍ଳବକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବା ପାଇଁ ପ୍ୟାରିସ୍ ଛାଡ଼ିଯିବାକୁ ଚାହିଁଥିଲେ । ଷୋଡ଼ଶ ଲୁଇଙ୍କୁ ତାଙ୍କର ଅବସ୍ଥା କ୍ରମେ କ୍ରମେ ଅସହ୍ୟ ବୋଧ ହେଲା । ରାଜା ଯେତେବେଳେ ୧୭୯୦ ମସିହା ଶରତ୍‌ଋତୁ ବେଳକୁ ଜାଣିଲେ ଯେ ସଭାର ଉଦ୍ଦେଶ୍ୟ ହେଉଛି ଧର୍ମଯାଜକମାନଙ୍କୁ 'ସିଭିଲ୍ କନଷ୍ଟିଟ୍ୟୁସନ ଅଫ କ୍ଲର୍ଜି' ଆଇନ ଗ୍ରହଣ କରିନେବା ପାଇଁ ଶପଥ କରାଇବ, ସେତେବେଳେ ସେ ତାଙ୍କର କ୍ଷମତା ପୁନରୁଦ୍ଧାର କରିବା ନିମନ୍ତେ ଅନ୍ୟାନ୍ୟ ବିଦେଶୀ ଶକ୍ତିମାନଙ୍କ ସାହାଯ୍ୟ ଲୋଡ଼ିବାକୁ ତାଙ୍କର ଜଣେ ବିଶେଷ ଦୂତକୁ ବିଦେଶ ପଠାଇଥିଲେ । ଏପରେ ପଡ଼ି ସେ ତାଙ୍କ ବିବେକ ବିରୁଦ୍ଧରେ ଏ ଆଇନଟି ଗ୍ରହଣ କରିନେଲା ପରେ ପରେ ସେ ବିପ୍ଳବର··

ଢଣେ ଝାଣ୍ଡିଆ ଶତ୍ରୁ ହେବା ସଙ୍ଗେ ସଙ୍ଗେ ତାର ଧ୍ୱଂସସାଧନ ନିମନ୍ତେ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଥିଲେ । ଅଧିକନ୍ତୁ ପ୍ୟାରିସ୍ ଛାଡ଼ି ପୂର୍ବପରି ଇଷ୍ଟର ପର୍ବରେ ସେଣ୍ଟ୍ କ୍ଳାଉଡ଼ (St. Cloud)ର ପ୍ରାର୍ଥନା ସଭାରେ ଯୋଗଦେବାକୁ ଯିବା ପାଇଁ ରାଜା ଯେତେବେଳେ ଉଦ୍ୟମ କଲେ, ସେତେବେଳେ ପ୍ୟାରିସ୍ ଜନତା ତାଙ୍କର ପ୍ୟାରିସ୍ ଛାଡ଼ିବାର ଭିତରି ଉଦ୍ଦେଶ୍ୟ ଥିବା ସନ୍ଦେହ କରି ତାହା ପଣ୍ଡ କରିଦେବା ଲାଗି ତାଙ୍କ ଯିବା ରାସ୍ତାକୁ ଅବରୋଧ କଲେ । ତେଣୁ ରାଜାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ, ସେ ଢଣେ କଏଦୀ ଏବଂ ତାଙ୍କର ପ୍ରତିବନ୍ଧକଗୁଡ଼ିକୁ ଭାଙ୍ଗ ଦେଇ ପାରିଲେ ସେ ଯାଇ ମୁକ୍ତି ପାଇପାରିବେ ।

ଏହି ଉଦ୍ଦେଶ୍ୟ ନେଇ ରାଜା ଲୋରେନ (Lorraine) ସେନାର ସେନାପତି ମାର୍ଶାଲ ବୁଲେ ( Marshal Bouille ) ଙ୍କୁ ଭେଟି ବିପ୍ଳବକୁ ଦମନ କରିବା ପାଇଁ ସୈନ୍ୟ ସାହାଯ୍ୟ ଦେବା ଲାଗି ବନ୍ଦୋବସ୍ତ କଲାପରେ, ୧୭୯୧ ମସିହା ଜୁନ୍ ୨୦ ତାରିଖ ଦିନ ଲୁଚି ତାଙ୍କର ପରିବାର ସହିତ ଗୋପନରେ ପ୍ୟାରିସ୍ ଛାଡ଼ି ଚାଲି-ଯାଇଥିଲେ । କିନ୍ତୁ ଏ ଷଡ଼ଯନ୍ତ୍ର ଶେଷରେ ବ୍ୟର୍ଥ ହୋଇଯାଇଥିଲା । ତାହାର କାରଣ ହେଲା, ଏକ ଦିଗରେ ରାଜାଙ୍କର ଘୋଡ଼ାଗାଡ଼ିଟା ଏତେ ବଡ଼ ଥିଲା ଯେ ତାହା ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଏବଂ ଅନ୍ୟ ଦିଗରେ ବୁଲେଙ୍କର ସୈନ୍ୟମାନେ ଏତେ ବିଭ୍ରାନ୍ତ ହୋଇଥିଲେ ଯେ ସେ ପଳାତକ ରାଜାଙ୍କ ନିକଟରେ ଯଥା ସମୟରେ ପହଞ୍ଚି ପାରିନଥିଲେ । ଶେଷରେ ରାଜାଙ୍କ ପରିବାରଙ୍କୁ ଚିହ୍ନଟ କରାଗଲା ଓ ପ୍ୟାରିସ୍‌ରେ ବସିଥିବା ସମ୍ବିଧାନ ସଭାକୁ ଏ ଘଟଣା ଜଣାଇ ଦିଆଗଲା ଉତ୍ତାରୁ ତିନିଜଣ ସମ୍ବିଧାନ ସଭାର ସଭ୍ୟ ସାରା ରାସ୍ତା ଗ୍ରାମବାସୀମାନଙ୍କର ଗାଲିଗୁଲଜ ଭିତରେ ରାଜପରିବାରକୁ ସଙ୍ଗରେ ନେଇ ଭାରେନ୍-ନେସ୍ (Varenness)ରୁ ପ୍ୟାରିସ୍‌କୁ ଫେରାଇ ଆଣିଥିଲେ । ସୁତରାଂ ରାଜା ଷୋଡ଼ଶ ଲୁଇ ବିପ୍ଳବର କବଳରୁ ମୁକ୍ତି ପାଇବାର ସୁଯୋଗ ହରାଇବସିଲେ ।

ରାଜାଙ୍କର ପଳାଇଯିବା ଖବର ଫରାସୀବାସୀଙ୍କ ମନରେ ବିଶେଷ ବିସ୍ମୟ ସୃଷ୍ଟି କରିଥିଲା; କାରଣ ରାଜା ବିନା ଗୋଟିଏ ଜାତି ତିଷ୍ଠି ପାରେ ବୋଲି ସେମାନେ ଆଦୌ ଚିନ୍ତା କରି ପାରିନଥିଲେ । ଏକଥା ସତ ଯେ ରାଜାଙ୍କୁ ଯେତେବେଳେ ଜବରଦସ୍ତି ପ୍ୟାରିସ୍‌କୁ ଫେରାଇଅଣାଗଲା ଏବଂ ସେ ବିପ୍ଳବ ପ୍ରତି ଓ ନୂତନ ସମ୍ବିଧାନ ପ୍ରତି ବିଶ୍ୱାସ-ଘାତକତା କରିଛନ୍ତି ବୋଲି କୁହାଗଲା ସେତେବେଳେ ରାଜତନ୍ତ୍ରର ଯେଉଁ ସମ୍ମାନଜନକ ବାକି ରହିଯାଇଥିଲା, ତାହା ସେ (ରାଜତନ୍ତ୍ର) ହରାଇ ବସିଲା । ସେହି ସମୟରୁ ଡାନ୍‌ଟନ୍ (Danton)ଙ୍କ ପରି ଧୂର୍ତ୍ତ ଓ ଅସାଧୁ ଆଇନ ବ୍ୟବସାୟୀଙ୍କ ନେତୃତ୍ୱରେ ଗୋଟିଏ ଦଳ ମୁଣ୍ଡ ଟେକିଲା; ଯାହାର ଉଦ୍ଦେଶ୍ୟ ରହିଲା ରାଜାଙ୍କୁ ଗାଦିଚ୍ୟୁତ କରି ସାଧାରଣତନ୍ତ୍ର ପ୍ରତିଷ୍ଠା କରିବା । ରାଜାଙ୍କୁ ସମ୍ବିଧାନ ସଭା କିଛିକାଳ ପାଇଁ କ୍ଷମତାଚ୍ୟୁତ (suspend) କରିବାରୁ ଏହି ଦଳ ତାଙ୍କୁ ଗାଦିଚ୍ୟୁତ କରିବା ଲାଗି ଦାବି ଉଠାଇଲା ଓ ସେହି ଉଦ୍ଦେଶ୍ୟ ସାଧନ

କରିବା ନିମନ୍ତେ ଖଣ୍ଡିଏ ଆବେଦନପତ୍ର (Petition) ପ୍ରସ୍ତୁତ କରାଯାଇ ୧୭୯୧ ମସିହା ଜୁଲାଇ ୧୭ ତାରିଖ ଦିନ ଖ୍ୟାମ୍-ଡ଼-ମାର୍ସ (Champede Mars)ର ଖୋଲା ପଡ଼ିଆରେ ନିର୍ମିତ କରାଯାଇଥିବା ଜାତୀୟ ମଣ୍ଡପରେ (altar of the nation) ରଖା-ଯାଇଥିଲା । ଏସବୁର ଫଳ ହେଲା ଅତି ସାଙ୍ଘାତିକ । ଆବେଦନପତ୍ରରେ ଦସ୍ତଖତ ଦେବାପାଇଁ ରୁଣ୍ଡହୋଇଥିବା ଜନତାଙ୍କ ମଧ୍ୟରୁ କେତେକ ଉନ୍ମତ୍ତ ହୋଇ ମଣ୍ଡପ ଧ୍ୱଂସ କରିବା ଷଡ଼ଯନ୍ତ୍ରରେ ଦୁଇଜଣ ଲିପ୍ତ ଥିବାର ସନ୍ଦେହ କଲେ । ସେ ଦୁହିଁଙ୍କୁ ଧରିଆଣି, ଅଦାଲତର ଆଶ୍ରୟ ନ ନେଇ ଯେତେବେଳେ ସେମାନଙ୍କର ଅପରାଧ ପାଇଁ ନିଜେ ପ୍ରାଣଦଣ୍ଡ ଦେବାର ବ୍ୟବସ୍ଥା କଲେ, ସେତେବେଳେ ସଭା ଏଥିର ନୀରବ ଦର୍ଶକ ନ ହୋଇ ମେୟର ବେଲି (Bailly the Mayor)ଙ୍କୁ ଏବଂ ଜାତୀୟ ରକ୍ଷୀବାହିନୀର ଅଧ୍ୟକ୍ଷ ଲଫାୟେଟ୍ଙ୍କୁ (Lafayette the Commandant of the national guard) ଶାନ୍ତିଶୃଙ୍ଖଳା ଫେରାଇ ଆଣିବା ପାଇଁ ପରାମର୍ଶ ଦେଲା । ଏହାର ପରିଣାମ ହେଲା ଭୀଷଣ । ଗଣ୍ଡଗୋଳ ପରିସ୍ଥିତି ସମ୍ଭାଳିବା ପାଇଁ ଜାତୀୟ ରକ୍ଷୀବାହିନୀ ହସ୍ତକ୍ଷେପ କଲାରୁ ଜନତା ଓ ରକ୍ଷୀବାହିନୀ ମଧ୍ୟରେ ଧସ୍ତାଧସ୍ତି ଚାଲିଲା; ଫଳରେ ଜାତୀୟ ରକ୍ଷୀବାହିନୀ ଦ୍ୱାରା ୫୦ ଜଣ ଲୋକ ଗୁଳିମାଡ଼ରେ ପ୍ରାଣ ହରାଇଲେ । ଏହି ହେଲା ଜନତା ଓ ମଧ୍ୟବିତ୍ତମାନଙ୍କ ମଧ୍ୟରେ ପ୍ରଥମ ରକ୍ତାକ୍ତ ସଂଘର୍ଷ ଏବଂ ଏହାଦ୍ୱାରା ସେମାନଙ୍କ ମଧ୍ୟରେ ଥିବା ମତାନ୍ତର ଦିନକୁ ଦିନ ବଢ଼ିବାରେ ଲାଗିଲା ।

ଏକଥା ମନେରଖିବା ଉଚିତ ଯେ ମଧ୍ୟବିତ୍ତଶ୍ରେଣୀର ଲୋକେ ରାଜତନ୍ତ୍ରକୁ ଧ୍ୱଂସ କରିବାକୁ ଚାହୁଁ ନଥିଲେ କି କୃଷକ ଓ ମଜଦୁରମାନଙ୍କ ସହିତ କ୍ଷମତା ଭାଗ କରିବା ପାଇଁ ଇଚ୍ଛା କରୁନଥିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା, ସାମ୍ବିଧାନିକ ରାଜତନ୍ତ୍ର ପ୍ରତିଷ୍ଠା କରି ସେଥିରେ ଅର୍ଥନୈତିକ ଓ ଆଇନ ପ୍ରଣୟନ କ୍ଷମତା ନିଜ ହାତରେ ରଖିବେ । ଏହି ସୀମିତ ଉଦ୍ଦେଶ୍ୟ ନେଇ ସେମାନେ ସଂସ୍କାର କାର୍ଯ୍ୟ ଆରମ୍ଭ କରିଦେଲେ । ସେମାନେ ଯେତେ-ବେଳେ ଥରେ ଏପରି ପରିବର୍ତ୍ତନ ଆଣିବା ଆରମ୍ଭ କରିଦେଲେ, ତାହାର ବେଗକୁ ରୋକିବା ସେମାନଙ୍କ କ୍ଷମତାର ବାହାରେ ଥିଲା । ପ୍ରଫେସର ହ୍ୟାରନସ ଯଥାର୍ଥରେ କହିଥିଲେ, "ମଧ୍ୟବିତ୍ତଶ୍ରେଣୀ ପୁରାତନ ଶାସନର ପ୍ରାଚୀରଗୁଡ଼ିକ ଉପରେ ଆକସ୍ମିକ ଭାବରେ ଚଢ଼ାଉ କରିବା ଫଳରେ ପ୍ରାଚୀରରେ ଯେଉଁ ଫାଟ ହୋଇଯାଇଥିଲା ସେ ଫାଟ ମଧ୍ୟଦେଇ ଅସମ୍ଭବ ଭାବରେ ଏପରି ଜୁଆର ଆସିଲା ଯେ ତାହା ଶେଷରେ ରାଜା, ସମ୍ଭ୍ରାନ୍ତ ଓ ଧର୍ମଯାଜକମାନଙ୍କ ସହିତ ମଧ୍ୟବିତ୍ତଶ୍ରେଣୀକୁ ହିଁ ଭସାଇ ନେଇଥିଲା ।" (Prof. Hearnshaw said, "The assault that the bourgeoisie made upon the ramparts of the old regime opened a breach through which poured unexpected floods, that in the end swept away the bourgeoisie, itself together

with King Nobles and Clergy.") ଅର୍ଥାତ୍ ମଧ୍ୟବିତ୍ତମାନେ ପୁରାତନ ଶାସନ ପଦ୍ଧତି ବଦଳାଇବାକୁ ଯେଉଁ ବିପ୍ଳବ ଆରମ୍ଭ କରିଥିଲେ, ତାହା ଏପରି ଭୀଷଣ ଆକାର ଧାରଣ କଲା ଯେ ଶେଷରେ ସେମାନେ ବିପ୍ଳବକୁ ନିଜ ଆୟତ୍ତରେ ଆଉ ରଖିପାରିଲେ ନାହିଁ । ତେଣୁ ତାହା କ୍ରମେ କ୍ରମେ ଜନସାଧାରଣଙ୍କ ଆୟତ୍ତାଧୀନକୁ ଆସିଗଲା । ଫଳରେ ରାଜା, ସମ୍ଭ୍ରାନ୍ତ ଓ ଧର୍ମଯାଜକମାନଙ୍କ ସହିତ ମଧ୍ୟବିତ୍ତମାନେ ସମସ୍ତ କ୍ଷମତା ହରାଇବସିଲେ ଓ ଜନତାର ମଧ୍ୟ ଶିକାର ହେଲେ ।

ସେ ଯାହାହେଉ ରକ୍ତାକ୍ତ ସଂଘର୍ଷ ଫଳରେ ଉପୁଜିଥିବା ପରିସ୍ଥିତିରେ 'ସଭା' ଜନସାଧାରଣଙ୍କର ଆସ୍ଥା ହରାଇଥିଲା । ସେଉଁ ସୀମିତ ରାଜତନ୍ତ୍ର ସେ ପ୍ରତିଷ୍ଠା କରିଥିଲା, ତାହାର ବାସ୍ତବିକ ଆଉ କିଛି ଆଶା ରହିଲା ନାହିଁ । ୧୯୭୯ ମସିହା ସେପ୍ଟେମ୍ବର ମାସରେ ଅଷ୍ଟ୍ରିଆର ସମ୍ରାଟ ଓ ପ୍ରୁସିଆର ରାଜାଙ୍କର ତଥାକଥିତ ପିଲ୍‌ନିଟଜ୍ ଘୋଷଣାପତ୍ର (Declaration of Pillinitz) ରାଜା ଷୋଡ଼ଶ ଲୁଇଙ୍କର ସ୍ୱାର୍ଥ (cause)କୁ ଅନ୍ୟାନ୍ୟ ରାଜାଙ୍କର ସ୍ୱାର୍ଥ ବୋଲି ଘୋଷଣା କରିଥିଲା । ଏତଦ୍ୱାରା ଲୁଇଙ୍କୁ ବିପ୍ଳବ-ବିରୋଧୀ ବୈଦେଶିକ ଶତ୍ରୁମାନଙ୍କ ସହିତ ସମାନ କରିଦିଆଗଲା, ଯାହା ଫଳରେ ଲୁଇଙ୍କ ବିରୁଦ୍ଧରେ ଭୀଷଣ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ତେଣୁ ଲୋକମାନଙ୍କର ରାଜତନ୍ତ୍ର ଉପରେ ଯେଉଁ ଭରସା ଓ ବିଶ୍ୱାସ ଥିଲା ତାହା ଏହି ଘୋଷଣା ଫଳରେ ଦୋହଲି ଯାଇଥିଲା । ଡାନ୍‌ଟନ୍ ଓ ରୋବସ୍‌ପିୟରି ରାଜତନ୍ତ୍ର ଲୋପ କରି ସାଧାରଣତନ୍ତ୍ର ପ୍ରତିଷ୍ଠା ପାଇଁ ଦୃଢ଼ ଦାବି ଉପସ୍ଥାପିତ କଲେ । ସମ୍ବିଧାନ ସଭାର କାର୍ଯ୍ୟ ସମାପ୍ତ ହେବାର କିଛିଦିନ ପୂର୍ବରୁ ବହୁ ସଭ୍ୟଙ୍କ ମନରେ ଧାରଣା ଜନ୍ମିଲା ଯେ ସମ୍ବିଧାନ ସଭାର ସବୁତକ କାର୍ଯ୍ୟ ବୃଥା ହୋଇଗଲା । ଠିକ୍ ଏହି ସମୟରେ ବାର୍‌ନେଭ୍ (Barnave) ତାଙ୍କର କେତେକ ସମର୍ଥକମାନଙ୍କ ସହିତ ସାଧାରଣତନ୍ତ୍ର ଦାବି କରୁଥିବା ଜାକୋବିନ୍ କ୍ଲବରୁ (Jacobin Club) ବିଦାୟ ନେଇଥିଲେ ଏବଂ ସମ୍ବିଧାନକୁ ରକ୍ଷା କରିବା ପାଇଁ ଫ୍ୟୁଲଣ୍ଟସ୍ (Feuillants) ନାମକ ଗୋଟିଏ ନୂତନ କ୍ଲବ୍ ପ୍ରତିଷ୍ଠା କରିଥିଲେ । ସମ୍ବିଧାନ ସଭାରେ ରାଜତନ୍ତ୍ରର ପୃଷ୍ଠପୋଷକମାନଙ୍କ ସଂଖ୍ୟା ସାଧାରଣତନ୍ତ୍ରର ପୃଷ୍ଠପୋଷକ-ମାନଙ୍କ ସଂଖ୍ୟାଠାରୁ ଅଧିକ ଥିବାରୁ, ରାଜତନ୍ତ୍ରର ପୃଷ୍ଠପୋଷକମାନେ ଏହି ଦୁଇଦଳ ମଧ୍ୟରେ ଚାଲିଥିବା ସଂଗ୍ରାମରେ ବିଜୟୀ ହେଲେ ଏବଂ ରାଜାଙ୍କୁ ତାଙ୍କର ସାମ୍ବିଧାନିକ କ୍ଷମତା ଫେରାଇ ଦେଇ ତାଙ୍କୁ ତାଙ୍କ ନ୍ୟାଯ୍ୟ ସ୍ଥାନରେ ପୁନଃପ୍ରତିଷ୍ଠା କରିଥିଲେ । ରାଜା ସମ୍ବିଧାନ ଗ୍ରହଣ କରିଥିଲେ ଏବଂ ତାହା ଅନୁସାରେ କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ରାଜା ସମ୍ବିଧାନ ଗ୍ରହଣ କରିନେଲା ପରେ ୧୭୯୧ ମସିହା ସେପ୍ଟେମ୍ବର ୩୦ ତାରିଖରେ ସମ୍ବିଧାନ ସଭା ତାହାର ଅଧିବେଶନଗୁଡ଼ିକ ଶେଷ ହେଲା ବୋଲି ଘୋଷଣା କରି ବିଦାୟ ନେଇଥିଲା । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ସମ୍ବିଧାନ ସଭା

ତାହାର ଉତ୍ତରାଧିକାରୀ ଉପରେ ଯେଉଁ ସାମ୍ବିଧାନିକ ରାଜତନ୍ତ୍ରର ରକ୍ଷଣାବେକ୍ଷଣ ଭାର ଛାଡ଼ିଦେଇଗଲା, ତାହା ବର୍ଦ୍ଧନ କରିବା ଉତ୍ତରାଧିକାରୀ ପକ୍ଷରେ କଷ୍ଟସାଧ୍ୟ ହୋଇଥିଲା ।

## ବିଧାନ ସଭା (ଅକ୍ଟୋବର ୧୭୯୧—ସେପ୍ଟେମ୍ବର ୧୭୯୨)

## (The Legislative Assembly October-1791-Sept. 1792)

ନୂତନ ସମ୍ବିଧାନର (୧୭୯୧ ସମ୍ବିଧାନ) ବ୍ୟବସ୍ଥା ଅନୁଯାୟୀ ଏଥିମଧ୍ୟରେ ବିଧାନ ସଭା ପାଇଁ ସଭ୍ୟ ନିର୍ବାଚନ ଶେଷ ହୋଇ, ୧୭୯୧ ମସିହା ଅକ୍ଟୋବର ମାସ ୧ ତାରିଖ ଦିନ ବିଧାନ ସଭାର ଅଧିବେଶନ ଆରମ୍ଭ ହେଲା; କାରଣ ଆଶଙ୍କା କରାଯାଉଥିଲା ଯେ ଯଦି ବିଧାନ ସଭା ବସିବାରେ ଗୋଟିଏ ଦିନ ବିଳମ୍ବ ହୁଏ, ତାହାହେଲେ ରାଜଦରବାର କ୍ଷମତା ପୁନରୁଦ୍ଧାର କରିବା ପାଇଁ ଯେକୌଣସି ଉପାୟ ଖୋଜି ବାହାର କରିପାରିବ । ତେଣୁ ସମ୍ବିଧାନ ସଭାର କାର୍ଯ୍ୟ ୧୭୯୧ ମସିହା ସେପ୍ଟେମ୍ବର ୩୦ ତାରିଖ ଦିନ ସମାପ୍ତ ହେଲେ ମଧ୍ୟ ସେହି ମସିହା ଅକ୍ଟୋବର ୧ ତାରିଖ ଦିନ ବିଧାନ ସଭା ବସିବାର ବ୍ୟବସ୍ଥା କରାଯାଇଥିଲା । ବିଧାନ ସଭାର ସଭ୍ୟସଂଖ୍ୟା ଥିଲା ୭୪୫ । ଏହାର ସଭ୍ୟମାନେ ସେମାନଙ୍କର ପୂର୍ବବର୍ତ୍ତୀ ସମ୍ବିଧାନ ସଭାର ସଭ୍ୟମାନଙ୍କ ତୁଳନାରେ ବୟସରେ କମ୍ ଓ ସେମାନଙ୍କର କାର୍ଯ୍ୟ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ତାହାର ମୂଳ କାରଣ ହେଲା ଏହି ଯେ ଅଭିଜ୍ଞତାରୁ କିଛି ଶିକ୍ଷା କରିଥିବା ସମ୍ବିଧାନ ସଭାର ସମସ୍ତ ସଭ୍ୟ ବିଧାନ ସଭାର ସଭ୍ୟପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାରୁ ବଞ୍ଚିତ ହୋଇଥିଲେ । ତେଣୁ ସମ୍ବିଧାନ ବିଷୟରେ ଅଭିଜ୍ଞତା ଅର୍ଜନ କରିଥିବା କୌଣସି ସଭ୍ୟ ବିଧାନ ସଭାରେ ନ ଥିଲେ । ଯେ ଯାହା ହେଉ ନୂତନ ସଭ୍ୟମାନେ ସରଳ ବିଶ୍ୱାସ ଓ ବିଚଳିତ ମନ ନେଇ ପ୍ୟାରିସ୍‌ରେ ପହଞ୍ଚିଲା ପରେ, ଅଧିକାଂଶ ସମୟରେ ଜନମତ ଦ୍ୱାରା ଅତିମାତ୍ରାରେ ପ୍ରଭାବିତ ହୋଇଥିଲେ । ବହୁ ନୂତନ ସଭ୍ୟ ସାଧାରଣତନ୍ତ୍ରବାଦୀମାନଙ୍କର ଚରମ ମତକୁ ସମର୍ଥନ କରିଥିଲେ । ବିଭିନ୍ନ ସ୍ଥାନରେ ରାଜନୈତିକ କ୍ଲବଗୁଡ଼ିକ ଗଢ଼ି ଉଠିଲା ଏବଂ ଏ ଚରମ ମତକୁ ପ୍ରସାର କରିବାରେ ଲାଗିଲା । ଏହି କ୍ଲବଗୁଡ଼ିକ ମଧ୍ୟରେ ଜାକୋବିନ୍ କ୍ଲବ (The Jacobin Club) ଓ କର୍ଡେଲିୟର କ୍ଲବ (The Cordelier Club) ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା । ଜାକୋବିନ୍ କ୍ଲବ ପ୍ରଥମରେ ନରମପନ୍ଥୀମାନଙ୍କର ଆଡ୍ଡାସ୍ଥଳୀ ଥିଲା । କିନ୍ତୁ ବିପ୍ଳବର ଅଗ୍ରଗତି ସଙ୍ଗେ ସଙ୍ଗେ ଏ କ୍ଲବର ସଭ୍ୟମାନେ ଅଧିକରୁ ଅଧିକ ଚରମପନ୍ଥୀ ହୋଇ ଯାଇଥିଲେ; ତେଣୁ ଚରମ ପନ୍ଥାକୁ ବିରୋଧ କରୁଥିବା ସଭ୍ୟମାନଙ୍କୁ କ୍ଲବରୁ ବାହାର କରି ଦିଆଯାଇଥିଲା ଓ ରୋବସ୍‌ପିୟରଙ୍କ ଭଳି ଉଗ୍ର ଗଣତନ୍ତ୍ରବାଦୀମାନଙ୍କ ପ୍ରଭୁତ୍ୱ ବିସ୍ତାର ପାଇଁ ବାଟ ଫିଟାଇ ଦିଆଯାଇଥିଲା । ରୋବସ୍‌ପିୟରର ମଧ୍ୟ ଚତୁରତା ସହିତ ଏ କ୍ଲବ ଜରିଆରେ ଦେଶର ବିଭିନ୍ନ ଚରମ ମତବାଦୀମାନଙ୍କୁ ଏକାଠି କରିବା ଉଦ୍ଦେଶ୍ୟରେ ତାଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । କିଛି-

ଦିନ ପରେ ଜାକୋବିନ୍ କ୍ଳବ ଏପରି ପ୍ରଭାବଶାଳୀ ହୋଇଉଠିଲା ଯେ ଏହା କ୍ରମେ କ୍ରମେ ବିଧାନ ସଭାର ପ୍ରତିଦ୍ୱନ୍ଦ୍ୱୀ ଭାବରେ ଛିଡ଼ାହେଲା । ଅନ୍ୟ ଦିଗରେ ଡାନ୍‌ଟନଙ୍କ ଦ୍ୱାରା ପରିଚାଳିତ କର୍ଡେଲିୟର କ୍ଳବ ପ୍ରଥମରୁ ଚରମପନ୍ଥୀ ଥିଲା ଏବଂ ଏହାର ସଭ୍ୟମାନେ ସମାଜର ନିମ୍ନ ସ୍ତରରୁ ନିଆହୋଇଥିଲେ ଓ ଏହା ସାଧାରଣତନ୍ତ୍ରବାଦ ପ୍ରଚାରର ଏକ କ୍ଷେତ୍ର ହୋଇଥିଲା ।

ଏହି କ୍ଳବଗୁଡ଼ିକରେ ଉପସ୍ଥିତ ରାଜନୈତିକ ପ୍ରଶ୍ନମାନ ଆଲୋଚନା କରାଯାଉଥିଲା; ତେଣୁ ସେମାନେ ଶକ୍ତିଶାଳୀ ଅସ୍ତ୍ରରୂପେ ଜନମତକୁ ପ୍ରଭାବିତ କରୁଥିଲେ । ବିଧାନ ସଭାର କାର୍ଯ୍ୟକଳାପ ଯେତେଦିନ ପର୍ଯ୍ୟନ୍ତ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ନ ଯାଉଥିବ, ସେତେଦିନ ପର୍ଯ୍ୟନ୍ତ ସେମାନେ ବିଧାନ ସଭାକୁ ସମର୍ଥନ କରିବେ । କିନ୍ତୁ ସେ କ୍ଳବଗୁଡ଼ିକ ନିଜ ଇଚ୍ଛାରେ ପରିଚାଳିତ ହେଉଥିଲେ ଏବଂ ଦରକାର ପଡ଼ିଲେ ବିଧାନ ସଭା ଉପରେ ପ୍ରାଧାନ୍ୟ ବିସ୍ତାର କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଉଥିଲେ ।

ବିଧାନ ସଭାର ସଭ୍ୟମାନେ ବିଭିନ୍ନ ଦଳରେ ସାମିଲ ହୋଇଥିଲେ । ବିପ୍ଳବର ଅଧୋଗତିର ଅତି କୌତୂହଳଜନକ ପ୍ରମାଣ ମିଳିଲା, ଯେତେବେଳେ ସମ୍ବିଧାନ ସଭାରେ ଚରମପନ୍ଥୀ ବୋଲି ପରିଚିତ ଫ୍ୟୁଲଣ୍ଟମାନେ ବିଧାନ ସଭା ଗୃହର ଦକ୍ଷିଣ ପଟେ ବସି ସମ୍ବିଧାନ ସଭା ଦ୍ୱାରା ଗୃହୀତ ହୋଇଥି । ୧୭୯୧ ମସିହାର ନୂତନ ସମ୍ବିଧାନକୁ ସମର୍ଥନ କଲେ ଓ ସମ୍ବିଧାନ-ଧାର୍ଯ୍ୟ ସୀମିତ ରାଜତନ୍ତ୍ରକୁ ବଞ୍ଚାଇ ରଖିବାକୁ ଚାହିଁଲେ । ସଭାଗୃହର ମଧ୍ୟସ୍ଥଳରେ ବସିଥିଲେ ଅଧିକାଂଶ ସଭ୍ୟ ଏବଂ ସେମାନେ କୌଣସି ଦଳଭୁକ୍ତ ନଥିଲେ କି କୌଣସି ଦଳକୁ ସମର୍ଥନ କରିବାକୁ ପ୍ରତିଶ୍ରୁତି ଦେଇନଥିଲେ; କିନ୍ତୁ ଯେ କୌଣସି ମୁହୂର୍ତ୍ତରେ, ଯେ କୌଣସି ଦଳର ଭାଷଣ ଦ୍ୱାରା ପ୍ରଭାବିତ ହୋଇ ସେ ଦଳକୁ ସମର୍ଥନ କରିବାକୁ ସେମାନେ ପଶ୍ଚାତ୍‌ପଦ ହେଉନଥିଲେ । ସଭାଗୃହର ବାମ ପଟରେ ବସିଥିଲେ ଜାକୋବିନ୍‌ସ ଦଳ ଏବଂ ଏଥିରେ ସାମିଲ ହୋଇଥିଲେ ବିକ୍ଷୁବ୍ଧ ଜନତାର ଅନୁଗ୍ରହ ଉପରେ ନିର୍ଭର କରୁଥିବା ସମସ୍ତ ଚରମପନ୍ଥୀ । ଏହି ଦଳ ପାଖକୁ ବସିଥିଲେ ଗିରନ୍‌ଡ଼ିନ୍-ମାନେ (Girondins) । ଏହି ଗିରନ୍‌ଡ଼ିନ୍ ଦଳରେ ଯୋଗ ହୋଇଥିଲେ ତରୁଣ ସାମ୍ବାଦିକ ଓ ଓକିଲମାନେ ଏବଂ ଜାକୋବିନ୍‌ମାନଙ୍କ ପରି ଏମାନେ ରାଜତନ୍ତ୍ରବିରୋଧୀ ଥିଲେ ମଧ୍ୟ ଏମାନଙ୍କର ମଧ୍ୟବିତ୍ତଶ୍ରେଣୀ ମନୋଭାବ (ବୁର୍ଜୁଆ ମନୋଭାବ ଯୋଗୁଁ ଏମାନେ ଜନତା ଉପରେ ନିର୍ଭର କରି ରହିବାକୁ ଘୃଣା କରୁଥିଲେ । ଏମାନଙ୍କ ମଧ୍ୟରେ ଅନେକେ ଆବେଗପୂର୍ଣ୍ଣ ବକ୍ତୃତା ଦେଇପାରୁଥିଲେ ଏବଂ ଏମାନଙ୍କର ଧ୍ୱନି (watch word) ଥିଲା—ସ୍ୱାତନ୍ତ୍ର୍ୟ, ସାମ୍ୟ, ମୈତ୍ରୀ (lib ty, equality, fraternity) । ମ୍ୟାଡ଼ାମ ରୋଲାଣ୍ଡ ଏମାନଙ୍କର ପ୍ରେରଣାର ଉତ୍ସ ଥିଲେ ଏବଂ ତାଙ୍କର ବୈଠକଖାନାରେ ଗିରନ୍‌ଡ଼ିନ୍‌ମାନେ ସଭା

କରୁଥିଲେ । ସୁତରଂ ଜାକୋବିନ୍‌ମାନେ ଥିଲେ ଚରମପନ୍ଥୀ ସାଧାରଣତନ୍ତ୍ରବାଦୀ ଏବଂ ଗିରନ୍‌ଡିନ୍‌ମାନେ ଥିଲେ ନରମପନ୍ଥୀ ସାଧାରଣତନ୍ତ୍ରବାଦୀ ।

ମୋଟ ଉପରେ କହିବାକୁ ଗଲେ ରାଜା ଓ ତାଙ୍କର ଫୁୟାଲାଣ୍ଟ ମନ୍ତ୍ରୀମାନଙ୍କ ଉପରେ ବିଧାନ ସଭାର ବହୁ ସଭ୍ୟଙ୍କର ଆସ୍ଥା ରହିଲା ନାହିଁ ଏବଂ ସମ୍ବିଧାନର ଅନ୍ତର୍ନିହିତ ଦୋଷ ସବୁ ସେମାନଙ୍କର ଦୃଷ୍ଟିରେ ପଡ଼ିବାକୁ ଲାଗିଲା । ଗିରନ୍‌ଡିନ୍‌ମାନେ ଏବଂ ଜାକୋବିନ୍‌ମାନେ ଯେ କେବଳ ସୀମିତ ରାଜତନ୍ତ୍ରର ବିରୋଧୀ ଥିଲେ ତାହା ନୁହେଁ ସମ୍ବିଧାନକୁ ମଧ୍ୟ ବିରୋଧ କରିବସିଲେ ରକ୍ଷଣଶୀଳମାନେ (Conservatives) ବିଦେଶାଗତ ସମ୍ଭ୍ରାନ୍ତ ଲୋକେ ସେମାନଙ୍କର ସମ୍ପତ୍ତି ଓ ବିଶେଷ ଅଧିକାର ସବୁ ହରାଇଥିବାରୁ ସେମାନେ ପ୍ରତିଶୋଧ ନେବାକୁ ବଦ୍ଧପରିକର ଥିଲେ । ସେମାନେ ବୈପ୍ଲବିକ ପରିବର୍ତ୍ତନର ସର୍ବନାଶ ପାଇଁ ଏବଂ ବିଦେଶୀ ଶକ୍ତିମାନଙ୍କର ସାହାଯ୍ୟରେ ପୁରାତନ ଶାସନ ପଦ୍ଧତିର ପୁନଃ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଯୋଜନା ପ୍ରସ୍ତୁତ କରୁଥିଲେ । ରାଜାଙ୍କର ପାରିଷଦମାନେ ତାଙ୍କର ଅନୁଗାମୀ ଥାଇ ସେମାନଙ୍କର ଯୋଜନା ପ୍ରତି ସହାନୁଭୂତି ଦେଖାଇଥିଲେ । ଦକ୍ଷିଣ-ଫ୍ରାନ୍‌ସର କୃଷକମାନେ ୧୭୯୧ ମସିହା ସମ୍ବିଧାନରେ ସ୍ଥାନ ପାଇଥିବା "ସିଭିଲ କନଷ୍ଟିଚ୍ୟୁସନ୍ ଅଫ୍ କ୍ଲର୍ଜି" ନାମକ ଆଇନ ଗ୍ରହଣ ନ କରିଥିବା ଧର୍ମଯାଜକମାନଙ୍କର (non-jurors) ପ୍ରବୃତ୍ତି ଦ୍ୱାରା ପ୍ରଭାବିତ ହୋଇ, ସମ୍ବିଧାନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ଏବଂ ନୂତନ ଶାସନ ପ୍ରଣାଳୀ ବିରୁଦ୍ଧରେ ସଂଗ୍ରାମ ଚଳାଇବା ପାଇଁ ପ୍ରସ୍ତୁତ ହେଉଥିଲେ ।

ଗିରନ୍‌ଡିନ୍‌ମାନେ ସୀମିତ ରାଜତନ୍ତ୍ରକୁ ବଦନାମ କରିବା ପାଇଁ କୌଶଳୀ ଓ ନିର୍ଭୀକ ନୀତି ଅବଲମ୍ବନ କରିଥିଲେ । ସେମାନେ ଗୋଟିଏ ଆଇନ୍ ପ୍ରଣୟନ କଲେ ଏବଂ ସେଥିରେ କୁହାଗଲା ଯେ ଯେଉଁ ସ୍ୱଦେଶତ୍ୟାଗୀମାନେ ୧୭୯୨ ମସିହା ଜାନୁଆରୀ ୧ତାରିଖ ସୁଦ୍ଧା ଫ୍ରାନ୍‌ସକୁ ଫେରି ନ ଆସିଥିବେ, ସେମାନଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯିବ ଓ ସେମାନଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବ । ସେମାନେ ଅନ୍ୟ ଏକ ଆଇନ ପ୍ରଣୟନ କଲେ ଏବଂ ସେଥିରେ ସବୁ ଧର୍ମଯାଜକଙ୍କୁ ଏକ ସପ୍ତାହ ମଧ୍ୟରେ "ସିଭିଲ କନଷ୍ଟିଚ୍ୟୁସନ୍ ଅଫ୍ କ୍ଲର୍ଜି" ନାମକ ଆଇନ ଗ୍ରହଣ କଲେ ବୋଲି ଶପଥ ନେବାକୁ କୁହାଗଲା । ତାହା ନକଲେ ସେମାନେ ସେମାନଙ୍କର ଜୀବିକା ବା ପେନ୍‌ସନ ହରାଇବେ ଓ ସେମାନଙ୍କୁ ସନ୍ଦେହଜନକ ବ୍ୟକ୍ତି ବୋଲି ଧରାଯିବ । ତା ଛଡ଼ା କୌଣସି ଗଣ୍ଡଗୋଳ ଉପୁଜିଲେ ସେମାନଙ୍କୁ ସେମାନଙ୍କର ଜିଲ୍ଲାରୁ ବହିଷ୍କାର କରିଦିଆଯିବ ।

ରାଜା କିନ୍ତୁ ଏହି ଦୁଇଟି ଆଇନକୁ ସ୍ଥଗିତ ରଖିବା କ୍ଷମତା (suspensive veto) ବଳରେ ଅଗ୍ରାହ୍ୟ କରିଦେଲେ । ଏହାଦ୍ୱାରା ଜନମତକୁ ରାଜା ଉପେକ୍ଷା କଲେ ଏବଂ ରାଜା ସମ୍ବିଧାନକୁ ସମର୍ଥନ କରୁଥିବାର ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତାହା ଉପରେ ସାଧାରଣ ଜନତାର ଆଉ ଆସ୍ଥା ରହିଲା ନାହିଁ । ଫଳରେ ରାଜତନ୍ତ୍ର ପ୍ରତି ବୈରଭାବ ଦିନକୁ

ଦିନ ବଢ଼ି ବାରେ ଲଗିଲା ଓ ଚରମପନ୍ଥୀମାନେ ମୁକ୍ତକଣ୍ଠରେ ସାଧାରଣତନ୍ତ୍ରବାଦୀ ବୋଲି ଘୋଷଣା କଲେ । ଠିକ୍ ଏହି ସମୟରେ ରାଜତନ୍ତ୍ରକୁ ଧ୍ୱଂସ କରିଦେବା ଉଦ୍ଦେଶ୍ୟରେ ଗିରନ୍‌ଡ଼ିନ୍‌ମାନେ ବିଦେଶୀ ଶତ୍ରୁମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ସୁଯୋଗ ପାଇଲେ । ସେମାନଙ୍କର ନିଜ ସ୍ୱାର୍ଥକୁ ବାଦ୍ ଦିଆଗଲେ, ଦେଖାଯିବ ଯେ ସେମାନଙ୍କର ଏ ଯୁଦ୍ଧ ଲଗାଇବାରେ ଦୁଇଟି ଉଦ୍ଦେଶ୍ୟ ଥିଲା । ଗୋଟିଏ ଉଦ୍ଦେଶ୍ୟ ହେଲା—ବାହାର ଦୁନିଆରେ ସ୍ୱାଧୀନତାର ପ୍ରସାର ଏବଂ ଅନ୍ୟ ଉଦ୍ଦେଶ୍ୟଟି ହେଲା—ରାଜାଙ୍କର ପ୍ରକୃତ ରୂପକୁ ପଦାରେ ପକାଇବା । ସେମାନେ ତର୍କ କଲେ ଯେ, ଯଦି ରାଜାଙ୍କୁ ତାଙ୍କ ସାଥୀ ରାଜାମାନଙ୍କ (brother-monarchs) ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ବାଧ୍ୟ କରାଯାଏ ଏବଂ ତାଙ୍କର ସ୍ୱଦେଶତ୍ୟାଗୀ ବନ୍ଧୁମାନଙ୍କ ସହିତ ସମ୍ପର୍କ ଛିନ୍ନ କରାଯାଏ, ତାହାହେଲେ ସେମାନେ ରାଜାଙ୍କୁ ବିଶ୍ୱାସଘାତକତା ଅପରାଧରେ ଅପରାଧୀ ସାବ୍ୟସ୍ତ କରିବାରେ ଆଉ ବିଳମ୍ବ ହେବନାହିଁ ।

ସେମାନଙ୍କର ତେଜସ୍ୱୀ ବକ୍ତୃତା ଫଳରେ ୧୭୯୨ ମସିହା ମାର୍ଚ୍ଚମାସରେ ଫ୍ୟୁଲାଣ୍ଟ ମନ୍ତ୍ରିମଣ୍ଡଳର ପତନ ହେଲା ଏବଂ ରାଜା ଗିରନଡ଼ିନ୍‌ମାନଙ୍କ ମଧ୍ୟରୁ ମନ୍ତ୍ରୀମାନଙ୍କୁ ବାଛିବାକୁ ବାଧ୍ୟ ହୋଇଥିଲେ । ନୂଆ ମନ୍ତ୍ରୀମାନଙ୍କ ମଧ୍ୟରେ ଡୁମୁରିଜ (Dumouriez) ଏବଂ ରୋଲାଣ୍ଡ (Roland) ଅତି ଶକ୍ତିଶାଳୀ ଥିଲେ । ଡୁମୁରିଜ୍ ଗୋପନରେ ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ରୋଲାଣ୍ଡଙ୍କ ପତ୍ନୀ ମ୍ୟାଡ଼ାମ୍ ରୋଲାଣ୍ଡ ତାଙ୍କ ଦଳର ମନ୍ତ୍ରଣା ସଭା ଉପରେ ପୂର୍ବାପେକ୍ଷା ଅଧିକ ପ୍ରଭାବ ବିସ୍ତାର କରିଥିଲେ ।

ବଡ଼ ବିଚିତ୍ର କଥା ଯେ, ଦକ୍ଷିଣପନ୍ଥୀମାନେ ମଧ୍ୟ ଯୁଦ୍ଧ ସପକ୍ଷରେ ଥିଲେ । ଅବଶ୍ୟ ଗିରନ୍‌ଡ଼ିନ୍‌ମାନେ ଯେଉଁ କାରଣରୁ ଯୁଦ୍ଧ ଚାହୁଁଥିଲେ, ସେମାନେ ତାହାର ଠିକ୍ ବିପରୀତ କାରଣରୁ ଯୁଦ୍ଧକୁ ସମର୍ଥନ କରୁଥିଲେ । ସେମାନେ ଆଶା ବାନ୍ଧିଥିଲେ ଯେ ଯୁଦ୍ଧଦ୍ୱାରା ହିଁ ସେମାନେ ରାଜତନ୍ତ୍ରକୁ ଅଧିକ ଶକ୍ତିଶାଳୀ କରିପାରିବେ । ଜାକୋବିନ୍ ଦଳରେ ମାରାଟ୍, ରୋବସ୍‌ପୀୟର ପ୍ରଭୃତି କେତେକ ଯୁଦ୍ଧବିରୋଧୀ ଥିଲେ । ମାରାଟ ସାଧାରଣ-ତନ୍ତ୍ରବାଦୀମାନଙ୍କର ଉତ୍ସାହକୁ ଯୁଦ୍ଧ ଆଡ଼କୁ ଟାଣିନେବାକୁ ଚାହୁଁନଥିଲେ । ଏହାଛଡ଼ା ତାଙ୍କର ବିଶ୍ୱାସ ଜନ୍ମିଥିଲା ଯେ ଯୁଦ୍ଧ ଏକଚ୍ଛତ୍ରବାଦ ଶାସନକୁ ଡାକିଆଣିବ । ରୋବସ୍‌ପୀୟର ମଧ୍ୟ ଯୁଦ୍ଧର ବିରୋଧ କରିଥିଲେ । ସେ ଜାକୋବିନ୍ କ୍ଲବ୍‌ରେ ଘୋଷଣା କଲେ, "ଆମ ନିଜ ବ୍ୟାପାରଗୁଡ଼ିକ ସଜାଡ଼ିବା ହେଉଛି ଆମର କାମ ଓ ଅନ୍ୟମାନଙ୍କୁ ସ୍ୱାଧୀନତା ଦେବାକୁ ଚାହିଁବା ପୂର୍ବରୁ ଆଗ ନିଜ ପାଇଁ ସେ ସ୍ୱାଧୀନତା ହାସଲ କରିବା ଦରକାର ।" ("The thing for us to do," declared Robespierre at the Jacobin Club, "is to set our affairs in order and to acquire liberty for ourselves before offering it to others.") ବିଧାନ ସଭାର ବାହାରେ ରୋବସ୍‌ପୀୟରଙ୍କ ସହିତ ଅନ୍ୟ କେତେକ ଜାକୋବିନ୍ ରେକଠୋକ୍ ଭାବରେ

କହିଲେ ଯେ, ଯୁଦ୍ଧ ଲାଗିଗଲେ ଦରିଦ୍ରମାନଙ୍କର ଦୁର୍ଦ୍ଦଶା ଦିନକୁ ଦିନ ବଢ଼ିବ ଏବଂ ଆଭ୍ୟନ୍ତରୀଣ ସଂସ୍କାରଗୁଡ଼ିକ ସ୍ଥଗିତ ରହିଯାଇବ । କିନ୍ତୁ ଅନେକ ଜାକୋବିନ୍ ରାଜତନ୍ତ୍ରର ଧ୍ୱଂସସାଧନ ନିମନ୍ତେ ଯୁଦ୍ଧକୁ ସ୍ୱାଗତ କରିଥିଲେ । ସେ ଯାହାହେଉ ଗିରନ୍ଡିନ୍ମାନଙ୍କର ତେଜସ୍ୱୀ ଭାଷଣ ଫଳରେ ବିଧାନ ସଭାର ଅଧିକାଂଶ ସଭ୍ୟ ଯୁଦ୍ଧ ଉନ୍ମାଦନାରେ ମାତି-ଉଠିଲେ । ଯେତେବେଳେ ବିଧାନ ସଭାର ସବୁଦଳ ଯୁଦ୍ଧ ଘଟାଇବା ପାଇଁ ଆଗ୍ରହ ପ୍ରକାଶ କଲେ, ସେତେବେଳେ ଡ଼ମଣଙ୍କ ଅଷ୍ଟ୍ରିଆର ନୂତନ ସମ୍ରାଟ ଫ୍ରାନ୍ସିସଙ୍କ (Francis) ତାଙ୍କ ଦେଶରେ ବସବାସ କରୁଥିବା ଫ୍ରାନ୍ସର ଦେଶତ୍ୟାଗୀମାନଙ୍କୁ ଛଡ଼ିଦେବା ପାଇଁ ଦାବି କରି ଖଣ୍ଡିଏ ଚରମପତ୍ର ଦେଇଥିଲେ । ଫ୍ରାନ୍ସିସ୍ ସେଥିର ଉତ୍ତର ନ ଦେଇ ଖଣ୍ଡିଏ ଚଠିରେ ଫ୍ରାନ୍ସର ବିପ୍ଳବକୁ ଦୋଷ ଦେଇ ଜର୍ମାନ ରାଜାମାନଙ୍କର ଆଲ୍‌ସେସ୍‌ରେ (Alsace) (ସାମନ୍ତପ୍ରଥାଜନିତ) ଯେଉଁ ସବୁ ନ୍ୟାଯ୍ୟ ଅଧିକାର ଥିଲା ସେଗୁଡ଼ିକ ଫେରାଇ ଦେବା ପାଇଁ ଏବଂ ଅନ୍ୟ ରାଷ୍ଟ୍ରମାନଙ୍କୁ ଆତଙ୍କିତ କଲାଭଳି ସବୁ କାର୍ଯ୍ୟକ୍ରମକୁ ଫ୍ରାନ୍ସରେ ବନ୍ଦ କରିଦେବା ପାଇଁ ଦାବି କରିଥିଲେ । ଫ୍ରାନ୍ସିସ୍‌ଙ୍କଠାରୁ ଏପରି ଏକ ଚଠି ମିଳିବାପରେ ବିଧାନ ସଭାରେ ଯୁଦ୍ଧ ଘୋଷଣା ପ୍ରସ୍ତାବ ଆଗତ କରାଗଲା; ମାତ୍ର ସାମାନ୍ୟ କେତେଜଣ ପ୍ରତିନିଧିଙ୍କୁ ବାଦ୍ ଦେଲେ ଆଉ ସମସ୍ତେ ଯୁଦ୍ଧ ସପକ୍ଷରେ ଭୋଟ ଦେଇଥିଲେ । ସୁତରାଂ ରାଜା ଷୋଡ଼ଶ ଲୁଇ ବାଧ୍ୟ ହୋଇ ଫ୍ରାନ୍ସର ରାଣୀଙ୍କର ପୁତୁରା ଅଷ୍ଟ୍ରିଆର ସମ୍ରାଟ ଫ୍ରାନ୍ସିସ୍‌ଙ୍କ ବିରୁଦ୍ଧରେ ୧୭୯୨ ମସିହା ଅପ୍ରେଲ ୨୦ ତାରିଖ ଦିନ ଆନୁଷ୍ଠାନିକ ଭାବରେ ଯୁଦ୍ଧ ଘୋଷଣା କଲେ ।

ଏହି ଯୁଦ୍ଧ ୨୩ ବର୍ଷ ପର୍ଯ୍ୟନ୍ତ ଧାରାବାହିକ ଭାବରେ ଚାଲିଥିଲା । ଏହା ଫ୍ରାନ୍ସକୁ ଅରାଜକତା ଏବଂ ଆତଙ୍କରାଜ ମଧ୍ୟ ଦେଇ ପରିଚାଳିତ କରି ସାମରିକ ଏକଚ୍ଛତ୍ରବାଦ ପ୍ରତିଷ୍ଠା କଲା ଏବଂ ଅବଶେଷରେ ଓ୍ୱାଟର ଲୁ (Water loo) ସଂଗ୍ରାମ ପାଇଁ ପଥ ପରିଷ୍କାର କରିଦେଲା ।

ଜନତାର ପ୍ରାଧାନ୍ୟ ଓ ବୁର୍ଜୁଆ ରାଜତନ୍ତ୍ରର ପତନ ( The Supremacy of the populace and the downfall of the Bourgeois Monarchy)—

ଗିରନ୍ଡିନ୍ମାନେ ଯେଉଁଭଳି ରାଜତନ୍ତ୍ରର ଅବସାନ ଚାହୁଁଥିଲେ, ଠିକ୍ ସେହିଭଳି ଅବସାନ ଘଟିନଥିଲା । କାରଣ ଯୁଦ୍ଧଘୋଷଣା ପର୍ଯ୍ୟନ୍ତ କେହି ରାଜାଙ୍କର ବିଦେଶୀ ଶତ୍ରୁମାନଙ୍କ ସହିତ ପତ୍ର ବିନିମୟର ସନ୍ଧାନ ପାଇ ପାରିନଥିଲେ । କିନ୍ତୁ ଗଣବିକ୍ଷୋଭ ମାଧ୍ୟମରେ ଯୁଦ୍ଧ ସେମାନଙ୍କର ଉଦ୍ଦେଶ୍ୟ ପୂରଣ କରିଥିଲା ।

ବାସ୍ତବିକ୍ ଯୁଦ୍ଧ ଆରମ୍ଭରେ ଗିରନ୍ଡିନ୍ମାନଙ୍କୁ ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିଲା । ଫ୍ରାନ୍ସର ସୈନ୍ୟମାନେ ପ୍ରଥମେ ଅଷ୍ଟ୍ରିଆନ୍ ନେଦରଲାଣ୍ଡ

(ବେଲଜିୟମ) ଆକ୍ରମଣ କଲେ ମଧ୍ୟ ଶତ୍ରୁ ସୈନ୍ୟମାନେ ସେମାନଙ୍କର ପାଖାପାଖି ହେଲା ମାତ୍ରେ ସେମାନେ ଛତ୍ରଭଙ୍ଗ ଦେଲେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସମ୍ମୁଖ ପଟରେ ଥିବା ଫ୍ରାନ୍‌ସର ସୈନ୍ୟଦଳ ଶତ୍ରୁକୁ ମୁକାବିଲା କରିବା ଅବସ୍ଥାରେ ନଥିଲେ । ତେଣୁ ଅଷ୍ଟ୍ରିଆ ଜୟଲାଭ କଲା । ଅଷ୍ଟ୍ରିଆ ଯୁଦ୍ଧ ଆରମ୍ଭରେ ବିଜୟ ହାସଲ କଲା ପରେ ଯଦି ଦୃଢ଼ତାର ସହିତ ଅଗ୍ରସର ହେବା ପାଇଁ ପ୍ରସ୍ତୁତ ହୋଇଥାନ୍ତା, ତାହାହେଲେ ଫ୍ରାନ୍‌ସକୁ ସିଧାସଳଖ ଆକ୍ରମଣ କରି ପାରିଥାନ୍ତା । ସରକାରୀ ସ୍ତରରେ ଫ୍ରାନ୍‌ସର ବିପର୍ଯ୍ୟୟ ପାଇଁ ଜଣେ ଅନ୍ୟ ଜଣକ ଉପରେ ଦୋଷ ଲଦି ଦେଉଥିଲାବେଳେ, ରାଜା ବିଧାନ ସଭାରେ ଗୃହୀତ ହୋଇଥିବା ଦୁଇଟି ଆଇନ (two decrees)କୁ ସ୍ଥଗିତ ରଖିବା କ୍ଷମତା (suspensive veto) ବଳରେ ଅଗ୍ରାହ୍ୟ କରି ଗିରୋଣ୍ଡିନ୍‌ମାନଙ୍କୁ ରାଗାଇଦେଇଥିଲେ । ଫଳରେ ରାଜା ଏବଂ ଗିରୋଣ୍ଡିନ୍‌ମାନଙ୍କ ମଧ୍ୟରେ ଭୀଷଣ କଳହ ଉପୁଜିଲା ଓ ରାଜା ଏହାର ସୁଯୋଗ ନେଇ ଗିରୋଣ୍ଡିନ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିଥିଲେ । ଗିରୋଣ୍ଡିନ୍‌ମାନେ ଏଥିରେ ଉତ୍‌କ୍ଷିପ୍ତ ହୋଇ ଏହାର ପ୍ରତିଶୋଧ ନେବା ପାଇଁ ପ୍ରତୀକ୍ଷା କରିଥିଲେ । ସେମାନେ ରାଜାଙ୍କ ବିରୁଦ୍ଧରେ କୌଣସି ପଦକ୍ଷେପ ନେବା ପୂର୍ବରୁ ବିକ୍ଷୁବ୍ଧ ଜନତା ରାଜାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଲା । ସେମାନେ ଯେତେବେଳେ ୧୭୯୨ ମସିହା ଜୁନ୍ ୨୦ ତାରିଖ ଦିନ ଜୋର୍‌ଜବରଦସ୍ତି ରାଜାଙ୍କର ଟିଉଲରିସ୍ (Tuileries) ପ୍ରାସାଦରେ ପ୍ରବେଶ କଲେ ଓ ରାଜାଙ୍କୁ ଘାଉଡ଼ନ ଘେରାଉ କରି ରଖି ଆମ୍ବ ଲା ମଦ ପିଇବାକୁ ବାଧ୍ୟ କଲେ ଏବଂ ତାଙ୍କର ମୁଣ୍ଡରେ ଲାଲରଙ୍ଗ ଟୋପି ପିନ୍ଧାଇଦେଲେ । ସେ ଯାହାହେଉ ବିକ୍ଷୋଭର ଉଦ୍ଦେଶ୍ୟ ଏଥିରେ ସାଧନ ହୋଇନଥିଲା । ରାଜାଙ୍କର ନିର୍ଭୀକତା ହିଁ ରାଜାଙ୍କୁ ରକ୍ଷା କରିଥିଲା । ତାଙ୍କ ଉପରେ ଯେତେ ଚାପ ପଡ଼ିଲେ ମଧ୍ୟ ସେ ବରଖାସ୍ତ ହୋଇଥିବା ଗିରୋଣ୍ଡିନ୍ ମନ୍ତ୍ରିମାନଙ୍କୁ ପୁନଃ ନିଯୁକ୍ତି ଦେଇନଥିଲେ କି ଦୁଇଟି ଆଇନ ଉପରେ ପ୍ରୟୋଗ କରାଯାଇଥିବା ସ୍ଥଗିତ ରଖିବା କ୍ଷମତା (suspensive veto) ପ୍ରତ୍ୟାହାର କରିନଥିଲେ । ଏହି ଉପାଖ୍ୟାନଟି ଫ୍ରାନ୍‌ସରେ ଆରମ୍ଭ ହେବାକୁ ଯାଉଥିବା ଏକବର୍ଷର ଅରାଜକତାର ସୂଚନା ଦେଇଥିଲା; ଯାହା ଫଳରେ କି ସମସ୍ତ ସରକାରୀ କର୍ତ୍ତୃପକ୍ଷଙ୍କୁ (public authorities) ପ୍ୟାରିସ୍‌ର ନିମ୍ନସ୍ତରର ଲୋକମାନଙ୍କର ଖିଆଲଖିଆଲ ଉପରେ ନିର୍ଭର କରି ଚଳିବାକୁ ପଡ଼ିଲା ।

ରାଜାଙ୍କର ବିପଦରୁ ରକ୍ଷା ପାଇବା ପାଇଁ ଏକମାତ୍ର କ୍ଷୀଣ ଆଶା ଥିଲା । ସମ୍ମୁଖ-ପଟରେ ଥିବା ସେନାନାୟକମାନଙ୍କ ମଧ୍ୟରୁ ଲାଫାୟେଟ୍ ପ୍ୟାରିସ୍‌କୁ ଧାଇଁଆସିଥିଲେ ଏବଂ ଜୁନ୍ ୨୦ ତାରିଖ ଉପଦ୍ରବ ପାଇଁ ଯେଉଁମାନେ ଦାୟୀ, ସେମାନଙ୍କୁ ଶାସ୍ତିଦେବାକୁ ଦାବି କରିଥିଲେ । ତା ଛଡ଼ା ସେ ଏଥିପାଇଁ ଖୋଲାଖୋଲି ଭାବରେ ଜାକୋବିନ୍ କ୍ଳବ୍ ଉପରେ ଦୋଷାରୋପ କରିଥିଲେ । ସେ ମଧ୍ୟ ଜାତୀୟ ରକ୍ଷୀବାହିନୀରେ ଥିବା ଅନୁଗତମାନଙ୍କୁ ଆହ୍ୱାନ ଦେଇ ସରକାରଙ୍କର ସ୍ଥିତି ସୁଦୃଢ଼ କରିବାକୁ ଆଶାପୋଷଣ କରିଥିଲେ । କିନ୍ତୁ

ରାଜା ଓ ରାଣୀ ତାଙ୍କ କଥାରେ ବିଶ୍ୱାସ ନକରି ଅବିବେକତାର ପରିଚୟ ଦେଇଥିଲେ । ରାଣୀ ସ୍ପଷ୍ଟ କହିଥିଲେ ଯେ ବରଂ ସେ ମୃତ୍ୟୁ ବରଣ କରିବେ, କେବେହେଲେ ସେନାନାୟକ ଲଫାୟେତ୍ଙ୍କଠାରୁ ସାହାଯ୍ୟ ଗ୍ରହଣ କରିବେ ନାହିଁ । ସେ ଆତ୍ମସନ୍ତୋଷ ପାଇଁ ସେନାନାୟକ ଲଫାୟେତ୍ଙ୍କ ଗୁପ୍ତ ପରାମର୍ଶ ମଧ୍ୟ ପ୍ରକାଶ କରିଦେଲେ । ତେଣୁ ବିଫଳ-ମନୋରଥ ହୋଇ ଲଫାୟେତ୍ ଯେଉଁଠାରେ ସେନାନାୟକ ହିସାବରେ ଅବସ୍ଥାପିତ ହୋଇଥିଲେ ସେଠାକୁ ଫେରିଗଲେ । ରାଜାଙ୍କୁ ରକ୍ଷା କରିବା ନିମିତ୍ତ ସେ ଆଉ ଥରେ ବୃଥା ଉଦ୍ୟମ କଲା ପରେ, ଘଟଣାର ଗତି ନିକଟରେ ମୁଣ୍ଡ ନୁଆଁଇଲେ; ଯାହାର ଫଳରେ ସେ ଫ୍ରାନ୍ସ ଛାଡ଼ି ପଳାଇବାକୁ ବାଧ୍ୟ ହେଲେ ଏବଂ ଶେଷରେ ଅଷ୍ଟ୍ରିଆ ଦୁର୍ଗରେ ବନ୍ଦୀ ମଧ୍ୟ ହେଲେ । ନିଃସନ୍ଦେହରେ କୁହାଯାଇପାରିବ ଯେ ସେ ଜଣେ ଅତି ନିର୍ଭୀକ ପୁରୁଷ ଥିଲେ ଏବଂ ତାଙ୍କର ଯଦି ରାଜନୈତିକ ବିଚକ୍ଷଣତା ଥାଆନ୍ତା, ତାହାହେଲେ ସେ ବିପ୍ଳବର ଆରମ୍ଭ କାଳରେ ଅଧିକ ଦୃଢ଼ ପ୍ରଭାବ ପକାଇ ପାରିଥାଆନ୍ତେ ।

ଏ ପରିସ୍ଥିତିରେ ସମ୍ଭବତଃ ରାଜାଙ୍କ ବ୍ୟତୀତ ଅନ୍ୟ କେହି ରାଜତନ୍ତ୍ରକୁ ରକ୍ଷା କରିପାରିନଥାଆନ୍ତେ । ରାଜା କିନ୍ତୁ ଦେଖିଲେ ଯେ ଇଉରୋପରେ ଥିବା ତାଙ୍କ ସାଥୀ ରାଜାମାନଙ୍କୁ ବିପ୍ଳବର ଧ୍ୱଂସ ନିମନ୍ତେ ପ୍ରବର୍ତ୍ତାଇବା ଓ କେତେକ ଜନପ୍ରିୟ ନେତାଙ୍କୁ ଦୁର୍ନୀତିଗ୍ରସ୍ତ କରାଇବାକୁ ଉଦ୍ୟମ କରିବା ବ୍ୟତୀତ ତାଙ୍କ ସିଂହାସନକୁ ରକ୍ଷା କରିବାର ଆଉ କୌଣସି ଉପାୟ ନାହିଁ । ୧୭୯୨ ମସିହା ଜୁଲାଇ ମାସରେ ସବୁ କିଛି ସଙ୍କଟଜନକ ପରିସ୍ଥିତି ଆଡ଼କୁ ଗତି କରୁଥିବାର ମନେହେଲା । ଏକ ଦିଗରେ ପୁଷ୍ଟିକର ଖାଦ୍ୟ ପାଉନଥିବା ଲୋକେ ଧ୍ୱଂସାତ୍ମକ କାର୍ଯ୍ୟ ଆଡ଼କୁ ପରିଚାଳିତ ହେବାକୁ ପ୍ରସ୍ତୁତ ଥିଲେ; ଅନ୍ୟ ଦିଗରେ ଦେଶ ଉପରେ ଶତ୍ରୁ ଆକ୍ରମଣର ଧମକ ଯୋଗୁ ଫ୍ରାନ୍ସର ଚାରିଆଡ଼େ ବିଷାଦର ଛାୟା ଖେଳିଯାଇଥିଲା । ଜୁଲାଇ ୧୧ ତାରିଖ ଦିନ ଦେଶ ବିପଦର ସମ୍ମୁଖୀନ ହୋଇଛି ବୋଲି ବିଧାନ ସଭା ଘୋଷଣା କରିଥିଲା ଏବଂ ଜାତୀୟ ରକ୍ଷୀବାହିନୀକୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବାକୁ ଡାକରା ଦିଆଯାଇଥିଲା (called to arms) । ଫ୍ରାନ୍ସର ବିପର୍ଯ୍ୟୟ ପାଇଁ ଲୋକେ ରାଜା ଷୋଡ଼ଶ ଲୁଇଙ୍କୁ ଦାୟୀ କରିଥିଲେ ଓ ସେମାନେ ଭାବିଥିଲେ ଯେ ଅଷ୍ଟ୍ରିଆର ସୈନ୍ୟମାନଙ୍କ ପ୍ରତି ତାଙ୍କର ସହାନୁଭୂତି ରହିଛି; କାରଣ ଅଷ୍ଟ୍ରିଆର ବିଜୟ ତାଙ୍କୁ ପ୍ୟାରିସ୍‌ର ବିକ୍ଷୁବ୍ଧ ଜନତାର କବଳରୁ ମୁକ୍ତ ଦେଇପାରିବ । ତେଣୁ କେତେକ ସାଧାରଣତନ୍ତ୍ରବାଦୀ ବକ୍ତା ରାଜାଙ୍କୁ ଅତ୍ୟାଚାରୀ ଆଖ୍ୟା ଦେଇଥିଲେ ଓ ଫ୍ରାନ୍ସର ବିପର୍ଯ୍ୟୟର ସ୍ରଷ୍ଟା କହିଥିଲେ । ପ୍ରାୟ ଏହି ସମୟରେ ଫ୍ରାନ୍ସର ବିଭିନ୍ନ ଜାଗାରୁ ଆସିଥିବା ଲୋକମାନେ ପ୍ୟାରିସ୍‌ର ବିକ୍ଷୁବ୍ଧ ଜନତା ସହିତ ଯୋଗ ଦେଇଥିଲେ । ସମସ୍ତେ ମିଳି ପ୍ୟାରିସ୍‌ର କମ୍ୟୁନ୍‌କୁ (ମ୍ୟୁନିସିପାଲିଟି) ଅଧିକାର କରି ନେଇଥିଲେ ଏବଂ ପ୍ୟାରିସ୍ କମ୍ୟୁନ୍ ପରିବର୍ତ୍ତରେ ଗୋଟିଏ ପରିଷଦ (council) ନିଜ ଇଚ୍ଛା ଅନୁସାରେ ଗଢ଼ିଥିଲେ । ଯେଉଁଥିରେ ପ୍ୟାରିସ୍ ସହରର ୪୮ଟା ସେକ୍‌ସନରୁ (ଅଂଶଗୁଡ଼ିକରୁ) ପ୍ରତିନିଧିମାନେ ରହିଥିଲେ ଏବଂ ଡାନ୍‌ଟନ ହୋଇଥିଲେ

ତାର ସେନାପତି । ଏହି ପରିଷଦରେ ସ୍ଥାନ ପାଇଥିଲେ ସର୍ବହରା ଲୋକେ । ଏହାକୁ ବୈପ୍ଳବିକ କମ୍ୟୁନ (Insurrectionary Commune) କୁହାଯାଉଥିଲା ଏବଂ ଏହା ଏକଛତ୍ର ଶାସନ ପ୍ରତିଷ୍ଠା କରିଥିଲା । ପ୍ୟାରିସ୍ ଏହା ସାହାଯ୍ୟରେ ବିଶୃଙ୍ଖଳ ଶାସନ ଚଳାଇବାରେ ଲାଗିଲା ଏବଂ ବିପ୍ଳବ ଉପରେ ପ୍ରାଧାନ୍ୟ ବିସ୍ତାର କରି ଫରାସୀ ଜାତିକୁ ତାର ଇଚ୍ଛାଧୀନ କରିଥିଲା ।

ବିସ୍ଫୋରଣ ପାଇଁ ମୌଳିକ ଉପାଦାନଗୁଡ଼ିକ ହାତ ନିକଟରେ ରହିଥିବାବେଳେ, ଜୁଲାଇ ୨୮ ତାରିଖର ବ୍ରନ୍ସୱିକଙ୍କର ପ୍ରକାଶ୍ୟ ଘୋଷଣାପତ୍ର (Brunswick Manifesto) ଏ ବିସ୍ଫୋରଣ ଘଟାଇବାରେ ଅଗ୍ନିଷ୍ଫୁଲିଙ୍ଗ ପରି କାର୍ଯ୍ୟ କରିଥିଲା । ପ୍ରୁସିଆର ସେନାପତି ଡ୍ୟୁକ୍ ଅଫ୍ ବ୍ରନ୍ସୱିକ ଅଷ୍ଟ୍ରିଆର ସମ୍ରାଟ ଓ ପ୍ରୁସିଆର ରାଜାଙ୍କ ପ୍ରରୋଚନାରେ ପକ୍ତ ଘୋଷଣାପତ୍ରରେ ଫ୍ରାନ୍ସ ଉପରେ ଆକ୍ରମଣ ଆସନ୍ନ ବୋଲି ପ୍ରକାଶ କରିଥିଲେ ଏବଂ ରାଜପରିବାରର କୌଣସି ଅନିଷ୍ଟ ଘଟିଲେ ପ୍ୟାରିସ୍ ସହରକୁ ଧ୍ୱଂସ କରି-ଦିଆଯିବ ବୋଲି ଧମକ ଦେଇଥିଲେ । ଏହି ଔଦ୍ଧତ୍ୟପୂର୍ଣ୍ଣ ଘୋଷଣାପତ୍ର ପ୍ୟାରିସ୍ ଜନତାକୁ ଅତିମାତ୍ରାରେ ଉତ୍ତେଜିତ କରିଥିଲା । ବିଧାନ ସଭାରେ ମଧ୍ୟ ରାଜାଙ୍କୁ ଗାଦିଚ୍ୟୁତ କରିବା ପାଇଁ ସ୍ୱର ଉତ୍ତୋଳନ ହୋଇଥିଲା । ଜୁଲାଇ ୩୦ ତାରିଖ ଦିନ ମାର୍ସାଇଲସ୍ର (Marseilles) ଗୋଟିଏ ଜାତୀୟ ରକ୍ଷୀବାହିନୀଦଳ ଗୀତ ଗାଇ ଗାଇ ପ୍ୟାରିସ୍‌ରେ ପହଞ୍ଚିଲେ ଓ ସେ ଗୀତକୁ ବିପ୍ଳବ-ସଙ୍ଗୀତ କୁହାଗଲା ଏବଂ ତାହାର ନାମ ଦିଆଗଲା ମାର୍ସାଇଲସ୍ । ଏହି ଦଳ ପହଞ୍ଚିଲାବେଳକୁ ପ୍ୟାରିସ୍ ସହରର ଶାସନରେ ପରିବର୍ତ୍ତନ ହୋଇସାରିଥାଏ । ରାଜାଙ୍କ ବିରୁଦ୍ଧରେ ଜୋର୍‌ସୋରରେ ପ୍ରଚାର ଚାଲିଥିବାବେଳେ, ପ୍ୟାରିସ୍ କମ୍ୟୁନର ନୂତନ ଶାସକଗୋଷ୍ଠୀ ମାର୍ସାଇଲ୍‌ସରୁ ଜାତୀୟ ରକ୍ଷୀବାହିନୀଦଳ ପହଞ୍ଚିବା ମାତ୍ରେ ନିଜକୁ ନବ ବଳରେ ବଳୀୟାନ୍ ମନେକରି ରାଜାଙ୍କ ବିରୁଦ୍ଧରେ ଶକ୍ତି ପ୍ରୟୋଗ କରିବା ପାଇଁ ବଦ୍ଧପରିକର ହୋଇଥିଲେ । ଏହି ସଙ୍କଟଜନକ ପରିସ୍ଥିତି ସୁଧାରିବାକୁ ଅସହାୟ ମନେକରୁଥିବା ବିଧାନ ସଭାକୁ ବିଧିମତ ସତର୍କ କରିଦେଇ ପ୍ୟାରିସ୍ କମ୍ୟୁନ୍ ଜନତାର ସାହାଯ୍ୟରେ ଅଗଷ୍ଟ ୧୦ ତାରିଖ ଦିନ ପୁଣି ଥରେ ରାଜପ୍ରାସାଦ ଟ୍ୟୁଲରିସ୍ ଉପରେ ଚଢ଼ାଉ କଲା । ତାହାର କାରଣ ଏହି ଯେ ବିଦେଶୀ ଶାସକମାନଙ୍କ ସହିତ ରାଜା ଷଡ଼ଯନ୍ତ୍ରରେ ଲିପ୍ତ ଥିବାର ସେମାନେ ଯେଉଁ ସନ୍ଦେହ କରୁଥିଲେ, ତାହାର ସତ୍ୟତା ବ୍ରନ୍ସ-ୱିକଙ୍କର ଘୋଷଣାପତ୍ର ଦ୍ୱାରା ପ୍ରମାଣିତ ହୋଇଗଲା । ଠିକ୍ ବେଳରେ ରାଜାଙ୍କୁ ସତର୍କ କରି ଦିଆଯାଇଥିବାରୁ ସେ ପରିବାର ସହିତ ରାଜପ୍ରାସାଦ ଛାଡ଼ି ପଳାଇଯାଇ ବିଧାନ ସଭାରେ ଆଶ୍ରୟ ନେଇଥିଲେ । କିନ୍ତୁ ରାଜପ୍ରାସାଦ ଉପରେ ଆକ୍ରମଣର ପ୍ରତିରୋଧ କରୁଥିବା ଅଧିକାଂଶ ସ୍ୱିଜରଲାଣ୍ଡ ଦେଶର ପ୍ରହରୀଙ୍କୁ (Swiss guards) ସେମାନଙ୍କର ପ୍ରଭୁଭକ୍ତି ପାଇଁ ଜୀବନ ବିସର୍ଜନ କରିବାକୁ ପଡ଼ିଥିଲା । ଫଳରେ ରାଜପ୍ରାସାଦକୁ ବ୍ୟାପକ ହତ୍ୟାକାଣ୍ଡ ଓ ଲୁଣ୍ଠନ ପାଇଁ ଛାଡ଼ିଦିଆଗଲା । ଇତ୍ୟବସରେ କ୍ରୁଦ୍ଧ ଜନତା ବିଧାନସଭା ଗୃହରେ ପ୍ରବେଶ

କରିଥିଲେ । ଲଜ୍ ଯଥାର୍ଥରେ କହିଥିଲେ, "ଅଗଷ୍ଟ ୧୦ ତାରିଖ ଦିନଟି ଫରାସୀ ଇତିହାସ ପାଇଁ ନିଷ୍ପତ୍ତିମୂଳକ । କେବଳ ରାଜତନ୍ତ୍ର ନୁହେଁ, ବିଧାନସଭା ମଧ୍ୟ ନିମ୍ନ ଜନତାର ଦୟା ଉପରେ ବର୍ତ୍ତମାନ ନିର୍ଭର କରୁଥିଲା ।" ("The 10th of August" said Lodge, "was decisive for the history of France. Not only the monarchy but the assembly was now at the mercy of the mob.") ନିମ୍ନ ଜନତାର ନିର୍ଦ୍ଦେଶ ଅନୁସାରେ ବିଧାନସଭା ରାଜାଙ୍କୁ ସାମୟିକ ଭାବରେ ଗାଦିଚ୍ୟୁତ କରିବାକୁ ନିଷ୍ପତ୍ତି ନେଇଥିଲା; ସୁତରାଂ ରାଜଗାଦିର ପତନ ହେଲା । ରାଜା ରାଜପରିବାର ସହିତ ପ୍ୟାରିସ୍‌ର ଟେମ୍‌ପଲ ନାମକ ଗୋଟିଏ ପୁରୁଣା ଦୁର୍ଗରେ ବନ୍ଦୀ ହୋଇଥିଲେ ଓ ସେଠାରେ ଭାଗ୍ୟକୁ ଆଦର ପତ୍ତି ରହିଲେ । ଜନତା ମଧ୍ୟ ବିଧାନସଭାକୁ ପ୍ୟାରିସ୍ କମ୍ୟୁନ୍ ଏକ ଆଇନସଙ୍ଗତ କମ୍ୟୁନ୍ ବୋଲି ସ୍ୱୀକୃତି ଦେବାକୁ ବାଧ୍ୟ କରିଥିଲା ।

ରାଜତନ୍ତ୍ରର ପତନ ସଙ୍ଗେ ସଙ୍ଗେ ବିଶେଷ ଅଧିକାର ଭୋଗକରୁଥିବା ମଧ୍ୟବିତ୍ତଶ୍ରେଣୀ ମଧ୍ୟ ତାହାର ଆଧିପତ୍ୟ ହରାଇଥିଲା । ପ୍ୟାରିସ୍ ଜନତାର ଅରାଜକତା ସୃଷ୍ଟି ଫଳରେ ମଧ୍ୟବିତ୍ତଶ୍ରେଣୀ ହାତରୁ ଶାସନ ଖସିଯାଉଥିବାର ବେଶ୍ ସୂଚନା ମିଳିଥିଲା । ଫ୍ରାନ୍ସ ଆନୁଷ୍ଠାନିକଭାବରେ ନ ହେଲେ ମଧ୍ୟ ବାସ୍ତବ କ୍ଷେତ୍ରରେ (defacto) ଏକ ସାଧାରଣ-ତନ୍ତ୍ରରେ ପରିଣତ ହୋଇଥିଲା । ଅସ୍ଥାୟୀ ସରକାର ଗଢ଼ାଗଲା; କିନ୍ତୁ ବହିଃ ଶତ୍ରୁ ଆକ୍ରମଣର ଭୟ ଏପରି ଆତଙ୍କ ସୃଷ୍ଟି କରିଥିଲା ଯେ ଅନ୍ୟ କୌଣସି ପ୍ରଶ୍ନ ସେତେବେଳେ ବିଚାରକୁ ନିଆଯାଇ ନ ଥିଲା । ଯେତେବେଳେ ଗୋଟିଏ ସୀମାନ୍ତ ସହର ଶତ୍ରୁ ହାତରେ ପଡ଼ିଲା, ସେତେବେଳେ ପ୍ୟାରିସ୍‌ରେ ଅସ୍ୱାଭାବିକ ଉନ୍ମାଦନା ଦେଖାଦେଇଥିଲା । ବିଧାନ ସଭାରେ ଉପସ୍ଥିତ ହୋଇ ଅସ୍ଥାୟୀ ସରକାରଙ୍କର ସଭ୍ୟ ଡାନ୍‌ଟନ୍ ତାଙ୍କ ଶ୍ରୋତାମାନଙ୍କୁ ସନ୍ତୋଷ-ଜନକ ଉପଦେଶ ଦେଇ ଚମକିତ କରିଥିଲେ । ସେ କହିଥିଲେ, "ନିର୍ଭୀକ ହୁଅ, ଅଧିକ ନିର୍ଭୀକ ହୁଅ ଓ ଆହୁରି ଅଧିକ ନିର୍ଭୀକ ହୁଅ ଏବଂ ଫ୍ରାନ୍ସ ରକ୍ଷାପାଇଯିବ !" ("Daring, more daring and still more daring and France is saved !")

ଜନସାଧାରଣଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି ହେବା ହେତୁରୁ କମ୍ୟୁନ ନିଜେ ଆତଙ୍କର ଶିକାର ହେବା ଭୟରେ, କମ୍ୟୁନ୍ ହଜାର ହଜାର ଲୋକଙ୍କୁ ସେମାନଙ୍କର କାର୍ଯ୍ୟକଳାପରୁ ବିଦେଶୀ ଆକ୍ରମଣକାରୀମାନଙ୍କର ସମର୍ଥକ ବୋଲି ସନ୍ଦେହ କରି ସେମାନଙ୍କୁ ବନ୍ଦୀ କରି-ଥିଲେ । କିନ୍ତୁ ଉନ୍ମତ୍ତ ଜନତା ଜିଦ୍ ଧରିଲେ ଯେ ସେହି ବିଶ୍ୱାସଘାତକ ବନ୍ଦୀମାନେ ସୁଯୋଗ ପାଇଲେ ବନ୍ଦିଶାଳାରୁ ପଳାଇଯାଇ ସମ୍ମୁଖପଟେ ଥିବା ସୈନ୍ୟମାନଙ୍କର ସ୍ତ୍ରୀ ଓ ପିଲା-ପିଲିଙ୍କୁ ହତ୍ୟା କରିବେ; ତେଣୁ ସେମାନଙ୍କ ଉପରେ ନଜର ରଖିବାକୁ ପଡ଼ିବ । କମ୍ୟୁନ୍ ଏବଂ ବିଧାନସଭା ପ୍ୟାରିସ୍‌କୁ ରକ୍ଷାକରିବା ସକାଶେ ଅଧିକ ସୈନ୍ୟ ସଂଗ୍ରହ କରି ସେମାନଙ୍କୁ ବିପଜ୍ଜନକ ସ୍ଥାନମାନଙ୍କରେ ମୁତୟନ କଲେ । ଅବଶେଷରେ ଯେତେବେଳେ ଖବର ଆସି

ପହଞ୍ଚିଲା ଯେ ପ୍ୟାରିସ୍ ରାସ୍ତାରେ ଥିବା ଶେଷ ଦୁର୍ଗ ଭରଡୁନ୍ (Verdun) ଶତ୍ରୁ ଦ୍ୱାରା ଅବରୋଧ କରାଯାଇଛି, ସେତେବେଳେ ଦେଶ ସଙ୍କଟାପନ୍ନ ବୋଲି ଘୋଷଣା କରାଗଲା । ଦେଶର ସବୁ ଲୋକଙ୍କୁ ଦଳବଦ୍ଧଭାବରେ ଆକ୍ରମଣକାରୀମାନଙ୍କର ପ୍ରତିରୋଧ କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । ମାରାଟ୍‌ଙ୍କର ଯୋଜନା ଅନୁସାରେ ଉନ୍ମତ୍ତ ଜନତା କର୍ତ୍ତୃପକ୍ଷଙ୍କଠାରୁ କୌଣସି ବାଧା ନ ପାଇ, ବନ୍ଦୀଶାଳାଗୁଡ଼ିକ ଭାଙ୍ଗି ଜୋର୍-ଜବରଦସ୍ତି ସେଗୁଡ଼ିକ ଭିତରେ ପଶିଥିଲେ ଏବଂ ସନ୍ଦେହ କରାଯାଉଥିବା ଏଗାର ଶହ ବନ୍ଦୀଙ୍କୁ ମାତ୍ର ଚାରିଦିନ ମଧ୍ୟରେ (୧୭୯୨ ମସିହା ସେପ୍ଟେମ୍ବର ୨ ତାରିଖଠାରୁ ୫ ତାରିଖ ମଧ୍ୟରେ) ନୃଶଂସଭାବରେ ହତ୍ୟା କରିଥିଲେ । ଏହି ବିଭତ୍ସ ଘଟଣାକୁ ସେପ୍ଟେମ୍ବର ହତ୍ୟାକାଣ୍ଡ (September Massacre) ବା ଜେଲ ମୁକ୍ତି (Jail Delivery) କୁହାଯାଏ । ଏପରି ଅରାଜକତା ବ୍ୟାପିବାର ଗୋଟିଏ ବଡ଼ ପ୍ରମାଣ ହେଲା ଏହି ଯେ କୌଣସି ଜାତୀୟ କିମ୍ବା ପୌର କର୍ତ୍ତୃପକ୍ଷ ଏ ଜଘନ୍ୟ ଅତ୍ୟାଚାରକୁ ବନ୍ଦ କରିବାକୁ ଉଦ୍ୟମ କରି ନ ଥିଲେ । ଏହି ବିଭତ୍ସ ଘଟଣା ପାଇଁ ମାରାଟଙ୍କୁ ବିଶେଷଭାବରେ ଦାୟୀ କରାଯାଇପାରେ । କାରଣ କମ୍ୟୁନ୍‌ରେ ତାଙ୍କର ଅତ୍ୟଧିକ ପ୍ରଭାବ ଥିଲା । ଡାନ୍‌ଟନ ମାରାଟ୍‌ଙ୍କ ସହିତ ଏ ହତ୍ୟାକାଣ୍ଡ ପ୍ରବର୍ତ୍ତାଇବାର ମଧ୍ୟ ପ୍ରମାଣ ରହିଛି । ବିପ୍ଳବର ଇତିହାସରେ ଏହି ଘଟଣା ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି କରିଥିଲା ।

ଦେଶ ଭିତରେ ଥିବା ବିଶ୍ୱାସଘାତକମାନଙ୍କୁ ହତ୍ୟା କିମ୍ବା ଦମନ କଲା ପରେ ଅସ୍ଥାୟୀ ସରକାର ପ୍ରୁସିଆର ସୈନ୍ୟମାନଙ୍କର ଅଗ୍ରଗତି ରୋକିବା ପାଇଁ ସୈନ୍ୟ ପଠାଇଥିଲେ । ପ୍ରୁସୀୟମାନେ ଭାଲ୍‌ମି (Valmy) ଠାରେ ୧୭୯୨ ମସିହା ସେପ୍ଟେମ୍ବର ମାସ ୨୦ ତାରିଖ ଦିନ ପରାସ୍ତ ହୋଇଥିଲେ ଏବଂ ସେମାନଙ୍କର ଅଗ୍ରଗତି ମଧ୍ୟ ରୋକି ଦିଆଯାଇଥିଲା । ଯାହା ହେଉ ଫ୍ରାନ୍‌ସ ଆଶୁ ବିପଦରୁ ରକ୍ଷା ପାଇଯାଇଥିଲା ।

ଇତିମଧ୍ୟରେ ରାଜାଙ୍କୁ ସାମୟିକଭାବରେ ଗାଦିଚ୍ୟୁତ କରି ତାଙ୍କର କ୍ଷମତା ରହିତ କରିବା ଦ୍ୱାରା (suspension of the King) ୧୭୯୧ ମସିହା ସମ୍ବିଧାନର ଅବସାନ ଘଟିଲା ବୋଲି ବିଚାର କରାଯାଇ ନିଷ୍ପତ୍ତି ନିଆଯାଇଥିଲା ଏବଂ ସାଧାରଣ ଭୋଟ ଅଧିକାର ଭିତ୍ତିରେ (universal suffrage) ନିର୍ବାଚିତ ଗୋଟିଏ ଜାତୀୟ କନ୍‌ଭେନ୍‌ସନ୍ (National Convention) ଡାକି ନୂତନ ଶାସନ ପଦ୍ଧତି ନିର୍ଣ୍ଣୟ କରିବା ପାଇଁ ମଧ୍ୟ ସ୍ଥିର କରାଯାଇଥିଲା । ଜାତୀୟ କନ୍‌ଭେନ୍‌ସନ ପାଇଁ ନିର୍ବାଚନ ଶେଷ ହୋଇଗଲା ପରେ ୧୭୯୨ ମସିହା ସେପ୍ଟେମ୍ବର ୨୦ ତାରିଖ ଦିନ ବିଧାନସଭାକୁ ଭାଙ୍ଗି ଦିଆଯାଇଥିଲା ।

## ଜାତୀୟ କନ୍‌ଭେନ୍‌ସନ (ସେପ୍‌ଟେମ୍ବର ୧୭୯୨—ଅକ୍‌ଟୋବର ୧୭୯୫)
## (The National Convention—Sept. 1792-Oct. 1795)

ଜାତୀୟ କନ୍‌ଭେନ୍‌ସନ୍ ୧୭୯୨ ମସିହା ସେପ୍‌ଟେମ୍ବର ମାସ ୨୧ ତାରିଖରେ ବସିଲା । ସେଥିରେ ୭୪୯ ଜଣ ସଭ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଲେ କେହି ରାଜତନ୍ତ୍ରର ପୃଷ୍ଠପୋଷକ ନ ଥିଲେ । ଜାତୀୟ କନ୍‌ଭେନ୍‌ସନକୁ ନୂତନ ସମ୍ବିଧାନ ପ୍ରଣୟନ କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । କନ୍‌ଭେନ୍‌ସନ୍ ବସିଲା ପରେ ତାହାର ପ୍ରଥମ କାର୍ଯ୍ୟ ହେଲା ରାଜତନ୍ତ୍ର ଲୋପ କରିବା ଏବଂ ଫ୍ରାନ୍‌ସକୁ ସାଧାରଣତନ୍ତ୍ର ରାଷ୍ଟ୍ର ଘୋଷଣା କରିବା । ସେ ମଧ୍ୟ ଗୋଟିଏ ଆଇନ ପାସ୍ କରି ସ୍ୱଦେଶତ୍ୟାଗୀମାନଙ୍କୁ ଦେଶରୁ ଚିରଦିନ ପାଇଁ ନିର୍ବାସିତ କରିଥିଲା । ବିପ୍ଳବୀମାନେ ଖଣ୍ଡିଏ ବୈପ୍ଳବିକ କ୍ୟାଲେଣ୍ଡର (ଦିନପାଞ୍ଜି) ପ୍ରସ୍ତୁତ କରି ୧୭୯୨ ମସିହା ସେପଟେମ୍ବର ୨୧ ତାରିଖ ଦିନ ସାଧାରଣତନ୍ତ୍ରର ଜନ୍ମ ବୋଲି ଉଲ୍ଲେଖ କରିଥିଲେ ଓ ସେହି ଦିନଠାରୁ ସାଧାରଣତନ୍ତ୍ରର ପ୍ରଥମ ବର୍ଷ ଆରମ୍ଭର ସୂଚନା ମଧ୍ୟ ଦେଇଥିଲେ ।

ଜାତୀୟ କନ୍‌ଭେନ୍‌ସନ ବସିଥିବା ପ୍ରକୋଷ୍ଠର ଦକ୍ଷିଣପଟେ ବସିଥିଲେ ଗିରନ୍‌ଡିନ୍‌ମାନେ ଏବଂ ବାମପଟେ ବସିଥିଲେ ଜାକୋବିନ୍‌ମାନେ (ମାଉଣ୍ଟେନ୍‌ମାନେ) । ମଧ୍ୟଭାଗ ଦଖଲ କରିଥିଲେ ପ୍ଲେନ୍ (Plain) ବା ମାର୍ସ (Marsh) କୁହାଯାଉଥିବା ସ୍ୱାଧୀନ ସଭ୍ୟମାନେ ଓ ସେମାନେ କେତେବେଳେ ଗିରନ୍‌ଡିନ୍‌ମାନଙ୍କ ସପକ୍ଷରେ ଭୋଟ ଦେଉଥିଲେ ତ କେତେବେଳେ ଜାକୋବିନ୍‌ମାନଙ୍କ ସପକ୍ଷରେ ଭୋଟ ଦେଉଥିଲେ । ଗିରନ୍‌ଡିନ୍ ଦଳ ଓ ଜାକୋବିନ୍ ଦଳ ଉଭୟ ରାଜତନ୍ତ୍ରର ପତନ ଘଟାଇବା ପାଇଁ ପ୍ରଥମେ ପ୍ରଥମେ ହାତ ମିଳାଇ କାର୍ଯ୍ୟ କରିଥିଲେ । କିନ୍ତୁ ଗିରନ୍‌ଡିନ୍‌ମାନେ ଯେତେବେଳେ ଅଗଷ୍ଟ ୧୦ ତାରିଖ ବିକ୍ଷୋଭ ଏବଂ ସେପ୍‌ଟେମ୍ବର ହତ୍ୟାକାଣ୍ଡ ଦେଖିଲେ, ସେତେବେଳେ ସେମାନେ ସେମାନଙ୍କର ଭୁଲ ବୁଝିପାରିଲେ । ପ୍ରକୃତରେ ସେମାନେ ଚାହିଁଥିଲେ ସୁଶୃଙ୍ଖଳ ଶାସନ ପ୍ରତିଷ୍ଠା ଓ ଅଯଥା ରକ୍ତପାତର ଅବସାନ । ସେମାନେ ସରକାରକୁ ପ୍ୟାରିସ୍ କମ୍ୟୁନ ଏବଂ କ୍ରୁଦ୍ଧ ଜନତାର କବଳରୁ ରକ୍ଷା କରିବାକୁ ମଧ୍ୟ ଇଚ୍ଛା କରିଥିଲେ । ଅନ୍ୟଦିଗରେ ଜାକୋବିନ୍‌ମାନେ ବିପ୍ଳବକୁ ଚାଲୁରଖି ଚରମ ସୀମାକୁ ଯିବାକୁ ପ୍ରସ୍ତୁତ ଥିଲେ । ଏହି ଦୁଇ ଦଳର ଯୋଜନାରେ ଦେଖାଦେଇଥିବା ମୌଳିକ ପାର୍ଥକ୍ୟ ସେମାନଙ୍କ ମଧ୍ୟରେ କଳହ ଓ ସଂଗ୍ରାମ ସୃଷ୍ଟି କରିଥିଲା ।

ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଉଭୟ ଦଳର ଲୋକେ ସାଧାରଣତନ୍ତ୍ର-ବାଦୀ ଏବଂ ସ୍ୱଦେଶବତ୍ସଳ ଥିଲେ । କିନ୍ତୁ ଗିରନ୍‌ଡିନ୍‌ମାନେ ପ୍ୟାରିସ୍ କମ୍ୟୁନ୍‌ର ବଦଳରେ କନ୍‌ଭେନ୍‌ସନକୁ ଶ୍ରେଷ୍ଠ ସ୍ଥାନ ଦେବାକୁ ଚାହୁଁଥିଲେ ଏବଂ ଯୁକ୍ତିତର୍କ ଓ ବକ୍ତୃତା ମାଧ୍ୟମରେ

ସେମାନଙ୍କର ଉଦ୍ଦେଶ୍ୟ ସାଧନ କରିପାରିବେ ବୋଲି ସେମାନଙ୍କର ବିଶ୍ୱାସ ଥିଲା । ସେମାନେ ଯୁକ୍ତି କଲେ ଯେ ପ୍ୟାରିସ୍ ଫ୍ରାନ୍ସର ୮୩ଟି ଡିପାର୍ଟମେଣ୍ଟ (ପ୍ରଦେଶ) ମଧ୍ୟରୁ ମାତ୍ର ଗୋଟିଏ ଡିପାର୍ଟମେଣ୍ଟର ପ୍ରତିନିଧିତ୍ୱ କରୁଛି; ତେଣୁ ଫ୍ରାନ୍ସରେ ତାହାର ୮୩ ଭାଗରୁ କେବଳ ଭାଗେ ପ୍ରତିପତ୍ତି ରହିବା ଯୁକ୍ତିସଙ୍ଗତ । ଜାକୋବିନ୍‌ମାନେ ରୋବସପୀୟରଙ୍କ ନେତୃତ୍ୱରେ ଅନେକ ଦିନରୁ କମ୍ୟୁନ୍‌ର ସହନଶୀଳ ମିତ୍ର ହୋଇଥିଲେ ଓ ତାହାର ଦୁଷ୍କର୍ମର ହସ୍ତାବ୍ଦାତା (abettors) ଥିଲେ । ସେମାନେ ପ୍ୟାରିସ୍ କମ୍ୟୁନ୍ ପକ୍ଷରୁ ସମସ୍ତ କ୍ଷମତା ଏକାୟତ୍ତ କରିବାକୁ ଚାହୁଁଥିଲେ ଏବଂ ପ୍ୟାରିସ୍ ଫ୍ରାନ୍ସର ହୃତପିଣ୍ଡ ଓ କେନ୍ଦ୍ରସ୍ଥଳୀ ହୋଇଥିବାରୁ ସେ ଫ୍ରାନ୍ସରେ ଅଧିପତ୍ୟ ବିସ୍ତାର କରିବା ସ୍ୱାଭାବିକ ବୋଲି ଯୁକ୍ତି ବାଢ଼ିଥିଲେ । ଜାକୋବିନ୍ କ୍ଲବ ଓ ପ୍ୟାରିସ୍ କମ୍ୟୁନ୍ ଥିଲା ସେମାନଙ୍କର ଶକ୍ତିର ପ୍ରଧାନ ଉତ୍ସ । ଜାକୋବିନ୍‌ମାନଙ୍କର କନ୍‌ଭେନ୍‌ସନ ଉପରେ ଅତି କ୍ଷୀଣ ପ୍ରଭାବ ଥିବାରୁ ସେମାନେ ସେମାନଙ୍କର ଉଦ୍ଦେଶ୍ୟ ସାଧନ ପାଇଁ ଜନତାର ହିଂସାତ୍ମକ କାର୍ଯ୍ୟ ଉପରେ ପୁରାପୁରି ନିର୍ଭର କରୁଥିଲେ । ଗିରଣ୍ଡିନ୍‌ମାନେ ଥିଲେ ସିଦ୍ଧାନ୍ତବାଦୀ (doctrinaires); କିନ୍ତୁ ଜାକୋବିନ୍‌ମାନେ ଥିଲେ ବାସ୍ତବବାଦୀ (realists) । ଗିରଣ୍ଡିନ୍‌ମାନେ ଡିପାର୍ଟମେଣ୍ଟଗୁଡ଼ିକର (ପ୍ରଦେଶଗୁଡ଼ିକର) ସମର୍ଥନ ଚାହୁଁଥିଲାବେଳେ ଜାକୋବିନ୍‌ମାନେ ପ୍ୟାରିସ୍‌ର ସମର୍ଥନ ଚାହୁଁଥିଲେ । ଗିରଣ୍ଡିନ୍‌ମାନେ ପ୍ୟାରିସ୍‌ର ପ୍ରାଧାନ୍ୟ ଅପହରଣ କରିବା ଉଦ୍ଦେଶ୍ୟରେ ବିକେନ୍ଦ୍ରୀଭୂତ ସାଧାରଣତନ୍ତ୍ରର (Decentralised Republic) ସମର୍ଥନ କରୁଥିଲାବେଳେ ଜାକୋବିନ୍‌ମାନେ ସଙ୍କଟ ଅତିକ୍ରମ କରିବା ଉଦ୍ଦେଶ୍ୟରେ ଶକ୍ତିଶାଳୀ କେନ୍ଦ୍ର ସରକାରକୁ ସମର୍ଥନ କରିବାକୁ ଆଗ୍ରହୀ ଥିଲେ । ଗିରଣ୍ଡିନ୍‌ମାନେ ମଧ୍ୟବିତ୍ତଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲାବେଳେ ଜାକୋବିନ୍‌ମାନେ ଅସ୍ଥାୟୀ ଭାବରେ ମଜଦୁରଶ୍ରେଣୀର ସମର୍ଥକ ଥିଲେ । ଗିରଣ୍ଡିନ୍‌ମାନେ ଜାକୋବିନ ଦଳର ନେତା ରୋବସ୍‌ପୀୟର, ଡାନ୍‌ଟନ୍ ଓ ମାରାଟଙ୍କ ଉପରେ ଦୋଷାରୋପ କରିଥିଲେ ଯେ ସେମାନେ ଏକଚ୍ଛତ୍ର ଶାସନ ପ୍ରତିଷ୍ଠା ଲକ୍ଷ୍ୟରେ ଅଛନ୍ତି । ଜାକୋବିନ୍‌ମାନେ ଗିରଣ୍ଡିନ୍‌ମାନଙ୍କ ବିରୁଦ୍ଧରେ ପ୍ରତ୍ୟଭିଯୋଗ କରିଥିଲେ ଯେ ସେମାନେ ସଂଘରାଜ୍ୟ (Federation) ପ୍ରତିଷ୍ଠା କରିବା ଚାହାନ୍ତି । ଗିରଣ୍ଡିନ୍‌ମାନେ କନ୍‌ଭେନ୍‌ସନ୍‌ରେ ସେମାନଙ୍କ ଆସନ ଦୃଢ଼ ରହିଛି ଭାବି ସେମାନଙ୍କର ଶତ୍ରୁ ଜାକୋବିନ୍‌ମାନଙ୍କୁ ଆକ୍ରମଣ କରିଥିଲେ; କିନ୍ତୁ ସେମାନେ ଜନପ୍ରିୟ ଜାକୋବିନ୍ ନେତାମାନଙ୍କୁ ଏପରି ଆକ୍ରମଣ କରିବା ଦ୍ୱାରା ବିପଦ ବରଣ କରିଥିଲେ । ଜାକୋବିନ୍‌ମାନେ ମଧ୍ୟ ଗିରଣ୍ଡିନ୍‌ମାନଙ୍କ ପ୍ରତି ସେହିପରି ନୀତି ଅବଲମ୍ବନ କରିଥିଲେ ।

ରାଜା ଷୋଡ଼ଶ ଲୁଇଙ୍କର ଭାଗ୍ୟ ପ୍ରଶ୍ନ ନେଇ ଦୁଇ ଦଳ ମଧ୍ୟରେ ଉପୁଜିଥିବା କଳହ ତୀବ୍ର ଆକାର ଧାରଣ କରିଥିଲା । ଗିରଣ୍ଡିନ୍‌ମାନେ ରାଜାଙ୍କୁ ପ୍ରାଣଦଣ୍ଡ ଦେବାକୁ ଚାହୁଁ ନ ଥିବାରୁ, ସେ ପ୍ରଶ୍ନକୁ ଅନିର୍ଦ୍ଦିଷ୍ଟ କାଳପାଇଁ ସ୍ଥଗିତ ରଖିବାକୁ ଉଦ୍ୟମ କରିଥିଲେ ।

ବିଦେଶୀ ଶତ୍ରୁମାନଙ୍କ ସହିତ ଯୁଦ୍ଧ ଶେଷ ପରେ ଯଦି ରାଜତନ୍ତ୍ରର ପୁନଃ ପ୍ରତିଷ୍ଠା କରାହୁଏ, ତାହାହେଲେ ସେମାନଙ୍କ ଜୀବନ ବିପନ୍ନ ହେବାର ଆଶଙ୍କା ଥିବାରୁ ଜାକୋବିନ୍ ମାନେ ରାଜାଙ୍କୁ ପ୍ରାଣଦଣ୍ଡ ଦେବାକୁ ଦୃଢ଼ସଂକଳ୍ପ କରିଥିଲେ ଏବଂ ରୋବସ୍‌ପୀୟର ରାଜାଙ୍କୁ ବିନା ବିଚାରରେ ହତ୍ୟା କରାଯାଇପାରେ ବୋଲି ଯୁକ୍ତି ଦେଖାଇଥିଲେ । ସେ ଯାହା ହେଉ, ଶେଷରେ ଜାକୋବିନ୍‌ମାନଙ୍କର ପ୍ରଧାନ ଲକ୍ଷ୍ୟ ସାଧନ ହେଲା । ଗିରନ୍‌ଡ଼ିନ୍‌ମାନଙ୍କର ରାଜତନ୍ତ୍ର ପ୍ରତି ଅନୁରକ୍ତି ରହିଛି ବୋଲି ଲୋକେ ସେମାନଙ୍କୁ ଦୋଷ ଦେଉଥିଲେ । ଏହିସବୁ କାରଣରୁ ରାଜାଙ୍କର ବିଚାର ୧୭୯୨ ମସିହା ଡିସେମ୍ବରରେ ଯାଇ ଆରମ୍ଭ ହେଲା । ସାମ୍ବିଧାନିକ ଅଧିକାର ନ ଥିଲେ ମଧ୍ୟ କନ୍‌ଭେନ୍‌ସନ୍ ନିଜକୁ ଗୋଟିଏ ଜୁରୀରେ (Jury) ପରିଣତ କଲା । ମୋକଦ୍ଦମାର ନିଷ୍ପତ୍ତି ମାତ୍ର ମୌଖିକ ଭୋଟରେ ହୋଇଥିଲା । ଦର୍ଶକ-ମଞ୍ଚଗୁଡ଼ିକରେ (Galleries) କୋଳାହଳମୟ ଜନତା ପୂରିରହିଥିବାରୁ ଫଳାଫଳ ବିଷୟରେ ସନ୍ଦିହାନ ହେବାର ଅବକାଶ ନ ଥିଲା । ରାଜାଙ୍କୁ ଓକିଲର ସାହାଯ୍ୟ ଦିଆଯାଇଥିଲେ ମଧ୍ୟ ସେ ଷଡ଼ଯନ୍ତ୍ର ଅପରାଧରୁ ମୁକ୍ତି ପାଇପାରିଲେ ନାହିଁ । ତେଣୁ ବିଦେଶୀ ଶତ୍ରୁମାନଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ଥିବାରୁ ତାଙ୍କୁ ସର୍ବସମ୍ମତିକ୍ରମେ ଦୋଷୀ ବୋଲି ସାବ୍ୟସ୍ତ କରାଗଲା । ଯଦିଓ ଏହାକୁ ଉଚିତ ଦଣ୍ଡ ବୋଲି କୁହାଯାଇଥିଲା, ସ ସ୍ତେ ଜାଣନ୍ତି ଯେ କନ୍‌ଭେନ୍‌ସନ ନିକଟରେ ରାଜାଙ୍କର ଅପରାଧର ପ୍ରକୃତ ପ୍ରମାଣ ନ ଥିଲା । ରାଜାଙ୍କୁ ଦୋଷୀ ସାବ୍ୟସ୍ତ କରିବା ବେଳେ କୌଣସି ନୈତିକ ପ୍ରଶ୍ନ ବିଚାରକୁ ନିଆଯାଇ ନ ଥିଲା; କେବଳ ବ୍ୟକ୍ତିଗତ ଏବଂ ରାଜନୈତିକ ପ୍ରଶ୍ନ ଦୁଇଟି ବିଚାରକୁ ନିଆଯାଇଥିଲା । ରାଜାଙ୍କ ବିରୁଦ୍ଧରେ ଦଣ୍ଡ ନିର୍ଦ୍ଧାରଣ ପ୍ରଶ୍ନ ଉଠିଲା ବେଳେ ଗିରନ୍‌ଡ଼ିନ୍‌ମାନଙ୍କ ମଧ୍ୟରେ ଯେଉଁ ମତଭେଦ ଦେଖାଦେଇଥିଲା, ତାହା ରାଜାଙ୍କ ପାଇଁ ବଡ଼ ମାରାତ୍ମକ ହୋଇଥିଲା; ଫଳରେ ମାତ୍ର ଗୋଟିଏ ଅଧିକ ଭୋଟରେ ରାଜାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଏ କଥା ସ୍ୱୀକାର କରିବାକୁ ହେବ ଯେ ରାଜାଙ୍କୁ ମୃତ୍ୟୁଦଣ୍ଡ ଦେବା ଫରାସୀ ଜାତିର ସ୍ପଷ୍ଟ ଅଭିମତ ବୋଲି କୁହାଯାଇ ନ ପାରେ । କାରଣ ଜାତୀୟ କନ୍‌ଭେନ୍‌ସନକୁ ସଭ୍ୟ ନିର୍ବାଚନ ସେପ୍‌ଟେମ୍ବର ହତ୍ୟାକାଣ୍ଡ ସମୟରେ ହୋଇଥିବାରୁ ଅଧିକାଂଶ ଭୋଟଦାତା ଭୟରେ ଭୋଟ ଦେବାକୁ ଆସିନଥିଲେ; ତେଣୁ ଫ୍ରାନ୍‌ସର ଅଳ୍ପ କେତେକ ଭୋଟଦାତାଙ୍କ ଦ୍ୱାରା କନ୍‌ଭେନ୍‌ସନର ସଭ୍ୟମାନେ ନିର୍ବାଚିତ ହୋଇଥିଲେ । ସେହି କାରଣରୁ ଗିରନ୍‌ଡ଼ିନ୍‌ମାନେ ରାଜାଙ୍କୁ ମୃତ୍ୟୁଦଣ୍ଡ ଦେବା ପ୍ରଶ୍ନ ଫରାସୀ ଜାତିର ନିଷ୍ପତ୍ତି ଉପରେ ଛାଡ଼ିଦେବା ପାଇଁ ଚାହିଁଥିଲେ । ଜାକୋବିନ୍‌ମାନେ ରୋବସ୍‌ପୀୟରଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଏହାର ଘୋର ବିରୋଧ କରିଥିଲେ । ଶେଷରେ ରୋବସ୍‌ପୀୟରଙ୍କ ଲକ୍ଷ୍ୟ କାର୍ଯ୍ୟରେ ପରିଣତ ହୋଇଥିଲା । ୧୭୯୩ ମସିହା ସେପ୍‌ଟେମ୍ବର ୨୧ ତାରିଖ ଦିନ ରାଜାଙ୍କୁ ଗିଲୋଟିନ ନାମକ ଶିରଚ୍ଛେଦନ ଯନ୍ତ୍ରଦ୍ୱାରା ହତ୍ୟା କରାଯାଇଥିଲା । ଜୀବନରେ ଅକୃତକାର୍ଯ୍ୟ ହେଲେ ମଧ୍ୟ ରାଜା ଉଦାସୀନ ଭାବରେ ମୃତ୍ୟୁ ବରଣ କରି ଜନସାଧାରଣଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ରାଜାଙ୍କର ମୃତ୍ୟୁପରେ ଗିରନ୍ଡିନ୍‌ମାନଙ୍କର ସର୍ବନାଶ ପ୍ରାୟ ନିଶ୍ଚିତ ହୋଇ-ଯାଇଥିଲା । ସେମାନେ ରାଜାଙ୍କୁ ରକ୍ଷା କରିବାକୁ ବିଶେଷ କିଛି କରି ନ ଥିଲେ; ବରଂ ସେମାନେ ଉଚ୍ଛୃଙ୍ଖଳ ଜନତା ସହିତ ସାଲିସ୍ କରିବାପାଇଁ ଯଥେଷ୍ଟ କିଛି କରିଥିଲେ । ଏପରି ଘୃଣ୍ୟ ଓ ସନ୍ଦେହଜନକ ପରିସ୍ଥିତିରେ ସେମାନଙ୍କୁ ରାଜତନ୍ତ୍ରବାଦୀ ବୋଲି ଛାପ ଦେବା (brand) ଅତି ସହଜ ହୋଇଥିଲା । ଗିରନ୍ଡିନ୍‌ମାନେ ଓ ଜାକୋବିନ୍‌ମାନେ ପରସ୍ପର ବିରୁଦ୍ଧରେ କଟୁ ଅଭିଯୋଗ କରୁଥିଲେ; କିନ୍ତୁ ଗିରନ୍ଡିନ୍‌ମାନେ ସବୁବେଳେ ହାରି-ଯାଉଥିଲେ । ଗିରନ୍ଡିନ୍‌ମାନେ ଶେଷପର୍ଯ୍ୟନ୍ତ ସେମାନଙ୍କର ବଦ୍ଧମୂଳ ଧାରଣାର ବଶବର୍ତ୍ତୀ ହୋଇ ଡାନ୍‌ଟନଙ୍କର ମିଳାମିଶା ପାଇଁ ଅନୁକୂଳ ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଇଥିଲେ; କାରଣ ସେମାନେ ସ୍ପଷ୍ଟ କହୁଥିଲେ ଯେ, ଯେଉଁ ଲୋକର ହାତ ସେପ୍‌ଟେମ୍ବର ହତ୍ୟାକାଣ୍ଡର ରକ୍ତରେ କଳଙ୍କିତ ହୋଇଛି, ସେ ଲୋକ ସହିତ ସମ୍ବନ୍ଧ ସ୍ଥାପନ କରିବା ସେମାନେ ଚାହାନ୍ତି ନାହିଁ । ତେଣୁ ସେମାନେ ଡାନ୍‌ଟନଙ୍କୁ ଜଣେ ସାଂଘାତିକ ଶତ୍ରୁରେ ପରିଣତ କରିଥିଲେ । ଦୁର୍ଭାଗ୍ୟକୁ ସେମାନଙ୍କର ବୈଦେଶିକ ନୀତି ମଧ୍ୟ ବିଫଳ ହୋଇଥିଲା । ଫରାସୀମାନେ ଭାଲ୍‌ମି ଯୁଦ୍ଧ ପରେ ପରେ ଉନ୍ମତ୍ତ ହୋଇ ଯେଉଁ ଆକ୍ରମଣାତ୍ମକ ଅଭିଯାନ ସଫଳତାର ସହିତ ଚଳାଇଲେ, ତାହା ବେଶି ଦିନ ତିଷ୍ଠି ପାରିଲା ନାହିଁ । ରାଜାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କଲା ପରେ ପରେ ବିପ୍ଳବ ପ୍ରତି ବିପଦ ଉଭୟ ଫ୍ରାନ୍‌ସର ଭିତରୁ ଓ ବାହାରୁ ମାଡ଼ିଆସିଲା । ଫ୍ରାନ୍‌ସର ବହିଃଶତ୍ରୁସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା ଓ ସେମାନେ ସମସ୍ତେ ଫ୍ରାନ୍‌ସର ସାଧାରଣତନ୍ତ୍ରକୁ ଧ୍ୱଂସ କରିଦେବାକୁ ଚାହିଁଲେ । ଫ୍ରାନ୍‌ସର କେତେକ ଡିପାର୍ଟ୍‌ମେଣ୍ଟ ସାଧାରଣତନ୍ତ୍ର ସରକାରକୁ ରାଜାଙ୍କର ହତ୍ୟାପାଇଁ ଦାୟୀ କରିଥିଲେ ଏବଂ ତାହା ବିରୁଦ୍ଧରେ ବିଦ୍ରୋହ କରିଥିଲେ । ତେଣୁ ଜାକୋବିନ୍‌ମାନେ ଦେଖିଲେ ଯେ ସେମାନଙ୍କୁ ଏକ ଦିଗରେ ଫ୍ରାନ୍‌ସର ସାଧାରଣତନ୍ତ୍ର ବିରୁଦ୍ଧରେ ଇଉରୋପୀୟ ଶକ୍ତିମାନଙ୍କ ମେଣ୍ଟର (Coalition of European Powers) ଦୃଢ଼ ମୁକାବିଲା କରିବାକୁ ପଡ଼ିବ ଏବଂ ଅନ୍ୟ ଦିଗରେ ସାଧାରଣତନ୍ତ୍ରକୁ ଧ୍ୱଂସ କରିବାକୁ ଉଦ୍ୟମ କରୁଥିବା ଘରୋଇ ଶତ୍ରୁମାନଙ୍କୁ ଦମନ କରିବାକୁ ପଡ଼ିବ । ଏପରି ସଙ୍କଟଜନକ ପରିସ୍ଥିତିରେ ଜାତୀୟ କନଭେନ୍‌ସନ୍ ୯ ଜଣଙ୍କୁ ନେଇ ପ୍ରଥମ ସାଧାରଣ ନିରାପତ୍ତା ସମିତି (the first Committee of public safety) ଗଠନ କରିଥିଲା ଏବଂ ଘରୋଇ ଓ ବିଦେଶୀ ଶତ୍ରୁମାନଙ୍କ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନେବା ନିମନ୍ତେ ତାହା ହାତରେ ଅସୀମ କ୍ଷମତା ନ୍ୟସ୍ତ କରିଥିଲା ।

ଦୁଃଖର ବିଷୟ ଏହି ଯେ ଫ୍ରାନ୍‌ସ ବିପର୍ଯ୍ୟୟର ସମ୍ମୁଖୀନ ହେଲା । ଫରାସୀମାନେ ବହିଃଶତ୍ରୁର ଆକ୍ରମଣକୁ ପ୍ରତିରୋଧ କରି ନ ପାରି ବେଲ୍‌ଜିୟମ୍ (ଅଷ୍ଟ୍ରିଆନ୍ ନେଦରଲାଣ୍ଡ) ଛାଡ଼ି ପଳାଇଯାଇଥିଲେ । ଫ୍ରାନ୍‌ସର ସେନାପତି ଡୁମରିଜ୍ ନୀରଉଇନ୍‌ଡେନ୍ (Neerwinden) ଯୁଦ୍ଧରେ ପରାଜିତ ହୋଇ ଫରାସୀମାନଙ୍କର ଶତ୍ରୁ ଅଷ୍ଟ୍ରୀୟମାନଙ୍କ

ସଙ୍ଗେ ଯୋଗଦେଇଥିଲେ । ତୃମଶକ୍ତିଙ୍କର ବିଶ୍ୱାସଘାତକତା ଯୋଗୁ ଯେତେବେଳେ ଗିରନ୍‌ଡନ୍‌ମାନଙ୍କୁ ଆତ୍ମରକ୍ଷା ନିମିତ୍ତ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିଲା, ସେତେବେଳେ ଡାନ୍‌ଟନ୍ ସେମାନଙ୍କର ଏପରି ଅବସ୍ଥାର ପୂର୍ଣ୍ଣସୁଯୋଗ ନେବାକୁ ଛାଡ଼ିନଥିଲେ । ଗିରନ୍‌ଡନ୍‌ମାନେ ମଧ୍ୟ ନୀରବ ହୋଇ ରହିନଥିଲେ । ପତନର ଠିକ୍ ପୂର୍ବରୁ ସେମାନଙ୍କର ଜଣେ ପ୍ରଭାବଶାଳୀ ସଭ୍ୟ ଧମକ ଦେଇ କହିଥିଲେ ଯେ ଯଦି ଆଉ ଏକ ଜନବିକ୍ଷୋଭ ଘଟେ, ତାହାହେଲେ ସେ ପ୍ୟାରିସ୍‌କୁ ଧ୍ୱଂସ କରିଦେବେ । ପ୍ୟାରିସ୍ କମ୍ୟୁନ୍ ଜାକୋବିନ୍ ସଭ୍ୟମାନଙ୍କର ପ୍ରଚ୍ଛନ୍ନ ସମ୍ମତି ପାଇ ୧୭୯୩ ମସିହା ମେ ୩୧ ତାରିଖ ଦିନ ଦଳେ ବିକ୍ଷୋଭକାରୀଙ୍କୁ ଜବରଦସ୍ତି ପୁରାଇଦେଇଥିଲା ଏବଂ ଗିରନ୍‌ଡନ୍‌ମାନଙ୍କ ନିୟନ୍ତ୍ରଣାଧୀନ ଥିବା ଅସ୍ଥାୟୀ ସରକାରଙ୍କର ପତନ ଘଟାଇଥିଲା । ଏ ଘଟଣାର ଠିକ୍ ଦୁଇଦିନ ପରେ ଟ୍ୟୁଲରିସ୍ ପ୍ରାସାଦରେ ଜାତୀୟ କନ୍‌ଭେନ୍‌ସନ୍ ବସିଥିବାବେଳେ ଏକ ବିପ୍ଳବୀ ସୈନ୍ୟଦଳ ତାକୁ ଘେରାଉ କରିଥିଲେ । ଏହିପରି ଭାବରେ ପ୍ୟାରିସ୍ କମ୍ୟୁନ୍, ଜାତୀୟ କନ୍‌ଭେନ୍‌ସନ୍‌କୁ ନିଜ ଆୟତ୍ତକୁ ଆଣିଲା ଏବଂ ଗିରନ୍‌ଡନ୍ ନେତାମାନଙ୍କୁ କନ୍‌ଭେନ୍‌ସନ୍‌ରୁ ବାହାର କରିଦେବା ପାଇଁ ଦାବି କରିଥିଲା । କମ୍ୟୁନ୍‌ର କଥା ମାନି କନ୍‌ଭେନ୍‌ସନ୍ ୩୧ ଜଣ ପ୍ରସିଦ୍ଧ ଗିରନ୍‌ଡନ୍ ନେତାଙ୍କର ବହିଷ୍କରଣ ଓ ଗିରଫ୍ ପାଇଁ ଆଦେଶ ଦେଇଥିଲା । ଏହିପରି ଭାବରେ ଗିରନ୍‌ଡନ୍ ଦଳର ପତନ ହେଲା । ଗିରନ୍‌ଡନ୍‌ମାନଙ୍କର ସପକ୍ଷରେ ଡିପାର୍ଟମେଣ୍ଟଗୁଡ଼ିକ (ପ୍ରଦେଶଗୁଡ଼ିକ) ବିକ୍ଷୋଭ ପ୍ରଦର୍ଶନ କରିଥିଲେ; କିନ୍ତୁ ତାହାର ଫଳ ହେଲା ବିଷମ । ଗିରନ୍‌ଡନ୍‌ମାନଙ୍କୁ ଆଇନ ବହିର୍ଭୂତ କରାଯାଇ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଗିଲୋଟିନ ନାମକ ଯନ୍ତ୍ରଦ୍ୱାରା ହତ୍ୟା କରାଯାଇଥିଲା ଏବଂ କେତେକଙ୍କୁ ଧରିବା ପାଇଁ ଏପରି ଜାଲ ବିଛାଯାଇଥିଲା ଯେ ସେମାନେ ସେଥିରୁ ଖସି ପଳାଇବାର ଆଶା ନ ଦେଖି ବାଧ୍ୟହୋଇ ଆତ୍ମହତ୍ୟା କରିଥିଲେ । ମାତ୍ର ଅଳ୍ପ କେତେକ ଗିରନ୍‌ଡନ୍ ସୌଭାଗ୍ୟକ୍ରମେ ଦେଶ ଛାଡ଼ି ପଳାଇ ଯାଇ ପ୍ରାଣରକ୍ଷା କରିଥିଲେ ।

ଏହି ଜୀବନ-ମରଣ ସଂଗ୍ରାମରେ ଗିରନ୍‌ଡନ୍‌ମାନେ ହାରିଯାଇଥିଲେ ଏବଂ ମଧ୍ୟବିତ୍ତମାନଙ୍କ କ୍ଷମତା ଅନ୍ତତଃ କିଛିକାଳ ପାଇଁ ନିଷ୍ପ୍ରଭ ହୋଇଯାଇଥିଲା । କମ୍ୟୁନ୍‌ର ବିଜୟ ଫଳରେ ଜାକୋବିନ୍‌ମାନେ କନ୍‌ଭେନ୍‌ସନ୍‌ର ଅଧିକାରୀ ହେଲେ । କନ୍‌ଭେନ୍‌ସନ୍‌ର ମୁଖ୍ୟ କାର୍ଯ୍ୟ ଥିଲା ନୂତନ ସାଧାରଣତନ୍ତ୍ର ପାଇଁ ସମ୍ବିଧାନ ପ୍ରସ୍ତୁତକରିବା; କିନ୍ତୁ ତାହାଠାରୁ ଅଧିକ ଜରୁରୀ ସମସ୍ୟାଗୁଡ଼ିକର ସମାଧାନ ନିମନ୍ତେ ଦାବି ଉଠିବାରୁ ସମ୍ବିଧାନ ପ୍ରସ୍ତୁତ ବାଧା ପାଇଥିଲା । ବହିଃଶତ୍ରୁର ଆକ୍ରମଣ ସବୁ ସମସ୍ୟାକୁ ବଳବତ୍ତର କରିଥିଲା । ଯାହାହେଉ ଜାକୋବିନ୍‌ମାନେ କନ୍‌ଭେନ୍‌ସନ୍‌କୁ ଅଧିକାର କରିନେଲା ପରେ, ଯୁଦ୍ଧ ପ୍ରତି ଧ୍ୟାନ ଦେବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ପାଇଲେ । ଯୁଦ୍ଧଯୋଗୁଁ ଯେଉଁ ସମସ୍ୟା ଉପୁଜିଥିଲା, ତାହାର ଗୁରୁତ୍ୱ ଦୃଷ୍ଟିରୁ ଅନ୍ୟ ସବୁ ପ୍ରଶ୍ନକୁ ବିଚାରକୁ ନିଆଯାଇ ନଥିଲା । ତେଣୁ ଜାକୋବିନ୍‌ମାନେ କିପରି ପ୍ରତିରକ୍ଷା ବ୍ୟବସ୍ଥା କରି ଜାତୀୟ ଗୌରବକୁ ଫେରାଇ ଆଣିପାରିବେ, ସେ ବିଷୟ ଚିନ୍ତା କରିବାକୁ ଲାଗିଲେ ।

## ବିପ୍ଳବର ଇଉରୋପକୁ ଯୁଦ୍ଧ ଆହ୍ୱାନ
## (The Revolution's Challenge to Europe)

ଫରାସୀ ରାଷ୍ଟ୍ର ବିପ୍ଳବର ସୂତ୍ରପାତ ହେବା ବର୍ଷେ ଦୁଇବର୍ଷ ମଧ୍ୟରେ ଫ୍ରାନ୍ସ ସହିତ ଇଉରୋପର ସଂଘର୍ଷ ଉପୁଜିବାର କେହି ପ୍ରାୟ ଆଶା କରୁ ନଥିଲେ; କାରଣ ଇଉରୋପୀୟ ଶକ୍ତିମାନେ ବିପ୍ଳବକୁ ପ୍ରଥମେ ପ୍ରଥମେ ହେୟଜ୍ଞାନ କରୁଥିଲେ । ଫ୍ରାନ୍ସରେ ମଧ୍ୟ ବିପ୍ଳବକୁ ବହୁତ କିଛି କରିବାର ଥିଲା; ତେଣୁ ଇଉରୋପ ବିଷୟରେ ମୁଣ୍ଡ ଖେଳାଇବାକୁ ତାର ସମୟ ନଥିଲା । ଇଉରୋପର ଦୃଷ୍ଟିକୋଣରୁ ବିଚାରକଲେ ସ୍ପଷ୍ଟ ଜଣାଯାଏ ଯେ ଇଉରୋପର ସ୍ୱେଚ୍ଛାଚାରୀ ଶାସକମାନେ ଆରମ୍ଭରେ ବିପ୍ଳବକୁ ଭୁଲ ଅର୍ଥରେ ବୁଝିଥିଲେ ଓ ତା ଉପରେ କୌଣସି ଗୁରୁତ୍ୱ ଆରୋପ କରି ନଥିଲେ । ମୋଟ ଉପରେ କହିବାକୁ ଗଲେ ଇଉରୋପର ରାଜନ୍ୟବର୍ଗ ପ୍ରଥମେ ପ୍ରଥମେ ବିପ୍ଳବକୁ ସ୍ୱାଗତ ଜଣାଇଥିଲେ । ସେ ଭାବିଥିଲେ ଯେ ଫ୍ରାନ୍ସ ପରି ଏକ ଶକ୍ତିଶାଳୀ ରାଷ୍ଟ୍ର ପୂର୍ବପରି ଇଉରୋପର ରାଜନୀତିରେ ଆଉ ମୁଖ୍ୟ ଭୂମିକା ଗ୍ରହଣ କରିପାରିବ ନାହିଁ କି ସେମାନେ ଅନ୍ୟ କେଉଁଠାରେ ଆକ୍ରମଣାତ୍ମକ ନୀତି ଅବଲମ୍ବନ କଲେ ଫ୍ରାନ୍ସ ସେମାନଙ୍କୁ ଆଉ ବାଧାଦେଇ ପାରିବ ନାହିଁ । ରାଜା ଭାରେନ୍‌ନେସ୍‌କୁ (Varnnes) ପଳାଇଗଲାପରେ ଇଉରୋପୀୟ ଶକ୍ତିମାନେ ସେମାନଙ୍କର ଭୁଲ୍ ବୁଝିପାରିଥିଲେ ମଧ୍ୟ ତଥାପି ସେମାନେ ଫ୍ରାନ୍ସ ସହିତ କଳହ କରିବାକୁ ପ୍ରସ୍ତୁତ ନଥିଲେ । ସମ୍ଭବତଃ ରାଜା ସ୍ୱଦେଶ-ତ୍ୟାଗୀମାନଙ୍କୁ ଶାନ୍ତକରିବା ପାଇଁ ତାଙ୍କର ସାଥିରାଜାମାନଙ୍କ ସହିତ ଏକ ମିଳିତ କାର୍ଯ୍ୟ-ପନ୍ଥା ଗ୍ରହଣ କରିବା ବିଷୟରେ ପରାମର୍ଶ କରିଥିଲେ ଏବଂ ଏହାର ଫଳ ହେଲା, ପିଲ୍‌ନିଟ୍ଜ୍ ଘୋଷଣା (Declaration of Pillnitz) ଏହି ଘୋଷଣାରେ ରାଜାଙ୍କର ଦୁଃଖଦାୟକ ଅବସ୍ଥାକୁ ସାଧାରଣ ସ୍ୱାର୍ଥଜଡ଼ିତ ବିଷୟ (a matter of common interest) କୁହାଗଲେ ମଧ୍ୟ, ଅଷ୍ଟ୍ରିଆର ସମ୍ରାଟ ଜାଣିଥିଲେ ଯେ ଏ ଘୋଷଣାକୁ କାର୍ଯ୍ୟକାରୀ କରିବାକୁ ହେଲେ ଇଉରୋପର ସବୁ ରାଜାଙ୍କୁ ରାଜିହେବାକୁ ପଡ଼ିବ ଏବଂ ଏହା ସହଜସାଧ୍ୟ ନୁହେଁ ବୋଲି ସେ ବିଚାରିଥିଲେ । ସେ ଯାହାହେଉ ଇଉରୋପୀୟ ଶକ୍ତିମାନଙ୍କର ଗୋଟାଏ ଭୁଲ ଧାରଣା ଥିଲା ଯେ ବିପ୍ଳବ ଏକ ସ୍ଥାନୀୟ ଆନ୍ଦୋଳନ ଏବଂ ତାହା ସେମାନଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରିବ ନାହିଁ ।

ବୈପ୍ଳବିକ ଫ୍ରାନ୍ସ ମଧ୍ୟ ବିଦେଶୀ ଶତ୍ରୁମାନଙ୍କ ପ୍ରତି ସେହିପରି ଶାନ୍ତିପୂର୍ଣ୍ଣ ମନୋଭାବ ପୋଷଣ କରିଥିଲା । ଯେତେବେଳେ ବିପ୍ଳବୀ ନିଦରଲାଣ୍ଡ (ବେଲଜିୟମ) ୧୭୯୦ ମସିହାରେ ଅଷ୍ଟ୍ରିଆର ସମ୍ରାଟଙ୍କ ବିରୁଦ୍ଧରେ ଫ୍ରାନ୍ସର ସାହାଯ୍ୟ ଲୋଡ଼ିଲା, ସେତେବେଳେ ଫରାସୀ ସରକାର ମିରାବୁଙ୍କ ଦ୍ୱାରା ପ୍ରଭାବିତ ହୋଇ ତାହା ପ୍ରତ୍ୟାଖ୍ୟାନ କଲା । ସେହିବର୍ଷ ଇଂଲଣ୍ଡ ସହିତ ବିବାଦ ବେଳେ, ସ୍ପେନ ପାରିବାରିକ ଚୁକ୍ତି (Family Compact) ବଳରେ ଫ୍ରାନ୍ସଠାରୁ ଯେଉଁ ସାହାଯ୍ୟ ଆଶା କରୁଥିଲା, ତାହା ମିଳି ନଥିଲା; କାରଣ ଫ୍ରାନ୍ସ ସେ

ଚୁକ୍ତିକୁ ଅଗ୍ରାହ୍ୟ କରିଦେଲା । ଫ୍ରାନ୍ସ ସହିତ ସଂଯୁକ୍ତ ହେବା ପାଇଁ ଏଭିଗନନ୍‌ର (Avignon) ଆବେଦନ ପତ୍ରକୁ ମଧ୍ୟ ଫ୍ରାନ୍ସ ବର୍ଷେ ଯାଏଁ ଗ୍ରହଣ କରିନଥିଲା ।

ନିଜ ବିଷୟ ପ୍ରତି କେବଳ ଧ୍ୟାନଦେବା ଅତି ପ୍ରଶଂସନୀୟ ମନୋଭାବ ହେଲେ ମଧ୍ୟ ସେ ମନୋଭାବକୁ ବହୁଦିନ ଧରି ବଜାୟ ରଖିବା ଫ୍ରାନସ ପକ୍ଷରେ ସମ୍ଭବ ହୋଇପାରି-ନଥିଲା । ଫ୍ରାନ୍ସ ଶେଷରେ ରାଜି ହେବାରୁ, ଏଭିଗ୍‌ନନ୍ ୧୭୯୧ ମସିହାରେ ଫ୍ରାନ୍ସ ସହିତ ସଂଯୁକ୍ତ ହେଲା । ଫ୍ରାନସ ସହିତ ଏଭିଗନନ୍‌ର ମିଶ୍ରଣ ପୁରାତନ ଶାସନର ରାଜ୍ୟ ସଂପ୍ରସାରଣ ନୀତି ଉପରେ ପ୍ରତିଷ୍ଠିତ ନୁହେଁ ବୋଲି ଫ୍ରାନ୍ସ ସମସ୍ତଙ୍କୁ ଜଣାଇ ଦେଇଥିଲା । ଏ ବିଷୟରେ ସ୍ପଷ୍ଟୀକରଣ ଦେବାକୁ ଯାଇ କହିଥିଲା ଯେ, ଏଭିଗନନ୍‌ର ଲୋକେ ସ୍ୱତଃ ପ୍ରବୃତ୍ତ ହୋଇ ଫ୍ରାନ୍ସ ସହିତ ମିଶିବାକୁ ଚାହୁଁଥିବାରୁ , ଫ୍ରାନ୍ସ ସେମାନଙ୍କୁ ଗ୍ରହଣ କରିବାକୁ ମନା କରି-ଦେଇ ପାରିଲା ନାହିଁ । ଅନ୍ୟ ପଟରେ ବିଦେଶୀ ଶକ୍ତିମାନେ ଯୁକ୍ତି ବାଢ଼ିଥିଲେ ଯେ ଭୌଗଳିକ ଦୃଷ୍ଟିରୁ ଏଭିଗ୍‌ନନ ଫ୍ରାନସର ଏକ ଅଂଶ ହେଲେ ମଧ୍ୟ ଚତୁର୍ଦ୍ଦଶ ଶତାବ୍ଦୀରୁ ତାହା ପୋପଙ୍କ ଅଧୀନରେ ରହିଥିଲା । ସୁତରାଂ ଏ ମିଶ୍ରଣ ହେବାଦ୍ୱାରା ଆନ୍ତର୍ଜାତିକ ଆଇନ ଭଙ୍ଗ କରାଗଲା ଓ ଇଉରୋପୀୟ ରାଜନୀତି ବିପର୍ଯ୍ୟସ୍ତ ହେଲା । ପୁଣି ସେମାନଙ୍କର ଦୃଷ୍ଟିରେ ଫ୍ରାନ୍ସ ଏହା ଦ୍ୱାରା ଏକ ଅରାଜକ ଶକ୍ତି (anarchical force) ବୋଲି ପ୍ରମାଣିତ ହେଲା ଓ ଅନ୍ୟାନ୍ୟ ରାଜାମାନଙ୍କର ଅଧିକାରଗୁଡ଼ିକ ବଳପୂର୍ବକ ଅପହରଣ କରିନେବାର ସମ୍ଭାବନା ମଧ୍ୟ ରହିଲା । ମିରାବୁଙ୍କର ଜଣେ ବନ୍ଧୁ ଘୋଷଣା କଲେ, "ଏକଥା ସ୍ପଷ୍ଟ ଯେ, ଏପରି କାର୍ଯ୍ୟ (ମିଶ୍ରଣ) ପରେ ଫ୍ରାନ୍ସ ସବୁ ସରକାରଗୁଡ଼ିକଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ହେବ; ସେ ସେମାନଙ୍କୁ ଆଭ୍ୟନ୍ତରୀଣ ବିଦ୍ରୋହର ଧମକ ଦେବ, ଏବଂ ବିଦ୍ରୋହ ରାଜ୍ୟ ଜୟ ପାଇଁ ପଥପ୍ରଦର୍ଶକ ହେବ ।" (A friend of Mirabeau declared, "It is evident that after such conduct France will be in a state of war with all governments; she will threaten them with domestic insurrection, and insurrection will lead to conquest.")

ଗିରନ୍ଡିନମାନଙ୍କର ଉତ୍ତେଜନାପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ଯଦି ଅଷ୍ଟ୍ରିଆ ସହିତ ସିଧାସଳଖ ବିବାଦ ସୃଷ୍ଟି କରିନଥାନ୍ତା, ତାହାହେଲେ ଫ୍ରାନସର ରାଣୀଙ୍କର ଅଷ୍ଟ୍ରିଆର ସମ୍ରାଟଙ୍କ ସହିତ ରକ୍ତଗତ ସମ୍ପର୍କ ଏବଂ ସ୍ୱଦେଶତ୍ୟାଗୀମାନଙ୍କର ଯୁଦ୍ଧ ଲଗାଇବା ପାଇଁ ଉଦ୍ୟମସତ୍ତ୍ୱେ ଫ୍ରାନ୍ସ ଓ ପୁରାତନ ରାଜତନ୍ତ୍ର (ancient monarchy) ମଧ୍ୟରେ ଉପୁଜିଥିବା ମତଭେଦ ସମ୍ଭବତଃ ଶାନ୍ତିପୂର୍ଣ୍ଣ ଭାବରେ ମୀମାଂସା ହୋଇପାରିଥାନ୍ତା । ପ୍ରକୃତରେ ରାଜା ଗିରନ୍ଡିନମାନଙ୍କର ଚାପରେ ଅଷ୍ଟ୍ରିଆର ସମ୍ରାଟଙ୍କ ବିରୁଦ୍ଧରେ ୧୭୯୨ ମସିହା ଅପ୍ରେଲ ମାସ ୨୦ ତାରିଖ ଦିନ ଯୁଦ୍ଧଘୋଷଣା କରିଥିଲେ । ପ୍ରୁସିଆ, ଅଷ୍ଟ୍ରିଆ ସହିତ ଚୁକ୍ତିରେ ଆବଦ୍ଧ ହୋଇଥିବାରୁ ଏ ଘୋଷଣା ପ୍ରୁସିଆ ପ୍ରତି ପ୍ରଯୁଜ୍ୟ ହୋଇଥିଲା ।

ଅଷ୍ଟ୍ରିଆ ଓ ପ୍ରୁସିଆ ଫ୍ରାନ୍‌ସ ବିରୁଦ୍ଧରେ ଅସ୍ତ୍ରଧାରଣ କଲେ । ଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଫ୍ରାନ୍‌ସ ବିପକ୍ଷଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ଡୁମୁରିଜ୍-ବେଲଜିୟମ (ଅଷ୍ଟ୍ରିଆନ ନେଦରଲାଣ୍ଡସ୍) ଆକ୍ରମଣ କରିବା ପାଇଁ ଗିରଦଳ ସୈନ୍ୟ ପଠାଇଥିଲେ, କିନ୍ତୁ ସେମାନେ ଠିକ୍ ଭାବରେ ସଂଗଠିତ ହୋଇପାରିନଥିବାରୁ, ଅଷ୍ଟ୍ରିଆ ଓ ପ୍ରୁସିଆର ମିଳିତ ସୈନ୍ୟବାହିନୀ ନିକଟରେ ପରାସ୍ତ ହୋଇ ପଛଘୁଞ୍ଚା ଦେଇଥିଲେ । ଫ୍ରାନସର ଏ ଦୁର୍ଦ୍ଦଶା ପାଇଁ ଲୋକମାନେ ରଜା ଷୋଡ଼ଶ ଲୁଇଙ୍କୁ ଦୋଷ ଦେଇଥିଲେ ଓ ସେ ଅଷ୍ଟ୍ରିଆ ସୈନ୍ୟବାହିନୀର ସମର୍ଥକ ବୋଲି କହୁଥିଲେ । ରାଜାଙ୍କର ଅବସ୍ଥା ସଙ୍କଟ-ଜନକ ଦେଖି, ପ୍ରୁସିଆର ସେନାଧ୍ୟକ୍ଷ ଡ୍ୟୁକ୍-ଅଫ୍-ବ୍ରନ୍‌ସୱିକ୍ ଏକ ଘୋଷଣା ପତ୍ରରେ ପ୍ରକାଶ କରିଥିଲେ ଯେ ରଜା ଓ ତାଙ୍କ ପରିବାର ବିରୁଦ୍ଧରେ ସାମାନ୍ୟ ହିଂସାକାଣ୍ଡ ଘଟିଲେ, ସେ ପ୍ୟାରିସ୍ ସହରକୁ ଛାରଖାର କରିଦେବେ । ରଜା ବିଦେଶୀ ଶତ୍ରୁମାନଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ଅଛନ୍ତି ବୋଲି ଲୋକମାନଙ୍କର ଯେଉଁ ଧାରଣା ଥିଲା, ତାହା ଏହି ଘୋଷଣାପତ୍ର ଦ୍ୱାରା ସୁଦୃଢ଼ ହୋଇଯାଇଥିଲା । ଏହାର ପରିଣାମ ସ୍ୱରୂପ ରଜାଙ୍କୁ ଅସ୍ଥାୟୀ ଭାବରେ ପଦଚ୍ୟୁତ କରାଗଲା ଏବଂ ଜାତୀୟ କନ୍‌ଭେନ୍‌ସନର ନିର୍ବାଚନ ପାଇଁ ବିଧାନସଭା ଆଦେଶଦେଲା । ଫ୍ରାନ୍‌ସର ପରାଜୟ ପରେ ପରେ ପ୍ରୁସିଆର ସୈନ୍ୟବାହିନୀ ବ୍ରନ୍‌ସୱିକ୍‌ଙ୍କର ନେତୃତ୍ୱରେ ପ୍ୟାରିସ୍ ଆଡ଼କୁ ଅଗ୍ରସର ହୋଇଥିଲେ ଏବଂ ଆରଗନ୍‌ରେ (Argonne) ଆସି ପହଞ୍ଚି ଯାଇଥିଲେ । ଅଷ୍ଟ୍ରୀୟମାନେ ଲିଲ୍ (Lille) ଅବରୋଧ କଲେ । ଭର୍‌ଡୁନ (Verdun) ଏବଂ ଲଙ୍ଗୱି (Longwy) ପତନ ପ୍ୟାରିସ୍‌ରେ ଆତଙ୍କଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଅଷ୍ଟ୍ରିଆ ଓ ପ୍ରୁସିଆର ସୈନ୍ୟ-ବାହିନୀ ଏବଂ ପ୍ୟାରିସ୍ ମଧ୍ୟରେ ଥିବା ସବୁ ଦୁର୍ଗଗୁଡ଼ିକ ଶତ୍ରୁ କବଳରେ ପଡ଼ିଥିଲା । ତେଣୁ ପ୍ୟାରିସ୍ ଆଡ଼କୁ ମାଡ଼ି ଆସୁଥିବା ବିଦେଶୀ ଶତ୍ରୁସେନାଙ୍କୁ କାଳେ ରାଜାଙ୍କ ସମର୍ଥକମାନେ ସାହାଯ୍ୟ କରିବେ, ସେହି ଆଶଙ୍କାରେ ଜାକୋବିନ୍‌ମାନେ ସେପ୍‌ଟେମ୍ବର ହତ୍ୟାକାଣ୍ଡ (September massacres) ଘଟାଇଲେ ଏବଂ ଅଷ୍ଟ୍ରିଆ ଓ ପ୍ରୁସିଆର ସୈନ୍ୟବାହିନୀର ଆକ୍ରମଣରୁ ପ୍ୟାରିସ୍‌କୁ ରକ୍ଷା କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ପ୍ରୁସିଆ ସୈନ୍ୟବାହିନୀର ଅଗ୍ରଗତିକୁ ବାଧା ଦେବା ପାଇଁ ଫ୍ରାନ୍‌ସର ସୈନ୍ୟବାହିନୀକୁ ପଠାଯାଇଥିଲା । ଫଳରେ ପ୍ରୁସୀୟମାନେ ଭାଲ୍‌ମିଠାରେ (Valmy) ପରାସ୍ତ ହେଲେ ଓ ସେମାନଙ୍କର ଅଗ୍ରଗତିକୁ ରୋକି ଦିଆଗଲା । ଫ୍ରାନ୍‌ସ ୧୭୯୨ ମସିହା ସେପ୍‌ଟେମ୍ବର ୨୦ ତାରିଖ ଦିନ ଆସନ୍ନ ବିପଦରୁ ରକ୍ଷାପାଇଲା । ଠିକ୍ ସେହିଦିନ ବିଧାନସଭାର କାର୍ଯ୍ୟକାଳ ଶେଷ କରିଦିଆଗଲା । ନୂତନ ସମ୍ବିଧାନ ପ୍ରଣୟନ କରିବା ପାଇଁ ଜାତୀୟ କନ୍‌ଭେନ୍‌ସନ୍ (National Convention) ୧୭୯୨ ମସିହା ସେପ୍‌ଟେମ୍ବର ୨୧ ତାରିଖ ଦିନ ବସିଲା ।

ଭାଲ୍‌ମି ଯୁଦ୍ଧ ପରେ ଯୁଦ୍ଧର ଗତି ବଦଳିଗଲା । ପ୍ରୁସୀୟମାନେ ଭାବିଲେ ଯେ ଅଷ୍ଟ୍ରୀୟମାନେ ସେମାନଙ୍କ ପ୍ରତି ବିଶ୍ୱାସଘାତକତା କରିଛନ୍ତି; ତେଣୁ ଅଧିକ ବିପଦ ବରଣ

ନ କରି ସେମାନେ ଫରାସୀ ଅଞ୍ଚଳରୁ ହଟି ଯାଇଥିଲେ । ଫରାସୀମାନେ କନ୍ତୁ ଏହି ବିଜୟରେ ଉତ୍ସାହିତ ହୋଇ ଆକ୍ରମଣାତ୍ମକ ନୀତି ଅବଲମ୍ବନ କରିଥିଲେ । ସେମାନେ ଅଷ୍ଟ୍ରୀୟମାନଙ୍କୁ ତଡ଼ିଦେଇ ସେମାନଙ୍କ କବଳରୁ ଲିଲ୍କୁ (Lille) ମୁକ୍ତ କରିଥିଲେ । ଡ୍ରମେଉ ବେଲଜିୟମ ସୀମାରେ ଥିବା ଜେମାପେସ୍ଠାରେ (Jemappes) ଅଷ୍ଟ୍ରୀୟମାନଙ୍କୁ ପରାସ୍ତ କରିଥିଲେ ଏବଂ ବେଲଜିୟମ (ଅଷ୍ଟ୍ରିଆନ ନେଦରଲାଣ୍ଡସ୍) ଅଧିକାର କରିଥିଲେ । ଅନ୍ୟାନ୍ୟ ଘାଟୀମାନଙ୍କରେ ମଧ୍ୟ ଫରାସୀମାନେ ବିଜୟ ହାସଲ କରିଥିଲେ । ଗୋଟିଏ ଫରାସୀ ସୈନ୍ୟଦଳ ରାଇନ୍ (the Rhine) ସୀମାନ୍ତରେ କେତେଗୁଡ଼ିଏ ସ୍ଥାନ ଅଧିକାର କରିନେଇଥିଲେ । ଅନ୍ୟ ଏକ ଫରାସୀ ସୈନ୍ୟଦଳ ସେଭସ୍ (Savoy) ଦଖଲ କରିନେଇଥିଲେ । ତୃତୀୟ ଫରାସୀ ସୈନ୍ୟଦଳ ନାଇସ୍ (Nice) ଅଧିକାର କରିଥିଲେ । ତେଣୁ ୧୭୯୩ ମସିହାବେଳକୁ ବେଲଜିୟମ, ସେଭସ୍ ଏବଂ ନାଇସ୍ ଫ୍ରାନ୍ସ ସାଧାରଣତନ୍ତ୍ର ସୈନ୍ୟବାହିନୀର ଅଧିକାରରେ ଥିଲା । ତା'ଛଡ଼ା ମଧ୍ୟ ରାଇନ୍ ସେମାନଙ୍କର ହାତମୁଠାରେ ଥିଲା ।

ରାଜା ଷୋଡ଼ଶ ଲୁଇଙ୍କୁ ଷଡ଼ଯନ୍ତ୍ର କରୁଥିବା ଅପରାଧରେ ଦୋଷୀ ସାବ୍ୟସ୍ତ କରି, ଜାତୀୟ କନ୍ଭେନସନ୍ ପ୍ରାଣଦଣ୍ଡ ଆଦେଶ ଦେଲା ଏବଂ ୧୭୯୩ ମସିହା ଜାନୁୟାରୀ ୨୧ ତାରିଖ ଦିନ ଗିଲୋଟିନ୍ ଯନ୍ତ୍ର ସାହାଯ୍ୟରେ ତାଙ୍କୁ ହତ୍ୟା କରାଗଲା । ରାଜାଙ୍କୁ ହତ୍ୟା କରାଯିବା ଯୋଗୁଁ ଏକ ଦିଗରେ ତାଙ୍କ ସପକ୍ଷରେ କେତେକ ପ୍ରଦେଶ (ଡିପାର୍ଟମେଣ୍ଟ) ସାଧାରଣତନ୍ତ୍ର ବିରୁଦ୍ଧରେ ବିଦ୍ରୋହ କଲେ, ଏବଂ ଅନ୍ୟ ଦିଗରେ ସାରା ଇଉରୋପ, ରାଜତନ୍ତ୍ର ଶାସନ-ବିରୋଧୀ ନୀତି ପାଇଁ, ଫ୍ରାନ୍ସ ସାଧାରଣତନ୍ତ୍ରକୁ ଦାୟୀ କଲା ଏବଂ ଆକ୍ରମଣକାରୀ ସାଧାରଣତନ୍ତ୍ର ବିରୁଦ୍ଧରେ ଠିଆହେଲା ।

## ରାଜା ଷୋଡ଼ଶ ଲୁଇଙ୍କୁ ହତ୍ୟା କରିବାର ପରିଣାମ

ସାଧାରଣତନ୍ତ୍ରବାଦୀମାନେ ସେମାନଙ୍କର ବିଜୟରେ ଉନ୍ମତ୍ତ ହୋଇ ଆକ୍ରମଣାତ୍ମକ ମନୋଭାବ ପୋଷଣକଲେ ଏବଂ ଇଉରୋପରେ ପ୍ରଚଳିତ ରାଜତନ୍ତ୍ର ଶାସନର ଲୋପ ପାଇଁ ଆହ୍ୱାନ ଦେଇଥିଲେ । ସେମାନଙ୍କ ମତରେ ବିପ୍ଲବ ହେଲା, ଏକ ବିବଦମାନ ଶକ୍ତି ଏବଂ ପୃଥିବୀର ମୁକ୍ତି ପାଇଁ ଏକ ବିରାଟ ଯୁଦ୍ଧ ଅଭିଯାନ । ଫରାସୀମାନେ ଇଉରୋପର ସବୁଜାତିର ଲୋକମାନଙ୍କୁ ସେମାନଙ୍କର ରାଜାମାନଙ୍କ ବିରୁଦ୍ଧରେ ବିପ୍ଲବ କରିବା ପାଇଁ ପ୍ରଚାରପତ୍ର ମାଧ୍ୟମରେ ଡାକରା ଦେଇଥିଲେ ଏବଂ ସେଥିପାଇଁ ସୈନ୍ୟ ସାହାଯ୍ୟ (armed assistance) ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ଏପରି ଦୃଷ୍ଟିଭଙ୍ଗୀ ଅନ୍ୟାନ୍ୟ ସରକାରମାନଙ୍କର ନିରାପତ୍ତା ଏବଂ ସ୍ଥିତି ପ୍ରତି ଏକ ବଡ଼ ଧମକ । ବାସ୍ତବରେ ଫ୍ରାନ୍ସ ସାଧାରଣତନ୍ତ୍ର ଇଉରୋପର ରାଜତନ୍ତ୍ର ବିରୁଦ୍ଧରେ ନୀତିଗତ ଯୁଦ୍ଧ (War of Principles) ଘୋଷଣା କରିଥିଲା । ନୀତି ଦୃଷ୍ଟିରୁ ବିଚାରକରି ଫ୍ରାନ୍ସର ସାଧାରଣତନ୍ତ୍ର ସରକାର ନିଷ୍ପତ୍ତି କରିଥିଲା ଯେ ତାକୁ ସାରା ଇଉରୋପରେ ସ୍ୱାଧୀନତା ଓ ସମାନତା ପ୍ରତିଷ୍ଠା କରିବାକୁ

ହେବ ଏବଂ ସ୍ୱେଚ୍ଛାଚାରୀ ଶାସନର ମୂଳୋତ୍ପାଟନ କରିବାକୁ ପଡ଼ିବ । ତାପରେ କନ୍‌ଭେନ୍‌ସନ୍ ଘୋଷଣା କଲା ଯେ, "ଯେଉଁମାନେ ସ୍ୱାଧୀନତା ଏବଂ ସମାନତାକୁ ପ୍ରତ୍ୟାଖ୍ୟାନ କରି ବା ସେ ଦୁଇଟି ଦାବି ପରିତ୍ୟାଗ କରି ରାଜା କିମ୍ବା ବିଶେଷ ଅଧିକାର ପ୍ରାପ୍ତ ଶ୍ରେଣୀମାନଙ୍କ ସହିତ ବୁଝାମଣା କରିବାକୁ ଇଚ୍ଛା କରୁଥିବେ, ସେମାନଙ୍କୁ ଫରାସୀ ଜାତି ଶତ୍ରୁ ଭଳି ବ୍ୟବହାର କରିବ ।" (The French nation would treat as enemies those who, refusing liberty and equality or renouncing them, may wish to···treat with prince or the privileged classes.")

ଫ୍ରାନ୍‌ସ ଯେଉଁ ଯୁଦ୍ଧ ଘୋଷଣା କଲା, ତାହା କେବଳ ସାଧାରଣତନ୍ତ୍ର ଏବଂ ରାଜତନ୍ତ୍ର ମଧ୍ୟରେ ନୀତିଗତ ଯୁଦ୍ଧ ନୁହେଁ, ତାହା ବହୁ ପରିମାଣରେ ଏକ ସ୍ୱାର୍ଥଜଡ଼ିତ ଘଟଣା । ଯେଉଁ ଯୁଦ୍ଧ ନୀତି ପ୍ରଚାର ଉଦ୍ଦେଶ୍ୟରେ ଆରମ୍ଭ ହୋଇଥିଲା, ତାହା କ୍ରମାଗତ ରାଜ୍ୟ ଜୟ ଉଦ୍ଦେଶ୍ୟରେ ବ୍ୟବହାର କରାଗଲା । ପ୍ରକୃତରେ ଫ୍ରାନ୍‌ସ ପାଇଁ ଯୁଦ୍ଧର ଆବଶ୍ୟକତା ଥିଲା । କାରଣ ବିପ୍ଳବ ଯୋଗୁ ଶିଳ୍ପ ଓ ବାଣିଜ୍ୟରେ ବିଶୃଙ୍ଖଳା ଘଟିଥିଲା ଏବଂ ବହୁ ଲୋକ ସେମାନଙ୍କର ଶାନ୍ତିପୂର୍ଣ୍ଣ ବୃତ୍ତି ଛାଡ଼ିଦେବାକୁ ବାଧ୍ୟ ହୋଇଥିଲେ । ଏପରି ପରିସ୍ଥିତିରେ ଅଧିକ ଗୌରବ ଅର୍ଜନ କରିବା ପାଇଁ ଇଚ୍ଛା କରୁଥିବା ବିଜୟୀ ସୈନ୍ୟବାହିନୀକୁ ଘରକୁ ଫେରାଇଆଣି, ସେଥିରେ ଥିବା ସୈନ୍ୟମାନଙ୍କର ଚଳିବା ପାଇଁ କୌଣସି ଉପାୟ ନକରି, ବା ସେମାନଙ୍କୁ କୌଣସି ଚାକିରି ଯୋଗାଇ ନ ଦେଇ, ତାକୁ ଭାଙ୍ଗି ଦେବା ବଡ଼ ବିପଜ୍ଜନକ । ତେଣୁ ଫ୍ରାନ୍‌ସର ସାଧାରଣତନ୍ତ୍ର-ସରକାର ନିଜକୁ ଏ ବିପଦରୁ ରକ୍ଷାକରିବାକୁ ଯାଇ ଯୁଦ୍ଧ ଆଡ଼କୁ ଢଳିଥିଲା । ଫରାସୀମାନେ ମଧ୍ୟ ବୁର୍ବନ୍ ନୀତି ଅନୁସରଣ କରି ଫ୍ରାନ୍‌ସର ସୀମାରେଖାଗୁଡ଼ିକୁ ତାହାର 'ପ୍ରାକୃତିକ' ସୀମା—ଆଲ୍‌ପସ୍ (the Alps), ପାଇରିନସ୍ (the Pyrenes) ଏବଂ ରାଇନ (the Rhine) ପର୍ଯ୍ୟନ୍ତ ବଢ଼ାଇବାକୁ ଉଦ୍ୟମ କରିଥିଲେ ଏବଂ ଏପରି କରିବା ଦ୍ୱାରା ଫ୍ରାନ୍‌ସର ସୀମାଗୁଡ଼ିକ ସୁରକ୍ଷିତ ହୋଇ-ପାରିବ ବୋଲି ସେମାନେ ବିଶ୍ୱାସ କରିଥିଲେ । ସେମାନେ ବେଲ୍‌ଜିୟମ୍ ଆକ୍ରମଣ କଲା-ବେଳେ ପ୍ରାକୃତିକ ସୀମାର ସିଦ୍ଧାନ୍ତ ଉପସ୍ଥାପିତ କରିଥିଲେ । ପ୍ରକୃତିଗତ ଅଧିକାର (natural rights) ନାମରେ ସବୁ ଦେଶର ନୌଯାନ ପାଇଁ ସ୍କେଲ୍‌ଡ୍‌ଟକୁ (Scheldt) ଖୋଲି ଦେଇଥିଲେ । ଏହିପରି ବିଭିନ୍ନ ଆଳରେ ଫରାସୀମାନେ ଫ୍ରାନ୍‌ସର ବୈଦେଶିକ ନୀତିର ପାରମ୍ପରିକ ଲକ୍ଷ୍ୟ ହାସଲ କରିବାକୁ ଚାହୁଁଥିଲେ ।

ଫ୍ରାନ୍‌ସର ଆକ୍ରମଣାତ୍ମକ ଦୃଷ୍ଟିଭଙ୍ଗୀ ସହିତ ରାଜାଙ୍କର ହତ୍ୟା ଫଳରେ ଇଉରୋପରେ ଉପୁଜିଥିବା କ୍ରୋଧର ଝଡ଼ ମିଶି, ସାରା ଇଉରୋପକୁ ଫ୍ରାନ୍‌ସ ବିରୁଦ୍ଧରେ ଏକତାବଦ୍ଧ କରିଥିଲା । ପ୍ରୁସିଆ ଏବଂ ଅଷ୍ଟ୍ରିଆ ସହିତ ଫ୍ରାନ୍‌ସ ଆଗରୁ ଯୁଦ୍ଧରେ ବ୍ୟାପୃତ

ଥିଲା । ଫ୍ରାନ୍ସର ବେଲଜିୟମ ଅଧିକାରକୁ ଇଂଲଣ୍ଡ ଏବଂ ହଲାଣ୍ଡ ସେମାନଙ୍କ ପ୍ରତି ଏକ ବିପଜ୍ଜନକ ସଙ୍କେତ ବୋଲି ମନେକଲେ । ତା'ଛଡ଼ା ଶ୍କେଲ୍‌ଡ୍‌ଟକୁ ଖୋଲିଦେବା ଦ୍ୱାରା ଫ୍ରାନ୍ସ ଇଂଲଣ୍ଡକୁ ବିବାଦ ପାଇଁ ଏକ ଆହ୍ୱାନ ଦେଇଥିଲା, କାରଣ ହଲଣ୍ଡର ସ୍ୱାର୍ଥ ଦୃଷ୍ଟିରୁ ତାକୁ ବନ୍ଦ ରଖିବା ପାଇଁ ଇଂଲଣ୍ଡ ଦାୟିତ୍ୱ ନେଇଥିଲା । ରାଜା ଷୋଡ଼ଶ ଲୁଇଙ୍କୁ ହତ୍ୟା-କରାଯିବାରୁ ଫ୍ରାନ୍ସ ବିରୁଦ୍ଧରେ ଇଂରେଜମାନଙ୍କର ଯୁଦ୍ଧ ମନୋବୃତ୍ତି ପ୍ରକାଶ ପାଇଲା । ଲଣ୍ଡନରେ ଥିବା ବେପରକଂଶ ଫରାସୀ ରାଷ୍ଟ୍ରଦୂତ ଚାଉଭେଲିନ୍‌କୁ (Chauvelin) ଇଂଲଣ୍ଡ ଛାଡ଼ି ଚାଲିଯିବାକୁ ଆଦେଶ ଦିଆଯାଇଥିଲା । ତା'ପରେ ଫ୍ରାନ୍ସ ଏ ଅପମାନର ପ୍ରତିଶୋଧ ନେବାପାଇଁ ଇଂଲଣ୍ଡ ଏବଂ ହଲାଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା । ଫ୍ରାନ୍ସ ୧୭୯୩ ମସିହା ଫେବୃୟାରି ମାସରେ ଇଂଲଣ୍ଡ ସହିତ ସବୁ ସମ୍ପର୍କ ଛିନ୍ନ କଲା-ପରେ, ତା ବିରୁଦ୍ଧରେ ଇଉରୋପୀୟ ଶକ୍ତିମାନଙ୍କର ପ୍ରଥମ ମେଣ୍ଟ (the First Coalition) ଗଢ଼ା ଯାଇଥିଲା । ଏହି ମେଣ୍ଟର ସଭ୍ୟମାନେ ହେଲେ ଅଷ୍ଟ୍ରିଆ, ପ୍ରୁସିଆ, ଇଂଲଣ୍ଡ ସ୍ପେନ୍ ଓ ସାର୍ଡିନିଆ । ଏହି ମେଣ୍ଟର ସ୍ପଷ୍ଟ (ଯଦିଓ ଗୋପନୀୟ) ଲକ୍ଷ୍ୟ ହେଲା, ଫ୍ରାନ୍ସକୁ ଖଣ୍ଡ ଖଣ୍ଡ କରିଦେବା । ଇଉରୋପୀୟ ଶକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ଫ୍ରାନ୍ସ ସହିତ ଯୁଦ୍ଧ କରିବା ପାଇଁ ସୈନ୍ୟବାହିନୀ ଯୋଗାଇଥିଲେ । ଇଂଲଣ୍ଡ କିନ୍ତୁ ଭିନ୍ନ ଭୂମିକା ଗ୍ରହଣ କରିଥିଲା । ସେ ଏ ମେଣ୍ଟକୁ ଦୁଇ ପ୍ରକାର ସାହାଯ୍ୟ କରିଥିଲା । ଏକ ଦିଗରେ ସେ ଏ ମେଣ୍ଟକୁ ଅର୍ଥ ଯୋଗାଇଥିଲା ଏବଂ ଅନ୍ୟ ଦିଗରେ ସେ ତାହାର ନୌଶକ୍ତିକୁ ଫରାସୀ ଉପନିବେଶ-ଗୁଡ଼ିକୁ ଅଧିକାର କରିନେବା ଓ ସମୁଦ୍ରଗୁଡ଼ିକରୁ ଫରାସୀ ବାଣିଜ୍ୟକୁ ଘଉଡ଼ିବା ଉଦ୍ଦେଶ୍ୟରେ ବ୍ୟବହାର କରିଥିଲା ।

ଇତ୍ୟବସରେ ଫ୍ରାନ୍ସକୁ ବିପ୍ଳବର ଅତି ସଙ୍କଟଜନକ ପରିସ୍ଥିତି ମଧ୍ୟରେ ଗତି କରିବାକୁ ପଡ଼ିଥିଲା । ଉଭୟ ବାହାରୁ ଓ ଭିତରୁ ଆକ୍ରମଣ ହେବାରୁ ବିପ୍ଳବ ଭୟାନକ ପରୀକ୍ଷାର ସମ୍ମୁଖୀନ ହୋଇଥିଲା । ଯୁଦ୍ଧର କେତେକ ସପ୍ତାହ ମଧ୍ୟରେ ଫ୍ରାନ୍ସରେ ହତାଶଭାବ ପ୍ରକାଶ ପାଇଲା ଏବଂ ଫ୍ରାନ୍ସର ଅନ୍ତର୍ଗତ ବିପର୍ଯ୍ୟୟ ଘଟିଲା । ହଲାଣ୍ଡ ଉପରେ ଫ୍ରାନ୍ସର ଆକ୍ରମଣକୁ ପ୍ରତିହତ କରାଯାଇଥିଲା । ଫ୍ରାନ୍ସର ସେନାପତି ଡୁମରିଜ୍ ଅଷ୍ଟ୍ରୀୟମାନଙ୍କଦ୍ୱାରା ୧୭୯୩ ମସିହା ମାର୍ଚ୍ଚ ୧୮ ତାରିଖ ଦିନ ନିରଓ୍ୱିନଡେନ୍ (Neerwinden)ଠାରେ ପରାଜିତ ହେଲେ । ଫରାସୀମାନଙ୍କର ଅଧିକୃତ ନେଦରଲଣ୍ଡରୁ (ବେଲଜିୟମରୁ) ଫରାସୀ ସୈନ୍ୟବାହିନୀକୁ ତଡ଼ିଦିଆଯାଇଥିଲା । ଡୁମରିଜ୍ ହତାଶ ହୋଇ ଶତ୍ରୁ ସଙ୍ଗରେ ଯୋଗ ଦେଲେ । ପ୍ରୁସୀୟମାନେ ଫରାସୀମାନଙ୍କୁ ମଧ୍ୟ ରାଇନ୍‌ରୁ ହଟାଇ ଦେଇଥିଲେ । ଇଂରେଜମାନେ ଡନକିର୍କ (Dunkirk) ଅବରୋଧ କଲେ ଓ ସ୍ପେନର ସୈନ୍ୟବାହିନୀ ପାଇରେନିସ୍ (the Pyrenees) ପାରହୋଇ ରୁସିଲନ୍ (Rousillon) ଦଖଲ କରିନେଲେ । ପୁନର୍ବାର ଫ୍ରାନ୍ସକୁ ଆକ୍ରମଣ କରାଯିବ ବୋଲି ଧମକ ଦିଆଗଲା ।

## ବିପ୍ଳବର ସଙ୍କଟମୟ କାଳ

ଯୁଦ୍ଧ ଆରମ୍ଭରେ ଭାଗ୍ୟ ବ୍ୟତୀତ ଆଉ କେହି ବିପ୍ଳବକୁ ରକ୍ଷା କରି ନ ଥିଲେ । ବୈପ୍ଳବିକ ଫ୍ରାନ୍ସକୁ ଧ୍ୱଂସ ମୁଖରୁ କେହି ଉଦ୍ଧାର କରିପାରି ନଥାନ୍ତେ; ଯଦି ଇଉରୋପର ଅନ୍ୟ ଗୋଟିଏ ଦୁର୍ବଳ ରାଷ୍ଟ୍ର, ପୋଲାଣ୍ଡକୁ ଧ୍ୱଂସ କରିଦେବା ପାଇଁ ଫ୍ରାନ୍ସର କେତେକ ଶତ୍ରୁ ରାଷ୍ଟ୍ର ଧମକ ଦେଇ ନ ଆନ୍ତେ । ତେଣୁ ଏହି ଦୁଇଟି ଦେଶ ମଧ୍ୟରୁ ଗୋଟିଏ—ପୋଲାଣ୍ଡ ବା ବୈପ୍ଳବିକ ଫ୍ରାନ୍ସ—ନିଶ୍ଚିତ ଭାବରେ ଶାନ୍ତି ପାଇବ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଏହି ଦୁଇଟି ଦେଶ ମଧ୍ୟରୁ ପୋଲାଣ୍ଡ ତାହାର ଲୁଣ୍ଠନକାରୀ ପ୍ରତିବେଶୀମାନଙ୍କୁ ଅଧିକ ପ୍ରଲୁବ୍ଧ କରିଥିଲା । ଫଳରେ ଫ୍ରାନ୍ସ ରକ୍ଷା ପାଇଗଲା ଏବଂ ପୋଲାଣ୍ଡ ସେମାନଙ୍କର ଶିକାର ହେଲା ।

## ପ୍ରଥମ ସଙ୍କଟ—ପୋଲାଣ୍ଡ ପ୍ରଶ୍ନ ବିପ୍ଳବକୁ ରକ୍ଷା କଲା

ଅଷ୍ଟ୍ରୀୟମାନେ ଫରାସୀ ସୈନ୍ୟବାହିନୀକୁ ନେଦରଲାଣ୍ଡରୁ (ବେଲଜିୟମରୁ) ତଡ଼ିଦେଲା ପରେ, ପୂର୍ଣ୍ଣ ବିଜୟ ପାଇଁ ପ୍ରସ୍ତୁତ ନ ଥିଲେ କି ଅଧିକ ସୁବିଧା ପାଇବା ପାଇଁ ଫ୍ରାନ୍ସ ଉପରେ ଚାପ ପକାଇ ନ ଥିଲେ । ପ୍ରୁସିଆ ସେ ସମୟରେ ଯୁଦ୍ଧରେ ଯୋଗଦେଇ ନଥିଲା । ତେଣୁ ଫ୍ରାନ୍ସ ବିରୁଦ୍ଧରେ ଶତ୍ରୁ ସଂଖ୍ୟା ସେତେ ବେଶି ନ ଥିଲା । ମନେହେଉଥିଲା ଅଷ୍ଟ୍ରିଆ ସହିତ ସନ୍ଧିରେ ଆବଦ୍ଧ ଥିବାରୁ ଯଦି ପ୍ରୁସିଆ ଯୁଦ୍ଧରେ ଯୋଗଦେବା ପାଇଁ ନିଷ୍ପତ୍ତି ନିଏ, ତାହାହେଲେ ତାହାର ପରିଣାମ ଫ୍ରାନ୍ସ ପ୍ରତି ଅତି ବିପଜ୍ଜନକ ହେବ, କାରଣ ସେହି ଦୁଇରାଷ୍ଟ୍ର ମିଶି ଫ୍ରାନ୍ସ ପରି ଏକ ଦୁର୍ବଳ ଶତ୍ରୁକୁ ଦମନ କରିବାର ବିଶେଷ ସମ୍ଭାବନା ଥିଲା ।

ବିଭିନ୍ନ କାରଣରୁ ଫ୍ରାନ୍ସ ଦୁର୍ବଳ ହୋଇପଡ଼ିଥିଲା, ତେଣୁ ଶତ୍ରୁ ଆକ୍ରମଣର ପ୍ରତିରୋଧ କରିବା ତା ପକ୍ଷରେ ବଡ଼ କଠିନ ହୋଇଥିଲା । ଫରାସୀ ସୈନ୍ୟବାହିନୀରେ ବିଶୃଙ୍ଖଳା ଦେଖାଦେଇଥିଲା । ଫରାସୀ ସୈନ୍ୟମାନେ ଅଧିକାଂଶ ସମୟରେ ଅବାଧ୍ୟ ହେଉଥିଲେ । ଏ କଥା ସତ ଯେ ସମାନତା ନୀତି ସୈନ୍ୟବାହିନୀ ପ୍ରତି ଆଦୌ ପ୍ରଯୁଜ୍ୟ ନୁହେଁ, କାରଣ ବିଜୟ ହାସଲ ପାଇଁ ଯୁଦ୍ଧ କରିବାକୁ ହେଲେ ଫରାସୀ ସୈନ୍ୟମାନଙ୍କୁ ସେମାନଙ୍କର ଉଚ୍ଚପଦସ୍ଥ ସାମରିକ କର୍ମଚାରୀମାନଙ୍କର ହୁକୁମ ମାନିବାକୁ ପଡ଼ିବ । ବଡ଼ ପରିତାପର ବିଷୟ ଏହି ଯେ ଜଣେ ଫରାସୀ ସେନାପତି ତାଙ୍କ ସୈନ୍ୟମାନଙ୍କର ପଛଘୁଞ୍ଚା ରୋକିବାକୁ ଉଦ୍ୟମ କରିବାରୁ, ସେମାନେ ତାଙ୍କୁ ନିଷ୍ଠୁର ଭାବରେ ହତ୍ୟାକଲେ । ସୈନ୍ୟବାହିନୀରେ ଶୃଙ୍ଖଳା ଯେ କେତେଦୂର ଭାଙ୍ଗି ପଡ଼ିଥିଲା ତାହା ଏହି ହତ୍ୟା ପ୍ରମାଣ କରିଦେଲା । ଏକଥା ସତ ଯେ ଶହ ଶହ ଉଚ୍ଚପଦସ୍ଥ ସାମରିକ କର୍ମଚାରୀ, ସମ୍ଭ୍ରାନ୍ତଗୋଷ୍ଠୀଭୁକ୍ତ ହୋଇଥିବାରୁ, ସ୍ୱଦେଶ ତ୍ୟାଗ କରି ବିଦେଶରେ ବସବାସ କରୁଥିଲେ,

ଫଳରେ ସୈନ୍ୟବାହିନୀରେ ଶୃଙ୍ଖଳା ରକ୍ଷା କରିବାକୁ ମାତ୍ର ଅତି ଅଳ୍ପସଂଖ୍ୟକ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ । ଫରାସୀ ସରକାର ମଧ୍ୟ ଥିଲା ଅଯୋଗ୍ୟ, ଅନଭିଜ୍ଞ ଓ ଅନିଶ୍ଚିତ । ତା'ଛଡ଼ା ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରାଯାଇ, ଯୁଦ୍ଧମନ୍ତ୍ରୀଙ୍କୁ ନିଯୁକ୍ତ ଦିଆଯାଉଥିବାରୁ ତାଙ୍କ ଦପ୍ତର (office) ବାରମ୍ବାର ଜଣକ ହାତରୁ ଅନ୍ୟ ଜଣକ ହାତକୁ ଯାଉଥିଲା । ଆଂଶିକ ଭାବରେ ସରକାରଙ୍କ ଅଯଥା ହସ୍ତକ୍ଷେପ ହେତୁରୁ ଏବଂ ଆଂଶିକ ଭାବରେ ଅଳ୍ପପରିମାଣରେ ଯୁଦ୍ଧ ଉପକରଣ ଯୋଗାଇବା ବିରୁଦ୍ଧରେ ସେନାପତିମାନଙ୍କର ଆପତ୍ତି ଅଭିଯୋଗ ଯୋଗୁଁ; ବେସାମରିକ ସରକାର (Civil Government) ଏବଂ ଯୁଦ୍ଧକ୍ଷେତ୍ରରେ ମୁତୟନ ଥିବା ସେନାପତିମାନଙ୍କ ମଧ୍ୟରେ ଭୀଷଣ ମତାନ୍ତର ଘଟିଥିଲା । ଏ କଥା ସୁସ୍ପଷ୍ଟ ଯେ ଯୁଦ୍ଧରେ ଜୟ କରିବାକୁ ହେଲେ, ବୈପ୍ଳବିକ ଫ୍ରାନସକୁ ଯୁଦ୍ଧ ଓ ଶାସନ ଉଭୟ କୌଶଳ ଶିକ୍ଷା କରିବାକୁ ପଡ଼ିବ । ଫ୍ରାନ୍ସରେ ଅରାଜକତା ଚାଲିଥିଲା ବେଳେ ଜାତିର ଅନ୍ତର୍ନିହିତ ଶକ୍ତିକୁ ବ୍ୟବହାର ପାଇଁ ପ୍ରସ୍ତୁତ କରିବା କ'ଣ ସମ୍ଭବ । ଏହିସବୁ କାରଣରୁ ଫରାସୀ ସୈନ୍ୟବାହିନୀକୁ ସଙ୍କଟଜନକ ପରିସ୍ଥିତିର ମୁକାବିଲା କରିବା ପାଇଁ ପ୍ରସ୍ତୁତ ରଖିବା ଆଶା କରାଯାଇ ନପାରେ ।

ଅନ୍ୟଦିଗରେ ବନ୍ଧୁ ରାଷ୍ଟ୍ରମାନଙ୍କର ନୈତିକ ବଳ ମଧ୍ୟ ଦୋହଲି ଯାଇଥିଲା । ଏକଥା ସ୍ୱୀକାର କରିବାକୁ ହେବ ଯେ ରୁଷିଆର କୂଟନୀତି ସେମାନଙ୍କୁ ପଛରୁ ଆକ୍ରମଣ କରିଥିଲା । ମହାରାଣୀ କାଥେରାଇନ କେତେକ ପରିମାଣରେ ପରିସ୍ଥିତି ଦୃଷ୍ଟିରୁ ଆଉ କେତେକ ପରିମାଣରେ ସୁଚିନ୍ତିତ ବିଚାର ଫଳରେ, ପୋଲଣ୍ଡ ପ୍ରଶ୍ନ ଉଠାଇଥିଲେ । ଯେତେବେଳେ ସେ ତୁର୍କୀ ସହିତ ଦ୍ୱିତୀୟ ତୁର୍କ ଯୁଦ୍ଧରେ ଜଡ଼ିତ ହୋଇପଡ଼ିଥିଲେ, ସେତେବେଳେ ପୋଲଣ୍ଡର ଲୋକେ ସେମାନଙ୍କୁ ପଙ୍ଗୁ କରି ଦେଇଥିବା, ଐତିହାସିକ ସମ୍ବିଧାନକୁ ବାତିଲ କରିଦେଇ ୧୭୯୧ ମସିହାରେ ଏକ ନୂତନ ସମ୍ବିଧାନ ଗ୍ରହଣ କରିଥିଲେ ଏବଂ ଏକ ପୁରୁଷାନୁକ୍ରମିକ ରାଜବଂଶ ପ୍ରତିଷ୍ଠା କରିଥିଲେ । ପ୍ରକୃତରେ ରୁଷିଆ କିମ୍ବା ପ୍ରୁସିଆ କେହି ପୋଲଣ୍ଡର ପୁନରଭ୍ୟୁଦୟ ଚାହୁଁ ନଥିଲେ । କାଥେରାଇନ ବେଶ୍ ହୃଦୟଙ୍ଗମ କରିପାରି-ଥିଲେ ଯେ ୧୭୭୨ ମସିହାରେ ପୋଲଣ୍ଡ ବିଭାଜନ (Partition of Poland) ଦିନରୁ ରୁଷିଆ ପୋଲଣ୍ଡ ଉପରେ ଯେଉଁ ଆଧିପତ୍ୟ ବିସ୍ତାର କରିଥିଲା, ତାହା ପୋଲଣ୍ଡର ଆନ୍ଦୋଳନ ଫଳରେ ବିପର୍ଯ୍ୟସ୍ତ ହେବାର ସମ୍ଭାବନା ରହିଛି । ପୋଲଣ୍ଡର ରାଜା ଷ୍ଟାନିସ୍ଲାସ୍ (Stanislas) ଯେ କି କାଥେରାଇନଙ୍କର କର୍ତ୍ତୃତ୍ୱାଧୀନରେ ଥାଇ ଶାସନ ପରିଚାଳନା କରି ଆସୁଥିଲେ ସେ ମଧ୍ୟ ନିଜର ସ୍ୱାଧୀନତା ଫେରିପାଇବା ପାଇଁ ଉଦ୍ୟମ ଆରମ୍ଭ କରି-ଦେଲେ । ତେଣୁ କାଥେରାଇନ ପୋଲଣ୍ଡ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ସ୍ଥିର କଲେ ଏବଂ ସମୟ ମଧ୍ୟ ତାଙ୍କ ପକ୍ଷରେ ଅନୁକୂଳ ଥିଲା । ଉଭୟ ଅଷ୍ଟ୍ରିଆ, ଏବଂ ପ୍ରୁସିଆ ପୋଲଣ୍ଡ ପ୍ରଶ୍ନ ବିଚାରକୁ ନ ନେଇ ଅବିବେକୀ ପରି ଫ୍ରାନ୍ସ ସହିତ ଯୁଦ୍ଧରେ ଲିପ୍ତ ଥିବାରୁ, କାଥେରାଇନ ଦେଖିଲେ ଯେ ପୋଲଣ୍ଡରେ ହସ୍ତକ୍ଷେପ କରିବା ପାଇଁ ଏହାଠାରୁ

ଆଉ ଅଧିକ ସୁଯୋଗ ମିଳିବ ନାହିଁ । ତେଣୁ ସେ ନିଷ୍ପତ୍ତି କଲେ ଯେ ସେ ସମଗ୍ର ପୋଲାଣ୍ଡକୁ ଅଧିକାର କରିନେବେ, ନଚେତ୍ ସେ ସେ ରାଜ୍ୟରେ ତାଙ୍କର ପ୍ରାଧାନ୍ୟ ବିସ୍ତାର କରିବେ । ସେ ତାଙ୍କର ଲକ୍ଷ୍ୟ ହାସଲ ପାଇଁ ତୁର୍କୀ ସହିତ ତଳେ ତଳେ ସନ୍ଧି କରିଥିଲେ ଏବଂ ପୋଲାଣ୍ଡ ପ୍ରଶ୍ନ ପ୍ରତି ପୂରା ଧ୍ୟାନ ଦେଇଥିଲେ । ବଡ଼ କୌତୂହଳର ବିଷୟ ଏହି ଯେ ଫ୍ରାନ୍ସ ୧୭୯୨ ମସିହା ଅପ୍ରେଲ ମାସରେ ଅଷ୍ଟ୍ରିଆ ବିରୁଦ୍ଧରେ ଯୁଦ୍ଧଘୋଷଣା କଲା ଏବଂ ସେହି ମସିହା ମେ ମାସରେ କାଥେରାଇନ ତାଙ୍କର ସୈନ୍ୟବାହିନୀକୁ ପୋଲାଣ୍ଡ ଅଭିଯାନରେ ପଠାଇଲେ ।

ଅଷ୍ଟ୍ରିଆ ଏବଂ ପ୍ରୁସିଆ ଏ ଅଭିଯାନ ସମ୍ବାଦ ପାଇ ବଡ଼ ବିଚଳିତ ହୋଇପଡ଼ିଥିଲେ । ସେମାନେ ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ବହୁ କଷ୍ଟରେ ଦୁଇଟି ସୈନ୍ୟବାହିନୀ ଯୁଦ୍ଧକ୍ଷେତ୍ରକୁ ଆଣିଥିଲେ । ଅଷ୍ଟ୍ରିଆର ସୈନ୍ୟବାହିନୀ ନେଦରଲାଣ୍ଡ (ବେଲଜିୟମ୍‌ରେ) ଏବଂ ପ୍ରୁସିଆର ସୈନ୍ୟବାହିନୀ ଫ୍ରାନ୍ସର ପୂର୍ବ ସୀମାନ୍ତକୁ ମୁହାଁଇ ରହିଲେ; କିନ୍ତୁ ଅଷ୍ଟ୍ରିଆ ଏବଂ ପ୍ରୁସିଆ ମଧ୍ୟରୁ କେହି ଗୋଟିଏ ଶକ୍ତି ତାଙ୍କର ପୂରା ସୈନ୍ୟବଳକୁ ଯୁଦ୍ଧପାଇଁ ପ୍ରସ୍ତୁତ କରି ରଖି ନ ଥିଲେ । ବିଶେଷତଃ ଅଷ୍ଟ୍ରିଆ ଯୁଦ୍ଧ ଅଭିଯାନ ପାଇଁ ଯେତେ ସୈନ୍ୟ ଦେବାଲାଗି ପ୍ରତିଶ୍ରୁତି ଦେଇଥିଲା, ତାହାଠାରୁ ଯଥେଷ୍ଟ କମ ସୈନ୍ୟ ଦେଇଥିଲା ଏବଂ ପ୍ରୁସିଆ ସହିତ ମିଳି ଫ୍ରାନ୍ସ ଆକ୍ରମଣ କରିବା ପାଇଁ ଆଗ୍ରହ ପ୍ରକାଶ କରିନଥିଲା । ତେଣୁ କେତେଗୁଡ଼ିଏ ସୀମାନ୍ତ ଦୁର୍ଗର ପତନ ପରେ ମଧ୍ୟ ଫରାସୀମାନେ ପଛଘୁଞ୍ଚା ନ ଦେଇ ସାହସର ସହିତ ସେପ୍‌ଟେମ୍ବର ୨୦ ତାରିଖ ଦିନ ପ୍ରୁସିଆର ସୈନ୍ୟବାହିନୀକୁ ଭଲ୍‌ମିଠାରେ ମୁକାବିଲା କଲେ ଏବଂ ପ୍ରୁସିଆର ସୈନ୍ୟବାହିନୀ ପରାଜିତ ହୋଇ ରାଇନ୍ ନଦୀ ପାରହୋଇ ପଳାଇଗଲେ । କାଥେରାଇନଙ୍କର ପୋଲାଣ୍ଡ ଆକ୍ରମଣ ଫଳରେ ଉଭୟ ଅଷ୍ଟ୍ରିଆ ଏବଂ ପ୍ରୁସିଆର ସ୍ୱାର୍ଥ ପ୍ରତି ସେଠାରେ ଏପରି ବିପଦ ଆସିଥିଲା ଯେ ସେହି ଦୁଇ ଶକ୍ତି ମଧ୍ୟରୁ କେହି ଫ୍ରାନ୍ସ ଅଭିଯାନ ଦିଗରେ ପୂରା ଧ୍ୟାନ ଦେଇନଥିଲେ । ଇତ୍ୟବସରରେ ପୋଲାଣ୍ଡରେ ହୋଇଥିବା ସଂସ୍କାରଗୁଡ଼ିକୁ ରୁଷିଆର ସଙ୍ଗୀନମୁନରେ ଦବାଇ ଦିଆଯାଇଥିଲା ।

ଫ୍ରାନ୍ସ ଯେତେବେଳେ ସାହସର ସହିତ ଶତ୍ରୁମାନଙ୍କୁ ଆକ୍ରମଣ କରିବାପାଇଁ ପଦକ୍ଷେପ ନେଲା, ସେତେବେଳେ ଅଷ୍ଟ୍ରିଆ ଆଉ ବିଳମ୍ବ ନକରି ରୁଷିଆ ସହିତ ଗୋଟିଏ ରାଜିନାମା କଲା, ଯାହାଫଳରେ ୧୭୯୩ ମସିହାରେ 'ଦ୍ୱିତୀୟ ପୋଲାଣ୍ଡ ବିଭାଜନ' ହେଲା । ଫରାସୀମାନେ ନେଦରଲାଣ୍ଡ (ବେଲଜିୟମ) ଆକ୍ରମଣ କରିଥିବାରୁ ଅଷ୍ଟ୍ରିଆ ପୋଲାଣ୍ଡରେ ତାହାର ଦାବି ହାସଲ କରିବା ଅବସ୍ଥାରେ ନ ଥିଲା । ପ୍ରୁସିଆ କିନ୍ତୁ ତାହାର ଗୋଟିଏ ସୈନ୍ୟବାହିନୀକୁ ପୋଲାଣ୍ଡ ପଠାଇଥିଲା; ଯାହାଫଳରେ କାଥେରାଇନ୍ ତାଙ୍କର ଲୁଣ୍ଠିତ ରାଜ୍ୟକୁ ଭାଗ କରିବାକୁ ବାଧ୍ୟ ହୋଇଥିଲେ । ଇତ୍ୟବସରରେ ବୈପ୍ଳବିକ ଫ୍ରାନ୍ସ ସୌଭାଗ୍ୟକ୍ରମେ ରକ୍ଷାପାଇଗଲା । ପୋଲାଣ୍ଡ ବିଭାଜନ ପରେ ମିତ୍ରଶକ୍ତିମାନେ ପୁନର୍ବାର ପଶ୍ଚିମଆଡ଼କୁ ଦୃଷ୍ଟି ଫେରାଇବାକୁ ସମର୍ଥ ହୋଇଥିଲେ । ଫରାସୀମାନେ ମିତ୍ରଶକ୍ତିମାନଙ୍କର

ଆକ୍ରମଣରୁ ସାମୟିକ ଅବ୍ୟାହତ ପାଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଅବ୍ୟାହତ ପାଇ ନଥିଲେ। ତେଣୁ ଫରାସୀମାନଙ୍କୁ ପୁଣି ଥରେ ସେମାନଙ୍କର ମୁଖ୍ୟ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଥିଲା।

## ଦ୍ୱିତୀୟ ସଙ୍କଟ

### ଆତଙ୍କ ସୃଷ୍ଟି ଦ୍ୱାରା ବିପ୍ଳବ ରକ୍ଷା ପାଇଗଲା

ଆତଙ୍କରାଜ (ଜୁନ୍ ୨, ୧୭୯୩—ଜୁଲାଇ ୨୮, ୧୭୯୪) (The Reign of Terror June—2, 1793—July 28, 1794)

ଫରାସୀ ସାଧାରଣତନ୍ତ୍ର ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ତାକୁ ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା। ଉଭୟ ଦେଶଭିତରୁ ଏବଂ ଦେଶ ବାହାରୁ ବିପଦ ଘନେଇ ଆସୁଥିଲା। ଫରାସୀମାନଙ୍କ ମଧ୍ୟରେ ଏକତା ନଥିଲା। ୧୭୯୩ ମସିହା ମାର୍ଚ୍ଚମାସ ଆରମ୍ଭରେ ଫ୍ରାନ୍ସର ପଶ୍ଚିମାଞ୍ଚଳରେ ଅବସ୍ଥିତ ଲ ଭେନ୍‌ଡ଼ି (La Vendee) ପ୍ରଦେଶ (ଡିପାର୍ଟମେଣ୍ଟ)ରେ ସାଂଘାତିକ ବିଦ୍ରୋହ ଘଟିଥିଲା। ଆଂଶିକଭାବରେ ଏହାର ସୃଷ୍ଟି ବାଧ୍ୟତାମୂଳକ ସୈନ୍ୟସଂଗ୍ରହ ଉଦ୍ୟମହେତୁରୁ ହୋଇଥିଲା; କିନ୍ତୁ ଏ ବିସ୍ଫୋରଣରେ ମୌଳିକ କାରଣ ହେଲା ଧର୍ମ। କୃଷକମାନେ ସାଧାରଣତଃ ଅତିଉତ୍ସାହୀ କ୍ୟାଥଲିକ୍ ହୋଇଥିବାରୁ, ସରକାରଙ୍କ ଧର୍ମସମ୍ବନ୍ଧୀୟ ନୀତିର ତୀବ୍ର ସମାଲୋଚନା କରୁଥିଲେ। ବିଦ୍ରୋହୀମାନଙ୍କର କେତେକ ପ୍ରାରମ୍ଭିକ ସଫଳତା ଭୟାବହ ଦୁର୍ଦ୍ଦିନର ପୂର୍ବାଭାସ ବୋଲି ମନେହେଲା। ପ୍ୟାରିସର କାର୍ଯ୍ୟକଳାପ ସୀମାଲଙ୍ଘନ କରିବାରୁ ଏବଂ ତାହାର ନୀତି ଅନୁଯାୟୀ ଧନୀକଶ୍ରେଣୀମାନେ ଯୁଦ୍ଧବ୍ୟୟର ଭାର ବହନ କରିବାକୁ ବାଧ ହେବାରୁ ଦକ୍ଷିଣ ଫ୍ରାନ୍ସର ବନ୍ଦର ସହର ଏଥିରେ ଅତିଶୟ କ୍ରୁଦ୍ଧ ହୋଇ ପଡ଼ିଥିଲେ; ଯାହା ଫଳରେ ଉଚ୍ଛୃଙ୍ଖଳ ଜନତାଦ୍ୱାରା ନିୟନ୍ତ୍ରିତ ପ୍ୟାରିସ୍ ସରକାରଙ୍କୁ ତଡ଼ିଦେବା ଉଦ୍ଦେଶ୍ୟରେ ମଧ୍ୟବିତ୍ତଗୋଷ୍ଠୀ ଓ କୃଷକଗୋଷ୍ଠୀ ମଧ୍ୟରେ ଏକ ଚୁକ୍ତି ସଂପାଦନପାଇଁ ଧମକ ଦିଆଯାଇଥିଲା।

ପୃଷ୍ଠଭୂମିରେ ଗୃହଯୁଦ୍ଧର ଭୟାବହ ଦୃଶ୍ୟ ସ୍ପଷ୍ଟ ସୂଚନା ଦେଇଥିଲା ଯେ ଅସାଧାରଣ ଉଦ୍ୟମ ବିନା ଆଉ କୌଣସି ଉପାୟରେ ଦେଶକୁ ବିଭାଜନରୁ ଏବଂ ଶତ୍ରୁ ଆକ୍ରମଣରୁ ରକ୍ଷା କରାଯାଇ ପାରିବନାହିଁ। ପ୍ୟାରିସର ଲୋକେ ଅର୍ଥାତ୍ ଜାତୀୟ କନ୍‌ଭେନ୍‌ସନ୍‌ରେ ଥିବା ପ୍ରକୃତ ଦେଶପ୍ରେମୀମାନେ ରାଜ୍ୟର ଶାସକୀୟ ବିଭାଗର କ୍ଷମତାକୁ ଖର୍ବ କରାଯାଇ ଯେଉଁ ଭୁଲ କରାଯାଇଛି, ତାହା ଶେଷରେ ବୁଝିପାରିଥିଲେ। ତଥାପି ଏକଥା ସ୍ୱୀକାର କରିବାକୁ ହେବଯେ, ସେମାନେ ଡାନ୍‌ଟନ୍‌ଙ୍କ ବଳବତୀ ଇଚ୍ଛାସତ୍ତ୍ୱେ ବିଧାୟକମାନଙ୍କ ମଧ୍ୟରେ (କନ୍‌ଭେନ୍‌ସନ୍‌ରମାନଙ୍କ ମଧ୍ୟରୁ) ମନ୍ତ୍ରୀମାନଙ୍କୁ ବାଛିବାକୁ ଆଗ୍ରହ ପ୍ରକାଶ କରି ନ ଥିଲେ; କାରଣ ସେମାନେ ମିରାବ୍ୟୁଙ୍କ ପରି ଏଥିରେ ଡାନ୍‌ଟନ୍‌ଙ୍କର ବ୍ୟକ୍ତିଗତ ଉଦ୍ଦେଶ୍ୟ ରହିଛି ବୋଲି ସନ୍ଦେହ କରିଥିଲେ; କିନ୍ତୁ ଗିରନ୍‌ଡିନ୍‌ମାନେ ସେମାନଙ୍କର ଯୋଜନା

ଅନୁଯାୟୀ ଗୋଟିଏ ସାର୍ବଜନୀନ ନିରାପତ୍ତା ସମିତି (Committee of Public Safety) ଗଠନ କରିଥିଲେ । ସେଥିରେ ପ୍ରଥମେ ୯ ଜଣ ସଭ୍ୟଥିଲେ, ସନ୍ଦର୍ଭ ସଭ୍ୟସଂଖ୍ୟା ପରେ ୧୨ ଜଣକୁ ବଢ଼ାଇଦିଆଯାଇଥିଲା । ସେହି ସମିତିକୁସାଧାରଣତନ୍ତ୍ରର ବହିଃଶତ୍ରୁ ଏବଂ ଆଭ୍ୟନ୍ତରୀଣ ଶତ୍ରୁ ଉଭୟଙ୍କୁ ଦମନ କରିବାପାଇଁ ଅସୀମ କ୍ଷମତା ଦିଆଯାଇଥିଲା । ତାର କ୍ଷମତା ମନ୍ତ୍ରୀମାନଙ୍କ କ୍ଷମତାର ଊର୍ଦ୍ଧ୍ୱରେ ରଖାଯାଇଥିଲା, ଏବଂ ଜାତୀୟ ପ୍ରତିରକ୍ଷା (National Defence) ପାଇଁ ଆବଶ୍ୟକୀୟ ବ୍ୟବସ୍ଥା ତାକୁ କରିବାକୁ କ୍ଷମତା ଦିଆଯାଇଥିଲା । ପ୍ରକୃତ ଦେଖିବାକୁ ଗଲେ ସେ ସମିତିରେ ଗିରନ୍ଡିନ୍‌ମାନଙ୍କର ପ୍ରାଧାନ୍ୟ ନଥିଲା ଏବଂ ଜାକୋବିନ ନେତା ଡାନ୍‌ଟନ୍ ସେଥିରେ ଥିଲେ ଜଣେ ଖ୍ୟାତନାମା ସଭ୍ୟ । ସବୁ ଷଡ଼ଯନ୍ତ୍ର ମକଦ୍ଦମାଗୁଡ଼ିକ ଦ୍ରୁତଗତିରେ ବିଚାର କରିବା ପାଇଁ ଏକ ବୈପ୍ଳବିକ ବିଚାରାଳୟ (tribunal) ବସାଇବାରେ ସେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ । ବିଶେଷ କ୍ଷମତାପ୍ରାପ୍ତ ଦୃଢ଼ ସରକାରର ବିକାଶହେତୁ ଆତଙ୍କରାଜ ପ୍ରତିଷ୍ଠା ପାଇଁ କେତେଗୁଡ଼ିଏ ସଂସ୍ଥା (machinery)ର ଆବିର୍ଭାବ ହୋଇଥିଲା ।

ଏହି ସମୟରେ ସଙ୍କଟର ଗୁରୁତ୍ୱ ଦିନକୁ ଦିନ ବଢ଼ିବାକୁ ଲାଗିଲା । ଫ୍ରାନ୍‌ସକୁ ଏକ ଅଗ୍ନିପରୀକ୍ଷା ଦେଇ ଗତି କରିବାକୁ ପଡ଼ିଥିଲା । ୧୭୯୩ ମସିହା ମେ ମାସ ପୂର୍ବରୁ ଲିଓଁ ସହର, ତାହାର ଚରମ ସଂସ୍କାରବାଦୀ ସରକାରର ପତନ ଘଟାଇଥିଲା ଓ ତାକୁ ଅନୁସରଣ କରି ଅନ୍ୟାନ୍ୟ ସହରଗୁଡ଼ିକ କେନ୍ଦ୍ର ସରକାର ପ୍ରତି ବେଖାତିର ମନୋଭାବ ସାଧାରଣରେ ପ୍ରକାଶ କରିଥିଲେ । ଜାତୀୟ କନ୍‌ଭେନ୍‌ସନ୍‌ରେ ଗିରନ୍ଡିନ୍‌ମାନଙ୍କର ପତନ ଫଳରେ ସେମାନଙ୍କ ପ୍ରତି ଅନୁରକ୍ତ ପ୍ରଦେଶ (ଡିପାର୍ଟମେଣ୍ଟ) ଗୁଡ଼ିକରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହୋଇଥିଲା ଏବଂ ଅନେକଗୁଡ଼ିଏ ପ୍ରାଦେଶିକ ସହର ଏ ବିଦ୍ରୋହରେ ଜଡ଼ିତ ହୋଇପଡ଼ିଥିଲେ । ତେଣୁ ଫରାସୀ ସରକାରଙ୍କୁ ଲା ଭେନ୍‌ଡି (La Vendee )ର ବିଦ୍ରୋହ ସମ୍ଭାଳିବା ସଙ୍ଗେ ସଙ୍ଗେ ଲିଓଁ (Lyons), ମାର୍ସାଇଲ (Marscilles), କେଏନ (Caen), ବୋର୍ଡ଼ିଓଁ (Bordeaux) ପରି ସମୃଦ୍ଧିଶାଳୀ ପ୍ରାଦେଶିକ ସହରମାନଙ୍କରେ ବିଦ୍ରୋହ ଗୁଡ଼ିକର ମୁକାବିଲା କରିବାକୁ ପଡ଼ିଥିଲା । ଫ୍ରାନ୍‌ସର ବିକେନ୍ଦ୍ରୀକରଣ ବାସ୍ତବରେ ଗୋଟିଏ ଗୁରୁତର ପ୍ରମାଦ ବୋଲି ପ୍ରମାଣିତ ହେଲା, ଏବଂ ସମଗ୍ର ଦେଶ ଖଣ୍ଡ ଖଣ୍ଡ ହୋଇ ଯିବାର ଆଶଙ୍କା ମଧ୍ୟ ଥିଲା । ଏସବୁ ବ୍ୟତୀତ ଆର୍ଥିକ ଦୁରବସ୍ଥା ମଧ୍ୟ ସରକାରଙ୍କୁ ବଡ଼ ଅସୁବିଧାରେ ପକାଇଥିଲା ।

ଗିରନ୍ଡିନ୍‌ମାନଙ୍କୁ କନଭେନସନରୁ ବାହାର କରିଦିଆଗଲା ପରେ ନରମପନ୍ଥୀ ସାଧାରଣତନ୍ତ୍ର ଦଳ ସଜ୍ଞାରୁ ଅଦୃଶ୍ୟ ହୋଇଗଲେ । ଚରମ ସଂସ୍କାରବାଦୀ ଜାକୋବିନ୍‌ମାନେ ଉଭୟ ପ୍ୟାରିସ କମ୍ୟୁନ୍ ଏବଂ ଜାତୀୟ କନ୍‌ଭେନ୍‌ସନକୁ ଆୟତ୍ତାଧୀନରେ ରଖିଲେ । ତାଛଡ଼ା ସାର୍ବଜନୀନ ନିରାପତ୍ତା ସମିତି (Committee of Public Safety)କୁ ନିଜର ଅକ୍ତିଆରକୁ ଆଣି ନୂତନ ସରକାର ପ୍ରତିଷ୍ଠା କଲେ । ପ୍ରାଦେଶିକ ସହରମାନଙ୍କର

ବିଦ୍ରୋହ ସାଙ୍ଗକୁ ଲୋକମାନଙ୍କର ଆର୍ଥିକ ଦୁର୍ଗତି ନୂତନ ସରକାର ପାଇଁ ସଙ୍କଟଜନକ ପରିସ୍ଥିତି ସୃଷ୍ଟି କରିଥିଲା । ପ୍ରଥମେ ସରକାର ବିପ୍ଳବର ପ୍ରସାରକୁ ରୋକିବା ଉଦ୍ଦେଶ୍ୟରେ ବନ୍ଧୁଭାବାପନ୍ନ ମନୋଭାବ ପୋଷଣକରି ବିଜ୍ଞତାର ପରିଚୟ ଦେଇଥିଲେ । କୃଷକ ସମ୍ପ୍ରଦାୟକୁ ପ୍ରଭାବିତ କରିବାପାଇଁ ସରକାର ସ୍ୱଦେଶତ୍ୟାଗୀମାନଙ୍କର ଜମିବାଡ଼ିକୁ ଭାଗଭାଗ କରିଦେଇ ସେଗୁଡ଼ିକୁ ସେମାନଙ୍କ ମଧ୍ୟରେ ବିକି କରିବାକୁ ଚାହିଁଥିଲେ । ସାମନ୍ତପ୍ରଥାଜନିତ ଅଧିକାରଗୁଡ଼ିକ (feudal rights) ହରାଇ ଯେଉଁମାନେ କ୍ଷତିଗ୍ରସ୍ତ ହୋଇଥିଲେ, ସେମାନଙ୍କ ପାଇଁ ଯେଉଁ କ୍ଷତିପୂରଣ ନୀତି ଗ୍ରହଣ କରାଯାଇଥିଲା, ତାହା ଶେଷରେ ବାତିଲ କରି ଦିଆଗଲା । ମଜଦୁରମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗହମର ସର୍ବାଧିକ ଦର ଧାର୍ଯ୍ୟ କରାଯାଇଥିଲା; କିନ୍ତୁ ପରେ ଏପରି ନୀତି କୃଷକମାନଙ୍କ ପ୍ରତି କ୍ଷତିକାରକ ହେବାରୁ ତାକୁ ପ୍ରତ୍ୟାହାର କରି ନିଆଯାଇଥିଲା । କିଛିକାଳପାଇଁ ସର୍ବନିମ୍ନ ମଜୁରୀ ହାର ବ୍ୟବସ୍ଥା କରିବାକୁ ପଡ଼ିଥିଲା । ଏକ ସଙ୍ଗରେ ମଧ୍ୟବିତ୍ତଗୋଷ୍ଠୀଙ୍କର ସମ୍ପତ୍ତିକୁ ଜାତୀୟ ପ୍ରତିରକ୍ଷାରେ ବ୍ୟବହାର କରିବା ପାଇଁ ତାକୁ ବାଧ୍ୟତାମୂଳକ ତାଲିକାଭୁକ୍ତ କରାଯାଇଥିଲା ଏବଂ ତାଙ୍କୁ ଶାନ୍ତକରିବା ଉଦ୍ଦେଶ୍ୟରେ କେତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା; ଯାହା ଫଳରେ ବିଶେଷ ଧନୀଲୋକମାନଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କର ବୋଝ ଲାଘବ ହୋଇଥିଲା । ବୈଧାନିକ ସଭା ଅଧିକାଂଶ ଦେଶବାସୀଙ୍କୁ କେତେଦୂର ସନ୍ତୁଷ୍ଟ କରିପାରିବ ବିଚାରି ଦେଖିବା ପୂର୍ବରୁ ଜାତୀୟ କନ୍‌ଭେନ୍‌ସନ୍ ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗୋଟିଏ ସମ୍ବିଧାନ ଗ୍ରହଣ କରିଥିଲା ଏବଂ ତାହା ବିକେନ୍ଦ୍ରୀକରଣକୁ ଅନୁମୋଦନ କରିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରଶ୍ନ ଉପରେ ଜନମତ ସଂଗ୍ରହ କରିବା (referendum) ପାଇଁ ବ୍ୟବସ୍ଥା କରିଥିଲା; କିନ୍ତୁ ଅଧିକାଂଶ ସଭ୍ୟମାନଙ୍କଦ୍ୱାରା ଏ ସମ୍ବିଧାନ ଗ୍ରହଣ କରାଗଲା ପରେ ଏହାକୁ କାର୍ଯ୍ୟକାରୀ କରାଗଲାନାହିଁ । ସରକାର ମଧ୍ୟବିତ୍ତମାନଙ୍କୁ ଦମନ କରିବାକୁ ପ୍ରସ୍ତୁତହେବା ପୂର୍ବରୁ ସେମାନଙ୍କର ବିପ୍ଳବର ପ୍ରସାରକୁ ରୋକିବା ପାଇଁ ଜାକୋବିନ୍‌ମାନେ ଏ ସମସ୍ତ କୌଶଳ ଅବଲମ୍ବନ କରିଥିଲେ ।

ବିଦେଶୀ ଶତ୍ରୁମାନଙ୍କ ପ୍ରତି ମଧ୍ୟ ସଂଯତ ମନୋଭାବ ପୋଷଣ କରାଯାଇଥିଲା । ସନ୍ଧିର ସର୍ତ୍ତଗୁଡ଼ିକ ମର୍ଯ୍ୟାଦାସମ୍ପନ୍ନ ହେଲେ ଡାନ୍‌ଟନ୍ ସେମାନଙ୍କ ସହିତ ସନ୍ଧି କରିବାକୁ ପ୍ରସ୍ତୁତ ଥିଲେ; କାରଣ ସେ ସ୍ପଷ୍ଟ ଘୋଷଣା କରିଥିଲେ ଯେ ଏହାଦ୍ୱାରା ବିପ୍ଳବ ଦୃଢ଼ୀଭୂତ ହୋଇ ପାରିବ । ସେ ୧୭୯୩ ମସିହା ଅପ୍ରେଲ ମାସରେ ମଧ୍ୟ ଅନ୍ୟାନ୍ୟ ଦେଶମାନଙ୍କରେ ସରକାର ପୂର୍ବପରି ହସ୍ତକ୍ଷେପ କରିବା ନୀତି ପ୍ରତ୍ୟାହାର କରିନେବା ପାଇଁ କନ୍‌ଭେନ୍‌ସନ୍‌କୁ ପ୍ରବର୍ତ୍ତାଇ ଥିଲେ, ଏବଂ ସେହି ମର୍ମରେ ଯେଉଁ ଆଇନଟି ପ୍ରସ୍ତାବ କରାଯାଇଥିଲା, ତାହା ବେଲ୍‌ଜିଆନ୍‌ମାନଙ୍କୁ ସନ୍ତୁଷ୍ଟକରିବା ଛଡ଼ା (ଡାନ୍‌ଟନଙ୍କ ମତରେ) ଅତି ଶୀଘ୍ର ଯୁଦ୍ଧର ଅବସାନ ଘଟାଇବା ପାଇଁ ଅଭିପ୍ରେତଥିଲା । ଡାନଟନ୍ ଥିଲେ ଜଣେ ଅଦ୍ଭୁତ ଚରିତ୍ରର ଲୋକ । ସେ ଶକ୍ତିଶାଳୀ ନେତୃତ୍ୱର ଗୁରୁତ୍ୱ ଅନୁଭବ କରିପାରିଥିଲେ ଏବଂ

ସଙ୍କଟଜନକ ପରିସ୍ଥିତିକୁ ସମ୍ଭାଳିବାପାଇଁ ସେ ନିର୍ମମ ଭାବରେ ବଳ ପ୍ରୟୋଗ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଜନସାଧାରଣଙ୍କର ଆକାଙ୍କ୍ଷା ପୂରଣ କରିବାକୁ ହେଲେ ସ୍ଥିରବୁଦ୍ଧି ଓ ସଂଯମ ଏହି ଦୁଇ ସଦ୍‌ଗୁଣର ବିଶେଷ ଆବଶ୍ୟକତା ରହିଛି । ବିପ୍ଳବ ସମୟରେ ତାଙ୍କର ବ୍ୟକ୍ତିଗତ ଉଚ୍ଚାଭିଳାଷକୁ ପୂରଣକରିବା ଉଦ୍ଦେଶ୍ୟରେ ଜନ ଆନ୍ଦୋଳନକାରୀ (demagogue)ର ଭୂମିକା ଗ୍ରହଣ କରିଥିଲେ । ସେ ଜଣେ ଅତି ଦୁର୍ନୀତିପରାୟଣ ଓ ଧନଲିପ୍ସୁ ଥିଲେ ଏବଂ ରାଜାଙ୍କୁ ପ୍ରଥମେ ପ୍ରତାରଣା କଲାପରେ ସେ ସାଧାରଣତନ୍ତ୍ର ସରକାରଙ୍କୁ ମଧ୍ୟ ପ୍ରତାରଣା କରିଥିଲେ । ସେ ସର୍ବଦା ଜଣେ ସୁବିଧାବାଦୀଥିଲେ ଏବଂ ନିଜର ନିରାପତ୍ତା ବଜାୟ ରଖିବାପାଇଁ ପରସ୍ପର ପ୍ରତି ବୈରଭାବ ପୋଷଣ କରୁଥିବା ଦଳମାନଙ୍କ ସହିତ ଚକ୍ରାନ୍ତ କରୁଥିଲେ । ସେ କିନ୍ତୁ ପ୍ରତିହିଂସା ପରାୟଣ ନ ଥିଲେ, କି କାହାକୁ ଘୃଣା କରୁନଥିଲେ । ଦଳୀୟ ମନୋଭାବ ପ୍ରତି ସେ ଖେଦ ପ୍ରକାଶକରିବା ସଙ୍ଗେ ସଙ୍ଗେ ଲକ୍ଷ୍ୟପ୍ରାପ୍ତି ପାଇଁ ଚରମ ପଦକ୍ଷେପ ନେବା ବିରୁଦ୍ଧରେ ମଧ୍ୟ ଦୃଢ଼ମତ ପ୍ରକାଶ କରିଥିଲେ; କିନ୍ତୁ ଡାନ୍‌ଟନ୍‌ଙ୍କର ଅସାବଧାନତା ଯୋଗୁ ନିଜକୁ ଦେଶର ଏକମାତ୍ର ନିର୍ଭରଯୋଗ୍ୟ ଲୋକ ବୋଲି ମନେକରୁଥିବା ରୋବ୍‌ସପିୟର, ତାଙ୍କର ଚରମ ଲକ୍ଷ୍ୟସ୍ଥଳରେ ପହଞ୍ଚିବାପାଇଁ କୌଣସି ସୁଯୋଗ ଛାଡ଼ୁନଥିଲେ । ତେଣୁ ରୋବସ୍‌ପିୟରଙ୍କ ଇଙ୍ଗିତରେ ସାର୍ବଜନୀନ ନିରାପତ୍ତା ସମିତି(The Committee of Public Safety) ସଭ୍ୟମାନଙ୍କୁ ପରିବର୍ତ୍ତନ କରାଯିବା ପାଇଁ ଗୋଟିଏ ଆଇନ କରାଗଲା ଏବଂ ଡାନ୍‌ଟନ୍‌ଙ୍କୁ ସେଥିରୁ ବାଦଦିଆଗଲା । ତା'ପରେ ରୋବ୍‌ସ୍‌ପିୟର ସେ ସମିତିର କେବଳ ଯେ ସଭ୍ୟ ହେଲେ ତାହା ନୁହେଁ, ସେ ତାହାର ପଥନିର୍ଦ୍ଦେଶକ ମଧ୍ୟ ହେଲେ । ତର୍କଦ୍ୱାରା ଦର୍ଶାଗଲା ଯେ ଡାନ୍‌ଟନ୍ ଜଣେ ଅସାଧାରଣ ଜନପ୍ରିୟ ନେତା ନଥିଲେ । ତାଙ୍କର ଶାନ୍ତିନୀତି ତାଙ୍କ ଲୋକପ୍ରିୟତାକୁ ଦୁର୍ବଳ କରିଦେଇଥିଲା ଏବଂ ତା'ଛଡ଼ା ଅନେକ ବିଶ୍ୱାସ କରୁଥିଲେ ଯେ ସେ ସାଧାରଣତନ୍ତ୍ର ବିରୁଦ୍ଧରେ ଡୁମୁରିଜ୍‌ଙ୍କର ଷଡ଼ଯନ୍ତ୍ରରେ ଜଡ଼ିତ ଥିଲେ । ପ୍ରକୃତପକ୍ଷରେ ବହୁ ଦିନରୁ ତାଙ୍କ ସାଧୁତା ବିଷୟରେ ସନ୍ଦେହ କରାଯାଇଥିଲା, ଯଦିଓ ଜାକୋବିନ୍‌ମାନଙ୍କ ମଧ୍ୟରେ ତାଙ୍କ ନିଜ ଦଳବଳଥିଲେ ତଥାପି ଅଧିକାଂଶ ଜାକୋବିନ ରୋବସ୍‌ପିୟରଙ୍କ ନେତୃତ୍ୱ ଚାହୁଁଥିଲେ । କିନ୍ତୁ ଯେତେଦିନଯାଏ ଆତଙ୍କରାଜ (The Reign of Terror) କହିଲେ, ଦୃଢ଼ ସରକାରଙ୍କୁ ବୁଝାଉଥିବ ଏବଂ ସେ ସରକାର ଦରକାର ପଡ଼ିଲେ ନିର୍ଦ୍ଦୟ ଭାବରେ ବିଦ୍ରୋହୀମାନଙ୍କୁ ଦମନ କରିବାକୁ ସମର୍ଥ ହେଉଥିବ ଏବଂ ଦେଶରେ ସମସ୍ତଙ୍କୁ ନିଜ ବଳରେ ବହିଃଶତ୍ରୁ ବିରୁଦ୍ଧରେ ଐକ୍ୟବଦ୍ଧ କରୁଥିବ, ସେତେଦିନଯାଏ ଆତଙ୍କରାଜ ଅନ୍ୟ କୌଣସି ପ୍ରଭାବଶାଳୀ ଜନନାୟକଙ୍କର ଭାବଧାରା ଅପେକ୍ଷା ଡାନ୍‌ଟନ୍‌ଙ୍କ ଭାବଧାରାକୁ ଅଧିକ ପ୍ରତିଫଳିତ କରୁଥିବ ।

ଆତଙ୍କରାଜ ହେଲା ଜରୁରୀକାଳୀନ ନିରଙ୍କୁଶ ଶାସନ । ଏହାର ଜଣେ ବଡ଼ ସମର୍ଥକ କହିଥିଲେ ଯେ ଆତଙ୍କରାଜ ଥିଲା ହିତାଶିବାଦୀର ଏକଛତ୍ର ଶାସନ (dictator-

ship of the distress) । ଆତଙ୍କରାଜ ଯେଉଁ ସିଦ୍ଧାନ୍ତ ଉପରେ ଭିତ୍ତିକରି ପ୍ରତିଷ୍ଠା କରାଯାଇଥିଲା, ତାହା ଅନୁସାରେ କେବଳ ଯେ ନିରଙ୍କୁଶ ଶାସନ ଗଢ଼ାଯାଇ ଗୃହଯୁଦ୍ଧର ଅବସାନ ଓ ଏକତାର ପୁନରୁଦ୍ଧାର କରାଯାଇପାରିବ ସେତିକି ନୁହେଁ, ଆହୁରି ମଧ୍ୟ ଦ୍ୱାର ନିକଟରେ ଥିବା ଶତ୍ରୁର ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ଦେଶକୁ ଉପଯୁକ୍ତ ଅବସ୍ଥାରେ ରଖା ଯାଇପାରିବ । ବିପ୍ଳବ ଓ ଅରାଜକତାଦ୍ୱାରା ଛିନ୍ନଭିନ୍ନ ହୋଇଥିବା ଦେଶ ପକ୍ଷରେ ଇଉରୋପର ଅଧିକାଂଶ ଦେଶ ବିରୁଦ୍ଧରେ ଯୁଦ୍ଧକରିବା ଏକ ସାମାନ୍ୟ ବ୍ୟାପାର ନଥିଲା । ଫରାସୀ ଜାତିର ଏହା ପ୍ରତି ବିଶେଷ ଧ୍ୟାନଦେବା ଉଚିତ ହୋଇଥାନ୍ତା । ଏ କଥା ସ୍ପଷ୍ଟ ଯେ ଫ୍ରାନ୍ସ ଏକାକୀ ଐକ୍ୟବଦ୍ଧ ଇଉରୋପର ମୁକାବିଲା କରିବା ସମ୍ଭବ ନୁହେଁ । ତେଣୁ ଶତ୍ରୁର ସମ୍ମୁଖୀନ ହେବାକୁ ହେଲେ ଫରାସୀମାନଙ୍କ ମଧ୍ୟରେ ଏକତା ପ୍ରତିଷ୍ଠା କରିବା ଏକାନ୍ତ ଆବଶ୍ୟକ । ପରାଜୟର ଅନ୍ଧକାରମୟ କାଳରେ ଲୋକେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଐକ୍ୟବଦ୍ଧ ଭାବରେ କାର୍ଯ୍ୟ କରିବେ ବୋଲି ଆଶାକରିବା ଠିକ୍ ନୁହେଁ । ବରଂ ଫରାସୀମାନଙ୍କ ମଧ୍ୟରେ ଅଧିକାଂଶ ଲୋକେ ଅବିଶ୍ୱାସୀ କାର୍ଯ୍ୟ କରୁଥିବାରୁ ବା ନିଜକୁ ଶୃଙ୍ଖଳିତ କରି ସରକାରଙ୍କ ନେତୃତ୍ୱକୁ ଅନୁସରଣ କରିବାକୁ ଅନିଚ୍ଛୁକ ଥିବାରୁ, କେବଳ ଆତଙ୍କ ପ୍ରତିଷ୍ଠା କରି ନିରଙ୍କୁଶ ଶାସନକୁ ସମର୍ଥନ କରିବା ଆବଶ୍ୟକ ବୋଲି ବିଚାର କରାଯାଇଥିଲା । ଲୋକମାନେ ଯଦି ଦେଶପ୍ରେମ ଓ ଆନୁଗତ୍ୟବଶତଃ ଯୁଦ୍ଧ ନ କରନ୍ତି, ସେମାନେ ଭୟହେତୁ ଯୁଦ୍ଧ କରିବାକୁ ବାଧ୍ୟ ହେବେ । ସମସ୍ତ ବିରୋଧୀଙ୍କୁ ଏବଂ ବାସ୍ତବ ଓ ପ୍ରଚ୍ଛନ୍ନ ବିଶ୍ୱାସଘାତକଙ୍କୁ ମୂଳପୋଛ କରିବା ପାଇଁ ସରକାରଙ୍କ ହାତରେ ମୃତ୍ୟୁଦଣ୍ଡ (Capital punishment)ର ଯେଉଁ ବ୍ୟବସ୍ଥା ଥିଲା, ତାହା ଡେମକ୍ଲିସ୍‌ଙ୍କ ଖଣ୍ଡାପରି ଲୋକମାନଙ୍କ ମୁଣ୍ଡ ଉପରେ ଝୁଲୁଥିଲା ପରି ମନେ ହେଉଥିଲା । ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି କିପରି ନିୟମିତଭାବରେ ଲୋକମାନଙ୍କୁ ହତ୍ୟା କରାଯାଉଥିଲା । ଏହି ନିୟମିତ ହତ୍ୟା ଘଟଣାଗୁଡ଼ିକ ଲୋକମାନଙ୍କୁ ସତର୍କ କରି ଦେଇଥିଲା ଯେ ଯଦି କେହି ସରକାରଙ୍କ ପ୍ରତି ବିଶ୍ୱାସଘାତକତା କରେ, ତାକୁ ମୃତ୍ୟୁଦଣ୍ଡ ଭୋଗିବାକୁ ହିଁ ପଡ଼ିବ । ଏଥିରୁ ଅନୁମାନ କରିବା ଉଚିତ ନୁହେଁ ଯେ ଅଧିକାଂଶ ଲୋକ ଆତଙ୍କର ଶିକାର ହୋଇଥିଲେ । ବରଂ ଅଧିକାଂଶ ଲୋକ ସନ୍ଦେହ ପାଇଁ କୌଣସି ସୁଯୋଗ ନଦେଇ ପୂର୍ବପରି ନିର୍ବିଘ୍ନରେ ଚଳବୁଲକରି ସେମାନଙ୍କର ଦୈନନ୍ଦିନ କାର୍ଯ୍ୟ ସମ୍ପାଦନ କରୁଥିଲେ ଏବଂ ପ୍ୟାରିସ୍‌ରେ ଲୋକେ ଅପରାଧୀରର ଦୂରରେ ରହିବା ବାଞ୍ଛନୀୟ ବୋଲି ମନେ କରୁଥିଲେ । ଏକଥା ସତ ଯେ ଆତଙ୍କରାଜ ପ୍ରତିଷ୍ଠାଦ୍ୱାରା ଜୀବନର ଆମୋଦ ପ୍ରମୋଦକୁ ଏକାବେଳକେ ବନ୍ଦ କରିଦିଆଯାଇନଥିଲା । ନାଟ୍ୟଶାଳାଗୁଡ଼ିକରେ ଦର୍ଶକମାନଙ୍କର ବେଶ୍ ଭିଡ଼ ଥିଲା, ଏବଂ କିଛି ପରିମାଣରେ ଦେଶରେ ସମୃଦ୍ଧି ଫେରଆସିଥିଲା । ମଧ୍ୟବିତ୍ତଗୋଷ୍ଠୀର ବହୁଲୋକ ରାଜନୀତିର ପାଖ ମାଡ଼ୁନଥିଲେ; କାରଣ ସେମାନେ ଜାଣିଥିଲେ ଯେ ସେମାନଙ୍କ ବିରୁଦ୍ଧରେ ବ୍ୟବହାର ପାଇଁ ସବୁବେଳେ ଗୋଟିଏ ହତିଆର ପ୍ରସ୍ତୁତ ରଖାଯାଇଛି । ତେଣୁ ଏପରି ପରିସ୍ଥିତିରେ ପ୍ରତ୍ୟେକଙ୍କ ପକ୍ଷରେ ସନ୍ଦେହର ଦୂରରେ ରହିବା ବାଞ୍ଛନୀୟ ।

ଆତଙ୍କରାଜ କହିଲେ ଏକ ଅସ୍ୱାଭାବିକ ନିର୍ମମ ଶାସନକୁ ବୁଝାଉଥିଲା । ସମୟଗୁଡ଼ିକ ମଧ୍ୟ ଥିଲା ଅସ୍ୱାଭାବିକ । ଏହା ସାମ୍ବିଧାନିକ ସରକାର ନଥିଲା । କାରଣ ସରକାରଙ୍କ ହାତକୁ ସମ୍ବିଧାନଦ୍ୱାରା ବାନ୍ଧି ରଖିବା ଠିକ୍ ହେବନାହିଁ ବୋଲି ଅନୁଭବ କରାଯାଉଥିଲା । ଅଧିକାଂଶ ଦେଶବାସୀ ସଙ୍କଟର ଗୁରୁତ୍ୱ ବୁଝି ନିରଙ୍କୁଶ ଶାସନପାଇଁ ସ୍ୱତଃପ୍ରବୃତ୍ତ ହୋଇ ଯେ ଭୋଟ ଦେବେ, ତାହା ଆଶା କରାଯାଉନଥିଲା । ତେଣୁ ଫରାସୀ ଲୋକମାନଙ୍କ ପକ୍ଷରେ ବ୍ୟକ୍ତିଗତ ସ୍ୱାଧୀନତାକୁ କିଛିକାଳ ପାଇଁ ଶୀତଳଭଣ୍ଡାରରେ ରଖିବାକୁ ହେବ ଏବଂ ବିପ୍ଳବର ନୀତିଗୁଡ଼ିକ ଭୁଲି ଯିବାକୁ ପଡ଼ିବ; ଯଦିଓ ଭବିଷ୍ୟତରେ ସେହି ସବୁ ନୀତିର ବିଜୟ ସୁନିଶ୍ଚିତ । ଏକଥା ସ୍ୱୀକାର କରିବାକୁ ହେବ ଯେ ଏହା ଏକ ଅଦ୍ଭୁତକର ଶାସନ ଏବଂ ଅନେକେ ଏପରି ସନ୍ଦେହଜନକ ବାତାବରଣ ମଧ୍ୟରେ ଆଦୌ ସୁଖୀ ହୋଇ ପାରିନଥିଲେ । ଏହି ସମୟରେ ବହୁଲୋକଙ୍କୁ ଅନ୍ୟାୟରେ ହତ୍ୟା କରାଯାଇଥିଲା ଏବଂ ଅନେକ ଲୋକଙ୍କୁ କେବଳ ବିରୁଦ୍ଧଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇଥିବାରୁ କିମ୍ବା (ଯଥେଷ୍ଟ ପ୍ରମାଣ ନଥିବା) ରାଜଦ୍ରୋହ ଅପରାଧ ଯୋଗୁଁ ଦୁଃଖ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥିଲା । ସେ ଯାହାହେଉ ଆତଙ୍କରାଜ ବିନା ଫ୍ରାନସ ଅରାଜକତା ଏବଂ ଗୃହଯୁଦ୍ଧରୁ ନିଜକୁ ଉଦ୍ଧାରକରି ନଥାନ୍ତା, କି ବହିଃ ଶତ୍ରୁମାନଙ୍କୁ ପରାସ୍ତ କରି ହଟାଇ ଦେବାପାଇଁ ସୈନ୍ୟମାନଙ୍କୁ ପ୍ରସ୍ତୁତ କରି ରଖି ପାରିନଥାନ୍ତା । ତେଣୁ ଏ ଆତଙ୍କରାଜ ଫ୍ରାନସକୁ ଯେ ନିଶ୍ଚିତଭାବରେ ରକ୍ଷା କରିଥିଲା ଏଥିରେ ସନ୍ଦେହ ନାହିଁ ।

ଜଣେ ବଡ଼ ଐତିହାସିକ କହିଥିଲେ, "ଆତଙ୍କରାଜର ଭିତ୍ତିପ୍ରସ୍ତର ଏବଂ ପ୍ରକୃତ ପକ୍ଷରେ ତାହାର ଆତ୍ମା ହେଲା ସାର୍ବଜନୀନ ନିରାପତ୍ତା ସମିତି"(One great Historian said, "The corner stone and the very soul of the terror was the committee of public safety") । ଦେଶରେ ମନ୍ତ୍ରୀମାନେ ଥିଲେ ସତ; କିନ୍ତୁ ସେମାନେ ଏହି ଶକ୍ତିସମ୍ପନ୍ନ ସମିତିର କିରାଣି ପରି କାର୍ଯ୍ୟ କରୁଥିଲେ । ଜାତୀୟ କନ୍‌ଭେନ୍‌ସନ୍ ବୈଧାନିକ ସଭାଭଳି କାର୍ଯ୍ୟ କରୁ ଥିଲା; ଯଦିଓ ଏହାର ସର୍ବାଧିକ କ୍ଷମତା ଥିଲା ତଥାପି ଏହା ନିଜେ ସୃଷ୍ଟି କରିଥିବା ସମିତିର ହାତବାରସୀ ହୋଇପଡ଼ିଥିଲା । ଏହି ସମିତିର ସଭ୍ୟମାନେ ମାସକ ପାଇଁ ନିର୍ବାଚିତ ହେଉଥିଲେ ମଧ୍ୟ ସେମାନେ ପ୍ରାୟ ସର୍ବଦା ପୁନର୍ନିର୍ବାଚିତ ହେଉଥିଲେ ଏବଂ କାଳକ୍ରମେ ଜାତୀୟ କନ୍‌ଭେନ୍‌ସନ ତାହାର ଏହି ସୃଷ୍ଟିକୁ ଭୟ କରିବାକୁ ଲାଗିଲା । ଏପରିକି ସମିତିର ଆଦେଶରେ ଜାତୀୟ କନ୍‌ଭେନ୍‌ସନ୍‌ର ସଭ୍ୟମାନଙ୍କୁ ଦୁଇ ଦୁଇ ଜଣ କରି ଲକ୍ଷ୍ୟସାଧନକାରୀ ପ୍ରତିନିଧି (Deputies on mission) ହିସାବରେ ବଚ୍ଛାଯାଇ ପ୍ରତି ପ୍ରଦେଶ (ଡିପାର୍ଟମେଣ୍ଟ) କୁ ବା ଯୁଦ୍ଧ କ୍ଷେତ୍ରରେ ଥିବା ପ୍ରତି ସୈନ୍ୟବାହିନୀକୁ ପଠାଯାଉଥିଲା । ସେମାନେ ଥିଲେ ସରକାରର ପ୍ରଧାନ ବଳ; ସାରାଦେଶରେ ଓ ଯୁଦ୍ଧ କ୍ଷେତ୍ରରେ ଆନୁଗତ୍ୟ ସଞ୍ଚାର କରାଇବା ଥିଲା ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ । ପ୍ରତ୍ୟେକ ସୈନ୍ୟବାହିନୀକୁ ଯେଉଁ ଦୁଇଜଣିଆ ପ୍ରତିନିଧି ପଠାଯାଉଥିଲା, ସେମାନଙ୍କର

ସେନାପତିମାନଙ୍କୁ ଗିରଫ୍ କରିବା ଓ ଯୁଦ୍ଧ କ୍ଷେତ୍ରରେ ଯେ କୌଣସି ସେନାପତିର ହୁକୁମ୍‌କୁ ରଦ୍ଦ କରିବା କ୍ଷମତା ଥିଲା । ଏତଦ୍ୱ୍ୟତୀତ ସେମାନେ ନିରଙ୍କୁଶ କ୍ଷମତା ପ୍ରୟୋଗ କରୁଥିଲେ ଏବଂ ପ୍ରତ୍ୟେକ କର ସଂଗ୍ରାହକ ବା ଇନ୍‌ଟେନ୍‌ଡାଣ୍ଟମାନଙ୍କପରି ସରକାରଙ୍କ ନିକଟରେ ଦାୟି ରହୁ ଥିଲେ । ତେଣୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଆତଙ୍କରାଜଦ୍ୱାରା ଫ୍ରାନ୍‌ସକୁ ପୁନର୍ବାର କେନ୍ଦ୍ରୀକରଣ କରାଯାଇଥିଲା ଓ ଭାଗ ଭାଗ ହୋଇଯାଇଥିବା ଫରାସୀ ଜାତିକୁ ଐକ୍ୟବଦ୍ଧ କରାଯାଇଥିଲା ।

ସାର୍ବଜନୀନ ନିରାପତ୍ତା ସମିତି (The Committee of Public Safety) ୧୭୯୩ ମସିହା ଜୁନ ୨ ତାରିଖ ଦିନ କେନ୍ଦ୍ରୀୟ କମିଟି ଓ ବିଚାରାଳୟ ସାହାଯ୍ୟରେ ଆତଙ୍କରାଜ ପ୍ରବର୍ତ୍ତନ କରିଥିଲା । ସାରା ଫ୍ରାନ୍‌ସରେ ବୈପ୍ଳବିକ କମିଟିମାନ ପ୍ରତିଷ୍ଠା କରାଯାଇଥିଲା । ଏମାନଙ୍କର ପ୍ରଧାନକାର୍ଯ୍ୟ ହେଲା ସନ୍ଦେହ କରୁଥିବା ଆଇନ (Law of suspects) ପ୍ରବର୍ତ୍ତନ କରିବା । ଏହି ଆଇନବଳରେ ଯେଉଁ ଲୋକମାନେ କୌଣସି ପ୍ରକାରେ ପୁରାତନ ଶାସନ ପଦ୍ଧତି ସହିତ ଅବିଚ୍ଛେଦ୍ୟ ଭାବରେ ସଂପୃକ୍ତ ଥିଲେ, ସେ ସମସ୍ତଙ୍କୁ ସନ୍ଦେହଜନକ ବ୍ୟକ୍ତି ବୋଲି ଧରିନିଆଯାଉଥିଲା । ବିପ୍ଳବ ପ୍ରତି ଯେଉଁଲୋକ ପ୍ରକୃତ ସେବାଭାବ (Positive service) ପ୍ରକାଶ କରୁ ନଥିଲା, ତାହାପ୍ରତି ମଧ୍ୟ ଏ ଆଇନ ପ୍ରଯୁଜ୍ୟ ହେଉଥିଲା । ପ୍ରତ୍ୟେକ ଦେଶବାସୀଙ୍କର ବ୍ୟକ୍ତିଗତ ଇତିହାସ (record) ସୁରକ୍ଷା କାର୍ଡ (Card of Security) ରେ ଲିପିବଦ୍ଧ କରାଯାଉଥିଲା ଏବଂ ପ୍ରତ୍ୟେକ ଲୋକକୁ ଏହା ଏକ ପ୍ରକାର ଅନୁମତି ପତ୍ର (Passport) ହିସାବରେ ପାଖରେ ରଖିବା ଦରକାର ପଡ଼ୁଥିଲା । ପ୍ୟାରିସରେ ସାଧାରଣ ସୁରକ୍ଷା କମିଟି (The Committee of General Security) ନାମରେ ଏକ କେନ୍ଦ୍ରୀୟ କମିଟି ବସାଯାଇ ସନ୍ଦେହଜନକ ମାମଲାଗୁଡ଼ିକର ଅନୁସନ୍ଧାନ କରାଯାଉଥିଲା ଓ ବୈପ୍ଳବିକ ବିଚାରାଳୟ (Revolutionary Tribunal)କୁ ବିଚାର ପାଇଁ କେଉଁମାନଙ୍କୁ ଅଣାଯିବ, ତାହା ନିଷ୍ପତ୍ତି କରୁଥିଲା । କେନ୍ଦ୍ରୀୟ ବିଚାରାଳୟ ଏହି ସବୁ ମକଦ୍ଦମାଗୁଡ଼ିକ ବିଚାର କରିବାକୁ ଅସମର୍ଥହେବାରୁ ଦେଶର ଚାରିଆଡ଼େ ସେହିଭଳିଆ ବିଚାରାଳୟମାନ ପ୍ରତିଷ୍ଠା କରାଯାଇଥିଲା । ଏହି ସବୁ ମକଦ୍ଦମାର ବିଚାର ପାଇଁ ଜୁରିର ସଭ୍ୟମାନଙ୍କର ତାଲିକାମାନ ପ୍ରସ୍ତୁତ କରାଯାଉଥିଲା; କିନ୍ତୁ ସେମାନେ ଉପସ୍ଥିତ ପରିସ୍ଥିତିରେ ନିରପେକ୍ଷ ବୋଲି ବିଚାରିବା ଆଦୌ ଉଚିତ ହେବନାହିଁ । ଯେତେ ଲୋକଙ୍କୁ ଏହି ସବୁ ବିଚାରାଳୟ-ମାନଙ୍କୁ ବିଚାରପାଇଁ ଅଣାଯାଇଥିଲା, ସେ ସମସ୍ତଙ୍କୁ ଗିଲୋଟିନ୍ ଯନ୍ତ୍ର ସାହାଯ୍ୟରେ ହତ୍ୟା କରାଯାଇଥିଲା । ତେଣୁ ଲକ୍ଷ୍ୟସାଧନକାରୀ ପ୍ରତିନିଧିମାନେ (deputies on mission), ସାଧାରଣ ସୁରକ୍ଷା କମିଟି (General Committee of Security) ଓ ଅନ୍ୟାନ୍ୟ ବୈପ୍ଳବିକ କମିଟି (Revolutionary Committees) ଏବଂ ବୈପ୍ଳବିକ ବିଚାରାଳୟ (Revolutionary Tribunal) ହେଲେ ସାର୍ବଜନୀନ ନିରାପତ୍ତା

ସମିତି ( Committee of Public Safety )ର ବିଭିନ୍ନ ଅଙ୍ଗ ଏବଂ ଏ ଅଙ୍ଗ ସବୁ ତାହାର ହତିଆର ଭଳି ଆଭ୍ୟନ୍ତରୀଣ ବିଦ୍ରୋହ ଦମନ କରିବାରେ ଓ ଦେଶକୁ ବହିଃ-ଶତ୍ରୁମାନଙ୍କର ଆକ୍ରମଣରୁ ରକ୍ଷା କରିବାରେ ସାହାଯ୍ୟ କରୁଥିଲା । ଯଦିଓ 'ଆତଙ୍କରାଜ' (The Reign of Terror ) ୧୭୯୩ ମସିହା ଜୁନ୍‌ମାସ ୨ ତାରିଖଠାରୁ ପ୍ରତିଷ୍ଠା କରାଯାଇଥିଲା, ତାହା ସେହିମାସ ସେପ୍‌ଟେମ୍ବରବେଳକୁ ସରକାରୀ ଭାବରେ ଆରମ୍ଭ ହେବାର ସୂଚନା ମିଳିଲା । ଯାହା କିଛି ଘଟଣା କାହିଁକି 'ଆତଙ୍କରାଜ' ପୂର୍ବବର୍ତ୍ତୀ 'ଅରାଜକ ଶାସନ' ( Reign of Anarachy ) ତୁଳନାରେ ଅଧିକ ଭୟାବହ ହୋଇ ନଥିଲା; କାରଣ 'ଅରାଜକ ଶାସନ' ବେଳେ ଲୋକେ ଆଇନକୁ ନିଜ ହାତକୁ ନେଇଥିଲେ ଏବଂ ସମୟେ ସମୟେ ହତ୍ୟାକାଣ୍ଡମାନ ଘଟାଉଥିଲେ । ଏହି ପ୍ରସଙ୍ଗରେ ଡାନ୍‌ଟନ୍ କହିଥିଲେ "ଲୋକମାନଙ୍କୁ ଭୟାନକ ହେବାକୁ ନ ଦେଇ ଚାଲ ଆମ୍ଭେମାନେ ଭୟାନକ ହେବା ।" (As Danton said, "Let us be terrible in order to dispense the people from being terrible") ତେଣୁ ଏହି ସଂଗଠିତ ଆତଙ୍କ ( organised terror ) ଓ ବିକ୍ଷୁବ୍ଧ ଜନତାର ନିର୍ବିଘ୍ନର ଆତଙ୍କ (Promiscuous terror) ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ଏହି ନୂତନ ଶାସନର ସାଧାରଣ ଗତିକୁ ବିକ୍ଷୁବ୍ଧ ଜନତା ଯଦି କେବେ ବାଧା ଦିଅନ୍ତି, ତାହାହେଲେ ଆତଙ୍କ ଯେ ସେମାନଙ୍କ ବିରୁଦ୍ଧରେ ବ୍ୟବହୃତ ହେବ ଏଥିରେ ସନ୍ଦେହ ନାହିଁ । ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ ଯେଉଁ ଲୋକମାନେ ବ୍ୟକ୍ତିଗତ ଜୀବନରେ ଭଦ୍ରତାର ପ୍ରତୀକ ଥିଲେ, ସେମାନେ ଏହି ଆତଙ୍କର ଆଦର୍ଶ ପଛରେ ଧାଇଁ ଅତ୍ୟାଚାରରୁ ନିବୃତ୍ତ ହୋଇନଥିଲେ । ଆତଙ୍କବାଦରେ କେତେକ ପରିମାଣରେ ଧର୍ମର ଆସ୍ୱାଦ ମଧ୍ୟ ଥିଲା । ଯେଉଁମାନେ ସ୍ୱାଧୀନତାର ଡାକ ଦେଉଥିଲେ, ସେମାନେ ସ୍ୱେଚ୍ଛାଚାରୀ ଶାସନର ବଡ଼ ସମର୍ଥକ ହେଲେ । ଫରାସୀ ଜାତି ଯେତେବେଳେ ବହିଃଶତ୍ରୁ ବିରୁଦ୍ଧରେ ଯୁଦ୍ଧରେ ଲିପ୍ତରହିବ, ସେତେବେଳେ ଗଣତନ୍ତ୍ରକୁ ଜାତୀୟତା ନିକଟରେ ଆତ୍ମସମର୍ପଣ କରିବାକୁ ପଡ଼ିବ । ତେଣୁ ଏ ବିପଦବେଳେ ସ୍ୱାଧୀନମତ ଦେବାର ଅଧିକାରକୁ ସଙ୍କୁଚିତ କରିବା ଏବଂ ଜାତି ଉଦ୍ଦେଶ୍ୟରେ ଅସାଧାରଣ ଦାନ ବଳପୂର୍ବକ ଆଦାୟ କରିବା କ୍ଷମତା ସରକାରଙ୍କର ରହିବା ଉଚିତ ବୋଲି ମନେକରାଯାଉଥିଲା । ମାରାଟ୍ କହିଥିଲେ ରାଜାଙ୍କର ନିରଙ୍କୁଶ ଶାସନକୁ ଦମନ କରିବା ନିମନ୍ତେ ଆମ୍ଭମାନଙ୍କୁ ସ୍ୱାଧୀନତାର ନିରଙ୍କୁଶ ଶାସନହିଁ ପ୍ରତିଷ୍ଠା କରିବାକୁ ହେବ ।" (Marat said, 'We must establish the depotism of liberty in order to suppress depotism of kings. )

ଜମିଦାରୀ ଅବସ୍ଥାରେ ଆତଙ୍କର କାର୍ଯ୍ୟକଳାପଗୁଡ଼ିକ ଆଭ୍ୟନ୍ତରୀଣ ବିଦ୍ରୋହ ବିରୁଦ୍ଧରେ ପରିଚାଳିତ ହୋଇଥିଲା । ଲା ଭେନ୍‌ଡିର ବିଦ୍ରୋହକୁ ନିଷ୍ଠୁର ଭାବରେ ଦମନ କରାଯାଉଥିଲା । ଏହାର ଗାଁ ଗଣ୍ଡାଗୁଡ଼ିକ ପୋଡ଼ି ଛାରଖାର କରି ଦିଆଯାଉଥିଲା ଏବଂ

ପ୍ରାୟ ଦୁଇ ହଜାର ଲୋକଙ୍କୁ ନିର୍ମମ ଭାବରେ ହତ୍ୟା କରାଯାଇଥିଲା । ଲିଓଁ ଓ ମାର୍ସାଇଲ ପ୍ରଭୃତି ବିଦ୍ରୋହୀ ସହରଗୁଡ଼ିକୁ ମଧ୍ୟ ନିର୍ଦ୍ଦୟଭାବରେ ଦମନ କରାଯାଇଥିଲା ଏବଂ ବିଦ୍ରୋହୀମାନଙ୍କୁ ସତର୍କ କରିଦେବା ଉଦ୍ଦେଶ୍ୟରେ କେତେକ ବିଦ୍ରୋହୀଙ୍କୁ କଠୋର ଶାସ୍ତି ଦିଆଯାଇଥିଲା । ଶହ ଶହ ଲୋକଙ୍କୁ ଲୟର (Loire) ନଦୀରେ ବୁଡ଼ାଇ ମାରିଦିଆ ଯାଇଥିଲା । ଇତ୍ୟବସରରେ ପ୍ୟାରିସ୍ ସହରରେ ୧୭୯୩ ମସିହା ଜୁନ୍ ମାସରେ ବେଲି, ବାରନେଭ, ଫିଲିପ୍, ଏଗାଲାଇଟ ଏବଂ କୋଡ଼ିଏ ବା ତାଠାରୁ ଅଧିକ ଗିରନ୍ଡିନ୍‌ଙ୍କସମେତ ବହୁ ଲୋକଙ୍କୁ ହତ୍ୟା କରାଯାଇଥିଲା । ଫାଶୀ ମଞ୍ଚକୁ ଯିବା ବାଟରେ ମାଡାମ୍ ରୋଲାଣ୍ଡ ଏ ହତ୍ୟାକାଣ୍ଡ ଗୁଡ଼ିକ ବିଷୟରେ ନିଜର ମତ ବ୍ୟକ୍ତ କରିବାକୁ ଯାଇ କହିଥିଲେ, "ହେ ସ୍ୱାଧୀନତା, ତମ ନାମରେ କେତେ ଅପରାଧ କରାଯାଉଛି ।" 'Liberty ! how many crimes are committed in thy name !' ରାଣୀ ମେରି ଏନ୍‌ଟୟନେଟ (Marrie Antoinette)ଙ୍କୁ ଘୃଣାକରୁଥିବା ମାଡାମ ରୋଲାଣ୍ଡଙ୍କୁ ମଧ୍ୟ ଅକ୍‌ଟୋବର ମାସରେ ଗିଲେଟିନ୍‌କୁ ନିଆଯାଇଥିଲା । ତେଣୁ ସାର୍ବଜନୀନ ନିରାପତ୍ତା ସମିତି (The Committee of Public Safety) ଏହିପରି ହତ୍ୟା ଓ ଅତ୍ୟାଚାରଦ୍ୱାରା ଲୋକମାନଙ୍କୁ ଭୀତତ୍ରସ୍ତ କରି ଦେଶକୁ ଗୃହଯୁଦ୍ଧର ବିଭୀଷିକାରୁ ରକ୍ଷା କରିପାରିଥିଲା ଏବଂ ବହିଃଶତ୍ରୁମାନଙ୍କ ଆକ୍ରମଣର ମୁକାବିଲା କରିବା ପାଇଁ ଦେଶକୁ ଐକ୍ୟବଦ୍ଧ କରି ପାରିଥିଲା ।

ତା'ଛଡ଼ା ସାର୍ବଜନୀନ ନିରାପତ୍ତା ସମିତି (The Committee of Public Safety ) ବିଦେଶୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଗୋଟିଏ ବିଶାଳ ସୈନ୍ୟବାହିନୀ ଗଠନ କରିଥିଲା । ଏହି ସମିତିର ସଭ୍ୟ କାରନଟ୍ (Carnot) ଙ୍କୁ ଯୁଦ୍ଧ ପରିଚାଳନା କରିବାର ସମୁଦାୟ ଦାୟିତ୍ୱ ଦିଆଯାଇଥିଲା । ବିଜୟର ସଂଗଠକ ( the organiser of victory ) କୁହାଯାଉଥିବା କାରନଟ ସୈନ୍ୟବାହିନୀର ପ୍ରତ୍ୟେକ ବିଭାଗକୁ ପରୀକ୍ଷାକରି ନିୟମାନୁଯାୟୀ ସଂଗଠିତ କରିବା ସଙ୍ଗେ ସଙ୍ଗେ ନବରୂପ ମଧ୍ୟ ଦେଇଥିଲେ । ୧୭୯୩ ମସିହା ଅଗଷ୍ଟ ମାସରେ ଲେଭିଏନ୍‌ମାସ (Levee en masse) ଭିତ୍ତିରେ ପ୍ରତ୍ୟେକ କାର୍ଯ୍ୟକ୍ଷମ ଫରାସୀବାସୀକୁ ସୈନ୍ୟଦଳରେ ଯୋଗଦେବାକୁ ବାଧ କରାଯାଇଥିଲା; ଯାହା ଫଳରେ ତେରୋଟି ସୈନ୍ୟବାହିନୀଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ କରାଯାଇ ପାରିଥିଲା । ମୋଟରେ ସୈନ୍ୟବାହିନୀ ଗୁଡ଼ିକରେ ୭୫୦, ୦୦୦ ଲୋକଥିଲେ । ଆଧୁନିକ ଇତିହାସରେ ଏପରି ଏକ ବିଶାଳ ଲଢ଼ୁଆ ସୈନ୍ୟବାହିନୀ କେବେହେଲେ ଯୁଦ୍ଧପାଇଁ ପ୍ରସ୍ତୁତ କରାଯାଇନଥିଲା । ଗିରନ୍‌ଡିନ୍ ଦଳର ସେନାପତିମାନଙ୍କୁ ପଦଚ୍ୟୁତ କରି ସେମାନଙ୍କ ସ୍ଥାନରେ ଜାକୋବିନ (ମାଉନଟେନ୍) ଦଳରୁ ସେନାପତିମାନଙ୍କୁ ବଛାଯାଇ ନିଯୁକ୍ତ କରାଯାଇଥିଲା । ଯୁଦ୍ଧର ପ୍ରାରମ୍ଭରେ ଫରାସୀ ସୈନ୍ୟବାହିନୀର ଶୋଚନୀୟ ଅବସ୍ଥା ବିଷୟ ବିଚାରକଲେ ଜଣେ ସ୍ପଷ୍ଟ ଅନୁଭବ କରିପାରିବ ଯେ କାରନଟ୍‌ଙ୍କ ନେତୃତ୍ୱରେ ସେ ସୈନ୍ୟବାହିନୀର ଯେଉଁ ପରିବର୍ତ୍ତନ ଘଟିଲା, ତାହା ଏକ ଅଭୂତପୂର୍ବ

ଘଟଣା । ପ୍ରକୃତରେ ସେ ସୈନ୍ୟବାହିନୀ ଫରାସୀ ଜାତିର ଜୀବନ ଶକ୍ତି ( Vitality ) ର ଅଭୂତ ପରିଚୟ ଦେବା ସଙ୍ଗେ ସଙ୍ଗେ ସେହି ଜାତିର ମର୍ଯ୍ୟାଦା ମଧ୍ୟ ରକ୍ଷାକରିଥିଲା ।

ସେ ଯାହାହେଉ ମିତ୍ର ରାଷ୍ଟ୍ରମାନେ ୧୭୯୩ ମସିହା ବସନ୍ତ ଋତୁରେ ଫରାସୀମାନଙ୍କର ପରାଜୟର ଆଶୁ ସୁଯୋଗ ନେଇନଥିଲେ; ତେଣୁ ଅଳ୍ପ କେତେ ମାସରେ ସେମାନଙ୍କୁ ଏକ ନୂତନ ଫ୍ରାନ୍ସର ମୁକାବିଲା କରିବାକୁ ପଡ଼ିଲା । ଏହି ନୂତନ ଫ୍ରାନ୍ସ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇଥିଲା ଏବଂ ପଶ୍ଚିମଇଉରୋପୀୟରାଷ୍ଟ୍ରର ଐକ୍ୟବଦ୍ଧ ଶକ୍ତି ବିରୁଦ୍ଧରେ ଯୁଦ୍ଧକରିବାକୁ ପ୍ରସ୍ତୁତ ହୋଇ ରହିଥିଲା । ଅର୍ଥନୈତିକ ଦୃଷ୍ଟିକୋଣରୁ ବା ନୈତିକ ଦୃଷ୍ଟିକୋଣରୁ ବିଗ୍ଭରକଲେ ମିତ୍ରରାଷ୍ଟ୍ରମାନଙ୍କର ପ୍ରଥମ ମେଣ୍ଟ (The first coalition) ଆତଙ୍କ ସୃଷ୍ଟିକରିଥିବା ଫ୍ରାନ୍ସ ସହିତ କେବେହେଲେ ସମକକ୍ଷ ହୋଇପାରିନଥିଲା । ପ୍ରଥମ ମେଣ୍ଟର ସମ୍ମିଳିତ ସାମର୍ଥ୍ୟ, ସଂଖ୍ୟା ଅନୁପାତରେ ଫ୍ରାନସଠାରୁ ନ୍ୟୂନ ନ ଥିଲା; କିନ୍ତୁ ସଗଠନ ଏବଂ ସମରପ୍ରସ୍ତୁତି ଦୃଷ୍ଟିରୁ ଏହା ଫ୍ରାନ୍ସ ସହିତ କୌଣସି ମତେ ସମକକ୍ଷ ନ ଥିଲା । ସବୁ ମେଣ୍ଟମାନଙ୍କ ପରି ଏହି ମେଣ୍ଟରେ ଏକତା ନ ଥିବାରୁ ଏହା ଏକ ପ୍ରକାର ସମରକୌଶଳ ଗ୍ରହଣ କରିବାକୁ ଅସମର୍ଥ ହୋଇଥିଲା । ତା ଛଡ଼ା ମିତ୍ର ରାଷ୍ଟ୍ରମାନଙ୍କ ସୈନ୍ୟବାହିନୀମାନେ ଖାଲି ଯୁଦ୍ଧ କରୁଥିଲେ କାରଣ ସେମାନଙ୍କୁ ତାହା କରିବାକୁ ବାଧ୍ୟ କରାଯାଉଥିଲା । ଅନ୍ୟ ପକ୍ଷରେ ଫ୍ରାନସର ପ୍ରତ୍ୟେକ କାର୍ଯ୍ୟକ୍ଷମ ବ୍ୟକ୍ତିକୁ ବଳପୂର୍ବକ ସୈନ୍ୟଶ୍ରେଣୀଭୁକ୍ତ କରାଗଲେ ମଧ୍ୟ ସେ ସୈନ୍ୟବାହିନୀରେ ଯୋଗଦେଲାପରେ ଅନୁଭବ କରୁଥିଲା ଯେ ସେ ତାହାର ଦେଶ ଫ୍ରାନ୍ସକୁ ରକ୍ଷାକରିବା ପାଇଁ ଯୁଦ୍ଧକରୁଛି ଏବଂ ସେହି ଫ୍ରାନସ ବିପ୍ଳବରୁ ହିଁ ଜାତ ହୋଇଛି । ତେଣୁ ଉଭୟ ଦେଶ ଓ ବିପ୍ଳବକୁ ରକ୍ଷାକରିବା ତାର ହେଲା ଦାୟିତ୍ୱ । ଆତଙ୍କରାଜର ବିଶେଷତ୍ୱ ହେଲାଯେ ଫରାସୀ ସେନାପତିମାନେ ଜାଣିଥିଲେ ଯେ ସେମାନଙ୍କୁ ଯୁଦ୍ଧ ଜିଣିବାକୁ ହିଁ ହେବ; ନଚେତ୍ ଯୁଦ୍ଧରେ ହାରିଗଲେ ସେମାନଙ୍କୁ ଫାଶି ମଞ୍ଚରେ ପ୍ରାଣବଳି ଦେବାକୁ ପଡ଼ିବ । ଯୁଦ୍ଧକ୍ଷେତ୍ରରେ ବିପର୍ଯ୍ୟୟ ଘଟିବାଯୋଗୁ ବହୁ ସେନାପତିଙ୍କୁ ବିଗ୍ଭର କରାଯାଇ ଗିଲୋଟିନକୁ ପଠାଯାଉଥିଲା । ପ୍ରଥମ ମେଣ୍ଟରେ ସୈନ୍ୟବାହିନୀମାନଙ୍କୁ ଜନ୍ମଗତ ଅଧିକାର ଭିତ୍ତିରେ ଗଢ଼ାଯାଇଥିଲା; କିନ୍ତୁ ଫ୍ରାନସର ତ୍ରିରଙ୍ଗ ପତାକା ତଳେ ଯୁଦ୍ଧ କରୁଥିବା ସୈନ୍ୟବାହିନୀର ପ୍ରତ୍ୟେକ ସୈନ୍ୟ ଜାଣିଥିଲା ଯେ ଜଣେ ସାମାନ୍ୟ ସୈନିକ ପଦରୁ ଉଠି ଯୁଦ୍ଧକ୍ଷେତ୍ରରେ ଜଣେ ସେନାପତି ହେବାର ତାର ସୁଯୋଗ ରହିଛି । ଏହି ସାମ୍ୟନୀତି ଫରାସୀମାନଙ୍କର ନୈତିକବଳ ପାଇଁ ବିଶେଷ ସାହାଯ୍ୟ କରିଥିଲା, ଏହିସବୁ ଦୃଷ୍ଟିରୁ ଫରାସୀ ସୈନ୍ୟବାହିନୀ ସବୁଆଡ଼େ ବିଜୟ ହାସଲ କରିଥିଲେ, ଇଂରେଜମାନେ ୧୭୯୩ ମସିହା ସେପ୍‌ଟେମ୍ବର ମାସରେ ହଣ୍ଡସଟେନ (Hondschoten) ଠାରେ ପରାଜିତ ହୋଇଥିଲେ ଏବଂ ଡନକିର (Dunkirk) ଅବରୋଧ ଉଠାଇଦେବାକୁ ବାଧ୍ୟ ହୋଇଥିଲେ । ଅଷ୍ଟ୍ରୀୟମାନେ ସେହି ମସିହା ଅକ୍‌ଟୋବରମାସରେ ଓ୍ୱାଟିଗ୍ନିଜ୍ (Wattignies )ରେ ହାରିଯାଇଥିଲେ । ଇଂରେଜମାନଙ୍କଠାରୁ ଡିସେମ୍ବର ମାସରେ

ଟୌଲନ (Toulon)କୁ ପୁନର୍ବାର ଅଧିକାର କରି ନିଆଯାଇଥିଲା । ସ୍ପେନୀୟମାନଙ୍କୁ ବିଦାସୋଆ (Bidassoa)ର ଆରପାଖକୁ ତଡ଼ିଦିଆଯାଇଥିଲା । ଏହି ସବୁ ବିଜୟ ଫଳରେ ମିତ୍ର ରାଷ୍ଟ୍ରମାନଙ୍କ ଅଗ୍ରଗତି ରୋକିଦିଆଯାଇଥିଲା; ଏବଂ ସେମାନଙ୍କୁ ଆତ୍ମରକ୍ଷା ନିମନ୍ତେ ପ୍ରସ୍ତୁତ ହୋଇ ରହିବାକୁ ବାଧ୍ୟ କରାଯାଉଥିଲା କିନ୍ତୁ ମିଳିତ ଇଂରେଜ ଓ ଅଷ୍ଟ୍ରିୟ ସୈନ୍ୟବାହିନୀକୁ ଫ୍ରାନସରୁ ତଡ଼ି ଦିଆଯାଇପାରିନଥିଲା । ପରବର୍ତ୍ତୀ ଅର୍ଥାତ୍ ୧୭୯୪ ମସିହାରେ ଫରାସୀ ସୈନ୍ୟବାହିନୀ ଉତ୍ତର ଓ ଦକ୍ଷିଣ ଆଡ଼ୁ ବେଲ୍‌ଜିୟମ ଆକ୍ରମଣ କରିଥିଲେ ଏବଂ ଉଭୟ ଇଂରେଜ ଓ ଅଷ୍ଟ୍ରିୟମାନେ ସେହି ମସିହା ଜୁନ ମାସରେ ଫ୍ଲ୍ୟୁରସ (Fleurus) ଯୁଦ୍ଧରେ ପରାସ୍ତ ହେବା ଫଳରେ ଫରାସୀମାନେ ବେଲଜିୟମ ପୁନରୁଦ୍ଧାର କରିଥିଲେ । ଶେଷରେ ଅଷ୍ଟ୍ରିୟମାନେ ଫ୍ରାନସରୁ ବିତାଡ଼ିତ ହେଲେ । ମିତ୍ର ରାଷ୍ଟ୍ରମାନେ ପରାସ୍ତ ହେବାରୁ ଫ୍ରାନସ ତାର ପ୍ରାକୃତିକ ସୀମା ଫେରିପାଇଥିଲା ? କିନ୍ତୁ ନୌଯୁଦ୍ଧରେ ଫରାସୀମାନେ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ । କର୍ସିକା ଇଂରେଜମାନଙ୍କ ହାତରେ ପଡ଼ିଲା ଏବଂ ବର୍ଷକରୁ ଅଧିକ କାଳ ସେମାନଙ୍କ ଅଧୀନରେ ରହିଲା । ଇଂରେଜ ନୌ-ସେନାପତି ହୋ (Howe) ୧୭୯୪ ମସିହା ଜୁନ ୧ ତାରିଖ ଦିନ ଫରାସୀ ନୌବହରକୁ ପରାସ୍ତ କରିଥିଲେ । ଥରମିଡ଼ୋରିଏନ୍ ପ୍ରତିକ୍ରିୟା (Thermidorian reaction) ସମୟରେ ଫ୍ରାନ୍‌ସ ହଲାଣ୍ଡ ଅଧିକାର କରିଥିଲା ଏବଂ ଡଚ୍‌ମାନଙ୍କ ନୌବହରକୁ କରଗତ କରିଥିଲା । ବେଲଜିୟମକୁ ପୁନର୍ବାର ଫ୍ରାନସର ଏକ ଅଂଶବୋଲି ଘୋଷଣା କରାଯାଇଥିଲା । ହଲାଣ୍ଡକୁ ବାଟାଭିଏନ୍ (Batavian) ସାଧାରଣତନ୍ତ୍ରରେ ପରିଣତ କରାଯାଇ ତାହା ସହିତ ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା କରାଯାଇଥିଲା । ୧୭୯୫ ମସିହାର ପୋଲାଣ୍ଡର ତୃତୀୟ ବିଭାଜନ (Third partition) ପ୍ରୁସୀୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥିବାରୁ ସେମାନେ ପୂର୍ଣ୍ଣପ୍ରାଣରେ ଫ୍ରାନସ ସହିତ କ୍ରମାଗତ ଯୁଦ୍ଧ ଚଳାଇ ନଥିଲେ । ପ୍ରୁସିଆର ଏଭଳି କାର୍ଯ୍ୟକଳାପ ଯୋଗୁ ଇଂଲଣ୍ଡ କ୍ଷୋଭ ପ୍ରକାଶ କରିଥିଲା । ପରେ ପ୍ରୁସିଆ ତାହାର ମିତ୍ରମାନଙ୍କୁ ପରିତ୍ୟାଗ କରି ଫ୍ରାନ୍‌ସ ସହିତ ସନ୍ଧି କରିବାରୁ ମିତ୍ରରାଷ୍ଟ୍ରମାନଙ୍କର ପ୍ରଥମ ମେଣ୍ଟ ଟଳମଳ ହୋଇପଡ଼ିଲା । ସ୍ପେନ ମଧ୍ୟ ପ୍ରୁସିଆକୁ ଅନୁସରଣ କରି ମିତ୍ର ରାଷ୍ଟ୍ରମାନଙ୍କର ପକ୍ଷ ତ୍ୟାଗ କରିଥିଲା । ଫ୍ରାନସକୁ ଖଣ୍ଡ ଖଣ୍ଡ କରିବା ପରିବର୍ତ୍ତେ ଅଷ୍ଟ୍ରିଆ ତାର ନେଦରଲାଣ୍ଡ (ବେଲଜିୟମ) ଏବଂ ପ୍ରୁସିଆ ତାର ରାଇନ ଅଞ୍ଚଳ ହରାଇଥିଲେ । ଉଭୟ ପ୍ରୁସିଆ ଓ ସ୍ପେନ ୧୭୯୫ ମସିହାରେ ଫ୍ରାନ୍‌ସ ସହିତ ବାଜେଲ ସନ୍ଧି (Treaty of Basel) କରିଥିଲେ ଏବଂ ପ୍ରୁସିଆ ଏ ସନ୍ଧି ଅନୁଯାୟୀ ପ୍ରାକୃତିକ ସୀମା ମାନି ଗ୍ରହଣ କରିନେଇଥିଲା । କେବଳ ଅଷ୍ଟ୍ରିଆ ଏବଂ ଇଂଲଣ୍ଡ ଯୁଦ୍ଧରୁ ଓହରି ଯାଇନଥିଲେ । ଫ୍ରାନସର ଏପରି ଚମତ୍କାର ବିଜୟ ପାଇଁ କାରନଟ୍‌ଙ୍କର ଅବଦାନ ଅତୁଳନୀୟ । ତେଣୁ ତାଙ୍କୁ ଯଥାର୍ଥରେ 'ବିଜୟ ସଂଗଠକ' (Organiser of Victory) ପଦବୀ ଦିଆଯାଇଥିଲା ।

ରାଜତନ୍ତ୍ର ଯୁଗଠାରୁ ନିଜକୁ ବିଚ୍ଛିନ୍ନ କରିବାପାଇଁ ଜାକୋବିନ ଦଳର ଉଗ୍ରପନ୍ଥୀ ସମ୍ପ୍ରଦାୟର ସଭ୍ୟ ହେବର୍ଟବାଦୀମାନେ (Hebertist) ପୁରୁଣା କ୍ୟାଲେଣ୍ଡର (calendar) ବଦଳରେ ନୂଆ କ୍ୟାଲେଣ୍ଡର ପ୍ରଚଳନ କରିଥିଲେ ଏବଂ ପ୍ରାକୃତିକ ଋତୁ ପରିବର୍ତ୍ତନ ଅନୁଯାୟୀ ବର୍ଷଟାକୁ ଭାଗ ଭାଗ କରିଥିଲେ; ଯଥା—ଜୁଲାଇ ହେଲା ଥରମିଡ଼ର (Thermider) ବା ଗ୍ରୀଷ୍ମକାଳ ଏବଂ ଅପ୍ରେଲ ହେଲା ଜରମିନାଲ୍ (Germinal) ମୁକୁଳିତ ସମୟ । ନୂତନ ସାଲ ଯିଶୁଖ୍ରୀଷ୍ଟଙ୍କ ଜନ୍ମଠାରୁ ଆରମ୍ଭ ନ ହୋଇ ନୂତନ ସାଧାରଣ ଜନ୍ମଠାରୁ ଆରମ୍ଭ ହେଲା ।

ଫରାସୀ ସୈନ୍ୟବାହିନୀ ବହିର୍ଶତ୍ରୁମାନଙ୍କ ବିରୁଦ୍ଧରେ ବିଜୟ ଲାଭ କରିବା ଫଳରେ 'ଆତଙ୍କରାଜ'ର ପତନ ଘଟିଥିଲା । ଉଭୟ ବାହାର ଆଉ ଓ ଭିତରଆଡ଼ୁ ଫ୍ରାନସ ଉପରକୁ ବିପଦ ଆସିବା କେବଳ 'ଆତଙ୍କରାଜ' (The Reign of Terror) ସୃଷ୍ଟି କରାଯାଇଥିଲା । ଉଭୟଆଡ଼ୁ ବିପଦ ଅପସରି ଯିବାରୁ, ନିଷ୍ଠୁର ଦମନ ନୀତି ଚଳାଇବା ପ୍ରଶ୍ନ ଉପରେ ଜାକୋବିନ୍‌ମାନଙ୍କ ମଧ୍ୟରେ ମତଭେଦ ଦେଖାଯାଇଥିଲା ଏବଂ ଫଳରେ ସେମାନେ ଭାଗ ଭାଗ ହୋଇ ଯାଇଥିଲେ । କେତେକ ହେବର୍ଟଙ୍କ ମତ ସମର୍ଥନ କଲେ । ତେଣୁ ସେମାନଙ୍କୁ ହେବର୍ଟିଷ୍ଟ ବା ହେବର୍ଟବାଦୀ କୁହାଗଲା । କେତେକ ଡାନ୍‌ଟନଙ୍କ ମତ ସମର୍ଥନ କଲେ, ତେଣୁ ସେମାନଙ୍କୁ ଡାନଟନିଷ୍ଟ ବା ଡାନ୍‌ଟନ୍‌ବାଦୀ କୁହାଗଲା ଏବଂ ଆଉ କେତେକ ରୋବସ-ପୀୟରଙ୍କର ଅନୁଗାମୀ ହେଲେ । ହେବର୍ଟବାଦୀମାନେ ପ୍ୟାରିସ୍ କମ୍ୟୁନକୁ ଅକ୍ତିଆର କରି ସେମାନଙ୍କ ପ୍ରଭାବ ବିସ୍ତାର କରିଥିଲେ । ପ୍ୟାରିସ କମ୍ୟୁନ ଗିରୋନ୍‌ଡିନ୍‌ମାନଙ୍କ ବିରୁଦ୍ଧରେ ୧୭୯୩ ମସିହା ଜୁନ ୨ ତାରିଖ ଦିନ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲାଦିନରୁ ଏହା ପ୍ୟାରିସ୍‌ରେ ଏକ ଅତି ଦୃଢ଼ଶକ୍ତି ଭାବରେ ପ୍ରତିଷ୍ଠିତ ହୋଇଥିଲା । ଏହାର ଶକ୍ତି ପ୍ୟାରିସର ଜନତା ଓ ଗୁଣ୍ଡାମାନଙ୍କ ଉପରେ ନିର୍ଭର କରୁଥିଲା । ଚାଉମେତେ (Chaumette) ଏବଂ ହେବର୍ଟ (Hebert) କମ୍ୟୁନର ନେତା ଥିଲେ । କମ୍ୟୁନ୍ ସାଧାରଣତଃ ରାଜଧାନୀର ବ୍ୟାପାରଗୁଡ଼ିକ ପରିଚାଳନା କରିବା କଥା; କିନ୍ତୁ ପ୍ରକୃତରେ ଏହା (କମ୍ୟୁନ୍) ଫ୍ରାନସର ସାଧାରଣ ବ୍ୟାପାରଗୁଡ଼ିକ ପରିଚାଳନା କରିବାରେ ନେତୃତ୍ୱ ଦେଉଥିଲା । ହେବର୍ଟବାଦୀମାନେ ପ୍ୟାରିସ କମ୍ୟୁନର ସମର୍ଥନରେ ଚରମ ସାମାଜିକ ପରିବର୍ତ୍ତନ ଦାବୀ କରିଥିଲେ ଏବଂ ରୋମାନ କ୍ୟାଥଲିକ୍ ଧର୍ମ ବିରୁଦ୍ଧରେ ବିଶେଷ ଶତ୍ରୁତା ପ୍ରଦର୍ଶନ କରିଥିଲେ ଓ ତାକୁ ଅଭିଜାତ ସମ୍ପ୍ରଦାୟର ଧର୍ମ ବୋଲି ନିନ୍ଦା କରିଥିଲେ । ସେମାନେ ଉଭୟ ସ୍ୱର୍ଗର ରାଜା (King of the Heaven) ଓ ମର୍ତ୍ତ୍ୟର ରାଜା (King of the Earth)ଙ୍କୁ ଗାଦିଚ୍ୟୁତ କରିବାକୁ ଚାହୁଁଥିଲେ । ତେଣୁ ଗିର୍ଜା ଗୁଡ଼ିକ ବନ୍ଦ କରିଦିଆଗଲା ଏବଂ ସେମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ କରାଗଲା । କମ୍ୟୁନର ପ୍ରରୋଚନାରେ ଖ୍ରୀଷ୍ଟଧର୍ମକୁ ଉଠାଇ ଦିଆଗଲା ଏବଂ ତା ପରିବର୍ତ୍ତେ ବିବେକ (Reason)ର ଆରାଧନା କରାଯାଇଥିଲା । ରୋବସପୀୟର ଭାବିନେଲେଯେ କମ୍ୟୁନ୍ ସାର୍ବଜନୀନ ନିରାପତ୍ତା

ସମିତର ପ୍ରତିଦ୍ୱନ୍ଦୀ ହେବାକୁ ଯାଉଛି । ଏହାଛଡ଼ା ତାଙ୍କ ନିଜର ଗୋଟିଏ ଧର୍ମଥିଲା, ତେଣୁ ସେ ବିବେକ (Reason)ର ଆରାଧନାକୁ ଘୃଣା କରୁଥିଲେ । ତାଙ୍କ ମତରେ ନାସ୍ତିକତା ଅଭିଜାତ ସମ୍ପ୍ରଦାୟ ସହିତ ସଲଗ୍ନ ଏବଂ ଉତ୍ପୀଡ଼ିତ ନିରୀହ ମାନଙ୍କ ଉପରେ ଯେଉଁ ପରମାତ୍ମା ଭଗବାନ (Supreme Being)ଙ୍କର ସତର୍କ ଦୃଷ୍ଟି ଥାଏ, ସେହି ପରମାତ୍ମା ଭଗବାନଙ୍କର ଚିନ୍ତା ଅତି ଜନପ୍ରିୟ । ତାଙ୍କର ମତବାଦ ହେଲା—'ଯଦି ଭଗବାନଙ୍କର ଅସ୍ତିତ୍ୱ ନାହିଁ, ତାହାହେଲେ ଆମ୍ଭେମାନେ ତାଙ୍କୁ ଉଦ୍ଭାବନ କରିବା ଉଚିତ ("If God did not exist, we should have to invent him was his theory) । ସେ ତେଣୁ ହେବର୍ଟବାଦୀମାନଙ୍କର ଅସହନଶୀଳତା ପାଇଁ ସେମାନଙ୍କୁ ଦୋଷୀ କରିଥିଲେ; କାରଣ ସେମାନେ ଧର୍ମଯାଜକମାନଙ୍କୁ ବଡ଼ ହଇରାଣ କରୁଥିଲେ । ରୋବସ୍‌ପୀୟର କମ୍ୟୁନର କ୍ଷମତାକୁ ହ୍ରାସକରିବା ପାଇଁ ହେବର୍ଟବାଦୀମାନଙ୍କୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିବା ପାଇଁ ଦୃଢ଼ସଙ୍କଳ୍ପ କରିଥିଲେ ।

ଇତ୍ୟବସରରେ ଡାନ୍‌ଟନ ଏବଂ ତାଙ୍କର ଅନୁଗାମୀମାନେ କମ୍ୟୁନର କାର୍ଯ୍ୟ, ସୀମା ଲଙ୍ଘନକରିବାହେତୁ ଅତିଶୟ କ୍ଷୁବ୍ଧ ହୋଇଥିଲେ । ଫ୍ରାନସ ସମସ୍ତ ବିପଦରୁ ମୁକ୍ତ ପାଇଥିବାରୁ ଡାନ୍‌ଟନ୍ ଆତଙ୍କ ବ୍ୟବସ୍ଥା ପ୍ରତ୍ୟାହାର କରିନେବାକୁ ଚାହିଁଥିଲେ । ରୋବସ୍‌ପୀୟର ହେବର୍ଟବାଦୀ ଏବଂ ଡାନ୍‌ଟନବାଦୀମାନଙ୍କ ମଧ୍ୟରେ ମତଭେଦର ସୁବିଧା ନେଇ ଗୋଟିକ ପରେ ଗୋଟିଏ ଉପରେ ଆକ୍ରମଣ କରିଥିଲେ । ହେବର୍ଟବାଦୀମାନଙ୍କ ଉଗ୍ର ବୈପ୍ଳବିକ ( ultra revolutionary ) ପଦକ୍ଷେପ ନିଷ୍ଠାପର ଧର୍ମବିଶ୍ୱାସୀ-ମାନଙ୍କର ସହାନୁଭୂତି ହରାଇଥିଲେ । ତେଣୁ ରୋବସ୍‌ପୀୟର ସେମାନଙ୍କୁ ପ୍ରକାଶ୍ୟଭାବରେ ନିନ୍ଦା କରିଥିଲେ ଏବଂ ସାର୍ବଜନୀନ ନିରାପତ୍ତା ସମିତି ( Committee of Public Safety ) ନାସ୍ତିକବାଦୀମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ହେବର୍ଟ ଓ ତାଙ୍କର ୧୮ ଜଣ ସହଚରଙ୍କୁ ଗିରଫ କରାଯାଇଥିଲା ଓ କନ୍‌ଭେନ୍‌ସନ୍‌ର ଧ୍ୱଂସ ସାଧନ କରିବା ଓ ରାଜତନ୍ତ୍ରର ପୁନଃ ପ୍ରତିଷ୍ଠାପାଇଁ ଚେଷ୍ଟା କରୁଥିବା ଅଭିଯୋଗରେ ସେମାନଙ୍କୁ ବୈପ୍ଳବିକ ବିଚାରାଳୟ ୧୭୯୪ ମସିହା ମାର୍ଚ୍ଚ ୨୪ ତାରିଖ ଦିନ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରିଥିଲା । ଯଦି ହେବର୍ଟ ବାଦୀମାନେ ଅତି ଉଗ୍ରପନ୍ଥା ଅନୁସରଣ କରିବାରୁ ସେମାନଙ୍କର ପତନ ଘଟିଲା, ତାହାହେଲେ ଡାନ୍‌ଟନ୍‌ବାଦୀମାନେ ନରମପନ୍ଥା ଅନୁସରଣ କରିଥିବାରୁ ସେମାନଙ୍କର ମଧ୍ୟ ପତନ ହୋଇଥିଲା । ହେବର୍ଟବାଦୀମାନଙ୍କର ପତନ ପରେ ଡାନ୍‌ଟନ୍-ବାଦୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା । କାରଣ ସେମାନେ ରୋବସ୍‌ପୀୟରଙ୍କ ମତବାଦର ବିରୋଧ କରିଥିଲେ । ରୋବସ୍‌ପୀୟର ଏବଂ ତାଙ୍କର ସହଚରମାନେ ଚାହୁଁଥିଲେ ଯେ ଯେପର୍ଯ୍ୟନ୍ତ ପବିତ୍ର ସାଧାରଣତନ୍ତ୍ର ( Republic of Virtue ) ପ୍ରତିଷ୍ଠା କରାନଯାଉଛି, ସେ ପର୍ଯ୍ୟନ୍ତ ଆତଙ୍କରାଜ ଅବ୍ୟାହତ ରହିବ । ଅନ୍ୟପକ୍ଷରେ ଡାନ୍‌ଟନ୍ ଓ ତାଙ୍କର ସହଚରମାନେ ଯେ ପର୍ଯ୍ୟନ୍ତ ଆତଙ୍କରାଜର ଆବଶ୍ୟକତା ରହିଥିଲା,

ସେ ପର୍ଯ୍ୟନ୍ତ ତାହାର ସମର୍ଥକ ଥିଲେ । ଫ୍ରାନ୍ସରୁ ବିପଦ ଦୂରହେବା ପରେ ସେମାନେ ଆତଙ୍କ ବ୍ୟବସ୍ଥାର କଠୋରତା ହ୍ରାସ କରିବା ପାଇଁ ଦାବି କରିଥିଲେ । ଡାନ୍‌ଟନ୍ ଘୋଷଣା କରିଥିଲେ ଯେ "ଆତଙ୍କକୁ କୋହଳ କରିବାକୁ ପଡ଼ିବ; କାରଣ ଦେଶରେ ଶାନ୍ତି ପ୍ରତିଷ୍ଠା କରାଯାଇପାରିଛି, ଆକ୍ରମଣକାରୀଙ୍କୁ ହଟାଇ ଦିଆଯାଇଛି ଏବଂ ସମ୍ମାନସୂଚକ ସ୍ୱାକ୍ଷର କରିବାର ସମ୍ଭାବନା ରହିଛି । ଆତଙ୍କ ବ୍ୟବସ୍ଥା ମଧ୍ୟ ସ୍ପଷ୍ଟ ଭାବରେ ତାର ଆଶାନୁରୂପକ କାର୍ଯ୍ୟକଳାପ ଦେଖାଇ ଦେଇଛି; ତେଣୁ ସେ ବ୍ୟବସ୍ଥାର ଅବସାନ ଘଟାଇବାର ବର୍ତ୍ତମାନ ସମୟ ଆସିଛି ।" ଏଥିରୁ ବୁଝାଯାଉଛି ଯେ ରୋବସ୍‌ପିୟରଙ୍କ ସମର୍ଥକ ଓ ଡାନ୍‌ଟନ୍‌ଙ୍କ ସମର୍ଥକମାନଙ୍କ ମଧ୍ୟରେ ବିବାଦୀୟ ବିଷୟ ହେଲା—ଆତଙ୍କରାଜ ବିଚ୍ଛିନ୍ନ ଭାବରେ ଚାଲିବ ନା ତାର ଅବସାନ ଘଟିବ ? ତାଛଡ଼ା ଡାନ୍‌ଟନ ଓ ରୋବସ୍‌ପିୟରଙ୍କ ମଧ୍ୟରେ ନେତୃତ୍ୱ ପାଇଁ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ଡାନ୍‌ଟନ୍‌ଙ୍କୁ ସାର୍ବଜନୀନ ନିରାପତ୍ତା ସମିତି (The Committee of Public Safety)ରୁ ବାହାର କରିଦିଆଯାଇଥିବାରୁ ସେ ତାଙ୍କର ନେତୃତ୍ୱ ଫେରିପାଇବାକୁ ଆଗ୍ରହୀ ହେବା ସ୍ୱାଭାବିକ । ରୋବସ୍‌ପିୟର କିନ୍ତୁ ସମିତିରେ ତାଙ୍କର ଆଧିପତ୍ୟ ବଜାୟ ରଖିବାକୁ ଦୃଢ଼ ସଂକଳ୍ପ କରିଥିଲେ । ପରସ୍ପର ବିରୋଧୀଭାବ ଯୋଗୁ ଏପରି ସନ୍ଧିସନ୍ଧବେଳେ ସେ ଦୁଇଜଣଙ୍କ ମଧ୍ୟରେ କୌଣସି ସହଯୋଗ କାମନା କରିବା ଆଶାକରାଯାଉନଥିଲା । ଡାନ୍‌ଟନ୍ ଜଣେ ବାସ୍ତବବାଦୀ ଥିଲେ ମଧ୍ୟ ଲମ୍ପଟ ଓ ଆରାମପ୍ରିୟ ଥିଲେ । ସେ ରୋବସ୍‌ପିୟରଙ୍କ ସ୍ୱଭାବ ଓ ନୀତିର ବିରୁଦ୍ଧାଚରଣ କରିଥିଲେ । ରୋବସ୍‌ପିୟର ବ୍ୟକ୍ତିଗତ ଜୀବନ ନେଇ ଅତି ସରଳ ଓ ସଚ୍ଚୋଟ ଥିଲେ । ତେଣୁ ତାଙ୍କୁ ନ୍ୟାୟନିଷ୍ଠ (incorruptible) ବୋଲି କୁହାଯାଉଥିଲା । ରୋବସ୍‌ପିୟରଙ୍କର ନିର୍ଦ୍ଦିଷ୍ଟ ମତଥିଲା ଏବଂ ସେ ଦାମ୍ଭିକତା ନିକଟରେ ମୁଣ୍ଡ ନୁଆଁଇ ନଥିଲେ କି ପରିସ୍ଥିତି ନିକଟରେ ଆତ୍ମସମର୍ପଣ କରୁ ନ ଥିଲେ । ତାଙ୍କ ଆନ୍ତରିକତା ଉପରେ ଜନତାର ଆସ୍ଥା ଥିବାରୁ ସେ ତାଙ୍କ ନିକଟରେ ଋଣୀ । ରୋବସ୍‌ପିୟରଙ୍କର କୌଣସି ଏକ ମାନବିକ ଗୁଣ ନଥିଲା ଯାହାକି ନିକଟ ପରିସରରେ ଥିବା ଲୋକଙ୍କଠାରେ ତାଙ୍କୁ ପ୍ରିୟ କରିପାରିବ । ସେ ଉଦାସୀନ ଥିଲେ ଓ ଦୂରେଇ ହୋଇ ରହିବାକୁ ଭଲ ପାଉଥିଲେ ଏବଂ ସବୁବେଳେ ଗମ୍ଭୀର ରହୁଥିଲେ ଓ ତାଙ୍କ ନିକଟରେ ରସିକତାର କୌଣସି ଆଭାସ ନଥିଲା । ତାଙ୍କୁ ଜଣେ ବିଚକ୍ଷଣ ରାଜନୀତିଜ୍ଞ କହିବା ଅପେକ୍ଷା ଦୈବବାଣୀ ଦାତା (oracle) କହିବା ଯୁକ୍ତିଯୁକ୍ତ ହେବ । ଅନ୍ୟପକ୍ଷରେ ଡାନ୍‌ଟନ୍‌ଙ୍କର ସ୍ୱଭାବ ଅତି ସରଳ ଥିବାରୁ ତାଙ୍କର ହୃଦୟ ନିରବଚ୍ଛିନ୍ନ-ଭାବରେ ଚାଲିଥିବା ହତ୍ୟାକାଣ୍ଡ ବିରୁଦ୍ଧରେ ବିଦ୍ରୋହ କରି ଉଠିଥିଲା । ତା'ଛଡ଼ା ସେ ବିପ୍ଳବ ସମୟରେ ଯେଉଁ ଧନ ଜମାଇ ରଖିଥିଲେ ତାକୁ ଉପଭୋଗ କରିବାପାଇଁ ଫ୍ରାନ୍ସରେ ସ୍ୱାଭାବିକ ପରିସ୍ଥିତି ଫେରିଆସିବା ଚାହୁଁଥିଲେ । କିନ୍ତୁ ରୋବସ୍‌ପିୟରଙ୍କ ଦଳର ପ୍ରରୋଚନାରେ କନଭେନସନ ଭେନ୍‌ଟୋଜ୍ (ventose) ଆଇନ ପ୍ରଣୟନ କରିଥିଲା ଏବଂ ସେହି

ଆଇନ ଅନୁସାରେ ସନ୍ଦେହ କରାଯାଉଥିବା ଲୋକମାନଙ୍କ ସମସ୍ତ ସମ୍ପତ୍ତିକୁ ଦରିଦ୍ରମାନଙ୍କ ମଧ୍ୟରେ ବାଣ୍ଟିଦେବାପାଇଁ ଅଲଗାକରି ରଖାଯାଇଥିଲା । ଅଧିକନ୍ତୁ ଏହି ଆଇନ ମଧ୍ୟବିତ୍ତମାନଙ୍କୁ ଖାତିରନ୍ତ କରିବାପାଇଁ ଯଥେଷ୍ଟ ହୋଇଥିଲା । ଏହି ସୁଯୋଗ ନେଇ ଡାନ୍‌ଟନ୍ ଭୟଭୀତ ହୋଇ କାଳଯାପନ କରୁଥିବା ମଧ୍ୟବିତ୍ତମାନଙ୍କୁ ଅତି ସହଜରେ ନିଜପକ୍ଷକୁ ଟାଣି ଆଣି ନିଜ ସ୍ଥିତିକୁ ଅଧିକ ସୁଦୃଢ଼ କରିପାରିଥିଲେ । ଡାନ୍‌ଟନ୍‌ଙ୍କ ନେତୃତ୍ୱରେ ସୂତ୍ରପାତ ହୋଇଥିବା ମଧ୍ୟବିତ୍ତମାନଙ୍କ ଆନ୍ଦୋଳନକୁ ଯଦି ଦବାଇ ଦିଆ ନ ଯାଏ, ତାହାହେଲେ ରୋବସ୍‌ପୀୟରଙ୍କ ସ୍ୱପ୍ନଗୁଡ଼ିକ ବୃଥା ହୋଇଯିବ ।

ପ୍ରଥମେ ରୋବସ୍‌ପୀୟରଙ୍କ ଦଳର ପ୍ରବର୍ତ୍ତନାରେ କନ୍‌ଭେନ୍‌ସନ୍ ଡାନ୍‌ଟନ୍‌ଙ୍କ ସରକାରୀ ତହବିଲ ତୋସରଫର ପ୍ରମାଣପାଇ ଖୋଲା ଖୋଲି ତାଙ୍କର ସହଚରମାନଙ୍କୁ ସମାଲୋଚନା କରିଥିଲା ଓ ଡାନ୍‌ଟନ୍‌ଙ୍କ ବିରୁଦ୍ଧରେ ସରକାର ତହବିଲ ଆତ୍ମସାତ୍‌ର ସେପରି ପ୍ରମାଣ ମିଳି ନ ଥିଲେ ମଧ୍ୟ ତାଙ୍କ ଉପରେ ଜାଣିଶୁଣିକରି ଦୋଷାରୋପ କରାଯାଇଥିଲା । ଡାନ୍‌ଟନ୍ ତାଙ୍କ ଉପରେ ବିପଦ ପଡ଼ିବବୋଲି ଜାଣିସୁଦ୍ଧା ସେ ସେଥିରେ ବିଚଳିତ ହୋଇ ନଥିଲେ ଏବଂ ନିଜର ଜୀବନ ରକ୍ଷା କରିବାପାଇଁ ପଳାଇ ଯାଇନଥିଲେ । ଶେଷରେ ୧୭୯୪ ମସିହା ଅପ୍ରେଲମାସରେ ଡାନ୍‌ଟନ୍ ଓ ତାଙ୍କର ସହଚରମାନଙ୍କୁ ଗିରଫ କରାଯାଇଥିଲା ଓ ସେ ସମସ୍ତଙ୍କୁ ଗିଲୋଟିନ ଯନ୍ତ୍ରଦ୍ୱାରା ହତ୍ୟାକରାଯିବା ପାଇଁ ଆଦେଶ ହୋଇଥିଲା । ଡାନ୍‌ଟନ୍ ମୃତ୍ୟୁ ପୂର୍ବରୁ ତାହାର ହତ୍ୟାକାରୀକୁ କହିଥିଲେ "ଲୋକମାନଙ୍କୁ ମୋର ଏହି ମୁଣ୍ଡକୁ ଦେଖାଇବ, ଏହାର ଯଥେଷ୍ଟ ଗୁରୁତ୍ୱ ରହିଛି "(Show my head to the people" Danton had said to his executioner, "it is worth it.") ।

ଜାକୋବିନ୍‌ମାନଙ୍କ ମଧ୍ୟରେ ଡାନ୍‌ଟନ୍ ଥିଲେ ସର୍ବାପେକ୍ଷା ଯୋଗ୍ୟ ନେତା । ତାଙ୍କର ବିଶେଷ ଉଦ୍ୟମ ଯୋଗୁଁ ଫ୍ରାନସ ୧୭୯୨ ମସିହାରେ ପ୍ରୁସିଆର ଆକ୍ରମଣରୁ ରକ୍ଷା ପାଇଥିଲା । ଜଣେ ବିଚକ୍ଷଣ ରାଜନୀତିଜ୍ଞ ହେବାପାଇ ତାଙ୍କର ପ୍ରକୃତିଦତ୍ତ ଶକ୍ତି ଥିଲା । ସେ ପ୍ରଥମେ ଜାକୋବିନ ଓ ଗିରନ୍ଡିନମାନଙ୍କ ମଧ୍ୟରେ ଦେଖାଦେଇଥିବା ବିବାଦକୁ ମେଣ୍ଟାଇ ଦେଇଥିଲେ ଏବଂ ସମସ୍ତ ସାଧାରଣତନ୍ତ୍ରବାଦୀ ଏକତ୍ର ହୋଇ ଯେପରି ଫ୍ରାନସର କଲ୍ୟାଣପାଇଁ କାର୍ଯ୍ୟକରିବେ, ସେଥିପାଇଁ ଉଦ୍ୟମ କରିଥିଲେ । ଶେଷରେ ଶତ୍ରୁ ଆକ୍ରମଣରେ ଭୟ ଅପସରିଯିବାରୁ ଓ ଦେଶରେ ଏକତା ଆସିବାରୁ ସେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବାକୁ ଚାହିଁଥିଲେ କିନ୍ତୁ ତାଙ୍କର ସବୁ ଉଦ୍ୟମ ପଣ୍ଡହୋଇ ଯାଇଥିଲା । ସେ ତାଙ୍କର ସହଚରମାନଙ୍କ ସହିତ ରୋବସ୍‌ପୀୟର ଦଳର ଶିକାର ହୋଇଥିଲେ । ଡାନ୍‌ଟନ୍‌ଙ୍କ ପତନ ଫଳରେ ଫ୍ରାନସ ତାହାର ଜଣେ ବିଚକ୍ଷଣ ରାଜନୀତିଜ୍ଞଙ୍କୁ ହରାଇଲା ଯେ କି ସମ୍ଭବତଃ ଘଟଣାର ଗତିକୁ ନିୟନ୍ତ୍ରଣ କରି ପାରିଥାନ୍ତେ ।

ଡାନ୍‌ଟନ୍ ଓ ତାଙ୍କର ସହଚରମାନଙ୍କୁ ଧ୍ୱଂସ କରିଦେବା ପରେ ଯେତେଦୂର ମନେ ହୁଏ ରୋବ୍‌ସ୍‌ପୀୟର ଫ୍ରାନସରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ । ସେ ବର୍ତ୍ତମାନ

ପବିତ୍ର ଶାସନ (Reign of Virtue) ପ୍ରବର୍ତ୍ତିତ କରିବା ଅବସ୍ଥାରେ ଥିଲେ; କିନ୍ତୁ ତାଙ୍କର ପରିକଳ୍ପନାଗୁଡ଼ିକ ଅସ୍ପଷ୍ଟ । ସେ ରୁଷୋଙ୍କ ଅନୁସରଣକରି ଧନର ସୁଷମ ବଣ୍ଟନ ପାଇଁ ଆଶା ପୋଷଣ କରିଥିଲେ ଏବଂ ପୃଥକ୍କରଣ ଆଇନକୁ କାର୍ଯ୍ୟକାରୀ କରିବା ଲାଗି କେତେକ ପଦକ୍ଷେପ ନେଇଥିଲେ; କିନ୍ତୁ ଯେତେବେଳେ ସାମାଜିକ ସଂସ୍କାର ପାଇଁ ଗୋଟିଏ ବ୍ୟାପକ ନୀତି ଅବଲମ୍ବନ କରିବା ପ୍ରଶ୍ନ ଉଠିଲା, ସେତେବେଳେ ସ୍ପଷ୍ଟ ଜଣାଗଲା ଯେ ରୋବେସପୀୟରଙ୍କ ନେତୃତ୍ୱ ଶକ୍ତିହୀନ ହୋଇପଡ଼ିଛି ଓ ସେ ନେତୃତ୍ୱ ଦେବାକୁ ଅସମର୍ଥ । ତେଣୁ ଆତଙ୍କରାଜକୁ ନ୍ୟାୟ ସଙ୍ଗତ ବୋଲି କୁହାଯିବ କିପରି ? ମାତ୍ର ଆତଙ୍କ ବ୍ୟବସ୍ଥାକୁ ଅଧିକ ସୁଦୃଢ଼ କରି ରୋବେସ୍‌ପୀୟର ଆତଙ୍କରାଜ ନ୍ୟାୟ ସଙ୍ଗତବୋଲି ପ୍ରତିପାଦିତ କରିବାକୁ ଉଦ୍ୟମ ଚଳାଇଥିଲେ; ତାଙ୍କର ଜଣେ ପ୍ରଶଂସାକାରୀ ମେଥିଏନ୍‌ଙ୍କ କଥା ଅନୁସାରେ ଯେ ପର୍ଯ୍ୟନ୍ତ ଧନୀମାନେ ଦରିଦ୍ରମାନଙ୍କର ଉପକାର ପାଇଁ ସେମାନଙ୍କର ସମ୍ପତ୍ତିରୁ ବଞ୍ଚିତ ହୋଇନାହାନ୍ତି, ସେ ପର୍ଯ୍ୟନ୍ତ ଆତଙ୍କରାଜ ଅବ୍ୟାହତ ରଖିବାକୁ ରୋବେସ୍‌ପୀୟର ଚାହୁଁଥିଲେ, କାରଣ ସେହି ଉପାୟରେ ହିଁ ସେ ପ୍ରକୃତ ଅର୍ଥନୈତିକ ସମାନତାର ଆଦର୍ଶ କାର୍ଯ୍ୟକାରୀ କରିପାରିବେ । ରୋବେସପୀୟରଙ୍କ ବିଶେଷତ୍ୱ ହେଲା ଯେ ସେ ଥରେ ଏକ ନିର୍ଦ୍ଦିଷ୍ଟ ମାର୍ଗ ନ୍ୟାୟସଙ୍ଗତ ବୋଲି ବିଚାରିଲେ ସେ କୌଣସି ବାଧାବିଘ୍ନ ବିଷୟ ଆଉ ଚିନ୍ତା କରୁ ନ ଥିଲେ ।

ଏକଥା ସ୍ୱୀକାର କରିବାକୁ ହେବ ଯେ ରୋବେସ୍‌ପୀୟରଙ୍କର ନିର୍ଦ୍ଦେଶରେ ପ୍ରାଇରିଏଲ ଆଇନ (The Law of Prairial) ଗ୍ରହଣ କରାଯାଇ ଆତଙ୍କକୁ ତୀବ୍ର କରାଯାଇଥିଲା । ଏହି ଆଇନ ଅନୁସାରେ ଯେ କୌଣସି ପ୍ରକାର ସାକ୍ଷ୍ୟକୁ ବିଚାରପାଇଁ ଗ୍ରହଣ କରାଯାଉଥିଲା ଏବଂ ଜୁରି ସଭ୍ୟମାନଙ୍କର ବିବେକ ଉପରେ ନିଷ୍ପତ୍ତି ଛାଡ଼ିଦିଆଯାଉଥିଲା । ପରିତାପର ବିଷୟ ଏହି ଯେ ବିଚାରପତିମାନେ ମାତ୍ର ଚାଳିଶ ଦିନ ଭିତରେ ୧୩୭୬ ଜଣଙ୍କୁ ଗିଲୋଟିନଦ୍ୱାରା ହତ୍ୟା କରିଥିଲେ । ୧୭୯୪ ମସିହା ଜୁନ ୨୬ ତାରିଖ ଦିନ ଫ୍ରାନ୍‌ସ ଫ୍ଲ୍ୟୁରସ (Fleurus) ଠାରେ ଯେଉଁ ବିପୁଳ ବିଜୟ ହାସଲ କଲା, ତାହା ନିଃସନ୍ଦେହରେ ପ୍ରମାଣ କରିଦେଲା ଯେ ଆତଙ୍କରାଜର ଆଉ ଆବଶ୍ୟକତା ନାହିଁ । ଦୁର୍ଭାଗ୍ୟକ୍ରମେ ରୋବେସ୍‌ପୀୟର କ୍ଷମତା ମୋହରେ ଅତିଶୟ ଉନ୍ମତ୍ତ ହୋଇପଡ଼ିଥିଲେ ଏବଂ କନଭେନ୍‌ସନର ସଭ୍ୟଙ୍କୁ ମଧ୍ୟ ବୈପ୍ଳବିକ ବିଚାରାଳୟରେ ବିଚାରପାଇଁ ପଠାଇବାକୁ ପ୍ରାଇରିଏଲ ଆଇନରେ ସେ ବ୍ୟବସ୍ଥା କରିଥିଲେ । ଏହି ପରିସ୍ଥିତିରେ ଧନଜୀବନ ନିରାପଦ ବୋଲି କେହି ମଣିଲେନାହିଁ । ଫଳରେ ଆତଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ରୋବେସ୍‌ପୀୟର ତାଙ୍କ ବିରୁଦ୍ଧରେ ଆନ୍ଦୋଳନ ବିଷୟ ଜାଣି ସୁଦ୍ଧା କନଭେନ୍‌ସନର ଉପରେ ତାଙ୍କର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ରହିଛି ବୋଲି ନିଶ୍ଚିତ ହୋଇ ସାର୍ବଜନୀନ ନିରାପତ୍ତା ସମିତି (The Committee of Public Safety)ର ସଭାଗୁଡ଼ିକରୁ କେତେକ ସପ୍ତାହ ପାଇଁ ଅନୁପସ୍ଥିତ ରହିଥିଲେ ଏବଂ ଏହାଦ୍ୱାରା ସେ ଯେଉଁ ବିରାଟ ଭୁଲକଲେ ତାକୁ ଆଉ ସୁଧାରିବାର ବାଟ ନ ଥିଲା । ଯେତେବେଳେ ସେ ତାଙ୍କର

ନିଷ୍ଠୁରବାଦରୁ ଫେରି କନଭେନ୍‌ସନରେ ସାଧାରଣତନ୍ତ୍ରର ଶତ୍ରୁମାନଙ୍କ ଉପରେ ବିଶେଷ ଦୋଷାରୋପକାରି ବକ୍ତୃତା ଦେଲେ, ସେତେବେଳେ ଶତ୍ରୁମାନଙ୍କ ନାମ ଉଲ୍ଲେଖ କରିବାକୁ ଅଗ୍ରାହ୍ୟ କରି ସେ ନିଜର ସର୍ବନାଶ ଘଟାଇଥିଲେ । ସକ୍ରିୟ ଏବଂ ଗୁପ୍ତ ଷଡ଼ଯନ୍ତ୍ରଦ୍ୱାରା ପ୍ରଚ୍ଛନ୍ନ ରହିଥିବା ତାଙ୍କର ସବୁ ବିରୋଧୀମାନଙ୍କୁ ସଂଗଠିତ କରାଯାଇଥିଲା । ପ୍ୟାରିସ୍ କମ୍ୟୁନ ତାଙ୍କର ପଳାୟନ ପାଇଁ ଯେଉଁ ଉଦ୍ୟମ କରିଥିଲେ, ତାହା ବ୍ୟର୍ଥ ହୋଇଗଲା । ୧୭୯୪ ମସିହା ଜୁଲାଇ ୨୭ ତାରିଖ ଦିନ (ବୈପ୍ଳବିକ କ୍ୟାଲେଣ୍ଡର ଅନୁଯାୟୀ ଥରମିଡୋର ୯ ତାରିଖ ଦିନ) ଜାତୀୟ କନଭେନସନରେ ପାଟିତୁଣ୍ଡକରି ତାଙ୍କୁ ଦବାଇ ଦିଆ ଯାଇଥିଲା । କନ୍‌ଭେନ୍‌ସନ୍ ତାଙ୍କୁ ଓ ତାଙ୍କର ସହଚରମାନଙ୍କୁ ଦସ୍ୟୁବୋଲି ଘୋଷଣା କରିଥିଲା ସେମାନଙ୍କୁ ଗିରଫ କରିବାପାଇଁ ସୈନ୍ୟ ପଠାଇଥିଲେ । ରୋବସ୍‌ପିୟର ଓ ତାଙ୍କର ସହଚରମାନଙ୍କୁ ୧୭୯୪ ମସିହା ଜୁଲାଇ ୨୮ ତାରିଖଦିନ ଅର୍ଥାତ୍ ଥରମିଡୋର ୧୦ ତାରିଖ ଦିନ ଗିଲୋଟିନଦ୍ୱାରା ହତ୍ୟାକରାଯାଇଥିଲା” । ଯଥାର୍ଥରେ କୁହାଯାଇଛି ଯେ “ମୁଖ୍ୟ ସମର୍ଥକଙ୍କ ରକ୍ତରେ ହିଁ ଆତଙ୍କର ଅବସାନ ଘଟିଥିଲା । (It is rightly said, that "the terror had come to an end in the blood of its principal champion")

## ଆତଙ୍କ ବିରୁଦ୍ଧରେ ପ୍ରତିକ୍ରିୟା (The Reaction against Terror)

ବିପ୍ଳବର ସଂକଟମୟ ସମୟ ତଥାପି ଅତିବାହିତ ହୋଇନଥିଲା । ଏକଥା ସତ ଯେ ଆତଙ୍କ ଯୋଗୁ ହିଁ ଏହାର ସବୁ ବଡ଼ ବଡ଼ ବିପଦଗୁଡ଼ିକ ଅପସରି ଯାଇଥିଲା; କିନ୍ତୁ ଆତଙ୍କ ବିରୁଦ୍ଧରେ ଯେଉଁ ପ୍ରତିକ୍ରିୟା ହୋଇଥିଲା, ତାହା ଫ୍ରାନସ୍‌ରେ ସ୍ୱାଭାବିକ ପରିସ୍ଥିତି ଫେରାଇ ଆଣିବାରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଏହାକୁ ଥରମିଡୋରୀୟ (Thermidorean) ପ୍ରତିକ୍ରିୟା ବୋଲି କୁହାଯାଏ । ଜାତୀୟ କନଭେନସନ ଯେଉଁ ନିଷ୍ଠୁର ସାର୍ବଜନୀନ ନିରାପତ୍ତା ସମିତି ( The Committee of Public Safety ) ସୃଷ୍ଟି କରିଥିଲା, ତାହା କବଳରୁ ମୁକ୍ତିପାଇ ଏତେ ଦୂର ଆନନ୍ଦିତ ହୋଇଯାଇଥିଲା ଯେ ସେ ଏ ସମିତି ସହିତ ତାହାର ସବୁ ସାହାଯ୍ୟକାରୀ ଅଙ୍ଗଗୁଡ଼ିକୁ ଉଚ୍ଛେଦ କରିଦେଇଥିଲା । ଜନତାର ଦୁର୍ଗ କୁହାଯାଉଥିବା ପ୍ୟାରିସ୍ କମ୍ୟୁନକୁ ଭାଙ୍ଗି ଦିଆଯାଇଥିଲା । ଜାକୋବିନମାନଙ୍କର କ୍ଳବ ବନ୍ଦକରି ଦିଆଯାଇଥିଲା । ଏଥିରେ କ୍ଷୁବ୍ଧ ହୋଇ ଜାକୋବିନମାନେ କିଛି ସମୟ ପାଇଁ ସଂଗ୍ରାମ ଚଳାଇଥିଲେ; କିନ୍ତୁ ସେମାନଙ୍କ ବିରୁଦ୍ଧରେ ଏତେ ଅଧିକ ସଂଖ୍ୟକ ଲୋକ ଥିଲେ ଯେ ସେମାନେ ସେ ସଂଗ୍ରାମରୁ ବାଧ୍ୟ ହୋଇ ଓହରି ଯାଇଥିଲେ । ପୂର୍ବବର୍ତ୍ତୀ ସନ୍ତ୍ରାସବାଦୀମାନେ ଅନ୍ୟମାନଙ୍କ ବିରୁଦ୍ଧରେ ଯେଉଁ ଗିଲୋଟିନ ନିର୍ମମ ଭାବରେ ବ୍ୟବହାର କରିଥିଲେ, ସେମାନେ ସେହି ଗିଲୋଟିନ୍‌ର

ଶିକାର ହେଲେ । ଏକଥା ସ୍ପଷ୍ଟ ଯେ କନ୍‌ଭେନ୍‌ସନ୍ ବର୍ତ୍ତମାନ ସଂଖ୍ୟାଗରିଷ୍ଠ ନରମପନ୍ଥୀ-ମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ଏବଂ ସେମାନେ ନିକଟତମ ଅତୀତ ସହିତ ସମ୍ପର୍କ ଛିନ୍ନ କରିବାକୁ ପ୍ରତିଜ୍ଞାବଦ୍ଧଥିଲେ । ଆତଙ୍କ ବିରୁଦ୍ଧରେ ଯେଉଁ ପ୍ରତିକ୍ରିୟା ଆରମ୍ଭ ହୋଇଥିଲା, ତାହା ଶେଷରେ ରାଜତନ୍ତ୍ର ପୁନଃପ୍ରତିଷ୍ଠା କରିପାରେ ବୋଲି ଆଶଙ୍କା ଜାତ ହୋଇଥିଲା । ଫ୍ରାନ୍‌ସରେ ଅନେକ ରାଜତନ୍ତ୍ରବାଦୀ ଥିଲେ ସତ; କିନ୍ତୁ ବିଧିସଙ୍ଗତ (Legitimate) ରାଜା ସପ୍ତଦଶ ଲୁଇ ୧୭୯୫ ମସିହା ଜୁନ ମାସରେ ଟେମ୍ପଲ ନାମକ ଦୁର୍ଗ (The Temple)ରେ ପ୍ରାଣତ୍ୟାଗ କରିଥିଲେ ଏବଂ ତାଙ୍କର କକା ପ୍ରୋଭେନ୍‌ସର କାଉଣ୍ଟ ( Count of Provence ) ଯେ କି ୧୭୮୯ରୁ ଫ୍ରାନସରୁ ନିର୍ବାସିତ ହୋଇଥିଲେ, ତାଙ୍କ ପଛରେ ବିପୁଳ ଜନ ସମର୍ଥନ ନଥିଲା ବୋଲି ଜଣା ଯାଇଥିଲା । ତା'ଛଡ଼ା ସ୍ୱଦେଶତ୍ୟାଗୀମାନେ ଫ୍ରାନସ୍‌କୁ ଫେରିବାପରେ ବିପ୍ଳବର ଧ୍ୱଂସାତ୍ମକ କାର୍ଯ୍ୟକୁ ଯେ ସମର୍ଥନ କରିବେ ଏ କଥା କେହି ଭାବିପାରି ନଥିଲେ । ପୃଷ୍ଠଭୂମିରେ ଏତେ ଚହଳ ଚାଲିଲେ ମଧ୍ୟ ଏବଂ ରକ୍ଷଣଶୀଳମାନଙ୍କଦ୍ୱାରା ଚରମପନ୍ଥୀମାନଙ୍କର ଦେଶବ୍ୟାପୀ ନିର୍ମମ ହତ୍ୟାକାଣ୍ଡ 'ଶ୍ୱେତ ଆତଙ୍କ' (white terror) ଘଟିଥିବା ସତ୍ତ୍ୱେ ଏକ ଆପୋଷ ମୀମାଂସା ମାର୍ଗ ବାଛି ନିଆଯାଇଥିଲା । ମଧ୍ୟବିତ୍ତ ଲୋକେ ଯେ କି ରାଜନୀତିକୁ ଫେରି ଆସିବାକୁ ସୁଯୋଗ ପାଇଥିଲେ, ସେମାନେ ସର୍ବସାଧାରଣଙ୍କ ମତାମତକୁ ନିୟନ୍ତ୍ରଣ କରିପାରିଥିଲେ । ସେମାନଙ୍କ ଦୃଷ୍ଟି ଅନୁସାରେ ଉପସ୍ଥିତ ପରିସ୍ଥିତିରେ ଉଭୟ ରାଜତନ୍ତ୍ର ଓ ସାଧାରଣତନ୍ତ୍ର ମନ୍ଦ ହେଲେବି ସାଧାରଣତନ୍ତ୍ର ଅଧିକ ଗ୍ରହଣଯୋଗ୍ୟ ହୋଇଥିଲା । ଏହିପରି ଭାବରେ ଏମାନେ ଏହି ନୂତନ ଶାସନ-ପଦ୍ଧତିକୁ ବିଶେଷ ଭାବରେ ପ୍ରଭାବିତ କରିପାରିଥିଲେ ।

ଆତଙ୍କ ବ୍ୟବସ୍ଥା ଉଠାଇଦିଆଯିବା ସଙ୍ଗେ ସଙ୍ଗେ ଜାତୀୟ କନ୍‌ଭେନ୍‌ସନ୍ ଫରାସୀ ସାଧାରଣତନ୍ତ୍ର ପାଇଁ ଦୀର୍ଘ ଅବହେଳିତ ସମ୍ବିଧାନ ଗଠନକାର୍ଯ୍ୟ ହାତକୁ ନେଇଥିଲା । କନ୍‌ଭେନ୍‌ସନ୍ ଯେଉଁ ସମ୍ବିଧାନ ପ୍ରସ୍ତୁତକଲା ତାକୁ ସାଧାରଣତନ୍ତ୍ରର 'ତୃତୀୟ ବର୍ଷର ସମ୍ବିଧାନ' (Constitution of the Year-III) କୁହାଯାଏ । ସେହି ସମ୍ବିଧାନ ୧୭୯୫ ମସିହା ଗ୍ରୀଷ୍ମ ଋତୁରେ ଘୋଷଣା କରାଯାଇଥିଲା । ସମ୍ଭବତଃ ରାଜତନ୍ତ୍ର ସମର୍ଥକ ବୈଧାନିକ ସଭାକୁ ତଡ଼ିବାପାଇଁ ଜାତୀୟ କନ୍‌ଭେନ୍‌ସନ୍ ସତର୍କମୂଳକ ବ୍ୟବସ୍ଥାସ୍ୱରୂପ ସମ୍ବିଧାନରେ ସର୍ତ୍ତ ରଖିଲା ଯେ ଦ୍ୱିପ୍ରକୋଷ୍ଠବିଶିଷ୍ଟ ବୈଧାନିକ ସଭାର ପ୍ରତ୍ୟେକ ପରିଷଦ (Council) ର ଦ୍ୱିତୃତୀୟାଂଶ ସଭ୍ୟ କନ୍‌ଭେନ୍‌ସନ୍‌ରୁ ବଛାଯିବେ । ପ୍ୟାରିସ୍‌ରେ ଏହି ସର୍ତ୍ତର ଅତି ଦୃଢ଼ ପ୍ରତିରୋଧ କରାଯାଇଥିଲା ଏବଂ ଜାତୀୟ କନ୍‌ଭେନସନକୁ ବଳପୂର୍ବକ ନିକାଲି ଦେବାପାଇଁ ଉଦ୍ୟମ ହୋଇଥିଲା । କନ୍‌ଭେନ୍‌ସନ ବିରୁଦ୍ଧରେ ୧୭୯୫ ମସିହା ଅକ୍ଟୋବର ୫ ତାରିଖ ଦିନ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ଏବଂ ଏହାକୁ ତ୍ରୟୋଦଶ ଭେଣ୍ଡାମିନ୍ (The 13th Vende miaire)ର ଘଟଣା କୁହାଯାଏ । ବାରାସ

(Barras)ଙ୍କ ଉପରେ କନ୍‌ଭେନ୍‌ସନର ରକ୍ଷାଭାର ଅର୍ପଣ କରାଯାଇଥିଲା । ତେଣୁ ଟ୍ୟୁଲେରସ୍ ରାଜପ୍ରାସାଦରେ ଅଧିବେଶନ ଚାଲିଥିବାରୁ ତାହାର ପ୍ରବେଶପଥଗୁଡ଼ିକ କମାଣ ସାହାଯ୍ୟରେ ନିଜ ଆୟତ୍ତରେ ରଖିବା ଉଦ୍ଦେଶ୍ୟରେ ଗୋଲନ୍ଦାଜ ବାହିନୀର ସେନାପତି ନେପୋଲିୟନ ବୋନାପାର୍ଟଙ୍କୁ ସେ ବାଛିଥିଲେ । ନେପୋଲିୟନଙ୍କୁ ସେତେବେଳକୁ ମୋଟେ ୨୫ ବର୍ଷ ବୟସ ହୋଇଥିଲେ ମଧ୍ୟ ସେ କମାଣ ସାହାଯ୍ୟରେ ବିଦ୍ରୋହକୁ ଦୃଢହସ୍ତରେ ଦମନ କରିଥିଲେ । ଫଳରେ କନ୍‌ଭେନ୍‌ସନ୍ ରକ୍ଷାପାଇଥିଲା । ଜାତୀୟ କନ୍‌ଭେନ୍‌ସନ୍ ମଧ୍ୟ ତାର ସମସ୍ତ କାର୍ଯ୍ୟ ଶେଷକରି ୧୭୯୫ ମସିହା ଅକ୍‌ଟୋବର ୨୬ ତାରିଖଠାରୁ ନିଜର କାର୍ଯ୍ୟକାଳ ସମାପ୍ତ ହେଲା ବୋଲି ଘୋଷଣା କରିଥିଲା ।

## କନ୍‌ଭେନ୍‌ସନ୍‌ର କାର୍ଯ୍ୟକଳାପ(Achievements of the convention)

ମାତ୍ର ତିନବର୍ଷ ଜୀବନକାଳ ମଧ୍ୟରେ ଜାତୀୟ କନ୍‌ଭେନ୍‌ସନ୍ ତାହାର କେତେକ କୃତତ୍ୱପୂର୍ଣ୍ଣକାର୍ଯ୍ୟ ପାଇଁ ଗୌରବ ଅର୍ଜନ କରିଥିବାସତ୍ତ୍ୱେ କେତେକ ବୀଭତ୍ସକାର୍ଯ୍ୟ ଯୋଗୁଁ ତାହାର ସମ୍ମାନରେ ଆଞ୍ଚ ଆସିଥିଲା । ଏହା ରାଜାଙ୍କ ହତ୍ୟା କରିବାପାଇଁ ମଞ୍ଜୁର କରିଥିଲା, କନ୍‌ଭେନ୍‌ସନ୍‌ରୁ ଗିରନ୍‌ଡିନ୍ ନେତାମାନଙ୍କୁ ବହିଷ୍କୃତ କରିଦେଇଥିଲା ଏବଂ ଆତଙ୍କରାଜ (The Reign of terror) ସୃଷ୍ଟି କରିଥିଲା । ଫଳରେ ଶହ ଶହ ନିରୀହ ଲୋକେ ଗିଲୋଟିନ ଯନ୍ତ୍ରତଳେ ପ୍ରାଣ ହରାଇଥିଲେ ।

ଏହି ସବୁ ନିର୍ମମ କାର୍ଯ୍ୟଗୁଡ଼ିକ ଯଦି ବିଚାରକୁ ନ ନିଆଯାଏ, ତାହାହେଲେ ଆମ୍ଭେମାନେ ଦେଖିପାରିବା ଯେ କନ୍‌ଭେନ୍‌ସନ୍ ବହୁ ହିତକର କାର୍ଯ୍ୟ କରିଥିଲା । ଏ ଫ୍ରାନ୍‌ସକୁ ଏକ ସାଧାରଣତନ୍ତ୍ର ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ଏକ ନୂତନ ସାଧାରଣତନ୍ତ୍ରର ଏକ କ୍ୟାଲେଣ୍ଡର ପ୍ରବର୍ତ୍ତନ କରିଥିଲା । ଆତଙ୍କରାଜ ପ୍ରତିଷ୍ଠାକରି କନ୍‌ଭେନ୍‌ସନ୍ ଦମନ ଲୀଳା ଚଳାଇ ଥିଲା ସତ କିନ୍ତୁ ସେଇ 'ଆତଙ୍କରାଜ' ଫରାସୀମାନଙ୍କୁ ଏକତାବଦ୍ଧକରି ବାହ୍ୟ ଶତ୍ରୁର ଆକ୍ରମଣରୁ ଫ୍ରାନସକୁ ରକ୍ଷାକରିଥିଲା । ଏକ ଦିଗରେ ଏହା ଆତଙ୍କରାଜ ପ୍ରତିଷ୍ଠାକରି ବିପ୍ଳବକୁ ଚରମସୀମାରେ ପହଞ୍ଚାଇଦେଇଥିଲା, ଅନ୍ୟଦିଗରେ ବିପ୍ଳବକୁ ନିଜ ଆୟତ୍ତକୁ ଆଣି ଗୋଟିଏ ନୂତନ ସମ୍ବିଧାନ ଗଠନ କରିଥିଲା ଏବଂ ଫ୍ରାନ୍‌ସ ପାଇଁ ଡାଇରେକ୍‌ଟୋରି (Directory) ନାମକ ଗୋଟିଏ ଦୃଢ଼ ଶାସକ-ମଣ୍ଡଳୀର ବ୍ୟବସ୍ଥା କରିଥିଲା । ତା'ଛଡ଼ା ଫ୍ରାନସର ଶାନ୍ତିପୂର୍ଣ୍ଣ ଉନ୍ନୟନ ଦିଗରେ ଏହାର କାର୍ଯ୍ୟକଳାପ ଅବିସ୍ମରଣୀୟ । କନ୍‌ଭେନ୍‌ସନ୍ ବିଶୃଙ୍ଖଳ ଆଇନଗୁଡ଼ିକୁ ଶୃଙ୍ଖଳିତ କରିଥିଲା ଏବଂ ସେଗୁଡ଼ିକୁ ଆଇନବଦ୍ଧ କରିବାପାଇଁ (codify) ବହୁପରିମାଣରେ କ୍ଷେତ୍ର ପ୍ରସ୍ତୁତ କରିଥିଲା । ଏହା ବିଶ୍ୱକୁ ଯେଉଁ ଦଶମିକ ପରିମାଣ ଓ ପରିମାପ ପଦ୍ଧତି (metric system) ଦାନ କରିଥିଲା, ତାହା ଓଜନ ଓ ମାପର ଅତି ସର୍ବୋତ୍କୃଷ୍ଟ ପଦ୍ଧତି ବୋଲି

ବିବେଚିତ ହୋଇଥିଲା, ଶିକ୍ଷା ପ୍ରସାର ପାଇଁ ଏମାନେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାର ଏକ ଉନ୍ନତ ଧରଣର ପରିକଳ୍ପନା କରିଥିଲେ; କିନ୍ତୁ ତାହା ସମ୍ବଳ ଅଭାବରୁ କାର୍ଯ୍ୟରେ ପରିଣତ ହୋଇପାରିନଥିଲା । କନ୍‌ଭେନ୍‌ସନ ଶିକ୍ଷକ ତାଲିମ ବିଦ୍ୟାଳୟ (the normal school), ବିବିଧଶିଳ୍ପ ବିଦ୍ୟାଳୟ (the polytechnic school), ପ୍ୟାରିସରେ ଆଇନ ବିଦ୍ୟାଳୟ ( The law school ) ଓ ଚିକିତ୍ସା ବିଦ୍ୟାଳୟ ( The medical school) ସ୍ଥାପନ କରିବା ସଙ୍ଗେ କଳା ଓ ଶିଳ୍ପର ଗବେଷଣାଗାର (The Conservatory of Arts and Crafts), ଜାତୀୟ ଦସ୍ତରଖାନା The National Archives), ଲୁଭ୍ରେର ଯାଦୁଘର (The Museum of the Louvre ), ଜାତୀୟ ପୁସ୍ତକାଗାର (The National Library) ଏବଂ ଜାତୀୟ ପ୍ରତିଷ୍ଠାନ (The National Institute) ସ୍ଥାପନ କରିଥିଲେ । ଏମାନେ ସ୍ୱଦେଶତ୍ୟାଗୀମାନଙ୍କର କେବଳ ସମ୍ପତ୍ତି ବାଜ୍ୟାପ୍ତ କରି ନଥିଲେ, ଏମାନେ ମଧ୍ୟ ସେମାନଙ୍କର ବଡ଼ ବଡ଼ ଇଲାକାଗୁଡ଼ିକ (large estates) ଭାଙ୍ଗି ଛୋଟ ଛୋଟ କ୍ଷେତ (small holdings )ରେ ପରିଣତ କରିଥିଲେ । ଫ୍ରାନ୍ସର କୃଷକମାନଙ୍କ ସମୃଦ୍ଧି କନ୍‌ଭେନ୍‌ସନ୍ ସମୟରୁ ଆରମ୍ଭ ହୋଇଛି ବୋଲି ମନେକରାଯାଏ । ଦୁର୍ଭିକ୍ଷର ପ୍ରଚଣ୍ଡତାକୁ ପ୍ରଶମିତ କରିବା ଏବଂ ମୁନାଫାଖୋରଙ୍କୁ ପ୍ରତିରୋଧ କରିବାପାଇଁ ଶସ୍ୟର ସର୍ବାଧିକ ଦର ଧାର୍ଯ୍ୟ କରାଯାଇଥିଲା ।

## ଡାଇରେକ୍‌ଟୋରୀ ଶାସନ (୧୭୯୫—୧୭୯୯) (The Rule of the Directory : 1795—1799)

ସମ୍ବିଧାନର ସର୍ତ୍ତାବଳୀ—ତୃତୀୟ ବାର୍ଷିକ ସମ୍ବିଧାନ ( the constitution of the year III ) ଅନୁଯାୟୀ ଶାସନ କ୍ଷମତା ପାଞ୍ଚ ଜଣ ଡାଇରେକ୍‌ଟର ବା ତତ୍ତ୍ୱାବଧାରକଙ୍କ ହସ୍ତରେ ନ୍ୟସ୍ତ ହେଲା ଏବଂ ପ୍ରତିବର୍ଷ ଜଣେ ଲେଖାଏଁ ଡାଇରେକ୍‌ଟର୍ ଅବସରନେବା ଓ ତାଙ୍କ ସ୍ଥାନ ଜଣେ ନୂତନ ସଭ୍ୟଦ୍ୱାରା ପୂରଣ କରିବାର ବ୍ୟବସ୍ଥା କରାଗଲା । ଡାଇରେକ୍‌ଟରମାନେ ଉଭୟ ପ୍ରକୋଷ୍ଠର ସମ୍ମିଳିତ ଅଧିବେଶନ ବ୍ୟବସ୍ଥାଦ୍ୱାରା ନିର୍ବାଚିତ ହେବାର ସ୍ଥିର କରାଗଲା । ଡାଇରେକ୍‌ଟରମାନେ କିମ୍ବା ସେମାନଙ୍କର ମନ୍ତ୍ରୀମାନେ ବୈଧାନିକ ସଭାର କୌଣସି ପରିଷଦରେ ବସି ପାରିବେ ନାହିଁ ବୋଲି ସ୍ଥିର ହୋଇଥିଲା । ସେମାନଙ୍କୁ ଆଭ୍ୟନ୍ତରୀଣ ଶାସନ ନିୟନ୍ତ୍ରଣ କରିବାର କ୍ଷମତା ଦିଆଗଲା । ତାଛଡ଼ା ସେମାନଙ୍କ ଉପରେ ସୈନ୍ୟବାହିନୀ ଓ ନୌବାହିନୀଗୁଡ଼ିକର ପରିଚାଳନା ଦାୟିତ୍ୱ ରଖାଯାଇଥିଲା; କିନ୍ତୁ ସନ୍ଧି ଓ ଯୁଦ୍ଧ ଘୋଷଣା ବୈଧାନିକ ସଭାଦ୍ୱାରା ଅନୁମୋଦନ କରାନଗଲେ ସେସବୁ କାର୍ଯ୍ୟକାରୀ ହୋଇପାରିବ ନାହିଁ ବୋଲି ସର୍ତ୍ତ ରଖାଯାଇଥିଲା । ଡାଇରେକ୍‌ଟରମାନଙ୍କର ଆଇନ ପ୍ରଣୟନ ଉପରେ କୌଣସି କର୍ତ୍ତୃତ୍ୱ ରଖାଯାଇ ନଥିଲା ଓ ସେମାନଙ୍କର ଆଇନ ନାକଚ କରିବା କ୍ଷମତା (veto power)

ନଥିଲା । ବୈଧାନିକ ସଭାର ବିନା ସମ୍ମତିରେ ସେମାନଙ୍କୁ ନୂଆ କରି ବସାଇବାର ଅଧିକାର ଦିଆଯାଇନଥିଲା ।

ବୈଧାନିକ ସଭାକୁ ଦ୍ୱିପ୍ରକୋଷ୍ଠବିଶିଷ୍ଟ କରାଯାଇଥିଲା । ଗୋଟିଏ ପ୍ରକୋଷ୍ଠ ହେଲା କାଉନସିଲ ଅଫ୍ ଏନସିଏଣ୍ଟସ୍ ( Council of Ancients ) ବା ବୟୋଜ୍ୟେଷ୍ଠ ପରିଷଦ । ଅନ୍ୟଟି ହେଲା କାଉନସିଲ ଅଫ୍ ଫାଇଭ ହଣ୍ଡ୍ରେଡ୍ (Council of Five Hundred ) ବା ପଞ୍ଚଶତ ପ୍ରତିନିଧି ପରିଷଦ । ଫରାସୀମାନେ ଦ୍ୱିତୀୟ ପ୍ରକୋଷ୍ଠ (second chamber) ର ଉପକାରିତା ବୁଝିପାରିଲେ ଯେ ଏହା ନିମ୍ନ ପ୍ରକୋଷ୍ଠ (lower chamber)ର ସାମୟିକ ଉନ୍ମାଦନାକୁ ପ୍ରତିରୋଧ କରି ଦେଶର ହିତ ସାଧନ କରିପାରିବ । କାଉନସିଲ ଅଫ ଏନସିଏଣ୍ଟସରେ ୨୫୦ ଜଣ ପ୍ରତିନିଧି ରହିବାର ଧାର୍ଯ୍ୟ କରାଯାଇଥିଲା ଏବଂ ପ୍ରତିନିଧିମାନଙ୍କ ବୟସ ସୀମା ୪୦ ବର୍ଷରୁ ଊର୍ଦ୍ଧ୍ୱ ରଖାଯାଇଥିଲା । ଦୁଇଟି ପ୍ରକୋଷ୍ଠର ସଭ୍ୟମାନେ ନିର୍ବାଚକମାନଙ୍କ (electors) ଦ୍ୱାରା ବାଛି ହିବାର ସ୍ଥିର କରାଯାଇଥିଲା ଓ ନିର୍ବାଚକମାନେ ପ୍ରାଥମିକ ସଭ୍ୟମାନଙ୍କ ( Primary Assemblies ) ଦ୍ୱାରା ମନୋନୀତ ହେବାର ଠିକ୍ କରାଯାଇଥିଲା ଏବଂ ଏହି ପ୍ରାଥମିକ ସଭ୍ୟମାନଙ୍କରେ ପ୍ରତ୍ୟକ୍ଷ କର ଦେଉଥିବା ୨୧ ବର୍ଷରୁ ଊର୍ଦ୍ଧ୍ୱ ବ୍ୟକ୍ତିମାନେ କେବଳ ସ୍ଥାନ ପାଇବେ ବୋଲି ଉଲ୍ଲେଖ କରାଯାଇଥିଲା । ତେଣୁ ପରୋକ୍ଷ ନିର୍ବାଚନ ନୀତି ସମ୍ବିଧାନ ଗ୍ରହଣ କରିଥିଲା । ଉଭୟ ପ୍ରକୋଷ୍ଠର ସଭ୍ୟ ହେବାପାଇଁ ନିର୍ଦ୍ଦିଷ୍ଟ ପରିମାଣର ସମ୍ପତ୍ତି ଯୋଗ୍ୟତା (property qualification ) ଦାବୀ କରାଯାଇଥିଲା ଓ କାଉନସିଲ ଅଫ ଫାଇଭ୍ ହଣ୍ଡ୍ରେଡ୍‌ର ପ୍ରତିନିଧିମାନଙ୍କ ବୟସ ସୀମା ୩୦ ବର୍ଷରୁ ଊର୍ଦ୍ଧ୍ୱ ରଖାଯାଇଥିଲା । କେବଳ ନୂଆକରି ପରିବର୍ତ୍ତନ ଏବଂ ଅର୍ଥବିଲ୍ ( money bill ) ସଂଶୋଧନ କରିବାର ଅଧିକାର ତାର ରହିଲା । କାଉନସିଲ୍ ଅଫ ଏନସିଏଣ୍ଟସ ଯୁଦ୍ଧ ଘୋଷଣାସମେତ କୂଟନୀତି ସଂକ୍ରାନ୍ତ ପ୍ରଶ୍ନ ବିଷୟରେ ଅପିଲ୍ କୋର୍ଟ ( court of appeal ) ପରି କାର୍ଯ୍ୟ କରିବାର ନିଷ୍ପତ୍ତି କରାଯାଇଥିଲା । ଆଇନ ପ୍ରଣୟନ ପାଇଁ ଉଭୟ ପ୍ରକୋଷ୍ଠର ସମ୍ମତି ଦରକାର ପଡ଼ିବ ବୋଲି କୁହାଯାଇଥିଲା ।

ସ୍ଥାନୀୟ ସରକାର (The Local Government)ଙ୍କ ସହିତ ସର୍ବୋଚ୍ଚ ସରକାର (Supreme Government)ଙ୍କର ନିବିଡ଼ ସମ୍ପର୍କ ସ୍ଥାପନ କରାହିବା ପାଇଁ ବନ୍ଦୋବସ୍ତ ହୋଇଥିଲା । ପ୍ରଦେଶ (ଡିପାର୍ଟମେଣ୍ଟ) ଏବଂ ଜିଲ୍ଲା ଗୁଡ଼ିକର ଶାସନର ଭାର ପ୍ୟାରିସରେ ଥିବା ସର୍ବୋଚ୍ଚ ଶାସକମଣ୍ଡଳୀଦ୍ୱାରା ନିଯୁକ୍ତ ଉଚ୍ଚ କର୍ମଚାରୀମାନଙ୍କ ଉପରେ ନ୍ୟସ୍ତହେବାର ନିର୍ଦ୍ଦେଶ ଥିଲା । ଏହି ଉଚ୍ଚ କର୍ମଚାରୀମାନଙ୍କୁ ସମ୍ବିଧାନରେ ପ୍ରତିନିଧି (agents) ଓ ଉପ ପ୍ରତିନିଧି (sub-agents) କୁହାଯାଉଥିଲା ।

ଏହି ତୃତୀୟ ବାର୍ଷିକ ସମ୍ବିଧାନ ନିର୍ମାତାମାନେ ଯେତେବେଳେ ଭୋଟ ଅଧିକାର ପାଇଁ ସମ୍ପତ୍ତି ଯୋଗ୍ୟତା, ପରୋକ୍ଷ ନିର୍ବାଚନ ଏବଂ ଦ୍ୱିକକ୍ଷ ବିଶିଷ୍ଟ ବୈଧାନିକ ସଭାର

ବନ୍ଦୋବସ୍ତ କଲେ, ସେତେବେଳେ ସେମାନେ ଅନୁଭବ କରିଥିଲେ ଯେ ଏ ସବୁ ସେମାନଙ୍କ ଅନୁଭୂତିରୁ ଶିକ୍ଷାକରିଛନ୍ତି; କିନ୍ତୁ ପରିତାପର ବିଷୟ ଯେ ଶାସନ ପରିଚାଳକମାନଙ୍କର ନେତୃତ୍ୱ (Executive leadership) ବ୍ୟବସ୍ଥାପକମାନଙ୍କ ସମର୍ଥନ ଉପରେ ନିର୍ଭର କଲେ, ଯେଉଁ ସୁଫଳ ମିଳିବ ତାହା ସେମାନଙ୍କର ବୁଝିବା ଅନ୍ତର ବାହ୍ୟା ଥିଲା; କାରଣ କ୍ଷମତାଗୁଡ଼ିକର ପୃଥକୀକରଣ (Separation of powers) ଫରାସୀ ସିଦ୍ଧାନ୍ତବାଦୀମାନଙ୍କ ମନକୁ ସେତେବେଳଯାଏଁ ଆକର୍ଷଣ କରି ରଖିଥିଲା । ଡାଇରେକ୍‌ଟୋରୀ ନାମକ ପାଞ୍ଚଜଣିଆ ନୂତନ କାର୍ଯ୍ୟ ନିର୍ବାହିକା ସମିତି (Executive) ବୈଧାନିକ ସଭା (legislature) ଦ୍ୱାରା ପାଞ୍ଚ ବର୍ଷ ପାଇଁ ନିର୍ବାଚିତ ହେବାର ବ୍ୟବସ୍ଥା ଥିଲା; କିନ୍ତୁ ଆଇନ ପ୍ରସ୍ତାବ କରିବାର କ୍ଷମତା (initiative) ତାହାର ନ ଥିଲା । ଡାଇରେକ୍‌ଟୋରୀକୁ ଆଇନ ପ୍ରସ୍ତାବ କରିବା କ୍ଷମତା ଯେ କେବଳ ଦିଆଯାଇ ନ ଥିଲା ସେତିକ ନୁହେଁ, ତାହାର ଉଭୟ ପରିଷଦଦ୍ୱାରା ଗୃହୀତ ଆଇନର ବିରୋଧ କରିବାର ବୈଧାନିକ ଅଧିକାର ମଧ୍ୟ ନଥିଲା । ତେଣୁ କାର୍ଯ୍ୟ ନିର୍ବାହିକା ସମିତି (Executive) ଏବଂ ବ୍ୟବସ୍ଥାପକ ସଭା (Legislature) ମଧ୍ୟରେ ସହଜରେ ଏକ ଅଚଳ ଅବସ୍ଥା (dead lock) ସୃଷ୍ଟି ହେବା ସ୍ୱାଭାବିକ ଥିଲା, ତାଛଡା ପାଞ୍ଚଜଣ ଡାଇରେକ୍‌ଟରଙ୍କ ମଧ୍ୟରୁ ଜଣେ ପ୍ରତିବର୍ଷ ଅବସର ନେବାର ବ୍ୟବସ୍ଥା ଥିବାବେଳେ ପ୍ରତିବର୍ଷ ଉଭୟ ପରିଷଦର ଏକତୃତୀୟାଂଶ ସଭ୍ୟ ପୁନଃନିର୍ବାଚିତ ହେବାର ସ୍ଥିର କରାଯାଇଥିଲା, ଫଳରେ ପରିଷଦ ଡାଇରେକ୍‌ଟୋରୀ ଅପେକ୍ଷା ଅଧିକ ଦ୍ରୁତଗତିରେ ତାହାର ରାଜନୈତିକ ଚିନ୍ତାଧାରା (political complexion) ବଦଳାଇବାର ସମ୍ଭାବନା ଥିଲା । ତେଣୁ ହଲଣ୍ଡ ରୋଜ କହିଥିଲେ, ଯେ କୌଣସି ପ୍ରତିକ୍ରିୟା ବା ଅସନ୍ତୋଷ ସମୟରେ ଡାଇରେକ୍‌ଟୋରୀ ଓ ବୈଧାନିକ ପରିଷଦ ମଧ୍ୟରେ ସଂଘର୍ଷ ଉପୁଜିବା ସୁନିଶ୍ଚିତ, ଯାହାକି ସମ୍ବିଧାନକୁ ଧ୍ୱଂସ କରିଦେବ ଏବଂ କୁଶଳୀ ଚକ୍ରାନ୍ତକାରୀ ପାଇଁ କ୍ଷେତ୍ର ପରିଷ୍କାର କରିଦେବ ।" ("Hence, in any time of reaction or disaffection, said Holland Rose. Conflicts were sure to breall out between Directory and Councils which would wreck the constitution and leave the ground clear for any skilful intriguer") ମୋଟଉପରେ ଦେଶର ଶାସନ ଅତି ବେଶିରେ ପୁରାତନ ଶାସନର କେନ୍ଦ୍ରୀକରଣ ଏବଂ ସାମ୍ବିଧାନିକ ରାଜତନ୍ତ୍ରର ବିକେନ୍ଦ୍ରୀକରଣ ମଧ୍ୟରେ ଏକ ଆପୋଷ ମୀମାଂସା କହିଲେ ଚଳେ । ସ୍ଥାନୀୟ ଶାସନ କର୍ତ୍ତୃବର୍ଗଙ୍କର ନିର୍ବାଚନ ଚାଲୁ ରହିଥିଲେ ମଧ୍ୟ ପ୍ରତି ପ୍ରଦେଶ(ଡିପାର୍ଟମେଣ୍ଟରେ) କେନ୍ଦ୍ର ସରକାରଙ୍କଦ୍ୱାରା ନିଯୁକ୍ତ ପ୍ରତିନିଧିମାନଙ୍କର ବା ଏଜେଣ୍ଟମାନଙ୍କର ଆଇନ ବଳବତ୍ତର କରିବା ଦାୟିତ୍ୱ ରହିଲା । ଭୋଟଦାନ ଓ ଶାସନ ପରିଚାଳନା ବିଷୟରେ ସାମ୍ବିଧାନିକ ରାଜତନ୍ତ୍ର (Constitutional monarchy) ର ଯେଉଁ ଦୋଷ ଦୁର୍ବଳତା ଥିଲା,

ସେହି ଦୋଷ ଦୁର୍ବଳତା ଡାଇରେକ୍ଟୋରୀର ମଧ୍ୟ ଥିଲା । ୧୭୯୧ ମସିହା ସମ୍ବିଧାନ ପରି ଏହି ନୂତନ ସମ୍ବିଧାନ, ରାଜନୈତିକ କ୍ଷମତା ମଧ୍ୟବିତ୍ତ ଗୋଷ୍ଠୀର ହସ୍ତରେ ନ୍ୟସ୍ତ କରିଥିଲା । ପୂର୍ବବର୍ତ୍ତୀ ଶାସନକୁ ବୁର୍ଜୋଆ ବା ମଧ୍ୟବିତ୍ତ ଗୋଷ୍ଠୀ ରାଜତନ୍ତ୍ର (Bourgeois) monarchy). କୁହାଯାଉଥିଲା ବେଳେ ଡାଇରେକ୍ଟୋରୀର ଶାସନକୁ ବୁର୍ଜୋଆ ସାଧାରଣତନ୍ତ୍ର (Bourgeois republic) ବା ମଧ୍ୟବିତ୍ତ ଗୋଷ୍ଠୀ କୁହାଗଲା ।

### ଡାଇରେକଟୋରୀ ଶାସନକାଳରେ ଫ୍ରାନ୍ସର ଇତିହାସ (The History of France during the rule of the Directory.)

ଡାଇରେକଟୋରୀ ସରକାର ତାହାର କାର୍ଯ୍ୟକାଳର ପ୍ରଥମ ଦୁଇବର୍ଷରେ ବିଶେଷ ସାଫଲ୍ୟ ଅର୍ଜନ କରିଥିଲେ ମଧ୍ୟ ଶେଷ ଦୁଇବର୍ଷରେ ସାମ୍ବିଧାନିକ ଦୋଷତ୍ରୁଟିହେତୁ ସେ ସରକାର ଉଭୟ ଆଭ୍ୟନ୍ତରୀଣ ଓ ବୈଦେଶିକ ବ୍ୟାପାରରେ ଘୋର ବିପତ୍ତିର ସମ୍ମୁଖୀନ ହୋଇଥିଲା । ଦେଶର ଏକ ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ପାଞ୍ଚଜଣ ଡାଇରେକଟର:—ବାରାସ (Barras), କ୍ୟାରନଟ (Carnot), ଲ ରେଭିଲେର (Ra Reveillere), ଲେଟରନର୍ସର (Letourneur) ଏବଂ ରର୍ଓ୍ୱେଲ (Rewell) କାର୍ଯ୍ୟଭାର ଗ୍ରହଣ କରିଥିଲେ । ସେତେବେଳେ ରାଜକୋଷ ଶୂନ୍ୟ ଥିଲା, ଏସାଇନେଟ (Assignant) ବା କାଗଜ ମୁଦ୍ରା ଦୁର୍ନାମ ଅର୍ଜନ କରିଥିଲା, ସୈନ୍ୟବାହିନୀ ତାର ନିୟମିତ ବେତନ ପାଉନଥିଲା, ଲୋକେ ଖାଦ୍ୟାଭାବଯୋଗୁ ଦୁଃଖ କଷ୍ଟରେ ଦିନ କଟାଉଥିଲେ । ଏକ ପକ୍ଷରେ ଜାକୋବିନ ଦଳ ଓ ଅନ୍ୟ ପକ୍ଷରେ ରାଜ ସମର୍ଥକମାନେ ସମ୍ବିଧାନକୁ ପଣ୍ଡ କରିଦେଇ ଶାସନକଳକୁ ନିଜ ନିଜର ଅକ୍ତିଆରକୁ ଆଣିବାପାଇଁ ଷଡ଼ଯନ୍ତ୍ରରେ ଲିପ୍ତଥିଲେ । ଏହି ବ୍ୟାପାରରେ ବେବିଉଫ ଜାକୋବିନଦଳର ନେତାଥିଲାବେଳେ ଡ୍ରୋଟିସ୍ୱାର ରାଜସମର୍ଥକ ଦଳର ନେତାଥିଲେ, କିନ୍ତୁ ଫରାସୀ ଲୋକେ ଘନ ଘନ ରାଜନୈତିକ ପରିବର୍ତ୍ତନରେ ଏତେ ଦୂର କ୍ଳାନ୍ତ ହୋଇପଡ଼ିଥିଲେ ଯେ ସେମାନେ ଦଳବଦ୍ଧ ଭାବରେ ଡାଇରେକଟରମାନଙ୍କୁ ସେମାନଙ୍କର ଆନ୍ତରିକ ସମର୍ଥନ ଜଣାଇଥିଲେ, ଫଳରେ ଡାଇରେକ୍ଟୋରୀ ସରକାର ଏ ଦୁଇ ବିରୋଧୀଦଳର ଷଡ଼ଯନ୍ତ୍ର ବିରୁଦ୍ଧରେ ଆତ୍ମରକ୍ଷା ଓ ଦେଶରେ ଶାନ୍ତିରକ୍ଷାକରିବାକୁ ସକ୍ଷମ ହୋଇଥିଲେ । ହୋଚେ (Hoche) ନାମକ ଜଣେ ସାମରିକ ନେତା ଲଭେଣ୍ଡି (La Vendee)ଓ ବ୍ରିଟାନି (Brittany) ରେ ରାଜାଙ୍କ ସପକ୍ଷରେ ଦେଖାଦେଇଥିବା ବିଦ୍ରୋହକୁ ସମ୍ପୂର୍ଣ୍ଣ ଭାବରେ ଦମନକରି ସେ ସ୍ଥାନମାନଙ୍କରେ ଶାନ୍ତି ପ୍ରତିଷ୍ଠା କରିଥିଲେ । ଡାଇରେକ୍ଟୋରୀ ସରକାର ସ୍ଥାପନ ହେବାର ବର୍ଷକ ମଧ୍ୟରେ ସାରାଦେଶରେ ଶାନ୍ତି ପ୍ରତିଷ୍ଠା କରାଯାଇପାରିଥିଲା । ଫ୍ରାନ୍ସ ଅନ୍ତତଃ କିଛିଦିନ ପାଇଁ ଅବିରାମ ଦଳୀୟ ସଂଘର୍ଷରୁ ମୁକ୍ତିପାଇଥିଲା । ସାରାଦେଶରେ ଏହିପରି ଶାନ୍ତି ପ୍ରତିଷ୍ଠାହେବା ଫଳରେ ଫରାସୀ ଜାତିର ଅଧିକାଂଶଲୋକେ ରାଜତନ୍ତ୍ରର ଉଚ୍ଛେଦ ସାଧନଦ୍ୱାରା ଯେଉଁ ସାଧାରଣତନ୍ତ୍ର ପ୍ରତିଷ୍ଠା କରାଯାଇଥିଲା, ତାହାକୁ ସାଦରେ ଗ୍ରହଣ କରିନେଲେ ।

ଡାଇରେକ୍‌ଟୋରୀର ଦୃଢ଼ ଶାସନ ଯୋଗୁ କୃଷି ଓ ସବୁପ୍ରକାର ଶିଳ୍ପର ପୁନର୍ବିକାଶ ହେଲା । ଲୁଣ୍ଠନକାରୀମାନଙ୍କୁ ଦମନ କରିବା ଫଳରେ ରାସ୍ତାଘାଟ ଗୁଡ଼ିକ ନିରାପଦ ହୋଇପାରିଲା । ଫରାସୀ ସରକାର ଦେଶର ଅର୍ଥନୈତିକ ସମସ୍ୟାର ସମାଧାନ କରିବାକୁ ସକ୍ଷମ ହୋଇଥିଲା । ଏହି ସମୟରେ ଫରାସୀ ସାମରିକ ନେତାମାନେ ଯୁଦ୍ଧରେ ନୂଆ ନୂଆ ସ୍ଥାନ ଅଧିକାର କରି ନେଇଥିଲେ । ସେ ସବୁ ସ୍ଥାନରୁ ଅର୍ଥ ଆଦାୟ କରି ନିଜ ନିଜର ସାମରିକ ବାହିନୀର ଖର୍ଚ୍ଚ ତୁଲାଇବା ସଙ୍ଗେ ସଙ୍ଗେ ବଳକା ଅର୍ଥ ସବୁ ଡାଇରେକ୍‌ଟୋରୀ ସରକାରଙ୍କ ପାଇଁ ପଠାଇ ଦେଉଥିଲେ । ନେପୋଲିୟନ ଏହି ବ୍ୟାପାରରେ ସର୍ବାଧିକ ସାହାଯ୍ୟ କରିଥିଲେ । ଏହି ଅର୍ଥ ମିଳିବାରୁ ସାଧାରଣତନ୍ତ୍ର ସରକାର ଆଉ ନୂଆ କର ଧାର୍ଯ୍ୟ ନ କରି ଦେଶର ଆର୍ଥିକ ସମସ୍ୟାର ସମାଧାନ କରିବାକୁ ସମର୍ଥ ହୋଇ ପାରିଥିଲା । ତାଛଡ଼ା ସରକାର ମୂଲ୍ୟ ହ୍ରାସ ପାଇଥିବା (debased) ଏସାଇନେଟ ବା କାଗଜ ମୁଦ୍ରାଗୁଡ଼ିକୁ 'ମ୍ୟାନଡାଟସ ଟେରିଟୋରିଅକ୍ସ' ( mandats territoriaux) ନାମକ ଏକ ନୂଆ କାଗଜ ମୁଦ୍ରା ଦେଇ କିଣି ନେଇଥିଲେ ଏବଂ ପ୍ରତ୍ୟେକଟି ନୂଆ କାଗଜ ମୁଦ୍ରା ତାର ଅଧିକାରୀ (holder)କୁ ରାଜ୍ୟର ( national domains ) ଏକ ନିର୍ଦ୍ଦିଷ୍ଟ ଅଂଶ ପାଇବାକୁ ଅଧିକାର ଦେଇଥିଲା । ପ୍ରଥମେ ଲୋକମାନେ ଏହି ପଦକ୍ଷେପକୁ ସ୍ୱାଗତ କରିଥିଲେ, ସରକାର ମଧ୍ୟ ସାମୟିକ ଆଶ୍ୱସ୍ତି ଅନୁଭବ କରିଥିଲେ । ଡାଇରେକ୍‌ଟୋରୀ ସରକାର ମୁଦ୍ରାଯନ୍ତ୍ରକୁ ସ୍ୱାଧୀନତା ଦେଇଥିଲା । ଦେଶରେ ଶାନ୍ତି ପ୍ରତିଷ୍ଠା ହୋଇଥିବାରୁ ସାମାଜିକ ଆମୋଦ ପ୍ରମୋଦ କେତେକ ପରିମାଣରେ ପୁନଃପ୍ରବର୍ତ୍ତିତ କରାଯାଇଥିଲା ।

କିଛିଦିନ ପରେ ଡାଇରେକ୍‌ଟୋରୀ ଶାସନର ଦୋଷ ଦୁର୍ବଳତା ପଦାରେ ପଡ଼ିଲା । ଯେଉଁ ମଧ୍ୟବିତ୍ତ ଗୋଷ୍ଠୀର ରାଜନୀତିଜ୍ଞମାନେ ତାହାକୁ ନେତୃତ୍ୱ ଦେଉଥିଲେ, ସେମାନେ ସାଧାରଣତଃ ଦୁର୍ନୀତିଗ୍ରସ୍ତ ଓ ସ୍ୱାର୍ଥାନ୍ଧ ହୋଇ ପଡ଼ିଲେ । ସେମାନଙ୍କ ମଧ୍ୟରୁ ଅନେକ କଳାବଜାରୀ ଓ ମୁନାଫାଖୋର ବୋଲି ଜଣା ପଡ଼ିଲେ ଏବଂ କେବଳ କ୍ଷମତା ଓ ଐଶ୍ୱର୍ଯ୍ୟ ଭୋଗ ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଲକ୍ଷ୍ୟ ନଥିଲା । ସେମାନେ ବୁଝୁଥିଲେ ଯେ ସେମାନଙ୍କର ଜୀବନ ଉପଭୋଗ କରିବାର ଅଧିକାର ରହିଛି । କିନ୍ତୁ ସେମାନେ ସେମାନଙ୍କର ସାଧାରଣ କର୍ତ୍ତବ୍ୟ ବା ବ୍ୟକ୍ତିଗତ ଯୋଗ୍ୟତା ବିଷୟରେ ଆଦୌ ସଚେତନ ନ ଥିଲେ । ସମ୍ବିଧାନର ଦୋଷ ତ୍ରୁଟି ଯୋଗୁ ଡାଇରେକ୍‌ଟୋରୀ ଶାସନରେ ବିଶେଷ ଅବନତି ଘଟିଥିଲା । କାର୍ଯ୍ୟନିର୍ବାହକ ସମିତି (executive) ବୈଧାନିକ ସଭା (legislature) ନିକଟରେ ଦାୟୀ ନ ଥିବାରୁ ଏବଂ ସାମୟିକ ନିର୍ବାଚନରେ ଜନସାଧାରଣଙ୍କର ସମ୍ମୁଖୀନ ହେଉଥିବାରୁ ଏହା ଲାଞ୍ଚଦେଇ କିମ୍ବା ଭୟ ଦେଖାଇ ସେମାନଙ୍କୁ ଆୟତ୍ତରେ ରଖିବାକୁ ଉଦ୍ୟମ କରୁଥିଲା । ଫରାସୀ ଜାତି ଏପରି ସରକାରଙ୍କଠାରୁ ଦିନକୁ ଦିନ ଦୂରେଇ ଯାଉଥିବାର ବେଶ୍ ପ୍ରମାଣ ମଧ୍ୟ ମିଳିଥିଲା । ଏହି କ୍ଷୁଦ୍ର ରାଜନୀତିଜ୍ଞ ଦଳ ନାନା ଅବୈଧ

ଉପାୟ ଅବଲମ୍ବନ କରି କ୍ଷମତା ଜାବୁଡ଼ି ଧରିବାରେ ସଫଳ ହୋଇଥିଲା । କାଗଜମୁଦ୍ରା ପ୍ରଚଳନ ଅବ୍ୟାହତ ରଖାଯିବାରୁ ସରକାରଙ୍କୁ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ଜନିଷପତ୍ରର ଦରଦାମ୍‌ରେ ଅସ୍ଥିରତା ଦେଖାଦେବାରୁ ଦେଶରେ ଶୋଚନୀୟ ପରିସ୍ଥିତି ସୃଷ୍ଟି ହୋଇଥିଲା । ଯେଉଁ ଧନୀଲୋକମାନଙ୍କର କ୍ଷମତାରେ ରହିବା ଭାଗ୍ୟରେ ନଥିଲା, ସେମାନଙ୍କଠାରୁ ମଧ୍ୟ ବାଧ୍ୟତାମୂଳକ ଋଣ (forced loan) ଆଦାୟ କରାଯାଉଥିଲା । ଦରିଦ୍ର ଲୋକମାନଙ୍କର ଅବସ୍ଥା ଅତୀବ ନୈରାଶ୍ୟଜନକ ହୋଇ ପଡ଼ିଥିଲା । ଡାଇରେକ୍‌ଟୋରିର ଧର୍ମଯାଜକ ବିରୋଧୀ ନୀତି ଫ୍ରାନ୍‌ସର ବିଭିନ୍ନ ପ୍ରଦେଶର ଲୋକମାନଙ୍କ ମନରେ ବିଶେଷ ଆଘାତ ଦେଇଥିଲା । ସରକାରଙ୍କର ଶାସନ ନୀତିର ପ୍ରତିବାଦସ୍ୱରୂପ କେତେଗୁଡ଼ିଏ ଷଡ଼ଯନ୍ତ୍ର ମୁଣ୍ଡ ଟେକିଥିଲା । ଡାଇରେକ୍‌ଟୋରି ସରକାର ଆତ୍ମରକ୍ଷା ପାଇଁ ସୈନ୍ୟବାହିନୀର ସାହାଯ୍ୟ ନେବାକୁ ବାଧ୍ୟ ହୋଇଥିଲା । ଏହାପରେ କିଛୁକାଳ ପାଇଁ ସରକାର ସୈନ୍ୟବାହିନୀ ପ୍ରୟୋଗ ଓ ଅତ୍ୟାଚାର—ଏହି ଦୁଇଟି ନୀତି ଉପରେ ନିର୍ଭର କରି ଶାସନ ପରିଚାଳନା କରିଥିଲେ । ଏହା ଫଳରେ ଦେଶରେ ଯଥେଷ୍ଟ ଅତ୍ୟାଚାର ଚାଲିଥିଲା । ବାହ୍ୟିକ ଶାନ୍ତି ମଧ୍ୟ ବ୍ୟାଘାତ ପାଇଥିଲା, କାରଣ ଡାଇରେକ୍‌ଟୋରି ସରକାର ଅଧିକୃତ ରାଜ୍ୟମାନଙ୍କୁ ଶୋଷଣ କରି ଫ୍ରାନସକୁ ଦେବାଳିଆ ଅବସ୍ଥାରୁ ଉଦ୍ଧାର କରିବା ପାଇଁ ଚାହୁଁଥିଲେ । ତାଛଡ଼ା ସରକାର ଭୟ କରୁଥିଲା ଯେ ଯଦି ବିଦେଶରେ ଥିବା ସୈନ୍ୟବାହିନୀ ଫ୍ରାନସକୁ ପ୍ରତ୍ୟାବର୍ତ୍ତନ କରିବ ତାହାହେଲେ ସେ ଏପରି ନିନ୍ଦିତ ସରକାର ତିଷ୍ଠି ରହିବା କେବେହେଁ ସହ୍ୟ କରିପାରିବ ନାହିଁ । ତେଣୁ ଡାଇରେକ୍‌ଟୋରି ସରକାର ଜାଣିଶୁଣି ଯୁଦ୍ଧରେ ବ୍ୟାପୃତ ରହିଥିଲା । କିନ୍ତୁ ବହିଃଶତ୍ରୁ ନିକଟରେ ଫରାସୀ ସୈନ୍ୟବାହିନୀ ପରାସ୍ତ ହେବାରୁ ଫ୍ରାନସର ନିରାପତ୍ତା ବିପନ୍ନ ହୋଇ ପଡ଼ିଲା । ପରିସ୍ଥିତିର ଚାପରେ ପଡ଼ି ଡାଇରେକ୍‌ଟୋରି ବାଧ୍ୟତାମୂଳକଭାବେ ସୈନ୍ୟବିଭାଗରେ ଯୋଗଦେବା ଆଇନ (Law of Conscription) ପାରିତ କରିନେଲେ । ଫଳରେ ପ୍ରାୟ ସମଗ୍ର ଫରାସୀ ଜାତି ବିଭିନ୍ନ ସୈନ୍ୟ ଦଳରେ ସଂଗଠିତ ହୋଇଥିଲା ।

### ବୈଦେଶିକ ନୀତି (Foreign Policy)

ଡାଇରେକ୍‌ଟୋରି ସରକାର ପ୍ରତିଷ୍ଠା ହେବା ସମୟରେ ଫ୍ରାନସ ଉଭୟ ଅଷ୍ଟ୍ରିୟା ଓ ଇଂଲଣ୍ଡ ସହିତ ଯୁଦ୍ଧରେ ବ୍ୟାପୃତ ଥିଲା । କ୍ୟାରନଟ୍ ୧୭୯୬ ମସିହାରେ ଅଷ୍ଟ୍ରିୟା ବିରୁଦ୍ଧରେ ଏକ ସମୟରେ ତିନି ଆଡ଼ୁ ଆକ୍ରମଣ ଚଳାଇବା ପାଇଁ ଯୋଜନା ପ୍ରସ୍ତୁତ କରିଥିଲେ । ଦୁଇଟି ଫରାସୀ ସୈନ୍ୟବାହିନୀ ସାରଡ଼ିନିୟା (Sardinia) ମଧ୍ୟଦେଇ ଅଗ୍ରସର ହୋଇଥିଲେ ଏବଂ ତୃତୀୟ ସୈନ୍ୟବାହିନୀ ଇଟାଲୀରେ ପ୍ରବେଶ କରିଥିଲେ । ଫ୍ରାନସ ଏହି

ସମୟରେ ନେପୋଲିୟନଙ୍କ ପରି ଜଣେ ଦୁର୍ଦ୍ଧର୍ଷ ସେନାପତିର ସାହାଯ୍ୟ ପାଇବାର ସୌଭାଗ୍ୟ ଲାଭ କରିଥିଲା । ନେପୋଲିୟନ ବୋନାପାର୍ଟ ସେରର (Scherer)ଙ୍କ ପରିବର୍ତ୍ତେ ଇଟାଲୀର ମୁତୟନଥିବା ସୈନ୍ୟବାହିନୀର ନେତୃତ୍ୱ ଗ୍ରହଣ କରିଥିଲେ । ଅଳ୍ପ କାଳ ମଧ୍ୟରେ ସାରଡିନିୟାକୁ ପରାସ୍ତ କରି ସାଭୟ ଓ ନାଇସ୍ ପରିତ୍ୟାଗ କରିବାପାଇଁ ବାଧ୍ୟ କରିଥିଲେ । ତାପରେ ଅଷ୍ଟ୍ରିୟାକୁ ପରାସ୍ତକରି ମାନ୍ଟୁଆ (Mantua) ଅଧିକାର କରିନେଲେ ଓ ଅଷ୍ଟ୍ରିୟମାନଙ୍କୁ ଜମିମାକୁ ଛଡ଼ିଦେଇଥିଲେ । ପୋପ୍‌ଙ୍କୁ ମଧ୍ୟ ଆତ୍ମସମର୍ପଣ କରିବାକୁ ବାଧ୍ୟ କରିଥିଲେ । ନେପୋଲିୟନ ଏହାପରେ ଭିଏନା ଅଭିମୁଖରେ ଅଗ୍ରସର ହେବାରୁ ଅଷ୍ଟ୍ରିୟା ସହିତ ପୁନର୍ବାର ଯୁଦ୍ଧ ହେଲା ଏବଂ ଅଷ୍ଟ୍ରିୟା ଯୁଦ୍ଧରେ ପରାଜିତ ହୋଇ ୧୭୯୭ ମସିହାରେ ଫ୍ରାନସ ସହିତ କେମ୍ପୋଫରମିଓ ସନ୍ଧି (Treaty of Campoformio)ରେ ସ୍ୱାକ୍ଷର କଲା । ଇଂଲଣ୍ଡଠାରୁ ଅଷ୍ଟ୍ରିୟାକୁ ବିଚ୍ଛିନ୍ନ କରିଦେବାପାଇଁ ଅନୁକୂଳ ସର୍ତ୍ତମାନ ତାକୁ ପ୍ରଦାନ କରିଥିଲେ । ଏହି ସନ୍ଧି ଅନୁସାରେ ଅଷ୍ଟ୍ରିୟା ଫ୍ରାନସକୁ ଅଷ୍ଟ୍ରିୟାନ ନେଦରଲ୍ୟାଣ୍ଡ (ବେଲଜିୟମ୍) ଅର୍ପଣ କରିଥିଲା ଓ ସିସାଲପାଇନ ସାଧାରଣତନ୍ତ୍ର (Cisalpine Republic)କୁ ସ୍ୱୀକୃତି ଦେଇଥିଲା । ଫ୍ରାନସ ଆୟୋନୀୟ ଦ୍ୱୀପପୁଞ୍ଜ (Ionian islands) ଏବଂ ଭେନିସିୟାର ନୌବହର (Venetian fleet) ଲାଭ କରିଥିଲା । ଅଧିକନ୍ତୁ ଅଷ୍ଟ୍ରିୟା ଫ୍ରାନସର ସୀମା ପୂର୍ବପଟେ ରାଇନ୍ ପର୍ଯ୍ୟନ୍ତ ପ୍ରସାରକୁ ସ୍ୱୀକୃତି ଦେବାକୁ ପ୍ରତିଶ୍ରୁତି ଦେଲା ।

ଇତିମଧ୍ୟରେ ଉଭୟ ନରମପନ୍ଥୀ ଓ ପ୍ରତିକ୍ରିୟାଶୀଳ ପନ୍ଥୀ (Reactionaries) ପ୍ୟାରିସରେ ପ୍ରାଧାନ୍ୟ ଲାଭ କରିବାର ସୁଯୋଗ ପାଇଥିଲେ । ପରିଷଦଦ୍ୱୟର ନବନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରୁ ଦ୍ୱିତୃତୀୟାଂଶ ସଭ୍ୟ ଏବଂ ଦୁଇଜଣ ଡାଇରେକ୍ଟର ରାଜତନ୍ତ୍ରବାଦୀ ଥିଲେ ଓ ସେମାନେ ଅଷ୍ଟଦଶ ଲୁଇଙ୍କୁ ରାଜଗାଦିରେ ପୁନଃପ୍ରତିଷ୍ଠା କରିବା ପାଇଁ ଯୋଜନା କରୁଥିଲେ । କାର୍ଯ୍ୟନିର୍ବାହକ ସମିତିରେ ସଂଖ୍ୟା ଗରିଷ୍ଠତା ଲାଭକରିଥିବା ଅନ୍ୟ ତିନିଜଣ ଡାଇରେକ୍ଟର ପ୍ରଚଳିତ ସମ୍ବିଧାନକୁ ରକ୍ଷା କରିବାକୁ ଚାହୁଁଥିଲେ । ଏହିପରି ଗୋଟିଏ ପକ୍ଷରେ କାର୍ଯ୍ୟନିର୍ବାହକ ସମିତି ଭିତରେ ଏବଂ ଅନ୍ୟପକ୍ଷରେ ବୈଧାନିକ ସଭା ଓ କାର୍ଯ୍ୟନିର୍ବାହକ ସମିତି ମଧ୍ୟରେ ଦ୍ୱୈତ(double) ସଂଗ୍ରାମ ଚାଲିଥିଲା । ନେପୋଲିୟନ ରାଜତନ୍ତ୍ର-ବାଦୀମାନଙ୍କର ଷଡ଼ଯନ୍ତ୍ରକୁ ଦମନ କରିବା ପାଇଁ ତାଙ୍କର ଜଣେ ବିଶ୍ୱସ୍ତ ସହକର୍ମୀଙ୍କୁ ଏକ ଶକ୍ତିଶାଳୀ ସେନାଦଳ ସହ ପ୍ୟାରିସକୁ ପଠାଇଥିଲେ । ସେହି ସେନାଦଳ ଟ୍ୟୁଲେରିସ (Tuileries) ରାଜପ୍ରାସାଦରେ ବସିଥିବା ଦୁଇଟି ପରିଷଦକୁ ଘେରାଉକରି ୧୭୯୭ ମସିହା ସେପ୍ଟେମ୍ବର ୪ ତାରିଖ ଦିନ ୫୩ ଜଣ ପ୍ରତିନିଧିଙ୍କୁ ଗିରଫ କରିନେଇଥିଲେ । କ୍ୟାରନଟ (Carnot) ଖସି ପଳାଇଥିଲେ ଏବଂ ଅନ୍ୟଜଣେ ରାଜତନ୍ତ୍ରବାଦୀ ଡାଇରେକ୍ଟରଙ୍କୁ ଗିରଫ କରାଯାଇଥିଲା । ଅବଶିଷ୍ଟ ୩ ଜଣ ଡାଇରେକ୍ଟର ଆଉ ଦୁଇ ଜଣ ସହକର୍ମୀ ବାଛିଥିଲେ ଏବଂ ସମ୍ବିଧାନକୁ ଲଙ୍ଘନ କରି ୪୯ଟି ପ୍ରଦେଶର (ଡିପାର୍ଟମେଣ୍ଟର) ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଥିଲେ । ସିଭିଲ୍ କନଷ୍ଟିଚ୍ୟୁସନ ଅଫ କ୍ଲାର୍ଜି ନାମକ ଆଇନ ଗ୍ରହଣ ନ

କରିଥିବା ଧର୍ମଯାଜକ (Non-juring priests) ଏବଂ ସମ୍ଭ୍ରାନ୍ତମାନଙ୍କ ବିରୁଦ୍ଧରେ ଆଇନ ପୁନଃପ୍ରବର୍ତ୍ତିତ କରାଯାଇଥିଲା । ମୁଦ୍ରାଯନ୍ତ୍ର ଉପରେ କଟକଣା ଜାରି କରାଯାଇଥିଲା । ଡାଇରେକ୍ଟରମାନେ ସମ୍ବିଧାନକୁ ଉପେକ୍ଷା କରି ଅର୍ଥନୈତିକ ବ୍ୟାପାରରେ ହସ୍ତକ୍ଷେପ କରିଥିଲେ । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଡାଇରେକ୍ଟରମାନେ ନେପୋଲିୟନଙ୍କଠାରୁ ସାମରିକ ସାହାଯ୍ୟ ଲାଭକରି ରକ୍ଷା ପାଇଥିଲେ, ତଥାପି ସେମାନେ ଏହି ତରୁଣ ସେନାପତିଙ୍କୁ ଅତିମାତ୍ରାରେ ହିଂସାକରୁଥିଲେ । କେତେକାଂଶରେ ତାଙ୍କଠାରୁ ଉଦ୍ଧାର ପାଇବା ପାଇଁ ଏବଂ କେତେକାଂଶରେ ଇଂଲଣ୍ଡର ଗର୍ବ ଖର୍ବ କରିବାପାଇଁ ସେମାନେ ନେପୋଲିୟନଙ୍କୁ ମିଶର ଅଭିଯାନ ପରିଚାଳନା କରିବାପାଇଁ ଆଦେଶ ଦେଇଥିଲେ । ନେପୋଲିୟନ ୧୭୯୮ ମସିହା ମଇମାସ ୯ ତାରିଖ ଦିନ ଏକ ବିସ୍ତୃତ ସୈନ୍ୟଦଳ ଧରି ମିଶର ଅଭିମୁଖେ ଯୁଦ୍ଧଯାତ୍ରା କରିଥିଲେ । ସର୍ବପ୍ରଥମ ମିଶରରେ କେତେକ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ; କିନ୍ତୁ ଇଂଲଣ୍ଡର ନୌସେନାପତି ନେଲ୍‌ସନ୍‌ଙ୍କର ନୀଳନଦୀ ସଂଗ୍ରାମ (The battle of Nile)ରେ ଫ୍ରାନସ ବିରୁଦ୍ଧରେ ବିଜୟ ଲାଭ ଫଳରେ ନେପୋଲିୟନଙ୍କୁ ମିଶରରେ ଆବଦ୍ଧହୋଇ ରହିବାକୁ ପଡ଼ିଥିଲା । ସେ ମିଶରରେ ଅବସ୍ଥାନ କରୁଥିବା ସମୟରେ ଆକର (Acre) ଅଧିକାର କରିନେବା ପାଇଁ ତାହାର ଅବରୋଧ ଆରମ୍ଭ କରିଦେଇଥିଲେ; କିନ୍ତୁ ତାଙ୍କର ଉଦ୍ୟମ ସଫଳ ହୋଇ ନ ଥିଲା । ସେହି ସମୟରେ ଫ୍ରାନସରେ ଡାଇରେକ୍ଟୋରି ସରକାର ଅପ୍ରିୟ ହୋଇପଡ଼ିଥିବାର ଖବର ପାଇ ଶୀଘ୍ର ଫ୍ରାନସକୁ ଫେରି ଆସିଥିଲେ ।

ନେପୋଲିୟନ୍‌ଙ୍କ ଫ୍ରାନସ ପ୍ରତ୍ୟାବର୍ତ୍ତନ ପୂର୍ବରୁ ଡାଇରେକ୍ଟୋରି ସରକାର ଆକ୍ରମଣାତ୍ମକ ନୀତି ଅବଲମ୍ବନକରି ପୋପଙ୍କୁ ବନ୍ଦୀ କରିଥିଲା ଏବଂ ତାଙ୍କ ରାଜ୍ୟକୁ ରୋମୀୟ ସାଧାରଣତନ୍ତ୍ରରେ ରୂପାନ୍ତରିତ କରିଥିଲା । ସୁଇଜରଲାଣ୍ଡ ବିରୁଦ୍ଧରେ ଅଭିଯାନ ଚଳାଇ ତାର ପୁରାତନ ସମ୍ବିଧାନକୁ ବଦଳାଇ ଦେଇଥିଲା ଏବଂ ସେଥିରେ ଥିବା କ୍ୟାଣ୍ଟନ-ଗୁଡ଼ିକୁ ଏକତ୍ର କରି ଏକ ସାଧାରଣତନ୍ତ୍ର ରାଷ୍ଟ୍ରମଣ୍ଡଳ (Common wealth) ପ୍ରତିଷ୍ଠା କରିଥିଲା ଏବଂ ତାର ନାମ ରଖିଥିଲା ହେଲଭେଟିକ (Helvetic) ସାଧାରଣତନ୍ତ୍ର । ନେପଲସ୍ (Naples) ରାଜାଙ୍କ ରାଜ୍ୟକୁ ପାର୍ଥେନୋପୀୟନ୍ (Parthenopean) ନାମକ ଏକ ସାଧାରଣତନ୍ତ୍ରରେ ପରିଣତ କରିଥିଲା । ହଲଣ୍ଡର ସରକାରକୁ ଫ୍ରାନସ ଆଦର୍ଶରେ ପୁନଃଗଠିତ କରିଥିଲା । ଜେନେଭାକୁ ଫ୍ରାନସ ସହିତ ସଂଯୁକ୍ତ କରାଯାଇଥିଲା ଏବଂ ପିଡ଼ମଣ୍ଟ ଫରାସୀ ସେନାଦଳ ଦ୍ୱାରା ଅଧିକୃତ ହୋଇଥିଲା । ଡାଇରେକ୍ଟୋରି ସରକାରଙ୍କ ଏପରି ଆକ୍ରମଣାତ୍ମକ ନୀତି ବଡ଼ ବଡ଼ ଇଉରୋପୀୟ ଶକ୍ତିମାନଙ୍କ ମନରେ ଭୟ ଜନ୍ମାଇଥିଲା । ତେଣୁ ସେମାନେ ଫ୍ରାନସ ବିରୁଦ୍ଧରେ ଇଉରୋପୀୟ ଦ୍ୱିତୀୟ ଶକ୍ତିମେଣ୍ଟ (The second coalition) ଗଠନ କରିଥିଲେ । ଏ ମେଣ୍ଟରେ ଇଂଲଣ୍ଡ, ରୁଷିଆ, ଅଷ୍ଟ୍ରିୟା ପ୍ରଭୃତି ଶକ୍ତିମାନେ ଅନ୍ତର୍ଭୁକ୍ତ । ଦ୍ୱିତୀୟ ଶକ୍ତିମେଣ୍ଟ ୧୭୯୯ ମସିହାରେ ଫ୍ରାନସ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରି

ଦେଇଥିଲା । ଏ ଯୁଦ୍ଧ ମଧ୍ୟ ଏକ ସମୟରେ ଇଟାଲୀ, ସୁଇଜରଲାଣ୍ଡ ଓ ହଲଣ୍ଡ ବିରୁଦ୍ଧରେ ପରିଚାଳିତ ହୋଇଥିଲା । ଫରାସୀମାନେ ଇଟାଲୀରୁ ବିତାଡ଼ିତ ହୋଇଥିଲେ ମଧ୍ୟ ସେମାନେ ସୁଇଜରଲାଣ୍ଡ ଓ ହଲାଣ୍ଡରେ ସେମାନଙ୍କର ସ୍ଥିତି ବଜାୟ ରଖିବା ସଙ୍ଗେ ସଙ୍ଗେ ରାଇନ ନଦୀର ଦକ୍ଷିଣ ତଟ ନିଜ ଅଧିକାରରେ ମଧ୍ୟ ରଖି ପାରିଥିଲେ । ଫରାସୀ ସୈନ୍ୟବାହିନୀର ଇଟାଲୀରେ ଯେଉଁ ବିପର୍ଯ୍ୟୟ ଘଟିଲା, ତାହା ଡାଇରେକ୍ଟୋରୀ ସରକାରକୁ ବଦନାମ କରିଥିଲା । ଏପରି ଘଡ଼ିସନ୍ଧି ମୂହୂର୍ତ୍ତରେ ନେପୋଲିୟନ ବୋନାପାର୍ଟ ଫ୍ରାନସକୁ ଫେରିଆସି ଦେଖିଲେ ଯେ ଡାଇରେକ୍ଟରମାନେ ଦୁଇଟି ପରିଷଦ ସହିତ କଳହରେ ବ୍ୟାପୃତ ଅଛନ୍ତି । ସେ ସମୟରେ ଫ୍ରାନସର ଅଧିକାଂଶ ଲୋକେ ଦୃଢ଼ ସରକାର ଗଠନ କରିବା ପାଇଁ ବିଶେଷ ଆଗ୍ରହୀ ଥିଲେ । କାରଣ ସେମାନେ ଭାବିଥିଲେ ଯେ କେବଳ ସେହିପରି ସରକାର ହିଁ ଦେଶରେ ଶାନ୍ତି ଆଣିପାରିବ ଏବଂ ଅନ୍ୟଦିଗରେ ଶତ୍ରୁ ବିରୁଦ୍ଧରେ ପ୍ରବଳ ସଂଗ୍ରାମ ଚଳାଇ ପାରିବ । ନେପୋଲିୟନଙ୍କୁ ଅନେକେ ଫ୍ରାନସର ରକ୍ଷାକାରୀ ହିସାବରେ ଅଭିନନ୍ଦନ ଜଣାଇଥିଲେ । ଆବ ସାୟେସ (Abbe Sieyes)ଙ୍କ ସହଯୋଗରେ ନେପୋଲିୟନ ଏକ ଷଡ଼ଯନ୍ତ୍ର ଯୋଜନା ପ୍ରସ୍ତୁତ କରି ୧୭୯୯ ମସିହା ନଭେମ୍ବର ୯ ତାରିଖ ଦିନ ଡାଇରେକ୍ଟୋରୀ ସରକାରଙ୍କର ପତନ ଘଟାଇବାକୁ ସମର୍ଥ ହୋଇଥିଲେ ।



# ଚତୁର୍ଥ ଅଧ୍ୟାୟ

## ନେପୋଲିୟନ୍ ବୋନାପାର୍ଟ (Napoleon Bonaparte)

### ନେପୋଲିଅନଙ୍କର ଜୀବନ ବୃତ୍ତାନ୍ତ (Napoleon's career ) : —

ନେପୋଲିୟନ୍ ବୋନାପାର୍ଟ ୧୭୬୯ ମସିହା ଅଗଷ୍ଟ ୧୫ ତାରିଖ ଦିନ କର୍ସିକା ଦ୍ୱୀପ ଅନ୍ତର୍ଗତ ଆଜାସିଓ (Ajaccio)ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମର ବର୍ଷକ ପୂର୍ବରୁ ଫ୍ରାନ୍ସ କର୍ସିକା ଲାଭ କରିଥିଲା । କର୍ସିକାକୁ 'ଅଶାନ୍ତିର' ଦ୍ୱୀପ' (Isle of unrest) ବୋଲି ଅଭିହିତ କରାଯାଇଥାଏ କାରଣ ଏହା ଜେନୋଆ ସାଧାରଣତନ୍ତ୍ରର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ବହୁଦିନ ଧରି ତାହା ବିରୁଦ୍ଧରେ ବିଦ୍ରୋହ କରି ଆସୁଥିଲା । କଥିତ ଅଛି ଯେ, ଗୋଟିଏ ସଙ୍ଗୀତ ବିନିମୟରେ ସେହି ପତନୋନ୍ମୁଖୀ (decadent) କ୍ଷୁଦ୍ର ସାଧାରଣତନ୍ତ୍ର ରାଜ୍ୟଟି ଫ୍ରାନ୍ସକୁ କର୍ସିକା ବିକ୍ରୟ କରି ଦେଇଥିଲା । ଫ୍ରାନ୍ସ ନିକଟରେ ସେହି ବିକ୍ରୟର କି ଗୁରୁତ୍ୱ ରହିଛି ତାହା ସେତେବେଳେ କେହି ହୃଦୟଙ୍ଗମ କରିପାରି ନଥିଲେ । କିନ୍ତୁ ରୁଷୋ ଥରେ ଲେଖିଥିଲେ, "ମୋର ଦୃଢ଼ ବିଶ୍ୱାସ ଯେ ଏହି କ୍ଷୁଦ୍ର ଦ୍ୱୀପଟି ଦିନେ ନା ଦିନେ ଇଉରୋପକୁ ଆଚମ୍ବିତ କରିବ ।" ("I have a presentiment that this little island will some day astonish Europe.") କର୍ସିକା ଫ୍ରାନ୍ସକୁ ହସ୍ତାନ୍ତରିତ କରିଦିଆଗଲା ପରେ ଯେଉଁମାନେ ତାହା ବିରୁଦ୍ଧରେ ଆନ୍ଦୋଳନ ଅବ୍ୟାହତ ରଖିଥିଲେ, ସେମାନଙ୍କ ମଧ୍ୟରେ ନେପୋଲିୟନଙ୍କ ପିତା ଚାର୍ଲସ ବୋନାପାର୍ଟ ଥିଲେ ଅନ୍ୟତମ । ପ୍ରଥମେ ଯେଉଁ କେତେଜଣ ନୂତନ ପ୍ରଭୁ ଫ୍ରାନ୍ସ ସହିତ ବୁଝାମଣା କରିବା ପାଇଁ ଆଗେଇ ଆସିଥିଲେ, ଚାର୍ଲସ ବୋନାପାର୍ଟ ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ଚାର୍ଲସ ବୋନାପାର୍ଟ ଜଣେ ଫ୍ଲୋରେନ୍ଟିନୀୟ ବଂଶୋଦ୍ଭବ (Florentine by descent) ଏବଂ ଜଣେ ଆଇନ ବ୍ୟବସାୟୀ । ନେପୋଲିୟନଙ୍କ ମା' ଥିଲେ ଜଣେ କର୍ସିକାୟ ମହିଳା । ନେପୋଲିୟନ ପରିବାର ସମ୍ଭ୍ରାନ୍ତ ବଂଶୀୟ ହେଲେ ମଧ୍ୟ ତାଙ୍କର ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା । ସୌଭାଗ୍ୟବଶତଃ ନେପୋଲିୟନଙ୍କ ପାଇଁ ତାଙ୍କ ପିତା ପଦାଧିକାରୀ (officer) ତାଲିମ ଦିଆ ଯାଉଥିବା ଫ୍ରାନ୍ସର ସୈନିକ ବିଦ୍ୟାଳୟରେ ଗୋଟିଏ ଛାତ୍ରବୃତ୍ତି ଯୋଗାଡ଼ କରିଥିଲେ । କେତେବର୍ଷ ତାଲିମ ପାଇବା ପରେ ତରୁଣ ବୋନାପାର୍ଟ ୧୭୮୫ ମସିହାରେ ଗୋଲନ୍ଦାଜ ସୈନ୍ୟଦଳର ଜଣେ ଉପଲେଫ୍ଟନାଣ୍ଟ (sub lieutenant) ରୂପେ ନିଯୁକ୍ତି ପାଇଥିଲେ ।

ଶୈଶବ ଅବସ୍ଥାରେ ନେପୋଲିୟନଙ୍କୁ ସମ୍ଭାଳିବା କଷ୍ଟକର ହୋଇଥିଲା । ବିଦ୍ୟାଳୟର ଛାତ୍ର ହିସାବରେ ସ୍ୱଳ୍ପଭାଷୀ ଥିଲେ ଏବଂ ତାଙ୍କର ସ୍ପୃହା ଜାତ ନହେଲେ ପାଠପଢ଼ାରେ ମନୋଯୋଗ ଦେଉନଥିଲେ । ତାଙ୍କର ସାମରିକ କ୍ରୀଡ଼ା ପ୍ରତିଯୋଗିତା ପ୍ରତି ବିଶେଷ ଆଗ୍ରହ ଥିଲା ଏବଂ ଯେତେବେଳେ ସେ ସାମରିକ କାର୍ଯ୍ୟରୁ କିଛିଏ ଅବ୍ୟାହତି ପାଉଥିଲେ, ସେତେବେଳେ ସେ ତାଙ୍କର ଅଧିକାଂଶ ସମୟ ପଢ଼ିବାରେ କଟାଉଥିଲେ । ସମ୍ଭବତଃ ତାଙ୍କର ଅଧିକାଂଶ କଳ୍ପନା-ଗୁଡ଼ିକ ଅନୁଭୂତି ଓ ପର୍ଯ୍ୟବେକ୍ଷଣର ଫଳ ।



[ ନେପୋଲିୟନ ବୋନାପାର୍ଟ ]

ଯେତେବେଳେ ଫରାସୀ ବିପ୍ଳବର ସୂତ୍ରପାତ ହେଲା, ସେ ତାକୁ ସ୍ୱାଗତ କରିଥିଲେ । ସେ ସାଧାରଣତନ୍ତ୍ରବାଦୀ-ମାନଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ ଏବଂ ରୁସୋଙ୍କ ଭାଇଙ୍କ ସହିତ ତାଙ୍କର ଏକପ୍ରକାର ଘନିଷ୍ଠ ବନ୍ଧୁତା ଥିଲା । ପ୍ୟାରିସ ଜନତାର ଆକ୍ରମଣ ଫଳରେ ଯେତେବେଳେ ୧୭୯୨ ମସିହା ଅଗଷ୍ଟ ୧୦ତାରିଖ ଦିନ ରାଜତନ୍ତ୍ରର ଉଚ୍ଛେଦ ସାଧନ କରାଗଲା, ସେତେବେଳେ ତାଙ୍କର ରୁଚିର ମଧ୍ୟ ବଦଳିଯାଇଥିଲା । ରୁସୋଙ୍କ ଲେଖା ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା । ତା ଛଡ଼ା ଆଦର୍ଶ ସାଧାରଣତନ୍ତ୍ର ପ୍ରତିଷ୍ଠା ଏବଂ ଫ୍ରାନ୍ସ କବଳରୁ କର୍ସିକାକୁ ମୁକ୍ତ କରିବା ଦିଗରେ ସେ ପ୍ରଥମେ ବଡ଼ ଉତ୍ସାହୀ ଥିଲେ । କମିସନ୍ ପାଇଥିବା ଜଣେ ଫରାସୀ ପଦାଧିକାରୀ (officer) ହିସାବରେ ଜୀବିକା ଅର୍ଜନ କରୁଥିଲେ ମଧ୍ୟ କର୍ସିକାକୁ ଉଦ୍ଧାର କରିବାପାଇଁ ସେ ସକ୍ରିୟ ଷଡ଼ଯନ୍ତ୍ରରେ ଲିପ୍ତ ରହିଥିଲେ; କିନ୍ତୁ ତାଙ୍କର ସକଳ ଉଦ୍ୟମ ବିଫଳ ହେବାର ଦେଖି ଶେଷରେ ସେ ୧୭୯୩ ମସିହାରେ କର୍ସିକାକୁ ମୁକ୍ତ କରିବା ଆଶା ନିଶ୍ଚିତ ଭାବରେ ତ୍ୟାଗ କରିଥିଲେ ଓ ଫରାସୀ ସରକାରଙ୍କ ସେବାରେ ନିଜକୁ ନିୟୋଜିତ କରି ନିଜର ଫାଏଦା ଉଠାଇବାକୁ ମନସ୍ଥ କରିଥିଲେ । କିଛିଦିନ ପରେ ଯେତେବେଳେ କର୍ସିକାରେ ବିଦ୍ରୋହ ଦମନ କରିବା ପାଇଁ ଆଦେଶ ଦିଆଯାଇଥିଲା, ସେ ତାକୁ ବିନା ଦ୍ୱିଧାରେ କାର୍ଯ୍ୟକାରୀ କରିଥିଲେ ଏବଂ ସେହି ଦିନଠାରୁ ସେ ଆଞ୍ଚଳିକପ୍ରୀତି ପରିବର୍ତ୍ତେ ଫ୍ରାନ୍ସ ପ୍ରତି ବିଶେଷ ଅନୁରକ୍ତି ଦେଖାଇଥିଲେ । ୧୭୯୩ ମସିହା ଡିସେମ୍ବର ମାସରେ ସେ ଇଂରେଜମାନଙ୍କଠାରୁ ଟୌଲନ (Toulon)

ଅଧିକାର କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ଏବଂ ୧୭୯୫ ମସିହା ସେପ୍‌ଟେମ୍ବର ମାସରେ ବିପ୍ଳବୀମାନଙ୍କ ଆକ୍ରମଣରୁ କନ୍‌ଭେନସନ୍‌କୁ ରକ୍ଷା କରିଥିଲେ । ୧୭୯୬ ମସିହାରେ ତାଙ୍କୁ ଯେତେବେଳେ ୨୭ବର୍ଷ ହୋଇଥିଲା, ସେ ଯୋସେଫାଇନ ନାମକ ୩୪ବର୍ଷ ବୟସ୍କା ବିଧବା ରମଣୀକୁ ବିବାହ କରିଥିଲେ । ଯୋସେଫାଇନଙ୍କର ନେପୋଲିୟନଙ୍କର ପ୍ରକୃତ କିମ୍ବା ଅଦୃଷ୍ଟ ନିର୍ଦ୍ଧାରିତ ଜୀବନର ଗତି ବିଷୟରେ କୌଣସି ଧାରଣା ନଥିଲା ପରି ମନେ ହେଉଥିଲା । ସେଥିଯୋଗୁ ସେ ତାଙ୍କ ସ୍ୱାମୀଙ୍କ ସୁଖ ଦୁଃଖରେ କିମ୍ବା ପ୍ରଥମ ମହତ୍‌ ଅଭିଯାନର ଗୌରବରେ ଭାଗୀଦାର ହେବାକୁ ରାଜିନଥିଲେ । ଏ କଥା ସତ୍ୟ ଯେ ସୈନ୍ୟ ବିଭାଗର ଅଧିକାରୀମାନଙ୍କ (officers) ସଂଖ୍ୟା କମ୍‌ ଥିବାରୁ ଏବଂ ଟୌଲନ ଅଧିକାର କରିବାରେ ସେ ଅଦ୍ଭୁତ କୌଶଳ ଦେଖାଇଥିବା ଯୋଗୁ ତାଙ୍କର ପଦୋନ୍ନତି ହେବାକୁ ଲାଗିଥିଲା । ସେ ଟୌଲନ୍‌ ଅଧିକାର କରିବାବେଳେ ଗୋଲନ୍ଦାଜବାହିନୀରେ ଲେଫ୍‌ଟନାଣ୍ଟ କର୍ଣ୍ଣେଲ (Lieutenant Colonel) ଥିଲେ ଏବଂ ତାହା ଅଧିକାର କରିଲା ପରେ ତାଙ୍କୁ ବ୍ରିଗେଡ଼ିୟର ଜେନେରାଲ (Brigadier General) ପଦକୁ ଉନ୍ନୀତ କରାହୋଇଥିଲା । ଏହା ପରେ ପରେ ସେ ବିପ୍ଳବୀ ସେନାନାୟକମାନଙ୍କ ପରି ରୋବେସପିୟରଙ୍କ ଦଳ ସହିତ ରାଜନୀତିର ଖେଳ ଖେଳୁଥିବାରୁ ତାହାର ଅପଯଶରେ ଜଡ଼ିତ ହୋଇ ପଡ଼ିଥିଲେ । ତାଙ୍କ ପରି ଜଣେ ଦକ୍ଷ ସେନାନାୟକଙ୍କୁ ଗିଲୋଟିନକୁ ପଠାଇବା ସମୀଚୀନ ମନେକରାଯାଇନଥିଲା । ତେଣୁ ତାଙ୍କୁ କେବଳ ଆଠଦିନ ବନ୍ଦୀ ଭାବରେ ଜୀବନ ଯାପନ କରିବାକୁ ପଡ଼ିଥିଲା ।

ଏପର୍ଯ୍ୟନ୍ତ ତାଙ୍କପରି ଜଣେ ସୁବିଧାବାଦୀ ନିଜର ଦକ୍ଷତା ଦେଖାଇବାରେ ସକ୍ଷମ ହୋଇଥିଲେ ସତ କିନ୍ତୁ ସୌଭାଗ୍ୟବଶତଃ ସେ ଯେ କେତେଥର ବିପଦ ମୁହଁରୁ ଉଦ୍ଧାର ପାଇ ଯାଇଥିଲେ ତାହା କେହି ଅସ୍ୱୀକାର କରିପାରିବେ ନାହିଁ । ନେପୋଲିୟନ ନିଜକୁ ଏତେ ଶକ୍ତିଶାଳୀ ମନେକରୁଥିଲେ ଯେ ପଶ୍ଚିମରେ ଥିବା ସୈନ୍ୟବାହିନୀର ଭାର ନେବାକୁ ସେ ସରକାରଙ୍କୁ ରୋକଠୋକ ମନା କରିଦେଇଥିଲେ । ତାଙ୍କର ଏ ଅବାଧ୍ୟତା ପାଇଁ ତାଙ୍କୁ ସାମୟିକ ପଦଚ୍ୟୁତ କରାଯାଇଥିଲା । ମନେହେଲା, ଯେପରି ତାଙ୍କର କାର୍ଯ୍ୟକାଳ ହଠାତ୍‌ ଶେଷ ହୋଇଗଲା; କିନ୍ତୁ ୧୭୯୫ ମସିହା ଅକ୍‌ଟୋବର ୫ ତାରିଖରେ ବା ତ୍ରୟୋଦଶ ଭେଣ୍ଡିମିଆର (13th Vendimiaire)ର ଘଟଣା ତାଙ୍କ ଭାଗ୍ୟକୁ ପୁନଃ ପରିବର୍ତ୍ତନ କରିବାରେ ବିଶେଷ ସାହାଯ୍ୟ କରିଥିଲା । ସେ ସେଦିନ ଜାତୀୟ କନ୍‌ଭେନସନ୍‌ ବିରୁଦ୍ଧରେ ହୋଇଥିବା ବିଦ୍ରୋହକୁ ଦମନ କରି ତାକୁ ବିପଦରୁ ରକ୍ଷା କରିଥିଲେ । ତାଙ୍କର ଏହି ସେବା ଫଳରେ କନ୍‌ଭେନସନ୍‌ ଏକ ନୂତନ ସମ୍ବିଧାନ ପ୍ରସ୍ତୁତ କରିବାକୁ ଏବଂ ସାଧାରଣତନ୍ତ୍ର ସରକାର ଗଠନ କରିବାକୁ ସକ୍ଷମ ହୋଇଥିଲା । ନେପୋଲିୟନଙ୍କର ଏହି କାର୍ଯ୍ୟପାଇଁ ତାଙ୍କୁ ଅବିଳମ୍ବେ ଆଭ୍ୟନ୍ତରୀଣ ସୈନ୍ୟବାହିନୀର ସେନାନାୟକ ପଦରେ ନିଯୁକ୍ତ କରାଯାଇଥିଲା । ତା' ପରେ ତାଙ୍କୁ ଇଟାଲୀ ଅଭିଯାନ ପାଇଁ ଉଦ୍ଦିଷ୍ଟ ସେନାବାହିନୀର ସେନାପତି ପଦରେ ବରଣ କରାଯାଇଥିଲା । କାରନଟ୍‌ (Carnot) ନେପୋଲିୟନ

ବୋନାପାର୍ଟଙ୍କ ଦ୍ୱାରା ଇଟାଲୀ ଅଧିକାର ପାଇଁ ପ୍ରସ୍ତୁତ ହୋଇଥିବା ଯୋଜନା ଦେଖି ତାଙ୍କର ଅସାଧାରଣ ଶକ୍ତିର ପରିଚୟ ପାଇଥିଲେ ଏବଂ ତାଙ୍କରି ଯୋଗୁଁ ନେପୋଲିୟନ ଏହି ନିଯୁକ୍ତି ପାଇ ପାରିଥିଲେ । କାରନଟ୍ ଅଷ୍ଟ୍ରୀୟମାନଙ୍କ ଉପରେ ଦ୍ୱୈତ (double) ଆକ୍ରମଣର (ଗୋଟିଏ ସୈନ୍ୟବାହିନୀ ଜର୍ମାନୀ ମଧ୍ୟ ଦେଇ ଅନ୍ୟଟି ଇଟାଲୀ ମଧ୍ୟ ଦେଇ) ଯୋଜନା କରିଥିଲେ । ଜର୍ମାନୀ ଅଭିଯାନର ଭାର ଜୌରଡାନ୍ (Jourdan) ଏବଂ ମୋରିଓ (Moreau)ଙ୍କ ଉପରେ ପଡ଼ିଥିଲା ଏବଂ ଇଟାଲୀୟ ଅଭିଯାନର ଭାର ସେନାପତି ନେପୋଲିୟନ ବୋନାପାର୍ଟଙ୍କ ଉପରେ ନ୍ୟସ୍ତ କରି ଯାଇଥିଲା ।

## ନେପୋଲିୟନଙ୍କର ଇଟାଲୀ ଅଭିଯାନ
## (The Italian campaign of Napoleon)

ନେପୋଲିୟନ ଯେତେବେଳେ ଇଟାଲୀ ସେନାବାହିନୀର ନେତୃତ୍ୱ ନେଲେ, ସେତେବେଳକୁ ଅଷ୍ଟ୍ରିୟା ଓ ସାର୍ଡିନିୟାର ସୈନ୍ୟବାହିନୀ ଇଟାଲୀୟ ରିଭିଏରା (Riviera)ର ସାଭୋନା (Savona) ପର୍ଯ୍ୟନ୍ତ ଦଖଲ କରିନେଲାପରେ ସେମାନଙ୍କୁ ଏପିନାଇନ୍ସ (Apennines) ପର୍ବତମାଳା ନିକଟରେ ଅବସ୍ଥାପିତ କରାଯାଇଥିଲା । ସେ ଇଟାଲୀରେ ପହଞ୍ଚି ଦେଖିଲେ ଯେ ଇଟାଲୀରେ ରହିଥିବା ଫରାସୀ ସେନାଦଳ ଶୋଚନୀୟ ଅବସ୍ଥାରେ ଅଛନ୍ତି । ତାର ସଂଖ୍ୟା ମାତ୍ର ୩୬୦୦୦ ଥିଲା ଓ ସେମାନେ ଭଲ ଗଣ୍ଡେ ଖାଇବାକୁ, ଭଲ ଖଣ୍ଡେ ପିନ୍ଧିବାକୁ ପାଉନଥିଲେ; କିନ୍ତୁ ନେପୋଲିୟନ ତାଙ୍କ ଫରାସୀ ସୈନ୍ୟମାନଙ୍କୁ ପ୍ରେରଣା ଦେବାପାଇଁ ତାଙ୍କ ଅଭିଭାଷଣରେ କହିଥିଲେ, 'ସୈନ୍ୟଗଣ, ମୁଁ ତୁମମାନଙ୍କୁ ପୃଥିବୀର ସବୁଠାରୁ ଉର୍ବର ଭୂଖଣ୍ଡକୁ ପରିଚାଳିତ କରିନେବି । ସେଠାରେ ତୁମ୍ଭେମାନେ ଧନ, ମାନ ଓ ଗୌରବର ଅଧିକାରୀ ହେବ ।' ('Soldiers, I am to lead you into the most fertile plains in the world. There you will find honour, glory and riches.') ଏହି ପ୍ରତିଶ୍ରୁତି ଯୁଦ୍ଧର ଗତିକୁ ବଦଳାଇ ଦେଇଥିଲା ।

ମିତ୍ର ସୈନ୍ୟବାହିନୀଗୁଡ଼ିକର ସମସ୍ତ ପ୍ରକାର ଯୋଗାଯୋଗକୁ ବିଚ୍ଛିନ୍ନ କରିବା ନେପୋଲିୟନଙ୍କର ପ୍ରଥମ ଲକ୍ଷ୍ୟ ଥିଲା । ମାର୍ଚ୍ଚମାସ ଶେଷ ଆଡ଼କୁ ନାଇସ୍ ପରିତ୍ୟାଗ କରି ସେ ମଣ୍ଟେନୋଟ୍ (Montenotte) ଠାରେ ଅଷ୍ଟ୍ରୀୟମାନଙ୍କ ଉପରେ ପ୍ରଥମ ବିଜୟ ହାସଲକରିବା ଫଳରେ ତାଙ୍କପାଇଁ ଏପିନାଇନ୍ସ ଉନ୍ମୁକ୍ତ ହୋଇଗଲା । ତିନଦିନ ପରେ ତାଙ୍କର ଦ୍ୱିତୀୟ ବିଜୟ ଫଳରେ ମିତ୍ର ସେନାବାହିନୀଗୁଡ଼ିକ ବିଚ୍ଛିନ୍ନ ହୋଇପଡ଼ିଥିଲେ । ନେପୋଲିୟନ ଦ୍ରୁତଗତିରେ ଅଗ୍ରସର ହୋଇ ଅପ୍ରତ୍ୟାଶିତ ଭାବରେ ଟୁରିନ୍ (Turin) ଫାଟକ ନିକଟରେ ପହଞ୍ଚି ଯାଇଥିଲେ ଏବଂ ସାର୍ଡିନିୟାର ସେନାବାହିନୀକୁ ୧୭୯୬ ମସିହା ଅପ୍ରେଲ ୨୨ ତାରିଖ ଦିନ ମନ୍ଡୋଭି (Mondovi) ଯୁଦ୍ଧରେ ପରାସ୍ତ କରିଥିଲେ,

ଓ ସେହି ମାସ ୨୮ ତାରିଖ ଦିନ ଚେରାସ୍କୋ (Cherasco) ସନ୍ଧି ସ୍ୱାକ୍ଷର କରି ସାଭୟ ଓ ନାଇସ୍ ତାଙ୍କୁ ସମର୍ପଣ କରିବାକୁ ସାର୍ଡିନିଆକୁ ବାଧ୍ୟ କରିଥିଲେ । ତା'ପରେ ଅଷ୍ଟ୍ରୀୟମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ବିପଜ୍ଜନକ ଆଗ୍ନେୟାସ୍ତ୍ର ବ୍ୟବହାର କରା-ଯାଉଥିବା ସତ୍ତ୍ୱେ ୧୭୯୬ ମସିହା ମେ ମାସ ୧୦ ତାରିଖ ଦିନ ଲୋଦି ସଂଗ୍ରାମରେ ଏକ ବିରାଟ ବିଜୟ ହାସଲ କରିଥିଲେ । ତା ପରେ ଲୋଦି ପୋଲ୍ (bridge) ପାର ହୋଇ ବିଜୟ ଗର୍ବରେ ମିଲାନରେ ପ୍ରବେଶ କରିଥିଲେ ଓ ଲମ୍ବାର୍ଡି (Lombardy)ର ପ୍ରଧାନ ପ୍ରଧାନ ସହରଗୁଡ଼ିକ ଅଧିକାର କରିନେଇ ଅଷ୍ଟ୍ରୀୟମାନଙ୍କୁ ସେଠାରୁ ବିତାଡ଼ିତ କରିଥିଲେ । ସେ ଗୁରୁକଳାର ଅନେକ ମୂଲ୍ୟବାନ ବସ୍ତୁ ଓ ପ୍ରଚୁର ଅର୍ଥ ସଂଗ୍ରହ କରି ପ୍ୟାରିସ୍‌କୁ ପଠାଇଥିଲେ । ନେପୋଲିୟନଙ୍କଠାରୁ ଲମ୍ବାର୍ଡି ଉଦ୍ଧାର କରିବାପାଇଁ ଅଷ୍ଟ୍ରୀୟା ପୁନର୍ବାର ଉଦ୍ୟମ କରିଥିଲା ।

ଅଷ୍ଟ୍ରୀୟମାନେ ଲମ୍ବାର୍ଡିରୁ ବିତାଡ଼ିତ ହେଲାପରେ ମାଣ୍ଟୁଆ (Mantua) ଦୁର୍ଗରେ ଆଶ୍ରୟ ନେଇଥିଲେ । ନେପୋଲିୟନ ଏ ସମ୍ବାଦ ପାଇ ମାଣ୍ଟୁଆ ଅବରୋଧ କରିଥିଲେ । ଇତିମଧ୍ୟରେ ଅଷ୍ଟ୍ରିୟାର ମାର୍ଶାଲ ଉର୍ମସର (Wurmser) ୬୦,୦୦୦ ସୈନ୍ୟ ଧରି ଟ୍ରେଣ୍ଟ (Trent) ଠାରୁ ଯାତ୍ରା କରିଥିଲେ ଏବଂ ନେପୋଲିୟନଙ୍କୁ ମାଣ୍ଟୁଆ ଅବରୋଧ ଉଠାଇ ନେବାପାଇଁ ବାରମ୍ବାର ଚାପ ଦେଇଥିଲେ; କିନ୍ତୁ ଧାରାବାହିକ ଦୁଇଟି ଯୁଦ୍ଧରେ ପରାସ୍ତ ହେଲାପରେ ଯାଇଁ ତାଙ୍କୁ ତାଙ୍କର ଅବଶିଷ୍ଟ ସୈନ୍ୟମାନଙ୍କ ସହିତ ମାଣ୍ଟୁଆ ଦୁର୍ଗରେ ଆଶ୍ରୟ ନେବାପାଇଁ ବାଧ୍ୟ କରାଯାଇଥିଲା । ଅଷ୍ଟ୍ରିୟା ପୁନର୍ବାର ୫୦,୦୦୦ ସୈନ୍ୟଙ୍କୁ ନେପୋଲିୟନଙ୍କ ବିରୁଦ୍ଧରେ ପଠାଇଥିଲା । ନେପୋଲିୟନ ପ୍ରଥମେ ପରାଜିତ ହୋଇଥିଲେ ସତ କିନ୍ତୁ ତିନିଦିନ ଭୟାବହ ସଂଗ୍ରାମ ପରେ ଆରକୋଲା (Arcola) ଠାରେ ଏକ ବଡ଼ ଧରଣର ବିଜୟ ହାସଲ କରିଥିଲେ । ଏ ସଂଗ୍ରାମରେ ନେପୋଲିୟନ ତାଙ୍କର ପ୍ରାୟ ସମସ୍ତ ବିଶ୍ୱସ୍ତ ସେନାନାୟକଙ୍କୁ ହରାଇଥିଲେ ସତ କିନ୍ତୁ ଏଥିରେ ତାଙ୍କ ଅଭିଯାନର ଭାଗ୍ୟ ନିର୍ଣ୍ଣୟ ହୋଇଥିଲା ।

ଅଷ୍ଟ୍ରିୟା ପୁନର୍ବାର ନେପୋଲିୟନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲା । ଅଷ୍ଟ୍ରିୟାର ସେନାପତି ଆଲଭିନଜି (Alvinzi) ୫୦ରୁ ୭୦ହଜାରଯାଏଁ ସୈନ୍ୟ ନେଇ ଟାଇରଲ (Tyrol)ରୁ ଆକ୍ରମଣ ଚଳାଇଥିଲେ; କିନ୍ତୁ ଦୁର୍ଭାଗ୍ୟବଶତଃ ୧୭୯୭ ମସିହା ଜାନୁୟାରୀ ୧୪ ତାରିଖ ଦିନ ରିଭୋଲି (Rivoli) ଠାରେ ଶେଷ ଏବଂ ଚୂଡ଼ାନ୍ତ ସଂଗ୍ରାମରେ ନେପୋଲିୟନଙ୍କ ସୈନ୍ୟଦ୍ୱାରା ତାଙ୍କ ସୈନ୍ୟମାନେ ଛିନ୍ନଭିନ୍ନ ହୋଇ ଯାଇଥିଲେ । ତହିଁପରେ ମାଣ୍ଟୁଆକୁ ରକ୍ଷାକରିବା ଆଶା ସମ୍ପୂର୍ଣ୍ଣ ଲୋପ ପାଇଗଲା । ଅବିଳମ୍ବେ ମାଣ୍ଟୁଆ ନେପୋଲିୟନଙ୍କର ଅଧୀନତା ସ୍ୱୀକାର କରିଥିଲା । ନେପୋଲିୟନ ଭେନିସ (Venice) ମଧ୍ୟ ଅଧିକାର କରିଥିଲେ; କିନ୍ତୁ ଅଷ୍ଟ୍ରିୟା ସହିତ ସନ୍ଧି ହେବାରେ ବିଳମ୍ବ ଘଟିଥିଲା । ଅଷ୍ଟ୍ରିୟାକୁ ସନ୍ଧି କରିବାକୁ ବାଧ୍ୟ କରିବାପାଇଁ ନେପୋଲିୟନ ଇଟାଲୀର ଉତ୍ତରପୂର୍ବ ଦେଇ ପୂର୍ବ ଆଲପସ୍ (Alps) ପର୍ବତମାଳା ଭିତରକୁ ଜୋର ଜବରଦସ୍ତି ପ୍ରବେଶ

କରିଥିଲେ ଏବଂ ଲାଇବାଖ୍ (Laibach) ସହରରେ ପହଞ୍ଚି ଯାଇଥିଲେ । ନେପୋଲିୟନଙ୍କର ନିଜ ସ୍ଥିତି ମଧ୍ୟ ସଂକଟପୂର୍ଣ୍ଣ ଥିଲା । ଫରାସୀମାନଙ୍କର ଜର୍ମାନୀରେ ଅଗ୍ରଗତି କୌଣସି ପ୍ରକାରେ ନେପୋଲିୟନଙ୍କର ଇଟାଲୀରେ ଦ୍ରୁତଗତିର ଅନୁରୂପ ହୋଇନଥିଲା । ତେଣୁ ତାଙ୍କର ସ୍ଥିତି ଏବଂ ଫ୍ରାନ୍ସର ପ୍ରୟୋଜନୀୟତା ଦୃଷ୍ଟିରୁ ସେ ଅଷ୍ଟ୍ରିୟାର ଆର୍କଡ୍ୟୁକ ଚାର୍ଲସଙ୍କୁ ଯୁଦ୍ଧ ବନ୍ଦ କରିବାପାଇଁ ଆବେଦନ କରିଥିଲେ । ୧୭୯୭ ମସିହା ଅପ୍ରେଲ ମାସରେ ଲିଓବେନ୍ ଠାରେ (Leoben) ଯୁଦ୍ଧ ବିରାମ (armistice) ବ୍ୟବସ୍ଥା କରାଯାଇଥିଲା । ଯଦିଓ ପ୍ରାରମ୍ଭିକ ସର୍ତ୍ତଗୁଡ଼ିକ ସ୍ୱାକ୍ଷର ହୋଇଥିଲା, ସେଗୁଡ଼ିକ ଅନ୍ତତଃ କିଛିଦିନ ଯାଏଁ ଏକ ପୂର୍ଣ୍ଣାଙ୍ଗ ସନ୍ଧିରେ ବିକଶିତ ହୋଇପାରିନଥିଲା । ଅଷ୍ଟ୍ରୀୟମାନେ ପରାଜୟ ସ୍ୱୀକାର କରିବାପାଇଁ ରାଜି ହୋଇନଥିଲେ; କାରଣ ସେମାନେ ପ୍ୟାରିସ୍‌ରେ ଘଟଣାଗୁଡ଼ିକ ଅନୁଧ୍ୟାନ କରୁଥିଲେ ଏବଂ ରାଜାଙ୍କ ସପକ୍ଷରେ ସେଠାରେ ବିପ୍ଳବ ହେବାର ସେମାନଙ୍କର ଆଶା ଥିଲା; କିନ୍ତୁ ସେ ଆଶା କିଛିଦିନ ପରେ ହତାଶାରେ ପରିଣତ ହୋଇଥିଲା । ଫରାସୀ ସେନାବାହିନୀଗୁଡ଼ିକ ଆଡ୍ରିଆଟିକ (the Adriatic)ର ପୂର୍ବପଟେ ଚାପଦେବା ସଙ୍ଗେ ସଙ୍ଗେ ଡାନ୍ୟୁବ୍ (the Danube) ଉପରେ ମଧ୍ୟ ଚାପ ଦେଉଥିଲେ । ନେପୋଲିୟନ ଯେତେବେଳେ ଆଲ୍ପସ୍ (the Alps) ଅତିକ୍ରମ କରି ଦ୍ରୁତଗତିରେ ଭିଏନା ନିକଟରେ ପହଞ୍ଚିଥିଲେ, ସେତେବେଳେ ସମ୍ରାଟ ଦ୍ୱିତୀୟ ଫ୍ରାନ୍ସିସ୍ (Francis II) ନେପୋଲିୟନଙ୍କର ଏପରି କ୍ଷିପ୍ରଗତି ଦେଖି ଆତଙ୍କିତ ହୋଇ ପଡ଼ିଥିଲେ । ତେଣୁ ସେ ନେପୋଲିୟନଙ୍କ ସହିତ ୧୭୯୭ ମସିହା ଅକ୍ଟୋବର ୧୭ ତାରିଖ ଦିନ କେମ୍ପୋ ଫର୍ମିଓ ସନ୍ଧି (The Treaty of Campo Formio) ନାମକ ଶାନ୍ତିଚୁକ୍ତି ସ୍ୱାକ୍ଷର କରିଥିଲେ ।

ଏ ଚୁକ୍ତିରେ ଉଭୟ ଗୁପ୍ତ ଓ ପ୍ରକାଶ୍ୟ ସର୍ତ୍ତମାନ ଥିଲା । ପ୍ରକାଶ୍ୟ ସର୍ତ୍ତଗୁଡ଼ିକ ଅନୁସାରେ ଅଷ୍ଟ୍ରିୟା ଫ୍ରାନ୍ସକୁ ବେଲଜିୟମ ଅର୍ପଣ କରିଥିଲା । ସିସାଲପାଇନ (Cisalpine) ନାମକ ଏକ ସାଧାରଣତନ୍ତ୍ର ରାଷ୍ଟ୍ର ଉତ୍ତର ଇଟାଲୀରେ ପ୍ରତିଷ୍ଠା କରାଯାଇଥିଲା ଓ ଫ୍ରାନ୍ସ ଆୟୋନୀୟ ଦ୍ୱୀପପୁଞ୍ଜ (Ionian Islands) ଲାଭକଲା । ଅନ୍ୟ ଦିଗରେ ଅଷ୍ଟ୍ରିୟାକୁ ଭେନିସ (Venice) ଓ ଇଟାଲୀରେ ଥିବା ତାର ସମଗ୍ର ଅଞ୍ଚଳ ଓ ଆଡ୍ରିଆଟିକ୍ ଅଧିକାର କରି ରହିବାପାଇଁ ଅନୁମତି ଦିଆଯାଇଥିଲା । କୋଷରେ ରାସ୍ଟାଟ (Rastatt) ଠାରେ ଏକ କଂଗ୍ରେସ ଆହ୍ୱାନ କରାଯିବାର ସ୍ଥିର କରାଯାଇଥିଲା ଏବଂ ସେଠାରେ ଫରାସୀ ପ୍ରତିନିଧି ଓ ଅଷ୍ଟ୍ରିୟା ସାମ୍ରାଜ୍ୟର ପ୍ରତିନିଧିମାନଙ୍କ ମଧ୍ୟରେ ଜର୍ମାନୀ ସଂକ୍ରାନ୍ତ ବ୍ୟାପାରଗୁଡ଼ିକ ଏକତ୍ର ମନ୍ତ୍ରଣାଦ୍ୱାରା ମୀମାଂସା କରାଯିବାପାଇଁ ବ୍ୟବସ୍ଥା ହୋଇଥିଲା ।

ଏହି ପ୍ରକାଶ୍ୟ ସର୍ତ୍ତଗୁଡ଼ିକ ବ୍ୟତୀତ କେତେଗୁଡ଼ିଏ ଗୁପ୍ତ ସର୍ତ୍ତ ମଧ୍ୟ ଏହି ଚୁକ୍ତି ଅନ୍ତର୍ଭୁକ୍ତ ଥିଲା । ଗୁପ୍ତ ସର୍ତ୍ତଗୁଡିକ ଅନୁସାରେ ଅଷ୍ଟ୍ରିୟାର ସମ୍ରାଟ ରାଇନ ନଦୀର ବାମତଟରେ ଅବସ୍ଥିତ ବଡ଼ ବଡ଼ ଜିଲ୍ଲାଗୁଡିକ ଫ୍ରାନ୍ସକୁ ସମର୍ପଣ କରିବାକୁ ପ୍ରତିଶ୍ରୁତି

ଦେଲେ । ଏପରି କରିବାଦ୍ୱାରା ସାମ୍ରାଜ୍ୟର ପ୍ରତିରକ୍ଷା ବ୍ୟାହତ ହେଉଥିବାରୁ ଅଷ୍ଟ୍ରିୟାର ସମ୍ରାଟ ଏ ବିଷୟ ସାଧାରଣରେ ସ୍ୱୀକାର କରିବାକୁ ଲଜ୍ଜାବୋଧ କରିଥିଲେ । ଫ୍ରାନ୍ସ ମଧ କଥାଦେଲା ଯେ ଅଷ୍ଟ୍ରିୟା ସାଲଜବର୍ଗ (Salzburg) ନାମକ ଏକ ଧର୍ମିରାଷ୍ଟ୍ର ଓ ବେଭେରିଆର ଏକ ଅଂଶ ଲାଭକରିବ । ତା ଛଡ଼ା ଜର୍ମାନୀ ବିଷୟ ନିଷ୍ପତ୍ତି ନେଲାବେଳେ ଅଷ୍ଟ୍ରିୟାର ବୈଦେଶିକ୍ୟୁସିୟା କୌଣସି କ୍ଷତିପୂରଣ ପାଇବନାହିଁ ବୋଲି ଫ୍ରାନ୍ସ ପ୍ରତିଶ୍ରୁତି ଦେଲା । ଏହିପରି ହେଲା କ୍ୟାମ୍ପୋ ଫରମିଓ ସନ୍ଧି ସର୍ତ୍ତାବଳୀ ।

ପୋପ୍‌ଙ୍କ ପ୍ରଭୁତ୍ୱ ଉପରେ ଆକ୍ରମଣ କରିବାର ସିଦ୍ଧାନ୍ତ ନେପୋଲିୟନଙ୍କର ଇଟାଲୀୟ କାର୍ଯ୍ୟ ସୂଚୀରେ ଅନ୍ତର୍ଭୁକ୍ତ କରାଯାଇଥିଲା । ସେ ପୋପ୍‌ଙ୍କ ଅଞ୍ଚଳ ଗୁଡ଼ିକ ( Popal States) ଆକ୍ରମଣ କରି ତାଙ୍କ ସେନାବାହିନୀକୁ ପରାସ୍ତ କରିଥିଲେ ଏବଂ ପୋପ୍‌ଙ୍କୁ ୧୭୯୭ ମସିହା ଫେବୃୟାରୀ ମାସରେ ଟୋଲେନ ଟିନୋ ସନ୍ଧି (Treaty of Tolentino) ଗ୍ରହଣ କରିବାକୁ ବାଧ କରିଥିଲେ । ଏହି ସନ୍ଧି ଅନୁଯାୟୀ ପୋପ୍ ଫ୍ରାନ୍ସକୁ ଏଭିଗନନ୍ (Avignon) ଏବଂ ସିସାଲପାଇନ୍ ସାଧାରଣତନ୍ତ୍ର (The Cisalpine Republic)କୁ ବୋଲଗ୍ନା (Bologna), ଫେରରା (Ferrara) ଓ ରୋମାଗ୍ନା (Romagna) ସମର୍ପଣ କରିଥିଲେ ।

ତା ଛଡ଼ା ପୋପ୍ ନିରପେକ୍ଷ ନୀତି ଅବଲମ୍ବନ କରିବା ପାଇଁ ଏବଂ ନବ ପ୍ରତିଷ୍ଠିତ ସାଧାରଣତନ୍ତ୍ର ରାଷ୍ଟ୍ରଗୁଡ଼ିକୁ ସ୍ୱୀକାର କରିବା ପାଇଁ ରାଜିହେଲେ ।

ନେପୋଲିୟନଙ୍କର ଇଟାଲୀୟ ଅଭିଯାନ ଡାଇରେକ୍‌ଟୋରି ସରକାରଙ୍କର ନିର୍ଦ୍ଦେଶରେ ହୋଇଥିଲା । ନେପୋଲିୟନ ୧୭୯୬-୯୭ ମସିହାରେ ପର୍ଯ୍ୟାୟକ୍ରମେ ସେଠାରେ ଚମତ୍କାରିକ ବିଜୟମାନ ହାସଲ କରିଥିଲେ; ଯାହା ଫଳରେ କି ପ୍ରଥମ ଶକ୍ତି ମେଣ୍ଟର (The first coalition) ଅବସାନ ଘଟିଥିଲା ଓ ବ୍ରିଟେନ୍ ବ୍ୟତୀତ ଅନ୍ୟ ଇଉରୋପୀୟ ଶକ୍ତି ମାନଙ୍କ ସହିତ ସନ୍ଧି ସ୍ୱାକ୍ଷର ହେଲା । ପୂର୍ବରୁ କୌଣସି ସେନାନାୟକ ନେପୋଲିୟନଙ୍କ ପରି ଯୁଦ୍ଧ କ୍ଷେତ୍ରରେ ଏପରି ଉଲ୍ଲେଖଯୋଗ୍ୟ ଖ୍ୟାତି ଅର୍ଜନ କରିନଥିଲେ ।

ନେପୋଲିୟନ କେବଳ ଜଣେ ସୌଭାଗ୍ୟଶାଳୀ ସେନାପତି ନ ଥିଲେ, ସେ ସରକାରଙ୍କର ବିନା ଅନୁମତିରେ ସନ୍ଧିପାଇଁ ପ୍ରତ୍ୟକ୍ଷ କଥାବାର୍ତ୍ତାର ଅଧିକାର ନିଜହାତକୁ ନେଇଥିଲେ । ଆହୁରି ମଧ ଫ୍ରାନ୍ସର ଶତ୍ରୁମାନଙ୍କ ଉପରେ ଯେଉଁ ସନ୍ଧି ସର୍ତ୍ତିଗୁଡ଼ିକ ଲଦି ଦିଆଯିବ, ସେଗୁଡ଼ିକ ସ୍ଥିର କରୁଥିଲେ । ଏକ ଘଟଣାରେ ଡାଇରେକ୍‌ଟୋରି ସରକାର ନେପୋଲିୟନଙ୍କ କାର୍ଯ୍ୟକୁ ଅଗ୍ରାହ୍ୟ କରିଦେବାରୁ ସେ ଏଥିରେ ବିଚଳିତ ନ ହୋଇ ତାର ଜବାବରେ ସେ ଘୋଷଣା କରିଥିଲେ ଯେ ସେନାବାହିନୀ ତାହା ଅନୁମୋଦନ କରିଛନ୍ତି । ଏକଦା ଡାଇରେକ୍‌ଟରମାନେ ନେପୋଲିୟନ ଓ ଅନ୍ୟ ଜଣେ ସେନାପତି ମଧ୍ୟରେ ନେତୃତ୍ୱ ଭାଗ କରିଦେବାପାଇଁ ଉଦ୍ୟମ କରିଥିଲେ; କିନ୍ତୁ ନେପୋଲିୟନ୍ ତାହା ଅଗ୍ରାହ୍ୟ କରିଦେବାରୁ ଶେଷରେ ସେମାନେ ସେ ଉଦ୍ୟମରୁ ବିରତ ହୋଇଥିଲେ । କାରଣ ସରକାରକୁ ଦେବାଳିଆ ଅବସ୍ଥାରୁ ରକ୍ଷାକରିବାପାଇଁ ନେପୋଲିୟନ୍ ଇଟାଲୀରୁ ପଠାଉଥିବା ଲୁଣ୍ଠିତ ଦ୍ରବ୍ୟଗୁଡ଼ିକ

ଉପରେ ସେମାନଙ୍କୁ ନିର୍ଭର କରିବାକୁ ପଡ଼ୁଥିଲା, ଆତୁର ମଧ୍ୟ ଏକ ଘଟଣାରେ ସେମାନେ ସେମାନଙ୍କର ଦୋହଲି ଯାଉଥିବା ସ୍ଥିତିକୁ ସମ୍ଭାଳିବାପାଇଁ ନେପୋଲିୟନଙ୍କ ସାହାଯ୍ୟ ଗୁହିଁଥିଲେ । ୧୭୯୭ ମସିହାରେ ସେ ଦୁଇଟି ପରିଷଦର ଆନ୍ଦୋଳନ ବିରୁଦ୍ଧରେ ସେମାନଙ୍କୁ ସାହାଯ୍ୟ କରିବାପାଇଁ ତାଙ୍କର ବନ୍ଧୁ ଅଗେରିଓ (Augereau)ଙ୍କୁ ପଠାଇଥିଲେ । ଏକଥା ନିର୍ଘଟ ସତ୍ୟ ଯେ ଡାଇରେକ୍ଟୋରି ସରକାର ତାହାର ସ୍ୱାଧୀନତାକୁ ପ୍ରତିପାଦିତ କରିବାପାଇଁ ସେନାବାହିନୀର ସମର୍ଥନ ଉପରେ ବିଶେଷ ନିର୍ଭର କରୁଥିଲା । ନେପୋଲିୟନ ଯେଉଁ କ୍ଷମତା ଅଧିକାର କରିଥିଲେ, ସେ ବିଷୟରେ ତାଙ୍କର ଆଦୌ ଭ୍ରମ ଧାରଣା ନ ଥିଲା । ସେ ଥରେ ତାଙ୍କ ବନ୍ଧୁଙ୍କୁ କହିଥିଲେ, "ତମେ କଣ ଭାବୁଛ ଯେ ମୁଁ ଇଟାଲୀରେ ଯେଉଁ ବିଜୟ ସବୁ ହାସଲ କରୁଛି, ସେ ସବୁ କଣ ଡାଇରେକ୍ଟୋରିସ୍ଥ ଆଇନଜୀବୀମାନଙ୍କର ସୁବିଧା ପାଇଁ କରୁଛି···ଆମ୍ଭେମାନେ ଯେଉଁ ସବୁ ବିଜୟ ହାସଲ କରିଛୁ, ସେସବୁ ପ୍ରତ୍ୟେକ ଫରାସୀ ସୈନ୍ୟର ପ୍ରକୃତ ଚରିତ୍ର ପ୍ରତିଫଳିତ କରିଛି । ସେଥିପାଇଁ ମୁଁ ପ୍ରତ୍ୟେକଙ୍କ ନିକଟରେ ସବୁ ବିଷୟରେ ଋଣୀ । ଆଚ୍ଛା ଡାଇରେକ୍ଟୋରି ସରକାର ମୋତେ ମୋର ନେତୃତ୍ୱରୁ ବଞ୍ଚିତ କରିବାକୁ ଚେଷ୍ଟା କରନ୍ତୁ ତ ଦେଖିବେ ସେମାନେ, ପ୍ରକୃତ ପ୍ରଭୁ କିଏ ।"

(To a friend he said, "Do you suppose that I am gaining my victories in Italy in order to advance the lawyers of the Directory···. The victories we have gained have given the French soldier his true character. I owe everything to him. Let the Directory attempt to deprive me of my Command and they will see who is master.")

ନେପୋଲିୟନ ଏପରି କହିବାର ତାତ୍ପର୍ଯ୍ୟ ହେଉଛି ଯେ ସେ ଫ୍ରାନ୍ସର ପରିସ୍ଥିତି ଯଥାର୍ଥରେ ଅନୁଭବ କରିପାରିଥିଲେ । ସେ ଜାଣିଥିଲେ ଯେ ଏଥି ମଧ୍ୟରେ ଫ୍ରାନ୍ସର ବେସାମରିକ ସରକାର ସେନାବାହିନୀର ବାହୁଛାୟାତଳେ ଆଶ୍ରୟ ନେଇସାରିଛନ୍ତି । ସେତେବେଳକୁ ନେପୋଲିୟନ୍ ତାଙ୍କ ଜୀବନର କାର୍ଯ୍ୟକଳାପ ( Career ) ଆରମ୍ଭ କରୁଥାନ୍ତି । ଏକଥା ସତ୍ୟ ଯେ ସାମରିକ ଗୌରବ ତାଙ୍କ ପାଇଁ ବିଶେଷ ଆକର୍ଷଣୀୟ ହୋଇଥିଲା ଯଦିଓ ରାଜନୈତିକ ଜୀବନ ସାହାର ପଥ ତାଙ୍କ ପାଇଁ ଉନ୍ମୁକ୍ତ ରହିଥିଲା । ଇଟାଲୀରେ ଶାନ୍ତି ପ୍ରତିଷ୍ଠା ହେବାପରେ ସେ ମିଲାନ ନିକଟରେ ଏକ ମନୋରମ ଦୁର୍ଗରେ ବାସ କରୁଥିଲେ ଓ ସେଠାରେ ସେ ଇଟାଲୀର ଶାସନାଞ୍ଚଳ ଗ୍ରହଣ କରିଥିଲେ । କେତେକ ତାଙ୍କୁ ପ୍ରଶ୍ନ କଲେ ଯେ ସେ କାହିଁକି ଇଟାଲୀରୁ ତାଙ୍କର ବିଜୟୀ ସେନାବାହିନୀ ପରିଚାଳନା କରିନେଇ ସେଠାରେ ତାଙ୍କର ପୁରସ୍କାର ଦାବୀ କରୁ ନାହାନ୍ତି ? ସେ ଉତ୍ତରରେ ତାହା କରିବାକୁ ମନା କରିଦେଇଥିଲେ । ସେ କହିଲେ ଯେ 'ନାସ୍‌ପାତିଫଳ ଏପର୍ଯ୍ୟନ୍ତ ପରିପକ୍ୱ ହୋଇନାହିଁ; କିନ୍ତୁ ଯଦି ଏହା ଏ ପର୍ଯ୍ୟନ୍ତ ପରିପକ୍ୱ ହୋଇନାହିଁ, ଏହା ପରିପକ୍ୱ ହୋଇ ଆସୁଛି । ( He said that the pear was not yet ripe. But if it

was not yet ripe, it was ripening." ) ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ଯଥୋପଯୁକ୍ତ ସମୟ ଆସି ନଥିବାରୁ ସେ ଇଟାଲିକୁ ଯାଇ ବିପଦ ବରଣ କରିବାକୁ ଇଚ୍ଛା ନ ଥିଲେ ।

ଅଷ୍ଟ୍ରିଆକୁ ପରାସ୍ତ କରିଦେଲାପରେ ଇଂଲଣ୍ଡ ହେଉଛି ଏକମାତ୍ର ଶକ୍ତି ଯେ କି ଫ୍ରାନ୍ସ ସହିତ ଯୁଦ୍ଧରେ ଲିପ୍ତ ରହିଥିଲା । କ୍ୟାମ୍ପୋଫରମିଓ ସନ୍ଧି ଫଳରେ ଫ୍ରାନ୍ସର ଇଉରୋପ ମହାଦେଶରେ କୌଣସି ଶତ୍ରୁ ରହିଲେ ନାହିଁ କି ଇଂଲଣ୍ଡର ସେଠାରେ କୌଣସି ମିତ୍ର ରହିଲେନାହିଁ । ତେଣୁ ଇଂଲଣ୍ଡକୁ କେବଳ କ୍ରମାଗତ ବୃଦ୍ଧି ପାଉଥିବା ଫରାସୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ ଚଳାଇବାକୁ ପଡ଼ିଥିଲା । ଡାଇରେକ୍‌ଟୋରି ସରକାର ଦେଖିଲେ ଯେ ଇଂଲଣ୍ଡ ଅଜେୟ ଓ ଜଳରେ ଅଭେଦ୍ୟ ଶକ୍ତି ହୋଇ ରହିଛି । ତେଣୁ ଡାଇରେକ୍‌ଟୋରି ସରକାର ଇଂଲଣ୍ଡ ଆକ୍ରମଣ କରିବା ପାଇଁ ନିଷ୍ପତ୍ତି କଲେ ଏବଂ ନେପୋଲିୟନଙ୍କୁ ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇରହିଥିବା ସେନାବାହିନୀର ସେନାପତିପଦରେ ନିଯୁକ୍ତ କଲେ । ଫ୍ରାନ୍ସରେ ନେପୋଲିୟନ୍ ଅତିଶୟ ଜନପ୍ରିୟ ହୋଇ ପଡ଼ିଥିବାରୁ ଡାଇରେକ୍‌ଟରମାନେ ଏହି ବିଜୟୀ ବୀରଙ୍କର ଫ୍ରାନ୍ସ ପ୍ରତ୍ୟାବର୍ତ୍ତନ ଇଚ୍ଛୁ ନଥିଲେ; କାରଣ ତାହାଦ୍ୱାରା ସେମାନଙ୍କର ସ୍ଥିତି ବିପନ୍ନ ହେବାର ଆଶଙ୍କା ଥିଲା । ସେଥିପାଇଁ ସେ ନେପୋଲିୟନଙ୍କୁ ଯୁଦ୍ଧରେ ପ୍ରବୃତ୍ତ ରହିବା ପାଇଁ ଯୋଜନା କରିଥିଲେ । ତା ଛଡ଼ା ସେମାନେ ଭାବିଥିଲେ ଯେ ନେପୋଲିୟନ ଇଂଲଣ୍ଡ ଆକ୍ରମଣ କଲେ, ବିଜୟର ଆଶା ଖୁବ୍ କମ୍ ଯେହେତୁ ଇଂରେଜମାନଙ୍କୁ ନିଜ ଦେଶରେ ପରାସ୍ତ କରିବା ବଡ଼ କଠିନ । ସେମାନଙ୍କର ଅନ୍ୟ ଗୋଟିଏ ଉଦ୍ଦେଶ୍ୟ ହେଲା, ଯଦି ନେପୋଲିୟନ ଇଂଲଣ୍ଡ ଆକ୍ରମଣକରି ପରାଜିତ ହୁଅନ୍ତି, ତାହାହେଲେ ସେ ଅପମାନିତ ହେବେ ଏବଂ ଫ୍ରାନ୍ସରେ ତାଙ୍କର ପ୍ରତିପତ୍ତି କ୍ଷୁଣ୍ଣ ହେବ । ନେପୋଲିୟନ୍ ଡାଇରେକ୍‌ଟର ମାନଙ୍କର ଦୁରଭିସନ୍ଧି ଜାଣିପାରି ମତ ଦେଲେ ଯେ ଶକ୍ତିଶାଳୀ ନୌବାହିନୀ ବିନା ଇଂଲଣ୍ଡ ଉପରେ ପ୍ରତ୍ୟକ୍ଷ ଆକ୍ରମଣ କରିବା ଅବିବେକୀର କାର୍ଯ୍ୟ । ଅନ୍ୟ ଦିଗରେ ସେ ଡାଇରେକଟୋରି ସରକାରଙ୍କୁ ପ୍ରାଚ୍ୟ ଭୂଖଣ୍ଡର ଚାବି କୁହାଯାଉଥିବା ( key to the East ) ମିଶର ଅଧିକାର କରିବା ଉଦ୍ଦେଶ୍ୟରେ ଏକ ଅଭିଯାନ ପ୍ରସ୍ତୁତ ପାଇଁ ପରାମର୍ଶ ଦେଇଥିଲେ । ପରୋକ୍ଷରେ ଏହା ଇଂଲଣ୍ଡ ପ୍ରତି ଏକ ଦାରୁଣ ଆଘାତ ହେବ ବୋଲି ସେ ଜାଣିଥିଲେ । ସେ ମଧ୍ୟ ଜାଣିଥିଲେ ଯେ ମିଶର ଅଧିକାର ପ୍ରାଚ୍ୟ ଭୂଖଣ୍ଡରେ ଇଂଲଣ୍ଡର ଆଧିପତ୍ୟ କ୍ଷୁଣ୍ଣ କରିବା ସଙ୍ଗେ ସଙ୍ଗେ ତାର ବାଣିଜ୍ୟକୁ ମଧ୍ୟ ଧ୍ୱଂସ କରିଦେବ ଓ ପ୍ରାଚ୍ୟ ଭୂଖଣ୍ଡରେ ଇଂଲଣ୍ଡରେ କ୍ଷମତାର ଅବସାନ ଘଟିଲେ ସେ ବାଧ୍ୟ ହୋଇ ଫ୍ରାନ୍ସ ନିକଟରେ ଆତ୍ମସମର୍ପଣ କରିବ ।

ନେପୋଲିୟନଙ୍କ ପ୍ରସ୍ତାବ ଡାଇରେକ୍‌ଟରମାନେ ଗ୍ରହଣ କରିନେଇ ସ୍ୱସ୍ତିରେ ନିଃଶ୍ୱାସ ମାରିଥିଲେ । ତାଙ୍କର ଫରାସୀ ସେନାବାହିନୀରେ ପ୍ରାଧାନ୍ୟ ବିଶେଷ ରହିଥିବାରୁ ସେମାନେ ଭୟପାଇଯାଇଥିଲେ ଏବଂ ନେପୋଲିୟନ୍ ଫ୍ରାନ୍ସଠାରୁ ସର୍ବଦା ଦୂରରେ ରହିବା ସେମାନଙ୍କ ପକ୍ଷରେ ହିତକର ହେବ ବୋଲି ଭାବୁଥିଲେ । ନେପୋଲିୟନ ୧୭୯୮ ମସିହା

ମେ ମାସ ୧୯ ତାରିଖ ଦିନ ଏକ ନୌବାହିନୀରେ ୩୦,୦୦୦ ସୈନ୍ୟଙ୍କୁ ଧରି ଟୌଲନରୁ ମିଶର ଅଭିମୁଖେ ନୌଯାତ୍ରା ଆରମ୍ଭ କରିଥିଲେ । ତାଙ୍କର ମିଶର ଅଭିଯାନର ଗୋଟିଏ ଲକ୍ଷ ହେଲା, ଭାରତରେ ବ୍ରିଟିଶ ଶକ୍ତିକୁ ଧ୍ୱଂସ କରିଦେବା ଏବଂ ଅନ୍ୟ ଲକ୍ଷ୍ୟଟି ହେଲା, କନଷ୍ଟାଣ୍ଟିନୋପଲ ବାଟଦେଇ ଇଉରୋପକୁ ପଛପଟୁ ଅଧିକାର କରିନେବା । ପ୍ରାଚ୍ୟ ଭୂଖଣ୍ଡରେ ନେପୋଲିୟନଙ୍କର ଯେ ଅଭିପ୍ରାୟ ରହିଛି ତାହାର ସୂଚନା ମିଳିଥିଲା, ଯେତେବେଳେ ସେ ଇଟାଲି ଅଭିଯାନବେଳେ ଆଡ୍ରିଆଟିକର ବନ୍ଦର ଆନ୍‌କୋନା (Ancona) ଅଧିକାର କରି ନେଇଥିଲେ । କ୍ୟାମ୍ପୋଫରମିଓ ସନ୍ଧି ଫଳରେ ଆୟୋନିଆନ୍ ଦ୍ୱୀପପୁଞ୍ଜ (Ionian Islands) ଲାଭ କରିବା ଓ ତୁର୍କୀର ଆଲ୍‌ବେନିଆ ପ୍ରଜାମାନଙ୍କ ସହିତ ପତ୍ରାଳାପ ଚଳାଇବା ଘଟଣା ଦୁଇଟି ହେଲା ତୁର୍କୀରେ ତାଙ୍କର ଅଭିପ୍ରାୟ ସିଦ୍ଧିପାଇଁ ସୁଚିନ୍ତିତ ପଦକ୍ଷେପ । ପ୍ରାଚ୍ୟ ଯୋଜନା ଗୁଡ଼ିକୁ ରୂପ ଦେବା ଉଦ୍ଦେଶ୍ୟରେ ସେ ମିଶର ଅଭିଯାନର ଯୋଜନା କରିଥିଲେ । ସେ ତୁର୍କୀକୁ ଖଣ୍ଡବିଖଣ୍ଡ କରିଦେବାକୁ ଓ ଭାରତରୁ ଇଂରେଜମାନଙ୍କୁ ନିକାଲି ଦେବାକୁ ଚାହୁଁଥିବାରୁ ମିଶର ଅଧିକାର ଭାରତ ଓ ତୁର୍କୀ ବିରୁଦ୍ଧରେ ତାଙ୍କୁ ବହୁମୂଲ୍ୟ ଘାଟି ଯୋଗାଇଦେବ ବୋଲି ନେପୋଲିୟନ୍ ଆଶା ପୋଷଣ କରିଥିଲେ ।

ସେ ମିଶର ଅଭିଯାନରେ ଯିବା ବାଟରେ ମାଲ୍‌ଟା (Malta) ଅଧିକାର କରି ନେଇଥିଲେ । ସେ ୧୭୯୮ ମସିହା ଜୁନ୍ ମାସ ୩୦ ତାରିଖ ଦିନ ଆଲେକ୍‌ଜାଣ୍ଡ୍ରିଆ (Alexandria)ରେ ପହଞ୍ଚିଥିଲେ । ଆଲେକ୍‌ଜାଣ୍ଡ୍ରିଆ ଅଧିକାର କଲାପରେ ସେ କାଏରୋ (Cairo) ଆଡ଼କୁ ଅଗ୍ରସର ହେଲେ । ଜୁଲାଇ ମାସ ୩୧ ତାରିଖ ଦିନ ସେ ପିରାମିଡ୍ ଯୁଦ୍ଧରେ (The battle of the Pyramids) ଜୟଯୁକ୍ତ ହେବାଦ୍ୱାରା ଫରାସୀମାନେ ମିଶରର ଅଧିକାରୀ ହେଲେ; କିନ୍ତୁ ବ୍ରିଟିଶ ନୌସେନାପତି ଆଡ଼ମିରାଲ୍ ନେଲସନ୍ (Admiral Nelson) ମିଶରରେ ନେପୋଲିୟନଙ୍କର ପହଞ୍ଚିବାର ଖବର ପାଇ ଆଲେକଜାଣ୍ଡ୍ରିଆ ଅଭିମୁଖେ ଯାତ୍ରା କରିଥିଲେ । ସେ ଅଗଷ୍ଟ ପହିଲା ଦିନ ନୀଳନଦୀ ଯୁଦ୍ଧରେ (The Battle of the Nile) ଫରାସୀ ନୌବାହିନୀକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରି ଦେଇଥିଲେ । ନୀଳନଦୀ


[ ନୌ ସେନାଧକ୍ଷ ନେଲସନ ]

ଯୁଦ୍ଧର ଫଳାଫଳ ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ଯୁଦ୍ଧ ନେପୋଲିୟନଙ୍କ ସେନାବାହିନୀ ପୃଷ୍ଠଭଙ୍ଗ ଦେବାର ଶକ୍ତି ଅପହରଣ କରିବା ସଙ୍ଗେ ସଙ୍ଗେ ଇଜିପ୍ଟ ସହିତ ସେମାନଙ୍କର ସମସ୍ତ ଯୋଗାଯୋଗ ଛିନ୍ନ କରି ଦେଇଥିଲା । ଏହି ଯୁଦ୍ଧ ମଧ୍ୟ ବ୍ରିଟିଶ ଶକ୍ତିକୁ ଧ୍ୱଂସ କରିବାକୁ ଚାହୁଁଥିବା ମହୀଶୂରର ଟିପୁ ସୁଲତାନକୁ ଫରାସୀମାନଙ୍କଠାରୁ ସାହାଯ୍ୟ ପାଇବାରୁ ବଞ୍ଚିତ କରିଥିଲା । ଇଂରେଜମାନଙ୍କୁ ଭୂମଧ୍ୟସାଗରର ( The Mediterranean) ନିୟନ୍ତ୍ରଣ ଅଧିକାର ଦେଇଥିଲା ଏବଂ ବୃହତ୍ ଶକ୍ତିମାନଙ୍କୁ ଦ୍ୱିତୀୟ ଶକ୍ତିମେଣ୍ଟ ( Second coalition ) ଗଠନ କରିବାକୁ ପ୍ରେରଣା ଦେଇଥିଲା ।

ମିଶର ତୁର୍କୀର ଆଶ୍ରିତ ଦେଶ ହୋଇଥିବାରୁ ନେପୋଲିୟନଙ୍କର ମିଶର ଅଧିକାର ତୁର୍କୀର ସୁଲତାନଙ୍କୁ ଅତିଶୟ କ୍ଷୁବ୍ଧ କରିଥିଲା । ତେଣୁ ସେ କ୍ରୁଦ୍ଧହୋଇ ନେପୋଲିୟନଙ୍କ ବିରୁଦ୍ଧରେ ୧୭୯୮ ମସିହା ସେପ୍ଟେମ୍ବର ମାସରେ ଯୁଦ୍ଧ ଘୋଷଣା କରିଥିଲେ । ଏହା ଫଳରେ କାଏରୋରେ ଗଣ୍ଡଗୋଳ ଉପୁଜିଥିଲା । ନେପୋଲିୟନ୍ ସେ ଗଣ୍ଡଗୋଳକୁ ଦୃଢ଼ ହସ୍ତରେ ଦମନ କରିଥିଲେ । ସୈନ୍ୟମାନେ ସିରିଆରେ ଠୁଳ ହୋଇଥିବାରୁ ସେ ତୁର୍କୀଠାରୁ ଆକ୍ରମଣର ପ୍ରତ୍ୟାଶା କରି ସିରିଆ ଆକ୍ରମଣ କଲେ । ସେ ୧୭୯୯ ମସିହା ଫେବ୍ରୁୟାରୀ ମାସରେ ୧୦,୦୦୦ ସୈନ୍ୟଙ୍କୁ ପରିଚାଳିତ କରି ମରୁଭୂମି ଅତିକ୍ରମ କରିଥିଲେ ଓ ତୁରସ୍କ-ମାନଙ୍କର ୱାରୋଚିତ ଅବରୋଧ ସତ୍ତ୍ୱେ ମାର୍ଚ୍ଚ ୭ ତାରିଖ ଦିନ ଜାଫା (Jaffa)କୁ ଅଧିକାର କରିଥିଲେ । ତାହା ପରେ ସେ ଉପକୂଳ ବାଟଦେଇ ଉତ୍ତର ଦିଗକୁ ଅଗ୍ରସର ହୋଇଥିଲେ ଏବଂ ଆକରରେ (Acre) ପହଞ୍ଚିଥିଲେ । ତାଙ୍କର ଆକର ଅଧିକାର କରିନେବା ପାଇଁ ସମସ୍ତ ଉଦ୍ୟମ ବିଫଳ ହୋଇଥିଲା । ସେ ମେ ମାସ ୨୧ ତାରିଖ ଦିନ ସିରିଆରୁ ମିଶରକୁ ଅପସରି ଆସିବା ପାଇଁ ଯାତ୍ରା ଆରମ୍ଭ କରି ଦେଇଥିଲେ ଏବଂ ଜୁନ୍ ୧୪ ତାରିଖ ଦିନ କାଏରୋରେ ପୁନର୍ବାର ପ୍ରବେଶ କରିଥିଲେ । ତୁର୍କୀ ସୁଲତାନଙ୍କର, ୧୮ ୦୦୦ ସୈନ୍ୟ ବିଶିଷ୍ଟ ଗୋଟିଏ ସୈନ୍ୟବାହିନୀ ଜୁଲାଇମାସ ମଧ୍ୟ ଭାଗରେ ଆବୁକିର (Aboukir) ଠାରେ ଅବତାର କରିଥିଲେ । କିନ୍ତୁ ନେପୋଲିୟନ୍ ସେମାନଙ୍କର ଅଭିପ୍ରାୟ ଜାଣିପାରି ସେମାନଙ୍କ ଉପରେ ଜୁଲାଇ ୧୫ ତାରିଖ ଦିନ ଚଢ଼ାଉ କରିଥିଲେ ଓ ସେମାନଙ୍କର ବହୁସଂଖ୍ୟକ ସୈନ୍ୟଙ୍କୁ ହତାହତ କରି ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ଦେଇଥିଲେ । ଠିକ୍ ଏହି ସମୟରେ ଇଟାଲୀରେ ଫରାସୀମାନଙ୍କର ଘୋର ବିପତ୍ତିର ଓ ସ୍ୱଦେଶରେ ଡାଇରେକ୍ଟରମାନଙ୍କର ଦୁର୍ନାମର ଖବର ପାଇ ଚିର ଅପେକ୍ଷିତ ମୁହୂର୍ତ୍ତ ଆସିଗଲା ବୋଲି ତାଙ୍କର ଦୃଢ଼ ଧାରଣା ଜନ୍ମିଥିଲା । ତେଣୁ ସେ ତାଙ୍କର ସେନାବାହିନୀକୁ ସେମାନଙ୍କର ଭାଗ୍ୟ ଉପରେ ଛାଡ଼ି ଦେଇ ୧୭୯୯ ମସିହା ଅଗଷ୍ଟ ୨୩ ତାରିଖ ଦିନ ଆଲେକ୍‌ଜାଣ୍ଡ୍ରିଆରୁ ଫ୍ରାନ୍ସ ଅଭିମୁଖେ ଜଳଯାତ୍ରା କରିଥିଲେ ଏବଂ ବ୍ରିଟିଶ ନୌବାହିନୀର ହାବୁଡ଼ରୁ ଅଳ୍ପକେ ରକ୍ଷାପାଇ ଅକ୍ଟୋବର ୯ ତାରିଖ ଦିନ ଫ୍ରାନ୍ସରେ ଅବତରଣ କରିଥିଲେ ।

**ଡାଇରେକ୍ଟୋରୀର ପତନ ( Fall of the Directory ) :—** ନେପୋଲିୟନ ପ୍ୟାରିସରେ ପହଞ୍ଚି ଦେଖିଲେ ଯେ ଡାଇରେକ୍ଟରମାନେ ସେମାନଙ୍କ ଅତ୍ୟାଚାର

ପାଇଁ ଘୃଣିତ ଓ ଇଟାଲୀରେ ସେମାନଙ୍କର ପରାଜୟ ପାଇଁ ଲାଞ୍ଛିତ ହେଉଛନ୍ତି । ବୈଧାନିକ ସଭା ସହିତ ସେମାନଙ୍କର ପ୍ରକାଶ୍ୟ ବିବାଦ ଲାଗିଥିଲା । ସତ୍ରୁଦଳ ନେପୋଲିୟନଙ୍କୁ ପକ୍ଷଭୁକ୍ତ କରିବାକୁ ଚାହିଁଥିଲେ ମଧ୍ୟ ସେ ସାବଧାନତାର ସହିତ ସେମାନଙ୍କଠାରୁ ଦୂରରେ ରହୁଥିଲେ । ଶାସନକ୍ଷେତ୍ରରେ ହଠାତ୍ ଏକ ବଡ଼ ପରିବର୍ତ୍ତନ ଆଣିବାପାଇଁ ସେ ଡାଇରେକ୍ଟୋରୀ ସରକାରଙ୍କ ପତନ ଘଟାଇବାକୁ ସମସ୍ତ ବ୍ୟବସ୍ଥା କରିଥିଲେ । ପାଞ୍ଚଜଣ ଡାଇରେକ୍ଟରମାନଙ୍କ ମଧ୍ୟରୁ ତିନିଜଣ ଡାଇରେକ୍ଟର ଏବିସାୟେସ୍, ଡୁକସ୍ ଏବଂ ବାରସ୍ ଏହି ପରିବର୍ତ୍ତନର ସପକ୍ଷରେ ଥିଲେ; କିନ୍ତୁ ଏବିସାୟେସ, ନେପୋଲିୟନ, ତାଙ୍କର ଭାଇ ଲୁସିଏନ୍ ଟାଲେରାଣ୍ଡ ଏବଂ ଅନ୍ୟ କେତେଜଣ ନେତା ଶାସନକ୍ଷେତ୍ରରେ ଏପରି ଏକ ବଡ଼ ପରିବର୍ତ୍ତନର ବ୍ୟବସ୍ଥା କରିବା ପାଇଁ ଗୁପ୍ତ କମିଟି ଗଠନ କରିଥିଲେ ଏବଂ ବିଭିନ୍ନ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । ନେପୋଲିୟନ୍ ଆଶାପୋଷଣ କରିଥିଲେ ଯେ ଡାଇରେକ୍ଟୋରୀର ଉଭୟ ପରିଷଦ ସେମାନଙ୍କର ସାମ୍ବିଧାନିକ ଅଧିକାର ପ୍ରୟୋଗକରି ପ୍ୟାରିସଠାରୁ ସେମାନଙ୍କର ଅଧିବେଶନଗୁଡ଼ିକୁ ସେଣ୍ଟକ୍ଲାଉଡ଼ (St. Cloud)କୁ ସ୍ଥାନାନ୍ତରିତ କରିବେ । ଏହି ପରିବର୍ତ୍ତନର ପ୍ରଥମ ପଦକ୍ଷେପ ସ୍ୱରୂପ ୧୭୯୯ ମସିହା ନଭେମ୍ବର ୯ ତାରିଖ ବା ଅଷ୍ଟାଦଶ ବ୍ରୁମେଆର ଦିନ ( 18th Brumaire ) ପରିଷଦଦ୍ୱୟ ପ୍ୟାରିସରୁ ସେଣ୍ଟକ୍ଲାଉଡ଼କୁ ବୈଠକ ଉଠାଇନେବା ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ । ନେପୋଲିୟନ୍ ଅନୁଭବ କରି ପାରିଥିଲେ ଯେ ପ୍ୟାରିସର ବାତାବରଣ ଏ ପରିବର୍ତ୍ତନ ପାଇଁ ସୁବିଧାଜନକ ନୁହେଁ । ତେଣୁ ସେଣ୍ଟକ୍ଲାଉଡ଼କୁ ବୈଠକ ଉଠିଗଲେ ସେଠାରେ ବ୍ୟବସ୍ଥାପକମାନଙ୍କୁ ତାଙ୍କର ବିଶ୍ୱସ୍ତ ସୈନ୍ୟମାନଙ୍କଦ୍ୱାରା ଘେରାଉ କରିବା ଅତି ସହଜ ହେବ । ଏବି ସାୟେସ, ଡୁକସ୍ ଏବଂ ବାରସ୍ ମଧ୍ୟ ସେମାନଙ୍କର ପଦତ୍ୟାଗ କଲେ ବୋଲି ଘୋଷଣା କରିଥିଲେ ଏବଂ ଅନ୍ୟ ଦୁଇଜଣ ଡାଇରେକ୍ଟର ଇସ୍ତଫା ଦେବାକୁ ରାଜି ନ ହେବାରୁ ସେ ଦୁଇଜଣଙ୍କୁ ଲକ୍ସେମ୍ବର୍ଗ ( Luxemburg ) ରାଜପ୍ରାସାଦରେ ବନ୍ଦୀ କରାଯାଇଥିଲା ।

ନଭେମ୍ବର ୧୦ ତାରିଖ ବା ଊନବିଂଶ ବ୍ରୁମେଆର୍ (19th Brumaire) ଦିନଟି ପ୍ରକୃତରେ ଏକ ସଙ୍କଟର ଦିନ । ନେପୋଲିୟନ୍ ଜାଣିଥିଲେ ଯେ ଏହି ଦିନର ଘଟଣା ଉପରେ ତାଙ୍କର ସମସ୍ତ ଭବିଷ୍ୟତ ନିର୍ଭର କରୁଛି । ସେଦିନ ସେ ଉଭୟ ପରିଷଦରେ ପୃଥକ୍ ପୃଥକ୍ ଭାବରେ ଭାଷଣ ଦେଇଥିଲେ । ସେ ପ୍ରଥମେ ପ୍ରାଚୀନ ପରିଷଦ ( Council of Ancients ) ରେ ଭାଷଣ ଦେଲେ; କିନ୍ତୁ ସେଥିର ସଭ୍ୟମାନେ ସେ ଭାଷଣ ପ୍ରତି ଉଦାସୀନତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସମ୍ବିଧାନ ପ୍ରତି ସେମାନଙ୍କର ଅନୁରକ୍ତି ରହିଛି ବୋଲି ଘୋଷଣା କରିଥିଲେ ଏବଂ ସେମାନେ ଫ୍ରାନସ୍‌ରେ କମ୍‌ୱେଲ ଚାହାନ୍ତି ନାହିଁ ବୋଲି ଚିତ୍କାର କରିଥିଲେ ( They cried 'No Cromwell' ) । ନେପୋଲିୟନ୍ ତା'ପରେ ପଞ୍ଚଶତ ସଭ୍ୟ ବିଶିଷ୍ଟ ପରିଷଦରେ ( The Council of five hundreds) ଭାଷଣ ଦେବାକୁ ଉପସ୍ଥିତ ହେଲା ମାତ୍ରକେ ତାହାର ସଭ୍ୟମାନେ ତାଙ୍କ ପ୍ରତି ହିଂସାତ୍ମକଭାବ ପ୍ରକାଶ କରି ତାଙ୍କୁ ସଭାଗୃହରୁ ତଡ଼ିଦେଇ ଥିଲେ ଏବଂ

ନେପୋଲିୟନଙ୍କୁ ଓ ତାଙ୍କର ସମର୍ଥକମାନଙ୍କୁ ଆଇନବହିର୍ଭୂତ ବା ଦସ୍ୟୁଗୁଡ଼ାଏ ବୋଲି ଘୋଷଣା କରିବାକୁ ପ୍ରସ୍ତାବ ଆଗତ କରିଥିଲେ । ସୌଭାଗ୍ୟବଶତଃ ନେପୋଲିୟନଙ୍କ ବଡ଼ ଭାଇ ଲୁସିଏନ୍ ସେ ପରିଷଦର ସଭାପତି ଥିବାରୁ ପ୍ରସ୍ତାବ ବିଷୟରେ ପରିଷଦର ସଭ୍ୟମାନଙ୍କ ମତ ନେବାପାଇଁ ପ୍ରତ୍ୟାଖ୍ୟାନ କରି ନେଇଥିଲେ । ସଭାଗୃହ ଛାଡ଼ି ସେ ଚାଲି ଯାଇଥିଲେ ଓ ସୈନ୍ୟମାନଙ୍କୁ ଡାକି ସଭ୍ୟମାନଙ୍କୁ ସଭାଗୃହରୁ ବାହାର କରିଦେବାପାଇଁ ଆଦେଶ ଦେଇଥିଲେ । ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ସହ ଗୃହରେ ପ୍ରବେଶ କଲାମାତ୍ରକେ ସଭ୍ୟମାନେ ସଭାଗୃହ ଛାଡ଼ି ପଳାଇ ଯାଇଥିଲେ । ତେଣୁ ଯେଉଁ ପ୍ରତିନିଧିମୂଳକ ଶାସନ ଆତଙ୍କ ରାଜତ୍ଵରୁ ଉଦ୍ଧାର ପାଇପାରିଥିଲା, ତାହା ବିଜୟୀ ସେନାପତିର ଆକ୍ରମଣ ନିକଟରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୋଇଥିଲା ।

ଏହିରୂପେ ଡାଇରେକ୍ଟୋରୀ ସରକାରର ପତନ ଘଟିଲା । ନେପୋଲିୟନଙ୍କ ଯୋଜନାକୁ ଯେଉଁ କେତେଜଣ ସଭ୍ୟ ଗୋପନରେ ସମର୍ଥନ କରୁଥିଲେ, ସେମାନେ ଉନବିଂଶ ବ୍ରୁମେଆର ବା ୧୭୯୯ ମସିହା ନଭେମ୍ବର ୧୦ ତାରିଖ ସନ୍ଧ୍ୟାରେ ମିଳିତ ହୋଇ ଗୋଟିଏ ଅସ୍ଥାୟୀ ସରକାର ଗଠନ କରିଥିଲେ ଏବଂ ତିନିଜଣ କନସଲ୍ (ନେପୋଲିୟନ, ଏବି ସାୟେସ ଓ ରୁକସ୍)ଙ୍କୁ ଏ ସରକାର ପରିଚାଳନାର ଏବଂ ଏକ ନୂତନ ସମ୍ବିଧାନର ପ୍ରଣୟନ ଭାର ଦେଇଥିଲେ । ବାସ୍ତବିକ୍ ଉନବିଂଶ ବ୍ରୁମେଆରର ବିପ୍ଳବ ଜଣେ ବ୍ୟକ୍ତିର (ନେପୋଲିୟନଙ୍କର) କ୍ଷମତା ଫ୍ରାନ୍ସରେ ପ୍ରତିଷ୍ଠା କରିଥିଲା ।

## କନ୍‌ସୋଲେଟ୍ (୧୭୯୯-୧୮୦୪)—(The Consulate 1799-1804)

### କନ୍‌ସୋଲେଟ୍‌ର ସମ୍ବିଧାନ (Constitution of the Consulate)—

ଡାଇରେକ୍ଟୋରୀ ସରକାରର ପତନ ପରେ ଫ୍ରାନ୍ସ ସମ୍ବିଧାନରେ ସଂଶୋଧନ ପ୍ରୟୋଜନୀୟ ହୋଇପଡ଼ିଥିଲା । ଏବି ସାୟେସ ନୂତନ ସମ୍ବିଧାନର ରୂପରେଖ ଓ ସବିସ୍ତାର ବିବରଣୀ ଟିଏ ପ୍ରସ୍ତୁତ କରିଥିଲେ ମଧ୍ୟ ନେପୋଲିୟନ ସେଥିରେ କେତେକ ପରିବର୍ତ୍ତନ ଆଣିଲା ଉତ୍ତାରୁ ଫ୍ରାନ୍ସରେ ଏହି ନୂତନ ସମ୍ବିଧାନ ୧୭୯୯ ମସିହା ଡିସେମ୍ବର ୧୩ ତାରିଖ ଦିନ ପ୍ରବର୍ତ୍ତିତ କରାଯାଇଥିଲା । ଏହି ସମ୍ବିଧାନକୁ ଅଷ୍ଟମ ବର୍ଷୀୟ ସମ୍ବିଧାନ (Constitution of the year VIII) ବୋଲି ଅଭିହିତ କରାଯାଇଥିଲା । ଉଭୟ ନେପୋଲିୟନଙ୍କ ନାମର କୁହୁକ ଏବଂ ବିଶୃଙ୍ଖଳାର ପୁନରାବୃତ୍ତିର ଆଶଙ୍କା ଫରାସୀମାନଙ୍କୁ ଜନମତଦ୍ୱାରା ଏ ସମ୍ବିଧାନ ଗ୍ରହଣ କରିନେବାପାଇଁ ପ୍ରଭାବିତ କରିଥିଲା ।

ଏହି ସମ୍ବିଧାନ ଅନୁସାରେ କାର୍ଯ୍ୟକାରୀ କ୍ଷମତା (Executive power) ତିନିଜଣ କନସାଲଙ୍କ ହସ୍ତରେ ନ୍ୟସ୍ତ କରାଗଲା । ପ୍ରତ୍ୟେକ କନ୍‌ସାଲ ଦଶବର୍ଷ ପାଇଁ ନିର୍ବାଚିତ ହେବାର ବ୍ୟବସ୍ଥା ଥିଲା ଏବଂ ସେମାନେ ପୁନଃନିର୍ବାଚିତ ହୋଇପାରିବେ ବୋଲି କୁହାଯାଇଥିଲା । ପ୍ରଥମ କନସାଲର କ୍ଷମତା ପ୍ରାୟ ଅସୀମ ରଖାଯାଇଥିଲା । ତାଙ୍କୁ

କାଉନସିଲ ଅଫ ଷ୍ଟେଟର ସଭ୍ୟମାନଙ୍କୁ ମନୋନୀତ କରିବାର ଅଧିକାର ଦିଆଯାଇଥିଲା; ଯାହା ଫଳରେ କି ତାଙ୍କର ଆଇନ ପ୍ରଣୟନର ପ୍ରଥମ ପ୍ରବର୍ତ୍ତକ ହେବାର କ୍ଷମତା ରହିଲା। ସେ ମନ୍ତ୍ରୀମାନଙ୍କୁ ନିଯୁକ୍ତ ଏବଂ ବରଖାସ୍ତ କରିପାରିବେ ଏବଂ ସେମାନେ ବ୍ୟକ୍ତିଗତ ଭାବରେ ନିଜ ନିଜର ବିଭାଗ ବ୍ୟାପାର ନେଇ ତାଙ୍କ ନିକଟରେ ଦାୟୀ ରହିବେ ବୋଲି ସମ୍ବିଧାନରେ ବ୍ୟବସ୍ଥା କରାଯାଇଥିଲା। ରାଷ୍ଟ୍ରଦୂତମାନଙ୍କୁ ସାମରିକ ଏବଂ ନୌବାହିନୀର ପଦାଧିକାରୀ-ମାନଙ୍କୁ ଏବଂ ଦେଓ୍ୱାନୀ ଓ ଫୌଜଦାରୀ ଅଦାଲତଗୁଡ଼ିକର ବିଚାରପତିମାନଙ୍କୁ ନିଯୁକ୍ତ ଦେବାର କ୍ଷମତା ତାଙ୍କୁ ମଧ୍ୟ ଦିଆଯାଇଥିଲା। ଅନ୍ୟ ଦୁଇ ଜଣ କନସାଲ ନଗଣ୍ୟ ବୋଲି ବିବେଚିତ ହେଉଥିଲେ; କାରଣ ପ୍ରଥମ କନସାଲ ଇଚ୍ଛାକଲେ ସେମାନଙ୍କ ସହିତ ପରାମର୍ଶ କରିବେ, ନଚେତ୍ କରିବେ ନାହିଁ। ପ୍ରଥମ କନସାଲଙ୍କ ବାର୍ଷିକ ଆୟ ପାଞ୍ଚଲକ୍ଷ ଫ୍ରାଙ୍କ୍ସ ଏବଂ ତାଙ୍କ ସହକର୍ମୀ ଦୁଇଜଣଙ୍କର ଆୟ ଦେଢ଼ଲକ୍ଷ ଫ୍ରାଙ୍କ୍ସ ବୋଲି ସ୍ଥିରୀକୃତ ହୋଇଥିଲା। ତାଛଡ଼ା ପ୍ରଥମ କନସାଲଙ୍କୁ ଟୁଇଲରିସ ପ୍ରାସାଦରେ ଅବସ୍ଥାନ କରିବାର ଅଧିକାର ଦିଆଯାଇଥିଲା। ତେଣୁ ଅନ୍ୟ ଦୁଇଜଣ କନସାଲଙ୍କୁ ପ୍ରଥମ କନସାଲଙ୍କର ସହକର୍ମୀ କୁହାନଯାଇ ବରଂ ଉପକନସାଲ କହିବା ଯୁକ୍ତିଯୁକ୍ତ ହେବ। ଏହିସବୁ କ୍ଷମତାର ଅଧିକାରୀ ହେବାପାଇଁ ନେପୋଲିୟନଙ୍କୁ ପ୍ରଥମ କନସାଲ ମନୋନୀତ କରାଯାଇଥିଲା। କାମ୍ବାସେରେସ (Cambaceres) ଓ ଲେବରନ୍ (Lebrun)ଙ୍କୁ ଯଥାକ୍ରମେ ଦ୍ୱିତୀୟ ଓ ତୃତୀୟ କନସାଲ ରୂପେ ନିଯୁକ୍ତ କରାଯାଇଥିଲା।

ଆଇନ ପ୍ରଣୟନ କାର୍ଯ୍ୟ ଚାରୋଟି ସଭା ମଧ୍ୟରେ ବାଣ୍ଟି ଦିଆଯାଇଥିଲା। ସେମାନେ ହେଲେ କାଉନସିଲ ଅଫ୍ ଷ୍ଟେଟ, ଟ୍ରିବ୍ୟୁନେଟ୍ (Tribunate), ଲେଜିସ୍‌ଲେଟିଭ ବଡି (Legislative body) ଏବଂ ସିନେଟ (Senate)। କାଉନସିଲ ଅଫ୍ ଷ୍ଟେଟ ପ୍ରଥମ କନସାଲଙ୍କଦ୍ୱାରା ମନୋନୀତ ହୋଇ ସବୁ ଆଇନ ପ୍ରସ୍ତାବ କରିବାର ଅଧିକାର ପାଇଥିଲା; ତା'ପରେ ସବୁ ପ୍ରସ୍ତାବିତ ଆଇନ ଏକଶତ ସଭ୍ୟବିଶିଷ୍ଟ ଟ୍ରିବ୍ୟୁନେଟ ନିକଟରେ ଉପସ୍ଥାପିତ କରାଯିବାର ଏବଂ ସେଗୁଡ଼ିକ ଟ୍ରିବ୍ୟୁନେଟଦ୍ୱାରା ଆଲୋଚନା କରାଯିବାର ସ୍ଥିର ହୋଇଥିଲା। କିନ୍ତୁ ଟ୍ରିବ୍ୟୁନେଟ କୌଣସି ଆଇନ ଉପରେ ମତଦାନ ଦେବାର ଅଧିକାର ଲାଭ କରିନଥିଲା। ତିନିଶତ ସଭ୍ୟବିଶିଷ୍ଟ ଲେଜିସଲେଟିଭ ସଭାକୁ ଆଇନ ପାସ୍ କିମ୍ବା ଅଗ୍ରାହ୍ୟ କରିବାର ଅଧିକାର ଦିଆଯାଇଥିଲା, କିନ୍ତୁ ଆଲୋଚନା କରିବାର ଅଧିକାର ତାକୁ ଦିଆଯାଇନଥିଲା। ଷାଠିଏ ଜଣ ସଭ୍ୟବିଶିଷ୍ଟ ସିନେଟ ଲେଜିସ୍‌ଲେଟିଭ୍ ସଭାଦ୍ୱାରା ପାସ୍ ହୋଇଥିବା ଆଇନଗୁଡ଼ିକ ସମ୍ବିଧାନସମ୍ମତ କି ନା ତାହା ନିଷ୍ପତ୍ତି ଦେବାର କ୍ଷମତା ପାଇଥିଲା। ସଂବିଧାନରେ ଏପରି ବ୍ୟବସ୍ଥା ହୋଇଥିଲା ଯେ ପ୍ରଥମ କନସାଲ ପ୍ରଥମ ସଭା ଅର୍ଥାତ୍ କାଉନସିଲ ଅଫ୍ ଷ୍ଟେଟ୍ ଓ ଚତୁର୍ଥ ସଭା ଅର୍ଥାତ୍ ସିନେଟର ସଭ୍ୟମାନଙ୍କୁ ମନୋନୀତ କରିବେ ଏବଂ ସିନେଟ ଦ୍ୱିତୀୟ ସଭା ଅର୍ଥାତ୍ ଟ୍ରିବ୍ୟୁନେଟ୍ ଓ ତୃତୀୟ ସଭା ଅର୍ଥାତ୍ ଲେଜିସ୍‌ଲେଟିଭ୍ ସଭାର ସଭ୍ୟମାନଙ୍କୁ ଜାତୀୟ ତାଲିକା (National list)ରୁ ମନୋନୀତ କରିବେ ବୋଲି

ସ୍ଥିର ହୋଇଥିଲା । ତେଣୁ ଏହି ବିସ୍ତୃତ ବ୍ୟବସ୍ଥା ଫଳରେ ପ୍ରଥମ କନସାଲ୍ ଆଇନ ପ୍ରଣୟନ ବିଷୟରେ ପୂର୍ଣ୍ଣ ସ୍ୱାଧୀନତା ପାଇଥିଲେ ।

ସ୍ଥାନୀୟ ଶାସନ (Local administration) ନାୟକ ବା ପ୍ରିଫେକ୍ଟ (Prefect) ଉପନାୟକ ବା ସବ୍‌ପ୍ରିଫେକ୍ଟ (sub-prefect) ଏବଂ ମେୟର (Mayors) ମାନଙ୍କଦ୍ୱାରା ପରିଚାଳିତ ହେଉଥିଲା । ପ୍ରିଫେକ୍ଟ ଏବଂ ସବ୍ ପ୍ରିଫେକ୍ଟମାନେ କନସାଲମାନଙ୍କଦ୍ୱାରା ନିଯୁକ୍ତ ହେବେ ଏବଂ ମେୟରମାନେ ପ୍ୟାରିସ୍‌ରୁ ନିଯୁକ୍ତି ପାଇବେ ବୋଲି ବ୍ୟବସ୍ଥା ହୋଇଥିଲା । ଏପରି ବ୍ୟବସ୍ଥା କରିସିବାଦ୍ୱାରା ସ୍ୱାୟତ୍ତଶାସନ ଅବହେଳିତ ହୋଇଥିଲା । କନସୋଲେଟ୍ ସମ୍ବିଧାନ ଦ୍ୱାରା ଫ୍ରାନ୍‌ସ ନାମକୁ ମାତ୍ର ସାଧାରଣତନ୍ତ୍ର ରାଷ୍ଟ୍ର ହୋଇ ରହିଲା; କିନ୍ତୁ ପ୍ରକୃତପକ୍ଷେ ଫ୍ରାନ୍‌ସର ଶାସନ ଏକ ପ୍ରଚ୍ଛନ୍ନ ରାଜତନ୍ତ୍ର ଶାସନରେ ପରିଣତ ହୋଇଥିଲା ।

---

## ଜଣେ ରାଜନୀତିଜ୍ଞ ଏବଂ ସଂସ୍କାରକ ରୂପେ ନେପୋଲିୟନଙ୍କର କାର୍ଯ୍ୟକଳାପ (୧୭୯୯-୧୮୦୪)

## (Napoleon as a Statesman and Reformer (1799-1804)

ନେପୋଲିୟନ ପ୍ରଥମ କନସାଲ ହେଲାବେଳକୁ ଫ୍ରାନ୍‌ସରେ ଅରାଜକତା ଚାଲିଥିଲା । ବିପ୍ଳବର ଦଶବର୍ଷ ମଧ୍ୟରେ (୧୭୮୯-୧୭୯୯) ରାସ୍ତାସବୁ ଭାଙ୍ଗି ନଷ୍ଟ ହୋଇଯାଇଥିଲା, ଶିକ୍ଷା ବାଧାପ୍ରାପ୍ତ ହୋଇଥିଲା । ଦାତବ୍ୟ ସଂସ୍ଥାଗୁଡ଼ିକ ବିଶୃଙ୍ଖଳ ହୋଇପଡ଼ିଥିଲା । ଶିଳ୍ପ ଓ ବାଣିଜ୍ୟ ଅଚଳ ହୋଇ ପଡ଼ିଥିଲା ଏବଂ ଫ୍ରାନ୍‌ସର ୮୩ଟା ଡିପାର୍ଟମେଣ୍ଟ (ପ୍ରଦେଶ) ମଧ୍ୟରୁ ୪୫ଟା ଡିପାର୍ଟମେଣ୍ଟରେ ଗୃହଯୁଦ୍ଧ ପ୍ରାୟ ଲାଗି ରହିଥିଲା । ଚୋର ଡକାଏତମାନେ ଦେଶରେ ଉପଦ୍ରବ କରୁଥିଲେ, କର ଆଦାୟ କରିବା ଅସମ୍ଭବ ହୋଇ ପଡିଥିଲା ଏବଂ ଆଇନକୁ ଖୋଲାଖୋଲି ଅବଜ୍ଞା କରାଯାଉଥିଲା । ଅମଲାତନ୍ତ୍ର ଦୁର୍ନୀତିଗ୍ରସ୍ତ ହୋଇଥିଲା ଏବଂ ସ୍ଥାନୀୟ ଅଧିକାରୀମାନେ ଅଜ୍ଞ ଏବଂ ଘୂଷଖୋର ଥିଲେ । ଅଧିକାଂଶ ଧର୍ମଯାଜକ ରାଷ୍ଟ୍ର ବିରୁଦ୍ଧରେ ପ୍ରକାଶ୍ୟ ବିଦ୍ରୋହ କରିଥିଲେ । ପ୍ରଚଳିତ ମୁଦ୍ରାର ମୂଲ୍ୟହ୍ରାସ ଘଟିଥିଲା ଏବଂ ସରକାର ଆଂଶିକ ଭାବେ ଦେବାଳିଆ ବୋଲି ଘୋଷଣା କରିଥିଲେ । ଏହି ଅବ୍ୟବସ୍ଥାକୁ ସୁଧାରିବାପାଇଁ ଫ୍ରାନ୍‌ସ ଜଣେ ଅତି ପ୍ରତିଭାଶାଳୀ ବ୍ୟକ୍ତିର ନେତୃତ୍ୱ ଆବଶ୍ୟକ କରୁଥିଲା ।

ନେପୋଲିୟନ ବୋନାପାର୍ଟ ପ୍ରଥମ କନସାଲ ରୂପେ ଫ୍ରାନ୍‌ସରେ ଶାନ୍ତି ଶୃଙ୍ଖଳା ଏବଂ ସମୃଦ୍ଧି ଆଣିପାରିଲେ ସତ; କିନ୍ତୁ ସବୁପ୍ରକାର ସ୍ୱାଧୀନତାକୁ ସେ ଦବାଇ ଦେଇଥିଲେ । ଯାହାହେଉ ଆଭ୍ୟନ୍ତରୀଣ ସଂସ୍କାରଗୁଡ଼ିକଦ୍ୱାରା ସେ ଫରାସୀ ଜାତିର ହୃଦୟ ଜୟ କରିଥିଲେ । ତାଙ୍କର ସଂସ୍କାରଗୁଡ଼ିକ ଦେଶରେ ଶାନ୍ତି ପୁନଃପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଜାତୀୟ ସମୃଦ୍ଧିର ମଧ୍ୟ ପୁନରୁଦ୍ଧାର କରିପାରିଥିଲା ।

ନେପୋଲିୟନଙ୍କର ସଂସ୍କାର ପ୍ରବର୍ତ୍ତନ ପଛରେ ତିନୋଟି ବିଶେଷ ଉଦ୍ଦେଶ୍ୟ ନିହିତ ଥିଲା । ପ୍ରଥମ ଉଦ୍ଦେଶ୍ୟ ଥିଲା, ଜନସାଧାରଣଙ୍କର କୃତଜ୍ଞତାଭାଜନ ହେବା ଏବଂ ତାହାଦ୍ୱାରା ନିଜର କ୍ଷମତା ସୁଦୃଢ଼ କରିବା । ଦ୍ୱିତୀୟ ଉଦ୍ଦେଶ୍ୟ ଥିଲା ଯେ ତାଙ୍କର ବ୍ୟାବହାରିକ ବୁଦ୍ଧି ବଳରେ ଏକ ସୁଶୃଙ୍ଖଳ ସ୍ଥାୟୀ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିବା ଏବଂ ତୃତୀୟ ଉଦ୍ଦେଶ୍ୟ ଥିଲା ଖ୍ୟାତି ଅର୍ଜନ ପାଇଁ ଧାରାବାହିକ ଉଦ୍ୟମ କରିବା । ସେ କହୁଥିଲେ, "ମୁଁ ଆଶାକରେ ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ଏକ ଯଶ ରଖିଯିବି, ଯାହା କି ମୋର ଉତ୍ତରାଧିକାରୀମାନଙ୍କ ପାଇଁ ଏକ ଦୃଷ୍ଟାନ୍ତ କିମ୍ବା ଭର୍ତ୍ସନା ଭଳି କାର୍ଯ୍ୟ କରିବ ?" (He said, "I hope to leave to posterity a renown that may serve as an example or as a reproach to my successors."

**ରାଷ୍ଟ୍ର ଓ ଜାତିର ପୁନର୍ଗଠନ (Reorganisation of the State and the Nation) :—**

କନ୍‌ସୋଲେଟରେ ଅସ୍ପଷ୍ଟ ଥିବା ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥାରୁ କିପରି ନୂତନ ଧାରାରେ ରାଷ୍ଟ୍ର ପୁନର୍ଗଠନ ହେବ, ତାହାର ସୂଚନା ମିଳିଥିଲା । ସାଧାରଣତଃ ନିର୍ବାଚନ ନୀତି ବଦଳରେ ନିଯୁକ୍ତି ନୀତି ଅବଲମ୍ବନ କରାଯାଇଥିଲା । ସାଧାରଣ ବିଚାର ବ୍ୟବସ୍ଥା ପୂର୍ବପରି ରଖାଯାଇଥିଲା । କିନ୍ତୁ ବିଚାରପତିମାନେ ଏହି ଦିନଠାରୁ ପ୍ରଥମ କନ୍‌ସାଲ୍ ଏବଂ ପରେ ସମ୍ରାଟଙ୍କଦ୍ୱାରା ନିଯୁକ୍ତ ହେବାକୁ ଲାଗିଲେ । ଦେଶକୁ ପୂର୍ବରୁ ଯେଉଁ ୮୩ଟି ଡିପାର୍ଟମେଣ୍ଟ କିମ୍ବା ପ୍ରଦେଶରେ ବିଭକ୍ତ କରାଯାଇଥିଲା, ତାହାର କୌଣସି ପରିବର୍ତ୍ତନ କରାଗଲାନାହିଁ; କିନ୍ତୁ ଡିପାର୍ଟମେଣ୍ଟଗୁଡ଼ିକନିଜ ହାତ ମୁଠାରେ ରଖିବା ପାଇଁ ପ୍ରଥମ କନ୍‌ସାଲଙ୍କୁ, ପ୍ରତ୍ୟେକ ଡିପାର୍ଟମେଣ୍ଟର ମୁଖ୍ୟ ହିସାବରେ ଜଣେ ଲେଖାଏଁ ପ୍ରିଫେକ୍ଟ ନିଯୁକ୍ତ କରିବାର କ୍ଷମତା ଦିଆଯାଇଥିଲା । ସୁତରାଂ ସାମ୍ବିଧାନିକ ରାଜତନ୍ତ୍ରଦ୍ୱାରା ଶାସନ ବ୍ୟବସ୍ଥାର ଯେଉଁ ବିକେନ୍ଦ୍ରୀକରଣ କରାଯାଇଥିଲା, ତାହା ଡାଇରେକ୍‌ଟୋରୀ ଅମଳରେ ଅର୍ଦ୍ଧ କେନ୍ଦ୍ରୀଭୂତ ହୋଇ ବର୍ତ୍ତମାନ ବିପ୍ଳବ ପୂର୍ବର ଶାସନ ଭଳି ସମ୍ପୂର୍ଣ୍ଣ କେନ୍ଦ୍ରୀଭୂତ ହୋଇଥିଲା । ଏକଥା ସତ୍ୟ ଯେ ନେପୋଲିୟଙ୍କ ହସ୍ତରେ ସମ୍ପୂର୍ଣ୍ଣ କେନ୍ଦ୍ରୀଭୂତ ଶାସନ କ୍ଷମତା ନ୍ୟସ୍ତ ହୋଇଥିଲା । ସେ ପ୍ରଥମେ ଦଶବର୍ଷ ଧରି ଚାଲିଥିବା ଅରାଜକତାର ମୁକାବିଲା କରି ଫରାସୀ ଜାତିର ଦୁଃଖ ଦୁର୍ଦ୍ଦଶା ମୋଚନ କରିବାକୁ ସଙ୍କଳ୍ପ କରିଥିଲେ । ସେ ନିଷ୍ଠୁର ଭାବରେ ଫ୍ରାନ୍‌ସର ପ୍ରତ୍ୟେକ ଅଞ୍ଚଳରେ ଡକାୟତମାନଙ୍କୁ ଦମନ କରି ରାସ୍ତାଗୁଡ଼ିକ ପୁନର୍ବାର ନିରାପଦ କରିଥିଲେ । ସେ ରାଜତନ୍ତ୍ରର ପ୍ରକାଶ୍ୟ ସମର୍ଥକ ଓ ଚରମ ଜାକୋବିନମାନଙ୍କ ବ୍ୟତୀତ ଆଉ ସବୁ ଶ୍ରେଣୀର ଲୋକମାନଙ୍କ ପ୍ରତି ତୋଷଣ ନୀତି ଅବଲମ୍ବନ କରି ଦଳୀୟ ମନୋଭାବକୁ ଦୂର କରିପାରିଥିଲେ । ସେ ସ୍ୱଦେଶ ତ୍ୟାଗୀ ସମ୍ଭ୍ରାନ୍ତ ମାନଙ୍କର ଏବଂ ପ୍ରତିବାଦକାରୀ ଧର୍ମଯାଜକମାନଙ୍କର ସ୍ୱଦେଶ ପ୍ରତ୍ୟାବର୍ତ୍ତନକୁ ଉତ୍ସାହିତ କରିବା ପାଇଁ ସେମାନଙ୍କ ବିରୁଦ୍ଧରେ ଥିବା ଆଇନଗୁଡ଼ିକୁ କୋହଳ କରିଦେଇଥିଲେ । ସମାନ ସର୍ତ୍ତରେ ସେ ପୂର୍ବ ରାଜତନ୍ତ୍ରବାଦୀ,

ଜାକୋବିନ୍ ଓ ଗିରନ୍ଡିନମାନଙ୍କୁ ଅବାଧରେ ଚାକିରିରେ ନିଯୁକ୍ତ କରିଥିଲେ । ସେ ଅବଶ୍ୟ ବିପ୍ଳବୀ ବ୍ୟବସ୍ଥାପକ ସଭାଗୁଡ଼ିକଦ୍ୱାରା ଯୋଜନା କରାଯାଇଥିବା କିମ୍ବା ଆରମ୍ଭ କରାଯାଇଥିବା ପରିକଳ୍ପନାଗୁଡ଼ିକ କେତେକ ପରିମାଣରେ କାର୍ଯ୍ୟକାରୀ କରିଥିଲେ । ସେ ଏକ ସ୍ଥାୟୀ ମୁଦ୍ରାନୀତି ଗ୍ରହଣ କରିଥିଲେ । ଦଶବର୍ଷ ମଧ୍ୟରେ ପ୍ରଥମ ଥର ପାଇଁ ସେ ଆର୍ଥିକ ଦୁରବସ୍ଥାକୁ ସୁଧାରି ଥିଲେ । ନେପୋଲିୟନ୍ ଫରାସୀ ଜାତିକୁ ସେମାନଙ୍କର କର୍ତ୍ତବ୍ୟ ବିଷୟରେ ସଚେତନ କରିବାକୁ ଯାଇ ବୁଝାଇଥିଲେ ଯେ କରଦେବା ଏକ ନାଗରିକ କର୍ତ୍ତବ୍ୟ ଏବଂ ତାହାକୁ ଏଡ଼ି-ଦେବା ଉଚିତ ନୁହେଁ । ସେ ଖୁବ୍ କମ୍ ନୂତନ କର ବସାଇଥିଲେ; କିନ୍ତୁ ପୁରାତନ କର ଗୁଡ଼ିକର ତଦାରଖ ଏବଂ ଆଦାୟ ଅତି ସାବଧାନତାର ସହିତ କରାଯାଇଥିଲା । ଡାଇରେକ୍-ଟୋରୀ ସରକାରଙ୍କର ଧନୀମାନଙ୍କଠାରୁ ଜବରଦସ୍ତି ଋଣ ଆଦାୟ ସପକ୍ଷରେ ନିଷ୍ପତ୍ତିକୁ ରଦ୍ଦ କରାଯାଇ ତା ବଦଳରେ ଶତକଡ଼ା ୨୫ ହାରରେ ସାଧାରଣ ଆୟକର ବସାଯାଇଥିଲା । ପ୍ରତି ଡିପାର୍ଟମେଣ୍ଟରେ କର ମହାରକ୍ଷୀତାମାନଙ୍କୁ (Receivers General of taxes) ନିଯୁକ୍ତ କରାଯାଇଥିଲା, କିନ୍ତୁ ଏ ନିଯୁକ୍ତି ପାଇଁ ସେମାନଙ୍କୁ ଅତ୍ୟଧିକ ଜାମିନ ଅମାନତ ଦେବାକୁ ପଡ଼ୁଥିଲା ଓ କଠୋର ଭାବରେ ସେମାନଙ୍କର କାର୍ଯ୍ୟ ତଦାରଖ କରାଯାଉଥିଲା । ଏତଦବ୍ୟତୀତ ରାଷ୍ଟ୍ରର ବ୍ୟୟ ବ୍ୟାପାରରେ ଏପରି ମିତବ୍ୟୟିତା ଅବଲମ୍ବନ କରାଯାଉଥିଲା ଯେ ବୃଥା ବ୍ୟୟର ଅବକାଶ ନ ଥିଲା । ଅଳ୍ପକାଳ ମଧ୍ୟରେ ରାଷ୍ଟ୍ରର ଆର୍ଥିକ ସ୍ୱଚ୍ଛଳତା ପୁନଃ ପ୍ରତିଷ୍ଠିତ ହୋଇପାରିଥିଲା ଏବଂ ଫ୍ରାନ୍ସ ଅର୍ଥନୀତି କ୍ଷେତ୍ରରେ ଯେଉଁ ଦୃଢ଼ତା ଅନୁଭବ କଲା, ସେପରି ଦୃଢ଼ତା ପୂର୍ବରୁ ସେ କେବେ ଅନୁଭବ କରି ନ ଥିଲା । ନେପୋଲିୟନଙ୍କର ଅନ୍ୟ ଏକ ଅବଦାନ ହେଲା ଏକ ଜାତୀୟ ବ୍ୟାଙ୍କ ବା ବ୍ୟାଙ୍କ ଅଫ୍ ଫ୍ରାନସ୍ ( National Bank or Bank of France ) ପ୍ରତିଷ୍ଠା । ଶିଳ୍ପକାରଖାନାର ମାଲିକମାନଙ୍କୁ (manufacturers) ଏହି ବ୍ୟାଙ୍କ ଅଳ୍ପ ସୁଧରେ ଋଣର ସୁବିଧା ଦେବାପାଇଁ ଅଭିପ୍ରେତ ହୋଇଥିଲା । ଏତଦ୍ଦ୍ୱାରା ନେପୋଲିୟନ ପୁଞ୍ଜିପତିମାନଙ୍କର ସମର୍ଥନ ଲାଭ କରିପାରିବେ ବୋଲି ଆଶା କରିଥିଲେ । ଫ୍ରାନ୍ସରେ ଶିଳ୍ପ ବାଣିଜ୍ୟର ପୁନରୁଦ୍ଧାର ଓ ପ୍ରସାର ପାଇଁ ସେ ଆପ୍ରାଣ ଉଦ୍ୟମ କରି ବହୁ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ସେ ଆଭ୍ୟନ୍ତରୀଣ ବାଣିଜ୍ୟର ଉନ୍ନତି ପାଇଁ ଅତି ସୁନ୍ଦର ସୁନ୍ଦର ରାସ୍ତା ଓ ପୋଲ ନିର୍ମାଣ କରିଥିଲେ । କେନାଲ ସବୁ ଖୋଲାଯାଇ ସେଗୁଡ଼ିକୁ ଫ୍ରାନସର ପ୍ରଧାନ ପ୍ରଧାନ ନଦୀମାନଙ୍କ ସହିତ ସଂଯୁକ୍ତ କରାଯାଇ-ଥିଲା । ଏସବୁ ବ୍ୟତୀତ ନେପୋଲିୟନ ରୋଟିର ମୂଲ୍ୟ କୃତ୍ରିମ ଉପାୟରେ ଶସ୍ତା ରଖି ସାଧାରଣ ଜନତାର ପୂର୍ଣ୍ଣ ସମର୍ଥନ ଲାଭ କରିଥିଲେ । ପ୍ରକୃତରେ "ଶସ୍ତା ରୋଟି ହେଲା ରାଜନୀତିଜ୍ଞତାର ଶ୍ରେଷ୍ଠ ରକ୍ଷାକବଚ ।"

("In cheap bread lay the supreme talisman of states-manship." )

**ଧର୍ମାଧିଷ୍ଠାନ ଗୁଡ଼ିକର ପୁନର୍ଗଠନ ( Reorganisation of the church —**

୧ ନେପୋଲିୟନ ଦେଖିଲେ ଯେ ସିଭିଲ କନଷ୍ଟିଚ୍ୟୁସନ ଅଫ୍ କ୍ଲର୍ଜି ( Civil constitution of the clergy ) ନାମକ ଆଇନ ପାଶ ହେଲା ଦିନଠାରୁ ପୋପ ଏବଂ ଫରାସୀ ଧର୍ମାଧିଷ୍ଠାନଗୁଡ଼ିକ ମଧ୍ୟରେ ବିବାଦ ଚାଲିଥିଲା । ତା ଛଡ଼ା ବିପୁଳ ସଂଖ୍ୟକ ଫରାସୀ ଲୋକେ ମଧ୍ୟ ଏ ଆଇନ ପାସ ଫଳରେ ଅସନ୍ତୋଷ ପ୍ରକାଶ କରିଥିଲେ । ନେପୋଲିୟନ କ୍ୟାଥଲିକ ଗୀର୍ଜାଗୁଡ଼ିକ ପୁନଃ ପ୍ରତିଷ୍ଠା କରି ଲୋକମାନଙ୍କର କୃତଜ୍ଞତାଭାଜନ ହେବାକୁ ଚାହିଁଥିଲେ । ପୋପ ଓ ଧର୍ମାଧିଷ୍ଠାନ ଗୁଡ଼ିକ ମଧ୍ୟରେ ଥିବା ବିବାଦ ମେଣ୍ଟାଇବାକୁ ସେ ସତ୍ପରୋନାସ୍ତି ଉଦ୍ୟମ କରିଥିଲେ । ସେ ପ୍ରଥମ କନସାଲ ରୂପେ ଧର୍ମ ବ୍ୟାପାରରେ ଐକ୍ୟ ଏବଂ ଶାନ୍ତି ସ୍ଥାପନ କରିବା ଅଭିପ୍ରାୟରେ କେତେକ ସଂସ୍କାରମୂଳକ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ନେପୋଲିୟନ୍ ପୋପଙ୍କ ସହିତ କଥାବାର୍ତ୍ତା ଚଳାଇ ଶେଷରେ ତାଙ୍କ ସହିତ ୧୮୦୧ ମସିହାରେ କନକରଡାଟ୍ (Concordat of 1801) ନାମକ ଏକ ପ୍ରସିଦ୍ଧ ରାଜିନାମାରେ ପହଞ୍ଚିଲେ । ଏହି ରାଜିନାମା ଅନୁସାରେ ଧର୍ମଯାଜକ ସଂପ୍ରଦାୟର ଉଚ୍ଚପଦସ୍ଥ କର୍ମଚାରୀମାନେ ରାଷ୍ଟ୍ରକର୍ତ୍ତୃକ ନିଯୁକ୍ତ ହେବେ ଏବଂ ଏହି ସବୁ ନିଯୁକ୍ତି ପୋପ୍‌ଙ୍କଦ୍ୱାରା ଅନୁମୋଦିତ ହେବ । ନିମ୍ନ ପାହ୍ୟାର ଧର୍ମଯାଜକମାନେ ବିଶପମାନଙ୍କ କର୍ତ୍ତୃକ ନିଯୁକ୍ତ ହେବେ ଏବଂ ସେମାନଙ୍କର ନିଯୁକ୍ତି ସରକାରଙ୍କ ଦ୍ୱାରା ମଞ୍ଜୁରି ପାଇବ ବୋଲି ବ୍ୟବସ୍ଥା କରାଗଲା । ଧର୍ମଯାଜକମାନେ ବାଜ୍ୟାପ୍ତ ହୋଇଥିବା ଗୀର୍ଜା ଜମିଉପରୁ ସେମାନଙ୍କର ସତ୍ତ୍ୱ ଛାଡ଼ିଦେବେ ଏବଂ କ୍ଷତିପୂରଣ ସ୍ୱରୂପ ସେମାନେ ଫରାସୀ ରାଜକୋଷରୁ ଭତ୍ତା ପାଇବେ ବୋଲି ସ୍ଥିର କରାଯାଇଥିଲା । ଗୀର୍ଜା ଓ ପ୍ରଧାନ ଗୀର୍ଜାଗୃହଗୁଡ଼ିକ (Cathedral) ରାଷ୍ଟ୍ରର ସମ୍ପତ୍ତି ବୋଲି ଘୋଷଣା କରାଯାଇଥିଲା ଓ ଗୀର୍ଜାର ଶାସନ ଶୃଙ୍ଖଳା ରାଷ୍ଟ୍ରକର୍ତ୍ତୃକ ନିୟନ୍ତ୍ରିତ ହେବାର ନିଷ୍ପତ୍ତି କରାଯାଇଥିଲା । ଫରାସୀ ସରକାର ରୋମୀୟ କ୍ୟାଥଲିକ ଧର୍ମକୁ (Roman Catholic faith) ଅଧିକାଂଶ ଫରାସୀମାନଙ୍କର ଓ କନସାଲମାନଙ୍କର ଧର୍ମ ବୋଲି ସ୍ୱୀକାର କରିଥିଲେ । ଗୀର୍ଜାଗୁଡ଼ିକ ଭୂସମ୍ପତ୍ତିର ଅଧିକାରୀ ହେବା ନିଷିଦ୍ଧ କରାଯାଇଥିଲା । ଏହିପରି ମୀମାଂସା ଫଳରେ ନେପୋଲିୟନ୍ କେବଳ ଯେ ପୋପଙ୍କ ସହିତ ଫରାସୀ ଗୀର୍ଜାର ବିରୋଧ ଦୂରକଲେ ସେତିକି ନୁହେଁ, ଗୀର୍ଜାଗୁଡ଼ିକ ଉପରେ ରାଷ୍ଟ୍ରର କ୍ଷମତା ମଧ୍ୟ ଏହାଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଗୀର୍ଜାଗୁଡ଼ିକର ସବୁ ପ୍ରକାର ଅଶାନ୍ତି ଦୂର କରିଥିବା ହେତୁ ନେପୋଲିୟନ୍ 'ଧର୍ମମଣ୍ଡପଗୁଡ଼ିକର ପୁନଃ ପ୍ରତିଷ୍ଠାତା' (Restorer of the altars) ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ସେ କ୍ୟାଥଲିକ୍ ଧର୍ମକୁ ପୁନଃ ପ୍ରତିଷ୍ଠିତ କଲେ ମଧ୍ୟ ସବୁ ଶ୍ରେଣୀର ଲୋକଙ୍କୁ ନିଜ ଧର୍ମଗତ ମତ ସ୍ୱାଧୀନ ଭାବରେ ବ୍ୟକ୍ତ କରିବା ପାଇଁ ଅବାଧ ଅଧିକାର ଦେଇଥିଲେ । ଯେ ଯାହା ହେଉ ନେପୋଲିୟନଙ୍କର ପୋପଙ୍କ ସହିତ ଆପୋଷ ନିଷ୍ପତ୍ତି ଫଳରେ ଫରାସୀ ରାଷ୍ଟ୍ରର ଗୋଟିଏ ବିଭାଗରେ ପରିଣତ ହୋଇଥିଲା ।

ନେପୋଲିୟନଙ୍କର ସଂସ୍କାରଗୁଡ଼ିକ ମଧ୍ୟରେ ସର୍ବାଧିକ ଉଲ୍ଲେଖଯୋଗ୍ୟ ସଂସ୍କାର ହେଲା ତାଙ୍କର ବ୍ୟବହାର ସଂହିତା ବା ସିଭିଲ କୋଡ୍* (Code-de-Napoleon) ଏହା ଅବଶ୍ୟ ଆଇନଜ୍ଞମାନଙ୍କର ଏକ ସମିତିଦ୍ୱାରା ସମ୍ପାଦିତ ହୋଇଥିଲା; କିନ୍ତୁ ନେପୋଲିୟନ ଏହାର ପରିକଳ୍ପନା ଏବଂ ତଦାରଖ ଭାର ନେଇଥିଲେ । ଏହି ସଂହିତାର ପ୍ରସ୍ତୁତି ପୂର୍ବରୁ ଫ୍ରାନ୍ସରେ ଆଇନ ପ୍ରୟୋଗ ବିଷୟରେ କୌଣସି ସମତା ନଥିଲା । ନେପୋଲିୟନ ସର୍ବ ପ୍ରଥମେ ଆଇନ ପ୍ରୟୋଗ ବିଷୟରେ ସମତା ଆଣିଥିଲେ ଏବଂ ଆଇନ ଦୃଷ୍ଟିରୁ ସମସ୍ତଙ୍କୁ ସମାନ ଅଧିକାର ଦେଇଥିଲେ । ଏପରି କରିବା ଫଳରେ ସେ ଫରାସୀ ବିପ୍ଳବ ଦ୍ୱାରା ପ୍ରତିଷ୍ଠିତ ସାମ୍ୟନୀତି ବଜାୟ ରଖିପାରିଥିଲେ । ଏହି ସିଭିଲ କୋଡ଼ର ସରଳତା ଓ ବ୍ୟାପକତା ଯୋଗୁଁ ବିଚାର କ୍ଷେତ୍ରରେ ବିଚାରକର ଖିଆଲକୁ ରୋକାଯାଇ ପାରିଥିଲା । ଏତଦ୍‌ବ୍ୟତୀତ ବିଚାର କରିବାପାଇଁ ଜୁରି ବା ପେଟି-ଜୁରି ( Petty-Jury ) ମାନଙ୍କର ପ୍ରତିଷ୍ଠା ଓ ମୋକଦ୍ଦମାଗୁଡ଼ିକର ବିଚାର ଲୋକଗୋଚରକୁ ଆଣିବାର ବ୍ୟବସ୍ଥା, ବାଣିଜ୍ୟ, ବ୍ୟବସାୟ ଓ ହସ୍ତଶିଳ୍ପରେ ପ୍ରବେଶ କରିବାର ଅବାଧ ଅଧିକାର ଏବଂ ଧର୍ମ ସମ୍ବନ୍ଧରେ ସ୍ୱାଧୀନ ମତ ପ୍ରକାଶ ଦ୍ୱାରା ବ୍ୟକ୍ତିଗତ ସ୍ୱାଧୀନତା କେତେକ ପରିମାଣରେ ବଜାୟ ରହିଥିଲା । ନେପୋଲିୟନ୍ ଫ୍ରାନ୍ସରେ ସମାନ ଆଇନ ବ୍ୟବସ୍ଥା ପ୍ରଚଳନ କରି ବିଚାରକୁ ଧ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ତାକୁ ସୁଲଭ ଓ ବିଶ୍ୱାସଯୋଗ୍ୟ କରିପାରିଥିଲେ । ନେପୋଲିୟନଙ୍କ ସିଭିଲ୍ କୋଡ୍ ଆଇନ କ୍ଷେତ୍ରରେ ସମଗ୍ର ଇଉରୋପ ସମ୍ମୁଖରେ ଏକ ଦୃଷ୍ଟାନ୍ତ ହୋଇ ଛିଡ଼ା ହୋଇଥିଲା ଏବଂ ଏହା ଅନ୍ୟ ସବୁ ଦେଶକୁ ଆଇନ ସଂସ୍କାର କରିବାପାଇଁ ପ୍ରେରଣା ଦେଇଥିଲା । ସେ ଏସବୁ ସଂସ୍କାର କଲେ ମଧ୍ୟ ମୁଦ୍ରଣାଳୟ ( ଛାପାଖାନା ) ଗୁଡ଼ିକ କଠୋର ଭାବରେ ନିୟନ୍ତ୍ରିତ କରିଥିଲେ ଏବଂ ପୋଲିସ ହାତରେ ବିପୁଳ କ୍ଷମତା ନ୍ୟସ୍ତ କରିଥିଲେ ।

---

* ( The Civil Code was succeeded in 1806 by the codes of Civil and Criminal procedure, in 1808 by the Commercial code and finally by the penal code ) ବ୍ୟବହାର ସଂହିତା ପରେ ୧୮୦୬ ମସିହାରେ ନେପୋଲିୟନ ସମ୍ରାଟ ହେବା ପରେ ଦେୱାନୀ ଓ ଫୌଜଦାରୀ କାର୍ଯ୍ୟବିଧି ଏବଂ ୧୮୦୮ ମସିହାରେ ବାଣିଜ୍ୟ ସମ୍ବନ୍ଧୀୟ ସଂହିତା ଓ ଶେଷରେ ଦଣ୍ଡ ସଂହିତା ପ୍ରବର୍ତ୍ତିତ କରାଯାଇଥିଲା ।

ନେପୋଲିୟନ ଫ୍ରାନ୍ସରେ ଶିକ୍ଷା ପ୍ରସାର * ବିଷୟରେ ବିଶେଷ ସତର୍କତା ଅବଲମ୍ବନ କରିଥିଲେ । ସେ ଦେଖିଲେ ଯେ ଫ୍ରାନସର ଯୁବକମାନଙ୍କୁ ତାଙ୍କ ଶାସନ ପ୍ରତି ଆସକ୍ତ କରିବା ପାଇଁ ଶିକ୍ଷା ହେଲା ଏକ ଶକ୍ତିଶାଳୀ ମାଧ୍ୟମ । ସେ ଯେଉଁ କମ୍ୟୁନଗୁଡ଼ିକ ନିଜ ନିଜର ଖର୍ଚ୍ଚ ବହନ କରି ପାରିବେ ସେହି ସେହି କମ୍ୟୁନଗୁଡ଼ିକରେ କନଭେନସନ ଦ୍ୱାରା ପ୍ରତିଷ୍ଠିତ ପ୍ରାଥମିକ ବିଦ୍ୟାଳୟମାନ ଅବ୍ୟାହତ ରଖିଥିଲେ । ଜନତାର ଶିକ୍ଷା ପ୍ରତି ସେ ବିଶେଷ ଧ୍ୟାନ ଦେଇନଥିଲେ । ଜନତାର ଶିକ୍ଷା ଅବହେଳାକରିବା ନିରଙ୍କୁଶ ଶାସକର ତୀକ୍ଷ୍ଣ ବୁଦ୍ଧିର ପରିଚୟ । ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ କନ୍‌ଭେନସନ୍ ଦ୍ୱାରା ପ୍ରତିଷ୍ଠିତ କେନ୍ଦ୍ର ବିଦ୍ୟାଳୟ ( Central Schools ) ଗୁଡ଼ିକ ଉଠାଇ ଦେଇ ସେଗୁଡ଼ିକ ପରିବର୍ତ୍ତେ ୨୯ଟି ଅର୍ଦ୍ଧ-ସାମରିକ ବିଦ୍ୟାଳୟ ( Semi-military Schools ) ପ୍ରତିଷ୍ଠା କରିଥିଲେ । ଏହିସବୁ ବିଦ୍ୟାଳୟଗୁଡ଼ିକରେ ୬୪୦୦ ଛାତ୍ର ଦରମା ନଦେଇ ଅଧ୍ୟୟନ କରୁଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଯୋଗ୍ୟ ସୈନ୍ୟମାନଙ୍କର ବା ନିମ୍ନ କର୍ମଚାରୀମାନଙ୍କର ସନ୍ତାନ ଥିଲେ । ସେ ଉଚ୍ଚଶିକ୍ଷା ପାଇଁ ଦଶଟି ଆଇନ ବିଦ୍ୟାଳୟ ( Schools of Law ) ଏବଂ ଛଅଟି ଭେଷଜ ବିଦ୍ୟାଳୟ ( Schools of Medicine ) ସ୍ଥାପନ କରିଥିଲେ । ସେ ବିବିଧ ଶିଳ୍ପ ବିଦ୍ୟାଳୟର ( Polytechnic School ) ଉନ୍ନତି ସାଧନ କରିଥିଲେ ଏବଂ ଏକ କାରିଗରୀ ବିଦ୍ୟାଳୟ ( School of Mechanic ) ବସାଇଥିଲେ । ଏହିସବୁ ପଦକ୍ଷେପ ଦ୍ୱାରା ଶିକ୍ଷାକୁ ଧର୍ମଯାଜକମାନଙ୍କର ନିୟନ୍ତ୍ରଣରୁ ଉଦ୍ଧାର କରାଯାଇଥିଲା ଏବଂ ତାକୁ ପୁରାପୁରି ଧର୍ମନିରପେକ୍ଷ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ର ଉପରେ ନିର୍ଭରଶୀଳ ମଧ୍ୟ କରାଯାଇଥିଲା ।

ଶିକ୍ଷା ସଂସ୍କାର ବ୍ୟତୀତ ନେପୋଲିୟନ ତାଙ୍କର କ୍ଷମତା ସୁଦୃଢ଼ କରିବା ଅଭିଳାଷ ରଖି ଲିଜିଆନ-ଅଫ୍-ଅନର ( Legion of Honour ) ଉପାଧି ଦାନର ବ୍ୟବସ୍ଥା କରିଥିଲେ । ସାମରିକ ବା ବେସାମରିକ କାର୍ଯ୍ୟରେ ଯେଉଁମାନେ ରାଷ୍ଟ୍ର ସେବାର ପରାକାଷ୍ଠା

* ସେ ସମ୍ରାଟ ହେଲାପରେ ଫରାସୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଶିକ୍ଷା ବ୍ୟବସ୍ଥାକୁ ପୂର୍ଣ୍ଣାଙ୍ଗ କରିଥିଲେ ଏବଂ ସେ ବିଶ୍ୱବିଦ୍ୟାଳୟକୁ ୧୮୦୬-୧୮୦୮ ମସିହା ମଧ୍ୟରେ ୧୭ଟି ବିଦ୍ୟାପରିଷଦ ( academy )ରେ ସଂଗଠିତ କରିଥିଲେ । ସେ ୧୮୦୮ ମସିହାରେ ରାଜକୀୟ ବିଶ୍ୱବିଦ୍ୟାଳୟ ( The Imperial University ) ସ୍ଥାପନ କରିଥିଲେ, ପ୍ରଧାନ ପ୍ରଧାନ ପ୍ରଫେସର ଓ ଶିକ୍ଷକମାନଙ୍କ ଦ୍ୱାରା ସେ ବିଶ୍ୱବିଦ୍ୟାଳୟ ଗଠିତ ହୋଇଥିଲା । ତାକୁ ଜଣେ ମହାନ୍ ଅଧିକାରୀ ( Grand Master )ଙ୍କ ତତ୍ତ୍ୱାବଧାନରେ ରଖା ଯାଇଥିଲା ଏବଂ ଉଚ୍ଚ ଶିକ୍ଷାର ସମସ୍ତ କାର୍ଯ୍ୟ ପ୍ରଣାଳୀ ତଦାରଖ କରିବା ଏହାର କର୍ତ୍ତବ୍ୟ ଥିଲା । ନେପୋଲିୟନ୍ ତାଲିମ ପ୍ରାପ୍ତ ଶିକ୍ଷକମାନଙ୍କୁ ସଂଗ୍ରହ କରିବା ପାଇଁ ପ୍ୟାରିସରେ ଶିକ୍ଷକ ତାଲିମ ବିଦ୍ୟାଳୟ ( Normal School of Paris ) ବସାଇଥିଲେ ।

ଦେଖାଇଥିବେ ସେମାନେ ଏ ଉପାଧି ଦେବାର ବ୍ୟବସ୍ଥା ହୋଇଥିଲା । ଏପରି ଉପାଧିର ବ୍ୟବସ୍ଥା ଦ୍ୱାରା ନେପୋଲିୟନଙ୍କ ପ୍ରତି ଆନୁଗତ୍ୟ ସମ୍ପନ୍ନ ଏକ ନୂତନ ସମ୍ଭ୍ରାନ୍ତ ଗୋଷ୍ଠୀ ସୃଷ୍ଟି କରାଯାଇଥିଲା । ନେପୋଲିୟନ୍ ଦେଶରେ ବେକାର ସମସ୍ୟା ଦୂର କରିବା ପାଇଁ ନାନା ପ୍ରକାର ସରକାରୀ ଯୋଜନାମାନ କାର୍ଯ୍ୟକାରୀ କରିବାରେ ବିଶେଷ ତତ୍ପରତା ଦେଖାଇଥିଲେ ।

ନେପୋଲିୟନଙ୍କ ସଂସ୍କାର ଯେ ଫ୍ରାନ୍ସରେ ଯଥେଷ୍ଟ ଉନ୍ନତି ସାଧନ କରିଥିଲା ଏଥିରେ ସନ୍ଦେହ ନାହିଁ । ସେ ତାଙ୍କର ସିଭିଲ କୋଡ୍ ବିଷୟରେ ଥରେ କହିଥିଲେ, "ମୋର ପ୍ରକୃତ ଖ୍ୟାତି ୪୦ଟି ସଂଗ୍ରାମରେ ବିଜୟ ହାସଲ ଯୋଗୁ ନୁହେଁ । ଯେଉଁ ଖ୍ୟାତି କେବେ ନଷ୍ଟ ହୋଇ ପାରିବ ନାହିଁ ଏବଂ ଯେ ଚିର ଦିନ ପାଇଁ ତିଷ୍ଠି ରହିବ ସେ ହେଲା ମୋର ବ୍ୟବହାର ସଂହିତା ( ସିଭିଲ କୋଡ୍ ) । ( My real glory is not my having won forty battles. What will never be effaced and what will endure for ever is my Civil Code. ) ନେପୋଲିୟନଙ୍କର ଏହି ସିଭିଲ କୋଡ୍ ଇଉରୋପର ଅନ୍ୟାନ୍ୟ ଦେଶମାନଙ୍କର ଆଇନ ସଂସ୍କାରକୁ ବିଶେଷ ଭାବରେ ପ୍ରଭାବିତ କରିଥିବାରୁ ତାଙ୍କର ଏ ଉକ୍ତିର ଯଥାର୍ଥତା ରହିଛି । ସେ ବିପ୍ଳବସମ୍ଭୂତ ଧ୍ୱଂସାତ୍ମକ ପ୍ରଭାବର ଅବସାନ ଘଟାଇ ବିପ୍ଳବର ପ୍ରକୃତ ଉନ୍ନତି ବିଧାୟକ ନୀତି-ଗୁଡ଼ିକ ଗ୍ରହଣ କରିଥିଲେ । ତେଣୁ ଏହି ଦିଗରୁ ଦେଖିବାକୁଗଲେ ନେପୋଲିୟନ ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କଲେ ମଧ୍ୟ ସେ ବିପ୍ଳବ ଓ ସ୍ୱେଚ୍ଛାଚାରୀ ଶାସନ ମଧ୍ୟରେ ସମନ୍ୱୟ ଆଣିବା ପାଇଁ ବିଶେଷ ଉଦ୍ୟମ କରିଥିଲେ । ଫରାସୀ ଲୋକେ ସାମନ୍ତବାଦ, ବିଶେଷ ଅଧିକାର ଓ ଅନ୍ୟସବୁ ସାମାଜିକ ଅବସ୍ଥାଗୁଡ଼ିକର ବିଲୋପ ସାଧନ ପାଇଁ ଅତୀତରେ ଯେଉଁ ଧ୍ୱଂସାତ୍ମକ ଆନ୍ଦୋଳନ ଚଳାଇଥିଲେ ସେ ସବୁଡ଼ିକର ଉଚ୍ଛେଦ ସାଧନ କରାଯାଇଥିଲା ଏବଂ ଫ୍ରାନ୍ସର ସାମାଜିକ ଓ ଅର୍ଥନୈତିକ ଜୀବନରେ ଯେଉଁ ସବୁ ବୈପ୍ଳବିକ ପରିବର୍ତ୍ତନ ପୂର୍ବରୁ ଘଟି-ଯାଇଥିଲା ସେ ସବୁକୁ କନସୋଲେଟ୍ ସରକାର ଅନୁମୋଦନ କରିଥିଲେ; କିନ୍ତୁ ରାଜନୀତି କ୍ଷେତ୍ରରେ କନସୋଲେଟ୍ ସରକାର ବୁରବନ୍ ରଜାମାନଙ୍କର ନିରଙ୍କୁଶ ଶାସନ ସପକ୍ଷରେ ପ୍ରତିକ୍ରିୟା ଦେଖାଇଥିଲେ । ନେପୋଲିୟନ୍ ଥରେ କହିଥିଲେ, 'ମୁଁ ବିପ୍ଳବ' ( 'I am the Revolution' ) ଏବଂ ଆଉ ଥରେ କହିଥିଲେ, "ମୁଁ ବିପ୍ଳବର ଧ୍ୱଂସ ସାଧନ କରିଅଛି" ('I destroyed the Revolution') ଏହି ଦୁଇଟି ଉକ୍ତି ପରସ୍ପର ବିରୋଧୀ ବୋଲି ମନେହୁଏ ସତ କିନ୍ତୁ ଗଭୀର ଭାବରେ ବିଶ୍ଳେଷଣ କଲେ ଉଭୟ ଉକ୍ତି ମଧ୍ୟରେ ସାମଞ୍ଜସ୍ୟ ରହିଛି ବୋଲି ଆମ୍ଭେମାନେ ଅନୁଭବ କରି ପାରିବା । ସର୍ବୋପରି ନେପୋଲିୟନ୍ ବିପ୍ଳବର ସମତା ନୀତି ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ସେ ପ୍ରତିଭାର ପୂଜକ ଥିଲେ । ତେଣୁ ସେ ସବୁ ଚାକିରି-ବାକିରିର ଦ୍ୱାର ଗୁଡ଼ିକ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କ ପାଇଁ ଉନ୍ମୁକ୍ତ

ରଖି ସମସ୍ତଙ୍କୁ ସମାନ ସୁଯୋଗ ଦେଇଥିଲେ । ତା ଦ୍ୱାରା ସେ ବିଶେଷ ଅଧିକାର ପ୍ରାପ୍ତ ଗୋଷ୍ଠୀମାନଙ୍କୁ ଉପେକ୍ଷା କରିଥିଲେ । ସୁତରାଂ ଫରାସୀ ସମାଜ ଯେ ବିପ୍ଳବ ଉପରେ ଆଧାରିତ ହୋଇଥିଲା, ଏ କଥା କେହି ଅସ୍ୱୀକାର କରି ପାରିବେ ନାହିଁ । ଏହାଛଡ଼ା ତାଙ୍କର ବ୍ୟକ୍ତିଗତ ଜୀବନ 'ଧର୍ମ-ତନ୍ତ୍ରର ସମାନ ଅଧିକାର'—ଏହି ଗଣତାନ୍ତ୍ରିକ ନୀତିର ଏକ ଚମତ୍କାର ଉଦାହରଣ । ସେ ଅତି ସାଧାରଣ ଅବସ୍ଥାରୁ ଉନ୍ନତିର ଚରମ ସୋପାନରେ ପହଞ୍ଚି ଏହି ଗଣତାନ୍ତ୍ରିକ ନୀତିକୁ ରୂପାୟିତ କରିଥିଲେ । ଫ୍ରାନ୍‌ସରେ ତାଙ୍କର କ୍ଷମତା ପ୍ରତିଷ୍ଠା ପୁରାତନ ଶାସନ ଅମଳର ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ପୂର୍ବ ଭୂସମ୍ପତ୍ତି ଓ ବିଶେଷ ଅଧିକାର ପୁନଃ ପ୍ରାପ୍ତି ବିରୁଦ୍ଧରେ ନିର୍ଦ୍ଦେଶକ ହୋଇଥିଲା । ଏହି ଦିଗରୁ ବିଚାର କଲେ ତାଙ୍କୁ 'ବିପ୍ଳବ' କହିବା ଯୁକ୍ତିଯୁକ୍ତ; କାରଣ ବିପ୍ଳବ ପୂର୍ବରୁ ଜଣେ ସାଧାରଣ ଅବସ୍ଥାରୁ ଏପରି ଉଚ୍ଚପଦବୀ ଲାଭ କରିବା ସମ୍ଭବପର ନଥିଲା । ଏକଥା ସତ ଯେ ବିପ୍ଳବ ଆଗରୁ ଧର୍ମଯାଜକ ଓ ସମ୍ଭ୍ରାନ୍ତ ଗୋଷ୍ଠୀର ଲୋକେ ରାଜ-ଅନୁଗ୍ରହ ଲାଭ କରିବାକୁ କେବଳ ସକ୍ଷମ ହେଉଥିଲେ । ନେପୋଲିୟନ ଫ୍ରାନ୍‌ସରେ ରାଜନୈତିକ ଓ ଅର୍ଥନୈତିକ ସ୍ଥାୟିତ୍ୱ ଓ ଦୃଢ଼ତା ଆଣିବାରେ ସଫଳ ହୋଇଥିଲେ । ଅନ୍ୟ ଦିଗରେ ସେ ବିପ୍ଳବ ଜାତ ସ୍ୱାତନ୍ତ୍ର୍ୟ ଓ ସାମ୍ୟ (Liberty and Equality) ଏହି ଦୁଇଟି ମଧ୍ୟରୁ ପ୍ରଥମ ନୀତିଟିକୁ ଅର୍ଥାତ ସ୍ୱାତନ୍ତ୍ର୍ୟ ନୀତିକୁ ଦବାଇ ଦେଇ କେବଳ ସାମ୍ୟ ନୀତି ପ୍ରତିଷ୍ଠା କରିଥିଲେ । ରାଜନୀତି କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ଅର୍ଥାତ ଜନତାର ଅଂଶ ଗ୍ରହଣର ଅଧିକାର—ଏହି ନୀତିର ବିରୋଧ କରି ନେପୋଲିୟନ ଯେ ବିପ୍ଳବର ଧ୍ୱଂସ ସାଧନ କରିଥିଲେ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ନେପୋଲିୟନ ବିପ୍ଳବର ଧ୍ୱଂସାତ୍ମକ ପ୍ରଭାବକୁ ବିନାଶ କରିଥିଲେ । ସେ ସ୍ୱାତନ୍ତ୍ର୍ୟ ନୀତିର ବିରୋଧ କରିଥିଲେ କାରଣ ସେ ହୃଦୟଙ୍ଗମ କରିପାରିଥିଲେ ଯେ କିପରି ସ୍ୱାତନ୍ତ୍ର୍ୟ ନାମରେ ଦେଶରେ ଅରାଜକତା ସୃଷ୍ଟି ହୋଇଛି । ତେଣୁ ଶାନ୍ତି ଓ ଶୃଙ୍ଖଳା ପୁନଃ ସ୍ଥାପନ କରିବା ଉଦ୍ଦେଶ୍ୟରେ ସେ ଦୃଢ଼ ଓ କେନ୍ଦ୍ରୀଭୂତ ଶାସନ ପ୍ରତିଷ୍ଠା କରିଥିଲେ । ୧୮୦୪ ମସିହାରେ ନେପୋଲିୟନ ଫ୍ରାନ୍‌ସର ସମ୍ରାଟ ହେବା ମାତ୍ରେ ଏକଥା ସୁସ୍ପଷ୍ଟ ହୋଇଗଲା ଯେ ଫ୍ରାନ୍‌ସ ବିଭିନ୍ନ ରାଜନୈତିକ ପରୀକ୍ଷା ପରେ ବିପ୍ଳବ ସମୟର ବଂଶାନୁକ୍ରମିକ ସ୍ୱେଚ୍ଛାଚାରୀ ଶାସନକୁ ଫେରିଆସିଲା । ସେ ଯାହାହେଉ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ସେ ବିପ୍ଳବର ଧ୍ୱଂସାତ୍ମକ ପ୍ରଭାବର ବିନାଶକ ନ ହୋଇଥିଲେ ବିପ୍ଳବର ସୁଫଳ ଗୁଡ଼ିକର ରକ୍ଷକ ହୋଇପାରି ନଥାନ୍ତେ । ତେଣୁ ନେପୋଲିୟନ ବିଭିନ୍ନ ସଂସ୍କାର ପ୍ରବର୍ତ୍ତନ କରି ନିଜକୁ ଜଣେ ମହାନ ସାମାଜିକ ସଂସ୍କାରକ ବୋଲି ପ୍ରମାଣ କରି ପାରିଥିଲେ । ଯଥାର୍ଥରେ କୁହା-ଯାଇଛି ଯେ ନେପୋଲିୟନଙ୍କର ରାଜ୍ୟ ଜୟ ଗୁଡ଼ିକ ଯଦି କ୍ଷଣସ୍ଥାୟୀ ହୋଇଥିଲା ତାଙ୍କର ବେସାମରିକ କାର୍ଯ୍ୟ ଗ୍ରାନାଇଟ ପ୍ରସ୍ତର ଉପରେ ଗଢ଼ାଯାଇଥିଲା । (If the conquests of Napoleon was ephemeral, his civilian work was built upon granite).

## କନସୋଲେଟ୍ ସରକାରଙ୍କର ବୈଦେଶିକ ନୀତି (୧୭୯୯ – ୧୮୦୪)
## Foreign Policy of the Consulate ( 1799 – 1804 )

ନେପୋଲିୟନ ବୋନାପାର୍ଟ ଡାଇରେକ୍‌ଟୋରୀ ସରକାରଙ୍କର ଉତ୍ତରାଧିକାରୀ ହିସାବରେ ଦ୍ୱିତୀୟ ଶକ୍ତିମେଣ୍ଟ ( Second Coalition ) ସହିତ ଯୁଦ୍ଧରେ ଲିପ୍ତ ହୋଇଥିଲେ । ଏହି ଶକ୍ତିମେଣ୍ଟର ପ୍ରଧାନ ସଭ୍ୟମାନେ ହେଲେ, ରୁଷିଆ, ଇଂଲଣ୍ଡ, ଅଷ୍ଟ୍ରିୟା ଏବଂ ନେପ୍ଲସ୍ । କିନ୍ତୁ ରୁଷିଆର ଜାରପଲ୍ ମିତ୍ରରାଷ୍ଟ୍ରମାନଙ୍କ ଉପରେ ସନ୍ତୁଷ୍ଟ ନଥିଲେ ଏବଂ ଇଂରେଜମାନଙ୍କ ଦ୍ୱାରା ମାଲ୍‌ଟା ଅଧିକାର ତାଙ୍କୁ ଅତି ମାତ୍ରାରେ ଆଘାତ ଦେଇଥିଲା । ତାଙ୍କର ମଧ୍ୟ ପ୍ରଥମ କନ୍‌ସାଲ ନେପୋଲିୟନଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଥିଲା । ଫଳରେ ସେ ଦ୍ୱିତୀୟ ଶକ୍ତିମେଣ୍ଟରୁ ଓହରିଯାଇ ନେପୋଲିୟନଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ । ନେପୋଲିୟନ୍ ପ୍ରୁସିୟାକୁ ତାଙ୍କ ସହିତ ମେଣ୍ଟ ବାନ୍ଧିବାକୁ ପ୍ରସ୍ତାବ ଦେବା ସତ୍ତ୍ୱେ ପ୍ରୁସିୟା ତାହାର ନିରପେକ୍ଷ ନୀତିରେ ଅଟଳ ରହିଥିଲା । ନେପୋଲିୟନ୍ ମଧ୍ୟ ଇଂଲଣ୍ଡ ଏବଂ ଅଷ୍ଟ୍ରିୟାକୁ ତାଙ୍କ ଶାନ୍ତି ପ୍ରସ୍ତାବ ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ଏ ପ୍ରସ୍ତାବରେ ଆନ୍ତରିକତା ନଥିବାର ସନ୍ଦେହ କରାଯାଇଥିଲା । ଇଂଲଣ୍ଡ ପକ୍ଷରୁ ପିଟ୍ ଏ ଶାନ୍ତି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । କାରଣ ନେପୋଲିୟନଙ୍କ ଉପରେ ତାଙ୍କର ଆସ୍ଥା ନଥିଲା । ଏତଦ୍‌ବ୍ୟତୀତ ଫ୍ରାନ୍‌ସ ଅଷ୍ଟ୍ରୀୟ ନେଦରଲାଣ୍ଡ ( ବେଲଜିୟମ୍ ) ଦଖଲ କରିନେଇ ପ୍ରଧାନ ପଣ୍ୟସ୍ଥଳ ଆଣ୍ଟୱେର୍ପ (Antwerp) ଉପରେ ତାର ଅଧିକାର ସାବ୍ୟସ୍ତ କରିଥିଲା । ଫ୍ରାନ୍‌ସର ଭୂମଧ୍ୟସାଗରରେ ଅନଧିକାର ପ୍ରବେଶ ଫଳରେ ସାରାବିଶ୍ୱରେ ବାଣିଜ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ଇଂଲଣ୍ଡର ପ୍ରାଧାନ୍ୟ କ୍ଷୁଣ୍ଣ ହେବାର ଆଶଙ୍କା ଥିଲା ।

ନେପୋଲିୟନ ପ୍ରଥମକନ୍‌ସାଲ୍ ହେଲାବେଳକୁ ଯୁଦ୍ଧକ୍ଷେତ୍ରରେ ଫ୍ରାନ୍‌ସର ଅବସ୍ଥା ସନ୍ତୋଷଜନକ ନଥିଲା । ଅଷ୍ଟ୍ରିୟା ଓ ଦକ୍ଷିଣ ଜର୍ମାନୀର ସୈନ୍ୟମାନେ ଜେନୋଆ ବ୍ୟତୀତ ସମଗ୍ର ଇଟାଲିରୁ ଫରାସୀମାନଙ୍କୁ ତଡ଼ି ଦେଇଥିଲେ । ଇଂଲଣ୍ଡର ନୌବହର ମିନୋର୍କା ( Minorca ) ଅଧିକାର କରିନେଇ ମାଲ୍‌ଟା ( Malta ) ଦଖଲ କରିବା ଅବସ୍ଥାରେ ଥିଲେ ଓ ଗୋଟିଏ ଫରାସୀ ସେନାବାହିନୀକୁ ମିଶରରେ ଅବରୁଦ୍ଧ କରି ରଖିଥିଲେ ।

ନେପୋଲିୟନଙ୍କ ଶାନ୍ତି ପ୍ରସ୍ତାବ ଅଷ୍ଟ୍ରିୟା ଓ ଇଂଲଣ୍ଡଦ୍ୱାରା ଅଗ୍ରାହ୍ୟ ହେବାରୁ ସେ ଏହି ବଡ଼ ଶତ୍ରୁଦ୍ୱୟଙ୍କର ମୁକାବିଲା କରିବାପାଇଁ ଦୃଢ଼ ପ୍ରତିଜ୍ଞ ହୋଇଥିଲେ । ପ୍ରଥମେ ସେ ଅଷ୍ଟ୍ରିଆର ଗର୍ବ ଚୂର୍ଣ୍ଣ କରିବାକୁ ଯୋଜନା ପ୍ରସ୍ତୁତ କଲେ । ଏହି ଯୋଜନା ଅନୁସାରେ ଅଷ୍ଟ୍ରିୟା ବିରୁଦ୍ଧରେ ଦୁଇଦିଗରୁ ଅଭିଯାନ ଚଳାଇବାକୁ ପ୍ରସ୍ତୁତ ହେଲେ । ସେ ଜର୍ମାନୀ ଆକ୍ରମଣ କରିବାପାଇଁ ମୋରିଓ (Moreau)ଙ୍କ ନେତୃତ୍ୱାଧୀନରେ ଗୋଟିଏ ବଡ଼ ସୈନ୍ୟ-ବାହିନୀ ରଖିଥିଲେ । ସେ ନିଜେ ଇଟାଲିରେ ଅଷ୍ଟ୍ରୀୟମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବା ଉଦ୍ଦେଶ୍ୟରେ ଅତି ସତର୍କତାର ସହିତ ଅନ୍ୟ ଏକ ସୈନ୍ୟବାହିନୀ ଆଲପସ୍ ପର୍ବତମାଳା

( the Alps )ର ପାଦଦେଶରେ ଠିଆ କରିଥିଲେ । ୧୮୦୦ ମସିହା ମେ ମାସରେ ଚାଳିଶହଜାର ସୈନ୍ୟ ଆଲପସ୍‌ର ସେଣ୍ଟ ବାର୍ନାର୍ଡ଼ ଗିରିସଙ୍କଟ ( St. Bernard Pass ) ପାର ହୋଇ ହଠାତ୍ ପିଡ଼୍‌ମଣ୍ଟରେ ପହଞ୍ଚିଯିବାରୁ ଅଷ୍ଟ୍ରିଆର ସେନାପତି ଅବାକ୍ ହୋଇ ଯାଇଥିଲେ । ଅଷ୍ଟ୍ରିଆର ସୈନ୍ୟବାହିନୀ ତାଙ୍କ ସୈନ୍ୟବାହିନୀଠାରୁ ସଂଖ୍ୟାରେ ଅଧିକ ହେଲେ ମଧ୍ୟ ନେପୋଲିୟନ ଅଷ୍ଟ୍ରିଆକୁ ଜୁନ୍ ମାସ ୧୪ ତାରିଖ ଦିନ ବିଖ୍ୟାତ ମାରେନ୍‌ଗୋ ( Marengo ) ଯୁଦ୍ଧରେ ପରାସ୍ତ କରିଥିଲେ । କେବଳ ଏହି ବିଜୟ ଫଳରେ ଉତ୍ତର ଇଟାଲି ପୁନର୍ବାର ଦଖଲକରି ନିଆଯାଇଥିଲା; କିନ୍ତୁ ମୋରିଓ ୧୮୦୦ ମସିହା ଡିସେମ୍ବର ମାସରେ ହୋହେନ୍‌ଲିନ୍‌ଡେନ୍ ( Hohenlinden ) ଯୁଦ୍ଧରେ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଜୟ ହାସଲ କରିଥିଲେ । ଅଷ୍ଟ୍ରିଆ ଏ ଯୁଦ୍ଧରେ ତାର ସମସ୍ତ ସମ୍ମାନ ଓ କମାଣ ହରାଇଥିଲା ଓ ତାହାର ୧୨୦୦୦ ସୈନ୍ୟ ବନ୍ଦୀ ହୋଇଥିଲେ । ମୋରିଓ ବିଶୃଙ୍ଖଳ ଅଷ୍ଟ୍ରୀୟ ସୈନ୍ୟମାନଙ୍କୁ ତଡ଼ିଦେଇ ନିଜ ସୈନ୍ୟବାହିନୀ ସହିତ ଭିଏନା ଆଡ଼କୁ ଅଗ୍ରସର ହେଲେ । ସମ୍ରାଟ୍ ଫ୍ରାନ୍‌ସିସ୍ ( Francis ) ଆତଙ୍କିତ ହୋଇ ସନ୍ଧି ପ୍ରସ୍ତାବ ଆଗତ କରିଥିଲେ ଏବଂ ୧୮୦୧ ମସିହା ଫେବୃୟାରି ମାସରେ ଲୁନେଭିଲେ ( Luneville ) ଠାରେ ଏହି ସନ୍ଧି ସ୍ୱାକ୍ଷରିତ ହୋଇଥିଲା । ଏହି ସନ୍ଧି ଫଳରେ ଫ୍ରାନ୍ସ ଇଟାଲିରେ ତାର ପୂର୍ବ ଅଧିକାର ଫେରି ପାଇଲା ଏବଂ ହଲାଣ୍ଡ, ବେଲ୍‌ଜିୟମ ଓ ରାଇନର ବାମତଟ ଉପରେ ତାର କର୍ତ୍ତୃତ୍ୱକୁ ପୁନର୍ବାର ସ୍ୱୀକୃତ ଦିଆଗଲା । ଡ୍ୟୁକ ଅଫ ପାରମା ( Parma )କୁ ଟସ୍‌କାନି ( Tuscany ) ହସ୍ତାନ୍ତର କରାଯାଇଥିଲା । ଲୁନେଭିଲେ ସନ୍ଧି କ୍ୟାମ୍ପୋ ଫରମିଓ ( Compo Formio ) ସନ୍ଧିର କେବଳ ଦୃଢ଼ୀକରଣ ନୁହେଁ ଓ ସନ୍ଧି ପବିତ୍ର ରୋମୀୟ ସାମ୍ରାଜ୍ୟ ( the Holy Roman Empire )ର ପୁନର୍ଗଠନପାଇଁ ବିହିତ ବ୍ୟବସ୍ଥା କରି ସେହି ସାମ୍ରାଜ୍ୟର ମୂଳଦୁଆକୁ ଦୋହଲାଇ ଦେଇଥିଲା । ନେପ୍‌ଲସ ( Naples )ର ବୁରବନ୍ ( Bourbon ) ଶାସକ ମଧ୍ୟ ଫ୍ରାନ୍ସ ସହିତ ସନ୍ଧି କରିଥିଲେ । ଦ୍ୱିତୀୟ ଶକ୍ତିମେଣ୍ଟ କ୍ରମଶଃ ଦୁର୍ବଳ ହୋଇପଡ଼ିଥିଲା; କିନ୍ତୁ ଫ୍ରାନ୍ସର ଏକମାତ୍ର ଶତ୍ରୁ ରହିଲା ଇଂଲଣ୍ଡ ।

ଇତ୍ୟବସରରେ ଫରାସୀ ସୈନ୍ୟବାହିନୀ ମିଶରର ଆଲେକ୍‌ଜାଣ୍ଡ୍ରିଆଠାରେ ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ନେପୋଲିୟନ୍ ଦେଖିଲେ ଇଂଲଣ୍ଡ ସହିତ ନୌଯୁଦ୍ଧ କରି ତାର କ୍ଷତିସାଧନ କରିବା ସମ୍ଭବପର ନୁହେଁ, ତେଣୁ ସେ କୂଟନୀତିର ଆଶ୍ରୟ ନେଇଥିଲେ । ନିରପେକ୍ଷ ଶକ୍ତିମାନଙ୍କର ଇଂଲଣ୍ଡ ବିରୁଦ୍ଧରେ ଅଭିଯୋଗଗୁଡ଼ିକ ସେ ନିଜର ସ୍ୱାର୍ଥସିଦ୍ଧି ପାଇଁ ବ୍ୟବହାର କଲେ । ବ୍ରିଟିଶ ସରକାର ସେତେବେଳେ ଖାଦ୍ୟ ସାମଗ୍ରୀ ଏବଂ ନୌସରଞ୍ଜାମକୁ ଇଂଲଣ୍ଡଦ୍ୱାରା ନିଷିଦ୍ଧ ପଣ୍ୟଦ୍ରବ୍ୟ (Contraband of war) ବୋଲି ଘୋଷଣା କରିଥିଲେ ଏବଂ ସେ ସବୁ ଦ୍ରବ୍ୟ ଯଦି ଶତ୍ରୁରାଷ୍ଟ୍ରର ହୋଇଥାଏ ଏବଂ ନିରପେକ୍ଷ ଦେଶର ଜାହାଜରେ ବହନ କରି ନିଆଯାଉଥାଏ, ତା’ହେଲେ ସେ ସବୁକୁ ଜବତ୍ କରି ନିଆଯାଉଥିଲା । ନେପୋଲିୟନ୍ ରୁଷିଆ, ପ୍ରୁସିଆ,

ସ୍ୱିଡେନ, ଡେନମାର୍କର ପୂର୍ବମେଣ୍ଟକୁ ନିରପେକ୍ଷ ଦେଶମାନଙ୍କ ସପକ୍ଷରେ ପୁନର୍ଜୀବିତ କରିବା ପାଇଁ ପ୍ରବର୍ତ୍ତାଉଥିଲେ । ଏହି ମେଣ୍ଟକୁ ୧୮୦୦-୧୮୦୧ର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଦ୍ୱିତୀୟ ନିରପେକ୍ଷ ଶକ୍ତିମେଣ୍ଟ ( Second Armed Neutrality) ବୋଲି ଅଭିହିତ କରାଯାଇଛି । ଏହାର ଲକ୍ଷ୍ୟ ଥିଲା ଇଂଲଣ୍ଡଦ୍ୱାରା ନିରପେକ୍ଷ ଜାହାଜ ଗୁଡ଼ିକର ଖାନତଲାସକୁ ରୋକିବା । ଏହି ମେଣ୍ଟ ଗଠନକୁ ବ୍ରିଟେନ ଯୁଦ୍ଧ ଘୋଷଣାବୋଲି ବିଚାର କରିଥିଲା । ପାର୍କର ଏବଂ ନେଲସନ୍ ଉନାମାରମାନଙ୍କର ନୌବହର ( Danish fleet )କୁ ପରାସ୍ତ କରି ତାକୁ ୧୮୦୧ ମସିହା ଅପ୍ରେଲ ମାସରେ କୋପେନ୍ ହାଗେନ୍ ( Copen hagen ) ଠାରେ ଜବତ କରିଥିଲେ । ଏହି ବିଜୟ ସାଙ୍ଗକୁ ଜାରପଲ୍‌ଙ୍କର ହତ୍ୟା ଇଂଲଣ୍ଡକୁ ଉକ୍ତ ନିରପେକ୍ଷ ଶକ୍ତିମେଣ୍ଟର ହାତରୁ ରକ୍ଷା କରିଥିଲା । ଇଂରେଜମାନେ ମଧ୍ୟ ନିରପେକ୍ଷ ଶକ୍ତି-ମାନଙ୍କୁ ଜାହାଜ ଗୁଡ଼ିକର ଖାନତଲାସ ବିଷୟରେ କେତେକ ବିଶେଷ ସୁବିଧା ଦେଇଥିଲେ । ଏପରି କରିବାଦ୍ୱାରା ନିରପେକ୍ଷ ଶକ୍ତିମେଣ୍ଟ ଭାଙ୍ଗିପଡ଼ିଥିଲା ।

ଦଶବର୍ଷଯାକ ଯୁଦ୍ଧରେ ବ୍ୟାପୃତ ଥାଇ ଉଭୟ ଇଂଲଣ୍ଡ ଏବଂ ଫ୍ରାନ୍‌ସ ବର୍ତ୍ତମାନ ପ୍ରମାଣ କରିଦେଲେ ଯେ ଜଣେ ଅନ୍ୟ ଜଣକ ନିକଟରେ ଅଭେଦ୍ୟ । ଏହି ଦୁଇଟିଯାକ ଦେଶ ଯୁଦ୍ଧ ଯୋଗୁ କ୍ଲାନ୍ତହୋଇ ପଡ଼ିଥିଲେ ଏବଂ ଶାନ୍ତି ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ତେଣୁ ପରସ୍ପର ମଧ୍ୟରେ ବୁଝାମଣା କରି ସେମାନେ ୧୮୦୨ ମସିହା ମାର୍ଚ୍ଚ ମାସରେ ଆମିନସ୍ ଶାନ୍ତି ଚୁକ୍ତି ( The Peace of Amiens ) ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତି ଅନୁଯାୟୀ ଶ୍ରୀଲଙ୍କା ଓ ତ୍ରିନିଦାଦ୍ ବ୍ୟତୀତ ଇଂଲଣ୍ଡ, ଫ୍ରାନ୍‌ସ ଓ ତାହାର ମିତ୍ର ରାଷ୍ଟ୍ରମାନଙ୍କଠାରୁ ଅଧିକାର କରି ନେଇଥିବା ସମସ୍ତ ଅଞ୍ଚଳ ଫେରାଇ ଦେଇଥିଲା ଏବଂ ମାଲ୍‌ଟା ଛାଡି ଚାଲି ଯିବା ପାଇଁ ପ୍ରତିଶ୍ରୁତି ଦେଇଥିଲା । ଅନ୍ୟ ପକ୍ଷରେ ଫ୍ରାନ୍‌ସ ନେପ୍‌ଲସ୍ ଓ ପୋପଙ୍କ ରାଜ୍ୟ ଛାଡ଼ି ଦେଇଥିଲା । ତୁର୍କୀର ସୁଲତାନଙ୍କୁ ମିଶର ଫେରାଇ ଦେଇଥିଲା, ପର୍ତ୍ତୁଗାଲର ଅଖଣ୍ଡତା ରକ୍ଷାକରିବା ପାଇଁ ନିର୍ଭର ପ୍ରତିଶ୍ରୁତି ଦେଇଥିଲା ଏବଂ ଜୋନିଅନ୍ ସାଧାରଣତନ୍ତ୍ର (Jonion Republic )ର ସ୍ୱାଧୀନତା ସ୍ୱୀକାର କରିଥିଲା । ଏହି ସବୁ ସର୍ତ୍ତଗୁଡ଼ିକ ଫ୍ରାନ୍‌ସ ପ୍ରତି ଅନୁକୂଳ ହୋଇଥିଲା; କାରଣ ସେ ତାର ପୁରାତନ ଉପନିବେଶଗୁଡ଼ିକ ବଜାୟ ରଖିବା ସଙ୍ଗେ ସଙ୍ଗେ ଅଧିକ କିଛି ଅଞ୍ଚଳ ମଧ୍ୟ ଲାଭ କରିଥିଲା । ତା ଛଡ଼ା ରାଇନ୍ ନଦୀର ବାମତଟ ଅର୍ଥାତ୍ ନେଦରଲାଣ୍ଡ ( ବେଲ୍‌ଜିୟମ )କୁ ଫ୍ରାନ୍‌ସର ଅଧୀନରେ ଛାଡ଼ି ଦିଆଯାଇଥିଲା; ଫଳରେ ଇଂଲଣ୍ଡ ତାର ନିରାପତ୍ତା ଦୃଷ୍ଟିରୁ ଯାହାକୁ ଅତି ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ବୋଲି ବିବେଚନା କରୁଥିଲା, ପ୍ରାୟ ଏକଶହ ପଚିଶ ବର୍ଷ ଯୁଦ୍ଧ ଓ କୂଟନୀତି ଚଳାଇବା ପରେ ତାକୁ ପ୍ରଥମ ଥର ପାଇଁ ଫ୍ରାନ୍‌ସ ହସ୍ତରେ ସମର୍ପଣ କରିଦେଲା । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଇଂଲଣ୍ଡ ଫ୍ରାନ୍‌ସ ସହିତ ଯୁଦ୍ଧରେ କୌଣସି ବିପର୍ଯ୍ୟୟର ସମ୍ମୁଖୀନ ହୋଇ ନଥିଲେ ମଧ୍ୟ ଇଂଲଣ୍ଡ ଫ୍ରାନ୍‌ସର ଅଧିକାଂଶ ଦରିଆପାରି ଅଞ୍ଚଳ ଗୁଡ଼ିକ ଫେରାଇ ଦେଇଥିଲା । ଗୋଟିଏ ପକ୍ଷକୁ ସୁହାଉଥିବା କୌଣସି ରାଜିନାମା ସ୍ଥାୟୀ ହେବା ସମ୍ଭବପର ନୁହେଁ । ଆମିନସ୍ ରାଜିନାମାର ଦୁର୍ବଳତା ହେଲା ଏହି ଯେ ଇଂଲଣ୍ଡ ଏକ ଅପରାଜିତ ଶକ୍ତି ହେଲେ

ମଧ୍ୟ କ୍ଷତିପୂରଣ ହିସାବରେ କୌଣସି ଉପନିବେଶ ଲାଭ କରିନଥିଲା, କିମ୍ବା ଅନ୍ୟ ପକ୍ଷରେ ଫ୍ରାନ୍ସଠାରୁ ଭବିଷ୍ୟତ ପାଇଁ ଅନାକ୍ରମଣାତ୍ମକ ନୀତି ଅବଲମ୍ବନ ବିଷୟରେ କୌଣସି ପ୍ରତିଶ୍ରୁତି ପାଇ ନଥିଲା । ଅଧିକନ୍ତୁ ସେ ଇଉରୋପ ବ୍ୟାପାରରେ କୌଣସି ହସ୍ତକ୍ଷେପ କରିବନାହିଁ ବୋଲି ଶପଥ ନେଇଥିଲା । ତେଣୁ ଏହି ଶାନ୍ତିଚୁକ୍ତି ଇଉରୋପୀୟ ପରିସ୍ଥିତିର ବାସ୍ତବତା ସହିତ ଆଦୌ ସାମଞ୍ଜସ୍ୟ ରକ୍ଷିପାରିନଥିଲା ।

ଆମିନସ୍ ଶାନ୍ତିଚୁକ୍ତି ଅଳ୍ପକାଳସ୍ଥାୟୀ ଯୁଦ୍ଧ ବିରତି ବୋଲି ପ୍ରମାଣ କରିଦେଇଥିଲା । ନେପୋଲିୟନ୍ ମଧ୍ୟ ଫ୍ରାନ୍ସରେ କେତେକ ସଂସ୍କାର ପ୍ରବର୍ତ୍ତନ କରି ତାଙ୍କର ସ୍ଥିତି ସୁଦୃଢ଼ କରିବା ପାଇଁ କିଛି ସମୟ ଚାହୁଁଥିଲେ । ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ଯେ ସେ ତାଙ୍କର ସମସ୍ତ ସମ୍ପଦ ବିଷୟରେ ମିତବ୍ୟୟିତା ଅବଲମ୍ବନ କରିବେ ଏବଂ ପରେ ସାରା ବିଶ୍ୱରେ ପ୍ରଭାବ ବିସ୍ତାର କରିବା ପାଇଁ ଉଦ୍ୟମ ଚାଲୁ ରଖିବେ । ଅନ୍ୟ ଦିଗରେ ଇଂଲଣ୍ଡ ଆଶା କରିଥିଲା ଯେ ଫ୍ରାନ୍ସ ସହିତ ଶାନ୍ତିଚୁକ୍ତି ଫଳରେ ଶିଳ୍ପ ଓ ବାଣିଜ୍ୟର ପୁନରୁଦ୍ଧାର ହେବ । କିନ୍ତୁ ନେପୋଲିୟନ ଯେତେବେଳେ ରକ୍ଷାକାରି ବାଣିଜ୍ୟ ଶୁଳ୍କ ( high protective tariff ) ବସାଇ ଇଂରେଜମାନଙ୍କୁ ବାଣିଜ୍ୟ ପ୍ରତିଯୋଗିତାରୁ ବଞ୍ଚିତକଲେ; କିମ୍ବା ସେମାନଙ୍କର ପ୍ରତିଯୋଗିତାକୁ ହ୍ରାସ କରିଦେଲେ, ସେତେବେଳେ ଇଂଲଣ୍ଡ ଅତିମାତ୍ରାରେ ହତାଶ ଓ ବ୍ୟଥିତ ହୋଇପଡ଼ିଥିଲା । ତେଣୁ ଉଭୟ ଦେଶ ମଧ୍ୟରେ ବହୁଦିନଧରି ଉତ୍ତେଜନା ଲାଗିରହିଲା ଏବଂ ନେପୋଲିୟନଙ୍କ ଆକ୍ରମଣାତ୍ମକ ମନୋଭାବ ଏହାକୁ ତୀବ୍ର କରିଦେଇ ଥିଲା । ଏହି କ୍ଷଣସ୍ଥାୟୀ ଶାନ୍ତି ସମୟରେ ନେପୋଲିୟନ୍ ପିଡ଼ମେଣ୍ଟ ଓ ଏଲବା ଅଧିକାର କରିନେଇଥିଲେ ଏବଂ ନିଜର ସ୍ୱାର୍ଥ ଦୃଷ୍ଟିରୁ ଜର୍ମାନରାଷ୍ଟ୍ରମାନଙ୍କର ପୁନର୍ଗଠନ କରିଥିଲେ । ସେ ସ୍ୱିଜରଲଣ୍ଡକୁ ସୈନ୍ୟ ପ୍ରେରଣ କରି ତାର ବ୍ୟାପାରରେ ହସ୍ତକ୍ଷେପ କରିଥିଲେ ଓ ନିଜେ ତାର ମଧ୍ୟସ୍ଥ ( Mediator ) ହୋଇଥିଲେ । ତା'ଛଡ଼ା ହଲଣ୍ଡକୁ ମଧ୍ୟ ଫ୍ରାନ୍ସ ସହିତ ସେ ଯୋଗ କରିଥିଲେ । ଏଥିରେ ଇଂଲଣ୍ଡ ରୁଷ୍ଟ ହୋଇ ଅଭିଯୋଗ କରିଥିଲା ଯେ ଶାନ୍ତି ସମୟରେ ନେପୋଲିୟନଙ୍କର ଆକ୍ରମଣଗୁଡ଼ିକ ଯୁଦ୍ଧସମୟର ଆକ୍ରମଣଗୁଡ଼ିକ ଅପେକ୍ଷା କ୍ୱଚିତ୍ କମ ସଂଖ୍ୟକ । ଏହିରୂପେ ଫରାସୀ ପ୍ରଭାବର ଦ୍ରୁତ ପ୍ରସାର ଇଂଲଣ୍ଡକୁ ଅତିଶୟ ଆତଙ୍କିତ କରିଥିଲା ।

ନେପୋଲିୟନ ବୁରବନ୍‌ମାନଙ୍କର ଔପନିବେଶିକ ନୀତି ପୁନଃପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରୁଥିବାରୁ ଇଂଲଣ୍ଡ ଏଥିରେ ବଡ଼ ବିଚଳିତ ହୋଇ ପଡ଼ିଥିଲା । ସେ ୧୮୦୦ ମସିହାରେ ଆମେରିକାରେ ଅବସ୍ଥିତ ଲୁଇସିଆନା ( Louisiana ) ନାମକ ଏକ ବିସ୍ତୃତ ଭୂଖଣ୍ଡ ସ୍ପେନଠାରୁ ଲାଭକରିଥିଲେ ଏବଂ ସେଠାରେ ଫରାସୀ ସାମ୍ରାଜ୍ୟ ଗଠନକରିବା ପାଇଁ କଳ୍ପନା କରିଥିଲେ । ସେ ସାନ୍ ଡୋମିନଗୋ ( ହେଟି ) ଦ୍ୱୀପରେ ନିଗ୍ରୋମାନେ ବିଦ୍ରୋହ କରୁଥିବାରୁ ତାକୁ ଅଧିକାର କରିବା ପାଇଁ ତାଙ୍କ ସୈନ୍ୟବାହିନୀ ପଠାଇଥିଲେ ଏବଂ ସେ ସୈନ୍ୟବାହିନୀ ୧୮୦୨ ମସିହାରେ ତାକୁ ଅଧିକାର କରିନେଇଥିଲେ ( ଅବଶ୍ୟ ତା'ପର ବର୍ଷ ନିଗ୍ରୋମାନେ ତାକୁ ପୁନର୍ବାର ଦଖଲ କରିନେଇଥିଲେ ) । ତେଣୁ ବ୍ରିଟିଶ୍ ସରକାର ସନ୍ଦେହ

କରିଥିଲେ ଯେ ନେପୋଲିୟନଙ୍କର ଏହିସବୁ କାର୍ଯ୍ୟ ସେମାନଙ୍କର ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ଉପରେ ରହିଥିବା କର୍ତ୍ତୃତ୍ୱକୁ ଏକ ଯୁଦ୍ଧ ଆହ୍ୱାନ ।

ନେପୋଲିୟନ ମଧ୍ୟ ମିଶର, ଉତ୍ତମାଶାଅନ୍ତରୀପ, ଭାରତ ଓ ଅଷ୍ଟ୍ରେଲିଆ ଉପରେ ଲୋଲୁପ ଦୃଷ୍ଟି ପକାଇଥିଲେ । ସେ ଭାରତୀୟ ରାଜାମାନଙ୍କୁ ଇଂଲଣ୍ଡ ବିରୁଦ୍ଧରେ ଉତ୍ତେଜିତ କରିବା ପାଇଁ ଭାରତକୁ ଏକ ମିଶନ (ଦୂତମଣ୍ଡଳ) ପଠାଇଥିଲେ । ରାଜନୈତିକ ଉଦ୍ଦେଶ୍ୟ ସିଦ୍ଧିପାଇଁ ସେନାପତି ସେବାଷ୍ଟିଆନି (General Sebastiani)ଙ୍କ ଅଧ୍ୟକ୍ଷତାରେ ଅନ୍ୟ ଏକ ମିଶନ୍ ମିଶରକୁ ପଠାଇଥିଲେ । ସେ ମିଶନ ଫ୍ରାନ୍ସ ପୁନର୍ବାର ମିଶର ଅଧିକାର କରିପାରେ ବୋଲି ଯେଉଁ ରିପୋର୍ଟ ବା ବିବରଣୀ ସରକାରକୁ ଦେଇ-ଥିଲେ, ତାକୁ ନେପୋଲିୟନ ସାଧାରଣରେ ପ୍ରକାଶ କରି ଦେଇଥିଲେ । ନେପୋଲିୟନଙ୍କର ଏହି ମନୋଭାବ ଯୋଗୁ ଇଂଲଣ୍ଡକୁ ଆତ୍ମରକ୍ଷା ନିମନ୍ତେ ପ୍ରସ୍ତୁତହୋଇ ରହିବାକୁ ପଡ଼ିଥିଲା । ମାଲଟା ଭୂମଧ୍ୟସାଗରରେ ଦ୍ୱାର ବା ପ୍ରବେଶ ଦ୍ୱାର ହୋଇଥିବାରୁ ଓ ଭାରତକୁ ସଂଯୋଗ କରୁଥିବା ଜଳପଥରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିବାରୁ ଇଂଲଣ୍ଡ ତାର ପୂର୍ବ ପ୍ରତିଶ୍ରୁତି ନ ରଖି ନିଜ ହାତରୁ ତାକୁ ଛାଡ଼ିଦେବାକୁ ଟେକ୍‌ଟୋକ୍ ମନାକରିଦେଲା । ସୁତରାଂ ଏହାଦ୍ୱାରା ଆମିନସ ଶାନ୍ତିଚୁକ୍ତି ଭଙ୍ଗ କରାଯାଇଥିଲା ଏବଂ ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ୧୮୦୩ ମସିହା ମେ ମାସରେ ପୁନର୍ବାର ଯୁଦ୍ଧ ଆରମ୍ଭ ହୋଇଗଲା ।

---

# ପଞ୍ଚମ ଅଧ୍ୟାୟ

## ନେପୋଲିୟନଙ୍କର ସାମ୍ରାଜ୍ୟ (୧୮୦୪—୧୮୧୫)
## ( The Napoleonic Empire 1804-1815 )

### ନେପୋଲିୟନ ସମ୍ରାଟ ହେଲେ
### ( Napoleon Proclaimed as Emperor )

୧୮୦୨ ମସିହା ମେ ମାସରେ ଆମିନ୍ସ ଶାନ୍ତି ଚୁକ୍ତି ସ୍ୱାକ୍ଷର ହେବାପରେ ନେପୋଲିୟନ ବିଶ୍ୱଶାନ୍ତି ପ୍ରତିଷ୍ଠା କରିଥିବା ଯୋଗୁ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବାକୁ ଯାଇ ସିନେଟ୍ ତାଙ୍କୁ ଯାବଜ୍ଜୀବନ ପାଇଁ ଏକମାତ୍ର କନସାଲ୍ କରିବାକୁ ପ୍ରସ୍ତାବ ଦେଲା । ଏ ପ୍ରସ୍ତାବକୁ ଗଣଭୋଟଦ୍ୱାରା ଅନୁମୋଦନ କରାଯାଇଥିଲା । ତେଣୁ ଅନ୍ୟ ଦୁଇଜଣ କନ୍‌ସାଲଙ୍କୁ ପ୍ରତ୍ୟାହାର କରି ନିଆଗଲା । ଫଳରେ ନେପୋଲିୟନ ଏକମାତ୍ର କନ୍‌ସାଲ ଭାବେ ଶାସନ କାର୍ଯ୍ୟ ପରିଚାଳନା କଲେ । ପ୍ରକୃତରେ ତାଙ୍କୁ ସାଧାରଣତନ୍ତ୍ରର ମୁଖ୍ୟ କହିବା ଅପେକ୍ଷା ବରଂ ସମ୍ରାଟ କହିବା ଅଧିକ ଯୁକ୍ତିଯୁକ୍ତ ହେବ; କାରଣ ସେ ଅନ୍ୟ ସମ୍ରାଟମାନଙ୍କପରି ସବୁ ଦଲିଲରେ ତାଙ୍କ ଡାକ ନାମ 'ନେପୋଲିୟନ୍' ସ୍ୱାକ୍ଷର କରୁଥିଲେ ।

ନେପୋଲିୟନ୍ ଏକମାତ୍ର କନସାଲ୍ ହେଲେ ମଧ୍ୟ ସେ ସେଥିରେ ସନ୍ତୁଷ୍ଟ ହୋଇ ନଥିଲେ । ସେ ସାଧାରଣତନ୍ତ୍ରକୁ ଧ୍ୱଂସକରି ରାଜତନ୍ତ୍ର ପ୍ରତିଷ୍ଠା କରିବାକୁ ଓ ନିଜକୁ ସମ୍ରାଟ ଉପାଧିରେ ଭୂଷିତ କରିବାକୁ ଚାହୁଁଥିଲେ । ତେଣୁ ସେ ତାଙ୍କର ଏହି ଉଚ୍ଚାଭିଳାଷ ପୂରଣ କରିବା ପାଇଁ ସୁଯୋଗ ଖୋଜୁଥିଲେ । ସେହି ସମୟରେ ରାଜତନ୍ତ୍ରବାଦୀମାନେ କମତେ-ଡି-ଆରଟଏଜ୍ ( Comte-de-Artois )ଙ୍କ ନେତୃତ୍ୱରେ ନେପୋଲିୟନଙ୍କୁ ହତ୍ୟାକରିବା ନିମନ୍ତେ ଷଡ଼ଯନ୍ତ୍ର କରୁଥିଲେ; କିନ୍ତୁ ସେ ଷଡ଼ଯନ୍ତ୍ରର ସନ୍ଧାନ ମିଳିଲା ଏବଂ କମତେ-ଡି-ଆରଟଏଜଙ୍କ ବ୍ୟତୀତ ଅଧିକାଂଶ ଷଡ଼ଯନ୍ତ୍ରକାରୀଙ୍କୁ ଗିରଫ କରାଯାଇ କଠୋର ଦଣ୍ଡ ଦିଆଯାଇଥିଲା । ଷଡ଼ଯନ୍ତ୍ରକାରୀମାନଙ୍କ ସହିତ ବୁରବନ ରାଜବଂଶର ପ୍ରତିନିଧି ନିରୀହ ଡ୍ୟୁକ-ଅଫ-ଏନ୍‌ଘିଏନ୍ (Duke of Enghien) ଙ୍କୁ ଗିରଫ କରାଯାଇଥିଲା ଏବଂ ବନ୍ଧୀ ଅବସ୍ଥାରେ ତାଙ୍କୁ ଗୁଳିକରି ମାରି ଦିଆଯାଇଥିଲା । ନେପୋଲିୟନଙ୍କ ଅଧୀନ ସରକାରୀ ପଦାଧିକାରୀମାନେ ନେପୋଲିୟନଙ୍କୁ ହତ୍ୟା କରିବାପାଇଁ ଉଦ୍ୟମ ହେଉଥିବାରୁ ଫ୍ରାନ୍‌ସର ଭବିଷ୍ୟତ ନିରାପଦ କରିବା ଉଦ୍ଦେଶ୍ୟରେ ଏକ ନୂତନ ରାଜବଂଶ ପ୍ରତିଷ୍ଠା କରିବାକୁ ତାଙ୍କୁ ଆବେଦନ କରିଥିଲେ । ସମ୍ବିଧାନର ତତ୍ତ୍ୱାବଧାରକ ( Guardian ) ସିନେଟ ୧୮୦୪ ମସିହା ମେ ୧୮ ତାରିଖ ଦିନ ନେପୋଲିୟନଙ୍କୁ 'ଫରାସୀମାନଙ୍କର ସମ୍ରାଟ'

(the Emperor of the French) ବୋଲି ଘୋଷଣା କଲେ । ନୂତନ ସମ୍ବିଧାନରେ ତାଙ୍କର ଶାସନ ପୁରୁଷାନୁକ୍ରମିକ କରାଯାଇଥିଲା ଏବଂ ପୂର୍ବପରି ଲୋକମତ ଦ୍ୱାରା ତାହା ଅନୁମୋଦନ କରା ଯାଇଥିଲା । ଅଭିଷେକ ଉତ୍ସବରେ ନେପୋଲିୟନଙ୍କୁ ରାଜମୁକୁଟ ପିନ୍ଧାଇବା ପାଇଁ ପୋପଙ୍କୁ ନିମନ୍ତ୍ରଣ କରି ଅଣାଯାଇଥିଲା; କିନ୍ତୁ ଉତ୍ସବ ଚାଲିଥିବା ସମୟରେ ନେପୋଲିୟନ ହଠାତ୍ ପୋପ୍‌ଙ୍କ ହାତରୁ ମୁକୁଟଟିକୁ ଛଡ଼ାଇଆଣି ନିଜ ମସ୍ତକରେ ଲଗାଇଦେଇଥିଲେ । ନେପୋଲିୟନଙ୍କ ପକ୍ଷେ ଏପରି କରିବା ଅଯୌକ୍ତିକ ନୁହେଁ । କାରଣ, ନେପୋଲିୟନ ବୋନାପାର୍ଟ ନିଜର ଶକ୍ତି ଓ ସାମର୍ଥ୍ୟ ବଳରେ ସମ୍ରାଟ ହେବାପାଇଁ ନିଜକୁ ଯୋଗ୍ୟ କରିପାରିଥିଲେ । ତେଣୁ ସେ ରାଜମୁକୁଟକୁ ପୋପ୍‌ଙ୍କଠାରୁ ଏକ ଦାନ ହିସାବରେ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ନେପୋଲିୟନଙ୍କ ନୂତନ ଉପାଧି 'ଫରାସୀମାନଙ୍କ ସମ୍ରାଟ' ତାଙ୍କର ନୂତନ ଶକ୍ତିର ପରିଚାୟକ ଥିଲା । ନେପୋଲିୟନ ଥରେ ଯଥାର୍ଥରେ କହିଥିଲେ 'ମୁଁ ଫ୍ରାନ୍‌ସର ରାଜମୁକୁଟ ଭୂଇଁରେ ଲୋଟିଥିବାର ଦେଖି ତାକୁ ମୁଁ ମୋର ତରବାରି ସାହାଯ୍ୟରେ ଉଠାଇ ନେଲି ।' ('I found the crown of France lying on the ground and I picked it up with my sword.')



[ ସମ୍ରାଟ ନେପୋଲିୟନ ]

ନେପୋଲିୟନ ସମ୍ରାଟ ଉପାଧି ଧାରଣ କରିବାରୁ ସାଧାରଣତନ୍ତ୍ରର ଅବସାନ ଘଟିଲା । ଫ୍ରାନ୍‌ସ ପୁନର୍ବାର ସ୍ୱେଚ୍ଛାଚାରୀ ଶାସନତନ୍ତ୍ର ଅଧୀନରେ ଆସିଲା । ଫରାସୀ ବିପ୍ଳବ ଫଳରେ ସ୍ୱେଚ୍ଛାଚାରୀ ଶାସନରୁ ମୁକ୍ତିଲାଭ କରି ଏବଂ ରାଜନୈତିକ ଓ ବ୍ୟକ୍ତିଗତ ସ୍ୱାଧୀନତାର ଆସ୍ୱାଦ ପାଇ ସୁଦ୍ଧା ଫରାସୀ ଜାତି କାହିଁକି ପୁନର୍ବାର ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥା ନିର୍ବିକାର ଚିତ୍ତରେ ମାନିନେଲେ, ଏ କଥା ରହସ୍ୟଜନକ ମନେ-ହେଲେ ମଧ୍ୟ ତାହାର ଯଥାର୍ଥ କାରଣମାନ ରହିଛି ।

ବିପ୍ଳବ ସମୟରେ ରାଜନୈତିକ ବ୍ୟବସ୍ଥାର ଘନ ଘନ ପରିବର୍ତ୍ତନ ଫଳରେ ଫରାସୀ ଜାତି ଅତିମାତ୍ରାରେ ଅଧୈର୍ଯ୍ୟ ହୋଇପଡ଼ିଥିଲା । ସେମାନଙ୍କୁ ଏତେପ୍ରକାର ପରୀକ୍ଷାପର୍ଯ୍ୟାୟ

ଓ ପରୀକ୍ଷା ମଧ୍ୟଦେଇ ଗତି କରିବାକୁ ପଡ଼ିଥିଲା ଯେ, ସେମାନେ ଶାନ୍ତି ଓ ଶୃଙ୍ଖଳା ପ୍ରତିଷ୍ଠା ପାଇଁ ବିଶେଷ ବ୍ୟାକୁଳ ହୋଇ ପଡ଼ିଥିଲେ । ନେପୋଲିୟନ ଏକ ଦୃଢ଼ ସରକାର ପ୍ରତିଷ୍ଠା କରି ଦେଶରେ ଶାନ୍ତି ଆଣିବାକୁ ଯେ ସମର୍ଥ ଏହି ବିଶ୍ୱାସ ସେମାନଙ୍କର ଥିଲା । ସାଧାରଣ ଲୋକେ ମଧ୍ୟ ଘନ ଘନ ରାଜନୈତିକ ଆନ୍ଦୋଳନ ଓ ନିର୍ବାଚନ ଯୋଗୁ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥିଲେ । ଦେଶରେ ଗଣ୍ଡଗୋଳ ଲାଗି ରହିଥିବାରୁ ଲୋକମାନଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଥିଲା । ଏହି ପରିସ୍ଥିତିର ଅବସାନ ଘଟାଇବା ପାଇଁ ସାଧାରଣ ଲୋକେ ଅସ୍ଥିର ହେଉଥିଲେ । ଏହିସବୁ କାରଣରୁ ନେପୋଲିୟନଙ୍କ ପରି ନିୟମ ଶୃଙ୍ଖଳାରେ ବିଶ୍ୱାସୀ ଜଣେ ଦୃଢ଼ମନା ବ୍ୟକ୍ତିଙ୍କ ହସ୍ତରେ ସମ୍ପୂର୍ଣ୍ଣ ଶାସନଭାର ନ୍ୟସ୍ତ କରି ଫରାସୀ ଜାତି ସ୍ୱସ୍ତିର ନିଃଶ୍ୱାସ ମାରିବ ବୋଲି ଭାବିଲା । ତେଣୁ ଶାସନକ୍ଷେତ୍ରରେ ଫ୍ରାନ୍‌ସରେ ଯେଉଁ ପରିବର୍ତ୍ତନ ହେଲା, ତାହା ଫରାସୀ ଜାତି ମନରେ ଯେ ଆଶା ସଞ୍ଚାର କରିଥିଲା ଏଥିରେ ସନ୍ଦେହ ନାହିଁ ।

ନେପୋଲିୟନ ଜଣେ ଦକ୍ଷ ଶାସକ ହୋଇଥିବାରୁ ତାଙ୍କ ପକ୍ଷରେ ବିପ୍ଳବର ଅଧିକ ମୂଲ୍ୟବାନ ଫଳଗୁଡ଼ିକ ରକ୍ଷା କରିବାର ସମ୍ଭାବନା ବେଶ୍ ଥିଲା । ସେ ଥିଲେ ଗଣତନ୍ତ୍ରର ମୂର୍ତ୍ତିମାନ ପ୍ରତୀକ । ଯେଉଁ ନୀତି ଅନୁସାରେ ଜାତି, ଧର୍ମ ଓ ସାମାଜିକ ସ୍ତର ନିର୍ବିଶେଷରେ ସମସ୍ତଙ୍କୁ ସମାନ ରାଜନୈତିକ ସୁଯୋଗ ଓ ସୁବିଧା ଦିଆଯାଏ ସେହି ନୀତି ନେପୋଲିୟନଙ୍କର ବ୍ୟକ୍ତିଗତ ଜୀବନରେ ପ୍ରତିଫଳିତ ହୋଇଥିଲା । ସେ ସାଧାରଣ ଅବସ୍ଥାରୁ ଫ୍ରାନ୍‌ସର ସର୍ବୋଚ୍ଚ କର୍ତ୍ତା ରୂପେ ଅଧିଷ୍ଠିତ ହୋଇ ଗଣତାନ୍ତ୍ରିକ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିଥିଲେ । ତେଣୁ ଏ କଥା ସ୍ୱୀକାର କରିବାକୁ ହେବ ଯେ, ନେପୋଲିୟନଙ୍କ ହସ୍ତରେ ରାଜନୈତିକ କ୍ଷମତା ନ୍ୟସ୍ତ ହେଲେ ପୁରାତନ ଶାସନ ଅମଳର ଅଭିଜାତ ସମ୍ପ୍ରଦାୟର ପ୍ରାଧାନ୍ୟ ପୁନର୍ବାର ଯେ ପ୍ରତିଷ୍ଠା ହୋଇପାରିବ ନାହିଁ ସେ ବିଷୟରେ ଫରାସୀ ଜାତି ନିଶ୍ଚିନ୍ତ ଥିଲେ । ତା' ଛଡ଼ା ଯେଉଁମାନେ ବିପ୍ଳବ ଫଳରେ ସମ୍ପତ୍ତି ବା ପ୍ରତିପତ୍ତି ଲାଭ କରିବାକୁ ସମର୍ଥ ହୋଇଥିଲେ, ସେମାନେ କେବେହେଲେ ଅଭିଜାତ ସମ୍ପ୍ରଦାୟର ପ୍ରାଧାନ୍ୟର ପୁନଃପ୍ରତିଷ୍ଠା ଚାହୁଁ ନଥିଲେ । ଏହିସବୁ କାରଣରୁ ନେପୋଲିୟନଙ୍କର ସମ୍ରାଟ ଉପାଧି ଗ୍ରହଣ କାହାରି ମନରେ ସନ୍ଦେହ କିମ୍ବା ବିରୋଧଭାବ ଜାତ କରିନଥିଲା ବରଂ ଯେଉଁମାନେ ଷୋଡ଼ଶ ଲୁଇଙ୍କୁ ହତ୍ୟାକରି ଦେଶ ବିଦେଶରେ ବିପ୍ଳବର ନୀତିଗୁଡ଼ିକ ପ୍ରଚାର କରିଥିଲେ ସେମାନେ ନେପୋଲିୟନଙ୍କର କ୍ଷମତାଲାଭ ଫଳରେ ଷୋଡ଼ଶ ଲୁଇଙ୍କର ବଂଶଧରମାନଙ୍କର ସିଂହାସନ ଲାଭର ପଥ ବନ୍ଦ ହୋଇଗଲା ବୋଲି ବିଚାରି ଆଶ୍ୱସ୍ତ ହୋଇଥିଲେ ।

ନେପୋଲିୟନଙ୍କର ଅସାଧାରଣ ବ୍ୟକ୍ତିତ୍ୱ ସମଗ୍ର ଫରାସୀ ଜାତିକୁ ବିଶେଷ ଆକୃଷ୍ଟ କରିଥିଲା । ତାଙ୍କର ବ୍ୟକ୍ତିତ୍ୱର ପ୍ରଭାବ କେବଳ ଯେ ସୈନିକ ଓ ସେନାପତିମାନଙ୍କ ଉପରେ ପଡ଼ିଥିଲା ତାହା ନୁହେଁ, ଯେଉଁ ବେସାମରିକ ଲୋକେ ତାଙ୍କ ଉପରେ କ୍ଷମତା ବିସ୍ତାର କରିବାକୁ ଚାହୁଁଥିଲେ ସେମାନେ ନେପୋଲିୟନଙ୍କ ଦ୍ୱାରା ପ୍ରଭାବିତ ହୋଇ ଏପରି ମନ୍ତ୍ରମୁଗ୍ଧ

ହୋଇଗଲେ ଯେ, ନେପୋଲିୟନଙ୍କ ଦ୍ୱାରା ପରିଚାଳିତ ହେବାକୁ ଆଦୌ କୁଣ୍ଠାବୋଧ କଲେନାହିଁ । ସେ ମଧ୍ୟ ଫରାସୀ ଜାତି ଯେଉଁ ସ୍ଥାୟୀ ଶାସନ ବ୍ୟବସ୍ଥା ଆବଶ୍ୟକ କରୁଥିଲା, ତାହା ସେ ସେମାନଙ୍କୁ ଦେଇଥିଲେ । ସେ କହିଥିଲେ, "ମୋର ନୀତି ହେଉଛି ଲୋକମାନେ ଯେପରି ଶାସିତ ହେବାକୁ ଚାହାନ୍ତି ସେହିପରି ସେମାନଙ୍କୁ ଶାସନ କରିବା । ମୁଁ ମନେ କରେ ସେହି ହେଉଛି ଲୋକମାନଙ୍କର ସାର୍ବଭୌମତ୍ୱ ସ୍ୱୀକାର କରିବାରେ ପ୍ରକୃତ ମାର୍ଗ ।" (He said, 'My policy consists in governing men as they wish to be governed. That I think, is the way of recognising the sovereignty of the people.')

ଫରାସୀ ସାମ୍ରାଜ୍ୟର ପୁନଃପ୍ରତିଷ୍ଠା ଫରାସୀ ରାଜଦରବାରର ପୁନରୁତ୍ଥାନର ସୂଚନା ଦେଲା । ଫରାସୀ ଦରବାରର ପୁନରୁତ୍ଥାନ ସଙ୍ଗେ ସଙ୍ଗେ ସବୁପ୍ରକାର ରାଜକୀୟ ସମାରୋହ ଓ ଶିଷ୍ଟାଚାରର ପୁନଃ ପ୍ରବର୍ତ୍ତନ ହେଲା । ନେପୋଲିୟନ ନିଜେ କୌଣସି ଜାକଜମକକୁ ପସନ୍ଦ କରୁନଥିଲେ ଏବଂ ଉତ୍ସବଗୁଡ଼ିକ ସମୟର ଅପବ୍ୟବହାର ବୋଲି ମନେ କରୁଥିଲେ । କିନ୍ତୁ ସେ କେବଳ ଭାବୁଥିଲେ ଯେ, ରାଜତନ୍ତ୍ର ସହିତ ଯେଉଁ ଆଡ଼ମ୍ବର ଅଙ୍ଗାଙ୍ଗୀ ଭାବେ ଜଡ଼ିତ ତାହା ପାଇବାକୁ ସେ ହକ୍‌ଦାର । ସେ ବିଶ୍ୱାସ କରିଥିଲେ ଯେ, ଲୋକମାନେ ଯେଉଁ ରାଜକୀୟ ଜାକଜମକର ଅଭାବ ଅନୁଭବ କରୁଛନ୍ତି, ସେଗୁଡ଼ିକ ଫେରି ଆସିଲେ ସେମାନେ ନିଶ୍ଚୟ ସନ୍ତୁଷ୍ଟ ହେବେ । ନେପୋଲିୟନଙ୍କର ଏହି ନୂତନ ଶାସନ ବିଶେଷ ଅଧିକାରପ୍ରାପ୍ତମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ଯଦିଓ ସମ୍ଭ୍ରାନ୍ତ ପଦବୀଗୁଡ଼ିକ ପୁନର୍ବାର ବ୍ୟବହାର କରାଯାଇଥିଲା ସେଗୁଡ଼ିକ ନିର୍ଦ୍ଦିଷ୍ଟ ଯୋଗ୍ୟତା ପାଇଁ ପ୍ରଦାନ କରାଯାଉଥିଲା ।

ନେପୋଲିୟନ ଫରାସୀମାନଙ୍କର ପ୍ରକୃତ ସ୍ୱଭାବ ବୁଝିପାରିଥିବାରୁ ସେ ତାଙ୍କ କାର୍ଯ୍ୟରେ ବହୁପରିମାଣରେ ସଫଳ ହୋଇଥିଲେ । ଗୋଟିଏ ଜାତି ହିସାବରେ ସେମାନଙ୍କର ଯେଉଁ ଅହଙ୍କାର ଥିଲା ତାହା ସେ ହୃଦୟଙ୍ଗମ କରି ପାରିଥିଲେ । ସେ ଥରେ ଫରାସୀମାନଙ୍କ ବିଷୟରେ କହିଥିଲେ, "ସେମାନଙ୍କୁ ଗୌରବର ଅଧିକାରୀ କର ଏବଂ ଯେଉଁଠାକୁ ଚାହିଁ ସେଠାକୁ ସେମାନଙ୍କୁ ପରିଚାଳିତ କରିନିଅ ।" (He once said, 'Give them glory and lead them any where.') ସେ ଫରାସୀମାନଙ୍କ ବାହ୍ୟ ଆଡ଼ମ୍ବର ପ୍ରତି ଅନୁରାଗ ବିଷୟ ଜାଣିଥିଲେ । ତେଣୁ ସେ ଇଟାଲୀରୁ ସବୁ ମୂଲ୍ୟବାନ ପଦାର୍ଥ ନେଇଯାଇ ପ୍ୟାରିସ୍‌କୁ ସେଥିରେ ସୁସଜ୍ଜିତ କରିଥିଲେ ଏବଂ ତାକୁ ଇଉରୋପର ଏକ ସମ୍ମାନଯୋଗ୍ୟ ସହରରେ ପରିଣତ କରିଥିଲେ । ତା' ଛଡ଼ା ସେ ଫରାସୀମାନଙ୍କୁ ଗୌରବର ଅଧିକାରୀ କରିବାପାଇଁ ସାମ୍ରାଜ୍ୟ ବିସ୍ତାର ନୀତି ଅବଲମ୍ବନ କରିଥିଲେ ।

୧୮୦୪ ମସିହାଠାରୁ ନେପୋଲିୟନଙ୍କ ଇତିହାସ ଇଉରୋପର ଇତିହାସରେ ପରିଣତ ହୋଇଥିଲା । ତାଙ୍କର ଅସାଧାରଣ ସାମରିକ ପ୍ରତିଭା ଏବଂ ସାଂଗଠନିକ ଶକ୍ତି

ସାହାଯ୍ୟରେ ସେ ଇଉରୋପ ମହାଦେଶକୁ ଏକତ୍ର କରି ଗୋଟିଏ ବଡ଼ ରାଜ୍ୟ ଗଠନ କରିବାକୁ ଏବଂ ସାଗରର କର୍ତ୍ତ୍ରୀ ( Mistress of the Sea ) ଇଂଲଣ୍ଡର ଗର୍ବ ଚୂର୍ଣ୍ଣ କରିବାକୁ ଆଗ୍ରହ ପ୍ରକାଶକରିଥିଲେ; କିନ୍ତୁ ଇଂରେଜମାନଙ୍କର ଅବିରତ ଉଦ୍ୟମ ଓ ଶିଳ୍ପନୈପୁଣ୍ୟ, ସ୍ପେନୀୟମାନଙ୍କର ଅହଙ୍କାର ଏବଂ ରୁଷୀୟମାନଙ୍କର ଦୃଢ଼ ମନୋଭାବ ଯୋଗୁ ନେପୋଲିୟନଙ୍କର ସମସ୍ତ ଉଦ୍ୟମ ଶେଷରେ ବ୍ୟର୍ଥ ହୋଇଗଲା । ତାଙ୍କର କ୍ଷମତା ୧୮୧୨ ମସିହାଠାରୁ ଭୂଷୁଡ଼ି ପଡ଼ିବାକୁ ଆରମ୍ଭ କଲା ।

୧୮୦୩ ମସିହା ମେ ଠାରୁ ୧୮୦୫ ମସିହା ଅକ୍ଟୋବର ପର୍ଯ୍ୟନ୍ତ ନେପୋଲିୟନଙ୍କର ଇଂଲଣ୍ଡ ଆକ୍ରମଣ ପାଇଁ ଯୋଜନାଗୁଡ଼ିକ ପ୍ରଧାନ ଆକର୍ଷଣୀୟ ବିଷୟ ଥିଲା । ନେପୋଲିୟନ୍ ପ୍ରଥମେ ବ୍ରିଟିଶ ରାଜାଙ୍କର ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ହେନୋଭର ରାଜ୍ୟ ଦଖଲ କରି-ନେଇ ଇଂଲଣ୍ଡ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ବ୍ରିଟିଶ ଜାହାଜଗୁଡ଼ିକ ପ୍ରବେଶ କରିବାକୁ ନ ଦେବାପାଇଁ ହେନୋଭରର ସବୁ ବନ୍ଦରଗୁଡ଼ିକ ବନ୍ଦ କରିଦେଲେ । ତା'ପରେ ସେ ଇଂଲଣ୍ଡ ଆକ୍ରମଣ ପାଇଁ ବୋଲନ ( Boulogne ) ଠାରେ ଏକ ବିରାଟ ନୌବାହିନୀ ପ୍ରସ୍ତୁତ କରିବାରେ ବ୍ୟସ୍ତ ରହିଲେ । ତାଙ୍କର ଯୋଜନାକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ନେପୋଲିୟନ୍ ଏକ ଲକ୍ଷ ସୈନ୍ୟ ବୋଲନ୍ ନିକଟରେ ମୁତୟନ କରିଥିଲେ । ଇଂଲଣ୍ଡ ବିରୁଦ୍ଧରେ ସୈନ୍ୟମାନଙ୍କୁ ପ୍ରେରଣା ଦେବାପାଇଁ ଗୋଟିଏ ନୌବହର ଗଠନ ଦିଗରେ ଅକ୍ଲାନ୍ତ ପରିଶ୍ରମ କରିଥିଲେ । ସେ କହିଥିଲେ, "ଯଦି ଆମ୍ଭେମାନେ ମାତ୍ର ଛଅଘଣ୍ଟା ପାଇଁ ବ୍ରିଟିଶ ପ୍ରଣାଳୀର ଅଧିକାରୀ ହୋଇପାରିବା, ତା ହେଲେ ଆମ୍ଭେମାନେ ବିଶ୍ୱ ଅଧିକାରୀ ହୋଇପାରିବା ।" ( He said, 'If we are masters of the Channel for six hours, we are masters of the world.' ) ନେପୋଲିୟନ ମଧ୍ୟ ସ୍ପେନ୍‌କୁ ଇଂଲଣ୍ଡ ବିରୁଦ୍ଧରେ ୧୮୦୪ ମସିହା ଶେଷ ଆଡ଼କୁ ଯୁଦ୍ଧ ଘୋଷଣା କରିବା ନିମନ୍ତେ ପ୍ରବର୍ତ୍ତାଇଥିଲେ ।

ଇଂରେଜମାନେ ଫ୍ରାନ୍ସର ଆକ୍ରମଣକୁ ପ୍ରତିରୋଧ କରିବାପାଇଁ ବିରାଟ ଆୟୋଜନ କରିଥିଲେ । ସେମାନେ ଫରାସୀ ଉପକୂଳ ଅବରୋଧ ନିମନ୍ତେ ଜାହାଜଗୁଡ଼ିକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖିଥିଲେ । ତା'ଛଡ଼ା ସେମାନେ ତୃତୀୟ ଶକ୍ତିମେଣ୍ଟ ଗଠନ କରିବାପାଇଁ କୂଟନୀତି ପ୍ରୟୋଗ କରିଥିଲେ । ଇତିମଧ୍ୟରେ ଜାର୍ ଆଲେକ୍‌ଜାଣ୍ଡାର ଉତ୍ତର ଜର୍ମାନୀରେ ନେପୋଲିୟନଙ୍କର କାର୍ଯ୍ୟକଳାପରେ ଏବଂ ତାଙ୍କର ସମ୍ରାଟ ଉପାଧି ଧାରଣ କରିବାରେ ଅତିଶୟ କ୍ଷୁବ୍‌ଧ ହୋଇଥିଲେ । ସେ ଫ୍ରାନ୍ସକୁ ଇଟାଲୀ, ଜର୍ମାନୀ, ହଲାଣ୍ଡ ଏବଂ ସୁଇଜରଲାଣ୍ଡ ତ୍ୟାଗ କରି ଚାଲିଯିବାକୁ ବାଧ୍ୟକରିବା ଉଦ୍ଦେଶ୍ୟରେ ଇଂଲଣ୍ଡ ସହିତ ରୁଷ୍-ଇଂଲଣ୍ଡ କନ୍‌ଭେନସନ୍ ବା ଚୁକ୍ତି ( Anglo-Russian Convention ) ସମ୍ପାଦନ କରିଥିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ ନେପୋଲିୟନ୍ ୧୮୦୫ ମସିହା ମେ ୫ ତାରିଖ ଦିନ ମିଲାନଠାରେ ଅଭିଷେକ କରାଇ ନିଜକୁ ଇଟାଲୀର ରାଜା ବୋଲି ଘୋଷଣା କରିଥିଲେ ଏବଂ ଆନୁଷ୍ଠାନିକ ଭାବରେ ଲିଗୁରିୟ ସାଧାରଣତନ୍ତ୍ର ( Ligurian

Republic ) କୁ ଅଧିକାର କରିଥିଲେ । ନେପୋଲିୟନ୍ ଇଟାଲୀରେ ଆକ୍ରମଣାତ୍ମକ ନୀତି ଅବଲମ୍ବନ କରିଥିବାରୁ ଅଷ୍ଟ୍ରିୟାର ଗାତ୍ରଦାହ ହୋଇଥିଲା । ଯେଉଁ ଇଟାଲୀରେ ସେ ଦିନେ ପ୍ରାଧାନ୍ୟ ବିସ୍ତାର କରିଥିଲା, ସେହି ଇଟାଲୀରେ ନେପୋଲିୟନଙ୍କର ପ୍ରଭୁତ୍ୱ ବରଦାସ୍ତ କରିବା ତା ପକ୍ଷରେ ସମ୍ଭବ ହେଉନାହିଁ । ତେଣୁ ସେ ହତାଶ୍ୟକ୍ତହୋଇ ରୁଷ-ଇଂଲଣ୍ଡ ମେଣ୍ଟରେ ଯୋଗଦେଲା । ଏହିପରି ଭାବରେ ଇଂଲଣ୍ଡ, ରୁଷିୟା, ଅଷ୍ଟ୍ରିୟା ମିଶି ୧୮୦୫ ମସିହାରେ ଫ୍ରାନ୍ସ ବିରୁଦ୍ଧରେ ତୃତୀୟ ଶକ୍ତିମେଣ୍ଟ ( Third Coalition ) ଗଠନ କରିଥିଲେ; କିନ୍ତୁ ନେପୋଲିୟନ ପ୍ରୁସିୟାକୁ ହେନୋଭର ଦେବାକୁ ପ୍ରତିଶ୍ରୁତି ଦେଇ-ଥିବାରୁ ପ୍ରୁସିୟା ନିରପେକ୍ଷ ରହିଥିଲା । ତୃତୀୟ ଶକ୍ତିମେଣ୍ଟ ଗଠନ ଯୋଗୁଁ ନେପୋଲିୟନ ବୋଲନରେ ରଖା ଯାଇଥିବା ସୈନ୍ୟବାହିନୀକୁ ରାଇନ୍ ( the Rhine ) ଏବଂ ଡାନ୍ୟୁବ୍ ( the Danube ) କୁ ସ୍ଥାନାନ୍ତରିତ କରିବାକୁ ବାଧ୍ୟ ହୋଇଥିଲେ । ସେ ଫରାସୀ ନୌସେନାଧ୍ୟକ୍ଷ ( Admiral ) ଭିଲେନ୍ୟୁଭ ( Villeneuve ) କୁ ଶତ୍ରୁର ମୁକାବିଲା କରିବାପାଇଁ ତାଙ୍କ ନୌବହରକୁ ପ୍ରସ୍ତୁତକରି ରଖିବାକୁ ଆଦେଶ ଦେଇଥିଲେ । ଭିଲେନ୍ୟୁଭ ଉଭୟ ଫରାସୀ ଓ ସ୍ପେନୀୟ ନୌବାହିନୀର ନେତୃତ୍ୱରେ ୧୮୦୫ ମସିହା ଅକ୍ଟୋବର ୨୧ ତାରିଖ ଦିନ ଟ୍ରାଫାଲଗର ଅନ୍ତରୀପ ( the cape of Trafalgar) ନିକଟରେ ବ୍ରିଟିଶ ନୌସେନାଧକ୍ଷଙ୍କର ମୁକାବିଲା କରିଥିଲେ । ବିନ୍ଦୁ ରାଷ୍ଟ୍ରଦ୍ୱୟଙ୍କର ପ୍ରଧାନ ନୌବହର ଟ୍ରାଫାଲଗରଠାରେ ନେଲସନଙ୍କ ଦ୍ୱାରା ଧ୍ୱଂସ ପାଇଯାଇଥିଲେ ମଧ୍ୟ ନେଲସନ ଏହି ଯୁଦ୍ଧରେ ପ୍ରାଣ ହରାଇଥିଲେ । ଇଂଲଣ୍ଡର ଏ ବିଜୟ ଫଳରେ ଫରାସୀ ନୌଶକ୍ତି ଭାଙ୍ଗି ପଡ଼ିଥିଲା । ତେଣୁ ନେପୋଲିୟନ୍ ଇଂଲଣ୍ଡ ଆକ୍ରମଣ କରିବା ପାଇଁ ଯେଉଁ ପରିକଳ୍ପନା କରିଥିଲେ, ତାହା ସେ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ ।

ଟ୍ରାଫାଲଗର ସଂଗ୍ରାମ ପୂର୍ବଦିନ ଅଲମ (Ulm) ଠାରେ ନେପୋଲିୟନ ଏକ ଅଷ୍ଟ୍ରୀୟ ସୈନ୍ୟବାହିନୀକୁ ପରାସ୍ତ କରି ବନ୍ଦୀ କରିଥିଲେ ଏବଂ ଅଷ୍ଟ୍ରିୟାର ସେନାପତିଙ୍କୁ ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ କରିଥିଲେ । ତା ପରେ ନେପୋଲିୟନ୍ କିଛି ଦୂର ଅଗ୍ରସର ହୋଇ ଅବଶିଷ୍ଟ ଅଷ୍ଟ୍ରୀୟ ସୈନ୍ୟ ସହିତ ରୁଷ୍ ସୈନ୍ୟବାହିନୀକୁ ୧୮୦୫ ମସିହା ଡିସେମ୍ବର ମାସ ୩ ତାରିଖରେ ଅଷ୍ଟରଲିଜ (Austerlitz) ସମରରେ ପରାସ୍ତ କରିଥିଲେ । ଏହି ବିଜୟ ଫଳରେ ତୃତୀୟ ଶକ୍ତିମେଣ୍ଟ ଭାଙ୍ଗି ପଡ଼ିଥିଲା । ଅଷ୍ଟ୍ରିୟା ପ୍ରେସବର୍ଗ ଶାନ୍ତି ଚୁକ୍ତି (Peace of pressburg) ସ୍ୱାକ୍ଷର କରିବାକୁ ବାଧ୍ୟ ହୋଇଥିଲା ଏବଂ ଚୁକ୍ତିର ସର୍ତ୍ତ ଅନୁଯାୟୀ ଅଷ୍ଟ୍ରିୟା ଭେନିସ୍ (Venice) ଓ ଟାଇରଲ (Tyrol) ଛାଡ଼ି ଦେଇଥିଲା । ଭେନିସକୁ ଇଟାଲୀ ରାଜ୍ୟ (The kingdom of Italy) ସହିତ ଓ ଟାଇରଲକୁ ବେଭେରିଆ ସହିତ ସାମିଲ କରିଦିଆଯାଇଥିଲା; ଫଳରେ ଅଷ୍ଟ୍ରିୟା ପ୍ରାୟ ତିରିଶଲକ୍ଷ ଅଧିବାସୀଙ୍କୁ ହରାଇଥିଲା । ଅଷ୍ଟ୍ରିୟାର ପୂର୍ବ ଦୁଇ କରଦ ରାଜ୍ୟ ବେଭେରିଆ (Bararia) ଏବଂ ଉର୍ଟେମ୍ବର୍ଗ ( Wurtemburg )କୁ ସ୍ୱତନ୍ତ୍ର ରାଜ୍ୟ ବୋଲି ସ୍ୱୀକୃତ ଦିଆଯାଇ ଜର୍ମାନୀରେ ତାହାର ପ୍ରଭାବକୁ ଅଧିକ ହ୍ରାସ କରିଦିଆଯାଇଥିଲା ।

ନେପୋଲିୟନ୍ ଏକ ସାମ୍ରାଜ୍ୟ ପ୍ରତିଷ୍ଠାକରି ରାଜ୍ୟମାନଙ୍କ ସହାୟତାରେ ଇଉରୋପରେ ପ୍ରାଧାନ୍ୟ ବିସ୍ତାର କରିବା ପାଇଁ ପରିକଳ୍ପନା କଲେ । ଏହି ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିବା ଦିଗରେ ତାଙ୍କର ପ୍ରଥମ ପଦକ୍ଷେପ ହେଲା, ତାଙ୍କ ପରିବାର ଲୋକମାନଙ୍କ ପାଇଁ ଓ ନିଷ୍ଠାପର ସାଥୀମାନଙ୍କ ପାଇଁ ରାଜଗାଦିସବୁ ଅନୁସନ୍ଧାନକରି ବାହାର କରିବା । ପ୍ରେସ୍‌ବର୍ଗ ଶାନ୍ତିଚୁକ୍ତିପରେ ନେପୋଲିୟନ୍ ଦ୍ୱିତୀୟ ସାର୍ଲିମେନ (Charlemagne II)ଙ୍କ ଭୂମିକା ଗ୍ରହଣ କଲେ ଏବଂ ନିଜକୁ କେତେଗୁଡ଼ିଏ କରଦରାଜ୍ୟଦ୍ୱାରା ପରିବେଷ୍ଟିତ କରାଇଥିଲେ । ଅଷ୍ଟରଲିଜ୍ ସଂଗ୍ରାମ ପୂର୍ବରୁ ନେପୋଲିୟନ୍ ସିସାଲପାଇନ୍ ସାଧାରଣତନ୍ତ୍ର ( Cisalpine Republic ) କୁ ଇଟାଲୀରାଜ୍ୟ ( The kingdom of Italy )ରେ ରୂପାନ୍ତରିତ କରିଥିଲେ ଏବଂ ନିଜକୁ ଇଟାଲୀର ରାଜାବୋଲି ଘୋଷଣା କରିଥିଲେ । ଏ ସଂଗ୍ରାମର ଅଳ୍ପଦିନ ପରେ ବାଟାଭିଏନ ସାଧାରଣତନ୍ତ୍ର ( Batavian Republic )କୁ ହଲଣ୍ଡର ( The Kingdom of Holland )ରେ ରୂପାନ୍ତରିତ କରାଯାଇ ନେପୋଲିୟନଙ୍କ ଭାଇ ଲୁଇ ବୋନାପାର୍ଟଙ୍କୁ ୧୮୦୬ ମସିହାରେ ଏହାର ରାଜା କରାଯାଇଥିଲା । ନେପୋଲିଅନଙ୍କର ଅନ୍ୟ ଜଣେ ଭାଇ ଯୋସେଫ ବୋନାପାର୍ଟଙ୍କୁ ସେହି ମସିହାରେ ନେପଲସ୍ ରାଜ୍ୟର ( ଦୁଇ ସିସିଲି ରାଜ୍ୟର ରାଜା କରାଯାଇଥିଲା । ତେଣୁ ଯେତେବେଳେ ଫ୍ରାନ୍ସରେ ରାଜତନ୍ତ୍ର ପୁନଃ ପ୍ରତିଷ୍ଠିତ ହେଲା ସେତେବେଳେ ଅଧୀନ ସାଧାରଣତନ୍ତ୍ର ରାଷ୍ଟ୍ରଗୁଡ଼ିକ ଫ୍ରାନ୍ସର ଆଦର୍ଶ ଅନୁଯାୟୀ ପୁନର୍ଗଠନ କରାଗଲା । ଏହିସବୁ ପରିବର୍ତ୍ତନ ଫ୍ରାନସ୍‌ର ସମ୍ବିଧାନର ପରିବର୍ତ୍ତନ ଅନୁସାରେ କରାଯାଇଥିଲା ।

ନେପୋଲିୟନ ବୋନାପାର୍ଟ ଜର୍ମାନୀକୁ ପୁନର୍ଗଠନ କରିବାକୁ ଯାଇ ସେଠାରେ ଆକର୍ଷଣୀୟ ପରିବର୍ତ୍ତନ ଆଣିଥିଲେ । ମନୋରମ ପ୍ରକାଶଭଙ୍ଗୀରେ କହିବାକୁ ଗଲେ ନେପୋଲିୟନଙ୍କ ଜର୍ମାନୀ ନୀତି ହେଲା, 'ପର୍ବତମାନଙ୍କୁ ତଳକୁ ନୁଆଁଇ ଉପତ୍ୟକାଗୁଡ଼ିକୁ ଉପରକୁ ଉଠାଇବା' । ( Napoleon's policy was 'to abase the mountains and exalt the valleys.' ) ଅର୍ଥାତ୍ ସେ ଠିକ୍ ଦିଗରେ ଜର୍ମାନୀର ଦୁଇଟି ବଡ଼ ରାଜ୍ୟ ଅଷ୍ଟ୍ରିୟା ଓ ପ୍ରୁସିୟାକୁ ଦୁର୍ବଳ କରିଦେବାକୁ ଚାହିଁଥିଲେ ଏବଂ ଅନ୍ୟ ଦିଗରେ ତାହାର କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରଗୁଡ଼ିକର କଳେବର ବୃଦ୍ଧି କରି ସେମାନଙ୍କୁ ଶକ୍ତିଶାଳୀ କରିବାକୁ ଉଦ୍ୟମ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ, କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରଗୁଡ଼ିକର କଳେବର ବୃଦ୍ଧି ହେଲେ ସେ ସେମାନଙ୍କୁ ନିଜର ବନ୍ଧୁରାଷ୍ଟ୍ରରେ ପରିଣତ କରିପାରିବେ ଏବଂ ଭବିଷ୍ୟତରେ ଫ୍ରାନ୍ସ ସହିତ ଅଷ୍ଟ୍ରିୟା ଓ ପ୍ରୁସିଆର ବିବାଦ ସମ୍ଭାବନାକୁ ଏଡ଼ିବାପାଇଁ ସେମାନଙ୍କୁ ଏକ ପାଖରେ ଫ୍ରାନ୍ସ, ଅନ୍ୟ ପାଖରେ ଅଷ୍ଟ୍ରିୟା ଓ ପ୍ରୁସିୟା ମଧ୍ୟରେ ନିରପେକ୍ଷ ରାଷ୍ଟ୍ରରୂପେ ସଙ୍ଗଠିତ କରି ନିଜର ସ୍ୱାର୍ଥ ସିଦ୍ଧି କରିପାରିବେ । ସୁତରାଂ ପ୍ରେସବର୍ଗ ଶାନ୍ତିଚୁକ୍ତି ଅନୁସାରେ ସେ ( ଡ୍ୟୁକ ଉପାଧିଥିବା ) ବେଭେରିଆ ଓ ଉର୍ଟେମ୍ବର୍ଗକୁ ରାଜ୍ୟ ପାହ୍ୟା ଦେଇଥିଲେ ଏବଂ ଅଷ୍ଟ୍ରିୟାର କେତେକ ଅଞ୍ଚଳକୁ ନେଇ ଦୁଇ ରାଜ୍ୟର କଳେବର ବୃଦ୍ଧି କରିଥିଲେ । ବାଡେନର ଇଲେକ୍ଟର ( The Elector of Baden ) ମଧ୍ୟ ପଶ୍ଚିମ

ଜର୍ମାନୀରେ ଅବସ୍ଥିତ ଦୂରବର୍ତ୍ତୀ ଅଷ୍ଟ୍ରିୟା ପ୍ରଦେଶ ଗୁଡ଼ିକରୁ ମଧ୍ୟ ଭାଗ ପାଇଥିଲେ ଏବଂ ଗ୍ରାଣ୍ଡ ଡ୍ୟୁକ ( Grand Duke ) ଉପାଧି ଗ୍ରହଣ କରିଥିଲେ । ଅଷ୍ଟ୍ରିୟାର ଶକ୍ତି ଏହିପରି ଭାବରେ ଖର୍ବ କରିଦିଆଯାଇଥିଲା ।

ପ୍ରୁସିୟା ପ୍ରତି ମଧ୍ୟ ନେପୋଲିୟନଙ୍କର ବ୍ୟବହାର କଠୋର ହୋଇଥିଲା । ତାଙ୍କର ଅଷ୍ଟରଲିଜ ଅଭିଯାନବେଳେ ପ୍ରୁସିଆ ଅଷ୍ଟ୍ରିୟା ସପକ୍ଷରେ ହସ୍ତକ୍ଷେପ କରିବ ବୋଲି ଧମକ ଦେଇଥିବାରୁ ନେପୋଲିୟନ୍ ତା ଉପରେ ଅତିଶୟ ଅସନ୍ତୁଷ୍ଟ ହୋଇଥିଲେ । ତେଣୁ ସେ ପ୍ରୁସିୟା ଉପରେ ସୋନ୍‌ବ୍ରନ ସନ୍ଧି ( Treaty of Schon Brunn ) ଲଦିଦେଇ ସେହି ସନ୍ଧିସର୍ତ୍ତ ଅନୁସାରେ ପ୍ରୁସିୟାକୁ ରାଇନ ଅଞ୍ଚଳଗୁଡ଼ିକ ସମର୍ପଣ କରିବାକୁ ବାଧ୍ୟ କରିଥିଲେ । ସେ ଅଞ୍ଚଳକୁ ନେଇ ବର୍ଗ ( Berg ) ନାମକ ଗୋଟିଏ କୃତ୍ରିମ ରାଜ୍ୟ ଗଠନ କରି ଆତ୍ମୀୟ ମୁରାତ୍ ( Murat )ଙ୍କୁ ସେଠାକାର ଡ୍ୟୁକ୍ କରାଇଥିଲେ । ପ୍ରୁସିଆକୁ ସନ୍ତୁଷ୍ଟ କରିବା ପାଇଁ ତାର ଅଞ୍ଚଳ ବଦଳରେ ଅପ୍ରୀତିକର ଦାନସ୍ୱରୂପ ହେନୋଭର ରାଜ୍ୟ ଦେଇଥିଲେ ଏବଂ ହେନୋଭରର ଉପକୂଳବର୍ତ୍ତୀ ଅଞ୍ଚଳରେ ବ୍ରିଟିଶ୍ ବାଣିଜ୍ୟ କାରବାର ବନ୍ଦକରି ଦେବାକୁ ପରାମର୍ଶ ଦେଇଥିଲେ ।

ଅଷ୍ଟ୍ରିୟାକୁ ସମସ୍ତଙ୍କ ଚକ୍ଷୁରେ ଅତିଶୟ ହୀନ କରାଇସାରି ନେପୋଲିୟନ୍ ଜର୍ମାନୀର ରାଜନୈତିକ ବ୍ୟବସ୍ଥାକୁ ପୁନର୍ଗଠନ କରିବା ପାଇଁ ପଦକ୍ଷେପ ନେଇଥିଲେ । ସେ ଜର୍ମାନୀରେ ଫରାସୀ ପୃଷ୍ଠପୋଷକତାରେ ମେନ୍ ନଦୀର ଦକ୍ଷିଣରେ ଥିବା ରାଷ୍ଟ୍ରମାନଙ୍କୁ ସଙ୍ଗଠିତ କରି ରାଇନ୍ କନଫେଡ଼େରେସନ ( The confederation of the Rhine ) ନାମକ ଏକ ନୂତନ ରାଷ୍ଟ୍ରସଂଘ ୧୮୦୬ ମସିହା ଜୁଲାଇ ମାସରେ ଗଠନ କରିଥିଲେ ଏବଂ ଟିଲସିଟ୍ ସନ୍ଧି ( Treaty of Tilsit ) ପରେ ଏହାର କଳେବର ବୃଦ୍ଧି କରାଇଥିଲେ । ପ୍ରଥମ ବେଭେରିଆ, ଉର୍ଟେମ୍‌ବର୍ଗ, ବାଡେନ୍ ଏବଂ ଦକ୍ଷିଣ ପଶ୍ଚିମ ଜର୍ମାନୀର ୧୬ଟି କ୍ଷୁଦ୍ର ରାଷ୍ଟ୍ରକୁ ନେଇ ଏହି ସଂଘ ଗଢ଼ାଯାଇଥିଲା । ଏହି ରାଷ୍ଟ୍ରମାନେ ପବିତ୍ର ରୋମ ସାମ୍ରାଜ୍ୟ ( The Holy Roman Empire ) ପ୍ରତି ସେମାନଙ୍କର ଆନୁଗତ୍ୟ ପ୍ରତ୍ୟାହାର କରି ନେଇ ନିଜକୁ ସ୍ୱାଧୀନ ବୋଲି ଘୋଷଣା କରିଥିଲେ ଏବଂ ନେପୋଲିୟନଙ୍କୁ ସେମାନଙ୍କର ଅଭିଭାବକ ( Protector ) ବୋଲି ଗ୍ରହଣ କରିଥିଲେ । ସେମାନେ ସମସ୍ତେ ଶପଥ ନେଇଥିଲେ ଯେ ତାଙ୍କୁ ପ୍ରତ୍ୟେକ ଯୁଦ୍ଧରେ ୬୩,୦୦୦ର ଏକ ସୈନ୍ୟବାହିନୀ ସାହାଯ୍ୟ ଦେଇ ସମର୍ଥନ କରିବେ । କନଫେଡେରେସନର ସୀମା ମଧ୍ୟରେ ଥିବା ଗ୍ରେଟ ଗ୍ରେଟ ସବୁ ରାଜା ଓ ନାଇଟ୍‌ମାନଙ୍କ ( Imperial Princes and Knights )ର ଶାସନ କ୍ଷମତା କାଢ଼ି ନିଆଯାଇଥିଲା ଏବଂ ସେମାନଙ୍କର ଅଞ୍ଚଳଗୁଡ଼ିକ ଯେଉଁ ସବୁ ପ୍ରଦେଶରେ ଅବସ୍ଥିତ ହୋଇଥିଲା, ସେହି ସବୁ ପ୍ରଦେଶରେ ସେଗୁଡ଼ିକ ସଂଯୁକ୍ତ କରିଦିଆଯାଇଥିଲା । ଏହି ନୂତନ ସଙ୍ଗଠନ ଅଷ୍ଟ୍ରିୟା ଓ ପ୍ରୁସିୟାର କ୍ଷମତାର ସମଭାର (counter poise) ରୂପେ କାର୍ଯ୍ୟ କରିବାପାଇଁ ଅଭିପ୍ରେତ ହୋଇଥିଲା । ଏହା ମଧ୍ୟ ରୁଷିଆର ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା, କାରଣ ନେପୋଲିୟନ ଜର୍ମାନୀରେ ଫରାସୀ ନୀତି ପ୍ରତି ଆନୁଗତ୍ୟ ପ୍ରକାଶ କରୁଥିବା ଏକ

ରାଜନୈତିକ ବ୍ୟବସ୍ଥା ପ୍ରବର୍ତ୍ତନକରି ରୁଷିଆକୁ ପଶ୍ଚିମ ଇଉରୋପରୁ ବହିଷ୍କୃତ କରିବାକୁ ଚାହୁଁଥିଲେ । ଏକଥା ସ୍ୱୀକାର କରିବାକୁ ହେବ ଯେ, ଅଷ୍ଟରଲିଜ୍ ସମରରେ ତୃତୀୟ ଶକ୍ତିମେଣ୍ଟ ଭୂଷୁଡ଼ିପଡ଼ିବା ପରେ ଇଉରୋପ ମହାଦେଶରେ ଫ୍ରାନ୍ସର ରୁଷିଆ କେବଳ ଶତ୍ରୁ ହୋଇ ରହିଥିଲା ।

ଏହି ସବୁ ଦେଶ ପବିତ୍ର ରୋମ୍ ସାମ୍ରାଜ୍ୟରୁ ବାହାରି ଯିବାରୁ ପ୍ରାଚୀନ ଜର୍ମାନୀର ରାଜନୈତିକ ବ୍ୟବସ୍ଥାରେ ଏକ ବିପ୍ଳବ ସୃଷ୍ଟି ହୋଇଥିଲା । ଯେଉଁ ପବିତ୍ର ରୋମ ସମ୍ରାଜ୍ୟ ଏକ ହଜାର ବର୍ଷଧରି କୌଣସିମତେ ତିଷ୍ଠି ରହିଥିଲା, ରାଇନ୍ କନଫେଡେରେସନ ଗଠନ-ଦ୍ୱାରା ତାହାକୁ ପ୍ରାୟ ଧ୍ୱଂସ କରି ଦିଆଯାଇଥିଲା । ନେପୋଲିୟନ୍ ୧୮୦୬ ମସିହା ଅଗଷ୍ଟ ମାସରେ ପବିତ୍ର ରୋମ ସାମ୍ରାଜ୍ୟର ପତନ ଘଟିଲା ବୋଲି ଘୋଷଣା କରିଥିଲେ । ବିତାଡ଼ିତ ସମ୍ରାଟ ଦ୍ୱିତୀୟ ଫ୍ରାନ୍ସିସ୍ ଏଥିରେ ପ୍ରତିବାଦ ନକରି ପବିତ୍ର ରୋମ ସାମ୍ରାଜ୍ୟର ସମ୍ରାଟ ପଦ ତ୍ୟାଗ କରିଥିଲେ ଏବଂ ନିଜକୁ ଅଷ୍ଟ୍ରିୟାର ସମ୍ରାଟ ପ୍ରଥମ ଫ୍ରାନ୍ସିସ୍ ବୋଲି ଘୋଷଣା କରିଥିଲେ । ତେଣୁ ଏହିପରି ଭାବରେ ପବିତ୍ର ରୋମ ସାମ୍ରାଜ୍ୟର ଧ୍ୱଂସ ସାଧନ କରା-ଯାଇଥିଲା । ଏ କଥା ମନେ ରଖିବାକୁ ହେବ ଯେ, ନେପୋଲିୟନଙ୍କଦ୍ୱାରା ଜର୍ମାନୀର ପୁନର୍ଗଠନ ଲୁନେଭିଲେ ସନ୍ଧି (୧୮୦୧) ପରେ ପରେ ଆରମ୍ଭ ହୋଇଯାଇଥିଲା । ଏହି ସନ୍ଧିରେ ଏକ ସର୍ତ୍ତ ଥିଲା ଯେ, ଫ୍ରାନ୍ସ ରାଇନ ନଦୀର ବାମତଟ ଅଧିକାର କରିନେଲା ପରେ ଜର୍ମାନୀର ଯେଉଁ ଧର୍ମନିରପେକ୍ଷ ଶାସକମାନେ ( Secular Rulers ) ଅଧିକାରଚ୍ୟୁତ ହୋଇ ଥିଲେ ସେମାନଙ୍କୁ ସେହି ନଦୀର ଡାହାଣ ତଟରେ କ୍ଷତିପୂରଣ ଦିଆଯିବ । ନେପୋଲିୟନ୍ ୧୮୦୩ମସିହାରେ ଜର୍ମାନୀର ଯାଜକୀୟ ରାଷ୍ଟ୍ର (ecclesiastical states)ଗୁଡ଼ିକୁ ଦମନ କରିଥିଲେ ଏବଂ ଯେଉଁ ଧର୍ମ ନିରପେକ୍ଷ ରାଷ୍ଟ୍ରମାନଙ୍କୁ କ୍ଷତି ପୂରଣ ଦେବାପାଇଁ ପ୍ରତିଶ୍ରୁତି ଦିଆଯାଇଥିଲା ସେହି ସବୁ ରାଷ୍ଟ୍ରମାନଙ୍କ ମଧ୍ୟରେ ଯାଜକୀୟରାଷ୍ଟ୍ରଗୁଡିକ ବାଣ୍ଟି ଦିଆଯାଇଥିଲା । ତା ପରେ ପରେ ୫୧ଟି ସ୍ୱାଧୀନ ନଗରୀ ( free cities ) ମଧ୍ୟରୁ ୪୫ଟି ନଗରୀକୁ ମୂଳପୋଛ କରି ଦିଆଯାଇଥିଲା । ଏହିପରି ଭାବରେ ୧୧୨ଟି ଛୋଟ ଛୋଟ ରାଷ୍ଟ୍ରକୁ ସେମାନଙ୍କର ବଡ଼ ବଡ଼ ପଡ଼ୋଶୀ ରାଷ୍ଟ୍ରମାନଙ୍କରେ ସାମିଲ୍ କରି ସେମାନଙ୍କୁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ କରି ଦିଆଗଲା । ପ୍ରେସବର୍ଗ ଶାନ୍ତିଚୁକ୍ତି ପରେ ମଧ୍ୟ ଅନୁରୂପ ଅଧିକାରଚ୍ୟୁତ ନୀତି ଅବଲମ୍ବନ କରାଯାଇଥିଲା । ଫଳରେ ଜର୍ମାନୀର ଜଟିଳ ରାଜନୈତିକ ମାନଚିତ୍ର ବହୁ ପରିମାଣରେ ସରଳ ହୋଇଯାଇଥିଲା ।

ନେପୋଲିୟନଙ୍କର ଜର୍ମାନୀ ବ୍ୟାପାରରେ ହସ୍ତକ୍ଷେପ ଏବଂ ପ୍ରୁସୀୟା ପ୍ରତି ଘୃଣାଭାବ ପ୍ରୁସିଆ ଜନସାଧାରଣଙ୍କୁ ବିଶେଷ ଉତ୍ତେଜିତ କରିଥିଲା । ପ୍ରଥମେ ଯେତେବେଳେ ନେପୋଲିୟନ ତାଙ୍କର ବିଜିତ ରାଜ୍ୟ ହାନୋଭରକୁ ଦାନ ହିସାବରେ ଗ୍ରହଣ କରିବାପାଇଁ ପ୍ରୁସିଆକୁ ବାଧ୍ୟ କରି ପୁନରାୟ ଇଂଲଣ୍ଡ ସାଙ୍ଗରେ ଆଲୋଚନାର ବାଟ ଫିଟାଇବା ଉଦ୍ଦେଶ୍ୟରେ ତାକୁ ହାନୋଭର ଫେରାଇବାକୁ ପ୍ରସ୍ତାବଦେଲେ ସେତେବେଳେ ପ୍ରୁସିଆ ଅତିଶୟ କ୍ଷୁବ୍ଧ ହୋଇ ରୁଷିଆ ସହିତ ଶକ୍ତିମେଣ୍ଟରେ ଯୋଗଦେଲା ଏବଂ ଫ୍ରାନ୍ସ ବିରୁଦ୍ଧରେ

୧୮୦୬ ମସିହା ଅକ୍ଟୋବର ମାସରେ ଯୁଦ୍ଧ ଘୋଷଣା କଲା; କିନ୍ତୁ ତାହାର ସୈନ୍ୟବାହିନୀ ଉଭୟ ଜେନା (Jena) ଏବଂ ଔରଷ୍ଟାଡଟ୍ (Aucrstadt) ସମରରେ ଅକ୍ଟୋବର ମାସ ୧୪ ତାରିଖରେ ପରାଜିତ ହେଲେ ଏବଂ ନେପୋଲିୟନ୍ ଦୁଇ ସପ୍ତାହ ମଧ୍ୟରେ ବିଜୟ ଗୌରବରେ ବର୍ଲିନରେ ପ୍ରବେଶ କଲେ ।

ନେପୋଲିୟନ୍ ଇଂଲଣ୍ଡକୁ ଅବନତ ନକଲା ପର୍ଯ୍ୟନ୍ତ ଶାନ୍ତିରେ ନିଃଶ୍ୱାସ ମାରି ପାରୁ ନ ଥିଲେ । କାରଣ ଇଂଲଣ୍ଡ ନେପୋଲିୟନଙ୍କର ଦୁର୍ଜୟ ସେନାବାହିନୀଠାରୁ ବେଶ୍ ନିରାପଦରେ ଥିଲା । ଟ୍ରାଫାଲଗାର ସମର ପରେ ନେପୋଲିୟନ୍ ଇଂଲଣ୍ଡ ଅଭିଯାନର ଆଶା ପରିତ୍ୟାଗ କରି ତାଙ୍କ ଲକ୍ଷ୍ୟ ହାସଲ କରିବା ପାଇଁ ତାହାର ବାଣିଜ୍ୟ ଧ୍ୱଂସ କରି ଦେବାକୁ ଯୋଜନା କରିଥିଲେ । ତେଣୁ ୧୮୦୬ ମସିହାରେ ମହାଦେଶୀୟ ବ୍ୟବସ୍ଥା ( Continental System ) ପ୍ରବର୍ତ୍ତନ କରି ଇଂଲଣ୍ଡକୁ ଅବରୋଧ ( blockade ) କରିଥିଲେ । ଇଂଲଣ୍ଡ, ଫ୍ରାନ୍ସ ଓ ତାହାର ଅଧୀନ ମିତ୍ରରାଜ୍ୟମାନଙ୍କର ବନ୍ଦରଗୁଡ଼ିକ ସହିତ ନିଜର ଓ ଅନ୍ୟଦେଶର ଜାହାଜମାନଙ୍କୁ ବାଣିଜ୍ୟ କାରବାର କରିବାକୁ ନିଷେଧ କରି-ଦେଇଥିଲେ ।

ପ୍ରୁସିୟାକୁ ପରାସ୍ତ କଲା ପରେ ନେପୋଲିୟନ୍ ତାହାର ବନ୍ଧୁ ରୁଷିଆ ବିରୁଦ୍ଧରେ ଅଭିଯାନ ଚଳାଇ ତାକୁ ୧୮୦୭ ମସିହା ଜୁନମାସରେ ଫିଡ୍‌ଲାଣ୍ଡ ସମରରେ ପରାସ୍ତ କରିଥିଲେ ଏବଂ ରୁଷିଆର ଜାରଙ୍କୁ ଯୁଦ୍ଧ ବିରତ କରିବା ପାଇଁ ବାଧ୍ୟ କରିଥିଲେ । ପ୍ରୁସିଆ ଓ ରୁଷିଆ ପରାଜିତ ହେଲା ପରେ ପୂର୍ବ ବ୍ୟବସ୍ଥାନୁଯାୟୀ ପରସ୍ପର ବିରୋଧୀ ଦୁଇଟି ସୈନ୍ୟ ଶିବିର ମଧ୍ୟଦେଇ ବହିଯାଉଥିବା ମେନ୍ ନଦୀର ଭାସମାନ ଭେଳା ଉପରେ ନେପୋଲିୟନ୍ ରୁଷିଆର ଜାର ପ୍ରଥମ ଆଲେକ୍‌ଜାଣ୍ଡରଙ୍କୁ ଭେଟିଥିଲେ । ଏହି ସାକ୍ଷାତକାର ଦେଢ଼ ଘଣ୍ଟା ଯାଏ ଚାଲିଥିଲା ; ନେପୋଲିୟନଙ୍କ ସହିତ ଆଲୋଚନାଦ୍ୱାରା ଆଲେକ୍‌ଜାଣ୍ଡର ଅତିଶୟ ମୁଗ୍ଧ ହୋଇଥିଲେ । ସେ ପରେ କହିଥିଲେ ଯେ, ତାଙ୍କର ନେପୋଲିୟନଙ୍କ ବିରୁଦ୍ଧରେ ଯେଉଁ ଭ୍ରାନ୍ତ ଧାରଣା ଥିଲା, ଅନ୍ୟ କାହା ବିରୁଦ୍ଧରେ ସେପରି ଧାରଣା ନଥିଲା । କିନ୍ତୁ ନେପୋ-ଲିୟନଙ୍କ ସହିତ ପଇଞ୍ଚାଳିଶ ମିନିଟ୍ କଥାବାର୍ତ୍ତା ପରେ ସେ ଧାରଣା ସ୍ୱପ୍ନପରି ଉଭେଇଗଲା । ସେ ଯାହାହେଉ ରୁଷ-ଫରାସୀ ଚୁକ୍ତିର ମୂଳନୀତି କଣ ହେବ ଓ ପ୍ରୁସିୟା ରାଜାଙ୍କ ସହିତ ଚୁକ୍ତିରେ କି କି ସର୍ତ୍ତ ରହିବ ସେ ସବୁ ବିଷୟରେ ସେ ଦୁଇଜଣଙ୍କ ମଧ୍ୟରେ ରାଜିନାମା ହୋଇଯାଇଥିଲା । ତେଣୁ ଏହି ରାଜିନାମା ଅନୁସାରେ ଟିଲସିଟ୍ ( Tilsit ) ଠାରେ ୧୮୦୭ ମସିହା ଜୁଲାଇ ମାସରେ କେତେକ ସନ୍ଧି ସ୍ୱାକ୍ଷର ହୋଇଥିଲା । ସେ ଗୁଡ଼ିକୁ ଟିଲସିଟ୍ ସନ୍ଧି ବୋଲି କୁହାଯାଏ । ଏହି ସନ୍ଧିଦ୍ୱାରା ରୁଷିୟା କୌଣସି ଅଞ୍ଚଳ ନ ହରାଇ ନିଜ ସ୍ଥାନରେ ପୁନଃ ପ୍ରତିଷ୍ଠିତ ହୋଇଥିଲା; କିନ୍ତୁ ପ୍ରୁସିୟାକୁ ତାହାର ଅର୍ଦ୍ଧେକ ଅଞ୍ଚଳ ହରାଇବାକୁ ପଡ଼ିଥିଲା । ଫ୍ରାନ୍ସ ଓ ପ୍ରୁସିଆ ମଧ୍ୟରେ ଯେଉଁ ସନ୍ଧି ହୋଇଥିଲା ସେଥିରେ ପ୍ରୁସିୟା ଏଲବ (Elbe) ନଦୀର ପଶ୍ଚିମପଟେ ଥିବା ତାହାର ସମସ୍ତ ଅଞ୍ଚଳ ଫ୍ରାନ୍ସକୁ ଓ ତାହାର ପୋଲିସ୍ ପ୍ରଦେଶଗୁଡ଼ିକ ( Polish provinces ) ସାକ୍‌ସନି ( Saxony ) କୁ

ସମର୍ପଣ କରିବାକୁ ବାଧ୍ୟ ହୋଇଥିଲା । ଏଲ୍‌ବ୍ ନଦୀର ପଶ୍ଚିମରେ ଥିବା ତାର ଅଞ୍ଚଳକୁ ନେଇ ୱେଷ୍ଟ ଫାଲିଆ ରାଜ୍ୟ (Kingdom of West Phalia) ନେପୋଲିୟନଙ୍କ ଭାଇ ଜେରୋମ୍ ବୋନାପାର୍ଟ ( Jerom Bonaparte )ଙ୍କ ପାଇଁ ଗଠନ କରାଯାଇଥିଲା ଏବଂ ତାର ପୋଲିସ ପ୍ରଦେଶଗୁଡ଼ିକୁ ନେଇ ୱାରସୋ-ଗ୍ରାଣ୍ଡ-ଡଚ ( The Grand Duchy of Warsaw ) ସାକ୍‌ସନିର ଶାସକଙ୍କ ପାଇଁ ଗଠନ କରାଯାଇଥିଲା । ତେଣୁ ଏହିପରି ଭାବରେ ପ୍ରୁସିଆ ହରାଇଥିବା ଅଞ୍ଚଳମାନଙ୍କୁ ନେଇ ଦୁଇଟି ରାଜ୍ୟ ପ୍ରତିଷ୍ଠା କରାଯାଇଥିଲା । ଏହାଛଡ଼ା ତାକୁ ପୂର୍ବପଟେ ଥିବା ଖଣ୍ଡିଏ ଲମ୍ବା ଅଦେଓସାଲିଆ ଅଞ୍ଚଳକୁ ତାର ପୂର୍ବ ମିତ୍ର ରୁଷିଆକୁ ଦେବାକୁ ପଡ଼ିଥିଲା । ପ୍ରୁସିଆ ମଧ୍ୟ ଫ୍ରାନ୍‌ସକୁ କ୍ଷତିପୂରଣ ନ ଦେବାଯାଏ ଏକ ଫରାସୀ ସୈନ୍ୟବାହିନୀ ତାର ଅଞ୍ଚଳରେ ରଖିବାକୁ ଏବଂ ତାହାର ବନ୍ଦରମାନଙ୍କରେ ବ୍ରିଟିଶ ପଣ୍ୟବାହୀ ଜାହାଜଗୁଡ଼ିକର ପ୍ରବେଶ ନିଷିଦ୍ଧ କରିବାକୁ ବାଧ୍ୟ ହୋଇଥିଲା । ଫଳରେ ପ୍ରୁସିଆ ବଲ୍‌ଟିକ୍ ସାଗରତୀରର ମାତ୍ର ଗୋଟିଏ କ୍ଷୁଦ୍ର ଶକ୍ତି ରୂପେ ଗଣ୍ୟ ହୋଇଥିଲା । ଫ୍ରାନ୍‌ସ ଓ ରୁଷିଆ ଗୋଟିଏ ପ୍ରକାଶିତ ଓ ଆଉ ଗୋଟିଏ ଅପ୍ରକାଶିତ ସନ୍ଧି ସ୍ୱାକ୍ଷର କରିଥିଲେ । ପ୍ରକାଶିତ ସନ୍ଧିରେ ନେପୋଲିୟନ୍ ଆଣିଥିବା ରାଜନୈତିକ ପରିବର୍ତ୍ତନଗୁଡ଼ିକୁ ଜାର ସ୍ୱୀକୃତି ଦେଇଥିଲେ ଏବଂ ତୁର୍କୀ ସହିତ ତାଙ୍କର ଯୁଦ୍ଧରେ ଫ୍ରାନ୍‌ସର ମଧ୍ୟସ୍ଥତା ଗ୍ରହଣ କରିନେଇଥିଲେ; କିନ୍ତୁ ନିକଟ ପ୍ରାଚ୍ୟରେ ( Near East ) କେତେକ ଅଞ୍ଚଳ ଛାଡ଼ିଦେବା ବିଷୟରେ ନେପୋଲିୟନଙ୍କର ସମ୍ମତି ସେ ଯେଉଁ ଲିଖିତ ଆକାରରେ ଆଶା କରୁଥିଲେ ତାହା ତାଙ୍କୁ ମିଳିନଥିଲା । ସେହିଦିନ ଅର୍ଥାତ୍ ୧୮୦୭ ମସିହା ଜୁଲାଇ ୭ ତାରିଖରେ ଯେଉଁ ଅପ୍ରକାଶିତ ସନ୍ଧି ସ୍ୱାକ୍ଷର ହୋଇଥିଲା ସେଥିରେ ଏହି ଦୁଇଶକ୍ତି ମଧ୍ୟରେ ଏକ ପ୍ରତିରକ୍ଷାମୂଳକ ଚୁକ୍ତି ( defensive alliance ) ସମ୍ପାଦିତ ହୋଇଥିଲା । ଏହି ଚୁକ୍ତି ଅନୁସାରେ ତୁର୍କୀ ସରକାର ଯଦି ନେପୋଲିୟନଙ୍କର ମଧ୍ୟସ୍ଥତା ଗ୍ରହଣ ନ କରିବେ, ତାହା ହେଲେ ନେପୋଲିୟନ୍ ତୁର୍କୀ ବିରୁଦ୍ଧରେ ରୁଷିଆ ସହିତ ଯୋଗଦେବେ ଏବଂ ସେଭଳି ପରିସ୍ଥିତି ଉପୁଜିଲେ ତୁର୍କୀ କେତେକ ପ୍ରଦେଶ ଛାଡ଼ିଦେବାପାଇଁ ସେମାନେ ଗୋଟିଏ ରାଜିନାମାରେ ପହଞ୍ଚିବେ ଏବଂ ସନ୍ଧିରେ ଉଲ୍ଲିଖିତ ନିର୍ଦ୍ଦେଶ ନଥିଲା ଯେ, ରୁଷିଆ ସେ ପ୍ରଦେଶଗୁଡ଼ିକୁ ଅଧିକାର କରିବ । ଜାର ଏହାର ବିନିମୟରେ ଫ୍ରାନ୍‌ସ ଏବଂ ଇଂଲଣ୍ଡ ମଧ୍ୟରେ ଚାଲିଥିବା ସଂଗ୍ରାମରେ ମଧ୍ୟସ୍ଥତା କରିବାକୁ ପ୍ରସ୍ତାବ ଦେବେ ଏବଂ ଇଂଲଣ୍ଡ ତାକୁ ଯଦି ଅଗ୍ରାହ୍ୟ କରେ, ତାହାହେଲେ ସେ ତାଙ୍କର ବନ୍ଦରଗୁଡ଼ିକରେ ବ୍ରିଟିଶ ଜାହାଜ ପ୍ରବେଶ କରିବାକୁ ନିଷିଦ୍ଧ କରିଦେବେ ଓ ଫ୍ରାନ୍‌ସ ସହିତ ମିଶି କେତେକ ନିରପେକ୍ଷ ରାଷ୍ଟ୍ର ( ସ୍ୱିଡେନ୍, ଡେନମାର୍କ ଏବଂ ପର୍ତ୍ତୁଗାଲ) ଙ୍କୁ ଇଂଲଣ୍ଡ ବିରୁଦ୍ଧରେ ସେହିପରି ପଦକ୍ଷେପ ନେବାପାଇଁ ପ୍ରବର୍ତ୍ତାଇବେ । ସ୍ୱିଡେନ୍‌ଠାରୁ ଫିନ୍‌ଲଣ୍ଡକୁ ଅଧିକାର କରିନେବାପାଇଁ ଆଶା ଦେଇ ଜାର୍‌ଙ୍କୁ ଏପରି ରହସ୍ୟଜନକ ଚୁକ୍ତିରେ ପକ୍ଷ କରାଯାଇଥିଲା ବୋଲି କୁହାଯାଏ । ଟିଲ୍‌ସିଟ୍‌ଠାରେ ମଧ୍ୟ ଜାର ଓ ନେପୋଲିୟନଙ୍କ ମଧ୍ୟରେ ୟୁରୋପକୁ ନିଜ ନିଜ ମଧ୍ୟରେ

ବାଣ୍ଟିନେବାକୁ ଏକ ଗୋପନୀୟ ବୁଝାମଣା ହୋଇଥିଲା ଏବଂ ନେପୋଲିୟନ ପଶ୍ଚିମପଟେ ଓ ଜାର ପୂର୍ବପଟେ ପ୍ରାଧାନ୍ୟ ବିସ୍ତାର କରିବେ ବୋଲି ସେଥିରେ ସର୍ତ୍ତ ରଖାଯାଇଥିଲା । ସେ ଯାହାହେଉ ନେପୋଲିୟନଙ୍କର ଏକମାତ୍ର ଶତ୍ରୁ ରହିଲା ଇଂଲଣ୍ଡ ଏବଂ ସେ ଶତ୍ରୁକୁ ଦମନ କରିବାପାଇଁ ସେ ବଦ୍ଧପରିକର ହୋଇଥିଲେ ।

## ଟିଲ୍‌ସିଟ୍ ସନ୍ଧି (୧୮୦୭) ଠାରୁ ୱାଟରଲୁ ସମର (୧୮୧୫) ଯାଏ
## [ From the Treaty of Tilsit ( 1807 ) to the Battle of Waterloo ( 1815 ) ]

ଅନେକ ସମୟରେ କୁହାଯାଏ ଯେ, ନେପୋଲିୟନ୍ ଟିଲ୍‌ସିଟ୍‌ଠାରେ ତାଙ୍କର କ୍ଷମତାର ଶୀର୍ଷସ୍ଥାନରେ ପହଞ୍ଚିଥିଲେ । ସେ ପ୍ରତ୍ୟେକ ଘଟଣାରେ କୃତକାର୍ଯ୍ୟ ହୋଇଥିଲେ ଓ ପ୍ରତ୍ୟେକ ଶତ୍ରୁକୁ ପରାଜିତ କରିଥିଲେ । ଇଉରୋପକୁ ନିଜ ଇଚ୍ଛାନୁସାରେ ପୁନର୍ଗଠନ କରିଥିଲେ । ସେ ଫ୍ରାନ୍‌ସର ଥିଲେ ସମ୍ରାଟ୍ ଓ ଇଟାଲୀର ଥିଲେ ରାଜା । ରାଇନ କନଫେ-ଡେରେସନର ରକ୍ଷକ ( protector ) ହୋଇଥିବାରୁ ଜର୍ମାନୀରେ ତାଙ୍କର ସର୍ବାଧିକ ପ୍ରଭାବ ଥିଲା । ହେଲ୍‌ଭେଟିକ ସାଧାରଣତନ୍ତ୍ର ( Helvetic·Republics ) ର ମଧ୍ୟସ୍ଥ ( Mediator ) ରୂପେ ନେପୋଲିୟନ୍ ସ୍ୱିଜରଲ୍ୟାଣ୍ଡରେ ଯାହା ଇଚ୍ଛା କରୁଥିଲେ ତାହା କରିପାରୁଥିଲେ । ନେପୋଲିୟନଙ୍କର ତିନିଜଣ ଭାଇ ତାଙ୍କର ଅଧୀନରେ ରାଜାଥିଲେ । ଲୁଇ ହଲଣ୍ଡର ଜେରୋମ ୱେଷ୍ଟ ଫେଲିଆର ଓ ଯୋସେଫ ନେପଲ୍‌ସର ରାଜା ଥିଲେ । ତାଙ୍କର ଆତ୍ମୀୟ ମୁରାତ୍‌ବର୍ଗର ଗ୍ରାଣ୍ଡଡ୍ୟୁକ ଥିଲେ । ତାଙ୍କର ପାଳିତ ପୁତ୍ର ( Step son ) ଇଉଜେନ ( Eugene ) ଉତ୍ତର ଇଟାଲୀର ରାଜପ୍ରତିନିଧି ବା ଭାଇସ୍‌ରୟ ( Viceroy ) ଥିଲେ । ସୁତରାଂ ନେପୋଲିୟନ୍ ଫ୍ରାନ୍‌ସକୁ ତାଙ୍କର ଆତ୍ମୀୟ-ସ୍ୱଜନମାନଙ୍କ କର୍ତ୍ତୃତ୍ୱରେ ଥିବା ଅଧୀନସ୍ଥ ରାଜ୍ୟମାନଙ୍କଦ୍ୱାରା ପରିବେଷ୍ଟିତ କରିଥିଲେ । ପ୍ରୁସିଆ ଓ ଅଷ୍ଟ୍ରିଆ ଲାଞ୍ଛନା ଭୋଗୁଥିଲେ, କିନ୍ତୁ ରୁଷିଆ ସହିତ ମିତ୍ରତା ସ୍ଥାପନ କରାଯାଇ ଥିଲା ଏବଂ ରୁଷିଆର ଜାର ନେପୋଲିୟନଙ୍କ କଥା ଅନୁସାରେ କାର୍ଯ୍ୟ କରୁଥିଲେ । କେନ୍ଦ୍ର ଇଉରୋପ ( Central Europe ) ନେପୋଲିୟନଙ୍କର ଆୟତ୍ତାଧୀନ ଥିଲା । ଇଂଲଣ୍ଡ ଦୃଷ୍ଟିରେ ନେପୋଲିୟନ୍ ଇଉରୋପରେ ଶକ୍ତିସାମ୍ୟ ( The balance of power ) ନଷ୍ଟ କରିଦେଇଥିଲେ । ତାଙ୍କର ବାଣିଜ୍ୟ ଓ ଯୁଦ୍ଧନୀତି କାର୍ଯ୍ୟକରିବା ଦିଗରେ ଜାରଙ୍କର ସହଯୋଗ ଲାଭ କରିଥିଲେ । କୌଣସି ସନ୍ଧି ଯଦି ସମସ୍ତ ସ୍ୱାକ୍ଷରକାରୀମାନଙ୍କ ପାଇଁ ସୁବିଧାଜନକ ନ ହୁଏ ତାହାହେଲେ ତାହା କଦାପି ସ୍ଥାୟୀ ହୋଇପାରେନା । ରୁଷିଆର ଭ୍ରାନ୍ତଧାରଣା ଯେ କ୍ରମେ ଦୂରେଇଯିବ ଏଥିରେ ସନ୍ଦେହ ନଥିଲା । ଟିଲ୍‌ସିଟ୍ ନେପୋଲିୟନଙ୍କୁ ଅଧିକ ଦୁଃସାହସିକ କାର୍ଯ୍ୟ କରିବାପାଇଁ ଉତ୍ସାହିତ କରିଥିଲା ସତ; କିନ୍ତୁ

ତାହାର ପରିଣତ ବିପର୍ଯ୍ୟୟକୁ ହୋଇଥିଲା । ତେଣୁ ଟିଲ୍‌ସିଟ୍ ସନ୍ଧି ନେପୋଲିୟନଙ୍କର ଭାଗ୍ୟର ଏକ ସନ୍ଧିକ୍ଷଣ ( a turning point of his fortune ) କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ସାମ୍ରାଜ୍ୟ ତାହାର ଶୀର୍ଷସ୍ଥାନରେ (୧୮୦୭-୧୮୧୧)

### The Empire at its height ( 1807-1811 )

ନେପୋଲିୟନ୍ ୧୮୦୭ ମସିହାରେ ଟିଲ୍‌ସିଟ୍‌ରେ ତାଙ୍କର କ୍ଷମତାର ଚରମସୀମାରେ ପହଞ୍ଚିଥିଲେ ସତ; କିନ୍ତୁ ତାହାପରେ ମଧ୍ୟ ତାଙ୍କର ସାମ୍ରାଜ୍ୟର ପ୍ରସାର ଘଟିଥିଲା । ସେହି ସାମ୍ରାଜ୍ୟର ଆୟତନ ୧୮୧୧ ମସିହା ମଧ୍ୟରେ ସର୍ବାଧିକ ହୋଇଥିଲା । ଫରାସୀ ସୈନ୍ୟମାନେ ୧୮୦୭ ମସିହା ଶରତ୍‌କାଳରେ ଇଂଲଣ୍ଡର ମିତ୍ର ପର୍ତ୍ତୁଗାଲକୁ ଅଧିକାର କରି ନେଇଥିଲେ । ନେପୋଲିୟନ୍ ଫରାସୀ ସୈନ୍ୟମାନଙ୍କର ଉପସ୍ଥିତି ଓ ମାଡ୍ରିଡ୍‌ରେ ରାଜଦରବାର ଷଡ଼ଯନ୍ତ୍ର ( Court intrigues ) ର ସୁଯୋଗ ନେଇଥିଲେ ଏବଂ ୧୮୦୮ ମସିହାରେ ତାଙ୍କର ଭାଇ ଯୋସେଫ୍ ବୋନାପାର୍ଟଙ୍କୁ ସ୍ପେନର ରାଜଗାଦିରେ ବସାଇବା ଉଦ୍ଦେଶ୍ୟରେ ସ୍ପେନର ରାଜା ଓ ତାଙ୍କର ପୁତ୍ରଙ୍କୁ ସ୍ପେନ ରାଜ୍ୟ ଉପରୁ ସେମାନଙ୍କର ଦାବୀ ପ୍ରତ୍ୟାହାର କରିନେବା ପାଇଁ ବାଧ୍ୟ କରିଥିଲେ । ସେହି ବର୍ଷ ମୁରାଟଙ୍କୁ ନେପଲସର ରାଜା କରାଯାଇଥିଲା । ଉତ୍ତର-ପୂର୍ବରେ ଅବସ୍ଥିତ ହଲଣ୍ଡକୁ ନେପୋଲିୟନ ୧୮୧୦ ମସିହାରେ ଅଧିକାର କରି ନେଇଥିଲେ କାରଣ ତାଙ୍କର ଭାଇ ଲୁଇ ବୋନାପାର୍ଟ ଡଚ୍ ପ୍ରଜାମାନଙ୍କ ଉପରେ 'କଣ୍ଟିନେଣ୍ଟାଲ ସିଷ୍ଟମ୍' ବା ମହାଦେଶୀୟ ବ୍ୟବସ୍ଥା ଲଦିଦେଇ ସେମାନଙ୍କର ସ୍ୱାର୍ଥ ବଳିଦେବାକୁ ନାହିଁ କରିଦେଲେ । ତାପରେ ସେ ଇଉରୋପର ଉତ୍ତର ଉପକୂଳ ସୀମାରେଖାରେ ବ୍ରିଟିଶଜାହାଜ ପ୍ରବେଶ ନିଷେଧ କରିବା ପାଇଁ ବଲଟିକ ସାଗରପର୍ଯ୍ୟନ୍ତ ଉତ୍ତର ଜର୍ମାନୀର କେତେକ ଅଂଶ ଦଖଲ କରିନେଲେ । ସେହି ଉଦ୍ଦେଶ୍ୟନେଇ ସେ ତାଙ୍କର ସାମ୍ରାଜ୍ୟକୁ ଦକ୍ଷିଣପୂର୍ବକୁ ପ୍ରସାରି କରିଥିଲେ । ବ୍ରିଟିଶ୍‌ମାନଙ୍କୁ ଭୂମଧ୍ୟସାଗରରୁ ବହିଷ୍କାର କରିବାପାଇଁ ସେ ଇଟାଲୀର ଜେନୋଆ ଓ ଟୁସ୍କାନି ( Tuscany ) ଅଧିକାର କରିଥିଲେ । ପୋପ୍ ତାଙ୍କ କଥା ମାନି ଚାଲିବାକୁ ରାଜି ନ ହେବାରୁ ନେପୋଲିୟନ ତାଙ୍କ ଅଞ୍ଚଳଗୁଡ଼ିକୁ ନିଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ଏହିସବୁ ଅଞ୍ଚଳଗୁଡ଼ିକ ପୂର୍ବରୁ ଅଧିକୃତ ପିଡ୍‌ମେଣ୍ଟ ସହିତ ମିଶି ଫ୍ରାନ୍ସର ଏକ ଅପରିହାର୍ଯ୍ୟ ଅଙ୍ଗ ହୋଇଥିଲା । ଇଟାଲୀର ଅନ୍ୟ ଦୁଇଟି ଇଉନିଟ୍ ବା ଅଞ୍ଚଳ ହେଲା ଇଟାଲୀ ରାଜ୍ୟ ( The Kingdom of Italy ) ଓ ନେପଲସ୍ ( Naples ) । ଇଟାଲୀ ରାଜ୍ୟର ରାଜାଥିଲେ ସ୍ୱୟଂ ନେପୋଲିୟନ, ନେପ୍‌ଲସ୍‌ର ରାଜାଥିଲେ ତାଙ୍କ ଭାଇ ଯୋସେଫ୍ ବୋନାପାର୍ଟ ଏବଂ ଯୋସେଫ୍ ବୋନାପାର୍ଟଙ୍କୁ ସ୍ପେନର ରାଜଗାଦିରେ ଅଧିଷ୍ଠିତ କଲାପରେ ନେପ୍‌ଲସକୁ ମୁରାଟଙ୍କ ଅଧୀନରେ ରଖାଯାଇଥିଲା । ଆଡ୍ରିଆଟିକ୍‌ର ଅପର ପାର୍ଶ୍ୱରେ ଥିବା ( Illyria )କୁ ଫ୍ରାନ୍ସ ସହିତ ସଂଯୁକ୍ତ କରାଯାଇଥିଲା । ତେଣୁ ଏହିପରି ଭାବରେ

ନେପୋଲିୟନ୍ ତାଙ୍କ କ୍ଷମତା ପୋ ନଦୀଠାରୁ ( The Po ) ଉତ୍ତର ସାଗର ( The North sea ) ପର୍ଯ୍ୟନ୍ତ ଏବଂ ପିରେନିଜ୍ ପର୍ବତମାଳା ( The Pyrenees ) ଏବଂ ପୋପ୍ଙ୍କ ରାଜ୍ୟ ( The Papal States ) ଠାରୁ ରାଇନ୍ ନଦୀ ( The Rhine ) ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଏହିରୂପେ ନେପୋଲିୟନ୍ ଇଉରୋପ ମହାଦେଶର କର୍ତ୍ତା ହେଲେ ଏବଂ ପ୍ୟାରିସ୍ ଇଉରୋପର ରାଜନୀତିକ ରାଜଧାନୀ ହେଲା । ଯେଉଁ ବିଶ୍ୱବ୍ୟାପୀ ସାମ୍ରାଜ୍ୟର ଆଦର୍ଶକୁ ବାରମ୍ବାର ସ୍ୱାଗତ କରାଯାଉଥିଲା ସେହି ସାମ୍ରାଜ୍ୟ ନେପୋଲିୟନଙ୍କ ରାଜତ୍ୱକାଳରେ ଅନେକାଂଶରେ ପ୍ରତିଷ୍ଠିତ ହୋଇପାରିଥିଲା । ତା' ଛଡ଼ା ଫରାସୀ, ଜର୍ମାନ, ପୋଲିସ, ଇଟାଲୀୟ, ଭାରତୀୟ ଏବଂ କ୍ରୋଟୀୟମାନେ ନେପୋଲିୟନଙ୍କ ସୈନ୍ୟବାହିନୀରେ ସାମିଲହୋଇ କେବଳ ଯେ ଏକସଙ୍ଗରେ ଯୁଦ୍ଧଯାତ୍ରା କରୁଥିଲେ ସେତିକ ନୁହେଁ ସେମାନେ ମଧ୍ୟ ଏକପ୍ରକାର ଆଇନଦ୍ୱାରା ପରିଚାଳିତ ହେଉଥିଲେ; କିନ୍ତୁ ନେପୋଲିୟନଙ୍କର ଏହି ବିଶାଳ ସାମ୍ରାଜ୍ୟ ତାଙ୍କର ଗୁରୁତର ଭୁଲ ଯୋଗୁ ବେଶିଦିନ ତିଷ୍ଠିପାରିନଥିଲା ।

## ଇଉରୋପରେ ଫ୍ରାନ୍ସର ପ୍ରଭୁତ୍ୱର ଅବସାନ

## (The Termination of the French Domination Over Europe)

ନେପୋଲିୟନଙ୍କର ପ୍ରଭୁତ୍ୱରୁ ଇଉରୋପ ମୁକ୍ତି ପାଇବାରେ ବିଳମ୍ବ ଘଟିଥିଲା । ଟିଲସିଟ୍ ସନ୍ଧିପରେ ଏହି ମହାନ ସମ୍ରାଟଙ୍କୁ ଅନେକ ବିଜୟ ହାସଲ କରିବାକୁ ପଡ଼ିଥିଲା ଏବଂ ତାଙ୍କର ସାମ୍ରାଜ୍ୟ ୧୮୧୦-୧୮୧୧ ମସିହା ମଧ୍ୟରେ ବୃହତ୍ତମ ଆକାର ଧାରଣ କରିଥିଲା । ଏପରି ଏକ ବିରାଟ ସାମ୍ରାଜ୍ୟର ସ୍ଥାୟିତ୍ୱ ଅକ୍ଳାନ୍ତ ପରିଶ୍ରମ ଓ ଅଭ୍ରାନ୍ତ ନୀତି ଉପରେ ନିର୍ଭର କରୁଥିଲା; କିନ୍ତୁ ଦୁଃଖର କଥା ଅନ୍ୟାନ୍ୟ ଦିଗ୍ବିଜୟୀମାନଙ୍କପରି ନେପୋଲିୟନ ମଧ୍ୟ ଶେଷରେ ତାଙ୍କର ମାନସିକ ଭାରସାମ୍ୟ ହରାଇଥିଲେ । ତାଙ୍କର ଦୃଢ଼ ଧାରଣା ଥିଲା ଯେ ସେ ଯେକୌଣସି ସମସ୍ୟାକୁ ଆୟତ୍ତ କରିପାରିବେ ଓ ଯେକୌଣସି ଶତ୍ରୁକୁ ଦମନ କରିପାରିବେ । ମଣିଷ କ୍ଷମତାର ଯେ ଗୋଟାଏ ସୀମା ଅଛି ତାହା ସେ ଭୁଲିଯାଇଥିଲେ । ନେପୋଲିୟନଙ୍କ ସାମ୍ରାଜ୍ୟ ସାମରିକ ଶକ୍ତି ସାହାଯ୍ୟରେ ଗଢ଼ିଉଠିଥିଲା ଏବଂ ଏହାକୁ ରକ୍ଷାକରିବାକୁ ସାମରିକ ଶକ୍ତିର ପ୍ରୟୋଜନ ହେଉଥିଲା; କିନ୍ତୁ ତାଙ୍କ ପ୍ରତି ସାମ୍ରାଜ୍ୟର କୌଣସି ସ୍ଥାନରେ ସ୍ୱାଭାବିକ ଆନୁଗତ୍ୟ ପ୍ରକାଶ ପାଇନଥିଲା । ଏହା ସ୍ୱୀକାର କରିବାକୁ ହେବ ଯେ, ସେ ବଳ ପ୍ରୟୋଗ ବା ଅନୁଗ୍ରହ ଦ୍ୱାରା ବହୁସଂଖ୍ୟକ ରାଜାଙ୍କୁ ତାଙ୍କ ଆଦେଶ ପାଳନକରିବାକୁ ବାଧ୍ୟ କରିଥିଲେ । ଏହି ଦୁଇ ପନ୍ଥା ମଧ୍ୟରୁ କୌଣସିଟି ଯଦି ଫଳପ୍ରଦ ନହୁଏ, ତାହାହେଲେ ଯେ ତାଙ୍କର ପ୍ରଭୁତ୍ୱ ଲୋପ ପାଇଯିବ ଏବଂ ତାଙ୍କର ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିବ ସେଥିପ୍ରତି ତାଙ୍କର ଦୃଷ୍ଟି ନଥିଲା । ତା'ଛଡ଼ା ସେ ଯେଉଁ ରାଜାମାନଙ୍କୁ ନିଜର ଦକ୍ଷତା ଯୋଗୁ ହାତ ମୁଠାରେ ରଖିଥିଲେ ସେହି ରାଜାମାନଙ୍କର ପ୍ରଜାମାନେ ଯେ ନେପୋଲିୟନଙ୍କର ବଳପୂର୍ବକ ଅର୍ଥ ଆଦାୟରେ କ୍ରୁଦ୍ଧ ହୋଇ ଇତସ୍ତତଃ ହେଉଥିବା ସେମାନଙ୍କର ରାଜାମାନଙ୍କୁ ପ୍ରକାଶ୍ୟ

ବିଦ୍ରୋହ ପାଇଁ ଏକଜୁଟିତ କରିପାରନ୍ତି ସେ କଥା ସେ ଆଦୌ ବିଶ୍ୱାସ କରିପାରିନଥିଲେ । ଅଧିକନ୍ତୁ ଫରାସୀମାନେ ଯେପରି ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହୋଇ ବିଦେଶୀ ଆକ୍ରମଣର ମୁକାବିଲା କରିଥିଲେ, ଅନ୍ୟାନ୍ୟ ଜାତିର ଲୋକମାନେ ନେପୋଲିୟନଙ୍କ ଅତ୍ୟାଚାରରେ କ୍ରୋଧାନ୍ୱିତ ହୋଇ ସେହିପରି ଜାତୀୟତାଭାବରେ ଯେ ଉଦ୍‌ବୁଦ୍ଧ ହୋଇପାରନ୍ତି, ଏହି ସମ୍ଭାବନାକୁ ସେ ମଧ୍ୟ ଏଡ଼ିଦେଇଥିଲେ । ନେପୋଲିୟନଙ୍କର ଅତ୍ୟଧିକ ଉଚ୍ଚାଭିଳାଷ ଏବଂ ଲକ୍ଷ ଲକ୍ଷ ଲୋକଙ୍କର ପ୍ରଚ୍ଛନ୍ନ କ୍ରୋଧ ତାଙ୍କ ସାମ୍ରାଜ୍ୟର ପତନ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା । କୌଣସି ନିଷ୍ପତ୍ତି ନେବାରେ ଯଦି ସେ ଗୁରୁତର ଭୁଲ କରିବସନ୍ତି, ତା'ହେଲେ ତାଙ୍କର ବିରାଟ ସାମ୍ରାଜ୍ୟ ଯେ ଭାଙ୍ଗିପଡ଼ିବ ଏଥିରେ କୌଣସି ସନ୍ଦେହ ନାହିଁ ।

ନେପୋଲିୟନଙ୍କର ସେହି ଗୁରୁତର ଭୁଲ ଯୋଗୁଁ ତାଙ୍କ ସାମ୍ରାଜ୍ୟର ପତନ ହେଲା । ଯେଉଁ ତିନୋଟି ଗୁରୁତର ଭୁଲ ଏକତ୍ର ହୋଇ ନେପୋଲିୟନଙ୍କର ସର୍ବନାଶ ଘଟାଇଲା ସେଗୁଡ଼ିକ ହେଲା କଣ୍ଟିନେଣ୍ଟାଲ ସିସ୍‌ଟମ ବା ମହାଦେଶୀୟ ବ୍ୟବସ୍ଥା, ସ୍ପେନରେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଏବଂ ରୁଷିଆ ଉପରେ ଆକ୍ରମଣ । ପ୍ରଥମ ଭୁଲଟି ଏତେ ମାରାତ୍ମକ ନହେଲେ ମଧ୍ୟ ଏହା ବହୁପରିମାଣରେ ଦ୍ୱିତୀୟ ଭୁଲ କରିବାକୁ ବାଟ ଦେଖାଇଥିଲା ଏବଂ ତୃତୀୟ ଭୁଲଟି ସହିତ ଏହାର ମଧ୍ୟ ସମ୍ପର୍କ ଥିଲା ।

କଣ୍ଟିନେଣ୍ଟାଲ ସିସ୍‌ଟମ୍ ବା ମହାଦେଶୀୟ ବ୍ୟବସ୍ଥା ହେଲା ଏକ ଯୋଜନା । ଯେତେବେଳେ ଟ୍ରାଫାଲଗାର ସମର (୧୮୦୫) ରେ ଫରାସୀ ନୌବହର ପରାଜିତ ହେଲା ଏବଂ ପରେ ପରେ ଧ୍ୱଂସ ପାଇଗଲା ସେତେବେଳେ ନେପୋଲିୟନଙ୍କର ହୃଦ୍‌ବୋଧ ହେଲା ଯେ, ସିଧାସଳଖ ଇଂଲଣ୍ଡ ଆକ୍ରମଣ କରିବା ଯୋଜନା ତାଙ୍କୁ ପରିତ୍ୟାଗ କରିବାକୁ ପଡ଼ିବ; କାରଣ ଶକ୍ତିଶାଳୀ ନୌବହର ବିନା ଏହା କାର୍ଯ୍ୟରେ ପରିଣତ ହୋଇପାରିବ ନାହିଁ । ତେଣୁ ଇଂଲଣ୍ଡକୁ ଦମନ କରିବା ଉଦ୍ଦେଶ୍ୟରେ ସେ କଣ୍ଟିନେଣ୍ଟାଲ ସିଷ୍ଟମ୍ ବା ମହାଦେଶୀୟ ବ୍ୟବସ୍ଥା ପ୍ରବର୍ତ୍ତନ କଲେ । ଏହା ନେପୋଲିୟନଙ୍କର ଏକ ଯୋଜନା, ଯାହା ଅନୁସାରେ (ଇଉରୋପ) ମହାଦେଶର ସବୁ ବନ୍ଦରଗୁଡ଼ିକରେ ବ୍ରିଟିଶ ପଣ୍ୟବାହୀ ଜାହାଜମାନଙ୍କର ପ୍ରବେଶ ନିଷିଦ୍ଧ କରାଯାଇଥିଲା । (It was a plan of closing all parts of the continent to British trade) ଇଉରୋପ ମହାଦେଶ ସହିତ ଇଂଲଣ୍ଡର ଯୋଗାଯୋଗ ବିଚ୍ଛିନ୍ନ କରି ତାକୁ ଦରିଦ୍ରଗ୍ରସ୍ତ କରିବା ଏହି ବ୍ୟବସ୍ଥାର ଲକ୍ଷ୍ୟ । ନେପୋଲିୟନ୍ ଇଂଲଣ୍ଡକୁ ଏକ ଦୋକାନଦାର ଜାତି ବୋଲି ଧରିନେଇଥିଲେ ଏବଂ ତାର ବ୍ୟବସାୟ ବାଣିଜ୍ୟ ନଷ୍ଟ କରିଦେଲେ ସେ ମିଳାମିଶା କରିବାପାଇଁ ବାଧ୍ୟ ହେବ ବୋଲି ବିଚାରିଥିଲେ । ଏହିପରି ବାଣିଜ୍ୟ ଯୁଦ୍ଧଦ୍ୱାରା ଅନ୍ୟ ଏକ ଦେଶକୁ ଦୁରବସ୍ଥାରେ ପକାଇବାର ମନୋବୃତ୍ତି ମାର୍କେଣ୍ଟାଇଲ ମତବାଦରୁ ଉତ୍ପତ୍ତି ହୋଇଅଛି । ଇଂଲଣ୍ଡ ସେହି ସମୟରେ ଇଉରୋପର ସବୁଦେଶଗୁଡ଼ିକ ସହିତ ବାଣିଜ୍ୟ କରି ଅର୍ଥଲାଭ କରୁଥିଲା । ଇଉରୋପର ବନ୍ଦରଗୁଡ଼ିକ ତାପାଇଁ ବନ୍ଦ ହୋଇଗଲେ, ତାହାର ଲୋକମାନଙ୍କର ଅବସ୍ଥା ଯେ ଶୋଚନୀୟ ହେବ ଏଥିରେ ସନ୍ଦେହ ନଥିଲା । ଇଂଲଣ୍ଡ ଏହି ବ୍ୟବସ୍ଥା ବିରୁଦ୍ଧରେ

ଫ୍ରାନସ ସହିତ ଜୀବନ ମରଣ ସଂଗ୍ରାମରେ ଲିପ୍ତହେବ, ଏହା ମଧ୍ୟ ନିଶ୍ଚିତ ଥିଲା । ନେପୋଲିୟନ୍ ଏକଥା ଉପଲବ୍ଧି କରିପାରିଥିଲେ ଯେ, ଯଥେଷ୍ଟ ନୌବହର ବିନା କଣ୍ଟିନେଣ୍ଟାଲ ସିଷ୍ଟମ୍ ବା ମହାଦେଶୀୟ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ସମ୍ଭବ ନୁହେଁ । ଏହାଛଡ଼ା ଇଉରୋପ ମହାଦେଶର ସବୁ ଦେଶ ବ୍ରିଟିଶ୍ ପଣ୍ୟଦ୍ରବ୍ୟ ଉପରେ ଏତେଦୂର ନିର୍ଭରଶୀଳ ଥିଲି ଯେ, ଏହି ବ୍ୟବସ୍ଥା ଫଳରେ ସେମାନଙ୍କର ଅର୍ଥନୈତିକ ଜୀବନ ଯେ ବିପନ୍ନ ହୋଇ ପଡ଼ିବ ତାହା ମଧ୍ୟ ନେପୋଲିୟନ ବିଗ୍ଭରକୁ ନେଇନଥିଲେ । ତେଣୁ ସେ ୧୮୦୬ ମସିହା ନଭେମ୍ବର ମାସରେ ତାଙ୍କର ବିଖ୍ୟାତ ବର୍ଲିନ ଡିକ୍ରି (Berlin decrees) ବା ହୁକୁମନାମା ଜାରି କରିଥିଲେ । ଏହି ହୁକୁମନାମା ଅନୁସାରେ ବ୍ରିଟିଶ ଦ୍ୱୀପ-ପୁଞ୍ଜକୁ ଅବରୋଧ ଅବସ୍ଥାରେ ରଖାଗଲା । ତାହା ସହିତ ବାଣିଜ୍ୟ କାରବାର ନିଷିଦ୍ଧ କରାଗଲା ବୋଲି ଘୋଷଣା କରାଗଲା । ଫ୍ରାନସରେ ଥିବା ସମସ୍ତ ବ୍ରିଟିଶ ନାଗରିକମାନଙ୍କୁ ଯୁଦ୍ଧବନ୍ଦୀ ଓ ସେମାନଙ୍କର ସବୁ ସାମଗ୍ରୀକୁ ଯୁଦ୍ଧରେ ବଳପୂର୍ବକ ଗୃହୀତ ଦ୍ରବ୍ୟ (lawful prize of war) ବୋଲି ମଧ୍ୟ ଘୋଷଣା କରାଗଲା । ବ୍ରିଟିଶ ଉପକୂଳ ଜାହାଜ ଏବଂ ବ୍ରିଟେନରୁ କିମ୍ବା ତାହାର ଉପନିବେଶମାନଙ୍କରୁ ଆସିଥିବା ଜାହାଜକୁ ଫ୍ରାନ୍ସରେ ଓ ତାହାର ମିତ୍ର ରାଜ୍ୟ-ମାନଙ୍କରେ ପ୍ରବେଶ କରିବାକୁ ଦିଆଯିବନାହିଁ ବୋଲି କୁହାଗଲା । ଇଂଲଣ୍ଡ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ପରିଷଦର ଆଦେଶନାମା (Orders of the Council) ଅନୁଯାୟୀ ଫ୍ରାନସ୍ ଓ ତାହାର ମିତ୍ର ରାଜ୍ୟମାନଙ୍କର ବନ୍ଦରଗୁଡ଼ିକ ଅବରୋଧ କରିଥିଲା ଓ ସେମାନଙ୍କ ସହିତ ବାଣିଜ୍ୟ କାରବାର କରିବା ନିଷେଧ କରିଦେଇଥିଲା । ନିରପେକ୍ଷ ଶକ୍ତିମାନଙ୍କୁ ଫ୍ରାନସ ଓ ତାହାର ମିତ୍ରମାନଙ୍କ ସହିତ ବାଣିଜ୍ୟ କାରବାର କରିବାରେ ବାଧା ଦେଇଥିଲା । ଏଥିରେ ଉତ୍କ୍ଷିପ୍ତ ହୋଇ ନେପୋଲିୟନ ୧୮୦୭ ମସିହା ଡିସେମ୍ବର ମାସରେ ମିଲାନ ଡିକ୍ରି ବା ହୁକୁମନାମା ଜାରି କରିଥିଲେ ଏବଂ ସେଗୁଡ଼ିକଦ୍ୱାରା ସେ ଘୋଷଣା କରିଥିଲେ ଯେ ଯଦି କୌଣସି ଦେଶର ଜାହାଜ ବ୍ରିଟିଶ ବନ୍ଦରରେ ଲାଗିବ ତାକୁ ଜବତ କରି ନିଆଯିବ ଏବଂ ଯୁଦ୍ଧଲବ୍ଧ ଜାହାଜ ବୋଲି ଧରାଯିବ । ଉଭୟ ବର୍ଲିନ ଡିକ୍ରି ଓ ମିଲାନ ଡିକ୍ରିଗୁଡ଼ିକ ନେଇ ନେପୋଲିୟନଙ୍କର କଣ୍ଟିନେଣ୍ଟାଲ ସିଷ୍ଟମ ବା ମହାଦେଶୀୟ ବ୍ୟବସ୍ଥା ଗଢ଼ା-ଯାଇଥିଲା ।

ନେପୋଲିୟନ୍ ନିଜେ ବିଶ୍ୱାସ କରୁଥିଲେ ଯେ ଇଂଲଣ୍ଡ ତାହାର ମୁଖ୍ୟ ସମ୍ପଦ ସାମୁଦ୍ରିକ ବାଣିଜ୍ୟରୁ ଲାଭ କରୁଥିଲା ଏବଂ ତାକୁ ତାହାର ବଜାରଗୁଡ଼ିକରୁ ବଞ୍ଚିତ କରାଗଲେ ତାହାର ଆର୍ଥିକ ଦୁର୍ଗତି ଘଟିବ । ତେଣୁ ସେ ବାଧ୍ୟ ହୋଇ ତାଙ୍କ ନିକଟରେ ମୁଣ୍ଡ ନୁଆଁଇବ । ତାଙ୍କର କେବଳ ଏ ମହାଦେଶୀୟ ବ୍ୟବସ୍ଥା ପୁରାପୂରି ସାମରିକ ଉଦ୍ଦେଶ୍ୟରେ ଗଢ଼ାଯାଇ ନଥିଲା । ସେ ମଧ୍ୟ ଆଶା ପୋଷଣ କରିଥିଲେ ଯେ ଇଉରୋପ ମହାଦେଶରେ ଖୁବ୍ କମ୍ ଶିଳ୍ପକାରଖାନା ରହିଥିବାରୁ ଇଉରୋପ ବଜାରରୁ ଇଂଲଣ୍ଡକୁ ବହିଷ୍କାର କରି ସମଗ୍ର ବଜାରକୁ ଫରାସୀ ଶିଳ୍ପଜାତଦ୍ରବ୍ୟ ନିମନ୍ତେ ଅକ୍ତିଆର କରିନେବେ ଏବଂ ଏହାଦ୍ୱାରା ଫ୍ରାନସକୁ ଏକ ମୁଖ୍ୟ ଔଦ୍ୟୋଗିକ ଶକ୍ତିରେ ପରିଣତ କରିପାରିବେ । ଏହି ଦୁଇ ଲକ୍ଷ୍ୟ

ହାସଲ କରିବାକୁ ହେଲେ ଇଂଲଣ୍ଡ ସହିତ ତାଙ୍କର ଯୁଦ୍ଧ ଅବଶ୍ୟମ୍ଭାବୀ । ସେ କଣ୍ଟିନେଣ୍ଟାଲ ସିସ୍ଟମ ବା ମହାଦେଶୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରି ଇଂଲଣ୍ଡ ବିରୁଦ୍ଧରେ ବାଣିଜ୍ୟ ଯୁଦ୍ଧର ଆହ୍ୱାନ ଦେଇଥିଲେ; କିନ୍ତୁ ଏହି ବ୍ୟବସ୍ଥା ପ୍ରବର୍ତ୍ତନ ହେବା ପୂର୍ବରୁ ତାହାର ସମ୍ଭାବନାର ସୂଚନା ମିଳିଥିଲା । ୧୭୯୭ ମସିହା ବେଳକୁ ବ୍ରିଟିଶ ପଣ୍ୟବାହୀ ଜାହାଜ ପୋପଙ୍କ ରାଜ୍ୟରେ ପ୍ରବେଶ ନ କରାଇ ଦେବା ଉଦ୍ଦେଶ୍ୟରେ ତାଙ୍କୁ ତାଙ୍କର ବନ୍ଦର ଗୁଡ଼ିକ ବନ୍ଦ କରିଦେବାପାଇଁ ବାଧ୍ୟ କରାଯାଇଥିଲା । ଇଂଲଣ୍ଡ ସହିତ ୧୮୦୩ ମସିହାରେ ଯୁଦ୍ଧ ପୁନରାରମ୍ଭ ହେଲା ଉତ୍ତାରୁ ଫ୍ରାନସ ଦକ୍ଷିଣ ଇଟାଲିର ଅଣ୍ଟାରିଓ ଠାରୁ ଆରମ୍ଭ କରି ଉତ୍ତର ସାଗରର ହାମବର୍ଗ ପର୍ଯ୍ୟନ୍ତ ସମସ୍ତ ସମୁଦ୍ରଉପକୂଳବର୍ତ୍ତୀ ଅଞ୍ଚଳକୁ ଆୟତ୍ତାଧୀନ କରିବା ପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲା । ଶେଷକୁ ଟ୍ରାଫାଲଗାର ଯୁଦ୍ଧରେ ପରାଜୟ ହେଲାପରେ ନେପୋଲିୟନ ବାଣିଜ୍ୟ ଯୁଦ୍ଧ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିବା ପାଇଁ ବାଧ୍ୟ ହୋଇଥିଲେ ।

ମନେହେଲା ରୁଷିଆ ସହିତ ଟିଲସିଟଠାରେ ନେପୋଲିୟନ୍ ଯେଉଁ ସନ୍ଧିକଲେ ତାହା ତାଙ୍କର ବିଜୟପାଇଁ ତାଙ୍କୁ ବିଶେଷ ସୁଯୋଗ ଦେଇଥିଲା । ସେତେବେଳକୁ ପ୍ରାୟ ଇଉରୋପ ମହାଦେଶର ଅଧିକାଂଶ ଦେଶ ଇଂଲଣ୍ଡ ସହିତ ବାଣିଜ୍ୟ କାରବାର ବନ୍ଦକରି ଦେଇଥିଲେ । ରୁଷିଆ ମଧ୍ୟ ସେମାନଙ୍କ ସହିତ ଯୋଗଦେଲା ଏବଂ ଡେନମାର୍କ, ସ୍ୱିଡେନ ଏବଂ ପର୍ତ୍ତୁଗାଲ—ଏହି ନିରପେକ୍ଷ ଶକ୍ତିମାନଙ୍କୁ ଇଂଲଣ୍ଡ ବିରୁଦ୍ଧରେ ଅନୁରୂପ ନୀତି ଅବଲମ୍ବନ କରିବାପାଇଁ ବାଧ୍ୟ କରାଯିବ ବୋଲି ଠିକ୍ ହେଲା । ପ୍ରକୃତରେ ଡେନମାର୍କ ଫ୍ରାନ୍ସ ସହିତ ସନ୍ଧି କରିବା ସକାଶେ ଇଚ୍ଛୁକ ଥିବାରୁ ତାକୁ ବାଧ୍ୟ କରିବା ପ୍ରଶ୍ନ ଉଠିନଥିଲା । ସ୍ୱିଡେନ୍ ଇଂଲଣ୍ଡ ସହିତ ବାଣିଜ୍ୟ କାରବାର ବନ୍ଦ କରିଦେବା ପାଇଁ ରାଜି ନ ଥିବାରୁ ରୁଷିଆ ତାହା ଉପରେ ଚାପ ପକାଇ ରାଜି କରାଇଥିଲେ ଏବଂ ତାହାଠାରୁ ଫିନ୍‌ଲଣ୍ଡ ନେଇଯାଇଥିଲେ । ପର୍ତ୍ତୁଗାଲ ଯେତେବେଳେ ଦେଖିଲା ସ୍ପେନ୍ ନେପୋଲିୟନଙ୍କ ସହିତ ମିଶି ତା ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛି, ସେ ଆଉ ନେପାଲିୟନଙ୍କ ଦାବୀକୁ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରିନଥିଲା । ଏକଥା ଏକାନ୍ତ ସତ୍ୟ ଯେ ପର୍ତ୍ତୁଗାଲ ନେପୋଲିୟନଙ୍କ ନୀତିକୁ ସ୍ୱୀକାର କଲେ ମଧ୍ୟ ସେ ଦୁର୍ଦ୍ଦଶା ଭୋଗିବାରୁ ରକ୍ଷା ପାଇପାରିନଥିଲା ।

ସେ ଯାହାହେଉ ନେପୋଲିୟନଙ୍କର କଣ୍ଟିନେଣ୍ଟାଲ ସିସ୍ଟମ୍ ବା ମହାଦେଶୀୟ ବ୍ୟବସ୍ଥା ତାର ଲକ୍ଷ୍ୟ ହାସଲ କରିବାରେ ଅକୃତକାର୍ଯ୍ୟ ହୋଇଥିଲା । ମାୟର୍ସ ନେପୋଲିୟନଙ୍କର ଏ ବ୍ୟବସ୍ଥା ବିଷୟରେ ମନ୍ତବ୍ୟଦେଇ କହିଥିଲେ; 'ଇଂଲଣ୍ଡର ଧ୍ୱଂସସାଧନ କରିବା ପାଇଁ ନେପୋଲିୟନ ଏହିପରି ଯେଉଁ ନୀତି ଗ୍ରହଣକଲେ ତାହା ଏକ ଆତ୍ମଘାତୀ ନୀତି, ଯାହାକି ଶେଷରେ ତାଙ୍କ ସାମ୍ରାଜ୍ୟର ପତନ ଘଟାଇଥିଲା ।' "The policy thus adopted by Napoleon to ruin Egland" observes Myers "was a suicidal one, and resulted finally in the ruin

of his own Empire." ଏକଥା ସତ୍ୟ ଯେ ଏହି ବ୍ୟବସ୍ଥା ଯୋଗୁ ଇଂଲଣ୍ଡ କ୍ଷତିଗ୍ରସ୍ତ ହୋଇଥିଲା; କିନ୍ତୁ ସେ ଧ୍ୱଂସ ପାଇ ଯାଇ ନଥିଲା । ବାସ୍ତବିକ୍ ନେପୋଲିୟନଙ୍କ ପକ୍ଷରେ ସମଗ୍ର ମହାଦେଶକୁ ମୁଦ୍ରିକର ରଖିବା ସମ୍ଭବପର ହୋଇନଥିଲା । ପ୍ରଥମତଃ ଅଟୋମାନ (Ottoman) ବା ତୁର୍କୀ ସାମ୍ରାଜ୍ୟ ଫରାସୀ ନିଷେଧାନୁଷ୍ଠାନର ପରିସର ମଧ୍ୟରେ ନଥିବାରୁ ବହୁପରିମାଣରେ ପଣ୍ୟଦ୍ରବ୍ୟ ତୁର୍କୀର ବନ୍ଦର ସାଲନିକଠାରୁ ଜାହାଜରେ ଇଉରୋପକୁ ପଠା ଯାଉଥିଲା । ବ୍ୟବସାୟ ପ୍ରତୀକ (trade-mark) ନଥିବା ଇଂଲଣ୍ଡ ତିଆରି ଜିନିଷ ସବୁ ଏହି ବନ୍ଦରରୁ ଇଉରୋପକୁ ମଧ୍ୟ ଯାଉଥିଲା । ନେପୋଲିୟନଙ୍କ ବ୍ୟବସ୍ଥାରେ ଏହି ତ୍ରୁଟି ରହି ଯାଇଥିବାରୁ ଏହା ତାଙ୍କ ନୀତିର ବିଫଳତାର ଏକ ବଡ଼ କାରଣ ହୋଇଥିଲା । ତାହାଛଡ଼ା ବ୍ରିଟିଶ ଶିଳ୍ପର ଦ୍ରୁତ ବିକାଶ ଯୋଗୁ ଇଂଲଣ୍ଡ ନିର୍ମିତ ଜିନିଷ ସବୁ ଅତ୍ୟାବଶ୍ୟକ ଦ୍ରବ୍ୟ ବୋଲି ଇଉରୋପରେ ଗଣ୍ୟ ହେଉଥିଲା ଏବଂ ଇଂଲଣ୍ଡ କଞ୍ଚାମାଲ ସବୁର ପ୍ରଧାନ ଖରିଦ୍‌ଦାର ହୋଇପାରିଥିଲା । ଇଉରୋପ ମହାଦେଶ ତାହାର ବଜାରଗୁଡ଼ିକରୁ ଇଂଲଣ୍ଡକୁ ବାଦ ଦେବାକୁ ସମର୍ଥ ହୋଇନଥିଲା । ଚୋରା କାରବାର ରୋକିବା ନେପୋଲିୟନଙ୍କ ପକ୍ଷେ ଦୁଃସାଧ୍ୟ ହୋଇଥିଲା । ଆଂଶିକ ଭାବେ ଚୋରା କାରବାର ମାଧ୍ୟମରେ ଏବଂ ବହୁ ପରିମାଣରେ ଉଭୟ ନେପୋଲିୟନ୍ ଓ ଇଂଲଣ୍ଡ ଗ୍ରହଣ କରିଥିବା ଲାଇସେନ୍‌ସ୍ (ଅନୁମତି ପତ୍ର) ବ୍ୟବସ୍ଥା ସାହାଯ୍ୟରେ ଇଂଲଣ୍ଡ ଓ ଇଉରୋପ ମହାଦେଶ ମଧ୍ୟରେ ବାଣିଜ୍ୟ କାରବାର ଚାଲୁ ରହିଥିଲା । ନେପୋଲିୟନ୍ ନିଜେ ଯେଉଁଠି ଲାଭ ଦେଖୁଥିଲେ, ସେଠି ସେ ବାଣିଜ୍ୟ କରୁଥିଲେ । ସେ ଯେତେବେଳେ ତାଙ୍କର ସୈନ୍ୟମାନଙ୍କ ପାଇଁ ଇଂଲଣ୍ଡ ତିଆରି ବୁଟଜୋତା ଆବଶ୍ୟକ କରୁଥିଲେ, ସେତେବେଳେ ସେ ନିଜର ଆଦେଶ ଲଙ୍ଘନ କରିବାକୁ ଉପାୟ ପାଉଥିଲେ । ନେପୋଲିୟନଙ୍କ ନୀତି ତାଙ୍କର ଅଧୀନ ରାଜ୍ୟମାନଙ୍କ ପକ୍ଷରେ ଆର୍ଥିକ ଦୃଷ୍ଟିରୁ କ୍ଷତିକାରକ ହେଉଥିବାରୁ ସେମାନଙ୍କୁ ତାହା ପ୍ରତି ଅନୁରକ୍ତ କରି ରଖିବା କଷ୍ଟସାଧ୍ୟ ଭାବି ସେ ଅଧିକରୁ ଅଧିକ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକ ତାଙ୍କ ସାମ୍ରାଜ୍ୟରେ ସାମିଲ୍ କରିବାକୁ ଲାଗିଲେ ଏବଂ ଏହା ଫଳରେ ସମୁଦ୍ର ଉପକୂଳର ପ୍ରାୟ ଦୁଇହଜାର ମାଇଲ ଫରାସୀ କର୍ମଚାରୀମାନଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରହିଥିଲା । ଏପରି ବ୍ୟବସ୍ଥା କରିବା ସତ୍ତ୍ୱେ ସେ ଚୋରା ବାଣିଜ୍ୟ ବନ୍ଦ କରିପାରିନଥିଲେ । ଇଂଲଣ୍ଡ ଜଳଭାଗରେ ଯେଉଁ କ୍ଷମତା ବିସ୍ତାର କରିଥିଲା ତାହା ବାଣିଜ୍ୟ ପଥସବୁ ଉନ୍ମୁକ୍ତ ରଖିବାରେ ବ୍ୟବହାର କରାଯାଇଥିଲା । ନେପୋଲିୟନ୍ ଡେନ୍‌ମାର୍କର ସହାୟତାରେ ବଲଟିକ୍ ସାଗରରେ ବ୍ରିଟିଶ ଜାହାଜର ପ୍ରବେଶ ନିଷିଦ୍ଧ କରିବାକୁ ସବୁ ବନ୍ଦୋବସ୍ତ କଲେ । ଏ ଖବର ପାଇ ଇଂଲଣ୍ଡର ଭୟ ହେଲା, ନେପୋଲିୟନ୍ ଦିନାମାର ନୌବହରକୁ ବଳପୂର୍ବକ ଅଧିକାର କରିନେଇ ତାହା ବିରୁଦ୍ଧରେ ବ୍ୟବହାର କରିବ । ତେଣୁ ଇଂଲଣ୍ଡ ଡେନମାର୍କକୁ ବ୍ରିଟିଶ ନୌବହର ପଠାଇଥିଲା ଏବଂ ଦିନାମାର ନୌବହରର ଆତ୍ମସମର୍ପଣ ଦାବୀ କରିଥିଲା । ଦିନାମାରମାନେ କିନ୍ତୁ ତାହା ପ୍ରତ୍ୟାଖ୍ୟାନ କରିଦେଇଥିଲେ । ତେଣୁ ଡେନମାର୍କକୁ ଉଚିତ୍ ଶିକ୍ଷା ଦେବା ସକାଶେ ଇଂରେଜମାନଙ୍କଦ୍ୱାରା କୋପେନ୍

ହାଗେନ (Copenhagen) ରେ ଗୋଳାବର୍ଷଣ କରାଯାଇଥିଲା ଓ ଡେନମାର୍କର ନୌବହରକୁ ଜବରଦସ୍ତି ଇଂଲଣ୍ଡକୁ ଅଣାଯାଇଥିଲା । ଏହି ରୂପେ ଇଂରେଜମାନେ ଉତ୍ତର ଇଉରୋପକୁ ନେପୋଲିୟନଙ୍କ ପ୍ରଭାବରୁ ରକ୍ଷା କରିପାରିଥିଲେ । ସେମାନେ ମଧ୍ୟ ହେଲିଗୋଲାଣ୍ଡ ଅଧିକାର କରି ନେଇଥିଲେ ଏବଂ ଜର୍ମାନୀ ସହିତ ବ୍ୟବସାୟ କାରବାର ଚଳାଇବା ପାଇଁ ଏହାକୁ ଉପଯୋଗୀ ଘାଟିରେ ପରିଣତ କରିଥିଲେ; କିନ୍ତୁ ନେପୋଲିୟନଙ୍କର ଶକ୍ତିଶାଳୀ ନୌବାହିନୀ ନଥିବାରୁ ତାଙ୍କ ଅବରୋଧ ନୀତି ଫଳପ୍ରଦ ହୋଇନଥିଲା ।

କଣ୍ଟିନେଣ୍ଟାଲ ସିଷ୍ଟମ ବା ମହାଦେଶୀୟ ବ୍ୟବସ୍ଥାରେ, ବିଫଳତାର ମୁଖ୍ୟ କାରଣ ହେଲା ଏହି ଯେ, ନେପୋଲିୟନ୍ ଯେଉଁ ରାଷ୍ଟ୍ରଗୁଡ଼ିକୁ ଏହି ବ୍ୟବସ୍ଥା ସମର୍ଥନ କରିବାପାଇଁ ବାଧ୍ୟ କରିଥିଲେ ସେହି ରାଷ୍ଟ୍ରମାନଙ୍କ ମଧ୍ୟରେ ଅତିମାତ୍ରାରେ ଅସନ୍ତୋଷ ପ୍ରକାଶ ପାଇଥିଲା । ପ୍ରଥମେ ରୁଷିଆ ଟିଲ୍‌ସିଟ୍ ସନ୍ଧି ଅନୁଯାୟୀ ଏ ବ୍ୟବସ୍ଥାକୁ ସମର୍ଥନ କରିଥିଲେ । ଅଷ୍ଟ୍ରିୟା ଏବଂ ପ୍ରୁସିୟା ସେମାନଙ୍କର ଅପମାନଜନକ ପରାଜୟ ପରେ ସେମାନେ ନିଜ ନିଜ ରାଜ୍ୟରେ ଏ ବ୍ୟବସ୍ଥା ପ୍ରଚଳନ କରିବାକୁ ବାଧ୍ୟ ହୋଇଥିଲେ । ଡେନମାର୍କ ମଧ୍ୟ ଠିକ୍ ସେଇଆ କରିଥିଲା, କିନ୍ତୁ ସ୍ୱିଡ଼େନ ଇଂରେଜମାନଙ୍କ ସହିତ ମିତ୍ରତା ଅବ୍ୟାହତ ରଖିବାକୁ ଚାହିଁବାରୁ ତାକୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ତାଠାରୁ ଫିନଲାଣ୍ଡ ଅଧିକାର କରି ନେବାପାଇଁ ରୁଷିଆକୁ ପ୍ରେରଣା ଦିଆଯାଇଥିଲା । ନେପୋଲିୟନଙ୍କର ଭାଇ ଲୁଇ ନେପୋଲିୟନ୍ ଏ ନୀତି ହଲାଣ୍ଡରେ ପ୍ରବର୍ତ୍ତନ କରିବାକୁ ଅକୃତକାର୍ଯ୍ୟ ହେବାରୁ ତାଙ୍କୁ ୧୮୧୦ ମସିହାରେ ଗାଦିଚ୍ୟୁତ କରାଯାଇଥିଲା । ପୋପ ନିରପେକ୍ଷ ରହିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ତାଙ୍କ ରାଜ୍ୟ ଅଧିକାର କରି ନିଆଯାଇଥିଲା ଏବଂ ତାଙ୍କୁ ବନ୍ଦୀ କରାଯାଇଥିଲା । ପୋପଙ୍କ ପ୍ରତି ଏପରି ବ୍ୟବହାର କରିବା ଯୋଗୁ ନେପୋଲିୟନଙ୍କୁ କ୍ୟାଥଲିକ ଶକ୍ତିମାନଙ୍କର ବିରକ୍ତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଇଂଲଣ୍ଡ ସହିତ ପର୍ତ୍ତୁଗାଲର ଘନିଷ୍ଠ ଅର୍ଥନୈତିକ ସମ୍ବନ୍ଧ ଥିବାରୁ ସେ କଣ୍ଟି-ନେଣ୍ଟାଲ ବା ମହାଦେଶୀୟ ଅବରୋଧ (Continental blockade)ର କଟକଣା ଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ମନା କରିଦେଇଥିଲା । ପର୍ତ୍ତୁଗାଲର ଉପକୂଳ ସୀମାରେଖା (coastline)ର ଏତେ ଗୁରୁତ୍ୱ ଥିଲା ଯେ ତାକୁ ଉନ୍ମୁକ୍ତ ରହିବାକୁ ନଦେବା ଉଦ୍ଦେଶ୍ୟରେ ନେପୋଲିୟନ୍ ସେ ଦେଶକୁ ଅଧିକାର କରିନେଇଥିଲେ । ତାହା ପରେ ସେ ସ୍ପେନକୁ ମଧ୍ୟ ନିଜ ଦଖଲକୁ ଆଣିଥିଲେ; କିନ୍ତୁ ସେଠାରେ ସେ ସ୍ପେନୀୟମାନଙ୍କର ଜାତୀୟ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ତା ଛଡ଼ା କଣ୍ଟିନେଣ୍ଟାଲ ସିଷ୍ଟମ୍ ବା ମହାଦେଶୀୟ ବ୍ୟବସ୍ଥାର ପ୍ରୟୋଗ ଫଳରେ ଫ୍ରାନ୍ସ ବିରୁଦ୍ଧରେ ଇଉରୋପର ପ୍ରତ୍ୟେକ ଦେଶରେ ଅସନ୍ତୋଷ ସୃଷ୍ଟି ହୋଇଥିଲା । ବ୍ରିଟିଶ ଜାହାଜଗୁଡ଼ିକର ଯେତେବେଳେ ଇଉରୋପର ବନ୍ଦର ମାନଙ୍କରେ ପ୍ରବେଶ ନିଷିଦ୍ଧ ହୋଇଗଲା, ସେତେବେଳେ ଇଉରୋପର ସବୁ ଦେଶଗୁଡ଼ିକରେ ଆର୍ଥିକ ଜୀବନ ବିପନ୍ନ ହୋଇପଡ଼ିଲା । ଅତ୍ୟାବଶ୍ୟକ ଜିନିଷ—ଚିନି, ଚାହା, କଫି ଓ ସୂତା ର ଦରଦାମ ବୃଦ୍ଧି ପାଇବାରୁ ଇଉରୋପର ଲୋକେ ଦୁଃଖ କଷ୍ଟ ଭୋଗ କଲେ । ତେଣୁ ପ୍ରତ୍ୟେକ

ଦେଶରେ ଏ ବ୍ୟବସ୍ଥା ବିରୁଦ୍ଧରେ ପ୍ରବଳ ବିକ୍ଷୋଭ ଦେଖା ଦେଇଥିଲା । ଅଧିକନ୍ତୁ ନେପୋଲିୟନଙ୍କ ପ୍ରତି ଇଉରୋପର ବିଭିନ୍ନ ଦେଶର ଲୋକମାନଙ୍କର ଆନୁଗତ୍ୟ ଶିଥିଳ ହୋଇପଡ଼ିଲା । ଏହି ମହାଦେଶୀୟ ବ୍ୟବସ୍ଥା ୧୮୧୧ ମସିହାରେ ରୁଷିଆ ଓ ଫ୍ରାନ୍ସ ମଧ୍ୟରେ ସ୍ୱାକ୍ଷର ହୋଇଥିବା ଚୁକ୍ତି ଭଙ୍ଗ ଦେବାର ବିଶେଷ ସହାୟକ ହୋଇଥିଲା । ନେପୋଲିୟନଙ୍କର ଜଣେ ସେକ୍ରେଟାରୀ ବା ସଚିବ ଏ ବ୍ୟବସ୍ଥାର ପରିଣାମ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ କହିଥିଲେ ଯେ, "କୋଡ଼ିଏ ଜଣ ରାଜାଙ୍କୁ ସେମାନଙ୍କର ରାଜଗାଦୀରୁ ଫିଙ୍ଗି ଦେଇଥିଲେ ମଧ୍ୟ ଏହାଠାରୁ କମ୍ ଘୃଣାଭାବ ସୃଷ୍ଟି ହୋଇଥାନ୍ତା" ('The hurling of twenty kings from the throne would have produced less hatred.') ସେ ଯାହା ହେଉ କ୍ରମେ ଏ ବ୍ୟବସ୍ଥା ବିଫଳ ହେବାକୁ ଲାଗିଲା । ଏହା ନେପୋଲିୟନଙ୍କର ଅଦୂରଦର୍ଶିତାର ଜ୍ୱଳନ୍ତ ପ୍ରମାଣ ।

## ସ୍ପେନର ଜାତୀୟ ଆନ୍ଦୋଳନ (୧୮୦୭-୧୩)

## ( The Nationalist Uprisings in Spain 1807-13 )

ନେପୋଲିୟନ ବଲ୍‌ଟିକ୍ ସାଗର ବ୍ୟାପାରରେ ଅକୃତକାର୍ଯ୍ୟ ହେଲାପରେ ପର୍ତ୍ତୁଗାଲକୁ ତାଙ୍କର ବ୍ୟାପକ ଆର୍ଥିନୀତିକ ବ୍ୟବସ୍ଥା ମଧ୍ୟକୁ ଟାଣିଆଣିବାପାଇଁ ଆଇବେରୀୟ ଉପଦ୍ୱୀପ ( Iberian Peninsula ) ଆଡ଼କୁ ଦୃଷ୍ଟି ଫେରାଇଲେ । ପର୍ତ୍ତୁଗାଲ ତାର ପୁରୁଣାବନ୍ଧୁ ଇଂଲଣ୍ଡ ବିରୁଦ୍ଧରେ କଣ୍ଟିନେଣ୍ଟାଲ ସିଷ୍ଟମ୍ ବା ମହାଦେଶୀୟ ବ୍ୟବସ୍ଥା ଲାଗୁ କରିବାକୁ ପ୍ରକାରାନ୍ତରେ ମନା କରିଦେବାରୁ ନେପୋଲିୟନ୍ ତା ଉପରେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ସ୍ପେନର ରାଜା ଚତୁର୍ଥ ଚାର୍ଲସଙ୍କ ସହିତ ଫନ୍‌ଟେନ୍‌ବ୍ଲୁ ନାମକ ଏକ ଗୋପନୀୟ ସନ୍ଧି ( Treaty of Fontainbleau) କରିଥିଲେ ଏବଂ ଏହି ସନ୍ଧିରେ ପର୍ତ୍ତୁଗାଲ ଓ ତାହାର ଉପନିବେଶଗୁଡ଼ିକୁ ଫ୍ରାନ୍ସ ଓ ସ୍ପେନ ମଧ୍ୟରେ ବଣ୍ଟନ କରିବାର ସର୍ତ୍ତ ରହିଥିଲା । ଏହି ପରିକଳ୍ପନାକୁ କାର୍ଯ୍ୟକାରୀ କରିବାପାଇଁ ସେ ଜୁନଟଙ୍କ ଅଧୀନରେ ଏକ ଫରାସୀ ସୈନ୍ୟବାହିନୀକୁ ପର୍ତ୍ତୁଗାଲକୁ ପଠାଇଥିଲେ । ଏହି ସୈନ୍ୟବାହିନୀ ସହିତ ମିଳି ପର୍ତ୍ତୁଗାଲ ଅଧିକାର କରିନେଇଥିଲେ । ପର୍ତ୍ତୁଗାଲର ରାଜପରିବାର ବ୍ରିଟିଶ ନୌବାହିନୀର ସହାୟତାରେ ବ୍ରାଜିଲକୁ ପଳାଇ ଯାଇଥିଲେ । ସେତେବେଳେ ନେପୋଲିୟନ ଘୋଷଣା କରିଥିଲେ ଯେ, ପର୍ତ୍ତୁଗାଲର ବ୍ରାଗନଜା ରାଜବଂଶ ଶାସନରୁ ଓହରିଗଲେ । ( The House of Bragnza ceased to rule" ) ସେହିଦିନଠାରୁ ପର୍ତ୍ତୁଗାଲ ନେପୋଲିୟନଙ୍କ ସାମ୍ରାଜ୍ୟରେ ଏକ ପ୍ରଦେଶ ହୋଇ ରହିଲା । ପର୍ତ୍ତୁଗାଲ ଆକ୍ରମଣ ପାଇଁ ନେପୋଲିୟନଙ୍କର ଯେଉଁ ଅଭିସନ୍ଧି ଥିଲା, ତାହା ସ୍ପେନକୁ ବଶୀଭୂତ କରିବା ପରିକଳ୍ପନାର ଏକ ଅଂଶ ମାତ୍ର ।

ବାଜେଲ ସନ୍ଧି (୧୭୯୫) ସ୍ୱାକ୍ଷର ହେବା ଦିନଠାରୁ ସ୍ପେନ ଫ୍ରାନ୍ସର ଆନୁଗତ୍ୟ ସ୍ୱୀକାର କରି ଆସୁଥିଲା । ସେ ଇଂଲଣ୍ଡ ବିରୁଦ୍ଧରେ ଫ୍ରାନସ୍ ଯେତେବେଳେ ନୌଯୁଦ୍ଧରେ ବ୍ୟାପୃତ ହେଲା, ସେତେବେଳେ ଫ୍ରାନସ୍‌କୁ ସେ ତାହାର ଶକ୍ତିଶାଳୀ ନୌସେନା ସାହାଯ୍ୟ ଦେଇଥିଲା; କିନ୍ତୁ ଇଂଲଣ୍ଡ ସ୍ପେନର ନୌଶକ୍ତି ଟ୍ରାଫାଲଗାର ଯୁଦ୍ଧରେ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରି ଦେଇଥିଲା । ନେପୋଲିୟନ୍ କିନ୍ତୁ ସ୍ପେନର ସ୍ୱାର୍ଥକୁ ବଳିଦେଇ ନିଜର ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଏମିନ୍ସ ଶାନ୍ତି ଚୁକ୍ତିର ସର୍ତ୍ତ ରୂପେ ଇଂଲଣ୍ଡକୁ ସ୍ପେନର ଉପନିବେଶ ଟ୍ରିନିଦାଦ ଦେଇଥିଲେ । ଇଂଲଣ୍ଡ ତାହାପରେ ସ୍ପେନର ଅନ୍ୟ ଏକ ଉପନିବେଶ ବ୍ୟୁଏନ୍ ଆୟାରସ୍ (Buenos Ayres)କୁ ଅଧିକାର କରିନେଇଥିଲା । ତଥାପି ସ୍ପେନ୍ ନେପୋଲିୟନଙ୍କ ପ୍ରତି ଅନୁରକ୍ତ ରହିଥିଲା । ତାଙ୍କ ସେବାରେ ସେ ତାହାର ଟଙ୍କା ପଇସା, ଜାହାଜ ଓ ସୈନ୍ୟ ବାହିନୀକୁ ନିୟୋଜିତ କରିଥିଲା ଓ ବ୍ରିଟିଶ୍ ପଣ୍ୟବାହୀ ଜାହାଜଗୁଡ଼ିକୁ ତାର ବନ୍ଦର-ମାନଙ୍କରେ ପ୍ରବେଶ କରିବାକୁ ଅନୁମତି ଦେଇନଥିଲା । ସ୍ପେନର ବୁରବନ୍ ରାଜା ଚତୁର୍ଥ ଚାର୍ଲ୍‌ସ ଅତି ଦୁର୍ବଳ ଥିଲେ ଏବଂ ତାଙ୍କ ରାଣୀ ତାଙ୍କର ପ୍ରଧାନମନ୍ତ୍ରୀ ଗଡ଼ୟେ (Godoy)ଙ୍କ ସହିତ ଅବୈଧ ପ୍ରେମରେ ଆବଦ୍ଧ ଥିଲେ ଓ ଜନତା ରୋଷ ପ୍ରକାଶକରିବା ସତ୍ତ୍ୱେ ନିଜକୁ କ୍ଷମତାରେ ରଖିବାପାଇଁ ନେପୋଲିୟନଙ୍କୁ ତାଙ୍କ ଦେଶର ନୀତି ନିର୍ଣ୍ଣୟ କରି ଦେଇଥିଲେ । ଗଡ଼ୟ ମାତ୍ର ଥରେ ନେପୋଲିୟନଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରିବାରେ ଇତସ୍ତତଃ ହୋଇଥିଲେ । ଯେତେବେଳେ ନେପୋଲିୟନ୍ ପ୍ରୁସିୟା ବିରୁଦ୍ଧରେ ୧୮୦୬ ମସିହାରେ ଜେନା ଅଭିଯାନ ଚଳାଇ ଥିଲେ, ସେତେବେଳେ ଗଡୟ ସ୍ପେନ୍‌ର ଲୋକମାନଙ୍କୁ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ସାନୁନୟ ନିବେଦନ କରିଥିଲେ ଓ ସ୍ପେନ ସୈନ୍ୟବାହିନୀକୁ ଫ୍ରାନସ୍ ସହିତ ଯୁଦ୍ଧପାଇଁ ପ୍ରସ୍ତୁତକରି ରଖିଥିଲେ । ପ୍ରୁସିଆ ଜେନା ସମରରେ ପରାସ୍ତ ହେବାରୁ ଗଡ଼ୟେ ପୁନର୍ବାର ନେପୋଲିୟନଙ୍କ ପ୍ରତି ଅନୁରକ୍ତି ପ୍ରକାଶକରିବା ସଙ୍ଗେ ସଙ୍ଗେ ପର୍ତ୍ତୁଗାଲର ଧ୍ୱଂସସାଧନ କରି-ବାକୁ ନେପୋଲିୟନଙ୍କ ସହିତ ମସୁଧା କରିଥିଲେ; କିନ୍ତୁ ଗଡ଼ୟେ ପୁନର୍ବାର ନେପୋଲିୟନଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରିବାସତ୍ତ୍ୱେ, ଫ୍ରାନ୍ସ ବିରୁଦ୍ଧରେ ସ୍ପେନର ଏତାଦୃଶ କାର୍ଯ୍ୟ ତାଙ୍କ ନିରପେକ୍ଷ ପ୍ରତି ବୁରବନ୍ ରାଜବଂଶର ଏକ ଧମକ ବୋଲି ନେପୋଲିୟନ ସନ୍ଦେହ କରିଥିଲେ । ସମ୍ଭବତଃ ସେ ଅନୁଭବ କରିଥିଲେ ଯେ ନିଯୁକ୍ତ କରାଯାଇଥିବା ଚାଟୁକାର ଗଡ଼ୟେକୁ ବିଶ୍ୱାସ କରିବା ତାଙ୍କପକ୍ଷରେ ଆଦୌ ଉଚିତ ହେବନାହିଁ । ତାଛଡ଼ା ସେ ବୋଧହୁଏ ସ୍ଥିର ହୁଁ ଥିଲେ ଯେ ବୁରବନ୍‌ମାନେ ସେମାନଙ୍କର ରାଜଗାଦି ପ୍ୟାରିସ୍ ଓ ନେପ୍ଲସ୍‌ରେ ହରାଇସାରିଥିବାରୁ ସେମାନଙ୍କୁ ସେ ମାଡ୍ରିଡ୍ ରାଜଗାଦିରୁ ବିତାଡ଼ିତ କରି ଇଉରୋପରେ ବୁରବନ୍ ରାଜତ୍ୱର ଉଚ୍ଛେଦସାଧନ କରିବେ । କେତେକ ମନେକରନ୍ତି ଯେ ସେ ସ୍ପେନୀୟମାନଙ୍କୁ ଅତ୍ୟାଚାରୀ ଏବଂ ଘୃଣ୍ୟ ଶାସନରୁ ମୁକ୍ତକରି କୃତଜ୍ଞତାର ନିଦର୍ଶନ ସ୍ୱରୂପ ସେମାନଙ୍କୁ ସେମାନଙ୍କର ମୁକ୍ତିଦାତା ପ୍ରତି ଅନୁରକ୍ତ କରିବାକୁ ଆଗ୍ରହୀ ଥିଲେ । ଅନ୍ୟ କେତେକଙ୍କ ମତରେ ସେ ଗୋଟିଏ ପରେ ଗୋଟିଏ ଏହିପରି ବହୁ ସିଂହାସନ ନିଜ ଅକ୍ତିଆରକୁ ଆଣିଥିଲେ ମଧ୍ୟ ସ୍ପେନପରି ଏକ ପ୍ରସିଦ୍ଧ

ସିଂହାସନକୁ ସେଗୁଡ଼ିକ ସହିତ ଯୋଗ କରିବାର ଲୋଭ ସେ ସମ୍ବରଣ କରିପାରିନଥିଲେ । ତାଙ୍କର ସ୍ପେନ ନୀତିର ସମ୍ଭବତଃ ଏହିସବୁ ଲକ୍ଷ୍ୟ ଥିଲା । ତେଣୁ ଯଦି ଏହିସବୁ ଅଭିପ୍ରାୟ ନେଇ ନେପୋଲିୟନ୍ ସ୍ପେନରେ ହସ୍ତକ୍ଷେପ କରିଥାନ୍ତି, ତାହାହେଲେ ଗଡ଼ୟେ କିମ୍ବା ସ୍ପେନ କେହି ତାଙ୍କଠାରୁ ରକ୍ଷାପାଇବା କଷ୍ଟକର ଥିଲା ।

ଏ କଥା ଶୀଘ୍ର ସୁସ୍ପଷ୍ଟ ହୋଇଗଲା ଯେ, ନେପୋଲିୟନଙ୍କର ପର୍ତ୍ତୁଗାଲ ସହିତ କଳହ ଫଳରେ ସେ ଯେଉଁ ୩୫,୦୦୦ର ଏକ ସୈନ୍ୟବାହିନୀ ପର୍ତ୍ତୁଗାଲ ଆକ୍ରମଣ ପାଇଁ ପଠାଇଥିଲେ ତାହା ପ୍ରକୃତରେ ଲିସବନ୍ ସରକାରଙ୍କୁ ଲକ୍ଷ୍ୟ କରାନଯାଇ ମାଡ୍ରିଡ୍ ସରକାରଙ୍କୁ ଲକ୍ଷ୍ୟ କରାଯାଇଥିଲା । ପ୍ରଧାନମନ୍ତ୍ରୀ ଗଡ଼ୟେଙ୍କର ସ୍ପେନର ରାଜା ଓ ରାଣୀଙ୍କ ଉପରେ ବିଶେଷ ପ୍ରଭାବ ଥିବାରୁ ତାଙ୍କର ସୁପାରିସ୍ ଅନୁଯାୟୀ ଫରାସୀ ସୈନ୍ୟବାହିନୀଙ୍କୁ ସ୍ପେନ ମଧ୍ୟଦେଇ ପର୍ତ୍ତୁଗାଲ ଅଭିମୁଖେ ଯୁଦ୍ଧଯାତ୍ରା କରିବାପାଇଁ ଅନୁମତି ମିଳିଥିଲା ଏବଂ ଫ୍ରାନ୍ସ ଓ ସ୍ପେନ ମଧ୍ୟରେ ଫନ୍‌ଟେନବ୍ଲୁ ସନ୍ଧି ସ୍ୱାକ୍ଷରିତ ହୋଇଥିଲା । ନେପୋଲିୟନ ତାଙ୍କ ଚୁକ୍ତି ପାଳନକରିବାକୁ କେବେହେଲେ ଆଗ୍ରହ ପ୍ରକାଶ କରିନଥିଲେ । ସେ କେବଳ ସ୍ପେନକୁ ଏକ ସୈନ୍ୟବାହିନୀ ନେବା ବିଷୟରେ ନିଶ୍ଚିତ ହେବାକୁ ଚାହୁଁଥିଲେ । ୧୮୦୮ ମସିହା ପ୍ରାରମ୍ଭରେ ପିରେନିଜ୍‌ର ଦକ୍ଷିଣପଟେ ମୁତୟନ ହୋଇଥିବା ସୈନ୍ୟସଂଖ୍ୟା ଏକଲକ୍ଷ ଥିଲା । ତେଣୁ ସ୍ପେନର ରାଜ ପରିବାରର ପର୍ତ୍ତୁଗାଲ ରାଜପରିବାରଙ୍କ ଆଦର୍ଶ ଅନୁକରଣ କରି ଆମେରିକାକୁ ପଳାଇଯିବା ପାଇଁ ସବୁ ବ୍ୟବସ୍ଥା କରିଥିଲେ; କିନ୍ତୁ ନେପୋଲିୟନଙ୍କର ସେଥିପ୍ରତି ସତର୍କ ଦୃଷ୍ଟି ଥିଲା ଏବଂ ତାଙ୍କର ଶତ୍ରୁ ଅନ୍ୱେଷଣକାରୀ କ୍ରୁଇଜର ଜାହାଜଗୁଡ଼ିକ (cruisers) ତାଙ୍କ ଶିକାରଗୁଡ଼ିକ ଖସିପଳାଇ ଯିବାର ସବୁ ରାସ୍ତା ବନ୍ଦ କରିଦେଇଥିଲେ । ଏଥିମଧ୍ୟରେ ସ୍ପେନ ତାଙ୍କର ଲୌହମୁଠାରେ ରହିସାରିଥିଲା ।

ନେପୋଲିୟନ୍ ସ୍ପେନ ଅଧିକାର କରିବାପାଇଁ କୌଣସି ନିର୍ଦ୍ଦିଷ୍ଟ ପରିକଳ୍ପନା କରିଥାଆନ୍ତୁ ବା ନ କରିଥାଆନ୍ତୁ, ପରିସ୍ଥିତି ତାଙ୍କୁ ଏ ପ୍ରକାର କାର୍ଯ୍ୟ କରିବାକୁ ସୁଯୋଗ ଦେଇଥିଲା । ଯୁବରାଜ ଫର୍ଡିନାଣ୍ଡ ତାଙ୍କ ପିତାମାତା ଓ ସେମାନଙ୍କର ପ୍ରିୟପାତ୍ର ଗଡ଼ୟେଙ୍କୁ ଘୃଣା କରୁଥିଲେ । ମାଡ୍ରିଡର ଲୋକେ ସେ ସମସ୍ତଙ୍କୁ ଘୃଣାଚକ୍ଷୁରେ ଦେଖିବା ସଙ୍ଗେ ସଙ୍ଗେ ଯୁବରାଜଙ୍କୁ ମାଡ୍ରିଡ୍‌ର ବୀର ବୋଲି ମନେକରୁଥିଲେ । ୧୮୦୮ ମସିହା ମାର୍ଚ୍ଚ ମାସରେ ବିକ୍ଷୁବ୍ଧ ଜନତା ରାଜପ୍ରାସାଦ ଚାରିପଟେ ଘେରିଯାଇ ଗଡ଼ୟେର ମସ୍ତକ ଚାହାନ୍ତି ବୋଲି ଚିତ୍କାର କରିଥିଲେ ।

ସ୍ପେନରେ ଫରାସୀ ସୈନ୍ୟବାହିନୀର ପ୍ରବେଶ ପଛରେ ଗଡ଼ୟେଙ୍କର ହାତ ଅଛି ବୋଲି ସେମାନଙ୍କର ଦୃଢ଼ ଧାରଣା ଜନ୍ମି ଥିଲା । ତେଣୁ ସେମାନେ ଗଡ଼ୟେଙ୍କର ଶିରଚ୍ଛେଦପାଇଁ ଦାବୀ କରିଥିଲେ; କିନ୍ତୁ ଫର୍ଡିନାଣ୍ଡ ତାଙ୍କ ମା'ଙ୍କର ବିଶେଷ ଅନୁରୋଧ ଯୋଗୁ ଗୋଟିଏ ସର୍ତ୍ତରେ ତାଙ୍କର ପ୍ରିୟପାତ୍ର ଗଡ଼ୟେଙ୍କର ଜୀବନ ରକ୍ଷା କରିଥିଲେ । ତାଙ୍କର ସର୍ତ୍ତଟି ହେଲା ଏହି ଯେ, ତାଙ୍କର ପିତା ରାଜଗାଦି ତ୍ୟାଗକରିବେ । ଏହି ସର୍ତ୍ତ ବଳପୂର୍ବକ ପୂରଣ କରାଯାଇଥିଲା ।

ଫଳରେ ଫର୍ଡିନାଣ୍ଡ ରାଜା ହୋଇଥିଲେ । ବର୍ତ୍ତମାନ ଜଣେ ଜାତୀୟତାବାଦୀ ନେତାଙ୍କୁ ଜନଆନ୍ଦୋଳନକୁ ନେତୃତ୍ୱ ଦେବାପାଇଁ ଏବଂ ସ୍ପେନକୁ ବୈଦେଶିକ ଶୃଙ୍ଖଳାରୁ ମୁକ୍ତକରିବା ପାଇଁ ସୁଯୋଗ ମିଳିଲା ।

କିନ୍ତୁ ଫର୍ଡିନାଣ୍ଡ ତାଙ୍କର ପିତା ଓ ଗଡ଼ୟେ ପରି ଫ୍ରାନ୍ସ ନିକଟରେ ନତଜାନୁ ହୋଇ ଠିଆହୋଇଥିଲେ ଏବଂ ନେପୋଲିୟନ୍ ତାଙ୍କର ଜଣେ ଝିଆରୀକୁ ତାଙ୍କ ହସ୍ତରେ ସମର୍ପଣ କରିବେ ବୋଲି ଆଗ୍ରହର ସହିତ ଅପେକ୍ଷା କରିଥିଲେ । ନେପୋଲିୟନ୍ ଦେଖିଲେ ଯେ ସ୍ପେନର ସମସ୍ତ ରାଜପରିବାରକୁ ସେ ତାଙ୍କ ଫାଶରେ ପକାଇ ପାରିଛନ୍ତି । ସିଂହାସନଚ୍ୟୁତ ରାଜା ଚତୁର୍ଥ ଚାର୍ଲସ ଜିଦ୍ ଧରିଛନ୍ତି ଯେ ରାଜମୁକୁଟ ତାଙ୍କଠାରୁ ବଳପୂର୍ବକ କାଢ଼ିନିଆ-ହୋଇଅଛି । ବର୍ତ୍ତମାନ ନେପୋଲିୟନ୍‌ଙ୍କୁ ସ୍ପେନ ରାଜ୍ୟର ଭାଗ୍ୟ ନିଷ୍ପତ୍ତି କରିବାକୁ ପଡ଼ିବ । ସ୍ପେନ ରାଜମୁକୁଟର ମଧ୍ୟସ୍ଥ ହିସାବରେ ସେ ଅବଲମ୍ୱେ ନିଷ୍ପତ୍ତି କଲେ ଯେ ପିତା କିମ୍ବା ପୁତ୍ର କେହି ଏହି ରାଜମୁକୁଟ ପାଇପାରିବେ ନାହିଁ । ଚାର୍ଲସ ଓ ତାଙ୍କର ପୁତ୍ର ଫର୍ଡିନାଣ୍ଡଙ୍କୁ ସ୍ପେନ ରାଜଗାଦି ଉପରେ ସେମାନଙ୍କର ଅଧିକାର ବର୍ଜନ କରିବାକୁ ବାଧ୍ୟକଲାପରେ ନେପୋଲିୟନ ତାଙ୍କ ଭାଇ ଯୋସେଫଙ୍କୁ ସ୍ପେନର ରାଜାହେବା ସକାଶେ ନେପ୍‌ଲସରୁ ମାଡ୍ରିଡ଼କୁ ଡକାଇଥିଲେ । ବୁରବନ୍‌ମାନଙ୍କର ପତନ ଘଟାଇବା ପାଇଁ ଯେଉଁ ଷଡ଼ଯନ୍ତ୍ର ହୋଇଥିଲା, ତାହାର ଫଳ ଏହି ପ୍ରକାରେ ହେଲା । ରାଜାମାନଙ୍କୁ ବୋକା ବନାଇବା ପାଇଁ ନେପୋଲିୟନ୍ ଯେଉଁ ଖେଳ ଖେଳିଥିଲେ ସେହି ପୁରୁଣା ଖେଳ ସ୍ପେନରେ ଖେଳିଥିଲେ ଏବଂ ସ୍ପେନର ପରିସ୍ଥିତି ପ୍ରତି ବିଶେଷ ଦୃଷ୍ଟି ଦେଇନଥିଲେ । ସ୍ପେନର ଲୋକମାନଙ୍କୁ ଭ୍ରୂକ୍ଷେପ ନ କରି ସେ ସ୍ପେନ ବିଷୟରେ ଯେଉଁ ନିଷ୍ପତ୍ତି କଲେ, ତାହା ତାଙ୍କ ପତନ ପାଇଁ ରାସ୍ତା ପରିଷ୍କାର କରିଦେଲା ।

ଗୋଟିଏ ଜାତିର ଆର୍ଥିକ କ୍ଷତି ଘଟାଇଲେ ତାହାର ପ୍ରତିବାଦ ଯେତେ ତୀବ୍ର ହୁଏ, ତାହାଠାରୁ ଅଧିକ ତୀବ୍ର ହୁଏ ଯଦି ସେ ଜାତିର ଅହଙ୍କାରକୁ ଅବଜ୍ଞା କରାଯାଏ । ନେପୋ-ଲିୟନ ଏ ବିଷୟରେ ସଚେତନ ନ ଥିଲେ । ସ୍ପେନର ଲୋକମାନେ ଫରାସୀ ସୈନ୍ୟ ବାହିନୀକୁ ପ୍ରଥମେ ସ୍ୱାଗତ କରିଥିଲେ । କାରଣ ସେମାନେ ଭାବିଥିଲେ ଯେ, ସେ ସୈନ୍ୟବାହିନୀ ଲୋକପ୍ରିୟ ରାଜପୁତ୍ର ଫର୍ଡିନାଣ୍ଡଙ୍କ ଦାବୀକୁ ସମର୍ଥନ କରିବାକୁ ସ୍ପେନକୁ ଆସିଛନ୍ତି । ଯେତେବେଳେ ନେପୋଲିୟନ୍‌ଙ୍କର ବିଶ୍ୱାସଘାତକତାର ପରିଚୟ ପାଇଲେ, ସେତେବେଳେ ସେମାନେ କ୍ରୋଧରେ ଉନ୍ମତ୍ତ ହୋଇପଡ଼ିଲେ । ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସେମାନେ ନେପୋଲିୟନଙ୍କ ଭାଇ ଯୋସେଫଙ୍କୁ ସେମାନଙ୍କର ରାଜା ବୋଲି ସ୍ୱୀକାର କରିବାକୁ ସ୍ପଷ୍ଟଭାବେ ମନା କରିଦେଲେ । ପିରେନିଜ୍ (The Pyrenees)ଠାରୁ ଜିବ୍ରାଲ୍‌ଟର ପ୍ରଣାଳୀ (The straits of Gibraltar) ପର୍ଯ୍ୟନ୍ତ ସମଗ୍ର ଜାତି ତାଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଦେଲେ । ଯୋସେଫ୍ ମାଡ୍ରିଡ୍ ସିଂହାସନରେ ବସିବାର ଦୁଇ ସପ୍ତାହ ହେବା ପୂର୍ବରୁ ତାଙ୍କୁ ଅପ୍ରତ୍ୟାଶିତ ଓ ଅଭୂତପୂର୍ବ

ଏପରି ଏକ ଜାତୀୟ ଆନ୍ଦୋଳନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସ୍ପେନର ସବୁଆଡ଼େ ସ୍ଥାନୀୟ ପରିଷଦମାନ (Local Juntas or Councils) ଗଠନ କରାଯାଇଥିଲା । ସ୍ପେନ ଅଧିକାଂଶ ଇଉରୋପୀୟ ଦେଶମାନଙ୍କ ପରି କେବଳ ଏକ ଭୌଗୋଳିକ ଉକ୍ତି (geographical expression) ନ ଥିଲା । ସ୍ପେନୀୟମାନେ ଥିଲେ ଏକ ଜାତି ଯେ କି କେବେହେଲେ ବିଦେଶୀ ଶାସନ ଜାଣିନଥିଲା । ନେପୋଲିୟନ ତାଙ୍କ ଭାଇଙ୍କୁ ସ୍ପେନର ସିଂହାସନରେ ବସାଇବା ଦ୍ୱାରା ସ୍ପେନର ପୂର୍ବ ଐତିହ୍ୟ ପ୍ରତି ଅବମାନନା ପ୍ରଦର୍ଶନ କରିଥିଲେ । ଫଳରେ ନେପୋଲିୟନଙ୍କ ବିରୁଦ୍ଧରେ ସେଠାରେ ଗଭୀର ଅସନ୍ତୋଷ ପ୍ରକାଶ ପାଇଥିଲା । ସ୍ପେନୀୟମାନେ ତାଙ୍କୁ ସେମାନଙ୍କର ଶତ୍ରୁ ଓ ଧର୍ମର ଶତ୍ରୁ ବୋଲି ବିବେଚନା କରିଥିଲେ । ତେଣୁ ନେପୋଲିୟନଙ୍କ ବିରୁଦ୍ଧରେ ସାହାଯ୍ୟପାଇଁ ସ୍ପେନୀୟମାନଙ୍କ ପକ୍ଷରୁ ଇଂଲଣ୍ଡକୁ ସାନୁନୟ ନିବେଦନ କରାଯାଇଥିଲା ଏବଂ ଇଂଲଣ୍ଡ ସହାନୁଭୂତିର ସହିତ ବିଚାର କରି ଏକ ସାହାଯ୍ୟକାରୀ କ୍ଷୁଦ୍ର ସୈନ୍ୟବାହିନୀ ସ୍ପେନକୁ ପଠାଇଥିଲା ।

ପର୍ତ୍ତୁଗାଲ ମଧ୍ୟ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଫ୍ରାନସ ବିରୁଦ୍ଧରେ ବିଦ୍ରୋହ କରିଥିଲା । ସାର୍ ଆର୍ଥର ଓ୍ୱେଲସଲି (ପରେ ଡ୍ୟୁକ ଅଫ ଓ୍ୱେଲିଙ୍ଗଟନ୍)ଙ୍କୁ ପର୍ତ୍ତୁଗାଲକୁ ସାହାଯ୍ୟ କରିବାପାଇଁ ଇଂରେଜ ସରକାର ପଠାଇଥିଲେ । ଉଭୟ ପର୍ତ୍ତୁଗାଲ ଓ ସ୍ପେନରେ ଫ୍ରାନ୍ସକୁ ଘୋର ବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୧୮୦୮ ମସିହା ଜୁଲାଇ ୧୯ ତାରିଖ ଦିନ କୋଡ଼ିଏ ହଜାରର ଏକ ଫରାସୀ ସୈନ୍ୟବାହିନୀ ବେଲେନ୍ (Baylen) ଠାରେ ସ୍ପେନୀୟମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ତା'ପରେ ସ୍ପେନୀୟମାନେ ମାଡ୍ରିଡ ଆଡ଼କୁ ଅଗ୍ରସର ହେଲେ ଏବଂ ଯୋସେଫ ନିଜକୁ ରକ୍ଷାକରିବାର କୌଣସି ଉପାୟ ନ ଦେଖି ରାଜଧାନୀ ଛାଡ଼ି ପଳାଇଗଲେ । ଇତିମଧ୍ୟରେ ବ୍ରିଟିଶ ସୈନ୍ୟବାହିନୀ ପର୍ତ୍ତୁଗାଲର ଭିମେରିୟା (Vimeria) ଠାରେ ଫରାସୀମାନଙ୍କୁ ପରାସ୍ତ କରି ପର୍ତ୍ତୁଗାଲ ଛାଡ଼ି ସେମାନଙ୍କୁ ପଳାଇଯିବାକୁ ବାଧ୍ୟ କରିଥିଲେ । ନେପୋଲିୟନ ଏହି ଅପ୍ରତ୍ୟାଶିତ ଘଟଣାର ସମ୍ବାଦ ପାଇ ପ୍ରତିହିଂସା ନେବା ଉଦ୍ଦେଶ୍ୟରେ ନିଜେ ଏକଲକ୍ଷ ସୈନ୍ୟ ଧରି ସ୍ପେନ ଅଭିମୁଖେ ଯୁଦ୍ଧଯାତ୍ରା କରିଥିଲେ । ବିଜୟୋଲ୍ଲାସରେ ମାଡ୍ରିଡରେ ପହଞ୍ଚି ବ୍ରିଟିଶ ସୈନ୍ୟମାନଙ୍କୁ ମାଡ୍ରିଡରୁ ବିତାଡ଼ିତ କରିଥିଲେ । ମନେହେଲା ଯେପରି ସେ ବିପ୍ଳବର ଶ୍ୱାସରୋଧ କରିଦେଇଛନ୍ତି ।

ନେପୋଲିୟନ ପୁନର୍ବାର ତାଙ୍କର ଭାଇ ଯୋସେଫଙ୍କୁ ସ୍ପେନର ରାଜଗାଦିରେ ଅଧିଷ୍ଠିତ କରିଥିଲେ । ସ୍ପେନୀୟମାନଙ୍କୁ ସତର୍କ କରିଦେଇ ଦାମ୍ଭିକ ଭାବରେ କହିଥିଲେ ଯେ, ଯଦି ସେମାନେ ଯୋସେଫଙ୍କୁ ସମ୍ମାନ ପ୍ରଦର୍ଶନ ନ କରନ୍ତି, ତାହାହେଲେ ସେ ସ୍ପେନର ରାଜମୁକୁଟ ନିଜେ ପରିଧାନ କରିବେ ଏବଂ ସେମାନଙ୍କୁ ବେଶ୍ ଏକ ଶିକ୍ଷା ଦେବେ । ଅନ୍ୟ ଦିଗରେ ଯୋସେଫ ତାଙ୍କ ଭାଇ ନେପୋଲିୟନଙ୍କର ନିର୍ଦ୍ଦେଶରେ କେତେକ ଆବଶ୍ୟକୀୟ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ନେପୋଲିୟନ ଭାବିଥିଲେ ଯେ, ଏହା କରିବାଦ୍ୱାରା ଯୋସେଫ ସ୍ପେନୀୟମାନଙ୍କର ସହଯୋଗ ଓ ସମର୍ଥନ ଲାଭ କରିପାରିବେ; କିନ୍ତୁ

ନେପୋଲିୟନଙ୍କ ଧାରଣା ଯେ ଭୁଲ ତାହା ଶୀଘ୍ର ପ୍ରମାଣିତ ହେଲା । ଯୋସେଫଙ୍କ ଦ୍ୱାରା ଏପରି ସୁଶାସନ ପ୍ରତିଷ୍ଠା କରାଗଲେ ମଧ୍ୟ ସ୍ପେନୀୟମାନେ ସ୍ୱଦେଶୀ ଶାସନ ସହିତ କୌଣସି ବୁଝାମଣା ପାଇଁ ରାଜି ହେଲେନାହିଁ । ବାହାରୁ ସେମାନଙ୍କ ଉପରେ ଲଦି ଦିଆଯାଇଥିବା ରାଜାଙ୍କଦ୍ୱାରା ଉପକୃତ ହେବା ଅପେକ୍ଷା ନିଜ ରାଜାଙ୍କର ଅତ୍ୟାଚାରମୂଳକ ଶାସନକୁ ବେଶି ପସନ୍ଦ କରିବେ ବୋଲି ଜଣାଗଲା । ତାଙ୍କ ହସ୍ତକ୍ଷେପ ଫଳରେ ସ୍ପେନରେ ଯେ ଏକ ବିରାଟ ଜାତୀୟ ଆନ୍ଦୋଳନର ସୂତ୍ରପାତ ହେବ ତାହା ନେପୋଲିୟନ ଆଦୌ ଚିନ୍ତାକରି ପାରି-ନଥିଲେ ।

ନେପୋଲିୟନ ପୁନର୍ବାର ସ୍ପେନ ଦଖଲ କରିନେଲେ । ପରେ ସାରଜନ୍ ମୁର (Sir Jhon Moore)ଙ୍କ ଦ୍ୱାରା ପରିଚାଳିତ ହୋଇ ପର୍ତ୍ତୁଗାଲରୁ ସ୍ପେନକୁ ଆସୁଥିବା ଏକ ବ୍ରିଟିଶ ସୈନ୍ୟବାହିନୀର ମୁକାବିଲା କରିବାପାଇଁ ଯାତ୍ରା କରିଥିଲେ । ମୁର୍ ଏ ସମ୍ବାଦ ପାଇ କରୁନା (Corunna) ଆଡକୁ ପଛଘୁଞ୍ଚା ଦେବା ଆରମ୍ଭ କରିଦେଲେ । ଠିକ୍ ଏହି ସମୟରେ ଅଷ୍ଟ୍ରିୟା ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ ଘୋଷଣା ପାଇଁ ପ୍ରସ୍ତୁତ ହେଉଥିବାର ଖବର ନେପୋଲିୟନ ପାଇଲେ । ମାର୍ଶାଲ ସୋଲ୍ଟ (Marshal Soult)ଙ୍କୁ ବ୍ରିଟିଶ ସୈନ୍ୟବାହିନୀର ଅନୁଧାବନର ଦାୟିତ୍ୱ ଅର୍ପଣକରି ଅଷ୍ଟ୍ରିୟାକୁ ଶାସ୍ତିଦେବା ଉଦ୍ଦେଶ୍ୟରେ ଅତିଶୀଘ୍ର ପ୍ୟାରିସକୁ ପ୍ରତ୍ୟାବର୍ତ୍ତନ କଲେ । ନେପୋଲିୟନ ସ୍ପେନ ପରିତ୍ୟାଗ କରିବାପରେ ସ୍ପେନରେ ବିଦ୍ରୋହ ପୂର୍ବାପେକ୍ଷା ଅଧିକ ପ୍ରଚଣ୍ଡାକାର ଧାରଣ କରିଥିଲା ଏବଂ ତାହା ଏକ ବିରାଟ ଜାତୀୟ-ସଂଗ୍ରାମରେ ପରିଣତ ହୋଇଥିଲା । ଏହି ସଂଗ୍ରାମକୁ ପେନିନ୍ସୁଲାର ଯୁଦ୍ଧ (Peninsular War) ବୋଲି ଅଭିହିତ କରାଯାଇଅଛି । ଏହି ଯୁଦ୍ଧର ସୂତ୍ରପାତ ୧୮୦୮ ମସିହାରେ ହୋଇ ୧୮୧୩ ମସିହାରେ ଅବସାନ ଘଟିଥିଲା ।

ମାର୍ଶାଲ୍ ସୋଲ୍ଟଙ୍କ ନେତୃତ୍ୱରେ ଫରାସୀ ସୈନ୍ୟବାହିନୀ ମୁରଙ୍କର ବ୍ରିଟିଶ ସୈନ୍ୟବାହିନୀର ଅନୁଧାବନ କରି ୧୮୦୯ ମସିହା ଜାନୁୟାରୀ ମାସରେ କରୁଣା ସମରରେ ତାକୁ ପରାସ୍ତ କଲେ ଓ ମୁରଙ୍କୁ ହତ୍ୟା କଲେ । ପୁନର୍ବାର ପର୍ତ୍ତୁଗାଲ ଫରାସୀମାନଙ୍କ ଦ୍ୱାରା ଅଧିକୃତ ହେଲା । ଫରାସୀମାନଙ୍କର ଏ ବିଜୟ ମାତ୍ର ଅଳ୍ପକାଳ ସ୍ଥାୟୀ ହୋଇଥିଲା ।

ଯୁଦ୍ଧ ୧୮୦୯ ମସିହା ମେ ମାସ ଆଡ଼କୁ ଭିନ୍ନ ଆକାର ଧାରଣ କରିଥିଲା । ଓ୍ୱେଲିସଲିଙ୍କୁ ଇଂରେଜ ସରକାର ପ୍ରଧାନ ସେନାପତି ରୂପେ ନିଯୁକ୍ତକଲେ । ସେ କାର୍ଯ୍ୟଭାର ଗ୍ରହଣ କଲାମାତ୍ରକେ ସଗୌରବେ ଡୁରୋ (Douro) ଅତିକ୍ରମ କରି ସୋଲ୍ଟଙ୍କ ଅଧୀନରେ ଥିବା ଫରାସୀ ସୈନ୍ୟବାହିନୀକୁ ପର୍ତ୍ତୁଗାଲରୁ ତଡ଼ି ଦେଇଥିଲେ । ତା'ପରେ ସେ ସ୍ପେନୀୟ ସୈନ୍ୟବାହିନୀ ସହିତ ସଂଯୋଗ ସ୍ଥାପନ କରିବା ଅଭିପ୍ରାୟରେ ସ୍ପେନ ଅଭିମୁଖେ ଯାତ୍ରା କରିଥିଲେ ଏବଂ ଦୁଇଦିନିଆ ତାଲଭେରା ସଂଗ୍ରାମ (the Battle of Talavera)ରେ ଦୁଇଟି ଫରାସୀ ସୈନ୍ୟବାହିନୀଙ୍କୁ ପରାସ୍ତ କରିଥିଲେ । ୧୮୦୯ ମସିହାର

ସଫଳ ସଂଗ୍ରାମ ପାଇଁ ୱେଲସଲିଙ୍କୁ ଭାଇକାଉଣ୍ଟ ୱେଲିଙ୍ଗଟନ ଉପାଧିରେ ଭୂଷିତ କରାଯାଇଥିଲା ।

ତୃତୀୟ ଫରାସୀ ସୈନ୍ୟବାହିନୀ ପହଞ୍ଚିବା ମାତ୍ରେ ସେ କାଳବିଳମ୍ବ ନ କରି ପର୍ତ୍ତୁଗାଲକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପର୍ତ୍ତୁଗାଲର ରାଜଧାନୀ ଲିସବନକୁ ଶତ୍ରୁ ଆକ୍ରମଣରୁ ରକ୍ଷାକରିବା ତାଙ୍କର କର୍ତ୍ତବ୍ୟ ବୋଲି ସେ ମନେ କରିଥିଲେ । ତେଣୁ ସେହି ଉଦ୍ଦେଶ୍ୟରେ ଲିସବନ୍ ଚାରିପଟେ ମାଟିର ପ୍ରାଚୀରମାନ ନିର୍ମାଣ କରିଥିଲେ । ଏହି ପ୍ରତିରୋଧକାରୀ ପ୍ରାଚୀରଗୁଡ଼ିକୁ 'ଲାଇନସ୍ ଅଫ ଟରେସ୍ ଭଦ୍ରାସ' (the Lines of Torres Vadras) କୁହାଯାଏ । ୧୮୧୦-୧୧ ଶୀତଋତୁ ସମୟରେ ଏହି ପ୍ରାଚୀରଗୁଡ଼ିକୁ ଫରାସୀ ସୈନ୍ୟବାହିନୀକୁ ଦୂରରେ ରଖି ପାରିଥିଲା । ୱେଲିଙ୍ଗଟନ୍‌ଙ୍କ ଦକ୍ଷତା ଯୋଗୁ ପର୍ତ୍ତୁଗାଲ ଫରାସୀ କବଳରୁ ରକ୍ଷା ପାଇପାରିଥିଲା ।

୧୮୧୧ ମସିହା ବେଳକୁ ତିନିଲକ୍ଷ ଫରାସୀ ସୈନ୍ୟ ସ୍ପେନରେ ସମବେତ ହୋଇ ସମଗ୍ର ସ୍ପେନକୁ ସେମାନଙ୍କର ଅଧିକାରରେ ରଖିଥିଲେ । ୱେଲିଙ୍ଗଟନ୍ ୧୮୧୨ ମସିହା ଜୁଲାଇ ମାସରେ ସାଲମାନ୍‌କା ସଂଗ୍ରାମ (The Battle of Salamanca)ରେ ଜୟଲାଭ କରି ମାଡ୍ରିଡରେ ପହଞ୍ଚିଥିଲେ; କିନ୍ତୁ ସେପ୍‌ଟେମ୍ବର ମାସରେ ବରଗସ (Burgos) ଠାରେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇ ସେ ପୁନର୍ବାର ପର୍ତ୍ତୁଗାଲକୁ ଫେରିଯାଇଥିଲେ । ଇତ୍ୟବସରରେ ନେପୋଲିୟନଙ୍କର ରୁଷିଆ ଅଭିଯାନ ଆରମ୍ଭ ହୋଇଯାଇଥିବାରୁ ବହୁସଂଖ୍ୟକ ଫରାସୀ ସୈନ୍ୟଙ୍କୁ ପେନିନସୁଲରୁ କାଢ଼ି ନିଆଯାଇ ରୁଷିଆ ଉପରେ ଚଢ଼ାଉ କରୁଥିବା ଫରାସୀ ସୈନ୍ୟବାହିନୀରେ ସାମିଲ କରାଯାଇଥିଲା । ଫଳରେ ଦକ୍ଷିଣ ସ୍ପେନ ଓ ପର୍ତ୍ତୁଗାଲ ଫରାସୀ ଆକ୍ରମଣରୁ ଉଦ୍ଧାର ପାଇଯାଇଥିଲେ । ସ୍ପେନୀୟମାନେ ସେମାନଙ୍କର ବିଜୟ ବିଷୟରେ ନିଶ୍ଚିତ ରହି କାଡ଼ିଜ୍ (Cadiz) ଠାରେ ଏକତ୍ରିତ ହୋଇଥିଲେ ଏବଂ ୧୭୯୧ ମସିହା ଫରାସୀ ସମ୍ବିଧାନର ଆଦର୍ଶରେ ୧୮୧୨ ମସିହା ସମ୍ବିଧାନ ପ୍ରସ୍ତୁତ କରିଥିଲେ । ୧୮୧୩ ମସିହାରେ ମୁକ୍ତିସଂଗ୍ରାମ (the War of Liberation) ଚାଲିଥିବାବେଳେ ୱେଲିଙ୍ଗଟନ ରାଜା ଯୋସେଫଙ୍କ ବିରୁଦ୍ଧରେ ଯୁଦ୍ଧ କରି ଭିକ୍ଟୋରିଆ ସମରରେ (The Battle of Victoria) ଜୟଲାଭ କରିଥିଲେ । ଯୋସେଫ ତେଣୁ ନିରାଶ ହୋଇ ସ୍ପେନ ଛାଡ଼ି ଚାଲିଯାଇଥିଲେ । ଏକଥା ସ୍ୱୀକାର କରିବାକୁ ହେବ ଯେ ସ୍ପେନର ଜାତୀୟ ଆନ୍ଦୋଳନ ଇଂଲଣ୍ଡର ସାହାଯ୍ୟ ଲାଭକରି ଦେଶରୁ ଫରାସୀମାନଙ୍କୁ ତଡ଼ିଦେବାକୁ ସକ୍ଷମ ହୋଇଥିଲା ।

ସ୍ପେନରେ ଯେଉଁ ଜାତୀୟ ଆନ୍ଦୋଳନ ପ୍ରଥମେ ଦେଖାଦେଇଥିଲା, ତାହା କ୍ରମେ ଇଉରୋପର ଅନ୍ୟ ଦେଶମାନଙ୍କୁ ବ୍ୟାପି ଶେଷରେ ନେପୋଲିୟନଙ୍କ ସାମ୍ରାଜ୍ୟକୁ ଛାରଖାର କରିଦେଇଥିଲା । ସ୍ପେନର ଜାତୀୟ ସଂଗ୍ରାମ ଇଉରୋପର ଅଧିବାସୀମାନଙ୍କୁ ଜାତୀୟ ପ୍ରତିରୋଧ ଯେ କପରି ଶକ୍ତିଶାଳୀ ଓ ଫଳପ୍ରଦ ତାହା ଶିକ୍ଷାଦେବା ସଙ୍ଗେ ସଙ୍ଗେ ଜର୍ମାନୀର

ସେହି ଜାତୀୟ ପ୍ରତିରୋଧକୁ ଉଦ୍ଦୀପିତ କରିଥିଲା । ଅବଲମ୍ବେ ଏହି ଜାତୀୟ ସଂଗ୍ରାମ ୧୮୦୯ ମସିହା ଅଷ୍ଟ୍ରୀୟ ସମରର ପଥପ୍ରଦର୍ଶକ ହୋଇଥିଲା । ନେପୋଲିୟନ ସେଣ୍ଟ ହେଲେନା (St. Helena)ରେ ନିର୍ବାସିତର ଜୀବନ ଯାପନ କଲାବେଳେ ପରେ ମନ୍ତବ୍ୟ କରିଥିଲେ, 'ଏଇ ସ୍ପେନୀୟ ନାଲି ଘା ହିଁ ମୋର ସର୍ବନାଶ କରିଛି ।' ('It was the Spanish ulcer that ruined me,' remarked Napoleon) ଏହି ମନ୍ତବ୍ୟର ଯଥାର୍ଥତା ରହିଛି, କାରଣ ଯଦି କୌଣସି ଲୋକକୁ ନାଲି ଘା ରୋଗ ହୁଏ, ସେ ଲୋକ ଶୀଘ୍ର ମରେନାହିଁ; କିନ୍ତୁ ତାହାର ଶରୀର ଦିନକୁଦିନ କ୍ଷୀଣ ହୋଇଯାଏ ଏବଂ ଅବଶେଷରେ ସେ ମୃତ୍ୟୁମୁଖରେ ପଡ଼େ । ସେହିପରି ସ୍ପେନର ଜାତୀୟ ସଂଗ୍ରାମ ବହୁବର୍ଷ ଧରି ଚାଲିବାରୁ ଫ୍ରାନ୍ସର ବହୁ ଧନ ଓ ଜୀବନ ନଷ୍ଟହେବା ସଙ୍ଗେ ସଙ୍ଗେ ଇଉରୋପରେ ତାର ଶକ୍ତି କ୍ରମେ ଦୁର୍ବଳ ହୋଇପଡ଼ିଲା । ସୁତରାଂ ଏହି ଜାତୀୟ ସଂଗ୍ରାମ ଫ୍ରାନ୍ସର ତଥା ନେପୋଲିୟନଙ୍କର ପତନ ପାଇଁ ରାସ୍ତା ପ୍ରସ୍ତୁତ କରିଥିଲା ।

## ଅଷ୍ଟ୍ରିୟାର ବିପ୍ଳବ (The Revolt of Austria)

ସ୍ପେନର ଜାତୀୟ ଆନ୍ଦୋଳନଦ୍ୱାରା ଉତ୍ସାହିତ ହୋଇ ଅଷ୍ଟ୍ରିୟା ଫ୍ରାନ୍ସ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ଜର୍ମାନମାନଙ୍କ ମଧ୍ୟରେ ଏକ ଜାତୀୟ ଜାଗରଣ ଆଣିବାକୁ ବିଶେଷ ଉଦ୍ୟମ କରିଥିଲା । ଅଷ୍ଟ୍ରିୟା ସମ୍ରାଟଙ୍କର ସୁଯୋଗ୍ୟ ପୁତ୍ର ଆର୍ଚଡ୍ୟୁକ ଚାର୍ଲସ (Archduke Charles)ଙ୍କ ମନରେ ଭୁଲ ଧାରଣା ଜନ୍ମିଥିଲା ଯେ, ଜର୍ମାନମାନେ ଜାତୀୟ ଆନ୍ଦୋଳନ ପାଇଁ ପ୍ରସ୍ତୁତ ଅଛନ୍ତି । ତେଣୁ ସେ ସ୍ପେନୀୟ ଜାତୀୟ ସଂଗ୍ରାମରେ ନେପୋଲିୟନ ଜଡ଼ିତ ହୋଇ ପଡ଼ିଥିବାର ସୁଯୋଗ ନେଇ ଜର୍ମାନମାନଙ୍କୁ ଫ୍ରାନ୍ସ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ଆହ୍ୱାନ କରିଥିଲେ । ୧୮୦୯ ମସିହା ଅଗଷ୍ଟ ୬ ତାରିଖରେ ସେ ଅଷ୍ଟ୍ରିୟାର ସୈନ୍ୟବାହିନୀକୁ ଏକ ଘୋଷଣାପତ୍ରରେ ଆହ୍ୱାନ ଦେଇ କହିଥିଲେ, 'ଇଉରୋପର ମୁକ୍ତି ତମ ପତାକା ତଳେ ଆଶ୍ରୟ ଗ୍ରହିଛି ।' ('The freedom of Europe has sought refuge beneath your banners.') ଅଷ୍ଟ୍ରିୟାର ସୈନ୍ୟବାହିନୀ ଏଥିରେ ଉତ୍ସାହିତ ହୋଇ ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ କରିଥିଲା ।

ଚାର୍ଲସ ଜର୍ମାନମାନଙ୍କୁ ସଂଗଠିତ କରି ଫ୍ରାନ୍ସ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିବାପାଇଁ ଯେଉଁ ଉଦ୍ୟମ କରିଥିଲେ ତାହା ନିଷ୍ଫଳ ହୋଇଥିଲା । ଜର୍ମାନମାନେ ଫ୍ରାନ୍ସ ବିରୁଦ୍ଧରେ ବିଦ୍ରୋହ କଲେନାହିଁ । ପ୍ରୁସିୟାର ରାଜା ମଧ୍ୟ ରୁଷିଆର ଜାରଙ୍କ ଭୟରେ ଫ୍ରାନ୍ସ ବିରୁଦ୍ଧରେ କୌଣସି ଆନ୍ଦୋଳନ କରିବାକୁ ଚାହାଁଲେ ନାହିଁ । ଅଷ୍ଟ୍ରିୟା ତେଣୁ ଏକାକୀ ଫ୍ରାନ୍ସ ବିରୁଦ୍ଧରେ ଖଡ଼୍ଗ ଉତ୍ତୋଳନ କରିଥିଲା । ଫ୍ରାନ୍ସ ବିରୁଦ୍ଧରେ ଏକାକୀ ଲଢ଼ି ଅଷ୍ଟ୍ରିୟମାନେ ଓ୍ୱାଗ୍ରାମ (Wagram) ଠାରେ ୧୮୦୯ ମସିହାରେ ପରାସ୍ତ ହୋଇଥିଲେ ଏବଂ ଫ୍ରାନ୍ସ ସହିତ ସୋନବ୍ରୁନ ସନ୍ଧି (Treaty of Schonbrunn)

ରେ ସ୍ୱାକ୍ଷର କରିଥିଲେ । ସନ୍ଧିର ସର୍ତ୍ତ ଅନୁସାରେ ଅଷ୍ଟ୍ରିୟା ଫ୍ରାନ୍ସକୁ ପ୍ରଚୁର କ୍ଷତିପୂରଣ ଦେବା ସଙ୍ଗେ ସଙ୍ଗେ କେତେକ ଅଞ୍ଚଳ ଛାଡ଼ି ଦେଇଥିଲା । ତା'ଛଡ଼ା ଅଷ୍ଟ୍ରିୟାର ସମ୍ରାଟ ତାଙ୍କର ଦୁହିତା ମେରୀ ଲୁଇସ (Mary Louise)ଙ୍କୁ ନେପୋଲିୟନଙ୍କ ସହିତ ବିବାହ ଦେବାକୁ ବାଧ୍ୟ ହୋଇଥିଲେ ।

ଫ୍ରାନ୍ସ ପରି ଏକ ବିଶାଳ ସାମ୍ରାଜ୍ୟର ଉତ୍ତରାଧିକାରୀ ହେବାପାଇଁ ଯଦି କୌଣସି ପୁତ୍ରସନ୍ତାନ ନ ଆସନ୍ତି ତାହାହେଲେ ସେ ସାମ୍ରାଜ୍ୟର ସ୍ଥିରହିବା ସମ୍ଭାବନା କ୍ଷୀଣ ହୋଇପଡ଼େ । ନେପୋଲିୟନଙ୍କ ପତ୍ନୀ ଯୋସେଫାଇନ (Josephine)ଙ୍କର କୌଣସି ସନ୍ତାନସନ୍ତତି ନ ହେବାରୁ ନେପୋଲିୟନ ବଡ଼ ଚିନ୍ତିତ ଥିଲେ । ସେ ବେଶ୍ ଅନୁଭବ କରିପାରିଥିଲେ ଯେ ଜଣେ ଉତ୍ତରାଧିକାରୀ ପାଇବାପାଇଁ ଯୋସେଫାଇନଙ୍କୁ ଛାଡ଼ପତ୍ର ଦେବାକୁ ହେବ ଏବଂ ଅନ୍ୟ ଏକ ବାଳିକାକୁ ବିବାହ କରିବାକୁ ପଡ଼ିବ । ଇଉରୋପର ଏକ ପ୍ରାଚୀନତମ ରାଜବଂଶରୁ ଗୋଟିଏ ରାଜକନ୍ୟାର ପାଣିଗ୍ରହଣ କରିବାରେ ଯେଉଁ ତୃପ୍ତି ମିଳେ ତାହା ନେପୋଲିୟନଙ୍କ ପରି ଜଣେ ଦୁଃସାହସିକ ବ୍ୟକ୍ତିଙ୍କୁ ବିଶେଷ ଆକର୍ଷଣ କରିଥିଲା । ତେଣୁ ଅଷ୍ଟ୍ରିୟାକୁ ଯୁଦ୍ଧରେ ପରାସ୍ତ କଲାପରେ ଅଷ୍ଟ୍ରିୟାର ପ୍ରାଚୀନତମ ହାପସବର୍ଗ ରାଜବଂଶର ସମ୍ରାଟଙ୍କ କନ୍ୟା ମେରୀ ଲୁଇଙ୍କୁ ବିବାହ କରି ସନ୍ତୋଷ ପ୍ରକାଶ କରିଥିଲେ । ୧୮୧୧ ମସିହାରେ ନେପୋଲିୟନଙ୍କର ଗୋଟିଏ ପୁତ୍ର ମେରୀଲୁଇଙ୍କ ଗର୍ଭରୁ ଜାତହେଲା । ମନେହେଲା ଯେପରି ନେପୋଲିୟନଙ୍କର ବହୁଦିନର ଅଭିଳାଷ ପୂରଣ ହୋଇଛି; କିନ୍ତୁ ଅନ୍ୟ ଦିଗରେ ଇଉରୋପର ଅଧିକାଂଶ ଅଞ୍ଚଳରେ ତାଙ୍କ ବିରୁଦ୍ଧରେ ଅସନ୍ତୋଷ ଦେଖା ଦେଇଥିଲା । ସେ ତାହାର କୌଣସି ପ୍ରତିକାର ନ କରି ତାକୁ ସଙ୍ଗୀନ ମୂନରେ ଦବାଇ ଦେବାପାଇଁ ଉଦ୍ୟମ କରିବାରୁ ତାଙ୍କୁ ଜାତୀୟ ଆନ୍ଦୋଳନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହି ଆନ୍ଦୋଳନ ଫଳରେ ତାଙ୍କର ଓ ତାଙ୍କ ସାମ୍ରାଜ୍ୟର ପତନ ଘଟିଥିଲା ।

## ନେପୋଲିୟନଙ୍କର ରୁଷିଆ ବିରୁଦ୍ଧରେ ୧୮୧୨ ମସିହାରେ ଅଭିଯାନ

### ( Napoleon's Campaign against Russia in 1812 )

ନେପୋଲିୟନଙ୍କର ରୁଷ ଅଭିଯାନ ତାଙ୍କ ପତନର ପଥ ସୁଗମ କରି ଦେଇଥିଲା । ୧୮୦୭ ମସିହା ଟିଲ୍‌ସିଟ୍ ସନ୍ଧି ପରଠାରୁ ରୁଷ-ଫରାସୀ ସମ୍ପର୍କ କ୍ରମଶଃ ତିକ୍ତ ହୋଇ ଉଠିଥିଲା । ଜାର୍ ଆଲେକ୍‌ଜାଣ୍ଡାର ନେପୋଲିୟନଙ୍କର ଗ୍ରାଣ୍ଡ ଡଚି ଅଫ୍ ଓ୍ୱାର୍‌ସୋ ( Grand Duchy of Warsaw )ର ଗଠନକୁ ସନ୍ଦେହ ଚକ୍ଷୁରେ ଦେଖିଥିଲେ ଏବଂ ଏହା ପୋଲାଣ୍ଡର ପୁନରୁଦ୍ଧାର ଦିଗରେ ଏକ ପଦକ୍ଷେପ ବୋଲି ମନେକରିଥିଲେ । ଫରାସୀ ସୈନ୍ୟମାନଙ୍କୁ ଓ୍ୱାରସୋରେ ରଖାଯିବାରୁ ରୁଷିଆ ପ୍ରତି ବିପଦର ଆଶଙ୍କା ରହିଲା ।

ରୁଷ-ଅଭିଯାନ ପାଇଁ ତାଙ୍କୁ ୬,୦୦,୦୦୦ରୁ ଊର୍ଦ୍ଧ୍ୱ ଏକ ବିରାଟ ସୈନ୍ୟ ବାହିନୀ ପ୍ରସ୍ତୁତ କରିବାକୁ ପଡ଼ିଥିଲା ।

ନେପୋଲିୟନ୍ ରୁଷିଆକୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ୧୮୧୨ ମସିହାରେ ବିଖ୍ୟାତ ରୁଷ-ଅଭିଯାନ ଆରମ୍ଭ କରିଥିଲେ । ତାଙ୍କୁ ଏ ଅଭିଯାନରେ ସାହାଯ୍ୟ କରିବାପାଇଁ ଅଷ୍ଟ୍ରିୟା ଓ ପ୍ରୁସିୟାକୁ ବାଧ୍ୟ କରାଯାଇଥିଲା । ନେପୋଲିୟନ୍ ୧୮୧୨ ମସିହା ଜୁନମାସରେ ଏହି ବିଶାଳ ସୈନ୍ୟବାହିନୀକୁ ପରିଚାଳିତ କରି ରୁଷିଆର ସୀମା ଅତିକ୍ରମ କରିଥିଲେ । ସେ ଭାବିଥିଲେ ଯେ ଫ୍ରିଡ଼ଲଣ୍ଡ ବିଜୟ ପରି ସେ ରୁଷିଆ ବିରୁଦ୍ଧରେ ଆଉ ଏକ ଚମତ୍କାର ବିଜୟ ହାସଲ କରି ଜାର ଆଲେକଜାଣ୍ଡାରଙ୍କୁ ଅବିଳମ୍ବେ ସନ୍ଧିକରିବା ପାଇଁ ବାଧ୍ୟ କରିବେ । ଏହି ଉଦ୍ଦେଶ୍ୟ ନେଇ ସେ ମସ୍କୋ ଅଭିମୁଖରେ ଯାତ୍ରାକରିଥିଲେ । ସେ ଆଶାକରିଥିଲେ ଯେ ଆଠଶହ ମାଇଲ ରାସ୍ତା ଅତିକ୍ରମ କରି ମସ୍କୋରେ ପହଞ୍ଚିବା ପୂର୍ବରୁ ତାଙ୍କୁ ରୁଷ ସୈନ୍ୟ-ବାହିନୀର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିବ; କିନ୍ତୁ ରୁଷସୈନ୍ୟବାହିନୀ ନେପୋଲିୟନଙ୍କ ସହିତ ମୁହାଁ ମୁହିଁ ଯୁଦ୍ଧରେ ବ୍ୟାପୃତ ନ ହୋଇ ଦେଶର ଆଭ୍ୟନ୍ତରୀଣ ଅଞ୍ଚଳକୁ ହଟିଯିବା ସଙ୍ଗେ ସଙ୍ଗେ ଅଗ୍ରଗାମୀ ଫରାସୀ ସୈନ୍ୟବାହିନୀର ସମ୍ମୁଖଭାଗରେ ଅବସ୍ଥିତ ଅଞ୍ଚଳଗୁଡ଼ିକୁ ପୋଡ଼ି ଛାରଖାର କରି ଦେଇଥିଲେ । ନେପୋଲିୟନ୍ ମସ୍କୋରେ ପଦାର୍ପଣ କରିବା ପୂର୍ବରୁ ରୁଷ ସୈନ୍ୟବାହିନୀ ୧୮୧୨ ମସିହା ସେପ୍ଟେମ୍ବର ମାସରେ ମସ୍କୋ ନିକଟବର୍ତ୍ତୀ ବୋରୋଡ଼ିନୋ ( Borodino ) ଠାରେ ମାତ୍ର ଥରେ ଫରାସୀ ସୈନ୍ୟବାହିନୀର ଦୃଢ଼ ପ୍ରତିରୋଧ କରିଥିଲେ । କିନ୍ତୁ ନେପୋଲିୟନ୍ ସେ ପ୍ରତିରୋଧକୁ ଭାଙ୍ଗି ଦେଇ ମାତ୍ର ଏକ ସପ୍ତାହରେ ମସ୍କୋରେ ପ୍ରବେଶ କରିଥିଲେ । ସେଠାରେ ପହଞ୍ଚି ସେ ଦେଖିଲେ ଯେ ସେଠାକାର ଲୋକେ ସହରର ଚାରିପଟେ ନିଆଁ ଲଗାଇଦେଇ ଘରଦ୍ୱାର ଛାଡ଼ି ପଳାଇ ଯାଇଛନ୍ତି । ମସ୍କୋରେ ଅଧିକାଂଶ ଅଞ୍ଚଳ ପୋଡ଼ି ଛାରଖାର ହୋଇଯାଇଥିବାରୁ ସହରଟି ବସବାସ ପାଇଁ କିଛିଦିନ ପାଇଁ ଅନୁପଯୁକ୍ତ ଥିଲା । ନେପୋଲିୟନ୍ ଏକମାସ ମୂଲ୍ୟବାନ ସମୟ ସେଠାରେ ଅତିବାହିତ କରି ଏକ ମସ୍ତବଡ଼ ଭୁଲ କରିଥିଲେ । ସେ ଆଶା କରିଥିଲେ ଯେ ରାଜଧାନୀ ମସ୍କୋ ହରାଇଲା ପରେ ଆଲେକଜାଣ୍ଡାର ଆତ୍ମସମର୍ପଣ କରିବାକୁ ବାଧ୍ୟ ହେବେ । ବାସ୍ତବରେ ସେହି ଆଶାନେଇ ନେପୋଲିୟନ ଧ୍ୱଂସପ୍ରାପ୍ତ ମସ୍କୋ ସହରରେ ଅକ୍ଟୋବର ମଧ୍ୟଭାଗ ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ, କିନ୍ତୁ ତାଙ୍କର ଆଶା ପୂରଣ ହୋଇ ନ ଥିଲା । ଆଲେକଜାଣ୍ଡର ଆତ୍ମସମର୍ପଣ ନ କରିବା ପାଇଁ ଅଟଳ ରହିଲେ । ନେପୋଲିୟନ ବୁଝିପାରିନଥିଲେ ଯେ ତାଙ୍କର ସଂଗ୍ରାମ ରାଜାଙ୍କ ବିରୁଦ୍ଧରେ ନୁହେଁ, ତାହା ସମଗ୍ର ଜାତି ବିରୁଦ୍ଧରେ । ସେ ଯେତେବେଳେ ଦେଖିଲେ ଯେ ଜାର୍ ଆଲେକଜାଣ୍ଡାର ପରାଜୟ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ଏବଂ ରୁଷିଆର ସୈନ୍ୟବାହିନୀ ତାଙ୍କ ଆୟତ୍ତର ବହିର୍ଭୂତ, ସେତେବେଳେ ସେ ଅଗତ୍ୟା ବାଧ୍ୟହୋଇ ନିଜର ସୈନ୍ୟବାହିନୀକୁ ଫ୍ରାନ୍ସକୁ ଫେରିଯିବା ପାଇଁ ଆଦେଶ ଦେଇଥିଲେ । ଅକ୍ଟୋବର ମଧ୍ୟଭାଗ ପର୍ଯ୍ୟନ୍ତ ମସ୍କୋରେ ନରହି ନେପୋଲିୟନ୍ ଯଦି ଅବିଳମ୍ବେ ଫ୍ରାନ୍ସକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତେ, ତାହାହେଲେ ସେ ରୁଷିଆର ପ୍ରବଳ

ଶୀତରୁ ଉଦ୍ଧାର ପାଇ ପାରିଥାନ୍ତେ । ବୃଥା କାଳକ୍ଷେପଣ ନିମନ୍ତେ ଯୋଗୁ ତାଙ୍କ ପକ୍ଷରେ ରୁଷିଆର ଶୀତକୁ ଏଡ଼ାଇଦେବା ସମ୍ଭବପର ନଥିଲା ।

ନେପୋଲିୟନ୍ ତାଙ୍କ ସୈନ୍ୟବାହିନୀ ସହିତ ଅକ୍ଟୋବର ମଧ୍ୟଭାଗରେ ରୁଷିଆରୁ ଅପସରି ଯିବା ଆରମ୍ଭକଲେ । ସେ ଚାହିଁଲେ ଯେ ଯେଉଁ ରାସ୍ତାଦେଇ ସେ ମସ୍କୋକୁ ଆସିଥିଲେ, ସେହି ରାସ୍ତାଦେଇ ଫ୍ରାନ୍ସକୁ ନ ଫେରି ଅନ୍ୟ ଏକ ରାସ୍ତାଦେଇ ଫ୍ରାନ୍ସକୁ ଫେରିଯିବେ । କାରଣ ସେ ଜାଣିଥିଲେ ଯେ ଆସିଥିବା ରାସ୍ତାଦେଇ ଫେରିଯିବାକୁ ହେଲେ ତାଙ୍କୁ ବିଧ୍ୱସ୍ତ ଅଞ୍ଚଳଗୁଡ଼ିକ ଅତିକ୍ରମ କରିବାକୁ ପଡ଼ିବ ଓ ଖାଦ୍ୟ ସାମଗ୍ରୀ ଅଭାବରେ ତାଙ୍କର ଓ ତାଙ୍କର ସୈନ୍ୟମାନଙ୍କର ଅନାହାରରେ ମୃତ୍ୟୁ ମୁଖରେ ପଡ଼ିବାର ବିଶେଷ ସମ୍ଭାବନା ଅଛି । ତେଣୁ ସେ ଯଦି ଅନ୍ୟରାସ୍ତାଦେଇ ଫେରିଯାଆନ୍ତି ତାହାହେଲେ ସେ ଆବଶ୍ୟକ ଖାଦ୍ୟ ସାମଗ୍ରୀ ଯୋଗାଡ଼ କରିପାରିବେ ଓ ସେ ତାଙ୍କର ଅବଶିଷ୍ଟ ସୈନ୍ୟବାହିନୀ ସହିତ ନିର୍ବିଘ୍ନରେ ନିଜ ଦେଶକୁ ଫେରିଯାଇ ପାରିବେ; କିନ୍ତୁ ରୁଷବାସୀ ତାଙ୍କର ଅନ୍ୟ ରାସ୍ତାଦେଇ ଫେରିବା ଉଦ୍ୟମକୁ ବ୍ୟର୍ଥ କରିଦେବା ସଙ୍ଗେ ସଙ୍ଗେ ସେ ଯେଉଁ ରାସ୍ତାଦେଇ ମସ୍କୋକୁ ଆସିଥିଲେ, ସେହି ରାସ୍ତାଦେଇ ତାଙ୍କର ଅବଶିଷ୍ଟ ଏକଲକ୍ଷ ସୈନ୍ୟ ସହିତ ଫେରିଯିବାକୁ ତାଙ୍କୁ ବାଧ୍ୟ କରିଥିଲେ । ଫଳରେ ଫରାସୀ ସୈନ୍ୟମାନେ ଖାଦ୍ୟାଭାବରୁ ବହୁଦିନ ଅନାହାରରେ ରହି ପଦଯାତ୍ରା କରୁଥିବାରୁ ଅତିଶୟ କ୍ଳାନ୍ତ ହୋଇପଡ଼ିଥିଲେ । ତା'ଛଡ଼ା ରୁଷିଆରେ ପ୍ରବଳ ଶୀତ ପଡ଼ୁଥିବାରୁ ଓ ରୁଷ ଗରିଲା ଦଳଗୁଡ଼ିକ ପଛପଟୁ ଫରାସୀ ସୈନ୍ୟମାନଙ୍କୁ ଘନ ଘନ ଆକ୍ରମଣ କରୁଥିବାରୁ ବହୁ ଫରାସୀ ସୈନ୍ୟ ପ୍ରାଣ ହରାଇଥିଲେ । ଅବଶେଷରେ ନେପୋଲିୟନଙ୍କର ସୈନ୍ୟମାନେ ଯେତେବେଳେ ନିମେନ (Nieman) ନଦୀ ପାର ହେଲେ, ସେତେବେଳେ ଦେଖାଗଲା ଯେ ରୁଷିଆକୁ ଅବନତ କରାଇବା ପାଇଁ ପ୍ରସ୍ତୁତ କରାଯାଇଥିବା ବିରାଟ ସୈନ୍ୟବାହିନୀରୁ ମୋଟେ ୧୦,୦୦୦ ସୈନ୍ୟ ଫ୍ରାନ୍ସକୁ ଫେରୁଛନ୍ତି । ନେପୋଲିୟନଙ୍କର ଏହି ମୁଷ୍ଟିମେୟ ସୈନ୍ୟଙ୍କୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ କିପରି ଏକ ବିରାଟ ସୈନ୍ୟବାହିନୀ ମାତ୍ର ଗୋଟିଏ ଅଭିଯାନ ଫଳରେ ଧ୍ୱଂସ ପାଇଗଲା । ସୁତରାଂ ରୁଷିଆ ନେପୋଲିୟନଙ୍କ ସାମରିକ ଗୌରବରେ ସର୍ବନାଶ ଘଟାଇଲା । ଯଥାର୍ଥରେ କୁହାଯାଇଛି ଯେ ନେପୋଲିୟନଙ୍କର ଐଶ୍ୱର୍ଯ୍ୟ ତାଙ୍କର ବିରାଟ ସୈନ୍ୟବାହିନୀ ସହିତ ରୁଷିଆର ବରଫ ରାଶିରେ ସମାଧି ପାଇଥିଲା । ('Napolion's fortunes were buried with his grand army in the snows of Russia')

## ମୁକ୍ତି ସଂଗ୍ରାମ
### (The war of Liberation)

ନେପୋଲିୟନଙ୍କ ରୁଷ-ଅଭିଯାନର ବିଫଳତା ଇଉରୋପପାଇଁ ଗୁରୁତ୍ୱପୂର୍ଣ୍ଣ ଥିଲା ; ନେପୋଲିୟନଙ୍କର ଶତ୍ରୁମାନଙ୍କୁ ଏ ଘଟଣା ବିଶେଷ ପ୍ରେରଣା ଦେଇଥିଲା ।

ରୁଷିଆରେ ଘଟିଥିବା କେତେକ ଘଟଣା ସମ୍ବାଦ ୧୮୧୨ ମସିହାରେ ମଧ୍ୟ ଇଉରୋପରେ ପହଞ୍ଚିପାରିଥିଲା; କିନ୍ତୁ ଯେତେବେଳେ ବିରାଟ ସୈନ୍ୟବାହିନୀର ମାତ୍ର ଅଳ୍ପ କେତେକ ସୈନ୍ୟ ଜର୍ମାନୀ ଦେଇ ଯାତ୍ରାକଲେ, ସେତେବେଳେ ଲୋକମାନେ ନେପୋଲିୟନଙ୍କର ରୁଷ ଅଭିଯାନରେ ଯେଉଁ ଶୋଚନୀୟ ପରାଜୟ ଓ ଅପୂରଣୀୟ କ୍ଷତି ଘଟିଛି, ତାହା ବେଶ୍ ହୃଦୟଙ୍ଗମ କରିପାରିଥିଲେ । ଲୋକମାନଙ୍କର ଆଗରୁ ଯେଉଁ ଧାରଣା ଥିଲା ଯେ ନେପୋଲିୟନ ଜଣେ ଅଲୌକିକ ଶକ୍ତିସମ୍ପନ୍ନ ବ୍ୟକ୍ତି ଏବଂ ତାଙ୍କୁ ପରାସ୍ତ କରିବାର କାହାର ଶକ୍ତି ନାହିଁ, ସେ ରୁଷିଆରେ ସମ୍ପୂର୍ଣ୍ଣ ପରାଜିତ ହେବାପରେ ସେ ଧାରଣା ସେମାନଙ୍କର ଆଉ ରହିଲା-ନାହିଁ । ତେଣୁ ଜର୍ମାନୀର ପ୍ରତ୍ୟେକ ଲୋକ ମନେକଲେ ଯେ ନେପୋଲିୟନ୍ ଜଣେ ଅତିମାନବ ନୁହନ୍ତି ଏବଂ ସେ ଯଦି ରୁଷିଆରେ ପରାସ୍ତ ହେଲେ, କାହିଁକି ଜର୍ମାନୀରେ ପରାସ୍ତ ନ ହେବେ ? ନେପୋଲିୟନ୍ ରୁଷିଆରେ ପରାସ୍ତ ହେବା ପରେ ଇଉରୋପର ଅନ୍ୟାନ୍ୟ ରାଜ୍ୟମାନେ ତାଙ୍କ କର୍ତ୍ତୃତ୍ୱ ସ୍ୱୀକାର କରିବାକୁ ଆଉ ରାଜିହେଲେନାହିଁ । କେବଳ ଇଉରୋପ ଉପରେ ତାଙ୍କର କ୍ଷମତା ବଜାୟ ରଖିବା ପାଇଁ ତାଙ୍କୁ ସଂଗ୍ରାମ କରିବାକୁ ବାଧ୍ୟ କରାଯାଇ-ଥିଲା । ସ୍ପେନ ଓ ରୁଷିଆରେ ନେପୋଲିୟନଙ୍କ ବିରୁଦ୍ଧରେ ଯେଉଁ ଜାତୀୟ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତାହା କ୍ରମେ ଜର୍ମାନୀର ଚତୁର୍ଦ୍ଦିଗକୁ ବାଡ଼ବାଗ୍ନି ପରି ବ୍ୟାପିଯାଇଥିଲା । ଇଉରୋପବାସୀ ବର୍ତ୍ତମାନ ମୁକ୍ତି ସଂଗ୍ରାମ ( War of liberation ) ପାଇଁ ପ୍ରସ୍ତୁତ ହୋଇଯାଇଥିଲେ ।

ରୁଷ-ଅଭିଯାନର ବିଫଳତା ସାଙ୍ଗକୁ ସ୍ପେନରେ ଫରାସୀମାନଙ୍କର ଯେଉଁ ବିପର୍ଯ୍ୟୟ ଘଟିଲା, ତାହା ନେପୋଲିୟନଙ୍କର ବୈରୀମାନଙ୍କ ମଧ୍ୟରେ ମୁକ୍ତିର ଆଶା ସଞ୍ଚାର କରିଥିଲା ଏବଂ ସେମାନଙ୍କର ଅତ୍ୟାଚାରୀ ନେପୋଲିୟନଙ୍କ ଉପରେ ଆକ୍ରମଣ କରିବା ପାଇଁ ସେମାନଙ୍କୁ ପ୍ରେରଣା ଦେଇଥିଲା । ପ୍ରୁସିୟା ବେଶ୍ ଅନୁଭବ କରିପାରିଥିଲା ଯେ ତାହାର ପ୍ରତିଶୋଧ ନେବାର ସମୟ ଆସିଛି । ପ୍ରୁସିୟାର ରାଜା ତୃତୀୟ ଫ୍ରେଡ଼ରିକ୍ ଉଇଲିୟମ (Frederic William III) ଭୀରୁ ଓ ଅବ୍ୟବସ୍ଥିତ ଚିତ୍ତ ହେଲେ ମଧ୍ୟ ପ୍ରୁସିୟାବାସୀଙ୍କର ଉତ୍ସାହ ଓ ଚାପଯୋଗୁ ସେ ରୁଷିଆ ସହିତ ମେଣ୍ଟ ବାନ୍ଧିବାକୁ ରାଜି ହୋଇଗଲେ । ସୁତରାଂ ଇଉରୋପର ଭାଗ୍ୟ ପରିବର୍ତ୍ତନରେ ପ୍ରୁସିୟା ଏକ ନିଷ୍ପତ୍ତିମୂଳକ ଭୂମିକା ଗ୍ରହଣ କରିଥିଲା ।

ପ୍ରୁସିୟାର ରାଜା ୧୮୧୩ ମସିହା ଜାନୁୟାରୀ ମାସରେ ଜାର ଆଲେକ୍‌ଜାଣ୍ଡାରଙ୍କ ସହିତ କାଲିସ୍ ଚୁକ୍ତି (the Treaty of Kalisch) ସ୍ୱାକ୍ଷର କରିଥିଲେ । ଚୁକ୍ତିର ସର୍ତ୍ତ ଅନୁଯାୟୀ ଦୁଇ ରାଜାଯାକ କଥା ଦେଲେ ଯେ ସେମାନେ ନେପୋଲିୟନଙ୍କ ସହିତ ପୃଥକ୍ ପୃଥକ୍ ସନ୍ଧି କରିବେନାହିଁ । ଜାର ପ୍ରତିଶ୍ରୁତି ଦେଲେ ଯେ ପ୍ରୁସିୟା ତାର ପ୍ରାଚୀନ ସୀମା ଫେରିପାଇବ ଏବଂ ଜର୍ମାନୀ ସ୍ୱାଧୀନ ହେବ । ପ୍ରୁସିୟା ଏ ଚୁକ୍ତିରେ ରୁଷିଆ ସହିତ ଆବଦ୍ଧ ହେଲା । ପରେ ୧୮୧୩ ମସିହା ମାର୍ଚ୍ଚ ମାସରେ ନେପୋଲିୟନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଏହି ଚୁକ୍ତି ଇଉରୋପର ଶେଷ ଶକ୍ତିମେଣ୍ଟ (the Last Coalition) ର ସୂତ୍ରପାତ କଲା । ଏହି ମେଣ୍ଟରେ ସ୍ୱିଡେନ ଓ ଇଂଲଣ୍ଡ ଯୋଗଦେଲେ; କିନ୍ତୁ ସ୍ୱିଡେନ

ନେପୋଲିୟନଙ୍କ ବିରୁଦ୍ଧରେ ବିଶେଷ କିଛି ସାହାଯ୍ୟ ଦେଇ ନ ଥିଲା । ଇଂଲଣ୍ଡର ସାମରିକ କାର୍ଯ୍ୟାନୁଷ୍ଠାନ କେବଳ ସ୍ପେନରେ ସୀମାବଦ୍ଧ ହୋଇଥିଲା । ଅଷ୍ଟ୍ରିୟା ମଧ୍ୟ ମେଟାରନିକ୍ ( Metternich)ଙ୍କ ପରିଚାଳନାରେ କିଛି ଦିନ ପ୍ରତୀକ୍ଷା-ଖେଳ ଖେଳୁଥିଲା । ସ୍ପେନରେ ଓ୍ୱେଲିଙ୍ଗଟନଙ୍କର ଭିଟୋରିୟା (Vittoria) ସଂଗ୍ରାମରେ ବିଜୟ ସମ୍ବାଦ ପାଇଲା ମାତେ ଅଷ୍ଟ୍ରିୟା କାଳବିଳମ୍ବ ନ କରି ୧୮୧୩ ମସିହା ଅଗଷ୍ଟ ୧୨ ତାରିଖରେ ଶେଷ ଶକ୍ତିମେଣ୍ଟରେ ଯୋଗଦେଲା ।

ରୁଷ-ଅଭିଯାନରୁ ନିସ୍ୱ ହୋଇ ଜର୍ମାନୀ ବାଟଦେଇ ଫ୍ରାନ୍ସକୁ ଫେରିଲାବେଳେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ଉଦ୍ୟମ ଚାଲିଥିବାର ନେପୋଲିୟନ ସୂଚନା ପାଇଥିଲେ । ତେଣୁ ସେ ଆଉ ବିଳମ୍ବ ନ କରି ଜର୍ମାନୀ ବିରୁଦ୍ଧରେ ପ୍ରତିଶୋଧ ନେବାପାଇଁ ଏକ ନୂତନ ସୈନ୍ୟବାହିନୀ ଗଠନ କରିବାକୁ ଫ୍ରାନ୍ସକୁ ଧାଇଁଯାଇଥିଲେ । ଅଳ୍ପ କେତେ ମାସ ମଧ୍ୟରେ ଦୁଇଲକ୍ଷରୁ ଊର୍ଦ୍ଧ୍ୱ ଏକ ସୈନ୍ୟବାହିନୀକୁ ପରିଚାଳନା କରି ଜର୍ମାନୀରେ ପୁଣି ଆସି ପହଞ୍ଚିଥିଲେ । ଇତିମଧ୍ୟରେ ଫରାସୀ ସେନାପତି ପଛଘୁଞ୍ଚା ଦେଇ କେତେକ ଅଞ୍ଚଳ ଛାଡ଼ି ଚାଲିଯାଇଥିବାରୁ, ପ୍ରୁସିଆ ରୁଷିଆର ସହାୟତାରେ ଏଲ୍ବ ନଦୀ ( the Elbe )ର ପୂର୍ବପଟେ ଥିବା ତାର ସମସ୍ତ ଅଞ୍ଚଳ ଫେରିପାଇଥିଲା । ରୁଷିଆ ଓ ପ୍ରୁସିଆର ସୈନ୍ୟବାହିନୀଦ୍ୱୟ ଗୋଟିଏ ସୈନ୍ୟବାହିନୀ ଭଳି କାର୍ଯ୍ୟକରି ଚାଲିଥିଲେ । ତେଣୁ ନେପୋଲିୟନଙ୍କୁ ଏକ ବିଷମ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା; କିନ୍ତୁ ଏକଥା ସ୍ୱୀକାର କରିବାକୁ ହେବ ଯେ ଇଟାଲୀରେ ସେ ପର୍ଯ୍ୟନ୍ତ ନେପୋଲିୟନଙ୍କ ବିରୁଦ୍ଧରେ ଅସନ୍ତୋଷର କୌଣସି ସଙ୍କେତ ମିଳିନଥିଲା କି ତାଙ୍କଠାରୁ ବିଶେଷ ଅନୁଗ୍ରହ ଲାଭ କରିଥିବା ରାଇନ୍ କନଫିଡ଼ରେସନ୍ (the Confederation of the Rhine ) ତାହାର ପୃଷ୍ଠପୋଷକ ନେପୋଲିୟନଙ୍କୁ ଛାଡ଼ି ଚାଲିଯିବାର କୌଣସି ସୂଚନା ମଧ୍ୟ ଦେଇ ନ ଥିଲା । ଅଷ୍ଟ୍ରିୟା ମଧ୍ୟ ସେ ପର୍ଯ୍ୟନ୍ତ ପ୍ରୁସିୟା-ରୁଷିଆ ଶକ୍ତିମେଣ୍ଟରେ ଯୋଗ ନ ଦେଇ ଆଗରୁର ସହିତ ଯୁଦ୍ଧର ଗତି ଲକ୍ଷ୍ୟ କରୁଥିଲା ।

ନେପୋଲିୟନ୍ ରୁଷିଆ ଓ ପ୍ରୁସିୟାକୁ ଶାସ୍ତି ଦେବା ପାଇଁ ସାକ୍ସନି (Saxony)ରୁ ଅଭିଯାନ ଆରମ୍ଭ କରିଥିଲେ ଓ ୧୮୧୩ ମସିହା ମେ ମାସରେ ଦୁଇ ମିତ୍ରରାଷ୍ଟ୍ର (ପ୍ରୁସିୟା ଏବଂ ରୁଷିଆ) ର ସୈନ୍ୟବାହିନୀକୁ ଉଭୟ ଲୁଟ୍ଜେନ୍ ( Lutzen ) ଏବଂ ବାଉଜେନ୍ ( Bautzen ) ରଣକ୍ଷେତ୍ରରେ ପରାସ୍ତ କରିବା ସଙ୍ଗେ ସଙ୍ଗେ ନିଜର ଖ୍ୟାତିକୁ ମଧ୍ୟ ଅକ୍ଷୁଣ୍ଣ ରଖିପାରିଥିଲେ । ନେପୋଲିୟନ ତାଙ୍କର ଏ ବିଜୟ ଫଳରେ ପ୍ରୁସିୟାଠାରୁ ଡ୍ରେସଡେନ୍ ସହର ପୁନର୍ବାର ଦଖଲ କରି ନେଇଥିଲେ ସତ; କିନ୍ତୁ ସେ ତାଙ୍କର ଏ ବିଜୟ ଅଭିଯାନ ଅବ୍ୟାହତ ରଖି ପାରିନଥିଲେ । ସେ ନିଜର ସୈନ୍ୟବାହିନୀକୁ ପୁନର୍ଗଠନ କରିବା ଉଦ୍ଦେଶ୍ୟରେ ଏବଂ ଅଷ୍ଟ୍ରିୟାଠାରୁ ସାହାଯ୍ୟ ଲାଭ ଆଶାରେ ଛଅ ସପ୍ତାହ ପାଇଁ ପ୍ଲେସ୍ୱିଜ୍-ଯୁଦ୍ଧବିରତି ( Armistice of Pleswitz ) ପାଳନ କରିବାକୁ ରାଜି-ହୋଇଥିଲେ । ସେ ଯୁଦ୍ଧବିରତି ପାଳନକରି ଯେଉଁ ଭୁଲ କରିଥିଲେ, ତାହାର ଫଳ

ତାଙ୍କୁ ଭେଟିବାକୁ ପଡ଼ିଲା । ଏହି ଛଅ ସପ୍ତାହ ଯୁଦ୍ଧ ବିରତି ସମୟରେ ଯେ ଆଶାପୋଷଣ କରିଥିଲେ ଯେ ଅଷ୍ଟ୍ରିୟା ସହିତ ତାଙ୍କର ବୈବାହିକ ସମ୍ପର୍କ ପ୍ରତିଷ୍ଠା ହୋଇଥିବାରୁ ଅଷ୍ଟ୍ରିୟା ତାଙ୍କ ସପକ୍ଷରେ ଯୁଦ୍ଧରେ ଯୋଗଦେବ; କିନ୍ତୁ ଅଷ୍ଟ୍ରିୟାର ଚାନ୍‌ସେଲର (Chancellor) ମେଟାରନିକ୍ ନେପୋଲିୟନଙ୍କର ପରାଜୟ ସୁନିଶ୍ଚିତ ବୋଲି ବିଶ୍ୱାସ କରି ମଧ୍ୟସ୍ଥର ଭୂମିକା ଗ୍ରହଣ କରିବାକୁ ସଂକଳ୍ପ କରିଥିଲେ । ନେପୋଲିୟନଙ୍କ ସହିତ ରାଜିନାମାରେ ପହଞ୍ଚିବା ଉଦ୍ଦେଶ୍ୟରେ ମେଟାରନିକ୍ ଯେଉଁ ପ୍ରସ୍ତାବଗୁଡ଼ିକ ଦେଇଥିଲେ ସେ ଗୁଡିକ ପ୍ରକୃତରେ ଜର୍ମାନୀରେ ନେପୋଲିୟନଙ୍କର ପ୍ରାଧାନ୍ୟ ଲୋପର ସୂଚନା ଦିଆହୋଇଥିଲା । ଓ୍ୱେଲିଙ୍ଗ-ଟନଙ୍କର ଭିଟୋରିଆ ସଂଗ୍ରାମରେ ବିଜୟ ହୋଇଥିବା ଖବର ପାଇଲା ମାତ୍ରେ ମେଟାରନିକ୍ ସମ୍ରାଟ ନେପୋଲିୟନଙ୍କ ସହିତ ପ୍ରତିଷ୍ଠିତ ଅଷ୍ଟ୍ରିୟାର ବୈବାହିକ ସମ୍ପର୍କକୁ ଅବଜ୍ଞା କରି ପ୍ରୁସିୟାର ଓ ରୁଷିଆଙ୍କଦ୍ୱାରା ଗଠନ କରାଯାଇଥିବା ଶେଷ ଶକ୍ତିମେଣ୍ଟରେ ଯୋଗ ଦେଇଥିଲେ । ତେଣୁ ନେପୋଲିୟନଙ୍କର ଅଷ୍ଟ୍ରିୟାଠାରୁ ସାହାଯ୍ୟ ଲାଭକରିବା ଆଶା ମେଟାରନିକଙ୍କ କୂଟନୀତି ଫଳରେ ନିରାଶାରେ ପରିଣତ ହୋଇଥିଲା । ଅଷ୍ଟ୍ରିୟା ଶକ୍ତିମେଣ୍ଟରେ ଯୋଗଦେବା ଫଳରେ ଶକ୍ତିମେଣ୍ଟର ସୈନ୍ୟବାହିନୀ ନେପୋଲିୟନଙ୍କର ସୈନ୍ୟବାହିନୀ ଅପେକ୍ଷା ଅଧିକ ଶକ୍ତିଶାଳୀ ହୋଇପାରିଥିଲା ।

୧୮୧୩ ମସିହା ଅଗଷ୍ଟ ମାସ ଶେଷଆଡ଼କୁ ନେପୋଲିୟନ୍ ଓ ଶକ୍ତିମେଣ୍ଟ ମଧ୍ୟରେ ଧାରାବାହିକ ଭାବରେ କେତେଗୁଡ଼ିଏ ସଂଗ୍ରାମ ହୋଇଥିଲା । ନେପୋଲିୟନଙ୍କର ସେନାପତିମାନେ ସେଥିମଧ୍ୟରୁ ଅଧିକାଂଶ ସଂଗ୍ରାମରେ ପରାଜୟ ସ୍ୱୀକାର କରିଥିଲେ; କିନ୍ତୁ ନେପୋଲିୟନ୍ ଡ୍ରେସଡେନ୍ (Dresden) ଠାରେ ଅଷ୍ଟ୍ରିୟମାନଙ୍କୁ ପରାସ୍ତ କରିଥିଲେ ମଧ୍ୟ ଶକ୍ତିମେଣ୍ଟର ଘେର (ring) ଭାଙ୍ଗିବାକୁ ସକ୍ଷମ ହୋଇନଥିଲେ ।

ବାସ୍ତବରେ ଏକ ନିଷ୍ପତ୍ତିମୂଳକ ସଂଗ୍ରାମ ଲିପ୍‌ଜିଗ୍ ( Leipzig )ଠାରେ ୧୮୧୩ ମସିହା ଅକ୍ଟୋବର ମାସ ୧୪ ତାରିଖରୁ ଆରମ୍ଭହୋଇ ସେହି ମାସ ୧୬ ତାରିଖରେ ଶେଷ ହୋଇଥିଲା । ଏହି ତିନିଦିନ ବ୍ୟାପି ସଂଗ୍ରାମରେ ଇଉରୋପର ଅଧିକାଂଶ ରାଷ୍ଟ୍ର ଯୋଗ ଦେଇଥିବାରୁ ଏହାକୁ ଇଉରୋପୀୟ ଜାତୀୟ ସଂଗ୍ରାମ ( Battle of the Nations) ଆଖ୍ୟା ଦିଆଯାଇଥିଲା । ଏହି ସଂଗ୍ରାମ ଅତି ତୀବ୍ର ଆକାର ଧାରଣ କରିଥିଲା । ନେପୋଲିୟନଙ୍କ ଉତ୍କୃଷ୍ଟ କୌଶଳ ପ୍ରୟୋଗ ଯୋଗୁ ଏହାର ଫଳାଫଳ ବହୁ ସମୟ ଧରି ଅନିଶ୍ଚିତ ଥିଲା; କିନ୍ତୁ ରଣକ୍ଷେତ୍ରରେ ସେକ୍‌ସନ୍‌ମାନେ ନେପୋଲିୟନଙ୍କ ପକ୍ଷ ତ୍ୟାଗ କରିବାରୁ ନେପୋଲିୟନ୍ ଶେଷରେ ପରାଜୟ ବରଣ କରିଥିଲେ । ୧୮୧୩ ମସିହା ନଭେମ୍ବର ୨ ତାରିଖ ଦିନ ନେପୋଲିୟନ୍ ବିଜୟର ଆଉ କୌଣସି ଆଶା ନ ଦେଖି, ପୂର୍ବପୂର ଯୁଦ୍ଧରୁ ଅପସରିଯିବା ଉଦ୍ଦେଶ୍ୟରେ ରାଇନ୍ ନଦୀ ପାର ହୋଇ ଜର୍ମାନୀରୁ ଫ୍ରାନ୍‌ସକୁ ପଳାଇଯାଇଥିଲେ ।

ଜର୍ମାନୀ ଉପରେ କର୍ତ୍ତୃତ୍ୱ ହରାଇବା ଫଳରେ ଇଉରୋପରେ ନେପୋଲିୟନଙ୍କର ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିଥିଲା । ତାଙ୍କ ପକ୍ଷରେ ଇଟାଲୀକୁ ଅଧୀନରେ ରଖିବା ଆଉ ସମ୍ଭବ

ହେଲନାହିଁ । ତେଣୁ ମୁକ୍ତି ସଂଗ୍ରାମ ଶେଷରେ ହେଲେ ବିଜୟୀ । ଟାଲିରେଣ୍ଡ ଯଥାର୍ଥରେ କହିଥିଲେ ଯେ 'ସମ୍ରାଟ ନେପୋଲିୟନଙ୍କୁ କେବଳ ଫ୍ରାନ୍ସର ରଜା ହେବାକୁ ହିଁ ପଡ଼ିବ ।' ('The emperor Napoleon must become king of France)' ମିତ୍ରଶକ୍ତିମାନଙ୍କ ମଧ୍ୟରେ ଫ୍ରାନ୍ସ ଆକ୍ରମଣ ନେଇ ମତଭେଦ ଦେଖାଯାଇଥିଲା । ତେଣୁ ସେମାନେ ପରାଜିତ ଶତ୍ରୁ ନେପୋଲିୟନଙ୍କୁ ସେମାନଙ୍କର ସର୍ତ୍ତ ଗ୍ରହଣ କରିନେଇ ସନ୍ଧିକରିବା ପାଇଁ ଆହ୍ୱାନ ଦେଇଥିଲେ । ସେହିସବୁ ସର୍ତ୍ତ ଅନୁଯାରେ ନେପୋଲିୟନଙ୍କୁ ଫ୍ରାନ୍ସର ପ୍ରାକୃତିକ ସୀମା—ରାଇନ୍, ଆଲ୍‌ପସ୍ ଏବଂ ପିରେନିଜ ଗୁଡ଼ି ଦିଆଯାଇଥିଲା । ଅର୍ଥାତ୍ ନେପୋଲିୟନଙ୍କ ଅଧୀନରେ ବେଲ୍‌ଜିୟମ ରାଇନ ଅନ୍ତର୍ଭୁକ୍ତ ପ୍ରଦେଶମାନ ଏବଂ ସାଭୟ ରହିବାପାଇଁ ବ୍ୟବସ୍ଥା କରାଯାଇଥିଲା । ତା ଛଡ଼ା ନେପୋଲିୟନଙ୍କୁ ଜର୍ମାନୀ, ସ୍ପେନ୍, ଇଟାଲୀ ଓ ହଲାଣ୍ଡର ସ୍ୱାଧୀନତା ସ୍ୱୀକାର କରିବାକୁ କୁହାଯାଇଥିଲା । ନେପୋଲିୟନ୍ ଯଦି ମିତ୍ରଶକ୍ତିର ପ୍ରସ୍ତାବ ଗ୍ରହଣ କରିଥାନ୍ତେ, ତାହାହେଲେ ଫରାସୀ ବିପ୍ଳବରୁ ଲାଭ ହୋଇଥିବା ଅଞ୍ଚଳଗୁଡ଼ିକର ଉତ୍ତରାଧିକାରୀ ଭାବରେ ସେ ସବୁ ଅଞ୍ଚଳ ଉପରେ ତାଙ୍କର କର୍ତ୍ତୃତ୍ୱ ବଜାୟ ରଖିପାରିଥାନ୍ତେ; କିନ୍ତୁ ନେପୋଲିୟନ୍ ମିତ୍ରଶକ୍ତିର ପ୍ରସ୍ତାବଗୁଡ଼ିକ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଏଥିରେ ମିତ୍ରଶକ୍ତିଗୁଡ଼ିକ କ୍ଷୁବ୍ଧ ହୋଇ ୧୮୧୪ ମସିହା ଜାନୁୟାରୀ ୧ ତାରିଖ ଦିନ ରାଇନ୍ ନଦୀ ଅତିକ୍ରମ କରି ପ୍ୟାରିସ ଅଭିମୁଖେ ଅଗ୍ରସର ହୋଇଥିଲେ ।

ନେପୋଲିୟନ୍ ମାତ୍ର ୭୦,୦୦୦ର ଏକ କ୍ଷୁଦ୍ର ସୈନ୍ୟବାହିନୀ ସାହାଯ୍ୟରେ ମିତ୍ର ଶକ୍ତିର ଏକ ବିଶାଳ ସୈନ୍ୟବାହିନୀର ପ୍ରବଳ ପ୍ରତିରୋଧ କରିଥିଲେ । ସ୍ୱଦେଶପ୍ରେମରେ ଅନୁପ୍ରାଣିତ ତାଙ୍କର ସୈନ୍ୟମାନେ ମାତୃଭୂମିର ରକ୍ଷାନିମନ୍ତେ ନିର୍ଭୀକଭାବରେ ସଂଗ୍ରାମ ଚଳାଇଥିଲେ ଏବଂ ନେପୋଲିୟନ୍ ଯେତେବେଳେ ଅଷ୍ଟ୍ରୀୟ ସୈନ୍ୟବାହିନୀକୁ ତାଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବାପାଇଁ ପ୍ରଲୋଭନ ଦେଖାଇଲେ ଏବଂ ମିତ୍ରରାଷ୍ଟ୍ରମାନଙ୍କର ଯୋଗାଯୋଗ ଛିନ୍ନ କରିବାକୁ ଉଦ୍ୟମ କଲେ, ଯେତେବେଳେ ସେମାନେ ନେପୋଲିୟନଙ୍କର ଦୂରଭିସନ୍ଧି ବୁଝି ସେମାନଙ୍କର ସୈନ୍ୟମାନଙ୍କୁ ଏକତ୍ରିତ କରିଥିଲେ ଏବଂ ନେପୋଲିୟନଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ପ୍ୟାରିସ୍ ସହର ଭିତରକୁ ମାଡ଼ିଗଲେ । ତଥାପି ନେପୋଲିୟନ୍ ପରାଜୟ ସ୍ୱୀକାର କରିବାକୁ ରାଜି ହେଲେନାହିଁ; କିନ୍ତୁ ଶତ୍ରୁ ଯେତେବେଳେ ତାଙ୍କ ରାଜଧାନୀରେ ଏବଂ ସିନେଟ୍ ହଷ୍ଟନ୍ତି ଯେତେବେଳେ ତାଙ୍କ ବିରୁଦ୍ଧରେ ଯେତେବେଳେ ଅବଶ୍ୟମ୍ଭାବୀ ନିକଟରେ ତାଙ୍କର ଆତ୍ମସମର୍ପଣ କରିବା ଛଡ଼ା ଆଉ କିଛି ଉପାୟ ନ ଥିଲା । ୧୮୧୪ ମସିହା ଅପ୍ରେଲ ୪ ତାରିଖ ଦିନ ନେପୋଲିୟନ ସିଂହାସନ ତ୍ୟାଗ କଲେ ବୋଲି ସ୍ୱାକ୍ଷର କରିଥିଲେ । ତାପରେ ମିତ୍ରରାଷ୍ଟ୍ରମାନଙ୍କର ନିର୍ଦ୍ଦିଷ୍ଟ ସର୍ତ୍ତ ଅନୁଯାରେ ତାଙ୍କୁ ଇଟାଲୀର ପଶ୍ଚିମ ଉପକୂଳରେ ଅବସ୍ଥିତ ଏଲ୍‌ବା (Elba) ନାମକ ଗୋଟିଏ କ୍ଷୁଦ୍ରଟିଆ ଦ୍ୱୀପକୁ ଯିବାକୁ ବାଧ୍ୟ କରାଯାଇଥିଲା ଏବଂ ସେଠାରେ ସାର୍ବଭୌମ କ୍ଷମତା ପ୍ରୟୋଗ କରିବା ପାଇଁ ଅନୁମତି

ହୋଇଯାଇଥିଲା । ନେପୋଲିୟନ୍ ତାଙ୍କର ପୁରୁଣା ରକ୍ଷୀଙ୍କଠାରୁ ବିଦାୟ ନେଲାବେଳେ ପ୍ରକାଶକଲେ, 'ମୁଁ ସିଂହାସନ ତ୍ୟାଗକରୁଛି; ମୁଁ ଆଦୌ ବଶ୍ୟତା ସ୍ୱୀକାର କରୁନାହିଁ ।' ( Napoleon declared, 'I abdicate; I yield nothing.') ନେପୋଲିୟନଙ୍କର ଏହି ଉକ୍ତିରୁ ତାଙ୍କର ଫ୍ରାନ୍ସ ପ୍ରତ୍ୟାବର୍ତ୍ତନ ଓ ସେଠାରେ ପୁଣି ରାଜତ୍ୱ କରିବାର ସୂଚନା ମିଳିଥିଲା ।

ନେପୋଲିୟନ୍ ଏଲ୍‌ବାରେ ପ୍ରାୟ ଦଶମାସ ଅବସ୍ଥାନ କରିଥିଲେ । ତାଙ୍କର ଅବସ୍ଥାନ ସମୟରେ ସେ ଫ୍ରାନ୍ସକୁ ଫେରିବାପାଇଁ ସୁଯୋଗ ଖୋଜୁଥିବାରୁ ତାଙ୍କୁ ସବୁସମୟରେ ଇଉରୋପର ଅବସ୍ଥା ଲକ୍ଷ୍ୟକରିବାକୁ ପଡ଼ିଥିଲା । ଅବଶେଷରେ ଏହି ସୁଯୋଗ ତାଙ୍କୁ ଦୁଇଟି କାରଣରୁ ମିଳିଲା । ପ୍ରଥମ କାରଣଟି ହେଲା ମିତ୍ରରାଷ୍ଟ୍ରଗୁଡ଼ିକ ଭିଏନା ( Vienna ) ରେ ସମ୍ମିଳିତ ହୋଇ ନେପୋଲିୟନଙ୍କଦ୍ୱାରା ପରିତ୍ୟକ୍ତ ଅଞ୍ଚଳଗୁଡ଼ିକର ଭାଗବାଣ୍ଟ ବିଷୟରେ ପରସ୍ପର ମଧ୍ୟରେ କଳହ ଆରମ୍ଭ କରିଦେଇଥିଲେ । ତେଣୁ ସେମାନଙ୍କ ମଧ୍ୟରେ ଉପୁଜିଥିବା ବିବାଦ ନେପୋଲିୟନଙ୍କର ଫ୍ରାନ୍ସ ପ୍ରତ୍ୟାବର୍ତ୍ତନ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା ବୋଲି ତାଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା । ତା' ଛଡ଼ା ଭିଏନା ସମ୍ମିଳନୀ ଭାଙ୍ଗିଯିବାର ସମ୍ବାଦ ପାଇଥିଲେ ବୋଲି ସେ ପରେ ପ୍ରକାଶ କରିଥିଲେ । ଦ୍ୱିତୀୟ କାରଣଟି ହେଲା—ବୁରବନ୍‌ମାନେ ଫ୍ରାନ୍ସ ରାଜଗାଦୀ ଫେରିପାଇଲା ପରେ ପରେ ନିଜ କାର୍ଯ୍ୟକଳାପ ଯୋଗୁ ଲୋକମାନଙ୍କର ଅପ୍ରିୟ ହୋଇ ପଡ଼ିଥିଲେ । ବୁରବନ୍ ରାଜା ଅଷ୍ଟାଦଶ ଲୁଇ ନେପୋଲିୟନଙ୍କଠାରୁ ଅଧିକ ଉଦାର ସମ୍ବିଧାନ ପ୍ରଚଳନ କରିଥିଲେ ଓ ବିପ୍ଳବରୁ ଲାଭହୋଇଥିବା ଲୋକମାନଙ୍କର ସମ୍ପତ୍ତିକୁ ସ୍ୱୀକାର କରିଥିଲେ ସତ; କିନ୍ତୁ ଫ୍ରାନ୍ସକୁ ପ୍ରତ୍ୟାବର୍ତ୍ତନ କରିଥିବା ସ୍ୱଦେଶତ୍ୟାଗୀମାନେ ( Emigres ) ଏହି ନୂତନ ସମ୍ବିଧାନକୁ ହେଳାଡର କରି ବେପରୁଆ ଭାବରେ କାର୍ଯ୍ୟ କଲେ ମଧ୍ୟ ଲୁଇ ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରି ନିଜର ଦୁର୍ବଳତା ପ୍ରକାଶ କରିଥିଲେ । ସେମାନଙ୍କ ବ୍ୟବହାରରୁ ମନେହେଲା ଯେପରି ଫ୍ରାନ୍ସରେ କୌଣସି ବିପ୍ଳବ ଘଟି ନ ଥିଲା । ନୂତନ ସମ୍ଭ୍ରାନ୍ତ ଶ୍ରେଣୀ ( New Nobility ) ପ୍ରତି ସେମାନଙ୍କର ହାବଭାବ ବଡ଼ ଅପମାନସୂଚକ ହୋଇଥିଲା । ତେଣୁ ଫ୍ରାନ୍ସର ଅଧିକାଂଶ ଲୋକଙ୍କର ବୁରବନ୍ ରାଜବଂଶ ଉପରେ ଆଉ ଆସ୍ଥା ରହିଲାନାହିଁ । ତା' ଛଡ଼ା ହଜାର ହଜାର ସୈନ୍ୟ ଯୁଦ୍ଧରୁ ଫେରିଆସିଲା ପରେ ଶାନ୍ତିରେ ବସବାସ କରିବା ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ମନେହେଲା ଏବଂ କଟ୍ଟହନ ବିଶ୍ରାମ କାଳପରେ ସେମାନେ ଯୁଦ୍ଧର ଉତ୍ତେଜନା ଓ ନେପୋଲିୟନଙ୍କ ନେତୃତ୍ୱର ରୋମାଞ୍ଚକର କାହାଣୀର ପୁନରାବୃତ୍ତି ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ବହୁ କୃଷକ ପରିବାରର ଘରେ ଅନ୍ତତଃ ଜଣେ ଲେଖାଏଁ ପୁରୁଣା ସୈନିକ ଥିବାରୁ ସେମାନେ ବଡ଼ ଗର୍ବ ଅନୁଭବ କରୁଥିଲେ । ଅଧିକାଂଶ ସାଧାରଣ ଲୋକେ ନେପୋଲିୟନଙ୍କର ପତନ ହୋଇଥିଲେ ମଧ୍ୟ ତାଙ୍କର ବୀରତ୍ୱର କାହାଣୀ ଭୁଲି ନ ଥିଲେ ଏବଂ ତାଙ୍କୁ ଜଣେ ସୁପ୍ରସିଦ୍ଧ ଯୋଦ୍ଧା ବୋଲି ମନେକରୁଥିଲେ । ମଧ୍ୟ-ବିତ୍ତଗୋଷ୍ଠୀ ଓ କୃଷକ

ଗୋଷ୍ଠୀ ନେପୋଲିୟନଙ୍କ ପ୍ରତ୍ୟାବର୍ତ୍ତନ ପାଇଁ କ୍ୱଚିତ୍ ଆଗ୍ରହ ପ୍ରକାଶ କରିଥିଲେ ସତ; କିନ୍ତୁ ସେମାନେ ବୁରବନ୍‌ମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ ଏବଂ ସେମାନଙ୍କ ଦ୍ୱାରାରେ ବିପ୍ଳବଜାତ ସାମାଜିକ ଶୃଙ୍ଖଳା (Social order) ନିରାପଦରେ ରହି ପାରିବ କି ନାହିଁ ସେ ବିଷୟରେ ସନ୍ଦେହ ପ୍ରକାଶ କରିଥିଲେ ।

ଏହିସବୁ ବିଷୟ ବିବେଚନାକରି ନେପୋଲିୟନଙ୍କର ହୃଦ୍‌ବୋଧ ହେଲା ଯେ, ଯଦି ସେ ଫ୍ରାନ୍‌ସକୁ ପ୍ରତ୍ୟାବର୍ତ୍ତନ କରନ୍ତି ତାହାହେଲେ ଫରାସୀ ଜାତି ତାଙ୍କୁ ସ୍ୱାଗତ କରିବେ । ତାଙ୍କର ଧାରଣା ଭୁଲ୍ ନ ଥିଲା । ନେପୋଲିୟନ୍ ହଠାତ୍ ଏଲ୍‌ବାରୁ ଖସି ପଳାଇଯାଇ ୧୮୧୫ ମସିହା ମାର୍ଚ୍ଚ ମାସ ୩ ତାରିଖ ଦିନ ୮୦୦ ଜଣ୍ଣଆଳି ସୈନ୍ୟଙ୍କ ସହିତ ଫ୍ରାନ୍‌ସର ଦକ୍ଷିଣରେ ଅବସ୍ଥିତ ଗୋଟିଏ ବନ୍ଦରରେ ଅବତରଣ କଲେ । ଲୋକମାନେ ସେଠାରେ ତାଙ୍କୁ ହାର୍ଦ୍ଦିକ ଅଭ୍ୟର୍ଥନା କରିଥିଲେ । ଅଳ୍ପ ସମୟ ମଧ୍ୟରେ ତାଙ୍କର ପୁରୁଣା ସେନାପତି ଓ ସୈନ୍ୟମାନେ ତାଙ୍କ ସହିତ ଯୋଗଦେଇଥିଲେ । ତା'ପରେ ସେ ପ୍ୟାରିସ୍ ଅଭିମୁଖେ ଅଗ୍ରସର ହୋଇଥିଲେ ଓ ପ୍ୟାରିସ ଯାତ୍ରା ସମୟରେ ତାଙ୍କୁ ବିଭିନ୍ନ ସ୍ଥାନରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ଓ ନେପୋଲିୟନଙ୍କର ଫ୍ରାନ୍‌ସ ପ୍ରତ୍ୟାବର୍ତ୍ତନର ସମ୍ବାଦ ପାଇ ଅଷ୍ଟାଦଶ ଲୁଇ ମାର୍ଚ୍ଚ ୧୯ ତାରିଖ ଦିନ ଫ୍ରାନ୍‌ସର ସୀମା ପାର ହୋଇ ପଳାଇଯାଇଥିଲେ । ବୁରବନ୍ ରଜାଙ୍କର ଫ୍ରାନ୍‌ସ ପରିତ୍ୟାଗର ମାତ୍ର ଦିନକ ପରେ ଅର୍ଥାତ୍ ମାର୍ଚ୍ଚ ୨୦ ତାରିଖ ଦିନ ନେପୋଲିୟନ୍ ଆନନ୍ଦଧ୍ୱନି ମଧ୍ୟରେ ପ୍ୟାରିସରେ ପ୍ରବେଶ କରିଥିଲେ । କ୍ଷମତା ଫେରି-ପାଇବା ପାଇଁ ଏହି ହେଲା ତାଙ୍କର ଶେଷ ଉଦ୍ୟମ ।

ନେପୋଲିୟନଙ୍କର ଅବସ୍ଥା ଯେ ସଙ୍କଟମୟ ଏହା ନିଃସନ୍ଦେହରେ କୁହାଯାଇ ପାରେ । ଏକଥା ସତ ଯେ, ଲା ଭେଣ୍ଡିର ବିଦ୍ରୋହକୁ ବାଦ୍‌ଦେଲେ ବୁରବନ୍ ରାଜତନ୍ତ୍ରୀମାନେ ତାଙ୍କୁ କୌଣସି ଅସୁବିଧାରେ ପକାଇ ନ ଥିଲେ । ଲୋକମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ନେପୋଲିୟନ ଏକ ଉଦାର ସମ୍ବିଧାନ ପ୍ରଚଳନ କରିଥିଲେ, ଯାହାଫଳରେ ଫ୍ରାନ୍‌ସରେ ସଂସଦୀୟ ବ୍ୟବସ୍ଥା ( Parliamentary system ) ପ୍ରବର୍ତ୍ତନ କରାଯାଇଥିଲା । ନେପୋଲିୟନଙ୍କ କ୍ଷମତା ଫ୍ରାନ୍‌ସରେ ଏକଶହ ଦିନ ଅର୍ଥାତ୍ ୧୮୧୫ ମସିହା ମାର୍ଚ୍ଚ ୨୦ ତାରିଖରୁ ଜୁନ୍ ୨୯ ତାରିଖ ପର୍ଯ୍ୟନ୍ତ ତିଷ୍ଠିଥିଲା । ଏହାକୁ ନେପୋଲିୟନଙ୍କର 'ଶହେଦିନିଆ ରାଜତ୍ୱ' ( Hundred Days Rule ) କୁହାଯାଏ ।

ନେପୋଲିୟନଙ୍କର ପ୍ରତ୍ୟାବର୍ତ୍ତନର ସମ୍ବାଦ ପାଇ ଭିଏନା ସମ୍ମିଳନୀର କ୍ଷମତା-ଶାଳୀ ରାଷ୍ଟ୍ରମାନେ ସେମାନଙ୍କ ମଧ୍ୟରେ ଉପୁଜିଥିବା ବିବାଦ ଭୁଲିଯାଇ ଇଉରୋପର ଶାନ୍ତିଭଙ୍ଗକାରୀ ନେପୋଲିୟନଙ୍କ ବିରୁଦ୍ଧରେ ପୁଣି ଏକଜୁଟ ହୋଇଥିଲେ ଏବଂ ନେପୋଲିୟନଙ୍କୁ ଦସ୍ୟୁ (outlaw) ବୋଲି ଘୋଷଣା କରିଥିଲେ । ସୁତରାଂ ନେପୋଲିୟନଙ୍କୁ ଏକାକୀ ଇଉରୋପର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତାଙ୍କର ଏକମାତ୍ର ଆଶା ଥିଲା ଯେ ଶତ୍ରୁମାନେ ତାଙ୍କ ବିରୁଦ୍ଧରେ ସଂଗ୍ରାମ ପାଇଁ ପ୍ରସ୍ତୁତ ହେବା

ପୂର୍ବରୁ ସେ ସେମାନଙ୍କୁ ଆକ୍ରମଣ କରି ସେମାନଙ୍କର ଏକତା ଭାଙ୍ଗି ଦେବେ । କେତେକ ସୈନ୍ୟଙ୍କୁ ପିରେନିଜ ପର୍ବତମାଳାକୁ ଓ ଆଉ କେତେକ ସୈନ୍ୟଙ୍କୁ ଲ ଭେଣ୍ଡିକୁ ପ୍ରେରଣ କଲାପରେ ତାଙ୍କ ପ୍ରତି ବିଶେଷ ଅନୁରକ୍ତ ଏକଲକ୍ଷ ପଚିଶ ହଜାର ପୁରୁଖା ସୈନ୍ୟ ଆଉ ତାଙ୍କ ନିକଟରେ ଥିଲା । ନେପୋଲିୟନ୍ ଜାଣିଥିଲେ ଯେ ତାଙ୍କୁ ବେଲଜିୟମରେ ଅବସ୍ଥାପିତ ଦୁଇଲକ୍ଷ ବ୍ରିଟିଶ୍ ଓ ପ୍ରୁସୀୟ ସୈନ୍ୟବାହିନୀକୁ ଆକ୍ରମଣ କରିବାକୁ ପଡ଼ିବ । ତା ନ ହେଲେ ସେ ବିପଦର ସମ୍ମୁଖୀନ ହେବେ । ସେ ତାଙ୍କ ସୈନ୍ୟବାହିନୀ ସହିତ ଅତି ଶୀଘ୍ର ବେଲଜିୟମ ଅଭିମୁଖେ ଯାତ୍ରା କରିଥିଲେ । ସେଠାରେ ସେ ବ୍ଲୁଚରଙ୍କ ଅଧୀନରେ ପ୍ରୁସୀୟ ସୈନ୍ୟବାହିନୀ ଓ ଓ୍ୱେଲିଙ୍ଗଟନଙ୍କ ଅଧୀନରେ ବ୍ରିଟିଶ ସୈନ୍ୟବାହିନୀକୁ ଭେଟିଥିଲେ । ସେ ପ୍ରଥମେ ପ୍ରୁସୀୟ ସୈନ୍ୟବାହିନୀକୁ ଲିଗ୍ନିଠାରେ ପରାସ୍ତ କରିଥିଲେ । ପ୍ରୁସୀୟ ସୈନ୍ୟବାହିନୀକୁ ଆକ୍ରମଣ କଲାବେଳେ ତାଙ୍କର ସେନାପତି ମାର୍ଶାଲ ନେ ବ୍ରିଟିଶ ସୈନ୍ୟବାହିନୀକୁ ପ୍ରୁସୀୟ ସୈନ୍ୟବାହିନୀ ସହିତ ଯୋଗଦେବାରେ ବାଧା ଦେଇଥିଲେ । ତା'ପରେ ଗ୍ରୁଶିଙ୍କୁ ପ୍ରୁସୀୟ ସୈନ୍ୟବାହିନୀର ଅନୁଧାବନର ଦାୟିତ୍ୱ ଦେଇ ନେପୋଲିୟନ୍ ଓ୍ୱାଟରଲୁକୁ ଅପସରି ଯାଇଥିବା ଓ୍ୱେଲିଙ୍ଗଟନଙ୍କ ଉପରେ ଆକ୍ରମଣ କରିଥିଲେ; କିନ୍ତୁ ସେ ଉଭୟ ବ୍ରିଟିଶ ସୈନ୍ୟବାହିନୀ ଓ ପ୍ରୁସୀୟ ସୈନ୍ୟବାହିନୀକୁ ଏକତ୍ର କରି ନ ଦେବା ପାଇଁ କୌଣସି ସତର୍କମୂଳକ ବ୍ୟବସ୍ଥା କରି ନ ଥିଲେ । ତା'ଛଡ଼ା ସେ କ୍ଳାନ୍ତ ହୋଇ ପଡ଼ିଥିବାରୁ ଓ୍ୱେଲିଙ୍ଗଟନଙ୍କ ବିରୁଦ୍ଧରେ ତାଙ୍କର ଯୁଦ୍ଧଯାତ୍ରା ଅତି ମନ୍ଥର ହୋଇପଡ଼ିଥିଲା । ତେଣୁ ନେପୋଲିୟନ ଓ୍ୱେଲିଙ୍ଗଟନଙ୍କୁ ଆକ୍ରମଣ କରିବାରେ ଗୋଟିଏ ଦିନ ବିଳମ୍ବ କରି-ଦେଇଥିଲେ । ସେ ଯାହାହେଉ, ଓ୍ୱେଲିଙ୍ଗଟନ୍ ପୂରା ସାତଘଣ୍ଟା ଯାଏ ନେପୋଲିୟନଙ୍କର ବାରମ୍ବାର ଆକ୍ରମଣରେ ବେଶ୍ ମୁକାବିଲା କରିଥିଲେ । ସନ୍ଧ୍ୟାଆଡ଼କୁ ଯେତେବେଳେ ନେପୋଲିୟନ୍ ବିଜୟ ହାସଲ କରିବାର ସୁଯୋଗ ପାଇଲେ, ଠିକ୍ ସେତିକିବେଳେ ପ୍ରୁସୀୟମାନେ ଓ୍ୱାଟରଲୁରେ ପହଞ୍ଚିଯାଇ ବ୍ରିଟିଶ୍ ସୈନ୍ୟବାହିନୀ ସହିତ ମିଳିତ ହୋଇଥିଲେ ଏବଂ ତାକୁ ପରାଜୟ ମୁଖରୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ତାହା ସହିତ ମିଶି ନେପୋଲିୟନଙ୍କୁ ୧୮୧୫ ମସିହା ଜୁନମାସ ୧୮ ତାରିଖ ଦିନ ଓ୍ୱାଟରଲୁ ସଂଗ୍ରାମରେ ପରାସ୍ତ କରିଦେଇଥିଲେ ।

ନେପୋଲିୟନଙ୍କର ଭାଗ୍ୟରବି ଓ୍ୱାଟରଲୁ ସଂଗ୍ରାମରେ ଅସ୍ତମିତ ହୋଇଥିଲା । ମିତ୍ରରାଷ୍ଟ୍ରମାନେ ଓ୍ୱାଟରଲୁ ସଂଗ୍ରାମ ପରେ ପରେ ପ୍ୟାରିସ୍ ଅଭିମୁଖେ ଅଗ୍ରସର ହୋଇଥିଲେ । ସେମାନେ ପ୍ୟାରିସ୍‌ରେ ପ୍ରବେଶକଲା ମାତ୍ରକେ ନେପୋଲିୟନ ଦ୍ୱିତୀୟ ଥର ପାଇଁ ସିଂହାସନ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ସେ ଯେପରି ପୁନର୍ବାର ଇଉରୋପର ଶାନ୍ତି ବ୍ୟାଘାତ ନ କରିପାରିବେ ସେଥିପାଇଁ ତାଙ୍କୁ ଆଫ୍ରିକା ଉପକୂଳଠାରୁ ବହୁ ଦୂରରେ ଦକ୍ଷିଣ ଆଟଲାଣ୍ଟିକ ମହାସାଗରରେ ଅବସ୍ଥିତ ସେଣ୍ଟ ହେଲେନା ନାମକ କ୍ଷୁଦ୍ର ଦ୍ୱୀପକୁ ନିର୍ବାସିତ କରାଯାଇଥିଲା । ସେ ଦ୍ୱୀପ ଇଂଲଣ୍ଡର ଅଧିକାରରେ ଥିବାରୁ ନେପୋଲିୟନ୍ ସେଠାରେ ବ୍ରିଟିଶ ଲାଟ (Governor)ଙ୍କ ତତ୍ତ୍ୱାବଧାନରେ ଜୀବନର

ଶେଷ ବର୍ଷଗୁଡ଼ିକ କଟାଇଥିଲେ । ସେ ପୁନର୍ବାର ଖସି ପଳାଇଯିବାର ଆଶଙ୍କାରେ ମିତ୍ରରାଷ୍ଟ୍ରଗୁଡ଼ିକ ସେଠାରେ ତାଙ୍କୁ ଶିକୁଳି ଲଗାଇ ଗୋଟିଏ ଲମ୍ବା ପାହାଡ଼ରେ ବାନ୍ଧିଦେବା ପାଇଁ ବ୍ୟବସ୍ଥା କରିଥିଲେ । ନେପୋଲିୟନ୍ ସେଠାରେ ପ୍ରାୟ ଛଅବର୍ଷ କଟାଇଲା ପରେ ୧୯୨୧ ମସିହା ମଇ ମାସ ୫ ତାରିଖ ଦିନ ୫୮ ବର୍ଷ ବୟସରେ ପଦାର୍ପଣ କରିବା ପୂର୍ବରୁ ଜୀବନର ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କେତେକ ଆଧୁନିକ ଐତିହାସିକ ଗବେଷଣା କରି ମତ ଦେଇଛନ୍ତି ଯେ ଧୀରେ ଧୀରେ ବିଷ ପ୍ରୟୋଗ କରାଯାଇ ନେପୋଲିୟନଙ୍କୁ ମାରି ଦିଆଯାଇଥିଲା ।

ନେପୋଲିୟନ୍ ନିର୍ବାସନ ସମୟରେ ତାଙ୍କର ଭାବୀ ବଂଶଧରଙ୍କ ନିକଟରେ ନିଜ ବିଷୟ ଉପସ୍ଥାପିତ କରିବାକୁ ବିଶେଷ ଯତ୍ନବାନ ହୋଇଥିଲେ । ସେ ଦେଖେଇବାକୁ ଚାହିଁଥିଲେ ଯେ ସେ ଶାନ୍ତିପ୍ରିୟ; କିନ୍ତୁ ତାଙ୍କ ଉପରେ ଯୁଦ୍ଧ ଲଦି ଦିଆଯାଇଥିଲା ଏବଂ ସେ ମଧ୍ୟ ଫରାସୀ ବିପ୍ଳବ-ନୀତିଗୁଡ଼ିକର ରକ୍ଷକ । ତାଙ୍କ ବିଷୟରେ ସେ ଯାହା ସବୁ କହିଥିଲେ, ତାହା 'ନେପୋଲିୟନଙ୍କ ଉପକଥା' (Napoleonic Legend) ନାମରେ ବିଦିତ । ନେପୋଲିୟନ୍ ଆଶା କରିଥିଲେ ଯେ ତାଙ୍କର ଉପକଥା ସାହାଯ୍ୟରେ ଭବିଷ୍ୟତରେ କେହି ଜଣେ ବୋନାପାର୍ଟ ଏକ ନୂତନ ରଙ୍ଗମଞ୍ଚ ତୋଳି ସେଠାରେ 'ନେପୋଲିୟନ୍ ଶାସନ ନାଟକ'ର ପୁନରାବୃତ୍ତି କରିପାରନ୍ତି । ତାଙ୍କର କଳ୍ପନା ଯେ ବାସ୍ତବରେ ପରିଣତ ହୋଇଥିଲା, ତାହା ତାଙ୍କର ଦୂରଦୃଷ୍ଟି ଓ ଫରାସୀ ଜାତି ବିଷୟରେ ତାଙ୍କର ଅଭିଜ୍ଞତାର ପ୍ରମାଣ ଦିଏ । ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ ନେପୋଲିୟନ୍ ଥିଲେ ଜଣେ ଶକ୍ତିସମ୍ପନ୍ନ ପ୍ରତିଭାଶାଳୀ ବ୍ୟକ୍ତି । ଇତିହାସ ଦୃଷ୍ଟିରୁ ସେ ଏକ ପରିବର୍ତ୍ତିତ ଯୁଗର ରୂପରେଖ ଦେଇଥିଲେ ।

ନେପୋଲିୟନ୍ ଦକ୍ଷତାକୁ ମୂଲ୍ୟବାନ୍ ମନେକରୁଥିଲେ ଏବଂ ଭଣ୍ଡାମିକୁ ଘୃଣା କରୁଥିଲେ । ସେ ଜଣେ ଏତେବଡ଼ ଅହଂବାଦୀ ଓ ଏତେବଡ଼ ଯୋଦ୍ଧା ଥିଲେ ଯେ ସେ ସର୍ବସାଧାରଣ ମତକୁ ସମ୍ମାନ ଦେବାକୁ କୁଣ୍ଠାବୋଧ କରୁଥିଲେ । କିନ୍ତୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ନିଜର ଯୋଗ୍ୟତା ପ୍ରମାଣ କରିବାକୁ ସୁଯୋଗ ଦେଉଥିଲେ । ତାଙ୍କ ଶାସନ କାଳରେ ଯେ କୌଣସି ଫରାସୀ ନାଗରିକ ନିଜର ଯୋଗ୍ୟତା ବଳରେ ସର୍ବନିମ୍ନ ପଦରୁ ଫ୍ରାନ୍ସର ସର୍ବୋଚ୍ଚପଦର ଅଧିକାରୀ ହୋଇପାରୁଥିଲା । କାରଣ ନେପୋଲିୟନ ଜାତି, ଧର୍ମ ଓ ଗୋଷ୍ଠୀ ନିର୍ବିଶେଷରେ ସମସ୍ତଙ୍କୁ ସମାନ ସୁଯୋଗ ( equal opportunities ) ଦିଆଯାଉଥିଲା ।

ଇଉରୋପକୁ ନେପୋଲିୟନଙ୍କର ଅବଦାନ ସୁସ୍ପଷ୍ଟ ରହିଛି । ଇଉରୋପର ଯେଉଁ ଯେଉଁ ସ୍ଥାନରେ ସେ ତାଙ୍କ କ୍ଷମତା ପ୍ରତିଷ୍ଠା କରିଥିଲେ, ସେହି ସେହି ସ୍ଥାନରେ ସମତା ନୀତି ଉପରେ ଆଧାରିତ ସଂସ୍କାରମାନ ପ୍ରବର୍ତ୍ତନ କରିଥିଲେ । ସୁତରାଂ ମନୁଷ୍ୟ ମନୁଷ୍ୟ ମଧ୍ୟରେ ରହିଥିବା (ମଧ୍ୟଯୁଗୀୟ) ପାର୍ଥକ୍ୟ ଉଠାଇ ଦେଇଥିଲେ । ସେ ସାମନ୍ତବାଦ ସମାଜ ଏବଂ ମଧ୍ୟଯୁଗୀୟ ଆଇନ ବ୍ୟବସ୍ଥାରେ ଯେଉଁସବୁ କଳଙ୍କ ରହିଥିଲା ସେ ସବୁକୁ ଲୋପ କରି

ଦେଇଥିଲେ । ତେଣୁ ତାଙ୍କୁ ମଧ୍ୟଯୁଗୀୟ ବର୍ବରତାର ଧ୍ୱଂସକର୍ତ୍ତା ବୋଲି କୁହାଯାଏ । ଅନ୍ୟ ଦିଗରେ ସେ ଇଉରୋପରେ ଏକ ନୂତନ ସାମାଜିକ ଶ୍ରେଣୀର ଭିତ୍ତିପତ୍ତନ କରିଥିଲେ । ଇତିହାସ ଦୃଷ୍ଟିରୁ ସେ ଏକ ପରିବର୍ତ୍ତିତ ଯୁଗର ରୂପରେଖ ଦେଇଥିଲେ । ତାଙ୍କର ଜର୍ମାନୀ ପୁନର୍ଗଠନ ଫଳରେ ପବିତ୍ର ରୋମୀୟ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ଜର୍ମାନୀର ରାଜ୍ୟଗୁଡ଼ିକର ସଂଖ୍ୟା ଅନେକ ପରିମାଣରେ କମିଯାଇଥିଲା ଏବଂ ଭବିଷ୍ୟତରେ ଜର୍ମାନୀର ଏକତ୍ରୀକରଣ ପାଇଁ ପଥ ପରିଷ୍କାର ହୋଇଯାଇଥିଲା । ଇଟାଲୀରେ ତାଙ୍କ ଶାସନ ଇଟାଲୀୟ ଜାତୀୟତାର ଭିତ୍ତି ସ୍ଥାପନ କରିଥିଲା ।

ନେପୋଲିୟନଙ୍କର ଆଇନ ସଂହିତା (Code Napoleon) ଆଇନ କ୍ଷେତ୍ରରେ ଇଉରୋପ ପାଇଁ ଥିଲା ଏକ ଦୃଷ୍ଟାନ୍ତ ଏବଂ ଆଇନ ସଂସ୍କାର ଦିଗରେ ସମଗ୍ର ଇଉରୋପକୁ ଦେଇଥିଲା ପ୍ରେରଣା । ତେଣୁ ନେପୋଲିୟନଙ୍କ ସାମ୍ରାଜ୍ୟ ଥିଲା ଇଉରୋପୀୟ ଦେଶମାନଙ୍କ ପ୍ରତି ଏକ ପ୍ରଚ୍ଛନ୍ନ ଅନୁଗ୍ରହ । ସେ ନିଜ ମଧ୍ୟରୁ ପ୍ରାଚୀନ ପଦ୍ଧତି ଏବଂ ଅନ୍ଧବିଶ୍ୱାସ ଲୋପ କରିଦେଇ ଇଉରୋପ ମହାଦେଶରେ ଏକ ନୂତନ ଚେତନା ଜାଗ୍ରତ କରିଥିଲେ । ସେ ଥିଲେ ପ୍ରବୃଦ୍ଧ ନିରଙ୍କୁଶ ଶାସକ ପର୍ଯ୍ୟାୟର ଶେଷ ଶାସକ ଏବଂ ପ୍ରଧାନ କେତେ ଜଣ ଆଧୁନିକ ମହାରାଷ୍ଟ୍ରନୀତିଜ୍ଞ ମଧ୍ୟରୁ ଜଣେ । ମୋଟଉପରେ ସେ ଜଣେ ବାସ୍ତବ ରାଷ୍ଟ୍ରନୀତିଜ୍ଞ ହୋଇଥିବାରୁ ଅନେକ ମହତ୍ କାର୍ଯ୍ୟ ସମ୍ପାଦନ କରିଥିଲେ ଏବଂ ତାଙ୍କର ସଂଗ୍ରାମଗୁଡ଼ିକ ନିଜ ପାଇଁ ବିଶେଷ ଲାଭଜନକ ନ ହେଲେ ମଧ୍ୟ ଇଉରୋପର ବହୁ ସ୍ଥାୟୀ ଉପକାର କରିଥିଲା ।

---

# ଷଷ୍ଠ ଅଧ୍ୟାୟ

## ଭିଏନା କଂଗ୍ରେସ (ସେପ୍ଟେମ୍ବର ୧୮୧୪-ଜୁନ ୧୮୧୫)
## The Congress of Vienna ( September 1814—June 1815 )

ଭିଏନା କଂଗ୍ରେସ ଇଉରୋପ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ଇଉରୋପର ପ୍ରାୟ ଅନେକ ଅଞ୍ଚଳର ଭାଗ୍ୟ ଏହି କଂଗ୍ରେସର ନିଷ୍ପତ୍ତି ଉପରେ ନିର୍ଭର କରୁଥିଲା । ନେପୋଲିୟନଙ୍କର ପ୍ରଥମ ଥର ରାଜପଦ ତ୍ୟାଗ ପରେ ପରେ ୧୮୧୪ ମସିହା ସେପ୍ଟେମ୍ବର ମାସରେ ଏହି କଂଗ୍ରେସ ବସିଥିଲା । ଇଉରୋପ ଇତିହାସରେ ଏତେଗୁଡ଼ିଏ ରଜା ଓ ପ୍ରବୀଣ ରାଜନୀତିଜ୍ଞ ମିଳିତ ହେବା ପୂର୍ବରୁ କେବେ ଦେଖାଯାଇନଥିଲା । ଏହିପରି ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କଂଗ୍ରେସ ମହାସମାରୋହରେ ଭିଏନା ନଗରୀରେ ଆରମ୍ଭ ହୋଇଥିଲା । ଇଉରୋପର ବିଭିନ୍ନ ଦେଶର ପ୍ରତିନିଧିମାନେ ଏହି କଂଗ୍ରେସରେ ଯୋଗ-ଦେଇଥିଲେ । ଯୋଗଦେଇଥିବା ସଭ୍ୟମାନଙ୍କ ମଧ୍ୟରେ ରୁଷିଆର ଜାର୍ ପ୍ରଥମ ଆଲେକ୍-ଜାଣ୍ଡାର, ଅଷ୍ଟ୍ରିୟାର ସମ୍ରାଟ ଫ୍ରାନ୍‌ସିସ୍, ପ୍ରୁସିୟାର ରଜା ଫ୍ରେଡରିକ୍ ଉଇଲିୟମ୍, ଅଷ୍ଟ୍ରିୟାର ବୈଦେଶିକ ମନ୍ତ୍ରୀ ପ୍ରିନ୍‌ସ ମେଟାରନିକ, ପ୍ରୁସିୟାର ହାରଡେନବର୍ଗ, ରୁଷିଆର ନେସେଲ ରୋଡ଼, ଇଂଲଣ୍ଡର କ୍ୟାସାଲରି ଓ ଓୟେଲିଙ୍ଗଟନ୍ ଏବଂ ଫ୍ରାନ୍‌ସର ଟ୍ୟାଲେରାଣ୍ଡ ପ୍ରଧାନ । ପ୍ରିନ୍‌ସ ମେଟାରନିକ କଂଗ୍ରେସର ଥିଲେ ସଭାପତି ।

ଏହି କଂଗ୍ରେସ ଉପରେ କେତେକ ବଡ଼ ଜଟିଳ ସମସ୍ୟାର ସମାଧାନର ଭାର ପଡ଼ିଥିଲା । ଭବିଷ୍ୟତରେ ଫ୍ରାନ୍‌ସର ଅନ୍ୟାୟ ଆକ୍ରମଣରୁ ଇଉରୋପକୁ ରକ୍ଷାକରିବା ଉଦ୍ଦେଶ୍ୟରେ ତାର ଚାରିପଟେ ଶକ୍ତିଶାଳୀ ପ୍ରତିବନ୍ଧକ ରାଜ୍ୟମାନ ଗଠନ କରିବା ଭିଏନା କଂଗ୍ରେସର ଦାୟିତ୍ୱ ଥିଲା । ବିଲୁପ୍ତ ପବିତ୍ର ରୋମୀୟ ସାମ୍ରାଜ୍ୟ ( the Holy Roman Empire) ପରିବର୍ତ୍ତେ ଜର୍ମାନୀ ପାଇଁ ଏହି ସମ୍ମିଳନୀକୁ ଏକ ସମ୍ବିଧାନ ପ୍ରସ୍ତୁତ କରିବାକୁ ପଡ଼ିଥିଲା । ନେପୋଲିୟନଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଇଟାଲୀକୁ ପୁନଃ ବିଭାଜନ କରିବା ଏହାର କର୍ତ୍ତବ୍ୟ ଥିଲା । ଡେନ୍‌ମାର୍କ ନେପୋଲିୟନଙ୍କ ପ୍ରତି ଅନୁରକ୍ତ ଥିବାରୁ ତାକୁ ଦଣ୍ଡିତ କରିବା ଓ ସ୍ୱିଡେନ ମିତ୍ର ରାଷ୍ଟ୍ରମାନଙ୍କୁ ସାହାଯ୍ୟ ଓ ସେବା କରିଥିବାରୁ ତାକୁ ପୁରସ୍କାର ଦେବାର ଦାୟିତ୍ୱ ଏହି କଂଗ୍ରେସର ଥିଲା । ଅଷ୍ଟ୍ରିୟା, ପ୍ରୁସିୟା ଓ ରୁଷିଆ ମଧ୍ୟରେ ରାଜ୍ୟ ପୁନର୍ବଣ୍ଟନର ବ୍ୟବସ୍ଥା ଏହି କଂଗ୍ରେସ ଉପରେ ନ୍ୟସ୍ତ କରାଯାଇଥିଲା । ମୋଟ-

ଉପରେ କଢ଼ିବାକୁ ଗଲେ ଇଉରୋପର ପୁନର୍ଗଠନ ଓ ଭବିଷ୍ୟତରେ ଫ୍ରାନ୍ସର ସମଗ୍ର ଇଉରୋପ ଉପରେ କ୍ଷମତା ବିସ୍ତାର କରିବାର ପଥ ରୁଦ୍ଧକରିବା ଭିଏନା କଂଗ୍ରେସର ଲକ୍ଷ୍ୟ ଥିଲା ।

ରାଜ୍ୟ ପୁନର୍ବଣ୍ଟନ ବ୍ୟବସ୍ଥା ନେଇ ମିତ୍ରରାଷ୍ଟ୍ରମାନଙ୍କ ମଧ୍ୟରେ କଳହ ସୃଷ୍ଟି ହୋଇଥିଲା । ନେପୋଲିୟନ ଏହି ସୁଯୋଗ ନେଇ ଫ୍ରାନସରେ ନିଜର ଶାସନ ପୁନଃ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଏଲବାରୁ ଆସି ଫ୍ରାନ୍ସରେ ଉପସ୍ଥିତ ହୋଇଥିଲେ । ନେପୋଲିୟନଙ୍କର ଫ୍ରାନ୍ସ ପ୍ରତ୍ୟାବର୍ତ୍ତନର ସମ୍ବାଦ ପାଇଲାମାତ୍ରେ ମିତ୍ରରାଷ୍ଟ୍ରମାନେ ସେମାନଙ୍କର କଳହ ଭୁଲିଯାଇ ନେପୋଲିୟନଙ୍କୁ ଦମନକରିବା ଉଦ୍ଦେଶ୍ୟରେ ତାଙ୍କ ବିରୁଦ୍ଧରେ ଏକଜୁଟ ହୋଇଥିଲେ । ଓ୍ୱାଟରଲୁ ଯୁଦ୍ଧ ପରେ ନେପୋଲିୟନଙ୍କୁ ସେଣ୍ଟ ହେଲେନାକୁ ନିର୍ବାସିତ କରି କଂଗ୍ରେସର ସଦସ୍ୟମାନେ ଭିଏନାରେ ପୁନର୍ବାର ସମବେତ ହୋଇଥିଲେ । ପ୍ରଥମ ପ୍ୟାରିସ ଚୁକ୍ତି (୧୮୧୪) ପରେ ଇଉରୋପୀୟ ରାଜ୍ୟମାନଙ୍କ ପାଇଁ ଆରମ୍ଭ କରାଯାଇଥିବା ବ୍ୟବସ୍ଥାଗୁଡ଼ିକ ସମ୍ପୂର୍ଣ୍ଣ କରାଯାଇଥିଲା ।

ଦ୍ୱିତୀୟ ପ୍ୟାରିସ ଚୁକ୍ତି (୧୮୧୫) ଫ୍ରାନ୍ସର ରାଜ୍ୟ ବିସ୍ତାର ନୀତି ବିରୁଦ୍ଧରେ ସ୍ୱତନ୍ତ୍ର ବ୍ୟବସ୍ଥାମାନ କରିଥିଲା । ୧୭୯୦ ମସିହାରେ ଫ୍ରାନ୍ସର ସୀମା ଯେତେଦୂର ବିସ୍ତୃତ ଥିଲା, ଫ୍ରାନ୍ସକୁ ସେହି ସୀମାରେଖାକୁ ଫେରିଆସିବାକୁ ପଡ଼ିଥିଲା । ତାକୁ ମାତ୍ର ଗୋଟିଏ ବିଜିତ ରାଜ୍ୟ—ଏଭିଗନନ୍ ରଖିବାକୁ ଦିଆଯାଇଥିଲା ! ଫ୍ରାନ୍ସକୁ ପାଞ୍ଚବର୍ଷ ମଧ୍ୟରେ ଯୁଦ୍ଧର କ୍ଷତିପୂରଣ ବାବଦ ସତୁରି କୋଟି ଫ୍ରାଙ୍କ ମୁଦ୍ରା ଦେବାକୁ ବାଧ୍ୟ କରାଯାଇଥିଲା, ଏବଂ ସେହି ଅର୍ଥ ନ ଦେଲା ପର୍ଯ୍ୟନ୍ତ ମିତ୍ରପକ୍ଷର ସୈନ୍ୟ ଫ୍ରାନ୍ସରେ ମୁତୟନ କରାଯିବା ସ୍ଥିର ହୋଇଥିଲା । ଫ୍ରାନ୍ସକୁ ମଧ୍ୟ ସେହି ସୈନ୍ୟମାନଙ୍କର ବ୍ୟୟଭାର ବହନ କରିବାକୁ ପଡ଼ିଥିଲା । ଏହି ବିରତି କାଳ ମଧ୍ୟରେ (During this interval) ଫ୍ରାନ୍ସକୁ ଏକ ଜାଗ୍ରତିଆର ସମିତି (Council of Vigilance)ର ପରାମର୍ଶ ନେବାକୁ ବାଧ୍ୟ କରାଯାଇଥିଲା ଏବଂ ପ୍ୟାରିସରେ ଅବସ୍ଥାପିତ ମିତ୍ରପକ୍ଷର ରାଷ୍ଟ୍ରଦୂତମାନେ ଏହି ସମିତିର ସଭ୍ୟ ରହିଲେ ।

ଏହାଛଡ଼ା ଫ୍ରାନ୍ସ ଯେପରି ପୁନରାୟ ସର୍ବଗ୍ରାସୀ କ୍ଷମତାର ଅଧିକାରୀ ହେବାକୁ ସକ୍ଷମ ନହୁଏ, ସେଥିପାଇଁ ତାହା ବିରୁଦ୍ଧରେ ଉଭୟ ଆଭ୍ୟନ୍ତରୀଣ ଏବଂ ବାହ୍ୟିକ ପ୍ରତିବନ୍ଧକମାନ ସୃଷ୍ଟି କରାଯାଇଥିଲା । ବୁରବନ୍ ରାଜବଂଶ ଫ୍ରାନ୍ସରେ ପୁନଃ ପ୍ରତିଷ୍ଠା କରାଯିବାରୁ ମନେହେଲା ଯେ ଏହି ପଦକ୍ଷେପ ପ୍ରତିବେଶୀମାନଙ୍କ ବ୍ୟାପାରରେ ଫ୍ରାନ୍ସର ହସ୍ତକ୍ଷେପ ବିରୁଦ୍ଧରେ ଏକ ନିର୍ଭରଯୋଗ୍ୟ । ଏକଥା ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ ଅଷ୍ଟାଦଶ ଲୁଇଙ୍କଠାରେ ସାମ୍ରାଜ୍ୟବାଦୀ ଚତୁର୍ଦ୍ଦଶ ଲୁଇଙ୍କ ସ୍ୱଭାବର କୌଣସି ସୂଚନା ନ ଥିଲା । ପୁନଃପ୍ରତିଷ୍ଠିତ ବୁରବନ୍ ରାଜବଂଶର ଶାସନ ପ୍ରାରମ୍ଭରେ ମିତ୍ରପକ୍ଷ ସୈନ୍ୟ ଓ ପରାମର୍ଶଦାତା ସମିତିର ଫ୍ରାନ୍ସରେ ଉପସ୍ଥିତ ଇଉରୋପ ପାଇଁ ଆବଶ୍ୟକ ଥିବା ନିରାପତ୍ତା ଯୋଗାଇ ପାରିବ ବୋଲି ଆଶା କରାଯାଇଥିଲା ।

ଇତ୍ୟବସରେ ଭିଏନା କଂଗ୍ରେସରେ ଇଉରୋପ ପ୍ରତିରକ୍ଷା ପାଇଁ ବାହ୍ୟିକ ପ୍ରତିବନ୍ଧକମାନ ସୃଷ୍ଟି କରାଯାଇଥିବାରୁ ଇଉରୋପର ନକ୍ସାପତ୍ର ବିଷୟରେ ଅଧିକ ପ୍ରତିଶ୍ରୁତି ମିଳିଥିଲା । ଫ୍ରାନ୍ସର ଉତ୍ତର ସୀମାନ୍ତରେ ହଲାଣ୍ଡ ସହିତ ବେଲ୍‌ଜିୟମକୁ ସଂଯୁକ୍ତ କରାଯାଇ ଏକ ଶକ୍ତିଶାଳୀ ରାଜ୍ୟ ଗଠନ କରାଯାଇଥିଲା । ଦକ୍ଷିଣ ସୀମାନ୍ତରେ ସାର୍ଡିନିଆ ସହିତ ସ୍ୟାଭୟ, ପିଡମଣ୍ଟ ଓ ଜେନୋଆକୁ ସଂଯୁକ୍ତ କରାଯାଇ ତାକୁ ଏକ ଶକ୍ତିଶାଳୀ ରାଜ୍ୟରେ ପରିଣତ କରାଯାଇଥିଲା । ତେଣୁ ଉତ୍ତରରେ ବର୍ଦ୍ଧିତ ହଲାଣ୍ଡରାଜ୍ୟ ଏବଂ ଦକ୍ଷିଣରେ ବର୍ଦ୍ଧିତ ସାର୍ଡିନିଆ ରାଜ୍ୟ ଫ୍ରାନ୍ସର ଉଭୟ ପାର୍ଶ୍ୱରେ ଦୁଇଟି ନିରପେକ୍ଷ ରାଷ୍ଟ୍ର (Buffer States) ହିସାବରେ ପ୍ରତିଷ୍ଠିତ ହେଲେ । ଏହି ଦୁଇ ବର୍ଦ୍ଧିତ ରାଷ୍ଟ୍ର ମଧ୍ୟରେ ନିରପେକ୍ଷ ଘୋଷଣା କରାଯାଇଥିବା ସୁଇସ୍ ରାଷ୍ଟ୍ରସଙ୍ଘ (Swiss Confederation) ଏବଂ ଜର୍ମାନ ଜାତୀୟସଙ୍ଘ ( the German Confederation ) ଗଠନ କରାଯାଇଥିଲା । ଫ୍ରାନ୍ସର ସଂପ୍ରସାରଣ ବିରୁଦ୍ଧରେ ଏହିସବୁ ବ୍ୟବସ୍ଥା କରାଯାଇଥିଲା । ସର୍ବଶେଷରେ ନେପୋଲିୟନ୍‌ଙ୍କ ଶତ୍ରୁ ଯୁଦ୍ଧ କରିଥିବା ବୃହତ୍ ଶକ୍ତିମାନେ ଫ୍ରାନ୍ସକୁ ଲକ୍ଷ୍ୟରଖି ଏକ ଚତୁଃଶକ୍ତି ମେଣ୍ଟ (Quadruple Alliance) ଗଠନ କରିଥିଲେ ଏବଂ ଯେକୌଣସି ଆକ୍ରମଣରେ ମୁକାବିଲା କରିବା ପାଇଁ ସେମାନେ ପ୍ରସ୍ତୁତ ଥିଲେ ।

ଅଧିକନ୍ତୁ ଭିଏନା କଂଗ୍ରେସକୁ ନେପୋଲିୟନଙ୍କଦ୍ୱାରା ପରିତ୍ୟକ୍ତ ହୋଇଥିବା ବିସ୍ତୃତ ଅଞ୍ଚଳ ସମ୍ପର୍କରେ ବିହିତ ବ୍ୟବସ୍ଥା କରିବାକୁ ପଡ଼ିଥିଲା । ପ୍ରଥମ ପ୍ୟାରିସ ଚୁକ୍ତି ଅନୁସାରେ ଇଉରୋପୀୟ ଶକ୍ତିମାନଙ୍କର ଗୋଟିଏ କଂଗ୍ରେସ ଭିଏନାଠାରେ ବସି ରାଜ୍ୟ ପୁନର୍ଗଠନ କାର୍ଯ୍ୟ ସମ୍ପାଦନ କରିବା ସ୍ଥିର ହୋଇଥିଲା । ପ୍ରଥମେ ଏ ଚୁକ୍ତି ସ୍ୱାକ୍ଷରକାରୀ ଇଉରୋପର ଅଷ୍ଟଶକ୍ତିଙ୍କୁ ନେଇ କଂଗ୍ରେସର ବୈଠକ ଡକାଇବା ଏକ ପ୍ରତାରଣାମୂଳକ ନୀତି ଥିଲା; କାରଣ ପ୍ରକୃତରେ ସଭ୍ୟ ସଂଖ୍ୟା ଆଠରୁ ଛଅ ଓ ପୁଣି ଛଅରୁ ଚାରିକୁ କମାଇ ଦିଆଯାଇଥିଲା । ଏହି ଚାରିଶକ୍ତି ହେଲେ ଅଷ୍ଟ୍ରିଆ, ପ୍ରୁସିଆ, ରୁଷିଆ ଏବଂ ଇଂଲଣ୍ଡ । ଏହି ଚାରି ବୃହତ୍ ଶକ୍ତି ଇଉରୋପର ପୁନର୍ଗଠନ ବ୍ୟବସ୍ଥା ନିଜ ହାତକୁ ନେଇଥିଲେ; କିନ୍ତୁ ସେମାନେ ସେତେବେଳେ ଫ୍ରାନ୍ସର ବୈଦେଶିକ ମନ୍ତ୍ରୀ ଟ୍ୟାଲେରାଣ୍ଡ ବିଷୟ ବିଚାରକୁ ନେଇନଥିଲେ । ଟ୍ୟାଲେରାଣ୍ଡ ବୃହତ୍ ଚତୁଃଶକ୍ତିଙ୍କର ଅହଙ୍କାର ବିରୁଦ୍ଧରେ ନିଜର ସ୍ୱର ଉତ୍ତୋଳନ କରିଥିଲେ । ଫ୍ରାନ୍ସ ପ୍ୟାରିସ ଚୁକ୍ତିର ଜଣେ ସ୍ୱାକ୍ଷରକାରୀ ହୋଇଥିବାରୁ ତାକୁ ପରବର୍ତ୍ତୀ ଆଲୋଚନାରୁ ବାଦ୍ ଦେବା ଯୁକ୍ତିଯୁକ୍ତ ହେବ ନାହିଁ । ତା' ଛଡ଼ା ସେ ଜାଣି ଶୁଣି କେତେକ ଜଟିଳ ପ୍ରଶ୍ନ ଉଠାଇ ଚତୁଃଶକ୍ତିଙ୍କୁ ବଡ଼ ହଇରାଣରେ ପକାଇଥିଲେ । ସେ ମଧ୍ୟ କୂଟନୀତିଜ୍ଞମାନଙ୍କୁ ମନେ ପକାଇ ଦେଇଥିଲେ ଯେ ପ୍ୟାରିସ ଚୁକ୍ତିରେ ସବୁରାଷ୍ଟ୍ରର ପ୍ରତିନିଧିମାନଙ୍କୁ ନେଇ ଏକ ସାଧାରଣ କଂଗ୍ରେସ ଡାକିବାର ସର୍ତ୍ତଥିଲା । ଚତୁଃ ବୃହତ୍‌ଶକ୍ତି ଏପରି ଏକ କଂଗ୍ରେସ ଚାହୁଁ ନ ଥିଲେ । ବିଶେଷତଃ କ୍ଷୁଦ୍ରଶକ୍ତିମାନଙ୍କର ପ୍ରତିନିଧିମାନଙ୍କୁ ବୃହତ୍‌ଶକ୍ତିମାନଙ୍କ ପ୍ରତିନିଧିମାନଙ୍କ ସହିତ ସମ୍ମିଳିତ କରି ଏକ କଂଗ୍ରେସ ଗଠନ କରିବା ସେମାନେ ଆଦୌ ପସନ୍ଦ କରୁ ନ ଥିଲେ ହେଁ ପରିଶେଷରେ ଟ୍ୟାଲେରାଣ୍ଡଙ୍କ କୂଟନୀତି ଦ୍ୱାରା

ପରାସ୍ତ ହୋଇ ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଫ୍ରାନ୍ସକୁ ଅଭ୍ୟନ୍ତର ପରିଷଦ (Inner Council) ରେ ସ୍ଥାନ ଦେଇଥିଲେ । ତେଣୁ ଚତୁଃଶକ୍ତି ପଞ୍ଚଶକ୍ତିରେ ପରିଣତ ହେଲେ । ବୃହତ୍ ଶକ୍ତିମାନେ ଦୃଢ଼-ପ୍ରତିଜ୍ଞା କରିଥିଲେ ଯେ କେବଳ ସେମାନେ କଂଗ୍ରେସରେ ସବୁ ମୀମାଂସା କରିବେ ଏବଂ କ୍ଷୁଦ୍ରଶକ୍ତିମାନଙ୍କୁ ସେମାନଙ୍କର ନିଷ୍ପତ୍ତି ମାନିନେବାକୁ ପଡ଼ିବ । ଏ କଥା ସ୍ୱୀକାର କରିବାକୁ ହେବ ଯେ ଭିଏନା କଂଗ୍ରେସ ଯେଉଁସବୁ ବ୍ୟବସ୍ଥା କରିବା କଥା ସେସବୁର ଚଠା ପୂର୍ବରୁ ପ୍ରସ୍ତୁତ ହୋଇ ସାରିଥିଲା ।

ବାସ୍ତବିକ କଂଗ୍ରେସ ବୋଲି କିଛି ନ ଥିଲା । କ୍ଷୁଦ୍ର କ୍ଷୁଦ୍ର ରଜାମାନଙ୍କର ଯେଉଁ ୨୦, ୨୫ ଜଣ ପ୍ରତିନିଧି ଭିଏନାରେ ଉପସ୍ଥିତ ଥିଲେ, ସେମାନେ ପ୍ରଚ୍ଛଦପଟରେ ରହି ବୃହତ୍ ଶକ୍ତିମାନଙ୍କର ନିଷ୍ପତ୍ତି ଗ୍ରହଣ କରିଥିଲେ । ପ୍ରକୃତପକ୍ଷେ ପଞ୍ଚ ବୃହତ୍‌ଶକ୍ତିଙ୍କ ବୈଦେଶିକ ମନ୍ତ୍ରୀମାନେ ହେଲେ କଂଗ୍ରେସ । ଅର୍ଥାତ୍ କଂଗ୍ରେସ ଯେଉଁ ଦାୟିତ୍ୱ ତୁଲାଇବା କଥା, ଏମାନେ ସେହି ଦାୟିତ୍ୱ ତୁଲାଇଲେ । ଏହି କୂଟନୀତିଜ୍ଞମାନଙ୍କୁ ଛାଡ଼ିଦେଲେ ଭିଏନାରେ ଉପସ୍ଥିତ ଥିବା ପ୍ରତିପତ୍ତିଶାଳୀ ଶାସକମାନଙ୍କ ମଧ୍ୟରେ ରୁଷିଆର ଜାର୍ ପ୍ରଥମ ଆଲେକଜାଣ୍ଡାର କଂଗ୍ରେସର କାର୍ଯ୍ୟବିବରଣୀକୁ ପ୍ରଭାବିତ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଭୂର୍ଟେମ୍‌ବର୍ଗ ଓ ବେଭେରିଆର ରଜାଦ୍ୱୟ ସେଠାରେ ଉପସ୍ଥିତ ଥିଲେ ମଧ୍ୟ ସେମାନଙ୍କ ସହିତ କ୍ୱଚିତ୍ ପରାମର୍ଶ କରାଯାଇଥିଲା ।

ଭିଏନା କଂଗ୍ରେସର ପୃଷ୍ଠଭୂମିରେ ଚକ୍ରାନ୍ତ ଚାଲିଥିବାର ସୂଚନା ମିଳିଥିଲା । ଚକ୍ରାନ୍ତକାରୀଙ୍କ କୂଟନୀତି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିକୁ ପ୍ରଭାବିତ କରିଥିଲା । ସମ୍ଭବତଃ ଏପରି ହସ୍ତକ୍ଷେପଦ୍ୱାରା କେତେକ କଳହ ଗୁରୁତର ଆକାର ଧାରଣ କରିଥିଲା । କିନ୍ତୁ ପ୍ରକୃତ ଦେଖିବାକୁଗଲେ ବିଜୟୀ ଶକ୍ତିମାନଙ୍କର ସ୍ୱାର୍ଥ ଏପରି ବଦ୍ଧମୂଳ ହୋଇଥିଲା ଯେ କୌଣସି ପ୍ରଚ୍ଛନ୍ନ ପ୍ରଭାବ ସେମାନଙ୍କୁ ସେମାନଙ୍କର ଲକ୍ଷ୍ୟରୁ ବିଚ୍ୟୁତ କରିପାରିନଥିଲା । ଭିଏନାର ରାଜଦରବାର ମୁକ୍ତହସ୍ତରେ ଅତିଥିମାନଙ୍କୁ ଅଭ୍ୟର୍ଥନା କରିଥିଲା । କୂଟନୀତିଜ୍ଞମାନଙ୍କର ଭିଏନାରେ ରହଣି ବେଶ୍ ଆମୋଦ-ପ୍ରମୋଦରେ ଅତିବାହିତ ହୋଇଥିଲା । ନିଜର ସମ୍ମାନ ବଜାୟ ରଖିବାପାଇଁ ସର୍ବସ୍ୱାନ୍ତ ଅଷ୍ଟ୍ରିୟା ସରକାର ନିର୍ବିକାରରେ ୧୬୦ ଲକ୍ଷ ଡଲାର ଅର୍ଥ ବ୍ୟୟରେ ଏହି ଆମୋଦ-ପ୍ରମୋଦ ବ୍ୟବସ୍ଥା କରିଥିଲେ ।

ଏ ସବୁ ସତ୍ତ୍ୱେ ଭିଏନା କଂଗ୍ରେସରେ ଉପସ୍ଥିତ ଥିବା ବୃହତ୍ ଶକ୍ତିମାନଙ୍କ ମଧ୍ୟରେ କୌଣସି ଏକତା ନ ଥିଲା । ସେମାନେ ହଠାତ୍ ନେପୋଲିୟନ ଛାଡ଼ିଦେଇଥିବା ବିସ୍ତୃତ ଅଞ୍ଚଳ ହାତରେ ପାଇଥିବାରୁ ଲୋଭ ସମ୍ବରଣ କରି ତାହାର ବଣ୍ଟନ ବିଷୟରେ ନିର୍ଦ୍ଦିଷ୍ଟ ରାଜିନାମାରେ ପହଞ୍ଚିବା ସେମାନଙ୍କ ପକ୍ଷରେ ଏକ କଷ୍ଟକର ବ୍ୟାପାର ହୋଇ-ପଡ଼ିଥିଲା । ଯେତେବେଳେ କୂଟନୀତିଜ୍ଞମାନେ ଭିଏନାରେ ସମବେତ ହୋଇଥିଲେ ସେତେବେଳେ ପରିଷ୍କାର ଜଣାପଡ଼ିଥିଲା ଯେ ରୁଷିଆ ଅଧିକୃତ ପୋଲାଣ୍ଡ ରାଜ୍ୟର ସମସ୍ତ ଅଞ୍ଚଳକୁ ଗ୍ରାସକରିବା ଉଦ୍ଦେଶ୍ୟରେ ଅଛି ଓ ପ୍ରୁସିଆ ସେହିପରି ସମସ୍ତ ସାକ୍ସନି ଅଞ୍ଚଳକୁ ନିଜ ରାଜ୍ୟରେ ମିଶାଇବା ପାଇଁ ପ୍ରତିଜ୍ଞା କରିଛି । ପ୍ରକୃତରେ ଉଭୟ ରାଜ୍ୟ ମଧ୍ୟରେ ଏକ

ଗୁପ୍ତ ସାଳସ ହୋଇଯାଇଥିଲା । ସେ ସାଳସର ସର୍ତ୍ତ ଅନୁସାରେ ପ୍ରୁସିଆ ପୋଲଣ୍ଡର ଉପରେ ରୁଷିଆର ଦାବକୁ ସମର୍ଥନ କରିବ ଏବଂ ସେହିପରି ରୁଷିଆ ସାକ୍ସନି ଉପରେ ପ୍ରୁସିଆର ଦାବକୁ ସମର୍ଥନ କରିବ । ପ୍ରୁସିଆ ଏତେ ଯୁଦ୍ଧାସକ୍ତ ହୋଇପଡ଼ିଥିଲା ଯେ ଅଷ୍ଟ୍ରିଆ, ଫ୍ରାନ୍ସ ଓ ଗ୍ରେଟବ୍ରିଟେନ ଏକ ଗୁପ୍ତ ପ୍ରତିରକ୍ଷାମୂଳକ ସନ୍ଧି ସ୍ୱାକ୍ଷର କରିଥିଲେ । ଏ ସନ୍ଧି ରୁଷିଆ ଓ ପ୍ରୁସିଆକୁ ଲକ୍ଷ୍ୟରଖି କରାଯାଇଥିବାର ଖବର ପାଇ ପ୍ରୁସିଆକୁ ସାକ୍ସନି ଉପରେ ତାର ଦାବି ପ୍ରତ୍ୟାହାର କରିଥିଲା । ରୁଷିଆ ମଧ୍ୟ ଏକୁଟିଆ ପଡ଼ିଯିବା ଭୟରେ ପୋଲଣ୍ଡ ଉପରୁ ତାର ଦାବି ପ୍ରତ୍ୟାହାର କରିନେଇଥିଲା; କିନ୍ତୁ ଉପନିବେଶ ଗୁଡ଼ିକ ବିଷୟରେ ଆଲୋଚନା କଂଗ୍ରେସରେ କରାଯିବ ନାହିଁ ବୋଲି ଗ୍ରେଟବ୍ରିଟେନର ଜିଦ୍ ଥିଲା । ସେହିପରି ରୁଷିଆ ନିକଟ ପ୍ରାଚ୍ୟ ସମସ୍ୟା ( The Eastern Question ) କୁ ଆଲୋଚନାରେ ସ୍ଥାନ ନ ଦେବା ପାଇଁ ଜୋର୍ ଦେଇଥିଲା । ତେଣୁ ଏହାଫଳରେ କଂଗ୍ରେସର କାର୍ଯ୍ୟ ପରିସର ସଙ୍କୁଚିତ ହୋଇଯାଇଥିଲା ।

## ରାଜ୍ୟମାନଙ୍କର ପୁନର୍ଗଠନ ବ୍ୟବସ୍ଥା
## ( The Territorial Settlement )

ଭିଏନା କଂଗ୍ରେସର ପୁନର୍ଗଠନ କାର୍ଯ୍ୟରେ ଅଧିକାଂଶ ଇଉରୋପକୁ ଅନ୍ତର୍ଭୁକ୍ତ କରାଯାଇଥିଲା । ରାଜ୍ୟ ପୁନର୍ବଣ୍ଟନ ଫଳରେ ରୁଷିଆ ବିଶେଷ ଲାଭବାନ୍ ହୋଇଥିଲା । ସେ ପୋଲଣ୍ଡର ବୃହତ୍ତମ ଅଂଶ ପାଇଥିଲା ଏବଂ ତୁର୍କୀ ସହିତ ଯୁଦ୍ଧକରି ୧୮୧୨ ମସିହାରେ ତାହାଠାରୁ ଲାଭକରିଥିବା ବେସରାବିଆ ଏବଂ ସ୍ୱିଡେନଠାରୁ ୧୮୦୯ ମସିହାରେ ଲାଭକରିଥିବା ଫିନ୍‌ଲ୍ୟାଣ୍ଡ ଉପରେ ତାହାର କର୍ତ୍ତୃତ୍ୱ ବଜାୟ ରଖିଥିଲା । ଏହାଫଳରେ ରୁଷିଆର ସୀମା ପଶ୍ଚିମ ଦିଗରେ ଅଧିକ ବୃଦ୍ଧି ପାଇଥିଲା ଓ ଇଉରୋପର ରାଜନୀତି କ୍ଷେତ୍ରରେ ରୁଷିଆର ଗୁରୁତ୍ୱ କ୍ରମେ ବୃଦ୍ଧିପାଇବାକୁ ଲାଗିଲା । ସ୍ୱିଡେନ, ଫିନଲ୍ୟାଣ୍ଡ ହରାଇବାରୁ ସେହି କ୍ଷତି ପୂରଣ କରିବା ଉଦ୍ଦେଶ୍ୟରେ ଡେନମାର୍କଠାରୁ ନରଓ୍ୱେକୁ ବିଚ୍ଛିନ୍ନ କରି ସୁଇଡେନ ସହିତ ଯୋଗ କରିଦିଆଗଲା । ପ୍ରୁସିଆ ପୋଲଣ୍ଡର କେତେକାଂଶ ରଖିବା ସଙ୍ଗେ ସଙ୍ଗେ ସାକ୍ସନିର ⅖ ଅଂଶ ଓ ପୋମେରାନିଆ ଏବଂ ରାଇନ ନଦୀର ଉଭୟ ତୀରରେ ଥିବା ଅଞ୍ଚଳମାନ ଲାଭକରିଥିଲା । ଅଷ୍ଟ୍ରିଆ, ନେଦରଲ୍ୟାଣ୍ଡ ( ବେଲଜିୟମ ) ଏକାବେଳକେ ତ୍ୟାଗ କରିଥିବା ଯୋଗୁ ତାକୁ କ୍ଷତିପୂରଣ ବାବଦ ଇଟାଲୀର ଲମ୍ବାର୍ଡ଼ି ଓ ଭେନିସିଆ ଏବଂ ଡାଲମେସିଆ ଦିଆଯାଇଥିଲା । ଏହାଛଡ଼ା ଅଷ୍ଟ୍ରିଆ ବେଭେରିଆଠାରୁ ଟାଇରଲ, ଗାଲିସିଆ ନାମକ ପୋଲଣ୍ଡର ଏକ ଅଂଶ ଓ ସାଲ୍‌ଜବର୍ଗ ପାଇଲା । କ୍ରାକାଓ ( Cracow ) ନାମକ ଏକ ପୋଲସ ନଗର ବିବାଦୀୟ ଅଞ୍ଚଳ ହୋଇଥିବାରୁ ତାକୁ ଏକ କ୍ଷୁଦ୍ର ସ୍ୱାଧୀନ ସାଧାରଣତନ୍ତ୍ର ରାଜ୍ୟରେ ପରିଣତ କରାଯିବା ସଙ୍ଗେ ସଙ୍ଗେ ନିରପେକ୍ଷ କରାଯାଇ ତିନିଶକ୍ତି ( ଅଷ୍ଟ୍ରିଆ, ପ୍ରୁସିଆ ଓ ରୁଷିଆ )ର ବାହୁଚ୍ଛାୟାତଳେ ରଖାଯାଇଥିଲା ।

ଗ୍ରେଟବ୍ରିଟେନ ନେପୋଲିୟନଙ୍କର ପ୍ରଧାନ ଶତ୍ରୁ ହୋଇଥିବାରୁ ତାଙ୍କ ବିରୁଦ୍ଧରେ ଯୁଦ୍ଧକରି ସେ ଯଥେଷ୍ଟ କ୍ଷତି ସହିଥିଲା । ତେଣୁ ସେହି କ୍ଷତି ପୂରଣକରିବା ଉଦ୍ଦେଶ୍ୟରେ ଗ୍ରେଟବ୍ରିଟେନ ଇଉରୋପ ମହାଦେଶରେ କେବଳ ଡେନମାର୍କ ତ୍ୟାଗ କରିଥିବା ହ୍ୟାଲିଗୋଲ୍ୟାଣ୍ଡ, ମାଲଟା ଓ ଆୟୋନିୟ ଦ୍ୱୀପପୁଞ୍ଜ ପାଇଥିଲା । ସେ କିନ୍ତୁ ତା'ହାର ଔପନିବେଶିକ ସ୍ଥିତିକୁ ଶକ୍ତିଶାଳୀ କରିବା ପାଇଁ ଉତ୍ତମାଶା ଅନ୍ତରୀପ ( The Cape of Good Hope ), ସିଂହଳ ( Ceylon ), ମରିସସ୍ ( Mauritius ) ଏବଂ ପଶ୍ଚିମ ଦ୍ୱୀପପୁଞ୍ଜ ( The West Indies ) ର ଅନେକଗୁଡ଼ିଏ ଦ୍ୱୀପ ଲାଭକରିଥିଲା ।

ଭିଏନା କଂଗ୍ରେସ ନେପୋଲିୟନଙ୍କର ନୀତିକୁ ଭିତ୍ତି କରି ଜର୍ମାନୀର ପୁନର୍ଗଠନ କରିଥିଲେ । ୩୬୦ଟି ଜର୍ମାନ ରାଜ୍ୟକୁ କମାଇ ଅଷ୍ଟ୍ରିୟା ଓ ପ୍ରୁସିଆ ସମେତ ୩୯ଟି ରାଜ୍ୟରେ ପରିଣତ କରାଯାଇଥିଲା । ଏହି ୩୯ଟି ସ୍ୱାଧୀନ ରାଜ୍ୟକୁ ନେଇ ଏକ ସଂହତିବିହୀନ ଜର୍ମାନ ଜାତୀୟ ସଙ୍ଘ (a loose federation of Germany) ସୃଷ୍ଟି କରାଗଲା ଏବଂ ସେଥିରେ ଅଷ୍ଟ୍ରିୟା ରହିଲା ସଭାପତି ଏବଂ ପ୍ରୁସିଆ ରହିଲା ଉପସଭାପତି । ଇଟାଲୀରେ ନେପୋଲିୟନ ଯେଉଁ ଐକ୍ୟ ପ୍ରତିଷ୍ଠା କରିଥିଲେ ତାକୁ ନଷ୍ଟ କରାଯାଇ ଉତ୍ତର ଇଟାଲୀ ଅଷ୍ଟ୍ରିୟାକୁ ଦିଆଗଲା ଏବଂ ଅନ୍ୟ ଅଂଶକୁ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ବିଭକ୍ତ କରାଗଲା । ସାଧାରଣତନ୍ତ୍ର ରାଜ୍ୟମାନଙ୍କର ଭିଏନା କଂଗ୍ରେସ ଦୃଷ୍ଟିରେ କୌଣସି ପଦମର୍ଯ୍ୟାଦା ନଥିବାରୁ ଭେନିସ୍ କିମ୍ବା ଜେନୋଆ ସାଧାରଣତନ୍ତ୍ର ରାଜ୍ୟକୁ ପୁନର୍ଜ୍ଜୀବିତ ନ କରାଯାଇ ପ୍ରଥମଟିକୁ ଅଷ୍ଟ୍ରିୟାକୁ ଓ ଦ୍ୱିତୀୟଟିକୁ ସାର୍ଡିନିୟାକୁ ଦିଆଯାଇଥିଲା । ସୁଇସ ରାଷ୍ଟ୍ରସଙ୍ଘ ପୁନଃ ସଙ୍ଗଠିତ ହୋଇଥିଲା ଏବଂ ଏଥିରେ ଅନେକଗୁଡ଼ିଏ ନୂଆ କ୍ୟାଣ୍ଟନ ଯୋଗକରାଯାଇ ତାହାର ଶକ୍ତି ବୃଦ୍ଧି କରାଯାଇଥିଲା । ଭିଏନା କଂଗ୍ରେସ ଏହାକୁ ଏକ ନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କରିଥିଲା ।

ଏହିପରିଭାବରେ ଭିଏନା କଂଗ୍ରେସଦ୍ୱାରା ଇଉରୋପୀୟ ଦେଶଗୁଡ଼ିକର ପୁନର୍ଗଠନ କରାଯାଇଥିଲା ଏବଂ ଏହି ଦେଶଗୁଡ଼ିକର ଯେଉଁ ନୂତନ ସୀମା ନିର୍ଦ୍ଧାରଣ କରାଯାଇଥିଲା, ତାହା ପ୍ରାୟ ପଚାଶ ବର୍ଷ ଯାଏଁ ଅପରିବର୍ତ୍ତିତ ରହିଥିଲା । ଯଦିଓ ଭିଏନା କଂଗ୍ରେସର ସଦସ୍ୟମାନେ ବାରମ୍ବାର ପ୍ରଚାର କରୁଥିଲେ ଯେ ଇଉରୋପର ପୁନର୍ବଣ୍ଟନ ଓ ପୁନର୍ଗଠନ ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ଏବଂ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ ଦିଗରେ ସମୟୋଚିତ ପଦକ୍ଷେପ ପ୍ରକୃତ କ୍ଷେତ୍ରରେ ସେମାନେ ନିଜ ନିଜର ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଏ କାର୍ଯ୍ୟ ସମ୍ପାଦନ କରିଥିଲେ । ତାଛଡ଼ା ଭିଏନା କଂଗ୍ରେସର ସଦସ୍ୟମାନେ ଅଭିଜାତ ସମ୍ପ୍ରଦାୟ ଲୋକ ହୋଇଥିବାରୁ ଗଣତନ୍ତ୍ର ବା ଜାତୀୟବାଦ ନୀତି ସେମାନଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ହୋଇନଥିଲା ।

ଭିଏନା କଂଗ୍ରେସରେ ମିଳିତ ହୋଇଥିବା ଇଉରୋପୀୟ ରାଜନୀତିଜ୍ଞମାନେ ଇଉରୋପ ପୁନର୍ଗଠନ କରିବା ଦିଗରେ ଅନେକଗୁଡ଼ିଏ ନୀତି ଅବଲମ୍ବନ କରିଥିଲେ ବୋଲି

କୁହାଯାଏ । ସେହି ନୀତିଗୁଡ଼ିକ ହେଲା—ନ୍ୟାଯ୍ୟ ଅଧିକାର (legitimacy), କ୍ଷତିପୂରଣ ( reward or compensation ) ଓ ଶକ୍ତିସାମ୍ୟ ( balance of power )

## ନ୍ୟାଯ୍ୟ ଅଧିକାର ( Legitimacy )

ନ୍ୟାଯ୍ୟ ଅଧିକାର ନୀତି ପ୍ରୟୋଗଦ୍ୱାରା ଇଉରୋପୀୟ ରାଜନୀତିଜ୍ଞମାନେ ଫରାସୀ ବିପ୍ଳବର ପୂର୍ବାବସ୍ଥାର ପୁନଃପ୍ରତିଷ୍ଠା ଚାହିଁଥିଲେ । ତେଣୁ ଫରାସୀବିପ୍ଳବ ପୂର୍ବରୁ ଯେଉଁ ରାଷ୍ଟ୍ରର ଅଧୀନରେ ଯେଉଁସବୁ ଅଞ୍ଚଳ ଥିଲା, କିମ୍ବା ଯେଉଁ ଦେଶକୁ ଯେଉଁ ରାଜବଂଶ ରାଜତ୍ୱ କରୁଥିଲେ ସେ ଗୁଡ଼ିକୁ ନିଜ ନିଜ ସ୍ଥାନରେ ପୁନଃ ପ୍ରତିଷ୍ଠିତ କରିବା ପ୍ରୟୋଜନ ହୋଇଥିଲା । ତେଣୁ ଭିଏନା ସନ୍ଧିର ସର୍ତ୍ତ ଅନୁସାରେ ବୁରବନ ପରିବାର (Bourbon family ) ର ଆଧିପତ୍ୟ ଫ୍ରାନ୍ସ, ସ୍ପେନ୍ ଓ ନେପ୍‌ଲ୍‌ସରେ ପୁନଃ ପ୍ରତିଷ୍ଠିତ ହୋଇଥିଲା । ହଲଣ୍ଡରେ ଅରେଞ୍ଜ ପରିବାର ( house of orange )ର ଶାସନ, ସାରଡ଼ିନିଆ-ପିଡ଼୍‌ମଣ୍ଟରେ ସ୍ୟାଭୟ ପରିବାର (house of savoy)ର ଶାସନ ପୁନଃ ପ୍ରତିଷ୍ଠା କରାଯାଇଥିଲା । ସେହି ନ୍ୟାଯ୍ୟ ଅଧିକାର ନୀତି ଅନୁସାରେ ପୋପ୍ ତାଙ୍କର ମଧ୍ୟ ଇଟାଲୀ ସ୍ଥିତ ରାଜ୍ୟ ଫେରିପାଇଲେ । ରହିନ୍ ରାଷ୍ଟ୍ରସଂଘ (the confederation of Rhine)ରେ ନେପୋଲିୟନଙ୍କଦ୍ୱାରା ସାମିଲ କରାଯାଇଥିବା ଜର୍ମାନ ରାଷ୍ଟ୍ରମାନଙ୍କରେ ସେମାନଙ୍କର ରଜାମାନଙ୍କୁ ପୁନଃ ସ୍ଥାପନ କରାଯାଇ ତାକୁ ଭାଙ୍ଗି ଦିଆଯାଇଥିଲା । ସୁଇସ୍ ରାଷ୍ଟ୍ରସଂଘର ପୁନଃ ପ୍ରତିଷ୍ଠା କରାଯାଇ ତାକୁ ସୁଇଜରଲ୍ୟାଣ୍ଡ କୁହାଗଲା ଏବଂ ସୁଇଜରଲ୍ୟାଣ୍ଡକୁ ବୃହତ୍ ଶକ୍ତିମାନେ ନିରପେକ୍ଷ ରାଷ୍ଟ୍ର ବୋଲି ସ୍ୱୀକାର କରିବା ସଙ୍ଗେ ସଙ୍ଗେ ତାର ନିରପେକ୍ଷତା ରକ୍ଷା କରିବା ଦାୟିତ୍ୱ ମଧ୍ୟ ନେଇଥିଲେ । ଏହିସବୁ ବ୍ୟବସ୍ଥା କରିବା ସତ୍ତ୍ୱେ ଦେଖାଯାଇଥିଲା ଯେ 'ନ୍ୟାଯ୍ୟ ଅଧିକାର ନୀତି' ସବୁକ୍ଷେତ୍ରରେ ସମାନଭାବରେ ପ୍ରୟୋଗ କରାଯାଇ ନଥିଲା । କାରଣ 'କ୍ଷତିପୂରଣ' ଦେବା ନୀତି ଗ୍ରହଣକରିବାଦ୍ୱାରା 'ନ୍ୟାଯ୍ୟ ଅଧିକାର ନୀତି' ବହୁ ପରିମାଣରେ ବ୍ୟାହତ ହୋଇଥିଲା । ଗୋଟିଏ ରାଜ୍ୟର ଅଞ୍ଚଳକୁ କ୍ଷତିପୂରଣ ହିସାବରେ ଅନ୍ୟ ଗୋଟିଏ ରାଜ୍ୟରେ ସଂଯୁକ୍ତ କରିବା ବ୍ୟବସ୍ଥା ନୀତି କଦାପି ନ୍ୟାଯ୍ୟବୋଲି ଗ୍ରହଣ କରାଯାଇ ପାରିବନାହିଁ । ତା' ଛଡ଼ା ଭେନିସ୍ ଓ ଜେନୋଆ ସାଧାରଣତନ୍ତ୍ର ରାଷ୍ଟ୍ରଦ୍ୱୟର ପୁନଃପ୍ରତିଷ୍ଠା କରା ନ ଯାଇ ପ୍ରଥମଟିକୁ ଅଷ୍ଟ୍ରିଆ ରାଜ୍ୟରେ ଓ ଦ୍ୱିତୀୟଟିକୁ ସାରଡ଼ିନିଆ ରାଜ୍ୟରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଫଳରେ ଏହି ସାଧାରଣତନ୍ତ୍ର ରାଜ୍ୟଦୁଇଟି ସେମାନଙ୍କର ସ୍ୱାଧୀନତା ଫେରିପାଇଲେ ନାହିଁ । ସେହିପରି ଜର୍ମାନୀର ଯେଉଁ ଯେଉଁ କ୍ଷୁଦ୍ରରାଜ୍ୟଗୁଡ଼ିକ ସେମାନଙ୍କର ପଡ଼ୋଶୀ ବଡ଼ ବଡ଼ ରାଜ୍ୟମାନଙ୍କଦ୍ୱାରା ଅଧିକୃତ ହୋଇଥିଲା, ସେହି ସବୁ କ୍ଷୁଦ୍ରରାଜ୍ୟ ପ୍ରତି 'ନ୍ୟାଯ୍ୟ ଅଧିକାର ନୀତି' ପ୍ରୟୋଗ କରାଯାଇନଥିଲା । ଫଳରେ ସ୍ୱାଧୀନତା ପାଇବାରୁ ସେମାନେ ବଞ୍ଚିତ ହୋଇଥିଲେ ।

## କ୍ଷତିପୂରଣ ( Compensation or Reward )

ନେପୋଲିୟନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହିବାଦ୍ୱାରା ବିଜୟୀ ଶକ୍ତିମାନଙ୍କୁ ନାନା ପ୍ରକାର କ୍ଷତି ସହିବାକୁ ପଡ଼ିଥିଲା । ତେଣୁ ସେମାନେ ସେହି କ୍ଷତିପୂରଣ ନିମନ୍ତେ ବ୍ୟଗ୍ର ଥିଲେ । ସେକ୍ରେଟାରୀ ଜେନ୍‌ଟ୍ଜ୍ ଯଥାର୍ଥରେ କହିଥିଲେ ଯେ 'ଭିଏନା କଂଗ୍ରେସ ଥିଲା ବିଜିତ ଶକ୍ତିମାନଙ୍କଠାରୁ ଲୁଣ୍ଠିତ ଅଞ୍ଚଳଗୁଡ଼ିକର ବଣ୍ଟନ ପାଇଁ ବିଜେତାମାନଙ୍କର ଏକ ସମ୍ମିଳନୀ' (Secretary Gentz said, 'It was a meeting place of the victors to divide the spoils of the vanquished' ) । ଇଂଲଣ୍ଡ, ରୁଷିଆ, ପ୍ରୁସିୟା ଓ ଅଷ୍ଟ୍ରିୟା ନେପୋଲିୟନଙ୍କୁ ପରାସ୍ତକରି ଯଥାଯଥ କ୍ଷତିପୂରଣ ଗ୍ରହଣ କରିଥିଲେ । ଇଂଲଣ୍ଡ ସିଂହଳଦ୍ୱୀପ, ଦକ୍ଷିଣ-ଆଫ୍ରିକା, ଗୁଇୟାନା ଓ ନିକଟରେ ଥିବା କେତେକ ଡ଼ଚ୍‌ମାନଙ୍କ ଓ ଫରାସୀ ବାଣିଜ୍ୟ କେନ୍ଦ୍ର ଦଖଲ କରିଥିଲା । ରୁଷିଆକୁ ଫିନଲ୍ୟାଣ୍ଡ ଓ ପ୍ରୁସିୟାକୁ ପୋମେରାନିୟା ଦିଆଯିବାରୁ ସ୍ୱିଡେନକୁ କ୍ଷତିପୂରଣ ସ୍ୱରୂପ ନରୱେକୁ ଅର୍ପଣ କରାଗଲା । ଅଷ୍ଟ୍ରିୟା ବେଲଜିୟମ ଉପରୁ ତାର ଅଧିକାର ପ୍ରତ୍ୟାହାର କରିନେଇ ଥିବାରୁ ତାକୁ କ୍ଷତିପୂରଣ ବାବଦରେ ଦକ୍ଷିଣ ଇଟାଲୀର ଅନେକାଂଶ ହସ୍ତାନ୍ତର କରାଯାଇଥିଲା ଏବଂ ବେଲଜିୟମକୁ ହଲାଣ୍ଡ ଅଧୀନରେ ଗ୍ରୁପ୍ତିଦିଆଯାଇଥିଲା । 'କ୍ଷତିପୂରଣ' ନୀତି ଭିତ୍ତିରେ ବିଜୟୀ ଶକ୍ତିମାନଙ୍କୁ ପୁରସ୍କାର ଦିଆଗଲାବେଳେ ପରାଜିତ ଶକ୍ତି ଫ୍ରାନ୍ସ ଏବଂ ତାହାର ବନ୍ଧୁ, ସ୍ୟାକ୍‌ସନି ଓ ଡେନମାର୍କଙ୍କୁ ଶାସ୍ତି ଭୋଗିବାକୁ ପଡ଼ିଥିଲା । ଏହି ନୀତି ଅନୁସରଣ କରିବାଯୋଗୁ 'ନ୍ୟାଯ୍ୟ ଅଧିକାର' ନୀତିକୁ କେତେକ କ୍ଷେତ୍ରରେ ବର୍ଜନ କରାଯାଇଥିଲା । ଫଳରେ କେତେକ ଦେଶ ପ୍ରତି ଯେ ଅନ୍ୟାୟ ଓ ଅବିଚାର କରାଯାଇଥିଲା, ଏଥିରେ ସନ୍ଦେହ ନାହିଁ ।

## ଶକ୍ତି-ସାମ୍ୟ ( Balance of Power )

ବିଜୟୀ ଶକ୍ତିମାନଙ୍କ ମଧ୍ୟରେ ପରସ୍ପର ସନ୍ଦେହ ଓ ବିଦ୍ୱେଷ ଫଳରେ 'ଶକ୍ତି-ସାମ୍ୟ' ନୀତିର ପ୍ରୟୋଜନ ହେଲା । ଫ୍ରାନ୍ସ ଯେପରି ଭବିଷ୍ୟତରେ ଇଉରୋପର 'ଶକ୍ତି-ସାମ୍ୟ' ନଷ୍ଟ କରି ନ ପାରିବ ସେଥିପାଇଁ ସର୍ବପ୍ରଥମେ ତାହା ଉପରେ ଏହି ନୀତି ପ୍ରୟୋଗ କରାଯାଇଥିଲା । ଇଉରୋପୀୟ ଯୁଦ୍ଧର ପୁନରାବୃତ୍ତିର ଆଶଙ୍କା ଥିବାରୁ ଭିଏନା କଂଗ୍ରେସ 'ଶକ୍ତି-ସାମ୍ୟ' ନୀତି ଅବଲମ୍ବନ କରି ଇଉରୋପରେ ଭାରସାମ୍ୟ ରକ୍ଷା କରିବା ପାଇଁ ଉଦ୍ୟମ କରିଥିଲା । ରୁଷିଆ, ପ୍ରୁସିୟା ଓ ଅଷ୍ଟ୍ରିୟା—ଏହି ତିନୋଟି ଶକ୍ତିଶାଳୀ ରାଜ୍ୟକୁ ଏପରି ସବୁ ଅଞ୍ଚଳ ଅଧିକାର କରିବାକୁ ଦିଆଯାଇଥିଲା ଯେପରିକି ସେମାନେ ପରସ୍ପର ମଧ୍ୟରେ ଶକ୍ତି-ସାମ୍ୟ ବଜାୟ ରଖି ପାରିବେ । ଇଉରୋପୀୟ ରାଜ୍ୟମାନଙ୍କ ମଧ୍ୟରେ 'ଶକ୍ତି-ସାମ୍ୟ' ସ୍ଥାପନ କରି ଶାନ୍ତି ପ୍ରତିଷ୍ଠା ଅଭିପ୍ରାୟରେ ଭିଏନା କଂଗ୍ରେସର ସଦସ୍ୟମାନେ ଫ୍ରାନ୍ସକୁ

ଗୃଣ୍ଡଦଗରୁ ଛୋଣ୍ଡଆ ଗଷ୍ଟ୍ରମାନଦ୍ୱାଗ୍ର ପରବେଷ୍ଟିତ କରଥିଲେ । ଭବଷ୍ୟତରେ ଫ୍ରାନ୍ସକୁ ଇଉରୋପର ଶାନ୍ତିଭଙ୍ଗ କରିବାକୁ ସୁଯୋଗ ନ ଦେବାପାଇଁ ଏହି ପଦକ୍ଷେପ ଗ୍ରହଣ କରାଯାଇଥିଲା । ଭିୟେନା କଂଗ୍ରେସର ସଦସ୍ୟମାନେ 'ଶକ୍ତି-ସାମ୍ୟ' ନୀତି ଅବଲମ୍ବନ କରିବା ଫଳରେ ଲୋକମାନଙ୍କ ଇଚ୍ଛା ବିରୁଦ୍ଧରେ ଏବଂ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟମାନଙ୍କର ସ୍ୱାର୍ଥ ବିରୁଦ୍ଧରେ ସେମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିଥିଲା ।

ଭିୟେନା କଂଗ୍ରେସର ସଦସ୍ୟମାନେ କେତେକ ପରିମାଣରେ ଆନ୍ତର୍ଜାତିକ ଭାବଧାରା-ଦ୍ୱାରା ପରିଚାଳିତ ହୋଇଥିଲେ । ଏକ ଇଉରୋପୀୟ 'ଶକ୍ତି-ସଙ୍ଘ' (Concert of Europe) ଗଠନକରି କିଛିକାଳପାଇଁ ସେମାନେ ଇଉରୋପର ଏକତା ଏବଂ ସଂହତି ସୁଦୃଢ଼ କରିପାରିଥିଲେ । ଏହାଛଡ଼ା ସେମାନେ ମାନବିକ ସ୍ୱାର୍ଥ ଦୃଷ୍ଟିରୁ, ଆନ୍ତର୍ଦେଶୀୟ ନଦୀମାନଙ୍କରେ ଅବାଧ ନୌ ପରିବହନ (ବିଶେଷତଃ ରାଇନ୍ ନଦୀ ପ୍ରତି ଏହା ପ୍ରଯୁଜ୍ୟ ଥିଲା) ଏବଂ ସମୁଦ୍ରରେ କ୍ରୀତଦାସ ବ୍ୟବସାୟର ସାଧାରଣ ନିନ୍ଦା । ଏହି ଦୁଇଟି ନୀତି ଗ୍ରହଣ କରିଥିଲେ; କିନ୍ତୁ ଏହି ଦୁଇଟି ନୀତିକୁ କାର୍ଯ୍ୟରେ ପରିଣତ କରିବା ପାଇଁ କୌଣସି ପଦକ୍ଷେପ ନିଆଯାଇ ନଥିଲା । ଆନ୍ତର୍ଜାତିକତା କ୍ଷେତ୍ରରେ ଭିୟେନା କଂଗ୍ରେସର ଏକ ବିଶିଷ୍ଟ ଅବଦାନ ହେଲା ସ୍ୱିଜରଲ୍ୟାଣ୍ଡର ନିରପେକ୍ଷତା ।

ଯଦି ଭିୟେନା କଂଗ୍ରେସର ସଦସ୍ୟମାନଙ୍କ ମଧ୍ୟରେ ଆନ୍ତର୍ଜାତିକ ମନୋଭାବର ଅଭାବ ଦେଖାଯାଇଥିଲା, ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ସେମାନେ ଜାତୀୟତାବାଦ ନୀତିକୁ ସମ୍ପୂର୍ଣ୍ଣରୂପେ ଉପେକ୍ଷା କରିଥିଲେ । ବେଲଜିୟମର ଅଧିବାସୀମାନଙ୍କ ଇଚ୍ଛା ବିରୁଦ୍ଧରେ ବେଲଜିୟମକୁ ହଲାଣ୍ଡ ସହିତ ସଂଯୁକ୍ତକରି ବିଜ୍ଞତା ଓ ଦୂରଦୃଷ୍ଟିର କୌଣସି ପରିଚୟ ଦେଇ ନ ଥିଲେ । ହଲାଣ୍ଡ ଏବଂ ବେଲଜିୟମ ଥିଲେ ଦୁଇଟି ଭିନ୍ନଜାତୀୟ ଓ ଭିନ୍ନ ଐତିହ୍ୟ ସମ୍ପନ୍ନ ଦେଶ । ଏହି ଦୁଇଟିକୁ ଏକତ୍ରିତ କରିବାଦ୍ୱାରା ଜାତୀୟତାବାଦ ନୀତିର ବିରୁଦ୍ଧାଚରଣ କରାଯାଇଥିଲା । ସେହିପରି ନରୱେବାସୀଙ୍କ ମତବିରୁଦ୍ଧରେ ନରୱେକୁ ସୁଇଡେନ ସହିତ ସଂଯୁକ୍ତ କରାଯାଇ ଜାତୀୟତାବାଦ ନୀତିର ଅବଜ୍ଞା କରାଯାଇଥିଲା । ଭିୟେନା କଂଗ୍ରେସ ଇଟାଲୀକୁ ସାତୋଟି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତକରି ଇଟାଲୀୟ-ମାନଙ୍କ ଜାତୀୟତାବାଦ ପ୍ରତି କୁଠାରଘାତ କରିଥିଲା । ତା'ଛଡ଼ା ଜର୍ମାନମାନଙ୍କ ପରି ଇଟାଲୀୟମାନଙ୍କୁ କୌଣସି ଜାତୀୟ-ସଂଘ ପ୍ରତିଷ୍ଠା କରିବାକୁ ଦିଆଯାଇନଥିଲା । ଇଟାଲୀକୁ ଏକଶାସନାଧୀନରେ ନ ରଖି ପୁନରାୟ ଅଷ୍ଟ୍ରିଆ ଓ ବୁରବନ୍ ରାଜବଂଶ ଅଧୀନରେ ରଖିବା-ଦ୍ୱାରା ଇଟାଲୀର ଏକତ୍ରୀକରଣ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଗଲା । ମେଟାରନିକ୍‌ଙ୍କ ଭାଷାରେ 'ଇଟାଲୀ ନାମଟି କେବଳ ଏକ ଭୌଗୋଳିକ ସଂଜ୍ଞାରେ ପରିଣତ ହୋଇଥିଲା ।' (In the words of Metternich 'Italy became a geographical expression.)' ବାସ୍ତବରେ ଇଟାଲୀ ବୋଲି କହିଲେ ଏକ ସମଗ୍ର ଦେଶକୁ ବୁଝାଉ ନ ଥିଲା । ପୋଲାଣ୍ଡବାସୀମାନଙ୍କର ସ୍ୱାଧୀନ ପୋଲାଣ୍ଡ ରାଜ୍ୟ ପୁନର୍ଗଠନର ଆଶା

ସହାନୁଭୂତର ସହତ ଭିଏନା କଂଗ୍ରେସରେ ବିଗ୍ଭର କରଯାଇନଥିଲ । ପ୍ରକୃତପକ୍ଷେ ଏହି କଂଗ୍ରେସ ପୋଲଣ୍ଡ ବିଭାଜନକୁ ସ୍ୱୀକୃତ ଦେଇ ପୋଲଣ୍ଡବାସୀଙ୍କର ଜାତୀୟତାବାଦ ପ୍ରତ ଅବଜ୍ଞା ପ୍ରଦର୍ଶନ କରଥିଲ; କନ୍ତୁ କଂଗ୍ରେସର ପରେପର ବାହାରେ ଜାତୀୟତାବାଦ ପ୍ରତ ସହାନୁଭୂତ ଦେଖିବାକୁ ମିଳଥିଲ । ରୁଷିଆର ଜାର ପ୍ରଥମ ଆଲେକ୍‌ଜାଣ୍ଡାର ରୁଷୀୟ ପୋଲଣ୍ଡକୁ ଏକ ରାଜ୍ୟରେ ପରଣତକର ତାର ଶାସନକର୍ତ୍ତା ହୋଇଥିଲେ ।

ଭିଏନା କଂଗ୍ରେସର ସଦସ୍ୟମାନେ ଫରାସୀ ବିପ୍ଳବର ଭୟରୁ ରକ୍ଷାପାଇବା ପାଇଁ ଫରାସୀ ବିପ୍ଳବର ପୂର୍ବ ଅବସ୍ଥା ଫେରାଇ ଆଣିବାକୁ ଏତେଦୂର ବ୍ୟଗ୍ର ଥିଲେ ଯେ ସେମାନେ ଫରାସୀ ବିପ୍ଳବ-ଜାତ ଗଣତନ୍ତ୍ରବାଦ ଓ ଜାତୀୟତାବାଦ ନୀତକୁ ସମ୍ପୂର୍ଣ୍ଣରୂପେ ଅଗ୍ରାହ୍ୟ କରଥିଲେ । ଏହା ସ୍ୱାଭାବକ ଯେ ଭିଏନା କଂଗ୍ରେସରେ ଉପସ୍ଥିତ ଥିବା ଦୂରଦର୍ଶୀ ରାଜନୀତଜ୍ଞମାନେ ଫରାସୀ ବିପ୍ଳବର ଦର୍ଶନକୁ ଉପେକ୍ଷା କରଥିଲେ ଏବଂ ଏହା ମଧ୍ୟ ସ୍ୱାଭାବକ ଯେ ଫରାସୀ ବିପ୍ଳବର ଦାନ ନୂତନ ଭାବଧାରା—ଗଣତନ୍ତ୍ରବାଦ ଓ ଜାତୀୟତା-ବାଦର ଶକ୍ତିକୁ ହେୟଜ୍ଞାନ କରଥିଲେ; କନ୍ତୁ ଏପର କରବାଦ୍ୱାରା ଭିଏନା କଂଗ୍ରେସର ନର୍ମାତାମାନେ ବହୁ ପରଶ୍ରମ କର ନର୍ମାଣ କରଥିବା ସମୁଦାୟ ସୌଧଟିକୁ ଦୁର୍ବଳ କର-ଦେଇଥିଲେ । ସେମାନଙ୍କର ଭୁଲ ଧାରଣା ଥିଲ ଯେ 'ଫରାସୀ ବିପ୍ଳବ ଏକ କ୍ଷଣିକ ଝଡ଼; ମାତ୍ର ଇଉରୋପର ସୌଧଟିକୁ ପୁରାତନ ଭିତ୍ତି ଉପରେ ଟିକଏ ଅଧିକ ଶକ୍ତକର ପୁନର୍ଗଠନ କଲେ, ତାହା ଭବଷ୍ୟତରେ ଏହିପର ଝଡ଼ଗୁଡ଼ିକୁ ପୂରାପୂର ପ୍ରତରୋଧ କର-ପାରବ ।' ଯେକୌଣସି ଲୋକ ଏଥିରେ ଆନ୍ତରିକତା ଭାବ ଲକ୍ଷ୍ୟ କରପାରବ । ଯଦ ଚାଳିଶ ବର୍ଷ ପର୍ଯ୍ୟନ୍ତ କୌଣସି ବ୍ୟାପକ ଇଉରୋପୀୟ ସଂଗ୍ରାମର ଆବର୍ଭାବ ହୋଇ ନ ଥିଲା, ତାହାର କାରଣ ହେଲ ଭିଏନା କଂଗ୍ରେସର ରାଜନାମାରେ ସ୍ୱାକ୍ଷର କରଥିବା ଇଉରୋପୀୟ ଶକ୍ତିମାନେ ବ୍ୟକ୍ତିଗତ ବା ସମବେତ ଭାବରେ ବିପ୍ଳବର ପ୍ରବଳ ପ୍ରତରୋଧ କରଥିଲେ ।

ଏ କଥା ସ୍ୱୀକାର କରବାକୁ ହେବ ଯେ ଭିଏନା କଂଗ୍ରେସରେ ଯେଉଁସବୁ ନଷ୍ପତ୍ତି କରାଯାଇଥିଲା, ସେଥିମଧ୍ୟରୁ ଅଳ୍ପ କେତେକ ସ୍ଥାୟୀ ହୋଇଥିଲାବେଳେ ଅଧିକାଂଶ କ୍ଷଣସ୍ଥାୟୀ ହୋଇଥିଲ । ଭିଏନା କଂଗ୍ରେସର କୂଟନୀତଜ୍ଞମାନେ ଜନମତକୁ ଭ୍ରୂକ୍ଷେପ ନ କର ଯେଉଁ ନଷ୍ପତ୍ତି କରଥିଲେ, ତାହା କାଳକ୍ରମେ ଲଙ୍ଘନ କରାଯାଇଥିଲା । କେତେକ ଐତହାସିକଙ୍କ ମତରେ ଊନବଂଶ ଶତାବ୍ଦୀର ଇତହାସ ଭିଏନା କଂଗ୍ରେସର କାର୍ଯ୍ୟାବଳୀକୁ ଅଗ୍ରାହ୍ୟ କରବାରେ ମୁଖ୍ୟ ଭୂମିକା ଗ୍ରହଣ କରଥିଲା । ଭିଏନା କଂଗ୍ରେସର ଦୋଷତ୍ରୁଟି ସତ୍ତ୍ୱେ ଏହା ସ୍ୱୀକାର କରବାକୁ ପଡ଼ିବ ଯେ ସେଠାରେ ଉପସ୍ଥିତ ଥିବା କୂଟନୀତଜ୍ଞମାନେ ଅବାଧରେ ରାଜ୍ୟ-ପୁନର୍ଗଠନର ସୁଯୋଗ ପାଇ ନ ଥିଲେ; କାରଣ କେତେକ ଶାସକଙ୍କୁ ସେମାନଙ୍କର ରାଜ୍ୟମାନଙ୍କରେ ପୁନଃପ୍ରତଷ୍ଠିତ କରବା ଏବଂ ଅନ୍ୟ କେତେକଙ୍କୁ କ୍ଷତପୂରଣ ଦେବାପାଇଁ ପୂର୍ବରୁ ଯେଉଁ ପ୍ରତଶ୍ରୁତ ଦଆହୋଇଥିଲା ଏବଂ ସେମାନଙ୍କ ସହିତ ଯେଉଁ

ଚୁକ୍ତି କରାଯାଇଥିଲା, ତାହା ସେମାନଙ୍କର ଏହି କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ବିଶେଷତଃ ସେହି ସମୟର ପରିସ୍ଥିତି ମଧ୍ୟ ସେମାନଙ୍କର କାର୍ଯ୍ୟକୁ ପ୍ରଭାବିତ କରିଥିଲା । ତା'ଛଡ଼ା ସେମାନେ ଭବିଷ୍ୟତ ଦ୍ରଷ୍ଟା ନ ଥିଲେ । ତେଣୁ ଦୂରବର୍ତ୍ତୀ ସମ୍ଭାବ୍ୟ ଘଟଣା ପାଇଁ ଆବଶ୍ୟକ ବ୍ୟବସ୍ଥା କରିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ଏ କଥା ସତ୍ୟ ଯେ ଭିଏନା କଂଗ୍ରେସର କାର୍ଯ୍ୟଗୁଡ଼ିକ ପ୍ରାୟ ଅର୍ଦ୍ଧଶତାବ୍ଦୀ ଯାଏ ସ୍ଥାୟୀ ହୋଇଥିଲା । କୌଣସି ଆନ୍ତର୍ଜାତିକ ଚୁକ୍ତି ଏହାଠାରୁ ଅଧିକକାଳ ସ୍ଥାୟୀ ହେବାର ଦୃଷ୍ଟାନ୍ତ ଦେଖାଯାଏ । ସେ ଯାହାହେଉ ଭିଏନା କଂଗ୍ରେସରେ ହୋଇଥିବା ସନ୍ଧିନାମା ସତ୍ୟ ଓ ନ୍ୟାୟ ଉପରେ ଯେ ପ୍ରତିଷ୍ଠିତ ନ ଥିଲା, ତାହା କେହି ଅସ୍ୱୀକାର କରିବେନାହିଁ ।

---

# ସପ୍ତମ ଅଧ୍ୟାୟ

## ଇଉରୋପୀୟ ଶକ୍ତି-ସଂଘ ( The Concert of Europe )

ଇଉରୋପୀୟ ଶକ୍ତି-ସଂଗଠନ ହେଲା ନେପୋଲିୟନଙ୍କ ବିରୁଦ୍ଧରେ ସଂଘଟିତ ମିତ୍ରଶକ୍ତି ସଂଘର ଉଦ୍‌ବୃତ୍ତ । ୧୮୧୩ ମସିହା ଅଭିଯାନ ସମୟରେ ଫ୍ରାନ୍‌ସ ସହିତ ଯୁଦ୍ଧରେ ବ୍ୟାପୃତ ଥିବା ଚାରି ବୃହତ୍‌ଶକ୍ତି କ୍ୟାସଲରେଙ୍କଦ୍ୱାରା ପ୍ରଭାବିତ ହୋଇ ଏକ ରାଜିନାମାରେ ଉପନୀତ ହୋଇଥିଲେ । ଏହି ରାଜିନାମା ଅନୁସାରେ ଫ୍ରାନ୍‌ସ ସହିତ ଶାନ୍ତି ସ୍ଥାପନ କରିସାରିଲା ପରେ ତାକୁ ସ୍ଥାୟୀ କରିବାକୁ ଓ ଭବିଷ୍ୟତରେ ଫରାସୀ ଆକ୍ରମଣର ସମ୍ମୁଖୀନ ହେବାପାଇଁ ନିର୍ଦ୍ଦିଷ୍ଟ ସଂଖ୍ୟକ ସୈନ୍ୟଦଳ ଯୋଗାଇବାକୁ ଚଉମଣ୍ଟଠାରେ ଚୁକ୍ତିବଦ୍ଧ ହୋଇଥିଲେ । ଚଉମଣ୍ଟ ଚୁକ୍ତି କୋଡ଼ିଏ ବର୍ଷପର୍ଯ୍ୟନ୍ତ ବଳବତ୍ତର ହୋଇଥିଲା । ଏହି ବ୍ୟବସ୍ଥା ସତ୍ତ୍ୱେ ବୃହତ୍ ଶକ୍ତିମାନେ ନେପୋଲିୟନଙ୍କର ଏଲ୍‌ବାରୁ ଫ୍ରାନ୍‌ସକୁ ପ୍ରତ୍ୟାବର୍ତ୍ତନ ଖବର ପାଇଲା ମାତ୍ରେ ଏହି ଚୁକ୍ତିର ନବୀକରଣ କରିଥିଲେ । ତା'ପରେ ୧୮୧୫ ମସିହା ନଭେମ୍ବର ୧୫ ତାରିଖରେ ପୂର୍ବ ବ୍ୟବସ୍ଥାକୁ ଅନୁମୋଦନ କରାଯାଇ ଏକ ସନ୍ଧି ସ୍ୱାକ୍ଷରିତ ହୋଇଥିଲା । ଏହି ସନ୍ଧି ବଳରେ ଏକ ଚତୁଃଶକ୍ତି ମେଣ୍ଟ ଗଠନ କରାଯିବା ସଙ୍ଗେ ସଙ୍ଗେ ନେପୋଲିୟନ୍ ଓ ତାଙ୍କର ପରିବାରକୁ ରାଜଗାଦିରୁ ବଞ୍ଚିତ କରାଯାଇଥିଲା । ଆହୁ ମଧ୍ୟ ସନ୍ଧି ସ୍ୱାକ୍ଷରକାରୀ ଶକ୍ତିମାନେ ସେମାନଙ୍କର ସାଧାରଣ ସ୍ୱାର୍ଥଜଡ଼ିତ ବିଷୟ ବିଚାର ଇଉରୋପର ସର୍ବାଙ୍ଗୀନ ହିତସାଧନ ଏବଂ ଶାନ୍ତିରକ୍ଷା ନିମନ୍ତେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ସମ୍ମିଳିତ ହେବେ ବୋଲି ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଏହି ସନ୍ଧି କେବଳ ଇଉରୋପକୁ ଫ୍ରାନ୍‌ସର ଆକ୍ରମଣରୁ ରକ୍ଷାକରିବା ପାଇଁ ଉଦ୍ଦିଷ୍ଟ ନ ଥିଲା । ଏହାର ଅନ୍ୟତମ ଉଦ୍ଦେଶ୍ୟ ଥିଲା, ଭିଏନା କଂଗ୍ରେସରେ ପ୍ରବର୍ତ୍ତିତ ରାଜନୈତିକ ପୁନର୍ଗଠନକୁ ସ୍ଥାୟୀକରିବା । ଏହାଛଡ଼ା ମିଳିତ ସ୍ୱାର୍ଥକୁ ମିଳିତ କାର୍ଯ୍ୟାନୁଷ୍ଠାନଦ୍ୱାରା ନିୟନ୍ତ୍ରଣ କରିବାର ଭାର ଏହି ସ୍ୱାକ୍ଷରକାରୀ ଶକ୍ତିମାନେ ଗ୍ରହଣ କରିଥିଲେ । ତେଣୁ ଇଉରୋପୀୟ ଶକ୍ତି-ସଙ୍ଗଠନର ସୃଷ୍ଟି ହେଲା ଏବଂ ଆନ୍ତର୍ଜାତିକତାବାଦର ବାସ୍ତବ ପରୀକ୍ଷା ଆରମ୍ଭହେଲା ।

ଚତୁଃଶକ୍ତି-ସନ୍ଧି (Quadruple Alliance) ବ୍ୟତୀତ ପବିତ୍ରସଂଘ (Holy Alliance) ନାମକ ଅନ୍ୟ ଏକ ସଙ୍ଗଠନ ଗଠିତ ହୋଇଥିଲା । ଏହା ରୁଷିଆର ଜାର୍ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ଆନ୍ତର୍ଜାତିକ ମତବାଦର ଫଳ ସ୍ୱରୂପ । ନିଃସନ୍ଦେହରେ ଏକଥା କୁହାଯାଇ ପାରିବ ଯେ ଆନ୍ତର୍ଜାତୀୟବାଦୀମାନଙ୍କ ମଧ୍ୟରେ ସେ

ଥିଲେ ଅଗ୍ରଣୀ ଓ ସବୁଠାରୁ ଅଧିକ ନିଷ୍ଠାପର । ବହୁଦିନଧରି ସେ ଆନ୍ତର୍ଜାତିକ ମତବାଦର ଜଣେ ବଡ଼ ପୃଷ୍ଠପୋଷକ ଥିବାରୁ ଅନ୍ତର୍ଜାତୀୟ ଶାନ୍ତିରକ୍ଷା ଉଦ୍ଦେଶ୍ୟରେ ଇଉରୋପୀୟ



( ଜାର୍ ପ୍ରଥମ ଆଲେକଜାଣ୍ଡାର )

ଶକ୍ତିମାନଙ୍କୁ ଏକ ସଙ୍ଗଠନରେ ଏକତ୍ର କରିବାପାଇଁ 'ପବିତ୍ରସଂଘ' ପ୍ରତିଷ୍ଠା କରିଥିଲେ । ସେ ଜଣେ ଧର୍ମପ୍ରବଣ ଆଦର୍ଶବାଦୀ ଥିଲେ । ତାଙ୍କ ମନରେ ବିଶ୍ୱାସ ଜନ୍ମିଲା ଯେ ଫରାସୀ ବିପ୍ଳବ ମୁଖ୍ୟତଃ ଧର୍ମହୀନ ନୀତି ଉପରେ ପ୍ରତିଷ୍ଠିତ ଏବଂ ଭବିଷ୍ୟତରେ ଏହିପରି ଉତ୍ସାବହ ରାଷ୍ଟ୍ରବିପ୍ଳବର ପ୍ରତିରୋଧ କରିବାକୁ ହେଲେ, ଇଉରୋପ ଶାସକମାନଙ୍କୁ ପରମେଶ୍ୱରଙ୍କ ନିକଟରେ ସେମାନଙ୍କ ଦାୟିତ୍ୱ ସ୍ୱୀକାର କରିବାକୁ ପଡ଼ିବ । ତେଣୁ ଖ୍ରୀଷ୍ଟଧର୍ମ ଆଦର୍ଶ

ଉପରେ ଭିତ୍ତିକରି ଇଉରୋପୀୟ ଶକ୍ତିମାନଙ୍କୁ ଏକ ଭ୍ରାତୃବନ୍ଧନରେ ଆବଦ୍ଧ କରିବାକୁ ସେ ଚାହିଁଥିଲେ । ସେ ପ୍ରୁସିୟାର ରାଜା ଏବଂ ଅଷ୍ଟ୍ରିୟାର ସମ୍ରାଟଙ୍କୁ ପବିତ୍ରସଙ୍ଘରେ ସ୍ୱାକ୍ଷର ଦେବାପାଇଁ ପ୍ରବର୍ତ୍ତାଇଥିଲେ । ଏହି ସଙ୍ଘର ସର୍ତ୍ତ ଅନୁସାରେ ଇଉରୋପୀୟ ଶାସକମାନେ ପରସ୍ପରକୁ ଭ୍ରାତୃସଦୃଶ ବ୍ୟବହାର କରିବେ ଏବଂ ପ୍ରୟୋଜନହେଲେ ପରସ୍ପରକୁ ସାହାଯ୍ୟ କରିବେ । ସେମାନେ ନିଜ ନିଜ ପ୍ରଜାମାନଙ୍କୁ ଆପଣାର ସନ୍ତାନ ବୋଲି ମନେକରିବେ । ସେମାନେ ସମସ୍ତେ ସମାନ ଗୋଟିଏ ଖ୍ରୀଷ୍ଟୀୟ ପରିବାରର ସଭ୍ୟ ବୋଲି ଘୋଷଣାକରି, ଧର୍ମ, ନ୍ୟାୟ ଓ ଶାନ୍ତି—ଏହି ତିନି ନୀତି ପାଳନ କରିବେ । ଏହି ପ୍ରସିଦ୍ଧ ସଂଘ ସ୍ଥାପନ ଫଳରେ ଏକ ପ୍ରଜାହିତକାରୀ ନିରଙ୍କୁଶ ଶାସକସଙ୍ଘ ଗଠନ କରାଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଆଦର୍ଶବାଦ ଉପରେ ଆଧାରିତ ଏହିପରି ଆନ୍ତର୍ଜାତିକ ସଂଘ ଇତି-ପୂର୍ବରୁ କେବେ ପ୍ରତିଷ୍ଠିତ ହୋଇ ନ ଥିଲା । ମେଟାରନିକ୍ ଏବଂ କ୍ୟାସଲ୍‌ରେ ପ୍ରଭୃତି କୂଟନୀତିଜ୍ଞମାନେ ଏହି ସଙ୍ଘକୁ ଅବଜ୍ଞା କରିଥିଲେ । ମେଟାରନିକ୍ ଏହାକୁ 'ଫାଙ୍କା ଆବାଜ' ବା ଶୂନ୍ୟ ବାକ୍ୟାଡ଼ମ୍ବର ବୋଲି ବିଦ୍ରୂପ କରିଥିଲେ । କ୍ୟାସଲ୍‌ରେ 'ଏହା ଏକ ବିରାଟ ରହସ୍ୟାବୃତ ଅର୍ଥହୀନ ବାକ୍ୟବିନ୍ୟାସ' ଆଖ୍ୟା ଦେଇଥିଲେ । ପୋପ୍ ଓ ତୁର୍କୀର ସୁଲତାନ୍‌ଙ୍କ ବ୍ୟତୀତ ଇଉରୋପର ସମସ୍ତ ଶାସକଙ୍କୁ ଏହି ରାଜନାମା ସ୍ୱାକ୍ଷରକରିବା-ପାଇଁ ନିମନ୍ତ୍ରଣ କରାଯାଇଥିଲା । ଇଂଲଣ୍ଡର ରାଜପ୍ରତିନିଧିଙ୍କ ବ୍ୟତୀତ ଇଉରୋପର ସବୁଦେଶର ପ୍ରତିନିଧିମାନେ କେବଳ ଜାର୍ ଆଲେକଜାଣ୍ଡାରଙ୍କୁ ସନ୍ତୁଷ୍ଟ କରିବାପାଇଁ ଏଥିରେ ସ୍ୱାକ୍ଷର କରିଥିଲେ; କିନ୍ତୁ ଜାର୍ ଆଲେକଜାଣ୍ଡାରଙ୍କ ବ୍ୟତୀତ କେହି ଏହା ପ୍ରତି ଗୁରୁତ୍ୱ ଆରୋପ କରିନଥିଲେ । ପବିତ୍ରସଙ୍ଘ ଥିଲା ଆଲେକଜାଣ୍ଡାରଙ୍କର ଏକ ଅତି ପ୍ରିୟ ଯୋଜନା । ତେଣୁ ୧୮୨୫ ମସିହାରେ ସେ ମୃତ୍ୟୁବରଣ କଲା ପରେ ପରେ ଏହା ପ୍ରାୟ ଲୋପ ପାଇଗଲା ।

ସେ ଯାହାହେଉ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଖ୍ରୀଷ୍ଟଧର୍ମକୁ ସର୍ବସାଧାରଣଙ୍କ ଜୀବନଯାତ୍ରା ସହିତ ସଂସ୍ପର୍ଶରେ ଆଣିବାପାଇଁ ଏହା ଥିଲା ଏକ ନିଷ୍ପାପର ସାଧୁ ଉଦ୍ୟମ । ୧୮୧୫ ମସିହାରୁ ୧୮୨୫ ମସିହା ମଧ୍ୟରେ ହୋଇଥିବା ଇଉରୋପୀୟ ବ୍ୟବସ୍ଥା ସହିତ ଲୋକେ 'ପବିତ୍ର ସଙ୍ଘ'ର ନାମ ଯୋଗକରିଥାନ୍ତି; କିନ୍ତୁ ଏକଥା ମନେରଖିବାକୁ ପଡ଼ିବ ଯେ ଏହାର ମୌଳିକ ଆଦର୍ଶକୁ ସମସାମୟିକ ରାଜନୀତିରେ ପ୍ରୟୋଗ କରାଯାଇନଥିଲା । ଊନବିଂଶ ଶତାବ୍ଦୀର ଉଦାରପନ୍ଥୀମାନଙ୍କ ନିକଟରେ ଏହା ଥିଲା ଗଣତନ୍ତ୍ର ଓ ଜାତୀୟତାବାଦର ଉଚ୍ଛେଦପାଇଁ ନିରଙ୍କୁଶ ଶାସକମାନଙ୍କର ଏକ ଅପବିତ୍ର ସଂଘ । ସଂଘର ଆଦର୍ଶ ଦୃଷ୍ଟିରୁ ଏପରି ଏକ ମୂଲ୍ୟାଙ୍କନ କରିବା ଭୁଲ । ପ୍ରାରମ୍ଭରେ 'ପବିତ୍ରସଂଘ ବିଷୟରେ କୌଣସି କପଟତା ଓ ଅନୁଦାରତା ନ ଥିଲା । ଏହା କୂଟନୀତିକ ସଂଘ ହିସାବରେ ବିଫଳ ହୋଇ-ଥିଲା; କାରଣ ଆଲେକଜାଣ୍ଡାରଙ୍କୁ ବାଦ୍‌ଦେଲେ ଅନ୍ୟ କେହି ସ୍ୱାକ୍ଷରକାରୀ ଏହା ଅନୁସାରେ କାର୍ଯ୍ୟ କରିବାପାଇଁ ଆନ୍ତରିକ ଉଦ୍ୟମ କରିନଥିଲେ । ପ୍ରକୃତ କହିବାକୁ ଗଲେ ଆଲେକଜାଣ୍ଡାରଙ୍କ 'ପବିତ୍ରସଂଘ'ର ଉଚ୍ଚ ଆଦର୍ଶ ମେଟାରନିକ୍‌ଙ୍କ ପରିଚାଳିତ ଚତୁଃଶକ୍ତି

ମେଣ୍ଟର ଉଦ୍ଦେଶ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା; କିନ୍ତୁ ଭ୍ରମବଶତଃ ଦୁଇଟିକୁ ଏକ ଓ ଅଭିନ୍ନ ବୋଲି ସବୁ ସାଧାରଣ ଲୋକେ ଦ୍ୱନ୍ଦ୍ୱରେ ପଡ଼ୁଥିଲେ । ଏକଥା ସତ୍ୟ ଯେ 'ପବିତ୍ରସଂଘ' ତତ୍କାଳୀନ ପରିସ୍ଥିତିରେ ସଫଳତା ହାସଲ କରିପାରି ନ ଥିବ; କିନ୍ତୁ ଭବିଷ୍ୟତରେ ଏହା ୧୮୯୯ ମସିହା ହେଗ୍ ସମ୍ମିଳନୀରେ ଆରମ୍ଭ ହୋଇଥିବା ମହାନ୍ ଆନ୍ତର୍ଜାତିକ ଶାନ୍ତି ଆନ୍ଦୋଳନରେ ବିଶେଷ ଫଳପ୍ରଦ ହୋଇଥିଲା ।

## ଇଉରୋପୀୟ ଶକ୍ତି-ସଙ୍ଘ ( The Concert of Europe )

ଚତୁଃଶକ୍ତିମେଣ୍ଟ ପରବର୍ତ୍ତୀକାଳକୁ 'କଂଗ୍ରେସର ଯୁଗ' ( The Age of Congress) ବୋଲି ଅଭିହିତ କରାଯାଇଥାଏ । କେତେଗୁଡ଼ିଏ ଘଟଣାରେ ଇଉରୋପୀୟ ଶକ୍ତି-ସଂଘର ସଭ୍ୟମାନେ ମିଳିତ ବିଚାରପାଇଁ ନିର୍ଦ୍ଦିଷ୍ଟ ପ୍ରଶ୍ନଗୁଡ଼ିକର ଆଲୋଚନା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ସମବେତ ହୋଇଥିଲେ । ଏହିସବୁ କଂଗ୍ରେସମାନଙ୍କରେ ମେଟାରନିକ୍ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ପରିଚାଳନାରେ ଚତୁଃଶକ୍ତି-ସନ୍ଧି ବୃହତ୍ ଶକ୍ତିମାନଙ୍କର ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିଥିଲା ଓ ତାହା ସହିତ ସମଗ୍ର ଇଉରୋପର ଉଦାରପନ୍ଥୀମାନଙ୍କୁ ଦମନ କରିବାପାଇଁ ତାଙ୍କୁ ଅଧିକାର ଦେଇଥିଲା । ତେଣୁ ମେଟାରନିକ୍ ନିୟନ୍ତ୍ରିତ ଇଉରୋପୀୟ ଶକ୍ତି-ସଂଘ ଗଣତନ୍ତ୍ରବାଦ ଓ ଜାତୀୟତାବାଦ ଆଦି ନୂତନ ଚିନ୍ତାଧାରା ସହିତ ସଂଘର୍ଷରେ ଆସିଥିଲା । ଅର୍ଥାତ୍ ଏହି ଶକ୍ତି-ସଂଘ ଜାତୀୟତାବାଦ ଓ ଗଣତନ୍ତ୍ରବାଦର ପ୍ରତିରୋଧ କରିବା ପାଇଁ ଏକ ଆନ୍ତର୍ଜାତିକ ପୋଲିସବାହିନୀ ସ୍ୱରୂପ କାର୍ଯ୍ୟ କରିଥିଲା । ମେଟାରନିକଙ୍କ ହାତରେ ଏହା ସବୁ ପ୍ରକାର ପ୍ରଗତିଶୀଳ ଆଦର୍ଶବାଦକୁ ସମୂଳେ ନଷ୍ଟ କରିବାର ଏକ ହତିଆରରେ ପରିଣତ ହେଲା । ମେଟାରନିକଙ୍କର ବ୍ୟବସ୍ଥା (Metternich System)ର ସହଯୋଗୀ ହିସାବରେ ଏହା ଗଣତନ୍ତ୍ର ବିରୁଦ୍ଧରେ ଇଉରୋପରେ ସ୍ୱେଚ୍ଛାଚାରିତାକୁ ଦୃଢ଼ଭାବରେ ପ୍ରତିଷ୍ଠା କରିବାପାଇଁ ଆପ୍ରାଣ ଉଦ୍ୟମ କରିଥିଲା । ଫଳରେ ଆନ୍ତର୍ଜାତିକତାବାଦ ଜାତୀୟ ସ୍ୱାର୍ଥରକ୍ଷା ପାଇଁ ଏକ ମୁଖା ହୋଇଥିଲା ।

## ଏଇ-ଲା-ସ୍ୟାପଲ-କଂଗ୍ରେସ, ୧୮୧୮
## ( Congress of Aix-la-Chapelle, 1818 )

ଇଉରୋପୀୟ ଶକ୍ତି-ସଂଗଠନଦ୍ୱାରା ଆହୂତ କଂଗ୍ରେସ ଏଇ-ଲା-ସ୍ୟାପଲଠାରେ ୧୮୧୮ ମସିହାରେ ବସିଥିଲା । ଏହା ନିକଟରେ ମୁଖ୍ୟ ପ୍ରଶ୍ନହେଲା ଫ୍ରାନ୍‌ସ ପରିସ୍ଥିତିର ବିଚାର । ଫ୍ରାନ୍‌ସ ଭିଏନା କଂଗ୍ରେସର ବ୍ୟବସ୍ଥାମାନ ମାନି ଚଳୁଥିବାରୁ ଏବଂ ମିତ୍ରଶକ୍ତି-ମାନଙ୍କୁ ଅବିଳମ୍ବେ ସବୁ କ୍ଷତିପୂରଣ ଦେଇସାରିଥିବାରୁ ଫ୍ରାନ୍‌ସରେ ମୂତୟନ ହୋଇଥିବା ମିତ୍ର-ଶକ୍ତିମାନଙ୍କର ସୈନ୍ୟବାହିନୀକୁ ଅପସାରଣ କରିନେବା ଏବଂ ଫ୍ରାନ୍‌ସକୁ ଇଉରୋପୀୟ ଶକ୍ତି-ସଂଗଠନରେ ପଞ୍ଚମଶକ୍ତି ହିସାବରେ ପ୍ରବେଶାଧିକାର ଦେବାପାଇଁ କଂଗ୍ରେସ ରାଜି

ହୋଇଥିଲା । ତା'ଛଡ଼ା ବୃହତ୍‌ଶକ୍ତିମାନଙ୍କର ନେତୃତ୍ୱ ପ୍ରାୟ ଇଉରୋପୀୟ ଦେଶମାନଙ୍କର ସ୍ୱୀକୃତ ପାଇଥିବାରୁ କଂଗ୍ରେସରେ ସମବେତ କୂଟନୀତିଜ୍ଞମାନଙ୍କ ନିକଟରେ ସାନୁନୟ ନିବେଦନମାନ ଆସି ପହଞ୍ଚୁଥିଲା । ତେଣୁ ବହୁଦେଶର ଏ ସବୁ ନିବେଦନ ଶୁଣିବାପାଇଁ ଏକ ଉଚ୍ଚ ନ୍ୟାୟାଳୟରେ ପରିଣତ କରିଥିଲା । ଏହା କେତେକ ଜର୍ମାନ୍ ବିବାଦର ନିଷ୍ପତ୍ତି କରିଥିଲା ଏବଂ ଅଷ୍ଟ୍ରିଆ ଉପରେ ଜର୍ମାନୀ ରାଜ୍ୟମାନଙ୍କର ଅନ୍ତର୍ଦ୍ୱନ୍ଦ୍ୱ ଯଥାଯଥ ସମାଧାନ ଭାର ନ୍ୟସ୍ତ କରିଥିଲା । ସ୍ୱିଡେନର ରାଜା ବର୍ଣ୍ଣାଡୋଟେ ନରଓ୍ୱେ ଓ ଡେନମାର୍କ ସହିତ ଚୁକ୍ତିରେ ଥିବା ନ୍ୟାୟସଙ୍ଗତ ଦାବୀକୁ ଅଗ୍ରାହ୍ୟ କରିଥିବାରୁ ତାଙ୍କୁ କୈଫିୟତ୍ ମଗାଯାଇ ଭର୍ତ୍ସନା କରାଯାଇଥିଲା । ମନାକୋ ରାଜାଙ୍କ ଶାସନ ବିରୁଦ୍ଧରେ ଅଭିଯୋଗ ହୋଇଥିବାରୁ ତାଙ୍କ ରାଜ୍ୟରେ ସେ କିପରି ଉନ୍ନତ ଶାସନ ପ୍ରଚଳନ କରିବେ, ତାହା ପଢ଼ି ଶୁଣାଇ ଦିଆଯାଇଥିଲା । ବେଭେରିଆର ରାଜ୍ୟ ସଂପ୍ରସାରଣ ନୀତିକୁ ପ୍ରତିରୋଧ କରାଯାଇଥିଲା । ଇଉରୋପୀୟ ଶକ୍ତି-ସଂଗଠନ ଦୁର୍ବଳ ଦେଶମାନଙ୍କୁ ଭୟଦେଖାଇ ଦବାଇ ଦେବାବେଳେ ଐକ୍ୟବଦ୍ଧ ହୋଇ କାର୍ଯ୍ୟକରିଥିଲା । ଏହାର ଭବିଷ୍ୟତ ବଂଶଧର ମିଳିତ ରାଷ୍ଟ୍ରସଂଘ (The League of Nations) ପରି କ୍ଷୁଦ୍ର ଶକ୍ତିମାନଙ୍କ ପ୍ରତି ବ୍ୟବହାରରେ ଅତି ଦକ୍ଷ ଥିଲା; କିନ୍ତୁ ବୃହତ୍‌ଶକ୍ତିମାନଙ୍କର ପରସ୍ପର ସ୍ୱାର୍ଥବିରୋଧୀ ପ୍ରଶ୍ନ ଉତ୍‌ଥାପନ କରାଗଲା ମାତ୍ରେ ସେମାନେ ପରସ୍ପର ଏତେଦୂର ଈର୍ଷାପରାୟଣ ଥିଲେ ଯେ ଇଉରୋପୀୟ ଶକ୍ତି-ସଂଘ ପକ୍ଷରେ ଏକ ମିଳିତ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବା ଅତି ଦୁରୂହ ବ୍ୟାପାର ହୋଇପଡୁଥିଲା । ଯେତେବେଳେ ଏହି କଂଗ୍ରେସରେ ବାରବ୍ୟାରି ଜଳଦସ୍ୟୁମାନଙ୍କର ଭୂମଧ୍ୟସାଗରରେ ଦସ୍ୟୁବୃତ୍ତି ଦମନକରିବା ବିଷୟରେ ଆଲୋଚନା ହେଲା, ଇଂଲଣ୍ଡ ରୁଷିଆର ନୌବାହିନୀର ଭୂମଧ୍ୟସାଗରରେ ପ୍ରବେଶକରିବା ଭୟରେ ଜଳଦସ୍ୟୁମାନଙ୍କ ବିରୁଦ୍ଧରେ ମିଳିତ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବାକୁ ବାଧା ଦେଲା, ସେତେବେଳେ ଏହାର ସୂଚନା ମିଳିଲା । ଇଂଲଣ୍ଡ ମଧ୍ୟ ଦକ୍ଷିଣ ଆମେରିକାରେ ଅବସ୍ଥିତ ବିଦ୍ରୋହୀ ସ୍ପେନୀୟ ଉପନିବେଶଗୁଡ଼ିକୁ ସ୍ପେନର ଆନୁଗତ୍ୟ ପୁନର୍ବାର ସ୍ୱୀକାର କରିବାକୁ ବାଧ୍ୟକରିବା ଉଦ୍ଦେଶ୍ୟରେ ଇଉରୋପର ହସ୍ତକ୍ଷେପର ବିରୋଧ କରିଥିଲା । ଯେତେବେଳେ ବ୍ରସେଲସ୍‌ରେ ଆନ୍ତର୍ଜାତିକ ସୈନ୍ୟବାହିନୀ ମୁତୟନ କରିବା ପ୍ରସ୍ତାବ ପ୍ରୁସିଆ ଦେଲା, ସେତେବେଳେ ଇଂଲଣ୍ଡର ବୈଦେଶିକ ମନ୍ତ୍ରୀ କ୍ୟାସଲ୍‌ରେ ତା'ର ବିରୋଧ କରିଥିଲେ; କାରଣ ଏପରି ପ୍ରସ୍ତାବଦ୍ୱାରା ଫ୍ରାନ୍ସ ଉତ୍‌କ୍ଷିପ୍ତ ହେବାର ଆଶଙ୍କା ରହିଥିଲା । ତେଣୁ ଅନ୍ୟ ଇଉରୋପୀୟ ଶକ୍ତିମାନେ ଇଂଲଣ୍ଡକୁ କ୍ରୀତଦାସ ବ୍ୟବସାୟ ଦୃଢ଼ହସ୍ତରେ ଦମନକରିବା ଉଦ୍ଦେଶ୍ୟରେ ସମୁଦ୍ରଗୁଡ଼ିକ ଖାନତଲାସ କରିବାକୁ କ୍ଷମତା ଦେଇ ନ ଥିଲେ । ଏହିସବୁ ଘଟଣାରୁ ଇଉରୋପୀୟ ଶକ୍ତି-ସଂଗଠନରେ ବିଭେଦ ଥିବାର ସୂଚନା ମିଳିଲା । ଏହି ବିଭେଦ କ୍ରମେ କ୍ରମେ ଏପରି ବୃଦ୍ଧି ପାଇବାକୁ ଲାଗିଲା ଯେ ଶେଷରେ ଏହା ବାଲିଘରଭଳି ଭୁସ୍ କରି ପଡ଼ିଲା । ଏଇ-ଲା-ସ୍ୟାପ୍‌ଲ କଂଗ୍ରେସ ଇଉରୋପର କେତେକ ସମସ୍ୟା ସମାଧାନ କରିପାରିଲେ ମଧ୍ୟ ଏହାର ଚୂଡ଼ାନ୍ତ ଚଠା କଂଗ୍ରେସ-ବୈଠକ ବସାଇବା ଯୋଜନାକୁ ଅନୁମୋଦନ କରିଥିଲା ।

ମେଟାରନିକ୍ ଜାର୍ ଆଲେକ୍‌ଜାଣ୍ଡାରଙ୍କ ଉଦାରନୈତିକ ଆନ୍ଦୋଳନ ଉପରେ ଆସ୍ଥା ହରାଇଥିବାର ଦେଖି ଅତିଶୟ ସନ୍ତୁଷ୍ଟ ହୋଇଥିଲେ; କିନ୍ତୁ ରୁଷିଆର ଶକ୍ତିକଥା ଭାବି ସେ ବିଚଳିତ ହୋଇପଡୁଥିଲେ । ଜାର୍ ଆଲେକ୍‌ଜାଣ୍ଡାର ତାଙ୍କର ସୈନ୍ୟବାହିନୀକୁ ଇଉରୋପର କର୍ତ୍ତୃତ୍ୱାଧୀନରେ ଛାଡ଼ିଦେବା କଥା ଘୋଷଣା କରିବାଦ୍ୱାରା ଆତ୍ମତ୍ୟାଗସ୍ପୃହାର ସୂଚନା ଦେଇଥିଲେ ମଧ୍ୟ ମେଟାରନିକଙ୍କ ପକ୍ଷରେ ଏହା ଉଦ୍‌ବେଗର ବିଷୟ ହୋଇଥିଲା । ୧୮୨୦ ମସିହାରେ ଜାର୍ ଆଲେକ୍‌ଜାଣ୍ଡାର ପ୍ରସ୍ତାବ କଲେ ଯେ ଶକ୍ତି-ସଂଘ ସ୍ପେନରେ ହସ୍ତକ୍ଷେପ କରିବା ଉଚିତ; କାରଣ ସ୍ପେନର ବୁରବନ୍ ରାଜା ସପ୍ତମ ଫର୍ଡିନେଣ୍ଡଙ୍କୁ ତାଙ୍କ ଇଚ୍ଛାବିରୁଦ୍ଧରେ ଉଦାର ସମ୍ବିଧାନ ମଞ୍ଜୁର କରିବା ପାଇଁ ବାଧ୍ୟ କରାଯାଇଛି । ଏ ପ୍ରସ୍ତାବ ଗ୍ରହଣ କରାଗଲେ ଜାର୍ ତାଙ୍କର ସୈନ୍ୟବାହିନୀକୁ ଇଉରୋପ ମଧ୍ୟ ଦେଇ ପଠାଇବାପାଇଁ ଜୋର୍ ଦେବେ ବୋଲି ଭୟକରି ମେଟାରନିକ୍ ଏ ପ୍ରସ୍ତାବର ତୀବ୍ର ବିରୋଧ କରିଥିଲେ । ତାଙ୍କ ମତରେ ହସ୍ତକ୍ଷେପ ନୀତି ଗ୍ରହଣ କରାଗଲେ, ଅଷ୍ଟ୍ରିଆ ସେ ହସ୍ତକ୍ଷେପର ନେତୃତ୍ୱ ନେବ ଏବଂ ଅନ୍ୟ ଶକ୍ତିମାନେ ତାକୁ ଅନୁସରଣ କରିବେ । ଭାଗ୍ୟବଶତଃ ଇଉରୋପର ପରିସ୍ଥିତି ତାଙ୍କ ପ୍ରତି ଅନୁକୂଳ ଥିଲା । ଜାର୍ ଆଲେକ୍‌ଜାଣ୍ଡାର ତାଙ୍କ ଅଧୀନରେ ଥିବା ପୋଲ୍‌ମାନଙ୍କ ସହିତ ଗୋଳମାଳ ଘଟିବାହେତୁ କ୍ଷୁବ୍ଧ ହୋଇ ଏବଂ କେତେକ ରାଜଦ୍ରୋହମୂଳକ ଗୁଜବ ରଟନାଦ୍ୱାରା ଭୀତତ୍ରସ୍ତ ହୋଇ ଅବିଳମ୍ବେ ମେଟାରନିକଙ୍କୁ ଇଉରୋପୀୟ ଶକ୍ତି-ସଂଗଠନର ଅଖଣ୍ଡ ନେତୃତ୍ୱ ଅର୍ପଣ କରିଥିଲେ । ଟ୍ରପୋ କଂଗ୍ରେସର ଅଧିବେଶନ ବସିବା ଅଳ୍ପଦିନ ପୂର୍ବରୁ ଜାର୍ ଆଲେକ୍‌ଜାଣ୍ଡାର ମେଟାରନିକଙ୍କୁ କହିଲେ, 'ଆପଣ ପରିସ୍ଥିତିର ଠିକ୍ ବିଚାର କରିଛନ୍ତି, ମୋତେ କହନ୍ତୁ ଆପଣ କ'ଣ ଚାହାନ୍ତି, ମୁଁ ତାହା ନିଶ୍ଚୟ କରିବି ।' ('You have correctly judged the state of affairs, Alexander said to Metternich, Tell me what you wish and I will do it ?')

## ଟ୍ରପୋ କଂଗ୍ରେସ ୧୮୨୦ ( Congress of Troppau, 1820 )

୧୮୨୦ ମସିହାରେ ପର୍ତ୍ତୁଗାଲ, ସ୍ପେନ ଏବଂ ନେପଲ୍‌ସରେ ବିପ୍ଳବ ଦେଖାଦେଇଥିଲା । ଏହିସବୁ ଦେଶର ଲୋକମାନେ ସେମାନଙ୍କର ପ୍ରତିକ୍ରିୟାଶୀଳ ଶାସକମାନଙ୍କୁ ୧୮୧୨ ମସିହାର ପ୍ରସିଦ୍ଧ ସ୍ପେନୀୟ ସମ୍ବିଧାନ ଢାଞ୍ଚାରେ ପ୍ରସ୍ତୁତ ସମ୍ବିଧାନ ଗ୍ରହଣ କରିବାପାଇଁ ବାଧ୍ୟ କରିଥିଲେ । ଇଉରୋପୀୟ ଶକ୍ତି-ସଙ୍ଘର ସମସ୍ତ ସଭ୍ୟ ଏହିସବୁ ବିପ୍ଳବର ନିନ୍ଦା କରିଥିଲେ; କିନ୍ତୁ ଏହିସବୁ ବିପ୍ଳବ ବିରୁଦ୍ଧରେ ପଦକ୍ଷେପ ନିଆଯିବା ସଂକ୍ରାନ୍ତରେ ଶକ୍ତି-ସଂଘର ସଭ୍ୟମାନଙ୍କ ମଧ୍ୟରେ ମତଭେଦ ଦେଖାଯାଇଥିଲା । ରୁଷିଆ ସ୍ପେନର ରାଜାଙ୍କୁ ବିପ୍ଳବ ଦମନକରିବା ଉଦ୍ଦେଶ୍ୟରେ ସୈନ୍ୟସାହାଯ୍ୟ ଦେବାକୁ ପ୍ରସ୍ତାବ କରିଥିଲା; କିନ୍ତୁ ମେଟାରନିକ୍ ରୁଷିଆକୁ ସେଥିରୁ ବିରତ କରିଥିଲେ; କାରଣ ତାଙ୍କର ବିପ୍ଳବ ପ୍ରତି ଯେପରି

ଘୃଣା ଥିଲା, ରୁଷିଆର କ୍ଷମତା ପ୍ରସାର ପ୍ରତି ସେହିପରି ଭୟ ଥିଲା । ନେପଲସ୍‌ର ବିପ୍ଳବ ତାଙ୍କ ମତରେ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଥିଲା; କାରଣ ଉକ୍ତ ବିପ୍ଳବ ଇଟାଲୀରେ ଅଷ୍ଟ୍ରିୟାର ପ୍ରଭୁତ୍ୱ ପ୍ରତି ଥିଲା ଏକ ଧମକ । ୧୮୨୦ ମସିହାରେ ଇଉରୋପୀୟ ଶକ୍ତିମାନେ ଅଷ୍ଟ୍ରିୟାକୁ ନେପଲସ୍‌ରେ ଏକାକୀ ନିଜ ଇଚ୍ଛାନୁଯାୟୀ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବାକୁ ନ ଦେବା ଏବଂ ନେପଲସ୍ ସମସ୍ୟାର ସମାଧାନ କରିବା ଉଦ୍ଦେଶ୍ୟରେ ଟ୍ରପୋଠାରେ ଏକ କଂଗ୍ରେସ ଅଧିବେଶନ ଡକାଇଥିଲେ । କୌଣସି ଗୋଟିଏ ରାଷ୍ଟ୍ରରେ ବିପ୍ଳବ ସଂଘଟିତ ହେଲେ, ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କ ତାହା ସଂହତିତ କରିବା ଭୟ ଥିବାରୁ ସେମାନେ ସେହି ବିପ୍ଳବକୁ ନିଜ ନିଜର ସଂପୃକ୍ତ ବିଷୟ ମନେକରି କାର୍ଯ୍ୟାନୁଷ୍ଠାନ କରିବା ଉଚିତ ବୋଲି ମେଟାରନିକ୍ ନିଜର ମତ ବ୍ୟକ୍ତକରିଥିଲେ ଏବଂ ଏହି କଂଗ୍ରେସରେ ପ୍ରୁସିଆର ରାଜା ଓ ରୁଷିଆର ଜାର୍‌ଙ୍କୁ ତାଙ୍କର ଏ ମତ ଗ୍ରହଣ କରିନେବାକୁ ପ୍ରବୃତ୍ତ କରିଥିଲେ । ତଦ୍ୱାରା ସେ ସବୁଠି ବିପ୍ଳବ ଦମନ କରିବାପାଇଁ ହସ୍ତକ୍ଷେପ ନୀତିକୁ ସମର୍ଥନ କରିଥିଲେ । ତାଙ୍କର ଏହି ମତ ପ୍ରସିଦ୍ଧ ଟ୍ରପୋ ଚୁକ୍ତିପତ୍ର ( Troppau protocol ) ରେ ସ୍ଥାନ ପାଇଥିଲା । ଏହି ଚୁକ୍ତିପତ୍ର ଦୃଢ଼ଭାବରେ ଘୋଷଣା କରିଥିଲା ଯେ ଯଦି କୌଣସି ରାଷ୍ଟ୍ରର ସରକାର ବିପ୍ଳବ ଫଳରେ ପରିବର୍ତ୍ତିତ ହୋଇଥାଏ ଏବଂ ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କ ପ୍ରତି ଏହା ବିପଜ୍ଜନକ ବୋଲି ପ୍ରମାଣିତ ହେବାର ସମ୍ଭାବନା ଥାଏ, ତାହାହେଲେ ସେ ରାଷ୍ଟ୍ରକୁ ଇଉରୋପୀୟ ଗୋଷ୍ଠୀର ସଭ୍ୟପଦରୁ ବହିଷ୍କାର କରିଦିଆଯିବ । ତା' ଛଡ଼ା ଅନ୍ୟରାଷ୍ଟ୍ରମାନଙ୍କ ପ୍ରତି ବିପଦ ଆସନ୍ନ ମନେହେଲେ, ଅପରାଧୀ ରାଷ୍ଟ୍ରକୁ ବଳାତ୍କାରରେ ଇଉରୋପୀୟ ଗୋଷ୍ଠୀକୁ ଫେରାଇ ଆଣିବାପାଇଁ ଇଉରୋପୀୟ ଶକ୍ତିମାନଙ୍କୁ କ୍ଷମତା ଦିଆଗଲା । ଚୁକ୍ତିପତ୍ର ଆହୁରି ମଧ୍ୟ ଘୋଷଣା କରିଥିଲା ଯେ କେବଳ ରାଜାମାନଙ୍କର ସ୍ୱଇଚ୍ଛା ପ୍ରଦତ୍ତ ସମ୍ବିଧାନ ସନ୍ତୋଷଜନକ ହୋଇପାରିବ । ବିପ୍ଳବକୁ ଧ୍ୱଂସ କରିବା ପାଇଁ ଆବଶ୍ୟକ ହେଲେ ଯେକୌଣସି ସାର୍ବଭୌମ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ଟ୍ରପୋ କଂଗ୍ରେସରେ ତିନୋଟି ପୂର୍ବଇଉରୋପୀୟ ଶକ୍ତି—ରୁଷିଆ, ପ୍ରୁସିୟା ଓ ଅଷ୍ଟ୍ରିୟା ସେମାନଙ୍କର କର୍ତ୍ତବ୍ୟ ବୋଲି ସ୍ୱୀକାର କରିଥିଲେ । ଇଂଲଣ୍ଡର ମନ୍ତ୍ରୀ କ୍ୟାସଲ୍‌ରେ ଫ୍ରାନ୍ସର ସମର୍ଥନରେ ଏହି ହସ୍ତକ୍ଷେପ ନୀତିର ତୀବ୍ର ପ୍ରତିବାଦ କରିଥିଲେ । ଏହି ପ୍ରତିବାଦରେ ଇଉରୋପୀୟ ଶକ୍ତି-ସଂଘ ଭାଙ୍ଗିଯିବାର ସ୍ପଷ୍ଟ ସୂଚନା ମିଳିଥିଲା । ତେଣୁ ଟ୍ରପୋଠାରେ ତିନୋଟି ପୂର୍ବଇଉରୋପୀୟ ଶକ୍ତି, ଇଂଲଣ୍ଡ ଓ ଫ୍ରାନ୍ସର ଇଚ୍ଛା ବିରୁଦ୍ଧରେ ପୃଥକ୍ ଭାବେ କାର୍ଯ୍ୟ କରିଥିଲେ । ପ୍ରଗତିଶୀଳ ଆନ୍ଦୋଳନକୁ ଦମନକରିବା ହେଲା ସେମାନଙ୍କର ଉଦ୍ଦେଶ୍ୟ । ସେମାନଙ୍କର ଏହି ପ୍ରତିକ୍ରିୟାଶୀଳ ନୀତିର ପରାକାଷ୍ଠା ଟ୍ରପୋ ଚୁକ୍ତିପତ୍ର ( Troppau protocol ) ରେ ଦେଖିବାକୁ ମିଳେ । ସେ ଯାହାହେଉ ଇଂଲଣ୍ଡ ଏହି ପ୍ରତିକ୍ରିୟାଶୀଳ ନୀତିର ପ୍ରତିବାଦ କରିଥିଲା ଏବଂ ଟ୍ରପୋ ଚୁକ୍ତିପତ୍ରର ବ୍ୟବସ୍ଥାଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲା ।

## ଲାଇବେକ୍ କଂଗ୍ରେସ, ୧୮୨୧ ( Congress of Laibach, 1821 )

ନେପଲସ୍‌ର ରାଜା ଫର୍ଡିନେଣ୍ଡ ମେଟାରନିକ୍‌ଙ୍କୁ ନେପଲସ୍ ବିପ୍ଳବ ଦମନ କରିବା ପାଇଁ ଅନୁରୋଧ କରିଥିଲେ । ନେପଲସ୍ ସମସ୍ୟାର ଆଲୋଚନା ୧୮୨୧ ମସିହା ଲାଇବେକ୍ କଂଗ୍ରେସରେ କରାଯିବାପାଇଁ ମୂଲତବୀ ରଖାଯାଇଥିଲା । ଲାଇବେକ୍ କଂଗ୍ରେସ୍ ଇଟାଲୀରେ ଅଷ୍ଟ୍ରିୟାର ଗୁରୁତ୍ୱପୂର୍ଣ୍ଣ ସ୍ୱାର୍ଥକୁ ସ୍ୱୀକାର କରିଥିଲା ଓ ଅଷ୍ଟ୍ରିୟାକୁ ନେପଲସ୍‌ରେ ବିପ୍ଳବ ଦମନକରିବା ପାଇଁ କ୍ଷମତା ଦେଇଥିଲା । ଅଷ୍ଟ୍ରିୟାର ସୈନ୍ୟବାହିନୀ ନେପଲସ୍‌ରେ ବିଦ୍ରୋହ ଦମନକରିବା ସଙ୍ଗେ ସଙ୍ଗେ ଫର୍ଡିନେଣ୍ଡଙ୍କୁ ଅଖଣ୍ଡ କ୍ଷମତା ପ୍ରତ୍ୟାର୍ପଣ କରିଥିଲେ । ଯଦିଓ ଅଷ୍ଟ୍ରିୟାକୁ ପିଡମଣ୍ଟର ସାମରିକ ବିଦ୍ରୋହ ଦମନପାଇଁ ଅଧିକାର ଦିଆଯାଇ ନ ଥିଲା, ତାର ସୈନ୍ୟବାହିନୀ ଟ୍ରପୋ ଚୁକ୍ତିପତ୍ର ବ୍ୟବସ୍ଥା ଅନୁଯାୟୀ ନେପଲସ୍‌ରୁ ଫେରିବା ବାଟରେ ସେ ବିଦ୍ରୋହକୁ ମଧ୍ୟ ଦମନ କରିଥିଲେ । ଇଂଲଣ୍ଡ ବିଦ୍ରୋହ ଦମନକରିବା ପାଇଁ ନୈତିକ ସମର୍ଥନ ଦେଇ ନ ଥିଲା; କିନ୍ତୁ ନେପଲସ୍ ସହିତ ଅଷ୍ଟ୍ରିୟାର ଏକ ପୂର୍ବଚୁକ୍ତି ଅନୁସାରେ ଏତାଦୃଶ ହସ୍ତକ୍ଷେପକୁ ସ୍ୱୀକାର କରିଥିଲା । ବୈଦେଶିକ ମନ୍ତ୍ରୀ କ୍ୟାସଲ୍‌ରେ ଇଂଲଣ୍ଡର ନୀତି ବ୍ୟାଖ୍ୟା କରିବାକୁ ଯାଇ କହିଥିଲେ ଯେ ଯଦି ଦୁଇଦେଶ ମଧ୍ୟରେ କୌଣସି ରାଜିନାମା ନ ଥାଏ, ତାହାହେଲେ ପରସ୍ପର ପରସ୍ପରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ନ୍ୟାୟସଙ୍ଗତ ନୁହେଁ । ଇଂଲଣ୍ଡ ମତରେ ରାଷ୍ଟ୍ରମାନଙ୍କର ସୀମା ରକ୍ଷାକରିବା ଚତୁଃଶକ୍ତି ସନ୍ଧିର ଉଦ୍ଦେଶ୍ୟ ଥିଲା; କିନ୍ତୁ ସେମାନଙ୍କର ସମ୍ବିଧାନ ନୁହେଁ । ଏକଥା ଅସ୍ୱୀକାର କରିହେବନାହିଁ ଯେ ଟ୍ରପୋ ଚୁକ୍ତି ହେବା ଦିନଠାରୁ ଇଂଲଣ୍ଡ ଓ ଫ୍ରାନ୍‌ସ ଆଭ୍ୟନ୍ତରୀଣ ହସ୍ତକ୍ଷେପ ବିଷୟରେ ଭିନ୍ନମତ ପୋଷଣ କରିଥିଲେ ।

## ଭେରୋନା କଂଗ୍ରେସ, ୧୮୨୨ (Congress of Verona, 1822।

ଲାଇବେକ୍ କଂଗ୍ରେସ ପରେ ସ୍ପେନୀୟ ବିପ୍ଳବ ଇଉରୋପୀୟ ଶକ୍ତି-ସଂଗଠନର ଦୃଷ୍ଟି ଆକର୍ଷଣ କରିଥିଲା । ତେଣୁ ଭେରୋନାଠାରେ କଂଗ୍ରେସ ଅଧିବେଶନ ୧୮୨୨ ମସିହାରେ ଡକରା ଯାଇଥିଲା । ଇତ୍ୟବସରରେ ଗ୍ରୀକ୍‌ମାନେ ତୁର୍କୀ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିବାରୁ ଗ୍ରୀକ୍ ପ୍ରଶ୍ନ ମଧ୍ୟ ଏହି କଂଗ୍ରେସରେ ଆଲୋଚନାପାଇଁ ଗ୍ରହଣ କରାଯାଇଥିଲା । ୧୮୨୦ ମସିହାରେ ସ୍ପେନ୍ ବିଦ୍ରୋହ ଫଳରେ ବିଦ୍ରୋହୀମାନେ ବୁରବନ୍ ରାଜା ସପ୍ତମ ଫର୍ଡିନେଣ୍ଡଙ୍କଠାରୁ ସାମ୍ବିଧାନିକ ସରକାର ଗଠନ କରିବା ଅଧିକାର ପାଇଥିଲେ । ଫର୍ଡିନେଣ୍ଡ ତାଙ୍କର ଅଖଣ୍ଡ କ୍ଷମତା ପୁନରୁଦ୍ଧାର ପାଇଁ ପ୍ରଥମେ ରୁଷିଆକୁ ସାହାଯ୍ୟ ଭିକ୍ଷା କରିଥିଲେ । ଜାର୍ ଆଲେକଜାଣ୍ଡାର ଦେଢ଼ଲକ୍ଷବିଶିଷ୍ଟ ଏକ ସୈନ୍ୟ-ବାହିନୀ ବିପ୍ଳବ ଦମନକରିବା ଉଦ୍ଦେଶ୍ୟରେ ତାଙ୍କୁ ଯୋଗାଇବାପାଇଁ ପ୍ରତିଶ୍ରୁତି ଦେଇଥିଲେ; କିନ୍ତୁ ଫ୍ରାନ୍‌ସ ଏହାର ବିରୋଧ କରିଥିଲା । ଅଷ୍ଟ୍ରିୟା ସରକାର ମଧ୍ୟ ଜାର୍‌ଙ୍କ

ସାମରିକ ସାହାଯ୍ୟ ଦେବାକୁ ନିବୃତ୍ତ କରିଥିଲେ । ଏହାପରେ ସ୍ପେନର ବୁରବନ୍ ରାଜା ଫର୍ଡିନେଣ୍ଡ ଫ୍ରାନ୍ସର ବୁରବନ ରାଜା ଅଷ୍ଟାଦଶ ଲୁଇଙ୍କୁ ସ୍ପେନୀୟ ଲୋକମାନଙ୍କର ବିଦ୍ରୋହ ଦମନ କରିବା ପାଇଁ ସାହାଯ୍ୟ ଦେବାକୁ ଅନୁରୋଧ କରିଥିଲେ । ଭେରୋନା କଂଗ୍ରେସ ଉଭୟ ସ୍ପେନୀୟ ଓ ଗ୍ରୀସ୍ ସମସ୍ୟାର ବିଚାର କରିଥିଲେ । ରୁଷୀୟମାନେ ଏବଂ ଗ୍ରୀକ୍‌ମାନେ ଏକ ଖ୍ରୀଷ୍ଟଧର୍ମ ସଂପ୍ରଦାୟ ( ପ୍ରାଚୀନପନ୍ଥୀ ଗ୍ରୀକ୍ ଖ୍ରୀଷ୍ଟିୟାନ ) ଭୁକ୍ତ ହୋଇଥିବାରୁ ତୁର୍କମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଗ୍ରୀକ୍‌ମାନଙ୍କର ବିପ୍ଳବକୁ ରୁଷିଆ ସହାନୁଭୂତିର ସହିତ ବିଚାର କରିଥିଲା । ତୁର୍କ-ଗ୍ରୀକ୍ ଦ୍ୱନ୍ଦ୍ୱ ନିଜର ରାଜନୀତିକ ପରିସର ଅନ୍ତର୍ଭୁକ୍ତ ବୋଲି ରୁଷିଆ ମନେକରିଥିଲା ଏବଂ ମେଟାର୍‌ନିକ୍ ଯେପରି ଇଟାଲୀରେ ପୃଥକ୍‌ଭାବେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ, ରୁଷିଆ ତୁର୍କୀରେ ସେହିପରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ଭେରୋନା କଂଗ୍ରେସରେ ଦାବୀ କରିଥିଲା । ଅଷ୍ଟ୍ରିୟା ବଲ୍‌କାନ ଅଞ୍ଚଳରେ ରୁଷିଆର ପ୍ରତିଦ୍ୱନ୍ଦ୍ୱୀ ହୋଇଥିବାରୁ ମେଟାର୍‌ନିକ୍ ଗ୍ରୀସ୍ ବ୍ୟାପାରରେ ରୁଷିଆର ହସ୍ତକ୍ଷେପ ରୋକିବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲେ । ଗ୍ରୀକ୍ ବିଦ୍ରୋହକୁ ନ୍ୟାୟସଙ୍ଗତ ପ୍ରଶାସନିକ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଗୁରୁତ୍ୱହୀନ ବିଦ୍ରୋହ ବୋଲି ସେ ମନେକରୁଥିଲେ । ଇଂଲଣ୍ଡ ଔଦାସୀନ୍ୟବାଦ ( Doctrine of nun-intervention ) ଉପରେ ଜୋର୍ ଦେଉଥିଲାବେଳେ, ମେଟାର୍‌ନିକ୍ ରାଜତନ୍ତ୍ର ଶାସନର ଏକତା ଉପରେ ଜୋର୍ ଦେଇଥିଲେ । ସେ ଯାହାହେଉ ମେଟାର୍‌ନିକ୍ ନିକଟ ପ୍ରାଚ୍ୟ ( Near east ) ରେ ରୁଷିଆର ସଦା-ଜାଗ୍ରତ ଶତ୍ରୁ ଇଂଲଣ୍ଡର ସମର୍ଥନ ଲାଭକରିଥିଲେ । ଜାର୍ ଆଲେକ୍‌ଜାଣ୍ଡାର ଆନ୍ତର୍ଜାତିକତାବାଦର ପୃଷ୍ଟପୋଷକ ଭାବେ ଇଉରୋପୀୟ ଶକ୍ତି-ସଙ୍ଘର ବିନା ଅନୁମତିରେ ତୁର୍କୀରେ ହସ୍ତକ୍ଷେପ ନ କରିବାକୁ ସ୍ଥିର କରିଥିଲେ । ତେଣୁ ମେଟାର୍‌ନିକ୍ ରୁଷିଆର କାର୍ଯ୍ୟାନୁଷ୍ଠାନକୁ ପ୍ରତିରୋଧ କରିବାରେ ଏବଂ ଗ୍ରୀକ୍ ପ୍ରଶ୍ନକୁ ସ୍ଥଗିତ ରଖିବାରେ କୃତକାର୍ଯ୍ୟ ହୋଇଥିଲେ ।

ଫଳରେ ସ୍ପେନୀୟ ସମସ୍ୟା ଉପରେ ମୁଖ୍ୟ ଆଲୋଚନା ହୋଇଥିଲା । ସ୍ପେନର ରାଜା ସପ୍ତମ ଫର୍ଡିନେଣ୍ଡ ତାଙ୍କ ଲୋକମାନଙ୍କର ବିଦ୍ରୋହକୁ ଦମନ କରିବାପାଇଁ ଫ୍ରାନ୍ସର ରାଜାଙ୍କୁ ଅନୁରୋଧ କରିଥିଲେ । ଜଣେ ବୁରବନ୍ ରାଜାଙ୍କର ଅନ୍ୟ ଜଣେ ବୁରବନ୍ ରାଜାଙ୍କୁ ଅନୁରୋଧ, ପୁରାତନ ପାରିବାରିକ ସଂହତିର ପୁନରୁଦ୍ଧାର ପରି ମନେ ହେଲା । ତେଣୁ ଏହା ଇଂଲଣ୍ଡ ପ୍ରତି ସୁଖଦାୟକ ହୋଇନଥିଲା । କ୍ୟାନିଂ କ୍ୟାସଲ୍‌ରେଙ୍କ ଉତ୍ତରାଧିକାରୀ ଭାବେ ବୈଦେଶିକ ମନ୍ତ୍ରଣାଳୟର ଦାୟିତ୍ୱ ନେଲା ପରେ ସ୍ପେନର ଆଭ୍ୟନ୍ତରୀଣ ବ୍ୟାପାରରେ ଫ୍ରାନ୍ସର ହସ୍ତକ୍ଷେପ ନୀତିର ଦୃଢ଼ ପ୍ରତିରୋଧ କରିଥିଲେ ଏବଂ ଫ୍ରାନ୍ସ ଓ ସ୍ପେନ୍‌ର ମିଳନଦ୍ୱାରା ଇଉରୋପର ଶକ୍ତିସାମ୍ୟ ବିପର୍ଯ୍ୟସ୍ତ ହେବାର ସମ୍ଭାବନା ଥିବାରୁ ସେ ତାହାର ଅନୁମୋଦନ କରି ନଥିଲେ; କିନ୍ତୁ ଯେତେବେଳେ ଫ୍ରାନ୍ସ ଶକ୍ତି-ସଂଗଠନର ଅନ୍ୟାନ୍ୟ ଶକ୍ତିମାନଙ୍କଠାରୁ ସ୍ପେନ୍‌ର ଲୋକମାନଙ୍କର ବିଦ୍ରୋହ ଦମନ କରିବାପାଇଁ ନିର୍ଦ୍ଦେଶ ପାଇଲା, ଇଂଲଣ୍ଡ କଂଗ୍ରେସରୁ ଓହରିଗଲା ଓ ନିରପେକ୍ଷ ନୀତି ଅବଲମ୍ବନ କଲା ।

ସେ ସାହାଯ୍ୟରେ ଫରାସୀମାନଙ୍କ ସାହାଯ୍ୟରେ ସ୍ପେନୀୟ ଲୋକମାନଙ୍କର ବିଦ୍ରୋହ ଦମନ କରାଯାଇଥିଲା ଓ ସପ୍ତମ ଫର୍ଡିନେଣ୍ଡଙ୍କ ନିରଙ୍କୁଶ ଶାସନ ପ୍ରତ୍ୟାର୍ପଣ କରାଯାଇଥିଲା ।

ଇଂଲଣ୍ଡ ଓହରିଯିବା ଫଳରେ ଇଉରୋପୀୟ ଶକ୍ତି-ସଙ୍ଗଠନ ଭାଙ୍ଗିଗଲା । ଇଂଲଣ୍ଡ ତାର ସ୍ୱାଧୀନ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲା ଏବଂ ସ୍ପେନରେ ଫ୍ରାନ୍ସର ପ୍ରତିପତ୍ତି ବୃଦ୍ଧିକୁ ଅତ୍ୟନ୍ତ ସନ୍ଦେହ-ଚକ୍ଷୁରେ ଦେଖିଥିଲା । ତାର ଭୟ ଜନ୍ମିଲା ଯେ ଫ୍ରାନ୍ସ ସ୍ପେନକୁ ତାର ବିଦ୍ରୋହୀ ଦକ୍ଷିଣ ଆମେରିକା ଉପନିବେଶମାନ ଫେରିପାଇବା ପାଇଁ ସାହାଯ୍ୟ କରିପାରେ । ଯଦି ଏପରି ଘଟେ, ତାହାହେଲେ ଦକ୍ଷିଣ ଆମେରିକା ସହିତ ଇଂଲଣ୍ଡ ତାର ଲାଭଜନକ ବାଣିଜ୍ୟ ହରାଇ ବସିବ । କ୍ୟାନିଂ ପ୍ରତିଜ୍ଞାବଦ୍ଧ ହୋଇଥିଲେ ଯେ ଯଦି ଫ୍ରାନ୍ସ ସ୍ପେନରେ ପ୍ରାଧାନ୍ୟ ବିସ୍ତାରକରେ, ତାହାହେଲେ ତାହା ଅବଶ୍ୟ ସ୍ପେନର ଉପନିବେଶମାନଙ୍କୁ ବାଦ୍-ଦେଇ କରିବାକୁ ପଡ଼ିବ ।

ଦକ୍ଷିଣ ଆମେରିକାରେ ଫ୍ରାନ୍ସର ଦୁରଭିସନ୍ଧି କ୍ୟାନିଂ ପୂର୍ବରୁ ଜାଣିପାରି ଯୁକ୍ତରାଷ୍ଟ୍ର ସରକାରଙ୍କୁ ଇଂଲଣ୍ଡ ସହିତ ମିଳିତ ହୋଇ ନୂତନ ପୃଥିବୀ (New world)ରେ ଫ୍ରାନ୍ସର ମୁକାବିଲା କରିବାକୁ ଆହ୍ୱାନ ଦେଇଥିଲେ । ରାଷ୍ଟ୍ରପତି ମନ୍ରୋଙ୍କଦ୍ୱାରା ୧୮୨୩ ମସିହା ଡିସେମ୍ବର ମାସରେ କଂଗ୍ରେସକୁ ପଠାଯାଇଥିବା ବାର୍ତ୍ତାରେ ଆମେରିକାର ନୀତି ପ୍ରତିଫଳିତ ହୋଇଥିଲା । ଏହି ବାର୍ତ୍ତା ବିଖ୍ୟାତ ମନରୋ ନୀତି (Monroe doctrine)ର ମୁଖ୍ୟ ବିଷୟବସ୍ତୁ । ତହିଁରେ ଘୋଷଣା କରାଯାଇଥିଲା ଯେ ଇଉରୋପୀୟ ରାଜନୀତିରେ ଯୁକ୍ତରାଷ୍ଟ୍ରର କୌଣସି ସ୍ୱାର୍ଥ ନାହିଁ ଏବଂ ସେଠାରେ ସେ ହସ୍ତକ୍ଷେପ କରିବନାହିଁ । ସେହିପରି ଇଉରୋପୀୟ ଶକ୍ତିମାନେ ଯେପରି ନୂତନ ପୃଥିବୀର ରାଜନୀତିରୁ ବିଚ୍ଛିନ୍ନ ରହନ୍ତି, ତାହା ମନ୍ରୋ ନୀତିରେ ଦାବୀ କରାଯାଇଥିଲା । ଅର୍ଥାତ୍ ଇଉରୋପ ଆମେରିକା ରାଜନୀତିରୁ ଦୂରରେ ରହିବା ପାଇଁ ଆହ୍ୱାନ ଦିଆଯାଇଥିଲା । ଏଥିରୁ ବାସ୍ତବିକ୍ ସୂଚନା ମିଳିଥିଲା ଯେ ଯଦି କୌଣସି ଶକ୍ତି ତାହାର ରାଜନୀତିକ କର୍ତ୍ତୃତ୍ୱ ପ୍ରସାର କରିବାକୁ ଉଦ୍ୟମ କରେ, ତାହାହେଲେ ଯୁକ୍ତରାଷ୍ଟ୍ର ଆମେରିକା ତାହା ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ । ୧୮୨୫ ମସିହାରେ କ୍ୟାନିଂ ଦକ୍ଷିଣ ଆମେରିକାରେ ଅବସ୍ଥିତ ସ୍ପେନର ବିଦ୍ରୋହୀ ଉପନିବେଶଗୁଡ଼ିକର ସ୍ୱାଧୀନତା ସ୍ୱୀକାର କରିଥିଲେ । ତେଣୁ ଅଷ୍ଟ୍ରିୟା, ପ୍ରୁସିୟା ଓ ରୁଷିଆଦ୍ୱାରା ଗୃହୀତ ହସ୍ତକ୍ଷେପ ନୀତି ସ୍ପେନୀୟ-ଆମେରିକା ପ୍ରଶ୍ନ ଯୋଗୁ ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇଗଲା । କ୍ୟାନିଂ କମନ୍ସ ସଭାରେ ଘୋଷଣା କରିଥିଲେ, "ମୁଁ ପ୍ରତିଜ୍ଞା କରିଥିଲି ଯେ ଯଦି ଫ୍ରାନ୍ସ ସ୍ପେନ ଉପରେ ତାର କର୍ତ୍ତୃତ୍ୱ ବିସ୍ତାରକରେ, ତାହାହେଲେ ସେ କର୍ତ୍ତୃତ୍ୱ ସ୍ପେନ ଓ ସ୍ପେନୀୟ ଉପନିବେଶଗୁଡ଼ିକ ଉପରେ ବିସ୍ତାରକରିବାକୁ ଦିଆଯିବ ନାହିଁ । ମୁଁ ପୁରାତନ ପୃଥିବୀରେ ଦୋହଲିଯାଇଥିବା ଭାରସାମ୍ୟର ପ୍ରତିକାର ସ୍ୱରୂପ ନୂତନ ପୃଥିବୀକୁ ଉଠିବାକୁ ଆହ୍ୱାନ କଲି ।" (Canning declared in the house of commons, "I resolved that if France had Spain, it should not be Spain with the Indies; I called the new world into existence to redress the

balance of the old") ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ବ୍ରିଟିଶ ମନ୍ତ୍ରୀ କାନିଙ୍ଗଙ୍କର ପ୍ରତିରୋଧ ଓ କ୍ୟାନିଂଙ୍କର ଦୃଢ଼ ମନୋଭାବ ଫଳରେ ମେଟାର୍‌ନିକ୍‌ଙ୍କ ହସ୍ତକ୍ଷେପ ନୀତି ପରିହାର କରାଯାଇଥିଲା ।

## ଇଉରୋପୀୟ ଶକ୍ତି-ସଙ୍ଘର ବିଫଳତା
## ( Failure of the concert of Europe )

ଇଉରୋପୀୟ ଶକ୍ତି-ସଙ୍ଘର ବିଫଳତାର କେତେକ କାରଣ ଥିଲା । ପଶ୍ଚିମ ଇଉରୋପ ଏବଂ ପୂର୍ବ ଇଉରୋପର ସଂସ୍କୃତି ଓ ଦୃଷ୍ଟିକୋଣ ମଧ୍ୟରେ ମୌଳିକ ମତଭେଦ ଯୋଗୁ ଇଉରୋପୀୟ ଶକ୍ତି-ସଙ୍ଘ ବହୁଦିନ ତିଷ୍ଠି ପାରିଲାନାହିଁ । ଏହି ଶକ୍ତି-ସଙ୍ଘ ଆନ୍ତର୍ଜାତିକ ସହଯୋଗ କ୍ଷେତ୍ରରେ ବିଫଳ ହେବାର ଦୁଇଟି ପ୍ରଧାନ କାରଣ ଥିଲା—ନୀତିଗତ ମତଭେଦ ଏବଂ ପରସ୍ପର ପ୍ରତି ସନ୍ଦେହ । ପ୍ରାରମ୍ଭରୁ ଇଂଲଣ୍ଡ ପୂର୍ବ ଇଉରୋପୀୟ ଶକ୍ତିମାନଙ୍କ କାର୍ଯ୍ୟ-କଳାପକୁ ସନ୍ଦେହ ଚକ୍ଷୁରେ ଦେଖିଥିଲା । ଟ୍ରପୋ କଂଗ୍ରେସରେ ଗୃହୀତ ହସ୍ତକ୍ଷେପ ନୀତିର ପ୍ରବଳ ବିରୋଧ କରିଥିଲା ଏବଂ ଟ୍ରପୋ ଚୁକ୍ତି ବର୍ଜନକରି ଯେତେବେଳେ ସେ ସ୍ପେନରେ ଫ୍ରାନ୍‌ସର ହସ୍ତକ୍ଷେପ ରୋକିବାରେ ଅସମର୍ଥ ହେଲା ସେତେବେଳେ ସେ ନିଜେ ଭେରୋନା କଂଗ୍ରେସରୁ ଓହରି ଯାଇଥିଲା । ଇଂଲଣ୍ଡ ସ୍ୱଇଚ୍ଛାରେ କଂଗ୍ରେସରୁ ବାହାରିଯିବା ଫଳରେ ଇଉରୋପୀୟ ଶକ୍ତି-ସଙ୍ଘ ଘୋର ବିପର୍ଯ୍ୟସ୍ତ ହୋଇଥିଲା । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ନିରଙ୍କୁଶ ଶାସନ ଓ ସମ୍ବିଧାନ-ସମ୍ମତ ଶାସନ ଦୁଇଟି ଅପରିଚିତ ଶଯ୍ୟାସାଥୀ (Two Strange bed-fellows) ଇଂଲଣ୍ଡ ତାହାର ସଂସଦୀୟ ଅନୁଷ୍ଠାନଗୁଡ଼ିକୁ ନେଇ ତିନୋଟି ନିରଙ୍କୁଶ ରାଜତନ୍ତ୍ର ( ରୁଷିଆ, ପ୍ରୁସିୟା ଏବଂ ଅଷ୍ଟ୍ରିଆ ) ସହିତ ଶାନ୍ତିରେ କାର୍ଯ୍ୟକରିବା ସମ୍ଭବପର ହେଲାନାହିଁ; କାରଣ ସେମାନେ ଇଉରୋପୀୟ ଶକ୍ତି-ସଙ୍ଘକୁ ନିଜ ସ୍ୱାର୍ଥସାଧନପାଇଁ ଏକ ରାଜନୈତିକ ଆୟୁଧରୂପେ ରୂପାନ୍ତରିତ କରିଥିଲେ । ଯେଉଁ ଶକ୍ତି-ସଙ୍ଘ ଶାନ୍ତି ଶୃଙ୍ଖଳା ପ୍ରତିଷ୍ଠାପାଇଁ ଉଦ୍ଦିଷ୍ଟ ଥିଲା, ତାହାର ଅଧଃପତନ ଏପରି ହେଲା ଯେ ତାହା ଏକ ସଂକୀର୍ଣ୍ଣ ଗୋଷ୍ଠୀରେ ପରିଣତ ହୋଇ ନିରଙ୍କୁଶ ଶାସନକୁ ରକ୍ଷାକରିବାରେ ଲାଗିଲା । ଇଉରୋପୀୟ ଶକ୍ତି-ସଙ୍ଘରେ ଶକ୍ତିମାନଙ୍କର ସ୍ୱାର୍ଥ ପୃଥକ୍ ଓ ପରସ୍ପର ବିରୋଧୀ ଥିବାରୁ ସେମାନେ ଏକନିଷ୍ଠଭାବରେ କାର୍ଯ୍ୟ କରିବାକୁ ସକ୍ଷମ ହୋଇ ନ ଥିଲେ । ଏହି ସଙ୍ଘ ଜାତୀୟତା ବିରୋଧୀ ଗଣତନ୍ତ୍ର ଏବଂ ଜାତୀୟତା ବିରୋଧୀ ପ୍ରତିକ୍ରିୟାଶୀଳ ନୀତି ଉପରେ ପ୍ରତିଷ୍ଠିତ ଥିଲା । ମେଟାରନିକ୍‌ଙ୍କର 'ଯଥାସ୍ଥିତି' (Status quo) ନୀତି ଅତ୍ୟାଚାର, ଗତିହୀନତା ଓ ପ୍ରତିକ୍ରିୟାଠାରୁ ଅଭିନ୍ନ ବୋଲି ପ୍ରତିପାଦନ କରାଯାଇଥିଲା । ସ୍ପେନୀୟ-ଆମେରିକାର ବିଦ୍ରୋହୀ ଉପନିବେଶଗୁଡ଼ିକୁ ସ୍ପେନ ସରକାରଙ୍କ କବଳକୁ ପୁନର୍ବାର ଆଣିବାକୁ ଏହି ଶକ୍ତି-ସଙ୍ଘ ଯେତେବେଳେ ଉଦ୍ୟମ କଲେ, ବ୍ରିଟିଶ ମନ୍ତ୍ରୀ ତାଙ୍କର ବିଖ୍ୟାତ 'ମନରୋ ନୀତି' ଦ୍ୱାରା ତାହା ବ୍ୟର୍ଥ କରିଦେଇଥିଲେ । ଇଂଲଣ୍ଡ

ମଧ୍ୟ ଇଉରୋପୀୟ ଶକ୍ତି-ସଙ୍ଘର ଉପନିବେଶ ବ୍ୟାପାରରେ ହସ୍ତକ୍ଷେପର ବିରୋଧୀ ଥିଲି । ଉଭୟ ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକାର ବିରୋଧ ଫଳରେ ଶକ୍ତି-ସଙ୍ଗଠନ, ବିଦ୍ରୋହୀ ଉପନିବେଶଗୁଡ଼ିକରେ ହସ୍ତକ୍ଷେପ କରିବାକୁ ଆଉ ସାହସ କରି ନ ଥିଲି । ଶକ୍ତି-ସଂଘ ସହିତ ଇଂଲଣ୍ଡର ସମ୍ପର୍କ ଛିନ୍ନହେବା ତାହାର ବିଫଳତାର ମୁଖ୍ୟ କାରଣ ବୋଲି କୁହାଯାଇପାରେ । ତେଣୁ ଏହିସବୁ କାରଣଯୋଗୁ ଶକ୍ତି-ସଙ୍ଗଠନ ପରିଶେଷରେ ଲୋପ ପାଇଥିଲି । ତାହାସତ୍ତ୍ୱେ ପ୍ରାରମ୍ଭିକ ଅବସ୍ଥାରେ ମେଟାରନିକ୍‌ଙ୍କ ଦମନ ନୀତି ନେପଲସ୍, ପିଡ଼ମଣ୍ଟ ଜର୍ମାନୀ ଏବଂ ସ୍ପେନରେ ବେଶ୍ ସଫଳ ହୋଇଥିଲି; କିନ୍ତୁ ସାମୟିକଭାବେ ଏହି ଶକ୍ତି-ସଂଘ ସାଫଲ୍ୟ ଲାଭକଲେ ମଧ୍ୟ ଏହାର ପତନ ଥିଲି ଅବଶ୍ୟମ୍ଭାବୀ । ସେ ଯାହାହେଉ ୧୮୧୫ ମସିହା ପରେ ପରେ ଇଉରୋପରେ ଯେଉଁ ସଙ୍କଟମୟ ପରିସ୍ଥିତି ଉପୁଜିଥିଲି, ଶକ୍ତି-ସଙ୍ଘ ତାହାର ମୁକାବିଲା କରି ସେଠାରେ କିଛିକାଳ ପାଇଁ ଶାନ୍ତି ପ୍ରତିଷ୍ଠା କରିପାରିଥିଲି । ପଶ୍ଚିମ ଇଉରୋପର ଶିଳ୍ପ-ବିପ୍ଳବକୁ ସ୍ୱାଗତ କରିବାପାଇଁ ଏ ସୁଯୋଗ ଦେଇଥିଲି । ତା'ଛଡ଼ା ୧୯୧୮ ମସିହାରେ ମିଳିତ ଜାତିସଙ୍ଘ ପ୍ରତିଷ୍ଠା ଦିଗରେ ଏହି ଶକ୍ତି-ସଂଘ ଏକ ପ୍ରତୀକରୂପେ ପ୍ରେରଣା ଯୋଗାଇଥିଲି ।

---

# ଅଷ୍ଟମ ଅଧ୍ୟାୟ

## ପ୍ରାଚ୍ୟ ସମସ୍ୟା ( The Eastern Question )

ପ୍ରାଚ୍ୟ ସମସ୍ୟାର ଉତ୍ପତ୍ତି ଦୁଇଟି ବିଶେଷ କାରଣରୁ ହୋଇଥିଲା ବୋଲି କୁହାଯାଏ । ପ୍ରଥମଟି ହେଲା, ବିଭିନ୍ନ ଜାତି ଓ ଧର୍ମାବଲମ୍ବୀଙ୍କୁ ନେଇ ଗଢ଼ିଉଠିଥିବା ତୁର୍କୀ ସାମ୍ରାଜ୍ୟର ଦୁର୍ବଳତା ଓ କ୍ରମ-ଅଧଃପତନ ଏବଂ ଦ୍ୱିତୀୟଟି ହେଲା, ତୁର୍କୀର ଦୁର୍ବଳତାର ସୁଯୋଗ ନେଇ କୃଷ୍ଣସାଗର ଓ ଦାର୍ଦାନେଲିସ୍ ଉପରେ ପ୍ରାଧାନ୍ୟ ବିସ୍ତାରପାଇଁ ରୁଷିଆର ପ୍ରବଳ ଉଦ୍ୟମ । ପ୍ରାଚ୍ୟ ସମସ୍ୟାର ଏହି ଦୁଇଟି ମୁଖ୍ୟ ପ୍ରସଙ୍ଗ ସହିତ ନାନା ଜଟିଳ ପ୍ରଶ୍ନ ଜଡ଼ିତ ଥିଲା; ତେଣୁ ତାର ସ୍ଥିତି କେବଳ ବଳପ୍ରୟୋଗ ଦ୍ୱାରା ବଜାୟ ରଖାଯାଇ ପାରିବ; କିନ୍ତୁ ତୁର୍କୀମାନେ କ୍ରମଶଃ ସେମାନଙ୍କର ସାମରିକ ଶକ୍ତି ହରାଇବାକୁ ଲାଗିଲେ । ସୁଲତାନଙ୍କ ଶାସନ ଦୁର୍ନୀତିଗ୍ରସ୍ତ ଓ ଅତ୍ୟାଚାରୀ ହୋଇପଡ଼ିଲା ଏବଂ ରାଜ୍ୟପାଳମାନେ ବିଧିବଦ୍ଧଭାବରେ ସ୍ୱାଧୀନ ହୋଇ ନ ଥିଲେ ମଧ୍ୟ ବାସ୍ତବକ୍ଷେତ୍ରରେ ସ୍ୱାଧୀନ ଥିଲେ । ତୁର୍କୀ ସାମ୍ରାଜ୍ୟର ଆକାର ତଥାପି ବୃହତ୍ ଥିଲା । ଇଉରୋପର ବଲ୍‌କାନ୍ ଅଞ୍ଚଳ ସମେତ ଏସିଆର କେତେକ ଅଞ୍ଚଳ, ଆରବିଆ, ମେସୋପୋଟାମିଆ, ପାଲେଷ୍ଟାଇନ, ମିଶର, ତ୍ରିପଲି ଓ ଟ୍ୟୁନିସ୍ ଏହାର ଅନ୍ତର୍ଭୁକ୍ତ ଥିଲା । ଊନବିଂଶ ଶତାବ୍ଦୀରେ ତୁର୍କୀ ସାମ୍ରାଜ୍ୟ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲା । ତାହାର ଦୁର୍ବଳତାର ସୁଯୋଗ ନେଇ ବଲ୍‌କାନ୍ ଦେଶଗୁଡ଼ିକ ମଧ୍ୟରେ ଜାତୀୟ ଜାଗରଣ ଦେଖାଦେଇଥିଲା ଏବଂ ସେମାନେ ଅତ୍ୟାଚାରୀ ତୁର୍କୀ ସରକାରର କବଳରୁ ମୁକ୍ତିପାଇବା ପାଇଁ ଆନ୍ଦୋଳନ କରିବାକୁ ପ୍ରସ୍ତୁତ ହେଉଥିଲେ । ତା'ଛଡ଼ା ତୁର୍କମାନେ ଥିଲେ ଇସଲାମଧର୍ମାବଲମ୍ବୀ ଏବଂ ବଲ୍‌କାନ ଦେଶଗୁଡ଼ିକ ଥିଲେ କ୍ୟାଥଲିକ୍ ଖ୍ରୀଷ୍ଟାନ । ତେଣୁ ଏହି ଧର୍ମଗତ ପାର୍ଥକ୍ୟ ଯୋଗୁ ତୁର୍କବିରୋଧୀ ଜାତୀୟ ଆନ୍ଦୋଳନ ଗୁରୁତର ଆକାର ଧାରଣ କରିଥିଲା । ତୁର୍କ ସରକାରଙ୍କ ଅପାରଗତା, ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଏବଂ ରକ୍ଷଣଶୀଳ ନୀତି ଏହି ବୃହତ୍ ସାମ୍ରାଜ୍ୟର ଭିତ୍ତିକୁ ଦୋହଲାଇ ଦେଇଥିଲା । ତୁର୍କ ସାମ୍ରାଜ୍ୟର ପ୍ରାଦେଶିକ ଶାସନକର୍ତ୍ତା, ପାଶାମାନଙ୍କର କ୍ଷମତା-ଲୋଭ ଓ ସ୍ୱାଧୀନତାଲିପ୍ସା ତୁର୍କ ସାମ୍ରାଜ୍ୟକୁ ଆହୁରି ଦୁର୍ବଳ କରିଦେଇଥିଲା । ତେଣୁ ଯଥାର୍ଥରେ କୁହାଯାଇଛି ଯେ ତୁର୍କ ସାମ୍ରାଜ୍ୟର ଦୁର୍ବଳତା ଓ କ୍ରମ-ଅଧଃପତନର ମୁଖ୍ୟ କାରଣ ହେଲା, ତୁର୍କ ସାମ୍ରାଜ୍ୟଭୁକ୍ତ ଲୋକମାନଙ୍କ ମଧ୍ୟରେ ପରସ୍ପର ଜାତିଗତ ଏବଂ ଧର୍ମଗତ ପାର୍ଥକ୍ୟ । ଲର୍ଡ଼ ମର୍‌ଲେ ପୂର୍ବାଞ୍ଚଳ ସମସ୍ୟାକୁ ପରସ୍ପରବିରୋଧୀ ଜାତି, ଧର୍ମ ଏବଂ ସ୍ୱାର୍ଥର ଏକ ଜଟିଳ ପରିବର୍ତ୍ତନଶୀଳ ସଂଘର୍ଷ ବୋଲି ବର୍ଣ୍ଣନା କରିଛନ୍ତି । ( Lord Morley described the Eastern question as 'a shifting,

intractable and inter woven tangle of conflicting interests, rival peoples and antagonistic faiths.')

ତୁର୍କ ସାମ୍ରାଜ୍ୟର ଦୁର୍ବଳତାର ସୁଯୋଗ ନେଇ ରୁଷିଆ, ଜାର୍ ପ୍ରଥମ ପିଟରଙ୍କ ସମୟରୁ ସୀମା ସଂପ୍ରସାରଣ ନୀତି ଅବଲମ୍ବନ କରିଥିଲା । ୧୭୭୪ ମସିହା କୁଚ୍‌ଚୁକ୍ କୈନାରଡଜ ସନ୍ଧି (Treaty of Kutchuk Kainardji) ଫଳରେ ରୁଷିଆର ସୀମା ପ୍ରସାରିତ ହେଲା । ତାହାପରେ ରୁଷିଆ କ୍ରିମିଆ ଅଧିକାର କଲା ଏବଂ ୧୮୧୨ ମସିହା ବୁଖାରେଷ୍ଟ ସନ୍ଧି ଫଳରେ ସେ ତୁର୍କୀର ଆଉ କେତେକ ଅଞ୍ଚଳ ନିଜ ଅଧୀନକୁ ଆଣିଥିଲା । ୧୮୧୫ ମସିହା ଭିଏନା କଂଗ୍ରେସରେ ସେ ବେସରାବିଆ ଓ ଅନ୍ୟ କେତେକ ସ୍ଥାନ ଲାଭକରିଥିଲା । ଏହିରୂପେ ରୁଷିଆର ସୀମା ତୁର୍କୀ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ପ୍ରଦେଶର ବହୁ ଦୂରକୁ ମାଡ଼ିଯାଇଥିଲା । ରୁଷିଆର ସଂପ୍ରସାରଣକୁ ପ୍ରତିରୋଧ କରିନଗଲେ, କାଳକ୍ରମେ ସେ ସମଗ୍ର ତୁର୍କୀକୁ ଗ୍ରାସ କରିପିବାର ଆଶଙ୍କା ମଧ୍ୟ ଥିଲା । ଊନବିଂଶ ଶତାବ୍ଦୀରେ ତୁର୍କୀ ଇଉରୋପରେ ଏକ ରୁଗ୍ଣ ଦେଶ (Sickman of Europe) ବୋଲି ବିବେଚିତ ହେଉଥିଲା । ବାସ୍ତବିକ ତୁର୍କୀସାମ୍ରାଜ୍ୟ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲା । ଏହି ଦୁର୍ବଳତାର ସୁଯୋଗ ନେଇ ରୁଷିଆ ତୁର୍କୀକୁ ଭାଗ ଭାଗ କରି ଭୂମଧ୍ୟସାଗର ପର୍ଯ୍ୟନ୍ତ ଅଞ୍ଚଳଗୁଡ଼ିକ ନିଜ ଅଧୀନକୁ ଆଣିବାପାଇଁ ଉଦ୍ୟମ କରୁଥିଲା । ଇଉରୋପୀୟ ଶକ୍ତିମାନେ ସେମାନଙ୍କର ନିରାପତ୍ତା ବିଷୟ ଚିନ୍ତାକରି ରୁଷିଆର କ୍ରମ-ପ୍ରସାରଣକୁ ଉପେକ୍ଷା କରିପାରିନଥିଲେ । ଇଉରୋପୀୟ ଶକ୍ତିମାନେ ରୁଷିଆର ସଂପ୍ରସାରଣ ନୀତିରେ ଆତଙ୍କିତ ହୋଇ ପ୍ରତ୍ୟେକେ ତାହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଇଂଲଣ୍ଡର ହୃଦ୍‌ବୋଧ ହୋଇଥିଲା ଯେ ସେ ଯଦି ରୁଷିଆର କ୍ରମ-ପ୍ରସାରଣକୁ ବାଧାଦେବାକୁ ସକ୍ଷମ ନ ହୁଏ, ତାହାହେଲେ ତାହାର ପ୍ରାଚ୍ୟ-ସାମ୍ରାଜ୍ୟ ବିପନ୍ନ ହେବାର ଯଥେଷ୍ଟ ସମ୍ଭାବନା ଥିଲା । ତେଣୁ ଇଂଲଣ୍ଡ ରୁଷିଆର ସଂପ୍ରସାରଣ ନୀତି ବିରୁଦ୍ଧରେ ତୁର୍କୀର ନିରାପତ୍ତା-ରକ୍ଷା-ନୀତି ଅବଲମ୍ବନ କରିଥିଲା । ଅଷ୍ଟ୍ରିଆ ଓ ରୁଷିଆ ବଲ୍‌କାନ ଅଞ୍ଚଳରେ ପରସ୍ପର ବିରୋଧୀ ଥିବାରୁ ରୁଷିଆର ବଲ୍‌କାନ ଦେଶମାନଙ୍କ ଉପରେ ପ୍ରାଧାନ୍ୟ ବିସ୍ତାରକରିବା ଅଷ୍ଟ୍ରିଆ ପକ୍ଷରେ ଅସହ୍ୟ ହୋଇଥିଲା । ତା'ଛଡ଼ା ରୁଷିଆର ଏ ଦେଶମାନଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର ଫଳରେ ଅଷ୍ଟ୍ରିଆର ନିରାପତ୍ତା ବ୍ୟାହତ ହେବାର ଯଥେଷ୍ଟ ସମ୍ଭାବନା ମଧ୍ୟ ଥିଲା । ରୁଷିଆର ସଂପ୍ରସାରଣ ଫଳରେ ଫ୍ରାନ୍‌ସର ବାଣିଜ୍ୟଗତ ଓ ଧର୍ମଗତ ସ୍ୱାର୍ଥ ବାଧା ପାଇବାର ଆଶଙ୍କା ଥିବାରୁ ଫ୍ରାନ୍‌ସ, ରୁଷିଆର ସଂପ୍ରସାରଣ ନୀତିର ବିରୋଧ କରିଥିଲା । ତେଣୁ ଇଉରୋପୀୟ ଶକ୍ତିମାନେ ଦୁଇଟି ସମସ୍ୟାର ସମ୍ମୁଖୀନ ହୋଇଥିଲେ—ଗୋଟିଏ ହେଲା ରୁଷିଆର ସମ୍ପ୍ରସାରଣ ଓ ଅନ୍ୟଟି ହେଲା ତୁର୍କୀର ନିରାପତ୍ତା ରକ୍ଷା ।

ଏହିସବୁ ସମସ୍ୟା ତୁର୍କୀ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ଦୁର୍ବଳତା ଯୋଗୁ ଅଧିକ ଜଟିଳ ହୋଇପଡ଼ିଥିଲା । ୧୮୦୪ ମସିହାରେ ସର୍ବପ୍ରଥମେ ସର୍ବିଆବାସୀ ସେମାନଙ୍କର ନେତା କାର

ଜର୍ଜଙ୍କ ନେତୃତ୍ୱରେ ତୁର୍କୀ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ ଓ ତୁର୍କୀଠାରୁ କେତେକ ଶାସନ ସମ୍ପର୍କୀୟ ସୁବିଧା ଆଦାୟ କରିନେଇଥିଲେ । ତୁର୍କ ସାମ୍ରାଜ୍ୟ ଯେତେବେଳେ ଫରାସୀ ବିପ୍ଳବଦ୍ୱାରା ପ୍ରଭାବିତ ହେଲା, ସେତେବେଳେ ବଲ୍‌କାନ ଦେଶଗୁଡ଼ିକ ସେମାନଙ୍କର ଜାତୀୟ ସ୍ୱାଧୀନତା ଲାଭପାଇଁ ପ୍ରେରଣା ପାଇଥିଲେ । ଫଳରେ ତୁର୍କୀ ସମସ୍ୟା ଅତି ଜଟିଳ ହୋଇପଡ଼ିଥିଲା । ଏହି ସମସ୍ୟାର ସମାଧାନ କରିବା ଇଉରୋପୀୟ ଶକ୍ତିମାନଙ୍କ ପକ୍ଷରେ ସମ୍ଭବପର ହୋଇନଥିଲା; କିନ୍ତୁ ବଲ୍‌କାନବାସୀମାନଙ୍କ ମଧ୍ୟରେ ସର୍ବପ୍ରଥମେ ଗ୍ରୀକ୍‌ମାନେ ତୁର୍କ ସାମ୍ରାଜ୍ୟ ସହିତ ତାର ଶୃଙ୍ଖଳ ଛିନ୍ନକରି ସମ୍ପୂର୍ଣ୍ଣ ସ୍ୱାଧୀନ ହୋଇଥିଲେ ।

## ଗ୍ରୀକ୍‌ମାନଙ୍କର ସ୍ୱାଧୀନତା ସଂଗ୍ରାମ
## ( The Greek War of Independence )

ତୁର୍କ ସୁଲତାନଙ୍କର ଅଧୀନସ୍ଥ ଜାତିମାନଙ୍କ ମଧ୍ୟରେ ଗ୍ରୀକ୍‌ମାନେ ସବୁଠାରୁ ଅଧିକ ଅନୁଗ୍ରହ ଲାଭକରିଥିଲେ । ତୁର୍କ ସରକାର ସେମାନଙ୍କୁ ଉଚ୍ଚ ବେସାମରିକ ଓ ସାମରିକ ପଦରେ ନିଯୁକ୍ତ କରୁଥିଲେ । ନୌବାହିନୀର ସମସ୍ତ ବୃତ୍ତିର ସେମାନଙ୍କର ପ୍ରାୟ ଏକଚାଟିଆ ହୋଇଯାଇଥିଲା । ସେମାନଙ୍କର ବାଣିଜ୍ୟ ଓ ମହାଜନୀ କାରବାରରେ ଅସାଧାରଣ ପ୍ରତିଭା ଥିଲା ଏବଂ ତୁର୍କମାନେ ସେମାନଙ୍କର ବ୍ୟବସାୟରେ କୌଣସି ବାଧାବିଘ୍ନ ସୃଷ୍ଟି କରୁନଥିଲେ । ତେଣୁ ସେମାନେ ଅବାଧରେ ଏସବୁ ବ୍ୟବସାୟ କରୁଥିଲେ । ସେମାନଙ୍କ ଭାଷା ଓ ଧର୍ମ ପ୍ରତି ତୁର୍କମାନେ ସହନଶୀଳ ନୀତି ଅବଲମ୍ବନ କରିଥିଲେ । ଗ୍ରୀକ୍ ଭାଷା ଓ ଗ୍ରୀକ୍ ଗୀର୍ଜା ଏକତା ଗ୍ରୀକ୍‌ମାନଙ୍କର ଜାତିଗତ ଓ ଧର୍ମଗତ ଏକତା ବଜାୟ ରଖିବାରେ ସହାୟକ ହୋଇଥିଲା । ବଲ୍‌କାନ୍ ଖ୍ରୀଷ୍ଟିଆନମାନଙ୍କ ଉପରେ ଗ୍ରୀକ୍ ଗୀର୍ଜାର ଅଧ୍ୟକ୍ଷ ପ୍ୟାଟ୍ରିଆର୍କଙ୍କର ଅଧିକାର ସ୍ୱୀକୃତି ଲାଭକରିଥିଲା । ତୁର୍କ ସରକାର ଗ୍ରୀକ୍‌ମାନଙ୍କ ପ୍ରତି ଉଦାରତା ମନୋଭାବ ପୋଷଣ କରୁଥିବାରୁ ସେମାନଙ୍କ ମଧ୍ୟରେ ଜାତୀୟ ଜାଗରଣ ସମ୍ଭବ ହୋଇଥିଲା । ଫଳରେ ସେମାନେ ତୁର୍କ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇଯାଇଥିଲେ ।

ଏହାଛଡ଼ା ଅନ୍ୟ ଏକ କାରଣ ଗ୍ରୀକ୍‌ମାନଙ୍କର ଜାତୀୟତା ଆନ୍ଦୋଳନର ସହାୟକ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଗ୍ରୀକ୍‌ମାନଙ୍କ ମଧ୍ୟରେ ପ୍ରାଚୀନ ଗ୍ରୀକ୍ ଭାଷା ଏବଂ ସାହିତ୍ୟ ଆଲୋଚନା ପାଇଁ ବିଶେଷ ଆଗ୍ରହ ଦେଖାଦେଇଥିଲା । ଏହି ଆଲୋଚନା ମାଧ୍ୟମରେ ଗ୍ରୀକ୍ ଜାତିର ମର୍ଯ୍ୟାଦା ଓ ଐତିହ୍ୟ ଫେରାଇଆଣିବା ନିମିତ୍ତ ଉଦ୍ୟମ ଆରମ୍ଭ ହୋଇଥିଲା । ଗ୍ରୀକ୍‌ମାନଙ୍କର ପୂର୍ବପୁରୁଷମାନେ ସାଂସ୍କୃତିକ କ୍ଷେତ୍ରରେ ଯେଉଁ ପ୍ରାଧାନ୍ୟ ବିସ୍ତାର କରିଥିଲେ, ସେମାନେ ସେହି ଲୁପ୍ତଗୌରବକୁ ପୁନରୁଦ୍ଧାର କରିବାପାଇଁ ସଙ୍କଳ୍ପବଦ୍ଧ ହୋଇଥିଲେ । ତେଣୁ ଏହି ବୌଦ୍ଧିକ ପୁନର୍ଜାଗରଣ ଗ୍ରୀକ୍‌ମାନଙ୍କ ମଧ୍ୟରେ ଜାତୀୟ ଚେତନା ଉଦ୍ରେକ କରିଥିଲା । ଏହିପରି ଭାବରେ ତୁର୍କୀ ବିରୁଦ୍ଧରେ ଆନ୍ଦୋଳନର କ୍ଷେତ୍ର ପ୍ରସ୍ତୁତ ହେବା ପରେ ଫରାସୀ-ବିପ୍ଳବର ନୂତନ ଭାବଧାରା ସେମାନଙ୍କୁ ଜାତୀୟ ମୁକ୍ତି ସଂଗ୍ରାମ

ପାଇଁ ପ୍ରୋତ୍ସାହିତ କରିଥିଲା । ଏହି ନୂତନ ଭାବଧାରାର ପ୍ରଥମ ବାସ୍ତବ ପ୍ରକାଶନ ହେଲା, ଯେତେବେଳେ 'ଫିଲକି ହେଟେଇରିୟା' (Philke Hetairia or League of Friends) ନାମକ ଏକ ଗୁପ୍ତ ସଂଘ ୧୮୧୪ ମସିହାରେ ପ୍ରତିଷ୍ଠିତ ହେଲା । ଏହି ସଙ୍ଘର ଲକ୍ଷ୍ୟଥିଲା, ଜାତୀୟତାବାଦ ପ୍ରସାର, ତୁର୍କମାନଙ୍କୁ ଇଉରୋପରୁ ବହିଷ୍କାର ଏବଂ ପ୍ରାଚ୍ୟରେ ପ୍ରାଚୀନ ଗ୍ରୀକ୍ ସାମ୍ରାଜ୍ୟର ପୁନରୁଦ୍ଧାର । ଦୁଇଟି କାରଣରୁ ଏହି ଗୁପ୍ତସଙ୍ଘର ସଭ୍ୟମାନେ ସେମାନଙ୍କର ଲକ୍ଷ୍ୟ ହାସଲକରିବା ଦିଗରେ ରୁଷିଆର ସମର୍ଥନ ଲାଭକରିବେ ବୋଲି ପ୍ରତ୍ୟାଶା କରିଥିଲେ । ପ୍ରଥମ କାରଣ ହେଲା, ଉଭୟ ଗ୍ରୀକ୍ ଓ ରୁଷୀୟମାନେ ଏକ ଖ୍ରୀଷ୍ଟିଆନ ପରିବାରର ଅନ୍ତର୍ଭୁକ୍ତ ଅଟନ୍ତି ଏବଂ ଦ୍ୱିତୀୟ କାରଣଟି ହେଲା, ତୁର୍କୀର ପତନ ରୁଷିଆର ସଂପ୍ରସାରଣ ପାଇଁ ସହାୟକ ହେବ ।

ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଗ୍ରୀକ୍‌ମାନେ ସଦିଓ ଅନ୍ୟାନ୍ୟ ବଲ୍‌କାନ-ବାସୀଙ୍କ ପରି ଗୁରୁ କରଭାର ବହନ କରୁଥିଲେ; ତଥାପି ସେମାନଙ୍କ ପରି ଅତିମାତ୍ରାରେ ଅତ୍ୟାଚାରିତ ହେଉନଥିଲେ । ତେଣୁ ଗ୍ରୀକ୍‌ମାନଙ୍କର ବିଦ୍ରୋହ ସେମାନଙ୍କ ଉପରେ ତୁର୍କୀର ଅତ୍ୟାଚାର ପାଇଁ ଘଟିନଥିଲା । ପ୍ରକୃତରେ କହିବାକୁ ଗଲେ ଗ୍ରୀକ୍‌ମାନେ ଅଷ୍ଟାଦଶ ଶତାବ୍ଦୀର ଫରାସୀ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକମାନଙ୍କ ପରି ସମୃଦ୍ଧିଶାଳୀ ଥିବାରୁ ଅଶାନ୍ତି ଅନୁଭବ କରୁଥିଲେ । ଯେଉଁ ଗ୍ରୀକ୍‌ମାନେ ଗ୍ରାମମାନଙ୍କରେ ବସବାସ କରୁଥିଲେ, ସେମାନେ ଅକପଟ ଗ୍ରାମ୍ୟଜୀବନ ଯାପନ କରୁଥିଲେ; କିନ୍ତୁ ଯେଉଁମାନେ ସହରମାନଙ୍କରେ ବା ଏଜିୟନ ଦ୍ୱୀପପୁଞ୍ଜରେ ବାସକରୁଥିଲେ, ସେମାନେ ସାମୁଦ୍ରିକ ବାଣିଜ୍ୟ କାରବାର ଯୋଗୁ ଇଉରୋପ ଓ ଆମେରିକା ପ୍ରଭୃତି ପଶ୍ଚିମରେ ଥିବା ଦେଶମାନଙ୍କର ସମ୍ପର୍କରେ ଆସି ସେମାନଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ । ଫରାସୀ-ବିପ୍ଳବର ଚିନ୍ତାଧାରା ସେମାନଙ୍କୁ ଜାତୀୟ ପ୍ରେରଣାରେ ଉଦ୍‌ବୁଦ୍ଧ କରିଥିଲା । ତେଣୁ ସେମାନେ ଗ୍ରୀକ୍ ଜାତୀୟବାଦର ଅଭିବୃଦ୍ଧି ପାଇଁ ଆନ୍ଦୋଳନ ଚଳାଇଥିଲେ । ଇତିହାସ, ଭାଷା ଏବଂ ଧର୍ମ ସମାନଭାବରେ ଗ୍ରୀକ୍‌ମାନଙ୍କୁ ତୁର୍କମାନଙ୍କଠାରୁ ପୃଥକ୍ କରିଥିଲା ଏବଂ ଗ୍ରୀକ୍ ଜାତୀୟତାବାଦ ପାଇଁ ମୌଳିକ ଉପାଦାନମାନ ଯୋଗାଇ-ଥିଲା ।

ଗ୍ରୀସ୍‌ର ସର୍ବତ୍ର ବିଶେଷତଃ ଦକ୍ଷିଣ ଗ୍ରୀସ୍‌ରେ ଗ୍ରୀକ୍‌ମାନେ ତୁର୍କୀ ବିରୁଦ୍ଧରେ ବିଦ୍ରୋହ ପାଇଁ ପ୍ରସ୍ତୁତ ହୋଇଯାଇଥିଲେ; କିନ୍ତୁ ସେମାନେ ଏଥିପାଇଁ ଏକ ସୁଯୋଗ ଅପେକ୍ଷାରେ ଥିଲେ । ସେହି ସୁଯୋଗ ସେମାନେ ୧୮୨୧ ମସିହାରେ ପାଇଲେ, ଯେତେବେଳେ ଜାନିନାର ତୁର୍କ ରାଜ୍ୟପାଳ ଆଲି ପାଶା ସୁଲତାନଙ୍କ ସହିତ କଳହକରି ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ, ଏହା ଗ୍ରୀକ୍‌ମାନଙ୍କର ତୁର୍କୀ ବିରୁଦ୍ଧରେ ବିଦ୍ରୋହପାଇଁ ଥିଲା ଏକ ସଙ୍କେତ । ପ୍ରଥମେ ମଲଡାଭିୟାର ଗ୍ରୀକ୍‌ମାନେ ସେମାନଙ୍କର ନେତା ଇପ୍‌ସିଲାଣ୍ଟିଙ୍କ ନେତୃତ୍ୱରେ ବିଦ୍ରୋହ ଘୋଷଣାକଲେ । ଇପ୍‌ସିଲାଣ୍ଟି ରୁଷିଆର ଜାର୍ ପ୍ରଥମ ଆଲେକ୍‌ଜାଣ୍ଡାର୍‌ଙ୍କଠାରୁ ସାହାଯ୍ୟ ପାଇବେ ବୋଲି ଆଶା କରିଥିଲେ; କିନ୍ତୁ ଅଷ୍ଟ୍ରିୟାର

ପ୍ରିନ୍ସ ମେଟ୍ଟାରନିକ୍‌ଙ୍କ ପରାମର୍ଶ ମାନି ରୁଷିଆର ଜାର୍ ତାଙ୍କୁ କୌଣସି ସାହାଯ୍ୟ ଦେଇନଥିଲେ । ତେଣୁ ତୁର୍କି ସରକାରଙ୍କଦ୍ୱାରା ଅବଲମ୍ବେ ମଲ୍‌ଡାଭିଆର ବିଦ୍ରୋହ ଦୃଢ଼ହସ୍ତରେ ଦମନ କରାଯାଇଥିଲା । ଏହାର ଅଳ୍ପଦିନ ପରେ ମୋରିଆ ଓ ଏଜିୟେନ୍ ଦ୍ୱୀପପୁଞ୍ଜରେ ସାଙ୍ଘାତିକ ବିଦ୍ରୋହ ଦେଖାଦେଇଥିଲା । ଏହି ବିଦ୍ରୋହ କ୍ରମେ ସମଗ୍ର ଦକ୍ଷିଣ ଗ୍ରୀସ୍‌କୁ ବ୍ୟାପିଥିଲା ଏବଂ 'ଫିଲିକ ହିଟେଇରିୟାର ଉଦ୍ୟମରେ ଏହି ବିଦ୍ରୋହ ଏକ ଶକ୍ତିଶାଳୀ ସ୍ୱାଧୀନତା ସଂଗ୍ରାମରେ ପରିଣତ ହୋଇଥିଲା । ଗ୍ରୀକ୍‌ମାନେ ସବୁଠି ମୁସଲମାନମାନଙ୍କୁ ହତ୍ୟା କରିଥିଲେ । ତୁର୍କୀର ମୁସଲମାନମାନେ ଏହି ହତ୍ୟାକାଣ୍ଡ ଯୋଗୁ କ୍ରୋଧାନ୍ୱିତ ହୋଇ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଗ୍ରୀକ୍‌ମାନଙ୍କୁ ହତ୍ୟାକଲେ । ଗ୍ରୀସ୍‌ର ଧର୍ମାଧ୍ୟକ୍ଷ ( Patriarch )ଙ୍କୁ କନଷ୍ଟାଣ୍ଟିନୋପଲ୍‌ରେ ମଧ୍ୟ ହତ୍ୟା କରାଗଲା । ଏହିପରିଭାବରେ ଗ୍ରୀକ୍‌ମାନଙ୍କର ସ୍ୱାଧୀନତା ସଂଗ୍ରାମ ଏକ ସାମ୍ପ୍ରଦାୟିକ ଦଙ୍ଗାରେ ପରିଣତ ହେଲା । ଉଭୟ ଗ୍ରୀକ୍ ଓ ତୁର୍କମାନେ ପରସ୍ପରକୁ ଧ୍ୱଂସ କରିବାରେ ବ୍ୟାପୃତ ହେଲେ ।

ଗ୍ରୀକ୍ ବିଦ୍ରୋହ ଆରମ୍ଭ ହେଲା ମାତ୍ରେ ମେଟ୍ଟାରନିକ୍ ଏହାକୁ ଲକ୍ଷ୍ୟକରି କହିଥିଲେ, 'ଏହି ଘଟଣା ସଭ୍ୟଜଗତର ସୀମା ବାହାରେ ବୋଲି ବିବେଚନା କରିବାକୁ ହେବ ।' Referring to the Greek Revolt, Metternich said, "This affair must be looked upon as placed beyond the pale of civilisation.' ଏହା ଭିଏନା କଂଗ୍ରେସର 'ନ୍ୟାୟ ଅଧିକାର' ନୀତିର ବିରୁଦ୍ଧାଚରଣ କରୁଥିବାରୁ ତୁର୍କି ସାମ୍ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ଇଉରୋପୀୟ ଶକ୍ତିମାନଙ୍କର ହସ୍ତକ୍ଷେପ ସେ ସ୍ୱୀକାର କରିନଥିଲେ । ଇଉରୋପୀୟ ଶକ୍ତିମାନେ ମେଟ୍ଟାରନିକ୍‌ଙ୍କ ନେତୃତ୍ୱାଧୀନରେ ଥିବାରୁ ସେମାନେ କେତେବର୍ଷଯାଏ ତୁର୍କି ସାମ୍ରାଜ୍ୟର ଆଭ୍ୟନ୍ତରୀଣ ବିଦ୍ରୋହ ପ୍ରତି ଧ୍ୟାନ ଦେଇନଥିଲେ । ଇଂଲଣ୍ଡ ଏହି ବ୍ୟାପାରରେ ଉଦାସୀନ ଥିଲା; କାରଣ ତାହାର ନୀତି ଥିଲା ତୁର୍କି ସାମ୍ରାଜ୍ୟର ନିରାପତ୍ତା ବଜାୟ ରଖିବା । ୧୮୨୩ ମସିହାରେ ଗ୍ରୀକ୍‌ମାନେ ସେମାନଙ୍କର ସ୍ୱାଧୀନତା ଘୋଷଣାକଲେ । ଯେଉଁ ପାଶ୍ଚାତ୍ୟ ଶକ୍ତିମାନେ ସେମାନଙ୍କର ସ୍ୱାଧୀନତା ସ୍ୱୀକାର କରିନଥିଲେ, ସେମାନଙ୍କର ଜାହାଜଗୁଡ଼ିକୁ ଗ୍ରୀକ୍‌ମାନେ ବାଜ୍ୟାପ୍ତ କରିଥିଲେ । ଇଂଲଣ୍ଡ ନିଜର ସ୍ୱାର୍ଥରକ୍ଷା ଦୃଷ୍ଟିରୁ ବିଚାରକଲା ଯେ ଗ୍ରୀକ୍ ବିଦ୍ରୋହ ବ୍ୟାପାରରେ ତାକୁ ଉଦାସୀନ ନୀତି ତ୍ୟାଗକରିବାକୁ ପଡ଼ିବ । ତେଣୁ ସେ ୧୮୨୩ ମସିହା ମାର୍ଚ୍ଚ ୨୫ ତାରିଖ ଦିନ ଗ୍ରୀକ୍ ଜାତୀୟ ଆନ୍ଦୋଳନକୁ ସ୍ୱୀକୃତି ଦେଲା । ଇଂରେଜ ବଣିକମାନଙ୍କର ବ୍ୟାବସାୟିକ ସୁବିଧା ପାଇଁ ଗ୍ରୀକ୍ ପତାକାକୁ ମଧ୍ୟ ସ୍ୱୀକାର କରିଥିଲା । ଇଉରୋପର ଅନ୍ୟାନ୍ୟ ଶକ୍ତିମାନେ ଇଂଲଣ୍ଡ ଏପରି ପଦକ୍ଷେପ ଗ୍ରହଣ କରିବାରେ ବିଚଳିତ ହୋଇପଡ଼ିଥିଲେ । ଭିଏନା କଂଗ୍ରେସର 'ନ୍ୟାୟ ଅଧିକାର' ନୀତିଦ୍ୱାରା ପରିଚାଳିତ ହେଉଥିବାରୁ, ସେମାନେ ବିଦ୍ରୋହୀ ଗ୍ରୀକ୍‌ମାନଙ୍କର ସ୍ୱାଧୀନତାକୁ ସ୍ୱୀକାର କରିପାରୁନଥିଲେ । ଅନ୍ୟଦିଗରେ ଇଉରୋପର ଜନସାଧାରଣଙ୍କର ଗ୍ରୀକ୍‌ମାନଙ୍କ ପ୍ରତି ସହାନୁଭୂତି ଥିବାରୁ ସେମାନେ ଦୃଢ଼ହସ୍ତରେ ବିଦ୍ରୋହ

ଦମନ କରିବାପାଇଁ ତୁର୍କ ସୁଲତାନଙ୍କୁ ମଧ୍ୟ ସମର୍ଥନ କରିପାରୁନଥିଲେ । ରୁଷିଆର ପାରମ୍ପରିକ ନୀତି ଓ ଧର୍ମଗତ ସହାନୁଭୂତି ଫଳରେ ତାର ସ୍ୱାର୍ଥ ଗ୍ରୀକ୍‌ମାନଙ୍କର ସ୍ୱାର୍ଥ ସହିତ ଜଡ଼ିତ ହୋଇପଡ଼ିଥିଲା । ଏହି ଜଟିଳ ପରିସ୍ଥିତିରୁ ନିଷ୍କୃତି ପାଇବାପାଇଁ ପ୍ରଥମ ଆଲେକ୍‌ଜାଣ୍ଡାର ଜାନୁଆରୀ ୧୮୨୪ ମସିହାରେ ପ୍ରସ୍ତାବ ଦେଲେ ଯେ ଇଉରୋପୀୟ ଶକ୍ତି-ସଂଘ ଗ୍ରୀକ୍ ବ୍ୟାପାରରେ ହସ୍ତକ୍ଷେପ କରିବା ଉଚିତ । ନିମ୍ନଲିଖିତ ବ୍ୟବସ୍ଥାକୁ ଭିତ୍ତିକରି ତୁର୍କସରକାରଙ୍କୁ ଶାନ୍ତି ପ୍ରସ୍ତାବ ଦେବାକୁ ଅନୁରୋଧ କରିଥିଲେ । ଏହି ବ୍ୟବସ୍ଥା ଅନୁସାରେ (୧) ଗ୍ରୀସ୍‌କୁ ସ୍ୱାୟତ୍ତଶାସନ ଅଧିକାର ପ୍ରାପ୍ତ ତିନୋଟି ଅର୍ଦ୍ଧସ୍ୱାଧୀନ ରାଜ୍ୟରେ ବିଭକ୍ତ କରାଯାଇ ସେ ରାଜ୍ୟମାନଙ୍କରେ ତୁର୍କୀର ସାର୍ବଭୌମତ୍ୱ ପ୍ରତିଷ୍ଠା କରିବା (୨) ସେମାନଙ୍କର ସ୍ୱାୟତ୍ତଶାସନ ଦାୟିତ୍ୱ ଶକ୍ତିସଂଘଦ୍ୱାରା ଗ୍ରହଣ କରାଯିବା ।

ମେଟାରନିକ୍ ଏ ପ୍ରସ୍ତାବ ଗ୍ରହଣ କରିନଥିଲେ । ତାଙ୍କ ମତରେ ଏହି ତିନୋଟି ଗ୍ରୀକ୍ ରାଜ୍ୟ ରୁଷିଆ ଆଡ଼କୁ ଢଳିବେ ଏବଂ ତୁର୍କୀର ଅନଧିକାର ପ୍ରବେଶ ଆଳରେ ରୁଷିଆର ସାହାଯ୍ୟ ଭିକ୍ଷା କରିବେ । ତେଣୁ ସେ ଗ୍ରୀସ୍‌କୁ ଏକ ସାର୍ବଭୌମରାଷ୍ଟ୍ରରେ ପରିଣତ କରିବାପାଇଁ ରୁଷିଆର ଜାର୍‌ଙ୍କୁ ବିକଳ୍ପ ପ୍ରସ୍ତାବ ଦେଇଥିଲେ । ରୁଷିଆର ଜାର୍ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ; କାରଣ ସେ ଭାବୁଥିଲେ ଯେ ଗ୍ରୀସ୍ ପୂର୍ଣ୍ଣ ସ୍ୱାଧୀନ ହେଲେ ରୁଷିଆର ସହାୟତା ଆଉ ଲୋଡ଼ିବନାହିଁ । ଏହିପରି ଗ୍ରୀସ୍ ପ୍ରଶ୍ନରେ ଅଚଳାବସ୍ଥା ସୃଷ୍ଟି ହୋଇଥିଲା ଏବଂ ଏଥି ମଧ୍ୟରେ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କର ମୃତ୍ୟୁ ଘଟିଲା ।

ଦୀର୍ଘ ଛଅବର୍ଷ ପର୍ଯ୍ୟନ୍ତ ଏହି ବିଦ୍ରୋହ ଗୃହଯୁଦ୍ଧପରେ ଏକ ନୂତନ ପରିସ୍ଥିତି ସୃଷ୍ଟି ହେଲା । ତୁର୍କୀର ସୁଲତାନ ପୂର୍ବ ଶତ୍ରୁତା ଭୁଲିଯାଇ ଗ୍ରୀକ୍ ବିଦ୍ରୋହର ଦମନ ଉଦ୍ଦେଶ୍ୟରେ ମିଶରର ପାଶା ମେହେମତ୍ ଆଲିଙ୍କର ସାହାଯ୍ୟ ଲୋଡ଼ିଥିଲେ । ମେହେମତ୍ ଆଲିଙ୍କର ସାହାଯ୍ୟ ମିଳିବାରୁ ତୁର୍କୀ-ଗ୍ରୀକ୍ ଯୁଦ୍ଧ ପରିସ୍ଥିତି ଭିନ୍ନ ଆକାର ଧାରଣକଲା । ମେହେମତ୍ ଆଲି ତାଙ୍କ ପୁତ୍ର ଇବ୍ରାହିମ୍‌ଙ୍କୁ ଏକ ସୈନ୍ୟବାହିନୀ ସହିତ ସୁଲତାନଙ୍କୁ ସାହାଯ୍ୟ କରିବାପାଇଁ ପଠାଇଲେ । ଇବ୍ରାହିମ୍ ମୋରିଆରେ ଅବତରଣ କରି ଗ୍ରୀକ୍‌ମାନଙ୍କ ବିରୁଦ୍ଧରେ ବ୍ୟାପକ ଅଭିଯାନ ଚଳାଇଲେ । ୧୮୨୫ ମସିହାରେ ସମୁଦ୍ରର ନିୟନ୍ତ୍ରଣ ତାଙ୍କ ହାତକୁ ଚାଲିଯାଇଥିଲା । ଅପ୍ରେଲ ମାସ ୧୮୨୬ ମସିହାରେ ମିସୋଲଙ୍ଘି ଇବ୍ରାହିମଙ୍କ ହାତରେ ପଡ଼ିଲା । ମିସୋଲଙ୍ଘି ପତନର ବର୍ଷକ ପରେ ଏଥେନ୍‌ସ ଇବ୍ରାହିମଙ୍କଦ୍ୱାରା ଅଧିକୃତ ହେଲା । ଇତି ମଧ୍ୟରେ ରୁଷିଆ ଓ ଇଂଲଣ୍ଡରେ କେତେକ ରାଜନୈତିକ ପରିବର୍ତ୍ତନ ଘଟିଥିଲା । କ୍ୟାସଲ୍‌ରେଙ୍କ ସ୍ଥାନରେ କ୍ୟାନିଂ ଇଂଲଣ୍ଡର ବୈଦେଶିକ ମନ୍ତ୍ରିପଦରେ ନିଯୁକ୍ତ ହେବାଫଳରେ ଯେପରି ଇଂଲଣ୍ଡର ନୀତିରେ ପରିବର୍ତ୍ତନ ଘଟିଥିଲା, ସେହିପରି ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ପ୍ରଥମ ନିକୋଲାସ ରୁଷିଆର ରାଜସିଂହାସନ ଅଧିକାର କରିବା ଯୋଗୁ ରୁଷିଆର ନୀତିରେ ପରିବର୍ତ୍ତନ ଘଟିଥିଲା । ପ୍ରଥମ ନିକୋଲାସ ଗ୍ରୀକ୍‌ମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । ଅନ୍ୟ ପକ୍ଷରେ କ୍ୟାନିଂ ଥିଲେ ଉଦାରପନ୍ଥୀ । କାଳେ

ରୁଷିଆ ନିଜ ତରଫରୁ ତୁର୍କୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବ, ଏହି ଭୟରେ କ୍ୟାନିଂ ରୁଷିଆକୁ ତୁର୍କୀରେ ଉଭୟ ରାଷ୍ଟ୍ରର ମିଳିତ ହସ୍ତକ୍ଷେପ ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବ ଅନୁଯାୟୀ ଉଭୟ ରାଷ୍ଟ୍ର ୧୮୨୬ ମସିହାରେ 'ପ୍ରୋଟୋକଲ-ଅଫ୍-ପେଟ୍ରୋଗ୍ରାଡ୍' ନାମକ ଏକ ପ୍ରସ୍ତାବ ପତ୍ରରେ ତୁର୍କୀର ସୁଲତାନଙ୍କୁ ଯୁଦ୍ଧ ବିରତି ପାଇଁ ଏବଂ ଗ୍ରୀସ୍‌କୁ ଏକ ଅଧୀନସ୍ଥ ରାଜ୍ୟରେ ପରିଣତ କରିବାପାଇଁ ପରାମର୍ଶ ଦେଇଥିଲେ; କିନ୍ତୁ ସୁଲତାନ ଏହି ପ୍ରସ୍ତାବ-ପତ୍ରକୁ ଅଗ୍ରାହ୍ୟ କରିଦେଲେ । ତେଣୁ ଇଂଲଣ୍ଡ, ରୁଷିଆ ଓ ଫ୍ରାନ୍ସର ପ୍ରତିନିଧିମାନେ ଲଣ୍ଡନରେ ମିଳିତହୋଇ ୧୮୨୭ମସିହାରେ ଲଣ୍ଡନ ଚୁକ୍ତି (The treaty of London) ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତି ଅନୁସାରେ ଗ୍ରୀସ୍‌କୁ ଏକ ସ୍ୱାୟତ୍ତଶାସନ କ୍ଷମତାପ୍ରାପ୍ତ ( autonomous ) ରାଜ୍ୟରେ ପରିଣତକରି ତୁର୍କୀର କର୍ତ୍ତୃତ୍ୱାଧୀନରେ ରଖିବାକୁ ଏହି ତିନିଶକ୍ତି ସ୍ଥିର କରିଥିଲେ । ତା' ଛଡ଼ା ସେମାନେ ସ୍ଥିର କରିଥିଲେ ଯେ ଯଦି ପ୍ରୟୋଜନ ହୁଏ, ସାମରିକ ଶକ୍ତି ସାହାଯ୍ୟରେ ତୁର୍କି ସୁଲତାନଙ୍କୁ ଯୁଦ୍ଧ ବିରତି ପ୍ରସ୍ତାବ ଗ୍ରହଣ କରିବାକୁ ବାଧ୍ୟ କରିବେ । ସୁତରାଂ ପ୍ରୋଟୋକଲ-ଅଫ୍ ପେଟ୍ରୋଗ୍ରାଡ୍‌କୁ ଲଣ୍ଡନଚୁକ୍ତିରେ ରୂପାନ୍ତରିତ କରାଯାଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ତୁର୍କୀର ଆଭ୍ୟନ୍ତରୀଣ ବ୍ୟାପାରରେ ଇଂଲଣ୍ଡର ହସ୍ତକ୍ଷେପର ଏକମାତ୍ର କାରଣ ହେଲା ଯେ ରୁଷିଆ ଯେପରି ଏକାକୀ ଗ୍ରୀସ୍‌କୁ ସାହାଯ୍ୟ ଦେଇ ତାର ବିନିମୟରେ ସେଠାରେ ଆଧିପତ୍ୟ ବିସ୍ତାର କରିବାକୁ ସକ୍ଷମ ନହୁଏ ।

ଅଷ୍ଟ୍ରିୟା ଓ ପ୍ରୁସିୟା ଏହିପରି ଭାବରେ ଗ୍ରୀକ୍ ବିଦ୍ରୋହୀମାନଙ୍କୁ ସାହାଯ୍ୟ ଦେବା ସପକ୍ଷରେ ନ ଥିଲେ । ତେଣୁ ସେମାନେ ଲଣ୍ଡନ ଚୁକ୍ତିକୁ ସ୍ୱୀକାର କରିନଥିଲେ । ଯେ ଯାହା-ହେଉ ଇଂଲଣ୍ଡ ଓ ଫ୍ରାନ୍ସର ନୌବହର ତୁର୍କି ଓ ଗ୍ରୀକ୍‌ମାନଙ୍କ ମଧ୍ୟରେ ଯୁଦ୍ଧ ବିରତି ପ୍ରବର୍ତ୍ତନ କରିବାକୁ ଉଦ୍ୟମ କରୁଥିଲାବେଳେ ନାଭାରିନୋ ଉପସାଗର ( Bay of Navarino )ରେ ମେହେମତ୍ ଆଲିଙ୍କ ନୌବହର ସହିତ ୧୮୨୭ ମସିହା ଅକ୍ଟୋବର ୨୦ ତାରିଖରେ ହଠାତ୍ ସଙ୍ଘର୍ଷ ହେଲା । ଏହି ନାଭାରିନୋ ଯୁଦ୍ଧରେ ମେହେମତ୍ ଆଲିଙ୍କ ନୌବହର ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଲା । ନାଭାରିନୋ ଯୁଦ୍ଧର ଫଳାଫଳ ଗୁରୁତ୍ୱପୂର୍ଣ୍ଣ ହୋଇଥିଲା; କାରଣ ସୁଲତାନ ଏଥିରେ କ୍ରୁଦ୍ଧ ହୋଇ ଇଉରୋପର ଖ୍ରୀଷ୍ଟିଆନ ଶକ୍ତିମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧ (Holy War) ଘୋଷଣା କଲେ । ବିଶେଷତଃ ରୁଷିୟା ସହିତ ଡାନ୍ୟୁବୀୟ ରାଜ୍ୟଗୁଡ଼ିକ ବିଷୟରେ ଏବଂ ବସ୍‌ଫରସ୍ ଓ ଡାର୍ଡାନେଲିସ୍ ପ୍ରଣାଳୀ ଦ୍ୱୟରେ ନୌଚାଳନା ସମ୍ବନ୍ଧରେ ସେ ୧୮୨୬ ମସିହାରେ ଯେଉଁ ଆକରମ୍ୟାନ ଚୁକ୍ତି (Treaty of Akkerman ) ସ୍ୱାକ୍ଷର କରିଥିଲେ, ତାହା ସେ ଅଗ୍ରାହ୍ୟ କରିଦେଇଥିଲେ । ତେଣୁ ରୁଷିଆକୁ ତୁର୍କୀ ବ୍ୟାପାରରେ ହସ୍ତକ୍ଷେପ କରିବାପାଇଁ ଗୋଟାଏ ବାହାନା ମିଳିଲା । ଏହା ବିରୁଦ୍ଧରେ ସେତେବେଳେ ପାଶ୍ଚାତ୍ୟ ଶକ୍ତିମାନଙ୍କର ସଫଳ ପ୍ରତିବାଦ କରିବା ଅସମ୍ଭବ ହୋଇଥିଲା । ଯେ ଯାହାହେଉ ଇତ୍ୟବସରରେ ଓୟେଲିଂଟନ ୧୮୨୮ ମସିହାରେ ଇଂଲଣ୍ଡର

ପ୍ରଧାନ ମନ୍ତ୍ରିପଦ ଗ୍ରହଣ କରିଥିଲେ ଏବଂ ଅଚିରକାଳମଧ୍ୟେ ସେ ନାଭାରିନୋକୁ 'ଏକ ଦୁର୍ଭାଗ୍ୟ-ଜନକ ଘଟଣା ବୋଲି ଘୋଷଣାକରି ତୁର୍କୀ ସରକାରଙ୍କୁ କ୍ଷମା ମାଗିଥିଲେ ଏବଂ ଇଂଲଣ୍ଡ ତୁର୍କୀ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିବା ପରମ୍ପରାଗତ ନୀତି ଅନୁସରଣକରି ଯୁଦ୍ଧରୁ ଓହରି ଯାଇଥିଲା । ତେଣୁ ରୁଷିଆକୁ ତୁର୍କୀ ସମ୍ବନ୍ଧରେ ତାର ପନ୍ଥା ବାଛିନେବାକୁ ଛାଡ଼ି-ଦେଇଥିଲେ । ଇଂଲଣ୍ଡର ଏହି ମତିଗତି ଦେଖି ରୁଷିଆ ଏକାକୀ ତୁର୍କୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା ଏବଂ ସ୍ୱଳ୍ପକାଳ ମଧ୍ୟରେ ତୁର୍କୀକୁ ପରାସ୍ତକରି ତୁର୍କ ସୁଲତାନଙ୍କୁ ଏଡ୍ରିୟା ନୋପଲ୍ ସନ୍ଧି (୧୮୨୯) ସ୍ୱାକ୍ଷର କରିବାକୁ ବାଧ୍ୟ କରିଥିଲା । ଏହି ସନ୍ଧି ଅନୁସାରେ ତୁର୍କୀ, ମଲଡାଭିଆ ଓ ଓ୍ୱାଲାଚିଆକୁ ପୂର୍ଣ୍ଣ ସ୍ୱାୟତ୍ତଶାସନ କ୍ଷମତା ଏବଂ ରୁଷିଆକୁ ଏସିଆରେ ଏକ ବିସ୍ତୃତ ଅଞ୍ଚଳର ଅଧିକାର ଓ ଅଧିକ ରାଜନୈତିକ ଓ ବାଣିଜ୍ୟିକ କ୍ଷମତା ଦେଇଥିଲା । ଏହି ସମୟରେ ଗ୍ରୀକ୍‌ମାନଙ୍କର ସ୍ୱାଧୀନତା ଲାଭ ବିଷୟରେ ଏକ ପ୍ରତିବନ୍ଧକ ସୃଷ୍ଟି ହୋଇ-ଥିଲା । ରୁଷିଆ ଗ୍ରୀସ୍‌କୁ ସମ୍ପୂର୍ଣ୍ଣଭାବେ ସ୍ୱାଧୀନତା ନ ଦେଇ କେବଳ ସ୍ୱାୟତ୍ତଶାସନ ଅଧିକାର ଦେବାକୁ ଚାହୁଁଥିଲା । ଇଂଲଣ୍ଡ ଓ ରୁଷିଆ ଦେଖିଲେ ଯେ ଗ୍ରୀସ୍‌କୁ ଯଦି ସମ୍ପୂର୍ଣ୍ଣଭାବେ ସ୍ୱାଧୀନତା ନ ଦିଆଯାଏ, ତାହାହେଲେ ରୁଷିଆ ଗ୍ରୀସ୍ ଉପରେ ପ୍ରାଧାନ୍ୟ ବିସ୍ତାର କରିବାର ପୂର୍ଣ୍ଣ ସୁଯୋଗ ପାଇବ । ଏହି କାରଣରୁ ଇଂଲଣ୍ଡ ତୁର୍କ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିବାର ନୀତି ଉପେକ୍ଷା କରି ଗ୍ରୀସ୍‌କୁ ସ୍ୱାଧୀନତା ଦେବାପାଇଁ ସମ୍ମତ ହୋଇଥିଲା । ଅଷ୍ଟ୍ରିୟା ସ୍ୱାଧୀନତା ଓ ଜାତୀୟବାଦର ଶତ୍ରୁ ହେଲେ ମଧ୍ୟ ପରିସ୍ଥିତି ଦୃଷ୍ଟିରୁ ଗ୍ରୀସ୍‌କୁ ସ୍ୱାଧୀନତା ଦେବାକୁ ରାଜି ହୋଇଥିଲା । ତେଣୁ ଗ୍ରୀକ୍ ପ୍ରଶ୍ନ ଜଟିଳ ଆକାର ଧାରଣ କରିଥିଲେ ମଧ୍ୟ ଇଉରୋପୀୟ ଶକ୍ତିମାନଙ୍କଦ୍ୱାରା ତାହା ସମାଧାନ କରାଯାଇଥିଲା । ଏଡ୍ରିୟାନୋପଲ୍ ସନ୍ଧିରେ ତୁର୍କୀ ଗ୍ରୀସ୍‌ର ସ୍ୱାଧୀନତା ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲା । ଅବଶ୍ୟ ପରେ ଲଣ୍ଡନ କନଭେନ୍‌ସନ୍ (୧୮୩୨) (Convention of London, 1832) ଦ୍ୱାରା ଗ୍ରୀକର ସ୍ୱାଧୀନତା ଆନ୍ତର୍ଜାତିକ ସ୍ୱୀକୃତି ଲାଭକଲା ଏବଂ ନୂତନ ଗ୍ରୀସ୍ ରାଜ୍ୟକୁ ଇଂଲଣ୍ଡ, ରୁଷିଆ ଓ ଫ୍ରାନ୍‌ସର ମିଳିତ ତତ୍ତ୍ୱାବଧାନରେ ରଖାଗଲା । ବେଭେରିଆର ରାଜା ଲୁଇଙ୍କର ପୁତ୍ର ଅଥୋଙ୍କୁ ଗ୍ରୀସ୍‌ର ରାଜମୁକୁଟ ଅର୍ପଣ କରାଯାଇଥିଲା ଏବଂ ସେ ତାହା ଗ୍ରହଣ କରିଥିଲେ । ୧୮୩୩ ମସିହାର ପ୍ରାରମ୍ଭରେ ସେ ଗ୍ରୀସ୍‌ର ଶାସନଭାର ଗ୍ରହଣ କଲେ । ଗ୍ରୀସ୍‌ର ସ୍ୱାଧୀନତା ଜାତୀୟତାବାଦର ଏକ ଅପୂର୍ବ ବିଜୟ । ପ୍ରଥମଥର ପାଇଁ ଏହା ଥିଲା ତୁର୍କ ସାମ୍ରାଜ୍ୟର ଅଖଣ୍ଡତା ଉପରେ ପ୍ରଚଣ୍ଡ ଆଘାତ । ଏହାଛଡ଼ା ଗ୍ରୀସ୍‌ର ସ୍ୱାଧୀନତା ଅନ୍ୟାନ୍ୟ ବଲ୍‌କାନ ରାଜ୍ୟମାନଙ୍କର ବିଦ୍ରୋହ ପାଇଁ ଏକ ଦୃଷ୍ଟାନ୍ତ ହୋଇଥିଲା ।

ଗ୍ରୀସ୍‌ର ସ୍ୱାଧୀନତାପ୍ରାପ୍ତି ସଙ୍ଗେ ସଙ୍ଗେ ତୁର୍କୀର ଭାଗ୍ୟ ବିପର୍ଯ୍ୟୟର ଅବସାନ ଘଟି-ନଥିଲା । ମିଶରର ପାଶା ମେହେମତ୍ ଆଲି ତୁର୍କୀକୁ ଗ୍ରୀକ୍‌ମାନଙ୍କ ବିରୁଦ୍ଧରେ ସାହାଯ୍ୟ କଲାବେଳେ ତୁର୍କ ସୁଲତାନଙ୍କ ଦୁର୍ବଳତାର ପରିଚୟ ପାଇଥିଲେ । ଏହି ଦୁର୍ବଳତାର ସୁଯୋଗ ନେଇ ସେ ୧୮୩୧ ମସିହାରେ ତୁର୍କୀ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ ।

ପ୍ରାଚ୍ୟ ସମସ୍ୟାର ପରବର୍ତ୍ତୀ ଉପାଖ୍ୟାନର ସୂତ୍ରପାତ ହେଲା, ଯେତେବେଳେ ମେହେମତ୍ ଆଲି ତାଙ୍କର ଉଚ୍ଚାଭିଳାଷ ପରିପୂରଣ ପାଇଁ ତୁର୍କୀ ବିରୁଦ୍ଧରେ ବ୍ୟାପକ ଅଭିଯାନ ଚଳାଇଲେ । ସେ ତୁର୍କ ସୁଲତାନଙ୍କୁ ଗ୍ରୀକ୍ ବିଦ୍ରୋହ ଦମନପାଇଁ ଆବଶ୍ୟକ ସାହାଯ୍ୟ ଦେଇଥିବାରୁ ତାଙ୍କୁ ପୁରସ୍କାର ସ୍ୱରୂପ କ୍ରିଟ୍ ଦ୍ୱୀପର ଶାସନଭାର ଅର୍ପଣ କରାଯାଇଥିଲା । ସେ ଏହି ପୁରସ୍କାର ଅତି ନଗଣ୍ୟ ବୋଲି ବିଚାରି ସିରିୟା ଆକ୍ରମଣ କଲେ ଏବଂ କନଷ୍ଟାଣ୍ଟିନୋପଲ ଦଖଲ କରିବାକୁ ପ୍ରସ୍ତୁତ ହେଲେ । ତୁର୍କ ସୁଲତାନ ଏଥିରେ ଭୀତତ୍ରସ୍ତ ହୋଇ ଇଉରୋପୀୟ ଶକ୍ତିମାନଙ୍କ ନିକଟରେ ସାହାଯ୍ୟ ଭିକ୍ଷାକଲେ । ରୁଷିଆ ବ୍ୟତୀତ ଅନ୍ୟ କୌଣସି ଇଉରୋପୀୟ ଶକ୍ତି ତୁର୍କୀକୁ ସାହାଯ୍ୟ କରିବାକୁ ବାହାରିନଥିଲା । ରୁଷିଆର ସାହାଯ୍ୟ ତୁର୍କୀ ପକ୍ଷରେ ଅବାଞ୍ଛନୀୟ ହେଲେ ମଧ୍ୟ, ବୁଡ଼ିଯାଉଥିବା ଲୋକ ନିକଟରେ ଥିବା ବିଷଧର ସର୍ପକୁ ଜାବୁଡ଼ି ଧରିଲାପରି ତୁର୍କୀ ସୁଲତାନ ରୁଷିଆର ସାହାଯ୍ୟ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ରୁଷିଆ ତୁର୍କୀକୁ ସାହାଯ୍ୟ କରିବାକୁ ଅଗ୍ରସର ହୋଇଥିଲା । ତାର ସୈନ୍ୟ ତୁର୍କୀରେ ପ୍ରବେଶକରିବା ଦେଖି ପାଶ୍ଚାତ୍ୟ ଶକ୍ତିମାନେ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଥିଲେ । ସେମାନେ ମନେକଲେ ଯେ ଏହି ପରିସ୍ଥିତିରେ ତୁର୍କୀ ମେହେମତ୍ ଆଲିଙ୍କର ସଂରକ୍ଷିତ ରାଜ୍ୟ ହେବା ପରିବର୍ତ୍ତେ ରୁଷିଆର ଆଶ୍ରିତ ରାଜ୍ୟରେ ପରିଣତ ହେବ । ତେଣୁ ଫ୍ରାନ୍‌ସ, ଇଂଲଣ୍ଡ ଏବଂ ଅଷ୍ଟ୍ରିଆ ମେହେମତ୍ ଆଲିଙ୍କୁ ସିରିଆ ଛାଡ଼ିଦେଇ ତାଙ୍କ ସହିତ ବିବାଦ ସମାଧାନ ପାଇଁ ତୁର୍କ ସୁଲତାନଙ୍କୁ ବାଧ୍ୟ କରିଥିଲେ; କିନ୍ତୁ ରୁଷିଆ ତାହାର ସାହାଯ୍ୟ ବିନିମୟରେ କେତେକ ସୁବିଧା ସୁଯୋଗ ତୁର୍କ ସୁଲତାନଙ୍କଠାରୁ ଦାବି କରିଥିଲେ । ରୁଷିଆ ତୁର୍କୀକୁ ଅନକିଆର ସ୍କେଲସି ସନ୍ଧି (୧୮୩୩) (The Treaty of Unkier Skelessi, 1833) ସ୍ୱାକ୍ଷର କରିବାପାଇଁ ବାଧ୍ୟ କରିଥିଲା । ଏହି ସନ୍ଧିର ସର୍ତ୍ତ ଅନୁସାରେ ତୁର୍କୀ ରୁଷିଆର ଯୁଦ୍ଧଜାହାଜଗୁଡ଼ିକୁ ଡାର୍ଡାନେଲିସ୍‌ରେ ଅବାଧ ଯାତ୍ରା କରିବାପାଇଁ ସ୍ୱୀକୃତି ଦେଇଥିଲା । ଯୁଦ୍ଧ ସମୟରେ ରୁଷିଆର ଯୁଦ୍ଧଜାହାଜ ବ୍ୟତୀତ ଅନ୍ୟସବୁ ଯୁଦ୍ଧଜାହାଜ ପାଇଁ ଡାର୍ଡାନେଲିସ ବନ୍ଦ ରହିବ ବୋଲି ତୁର୍କୀ ପ୍ରତିଶ୍ରୁତି ଦେଲା । ଏହା ଫଳରେ କୃଷ୍ଣସାଗର ରୁଷିଆର ସମ୍ପୂର୍ଣ୍ଣ ଅଧିକାରରେ ଆସିଲା ଏବଂ ତୁର୍କୀ ବସ୍ତୁତଃ ରୁଷିଆର ଏକ ସଂରକ୍ଷିତ ରାଜ୍ୟ ହେଲା । ଏହି ସନ୍ଧିଦ୍ୱାରା କନଷ୍ଟାଣ୍ଟିନୋପ୍‌ଲରେ ରୁଷିଆ ତାର ପ୍ରାଧାନ୍ୟ ବିସ୍ତାର କରିଥିଲା ।

ଏହି ସନ୍ଧି ପ୍ୟାରିସ୍ ଓ ଲଣ୍ଡନରେ ଉତ୍ତେଜନା ସୃଷ୍ଟି କରିଥିଲା । ପାମାରଷ୍ଟୋନ ଆନ୍‌କିସ୍କାର୍ ସ୍କେଲେସି ସନ୍ଧି ବାତିଲ କରିବାପାଇଁ ଦୃଢ଼ ସଙ୍କଳ୍ପ କରିଥିଲେ । ତୁର୍କ ସୁଲତାନ ମେହେମତ୍ ଆଲିଙ୍କ ନିକଟରୁ ସିରିଆ ପୁନରୁଦ୍ଧାର କରିବାପାଇଁ ବଦ୍ଧପରିକର ହୋଇ ୧୮୩୯ ମସିହାରେ ଯୁଦ୍ଧ ଆରମ୍ଭ କରିଦେଲେ; କିନ୍ତୁ ସେ ମେହେମତ୍ ଆଲିଙ୍କଦ୍ୱାରା ସମ୍ପୂର୍ଣ୍ଣରୂପେ ପରାଜିତ ହୋଇଥିଲେ । ମେହେମତ୍ ଆଲି କନଷ୍ଟାଣ୍ଟିନୋପଲ ଆକ୍ରମଣ କରିବାକୁ ମଧ୍ୟ ଧମକ ଦେଇଥିଲେ । ସୁଲତାନ ତୁର୍କୀକୁ ରକ୍ଷାକରିବାପାଇଁ ଇଉରୋପୀୟ

ଶକ୍ତିମାନଙ୍କୁ ଆବେଦନ କରିଥିଲେ; କିନ୍ତୁ ଇଉରୋପୀୟ ଶକ୍ତିମାନେ ତୁର୍କୀ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ରାଜି ହୋଇନଥିଲେ । ଫ୍ରାନ୍ସ ଅବଶ୍ୟ ଗୋପନରେ ମେହେମତ୍ ଆଲିଙ୍କୁ ସାହାଯ୍ୟ ଦେବାରେ ଲାଗିଥିଲା; କାରଣ ସେ ଆଶା କରିଥିଲା ଯେ ଏହାଦ୍ୱାରା ମିଶର ଏବଂ ସିରିୟାରେ ତାହାର ସ୍ୱାର୍ଥ ବୃଦ୍ଧି ପାଇବ । ସେ ମଧ୍ୟ ଭୂମଧ୍ୟସାଗରରେ ଇଂଲଣ୍ଡର ପ୍ରଭାବ ହ୍ରାସକରିବା ଚାହୁଁଥିଲା । ଇଂଲଣ୍ଡର ମନ୍ତ୍ରୀ ପାମାରଷ୍ଟୋନ ପରିସ୍ଥିତି ବିଚାରକରି ଦେଖିଲେ ଯେ ଫ୍ରାନସ୍ ମିଶରରେ ପ୍ରାଧାନ୍ୟ ବିସ୍ତାର କରିବାର ଯଥେଷ୍ଟ ସମ୍ଭାବନା ଅଛି । ତାଙ୍କ ମତରେ ଇଂଲଣ୍ଡ ପ୍ରତି ରୁଷିଆର କନଷ୍ଟାଣ୍ଟିନୋପ୍ଲରେ ପ୍ରାଧାନ୍ୟ ବିସ୍ତାର ଯେପରି ବିପଜ୍ଜନକ, ଫ୍ରାନ୍ସର ମିଶରରେ ପ୍ରାଧାନ୍ୟ ବିସ୍ତାର ସେହିପରି ବିପଜ୍ଜନକ । ତେଣୁ ସେ ତୁର୍କୀର ଅଖଣ୍ଡତା ବଜାୟ ରଖିବା ଏବଂ କୌଣସି ଏକ ଶକ୍ତିର ସ୍ୱତନ୍ତ୍ର ହସ୍ତକ୍ଷେପ ରୋକିବା ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ରୁଷିଆ ବଡ଼ ଜଟିଳ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ସେ ବେଶ୍ ବୁଝିପାରିଥିଲା ଯେ ମେହେମତ୍ ଆଲିଙ୍କ ବିଜୟ ଫଳରେ ଜଣେ ଦୁର୍ବଳ ଶାସକ ପରିବର୍ତ୍ତେ କନଷ୍ଟାଣ୍ଟିନୋପଲରେ ଜଣେ ଦକ୍ଷ ଶାସକ ସ୍ଥାନ ପାଇବ । ତାହା ଯଦି ହୁଏ ରୁଷିଆକୁ ପ୍ରାଚ୍ୟରେ ତାହାର ବାଞ୍ଛିତ ଯୋଜନାଗୁଡ଼ିକ ପରିତ୍ୟାଗ କରିବାକୁ ପଡ଼ିବ । ଅନ୍ୟ ଦିଗରେ ସେ ଯଦି ତୁର୍କୀ ସୁଲତାନଙ୍କ ସହିତ ତାଙ୍କର ଶକ୍ତିଶାଳୀ ସାମନ୍ତ ମେହେମତ୍ ଆଲିଙ୍କ ବିରୁଦ୍ଧରେ ବନ୍ଧୁତା କରିବାକୁ ଚାହାନ୍ତି, ତାହାହେଲେ ତାଙ୍କୁ ଇଂଲଣ୍ଡ ଏବଂ ଅନ୍ୟ ଇଉରୋପୀୟ ଶକ୍ତିମାନଙ୍କ ସହିତ ସହଯୋଗ ରଖିବାକୁ ପଡ଼ିବ । ସେ ଯାହାହେଉ, ଫ୍ରାନ୍ସ ଏବଂ ମେହେମତ୍ ଆଲିଙ୍କ ଦୁରଭିସନ୍ଧି ବୁଝିପାରି ଉଭୟରେ ରୁଷିଆ ଇଂଲଣ୍ଡ ସହିତ ବନ୍ଧୁତା କରିବାକୁ ଆଗେଇଆସିଥିଲା । ସେ ମଧ୍ୟ ତାହାର ନିର୍ଦ୍ଦିଷ୍ଟ ସ୍ଥାନ ପରିତ୍ୟାଗ କରିବାକୁ ଏବଂ ତୁର୍କୀ ବ୍ୟାପାରରେ ସମବେତ ହସ୍ତକ୍ଷେପ ପାଇଁ ରାଜିହୋଇ-ଥିଲା । ସୁତରାଂ ପାମାରଷ୍ଟୋନ, ରୁଷିଆ, ପ୍ରୁସିୟା, ଅଷ୍ଟ୍ରିୟା ଓ ଇଂଲଣ୍ଡ ମଧ୍ୟରେ ଲଣ୍ଡନଠାରେ ଏକ ଚୁକ୍ତି (୧୮୪୦) ( Convention of London, 1840 ) ସମ୍ପାଦନ କଲେ । ଏହି ଶକ୍ତିମାନେ ଫ୍ରାନ୍ସର ଅଜ୍ଞାତରେ ମେହେମତ୍ ଆଲିଙ୍କ ଉପରେ ସେମାନଙ୍କର ସର୍ତ୍ତଗୁଡ଼ିକ ଲଦିଦେବାପାଇଁ ସମ୍ମତ ହୋଇଥିଲେ । ଫ୍ରାନ୍ସର ରାଜା ଲୁଇ ଫିଲିପ୍ ଏଥିରେ ବିକ୍ଷୁବ୍ଧହୋଇ ଇଂଲଣ୍ଡ ବିରୁଦ୍ଧରେ ଯୁଦ୍ଧ କରିବାକୁ ଧମକ ଦେଇଥିଲେ; କିନ୍ତୁ ପରେ ସେଥିରୁ ସେ ନିବୃତ୍ତ ହେଲେ । ମିଳିତ ଇଉରୋପୀୟ ନୌବାହିନୀର ପରିଚାଳନା ଫଳରେ ମେହେମତ୍ ଆଲି ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଲଣ୍ଡନ ସନ୍ଧି (୧୮୪୧) ( The Treaty of London, 1841 ) ଗ୍ରହଣ କଲେ । ଏହି ସନ୍ଧିର ସର୍ତ୍ତ ଅନୁସାରେ ମେହେମତ୍ ଆଲି ସିରିଆ ଉପରେ ତାଙ୍କ ଦାବି ତ୍ୟାଗକରିବାକୁ ସମ୍ମତ ହୋଇଥିଲେ ଏବଂ ତାଙ୍କୁ ତୁର୍କୀ ସୁଲତାନଙ୍କ କର୍ତ୍ତୃତ୍ୱାଧୀନରେ ମିଶରର ପୁରୁଷାନୁକ୍ରମିକ ପାଶାରୂପେ ସ୍ଥାୟୀ କରାଗଲା । ଏହାଛଡ଼ା ଯୁଦ୍ଧ ସମୟରେ ଡାର୍ଡାନେଲିସ ସବୁ ରାଜ୍ୟପାଇଁ ବନ୍ଦ ରହିବବୋଲି ସ୍ଥିର କରାଗଲା । ଏହି ସର୍ତ୍ତଦ୍ୱାରା ଆନ୍‌କିୟାର ସ୍କେଲେସି ସନ୍ଧି ବାତିଲ କରାଯାଇ ତୁର୍କୀ ସାମ୍ରାଜ୍ୟକୁ ରୁଷିଆ କବଳରୁ ମୁକ୍ତ କରାଗଲା । ଏହି ଲଣ୍ଡନ ସନ୍ଧି ପାମାରଷ୍ଟୋନଙ୍କର ଏକ

ବଡ଼ ବିଜୟ । ତାଙ୍କର କୂଟନୀତି ଫଳରେ ରୁଷିଆ ତୁର୍କୀ ଉପରେ ଆଧିପତ୍ୟ କିମ୍ବା ଫ୍ରାନ୍ସ ମିଶର ଉପରେ ଆଧିପତ୍ୟ ବିସ୍ତାର କରିପାରିଲେନାହିଁ । କୃଷ୍ଣସାଗରକୁ ରୁଷିଆର ସମ୍ପୂର୍ଣ୍ଣ ଅଧିକାରରୁ ମୁକ୍ତ କରାଗଲା ଓ ତୁର୍କ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖାଗଲା । ଲଣ୍ଡନ ସନ୍ଧି ପ୍ରମାଣ କରିଦେଲା ଯେ ଫ୍ରାନ୍ସ ଗୋପନରେ ମେହେମତ୍ ଆଲିଙ୍କୁ ସାହାଯ୍ୟ କରି ମଧ୍ୟ ତାହାର ଲକ୍ଷ୍ୟ ସାଧନ କରିପାରିଲା ନାହିଁ । ସେ ଯାହାହେଉ, ଅନ୍ତତଃ ବାରବର୍ଷ ଯାଏଁ ପ୍ରାଚ୍ୟ ସମସ୍ୟା ଇଉରୋପର ଶାନ୍ତି ବ୍ୟାଘାତ କରିପାରିନଥିଲା ।

---

# ନବମ ଅଧ୍ୟାୟ

## ଫ୍ରାନ୍ସର ଇତିହାସ (୧୮୧୫-୧୮୪୮)
## (The History of France : 1815-1848)

**ଅଷ୍ଟାଦଶ ଲୁଇଙ୍କ ରାଜତ୍ୱ ୧୮୧୫-୨୪**

ଓ୍ୱାଟରଲୁ ଯୁଦ୍ଧର ଅବସାନ ପରେ ୧୮୧୫ ମସିହାରେ ମିତ୍ରଶକ୍ତିମାନେ ଷୋଡ଼ଶ ଲୁଇଙ୍କ ଅନୁଜ ଅଷ୍ଟାଦଶ ଲୁଇଙ୍କୁ ଦ୍ୱିତୀୟଥର ପାଇଁ ଫ୍ରାନ୍ସର ରାଜସିଂହାସନରେ ବସାଇ ବୁରବନ୍ ରାଜବଂଶର ପୁନଃ ପ୍ରତିଷ୍ଠା କରିଥିଲେ । ଅଷ୍ଟାଦଶ ଲୁଇ ୧୮୧୪ ମସିହାରେ ଯେତେବେଳେ ପ୍ରଥମ ଥର ପାଇଁ ରାଜସିଂହାସନ ଆରୋହଣ କରିଥିଲେ, ସେତେବେଳେ ସେ ଏକ ସନନ୍ଦ (Charter) ଜାରି (promulgate) କରିଥିଲେ । ଏହି ସନନ୍ଦ ପୁରାତନ ରାଜ୍ୟଶାସନ ବ୍ୟବସ୍ଥା (Ancient Regime)ର ପରମ୍ପରା ଭାଙ୍ଗି ଦେଇଥିଲା ଏବଂ ବିପ୍ଳବର ମୂଲ୍ୟବାନ୍ କାର୍ଯ୍ୟଗୁଡ଼ିକୁ ସ୍ୱୀକାର କରିଥିଲା । ବିପ୍ଳବର କେତେକ ନୀତି ଏହି ସନନ୍ଦରେ ସ୍ଥାନ ପାଇଥିଲା । ଅଷ୍ଟାଦଶ ଲୁଇ ତହିଁରେ ଘୋଷଣା କରିଥିଲେ ଯେ ଆଇନ ଆଗରେ ସମସ୍ତେ ସମାନ; ଅର୍ଥାତ୍ ବ୍ୟକ୍ତି ଏବଂ ବ୍ୟକ୍ତି ମଧ୍ୟରେ କୌଣସି ପ୍ରଭେଦ ନାହିଁ, ସରକାରୀ ଚାକିରି ଯୋଗ୍ୟ ଲୋକଙ୍କପାଇଁ ଉନ୍ମୁକ୍ତ ରହିବ, ବେଆଇନ ଭାବରେ କାହାରିକୁ ଗିରଫ କରାଯିବନାହିଁ, ଲୋକମାନଙ୍କୁ ଧର୍ମ ବ୍ୟାପାରରେ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ ଏବଂ ସମ୍ବାଦପତ୍ରଗୁଡ଼ିକ ସ୍ୱାଧୀନତା ପାଇବେ । ଏହି ସନନ୍ଦ ଅନୁସାରେ ଏକ ବ୍ୟବସ୍ଥାପକ ସଭା ପ୍ରତିଷ୍ଠା କରାଯାଇଥିଲା ଏବଂ ଏହାର ଦୁଇଟି ପ୍ରକୋଷ୍ଠ ଥିଲା । ଗୋଟିଏ ହେଲା ଚ୍ୟାମ୍ବର-ଅଫ୍-ପିୟରସ୍ (Chamber of Peers) ଏବଂ ଅନ୍ୟଟି ହେଲା ଚ୍ୟାମ୍ବର-ଅଫ୍-ଡେପୁଟିଜ୍ (Chamber of Deputies) । ରାଜାଙ୍କଦ୍ୱାରା ମନୋନୀତ ପିୟରମାନେ (ଅଭିଜାତସମ୍ପନ୍ନ ଲୋକେ) ଚ୍ୟାମ୍ବର-ଅଫ-ପିୟରସ ବା ଉଚ୍ଚତର ପ୍ରକୋଷ୍ଠର ସଦସ୍ୟ ହେବେ ଏବଂ ନିର୍ବାଚନଦ୍ୱାରା ବଚ୍ଛାଯିବା ଲୋକେ ଚ୍ୟାମ୍ବର-ଅଫ୍-ଡେପୁଟିଜ୍ ବା ନିମ୍ନତର ପ୍ରକୋଷ୍ଠର ସଦସ୍ୟ ହେବେ । ଯେଉଁ ନାଗରିକ ପ୍ରତ୍ୟକ୍ଷ ଟିକସ (କର) ବାର୍ଷିକ ଅନ୍ତତଃ ୧୩ ପାଉଣ୍ଡ ଦେଉଥିବ, ସେ କେବଳ ନିମ୍ନତର ପ୍ରକୋଷ୍ଠର ସଦସ୍ୟ ନିର୍ବାଚନ କରିବାର ଅଧିକାର ପାଇବ ବୋଲି ବ୍ୟବସ୍ଥା କରାଯାଇଥିଲା । ଫଳରେ ଭୋଟଦାତାଙ୍କ ସଂଖ୍ୟା ଅତି କମ୍ ଥିଲା । ଶାସକବର୍ଗ (The Executive) ଆଇନ ପ୍ରଣୟନ ପ୍ରଥମେ ଆରମ୍ଭ କରିବାର ଅଧିକାର ପାଇଥିଲେ; କିନ୍ତୁ ନିମ୍ନତର ପ୍ରକୋଷ୍ଠ ଏହାର ପ୍ରସ୍ତାବଗୁଡ଼ିକ

ଅଗ୍ରାହ୍ୟ କରିପାରିବ ବୋଲି ବୁଝାଯାଇଥିଲା । ସନନ୍ଦଟି ଗଣତନ୍ତ୍ରମୂଳକ ସନନ୍ଦ ନଥିଲେ ମଧ୍ୟ ସାଂବିଧାନିକ ରାଜତନ୍ତ୍ରର ନିର୍ଭରଯୋଗ୍ୟ ସ୍ୱରୂପ ଥିଲା ।

ଅଷ୍ଟାଦଶ ଲୁଇ ୧୮୧୫ ମସିହାରେ ଦ୍ୱିତୀୟଥର ପାଇଁ ଶାସନଭାର ଗ୍ରହଣ କଲାପରେ ତାଙ୍କୁ ପରସ୍ପରବିରୋଧୀ ଦୁଇଟି ରାଜନୈତିକ ଦଳର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଗୋଟିଏ ଦିଗରେ ଉଦାରପନ୍ଥୀ (Liberals) ଏବଂ ଅନ୍ୟ ଦିଗରେ ଚରମ ରାଜକୀୟପନ୍ଥୀ (Ultra-Royalists) । ସାଧାରଣତନ୍ତ୍ରବାଦୀ ଏବଂ ବୋନାପାର୍ଟବାଦୀମାନେ ଉଦାରପନ୍ଥୀ ଦଳଭୁକ୍ତ ଥିଲେ । ସେମାନେ ବୁରବନ୍ ରାଜତନ୍ତ୍ର ପୁନଃ ପ୍ରତିଷ୍ଠାର ବିରୋଧୀ ଥିଲେ । ସଂଭ୍ରାନ୍ତ ଶ୍ରେଣୀର ଏବଂ ଧର୍ମଯାଜକ ସମ୍ପ୍ରଦାୟର ଲୋକେ ଚରମ ରାଜକୀୟପନ୍ଥୀ ଦଳଭୁକ୍ତ ଥିଲେ । ରାଜା ପୁରାତନ ଶାସନ-ପଦ୍ଧତିର ପୁନରାବୃତ୍ତି ଚାହୁଁ ନଥିଲାବେଳେ ଚରମ ରାଜକୀୟପନ୍ଥୀମାନେ ତାହାର ପୁନଃପ୍ରତିଷ୍ଠା ଦାବୀ କରିବା ସଙ୍ଗେ ସଙ୍ଗେ ସେଥିପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ସେମାନେ ପ୍ରଚାର କରୁଥିଲେ ଯେ ଫରାସୀ ବିପ୍ଳବରେ ଡକାୟତି, ଧର୍ମଲଙ୍ଘନ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଇଛି । ତେଣୁ ସେମାନେ ପ୍ରତିଶୋଧ ନେବା ଓ ପ୍ରତିବିଧାନ କରିବା ଉଦ୍ଦେଶ୍ୟରେ ବିଦେଶରୁ ଫେରିଆସିଛନ୍ତି ବୋଲି କହୁଥିଲେ । ଅଷ୍ଟାଦଶ ଲୁଇ କୌଣସି ଗୋଟିଏ ଗୋଷ୍ଠୀର ପନ୍ଥା ଅନୁସରଣ ନ କରି ମଧ୍ୟ ପନ୍ଥା ଅବଲମ୍ବନ କରିଥିଲେ । ସେ ଇଂଲଣ୍ଡର ଷ୍ଟୁଆର୍ଟ ରାଜା ଦ୍ୱିତୀୟ ଚାର୍ଲସଙ୍କ ପରି ନିର୍ବାସିତ ଜୀବନର ତିକ୍ତତା ଅନୁଭବ କରିଥିଲେ । ତେଣୁ ସେ ସଂକଳ୍ପ କରିଥିଲେ ଯେ ସେ ଏପରି ଆଚରଣ କରିବେ, ଯେପରିକି ତାଙ୍କୁ ପୁନର୍ବାର ନିର୍ବାସିତର ଜୀବନ ଯାପନ କରିବାକୁ ନ ପଡ଼େ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ସେ ଯଦି କୌଣସି ଚରମପନ୍ଥା ଅବଲମ୍ବନ କରନ୍ତି, ତାହାହେଲେ ତାଙ୍କୁ ବିପଦ ବରଣକରିବାକୁ ପଡ଼ିବ । ତେଣୁ ସେ ଏକ ଆପୋଷମୂଳକ ମଧ୍ୟପନ୍ଥା ଅନୁସରଣ କରିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସେ ନୂତନ ଓ ପୁରାତନକୁ ଏକତ୍ର କରିବାକୁ ତାଙ୍କର ଆନ୍ତରିକ ଇଚ୍ଛା ଥିଲା । ସେ ଅନୁଭବ କରିଥିଲେ ଯେ ବୁରବନ୍ ରାଜତନ୍ତ୍ରର ପୁନଃପ୍ରତିଷ୍ଠା ମାନେ ପୁରାତନ ବ୍ୟବସ୍ଥାର ପୁନଃପ୍ରତିଷ୍ଠା ନୁହେଁ । ତେଣୁ ବିପ୍ଳବଦ୍ୱାରା ଯେଉଁ ନୂତନ ଭାବଧାରାର ସୃଷ୍ଟି ହୋଇଛି, ତାହା ପ୍ରତି ସେ ସହାନୁଭୂତି ପ୍ରକାଶ କରିଥିଲେ ଏବଂ ବିପ୍ଳବର ମୌଳିକ ନୀତିକୁ ସେ ସମାଲୋଚନା କରିନଥିଲେ । ସେ ସ୍ୱଇଚ୍ଛାରେ ଲୋକମାନଙ୍କୁ ସନନ୍ଦ ମଞ୍ଜୁର କରିଥିଲେ । ସବୁକଥା ବିଚାରକଲେ ସମ୍ବିଧାନ ଅନୁଦାର ନ ଥିଲା ବୋଲି ଅକ୍ଲେଶରେ କୁହାଯାଇପାରେ ।

ଚରମ ରାଜତନ୍ତ୍ରବାଦୀମାନଙ୍କ ମଧ୍ୟରୁ ଅଧିକାଂଶ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ବିପ୍ଳବ ଫଳରେ କ୍ଷତିଗ୍ରସ୍ତ ହୋଇଥିବାରୁ ସେମାନେ ଏହି ସନନ୍ଦ ପ୍ରତି ଘୃଣାଭାବ ପୋଷଣ କରୁଥିଲେ । ବୁରବନ୍ ରାଜବଂଶ ପୁନଃପ୍ରତିଷ୍ଠା ଦିନରୁ ସେମାନଙ୍କର କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଏବଂ ପ୍ରବଳ ରାଜନୈତିକ ଉତ୍ତେଜନା ସୃଷ୍ଟିକରିବା ଆରମ୍ଭ ହୋଇଥିଲା । ମିତ୍ରଶକ୍ତିମାନେ ପ୍ୟାରିସ୍‌ରେ ପ୍ରବେଶକରିବା ପରେ ଏକ ସାଧାରଣ ନିର୍ବାଚନ

ହୋଇଥିଲା । ବୈପ୍ଳବିକ ଚିନ୍ତାଧାରାର ଲୋକମାନଙ୍କୁ ଭୟଦେଖାଇ ଏପରି ନିଷ୍କ୍ରିୟ କରିଦିଆଯାଇଥିଲା ଯେ ସେମାନେ ପ୍ରତିକ୍ରିୟାଶୀଳ ଲୋକମାନଙ୍କ କାର୍ଯ୍ୟବିରୁଦ୍ଧରେ କୌଣସି ଆପତ୍ତି ଉଠାଇନଥିଲେ । ଏହା ଫଳରେ ପ୍ରତିକ୍ରିୟାଶୀଳ ଲୋକେ ସଂଖ୍ୟାଗରିଷ୍ଠ ଦଳରୂପେ ସେମାନଙ୍କର ସ୍ଥାନ ନିମ୍ନତର ପ୍ରକୋଷ୍ଠରେ ପ୍ରତିଷ୍ଠା କରିଥିଲେ । ଏହି ନୂତନ ନିମ୍ନତର ପ୍ରକୋଷ୍ଠ ପ୍ରତିହିଂସାପରାୟଣ ଓ ଅସଂଯତ ଥିଲା । ସରକାରର ସମସ୍ତ ଶକ୍ତି ଏହାର ଅସହନଶୀଳ ଧର୍ମାନ୍ଧତା ଆୟତ୍ତ କରିବାରେ ବିନିଯୋଗ କରାଯାଇଥିଲେ ମଧ୍ୟ ତାହା ବୃଥା ହୋଇଯାଇଥିଲା । ଟ୍ୟାଲେରାଣ୍ଡ ଏବଂ ତାଙ୍କର ଉଦାରପନ୍ଥୀ ମନ୍ତ୍ରିମଣ୍ଡଳ ଇସ୍ତଫା-ଦେବାକୁ ବାଧ୍ୟ ହୋଇଥିଲେ ଏବଂ ସେମାନଙ୍କର ସ୍ଥାନ ନେଇଥିଲେ ରିଚେଲ୍ୟୁ । ରିଚେଲ୍ୟୁ ରୁଷିଆର ଜାର୍‌ଙ୍କ ନିକଟରେ ଚାକିରି କରି ଜଣେ ଦକ୍ଷ ପ୍ରଶାସକରୂପେ ଖ୍ୟାତି ଅର୍ଜନ କରିଥିଲେ ଏବଂ ଜାର୍‌ଙ୍କ ବିଶ୍ୱାସଭାଜନ ହୋଇପାରିଥିଲେ । ସେ ମନ୍ତ୍ରିପଦରେ ନିଯୁକ୍ତ ହେବାଦ୍ୱାରା ମିତ୍ରଶକ୍ତିମାନଙ୍କ ସହିତ ଶାନ୍ତି ଆଲୋଚନାରେ ଅଧିକ ଅନୁକୂଳ ଚୁକ୍ତିସର୍ତ୍ତମାନ ଲାଭକରିବାର ବିଶେଷ ସମ୍ଭାବନା ରହିଥିଲା । ତାଙ୍କର ମଧ୍ୟମ ପନ୍ଥା ନୀତି ବୁରବନ୍ ରାଜତନ୍ତ୍ରର ଦୃଢ଼ତାପାଇଁ ଏକ ଶୁଭ ସୂଚନା ଥିଲା; କିନ୍ତୁ ତାଙ୍କର ଏସବୁ ସ୍ୱାଭାବିକ ଗୁଣ ଥାଇ ମଧ୍ୟ ନିମ୍ନତର ପ୍ରକୋଷ୍ଠ ତାଙ୍କୁ ନିଜ ନୀତି ଅନୁସରଣ କରିବାକୁ ଦେଇନଥିଲା । ଅନ୍ୟ ଦିଗରେ ଏହି ପ୍ରକୋଷ୍ଠ ପକ୍ଷରୁ ଅତି ଉଗ୍ର ଏବଂ ଅପମାନଜନକ ପ୍ରସ୍ତାବମାନ ତାଙ୍କ ଉପରେ ଲଦିଦିଆଯାଇଥିଲା । ପ୍ରକୋଷ୍ଠର ଅଧିକାଂଶ ସଦସ୍ୟ ଫରାସୀବିପ୍ଳବର ବିରୋଧୀ ଥିବାରୁ ବୈପ୍ଳବିକ ଭାବାପନ୍ନ ଲୋକମାନଙ୍କ ସହିତ ଆପୋଷ ମୀମାଂସାପାଇଁ କଥାବାର୍ତ୍ତା କରିବାକୁ ଚାହୁଁନଥିଲେ । ସେମାନେ ଦାବୀ କରିଥିଲେ ଯେ ଯେଉଁମାନେ ବିପ୍ଳବରେ ସମ୍ପୃକ୍ତ ଥିଲେ, ସେମାନଙ୍କୁ ଆଇନ ବହିର୍ଭୂତ କରାଯାଉ । ସେମାନଙ୍କର ଦାବୀ ସରକାର ମାନିନେବାରୁ ସେମାନେ ଅଧିକ ସୁବିଧା ସୁଯୋଗ ପାଇବାପାଇଁ ସରକାରଙ୍କ ଉପରେ ଅଧିକ ଚାପ ପକାଇଥିଲେ । ସେମାନେ ସରକାରକୁ ପ୍ରସ୍ତାବ ଦେଇଥିଲେ ଯେ, ନେପୋଲିୟନଙ୍କର ଋଣଦାତାମାନେ ସରକାରଙ୍କ ଜାମିନ୍‌ରେ ସରକାରକୁ ଟଙ୍କା କରଜ ଦେଇ ଯେଉଁ ଟଙ୍କା ଦାବୀ କରୁଛନ୍ତି, ତାହାର ପାଞ୍ଚଭାଗରୁ ତିନିଭାଗ ଋଣ କେବଳ ପରିଶୋଧ କରାଯାଉ । ଏପରି ବିଶ୍ୱାସଘାତକତା କରିବା, ରାଷ୍ଟ୍ରକୁ ଦେବାଳିଆ ଘୋଷଣା କରିବା ସଙ୍ଗେ ସମାନ ବୋଲି ବିଚାର କରାଯାଇଥିଲା । କାରଣ ଏତଦ୍ୱାରା ଫରାସୀ ସରକାର ଲୋକମାନଙ୍କର ଆସ୍ଥା ହରାଇଥାନ୍ତା । ତା'ଛଡ଼ା ବିପ୍ଳବ ବିରୋଧୀ ପ୍ରତିକ୍ରିୟାଶୀଳ ଲୋକେ ସେମାନଙ୍କର ଦୁର୍ଭାଗ୍ୟ ପାଇଁ ଯେଉଁମାନେ ଦାୟୀ, ସେମାନଙ୍କୁ ଶାସ୍ତିଦେବାକୁ ପ୍ରତିଜ୍ଞା କରିଥିଲେ । ସେମାନେ ଉଦାରପନ୍ଥୀମାନଙ୍କ ବିରୁଦ୍ଧରେ ଘୃଣାଭାବ ପ୍ରଚାର କରିଥିଲେ ଏବଂ ସେମାନଙ୍କ ପ୍ରରୋଚନାରେ 'ଶ୍ୱେତ ଆତଙ୍କ' (White Terror) ନାମକ ଏକ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏହି ଆନ୍ଦୋଳନ ଦକ୍ଷିଣ ଫ୍ରାନ୍ସରେ ପ୍ରସାର ଲାଭକରିଥିଲା ଏବଂ ସାଧାରଣତନ୍ତ୍ରବାଦୀ ଓ ବୋନାପାର୍ଟବାଦୀମାନଙ୍କ ବିରୁଦ୍ଧରେ ବିଶେଷତଃ ପରିଚାଳିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ବହୁ ଲୋକଙ୍କୁ ନୃଶଂସଭାବେ ହତ୍ୟା କରାଯାଇଥିଲା । ଏହି

ନିର୍ମମ ବର୍ବରତା 'ଆତଙ୍କରାଜ' ଫରାସୀ ବିପ୍ଳବ ସମୟର 'ଆତଙ୍କରାଜ' (The Reign of Terror) କଥା ସ୍ମରଣ କରାଇଦେଇଥିଲା । ଏହି 'ଶ୍ୱେତ ଆତଙ୍କ'ର ବିଶିଷ୍ଟ ଶିକାର ହୋଇଥିଲେ ମାର୍ଶାଲ ନେ । ସେ ଥିଲେ 'ନିର୍ଭୀକମାନଙ୍କ ମଧ୍ୟରେ ଅତି ନିର୍ଭୀକ' ('the bravest of the brave') ମାର୍ଶାଲ ନେଙ୍କୁ ଗୁଳିକରି ହତ୍ୟା କରାଯିବାରୁ, ଫରାସୀମାନେ ଅତିଶୟ କ୍ଷୁବ୍ଧ ହୋଇଥିଲେ; କାରଣ ସେ ଜଣେ ନିର୍ଭୀକ ସୈନ୍ୟ ଥିଲେ, ରାଜନୀତିଜ୍ଞ ନଥିଲେ । କେତେକ ସମାଲୋଚକଙ୍କ ମତରେ 'ନିର୍ଭୀକମାନଙ୍କ ମଧ୍ୟରେ ଅତି ନିର୍ଭୀକ'ଙ୍କର ହତ୍ୟା ବୁରବନ୍ ରାଜବଂଶ ପତନର କାରଣ ହୋଇଥିଲା ।

ଚରମ ରାଜତନ୍ତ୍ରବାଦୀମାନେ (Ultras) ନିମ୍ନତର ପ୍ରକୋଷ୍ଠରେ ପ୍ରାଧାନ୍ୟ ବିସ୍ତାର କରିଥିବାରୁ ଏପରି ପ୍ରତିକ୍ରିୟାଶୀଳ ଭାବ ଦେଖାଇଥିଲେ ଯେ ରାଜା ଅଷ୍ଟାଦଶ ଲୁଇ ଭୀତତ୍ରସ୍ତ ହୋଇ ପଡ଼ିଥିଲେ । ତା'ଛଡ଼ା ସେ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇଥିଲେ । ତେଣୁ ରାଜା ଡେକାଜେସ୍‌ଙ୍କ ପରାମର୍ଶ ଗ୍ରହଣ କରି ନିମ୍ନତର ପ୍ରକୋଷ୍ଠକୁ ୧୮୧୬ ମସିହାରେ ଭାଙ୍ଗି ଦେଇଥିଲେ । ଏହା ଏକ ସାହସିକ ପଦକ୍ଷେପ ଏବଂ ଏହାର ପରବର୍ତ୍ତୀ ପଦକ୍ଷେପର ସଫଳତା ଏହାକୁ ନ୍ୟାୟସଙ୍ଗତ ବୋଲି ପ୍ରମାଣ କରିଦେଲା । ପୁନଃ ନିର୍ବାଚନରେ ଲୋକମାନଙ୍କର ରାୟ ଚରମ ରାଜତନ୍ତ୍ରବାଦୀମାନଙ୍କର କାର୍ଯ୍ୟକ୍ରମ ଅଗ୍ରାହ୍ୟ କରିଦେଇଥିଲା । ସରକାରଙ୍କ ସମର୍ଥକ ମଧ୍ୟମପନ୍ଥୀମାନେ ବହୁ ସଂଖ୍ୟାରେ ନିର୍ବାଚିତ ହୋଇଥିଲେ ଏବଂ ନିମ୍ନ ପ୍ରକୋଷ୍ଠର ସଂଖ୍ୟାଗରିଷ୍ଠ ଦଳରୂପେ ପ୍ରତିଷ୍ଠିତ ହେଲେ । ଆଭ୍ୟନ୍ତରୀଣ ପରିସ୍ଥିତିରେ ନାନା ପରିବର୍ତ୍ତନ ଘଟିଥିଲା । ଚରମ ରାଜତନ୍ତ୍ରବାଦୀମାନଙ୍କର ଉତ୍ତେଜନାମୂଳକ କାର୍ଯ୍ୟକ୍ରମକୁ ପ୍ରତିରୋଧ କରାଯାଇଥିଲା । ଏକ ପ୍ରତିକ୍ରିୟାଶୀଳ ଶାସନ ବ୍ୟବସ୍ଥାର ସଙ୍କଟ ଅନ୍ତତଃ କିଛୁକାଳ ପାଇଁ ଦେଖାଦେଇନଥିଲା । ବ୍ୟବସ୍ଥାପକସଭା ଏବଂ ଶାସକବର୍ଗ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା କରାଯାଇଥିଲା । ସେମାନେ ସମସ୍ତେ ମିଳିମିଶି ନିର୍ବାଚନ କଳର ନୂତନ ବ୍ୟବସ୍ଥା କରିଥିଲେ ଏବଂ ଅର୍ଥନୈତିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ବନ୍ଦୋବସ୍ତ କରିଥିଲେ । ରାଜା ଉଦାରପନ୍ଥୀମାନଙ୍କ ସମର୍ଥନରେ ଫ୍ରାନ୍ସର ପୁନଃ ସଙ୍ଗଠନ କଲେ । ଫ୍ରାନ୍ସର ସୈନ୍ୟବାହିନୀକୁ ପୁନଃ ସଙ୍ଗଠିତ କରାଯାଇ ଶକ୍ତିଶାଳୀ କରାଗଲା । ୧୮୧୮ ମସିହାରେ ଏଇ-ଲା-ଚ୍ୟାପେଲ କଂଗ୍ରେସରେ ଫ୍ରାନ୍ସକୁ ମିତ୍ରଶକ୍ତି ସୈନ୍ୟବାହିନୀର ଦଖଲରୁ ମୁକ୍ତ ଦିଆଯାଇଥିଲା ଏବଂ ତାକୁ ଶକ୍ତି ସଂଘରେ ସ୍ଥାନ ମଧ୍ୟ ଦିଆଯାଇଥିଲା । ମନ୍ତ୍ରୀ ରିଚେଲ୍ୟୁଙ୍କର ଏହା ଏକ କୂଟନୈତିକ ବିଜୟ; କିନ୍ତୁ ଉଦାରପନ୍ଥୀମାନଙ୍କର ଗୋଟିଏ ଗୋଷ୍ଠୀ ନିମ୍ନତର ପ୍ରକୋଷ୍ଠରେ ପ୍ରାଧାନ୍ୟ ଲାଭକରିବା ଫଳରେ ରିଚେଲ୍ୟୁଙ୍କୁ ମନ୍ତ୍ରିପଦରୁ ବିଦାୟ ନେବାକୁ ପଡ଼ିଥିଲା ।

ତାଙ୍କ ପରେ ଡେକାଜେସ୍‌ଙ୍କୁ ଶାସନର ମୁଖ୍ୟ ଦାୟିତ୍ୱରେ ପ୍ରତିଷ୍ଠିତ କରାଗଲା । ଉଦାରପନ୍ଥୀମାନଙ୍କର ସମର୍ଥନରେ ତାଙ୍କ ସରକାର ପରିଚାଳିତ ହେଲା । ଡେକାଜେସ୍‌ଙ୍କ ନୂତନ ମନ୍ତ୍ରିମଣ୍ଡଳର ପ୍ରଶଂସନୀୟ କାର୍ଯ୍ୟ ହେଲା ମୁଦ୍ରଣ ଯନ୍ତ୍ର ଉଠାଇ ସମ୍ବାଦପତ୍ରଗୁଡ଼ିକର

ସ୍ୱାଧୀନତା ପ୍ରତିଷ୍ଠା କରିବା । ସେ ସମସ୍ତର ରାଜନୈତିକ ଘଟଣାବଳୀରୁ ମଧ୍ୟ ଶୁଭସଙ୍କେତ ଏବଂ ପ୍ରକୃତ ଶାସନ ପ୍ରତିଷ୍ଠାର ପ୍ରତିଶ୍ରୁତି ମିଳିଥିଲା; କିନ୍ତୁ ୧୮୨୦ ମସିହାରେ ଡ୍ୟୁକ୍-ଅଫ୍-ବେରୀଙ୍କ ନୃଶଂସଭାବରେ ହତ୍ୟାକରିବା ଫଳରେ ପରିସ୍ଥିତି ଭିନ୍ନ ଆକାର ଧାରଣ କରିଥିଲା । ସେ ଥିଲେ ଫରାସୀ ରାଜସିଂହାସନର ଭବିଷ୍ୟତ ଉତ୍ତରାଧିକାରୀ କମ୍‌ତେ ଡି' ଆରତୟସ୍ (Comte d' Artois)ଙ୍କ କନିଷ୍ଠ ପୁତ୍ର । ଡ୍ୟୁକ୍-ଅଫ୍-ବେରୀଙ୍କ ଜ୍ୟେଷ୍ଠ ଭ୍ରାତା ଅପୁତ୍ରିକ ଥିବାରୁ ସେ ଫ୍ରାନ୍ସର ସିଂହାସନ ଅଧିକାର କରିବା ଅନିବାର୍ଯ୍ୟ ବୋଲି ବୁଝାଯାଉଥିଲା । ତାଙ୍କୁ ହତ୍ୟାକରାଯିବା ହେତୁ ବୁରବନ୍ ରାଜବଂଶର ବରିଷ୍ଠ ଶାଖା ଲୋପ ପାଇଯିବାର ବିଶେଷ ସମ୍ଭାବନା ଥିଲା । ଏହି ନୃଶଂସ ହତ୍ୟାକାଣ୍ଡ ଘଟାଇଥିଲେ ଲଉଭେଲ ନାମକ ଜଣେ ଧର୍ମାନ୍ଧ; କିନ୍ତୁ ଚରମ ରାଜତନ୍ତ୍ରବାଦୀ ଉଦାରପନ୍ଥୀମାନଙ୍କୁ ବଦନାମ କରିବା ଉଦ୍ଦେଶ୍ୟରେ ଏହି ଘଟଣାକୁ ଆୟୁଧରୂପେ ସେମାନଙ୍କ ବିରୁଦ୍ଧରେ ବ୍ୟବହାର କରିଥିଲେ ଏବଂ ଡେକାଜେସ୍‌ଙ୍କର ପତନ ଘଟାଇବାରେ ସଫଳ ହୋଇଥିଲେ । ତାଙ୍କର ପତନ ଫଳରେ ଫରାସୀ ଇତିହାସର ଗତି ବଦଳିଯାଇଥିଲା ଏବଂ ଉଦାରପନ୍ଥୀଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ।

ସେ ଯାହାହେଉ ଚରମ ରାଜତନ୍ତ୍ରବାଦୀମାନେ ସଙ୍ଗେ ସଙ୍ଗେ କ୍ଷମତା ଫେରିପାଇ ନ ଥିଲେ । ଶାସନ କ୍ଷମତା ପୁଣି ଥରେ ରିଚେଲ୍ୟୁଙ୍କ ଉପରେ ନ୍ୟସ୍ତ କରାଯାଇଥିଲା; କିନ୍ତୁ ସେ ଚରମ ରାଜତନ୍ତ୍ରବାଦୀମାନଙ୍କର କାର୍ଯ୍ୟକଳାପକୁ ରୋକିବାକୁ ସକ୍ଷମ ହୋଇନଥିଲେ । ମୁଦ୍ରଣଯାଞ୍ଚ ପୁନଃ ପ୍ରତିଷ୍ଠିତ ହୋଇଥିଲା ଏବଂ ନିର୍ବାଚନ ଆଇନଦ୍ୱାରା ଗୁପ୍ତ ଭୋଟଦାନ ବ୍ୟବସ୍ଥା ରଖାଯାଇ ଭୋଟ ଅଧିକାର ସଙ୍କୁଚିତ କରାଯାଇଥିଲା । ତା'ଛଡ଼ା ଭୂସମ୍ପତ୍ତି ମାଲିକାନା ପାଇଁ ଦ୍ୱିଗୁଣ ଭୋଟ ଅଧିକାର ଦିଆଗଲା । ଏହାଫଳରେ ଚରମ ରାଜତନ୍ତ୍ର-ବାଦୀମାନେ ନିମ୍ନତର ପ୍ରକୋଷ୍ଠରେ ସଂଖ୍ୟା ଗରିଷ୍ଠତା ଲାଭକଲେ । ରିଚେଲ୍ୟୁ କ୍ଷମତାରୁ ଅପସରି ଯିବାକୁ ବାଧ୍ୟ ହୋଇଥିଲେ । ଚରମ ରାଜତନ୍ତ୍ରବାଦୀ ନେତା ଭିଲେଲ୍ (Villele) ଶାସନକ୍ଷେତ୍ରରେ ତାଙ୍କ ସ୍ଥାନ ୧୮୨୧ ମସିହାରେ ଦଖଲ କଲେ ଏବଂ ୧୮୨୭ ପର୍ଯ୍ୟନ୍ତ ଶାସନ କ୍ଷମତାରେ ରହିଥିଲେ । ତାଙ୍କର ଏହି ଶାସନକାଳରେ ସେ ତାଙ୍କ କାର୍ଯ୍ୟକ୍ରମ ସୁଷ୍ଠୁରୂପେ ପରିଚାଳିତ କରିବାକୁ ସୁଯୋଗ ପାଇଥିଲେ । ତାଙ୍କର ମାତ ପ୍ରତିକ୍ରିୟାଶୀଳ ହେଲେ ମଧ୍ୟ ତାଙ୍କର କାର୍ଯ୍ୟପନ୍ଥା ରହସ୍ୟପୂର୍ଣ୍ଣ ଏବଂ ସୂକ୍ଷ୍ମବୁଦ୍ଧିସମ୍ପନ୍ନ ହୋଇଥିବାରୁ ତାହା ତାଙ୍କ ଦଳ ପ୍ରତି ବିପଦ ଆଣି ନ ଥିଲା । ସେ ତାଙ୍କର ସୁଦୂରପ୍ରସାରୀ କଳ୍ପନା ପ୍ରକାଶ୍ୟରେ ପ୍ରଚାରକରି ଦେଶକୁ ଆତଙ୍କିତ କରିବାକୁ ଚାହୁଁ ନଥିଲେ । ତାଙ୍କ ଅନୁଚରମାନଙ୍କର ଉଗ୍ର ସ୍ୱଭାବ ଏବଂ ଅସହିଷ୍ଣୁତାକୁ ସେ ଆୟତ୍ତ କରି ପାରିଥିଲେ । ସେମାନେ ଫରାସୀ ବିପ୍ଳବରୁ କିଛି ଶିଖି ନ ଥିଲେ ବା ବିପ୍ଳବ ପୂର୍ବରୁ ଚାଲିଥିବା ନିରଙ୍କୁଶ ଶାସନ କଥା କିଛି ଭୁଲି ନ ଥିଲେ ଏବଂ ସେମାନେ ତଥାପି ବିଶ୍ୱାସ କରୁଥିଲେ ଯେ ଫରାସୀ ବିପ୍ଳବ ସମୟରୁ ଯେଉଁ ପରିବର୍ତ୍ତନମାନ ଘଟିଛି ସେସବୁକୁ ଉପେକ୍ଷା କରିହେବ । ଭିଲେଲଙ୍କ ବିପ୍ଳବ

ଧ୍ୱଂସକାରୀ ଅଭିଯାନ, ଦୁଇଟି ଶକ୍ତିଶାଳୀ ଆନୁଷ୍ଠାନିକ-ଧର୍ମ ଏବଂ ଭୌତିକ ସ୍ୱାର୍ଥ ଉପରେ ନିର୍ଭରଶୀଳ ଥିଲା । ପ୍ରଥମଟିର ସାହାଯ୍ୟରେ ସେ ଧର୍ମଶିକ୍ଷାକୁ ରାଜନୈତିକ ପ୍ରଚାରର ଏକ ମାଧ୍ୟମରୂପେ ବ୍ୟବହାର କରିବାପାଇଁ ଏବଂ ବିପ୍ଳବର ସ୍ମୃତିଗୁଡ଼ିକ ପୋଛି ଲିଭାଇଦେବା ପାଇଁ କଳ୍ପନା କରିଥିଲେ । ତା'ଛଡ଼ା ଏହା ସାହାଯ୍ୟରେ ସେ ସାଧାରଣ ନୈତିକତା ବିଷୟରେ ଯେଉଁ ନୀତିଗୁଡ଼ିକ ଶିକ୍ଷା ଦେବେ, ତାହା ପୁରାତନ ଶାସନ ବ୍ୟବସ୍ଥାର ପୁନଃ ପ୍ରତିଷ୍ଠା ପାଇଁ ଯଥେଷ୍ଟ କାରଣ ହେବ । ଦ୍ୱିତୀୟଟି ସାହାଯ୍ୟରେ ସେ ଜାତୀୟ ମତକୁ ତୃପ୍ତ କରିବାକୁ ଚାହିଁଥିଲେ ଏବଂ ଲୋକଶକ୍ତିକୁ ରାଜନୈତିକ ମାର୍ଗରୁ ଭୌତିକ କଲ୍ୟାଣ ଆଡ଼କୁ ଫେରାଇଆଣିବାକୁ ଆଶା ପ୍ରକାଶ କରିଥିଲେ । ସେ ତାଙ୍କର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସତର୍କତାର ସହିତ ଏବଂ ସଂଯତ ଭାବରେ କାର୍ଯ୍ୟ କରିଥିଲେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଭିଲେଲଙ୍କ ଶାସନକାଳରେ ଲୋକମାନଙ୍କର ସ୍ୱାଧୀନତା ପ୍ରତି ବିପଦର ଆଶଙ୍କା ବୃଦ୍ଧି ପାଇଥିଲା ।

ତାଙ୍କ ମନ୍ତ୍ରିମଣ୍ଡଳର ନୀତି ଥିଲା ପ୍ରତିକ୍ରିୟାଶୀଳ ରାଜସମର୍ଥକମାନଙ୍କ ପାଇଁ ସେମାନଙ୍କର ହୃତ ଅଧିକାରଗୁଡ଼ିକ ଧୀରେ ଏବଂ ଅଲକ୍ଷିତ ଭାବରେ ଫେରାଇ ଆଣିବା । ୧୮୨୨ ମସିହାରେ ମୁଦ୍ରଣ ଯାଞ୍ଚ କଠୋର କରାଯାଇଥିଲା । ମୁଦ୍ରଣ ଆଇନଭଙ୍ଗ ଅପରାଧ-ଗୁଡ଼ିକର ବିଚାର କ୍ଷମତା ଜୁରିମାନଙ୍କଠାରୁ ପ୍ରତ୍ୟାହାର କରିନିଆଯାଇଥିଲା । ଏହି ପଦକ୍ଷେପ ଫଳରେ ଜନମତ ନିୟନ୍ତ୍ରଣ କରାଯାଇଥିଲା । ଅଭିଜାତ ସମ୍ପ୍ରଦାୟ ଓ ଯାଜକ ସମ୍ପ୍ରଦାୟ ବିରୋଧୀ ଲେଖା ପ୍ରକାଶକୁ ନିୟନ୍ତ୍ରଣ କରିବା ଭାର ସରକାରଙ୍କ ହସ୍ତରେ ନ୍ୟସ୍ତ କରାଯାଇ-ଥିଲା । ଏହା ସାଙ୍ଗକୁ ଶିଳ୍ପପତିମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ବିଦେଶରୁ ଆମଦାନି କରାଯାଉଥିବା ପଣ୍ୟଦ୍ରବ୍ୟ ଉପରେ ଅତିରିକ୍ତ ଶୁଳ୍କ ବସାଯାଇଥିଲା । ଯାଜକସମ୍ପ୍ରଦାୟଙ୍କୁ ଶିକ୍ଷା ପରିଚାଳନା ଭାର ଅର୍ପଣ କରାଯାଇଥିଲା । ଭିଲେଲ ଯେତେବେଳେ ବିଜ୍ଞତାର ସହିତ ଅର୍ଥସମ୍ବନ୍ଧୀୟ ଶାସନ ବ୍ୟବସ୍ଥା କରି ତାଙ୍କ ଆସନ ସୁଦୃଢ଼ କରୁଥିଲେ, ସେତେବେଳେ ମନ୍ତ୍ରୀ ଶାଟ୍ୟୁ ବ୍ରିଅଣ୍ଡ (Chateau briand) ପ୍ରତିକ୍ରିୟାଶୀଳ ରାଜସମର୍ଥକମାନଙ୍କର ସ୍ଥିତି ଦୁର୍ଭେଦ୍ୟ କରିବାପାଇଁ ଇଉରୋପ ମହାଦେଶରେ ଫ୍ରାନ୍‌ସର ପ୍ରାଧାନ୍ୟ ପୁନରୁଦ୍ଧାର କରିବାପାଇଁ ଜୋର୍ ଦେଇଥିଲେ । ତାଙ୍କ ପ୍ରରୋଚନାରେ ଭିଲେଲ ୧୮୨୩ ମସିହାର ପ୍ରାରମ୍ଭରେ ଏକ ଫରାସୀ ସୈନ୍ୟବାହିନୀକୁ ପିରେନିଜ ପର୍ବତମାଳା ଅତିକ୍ରମ କରି ସ୍ପେନର ବୁରବନ୍ ରାଜା ଫର୍ଡିନେଣ୍ଡଙ୍କୁ ତାଙ୍କ ପ୍ରଜାମାନଙ୍କର ପ୍ରକାଶ୍ୟ ବିଦ୍ରୋହ ବିରୁଦ୍ଧରେ ସାହାଯ୍ୟ କରିବାପାଇଁ ପଠାଯାଇଥିଲା । ଅବଶ୍ୟ ଏହି ଅଭିଯାନ ସଫଳ ହୋଇଥିଲା । ଏହି ସାହସିକ ପଦକ୍ଷେପ ଫଳରେ ଫରାସୀ-ରାଜତନ୍ତ୍ର ବିଶେଷ ଗୌରବ ଅର୍ଜନ କରିଥିଲା । ଏହା ଏତେ ଉତ୍ସାହପ୍ରଦ ହୋଇଥିଲା ଯେ ସେତେବେଳେ କୌଣସି ଫରାସୀ ଲୋକ ବିଚାରକୁ ନେଇନଥିଲା ଯେ ଫ୍ରାନ୍‌ସ ନିରଙ୍କୁଶ ଶାସନ ସପକ୍ଷରେ ସଂଗ୍ରାମ କରିଥିଲା ଏବଂ ଉଦାରପନ୍ଥୀ ଶକ୍ତିକୁ ବିପର୍ଯ୍ୟସ୍ତ କରିବା ଉଦ୍ଦେଶ୍ୟରେ ଫରାସୀ ସୈନ୍ୟବାହିନୀକୁ ନିଯୁକ୍ତ କରିଥିଲା ।

ଗ୍ରେଟ୍ବ୍ରିଟେନ୍ ଏ ବିଜୟ ପରେ ଅଧିକ ଗୌରବ ଅର୍ଜନ କରିବାକୁ ସ୍ୱପ୍ନ ଦେଖିଲେ । ତାଙ୍କ ଭାବନା ସ୍ପେନ ଅଞ୍ଚଳ ଆଡ଼କୁ ଗତି କରିଥିଲା; କିନ୍ତୁ ଭିଲେଲ ସ୍ପେନ ଅଭିଯାନରୁ ବିରତ ହୋଇଥିଲେ । ଅନିଚ୍ଛା ସତ୍ତ୍ୱେ ସେ ସ୍ପେନ ଅଭିମୁଖେ ଅଭିଯାନ ଚଳାଇବା ପାଇଁ ସ୍ୱୀକୃତି ଦେଇଥିଲେ । ପ୍ରକୃତରେ ସେ କୌଣସି ଯୁଦ୍ଧ ସ୍ପୃହା ନଥିଲେ କି ବିଦେଶରେ ଫ୍ରାନ୍ସର କୌଣସି ଦୁଃସାହସିକ କାର୍ଯ୍ୟ ପ୍ରତି ଅନୁକୂଳ ମତ ପୋଷଣ କରୁ ନ ଥିଲେ । ସେ ଇଂଲଣ୍ଡର ୱାଲପୋଲଙ୍କ ପରି ସତର୍କତା ଅବଲମ୍ବନ କରିବା ସଙ୍ଗେ ସଙ୍ଗେ ସୁସଙ୍ଗତ ଅର୍ଥନୈତିକ ବ୍ୟବସ୍ଥାର ଫଳ ଉପରେ ଆସ୍ଥାରଖି ରାଜତ୍ୱ କରୁଥିବା ରାଜବଂଶର ଶକ୍ତି ସୁଦୃଢ଼ କରିଥିଲେ । ବ୍ୟବସ୍ଥାପକସଭା ଉପରେ ତାଙ୍କର କର୍ତ୍ତୃତ୍ୱ ଦୃଢ଼ୀଭୂତ କରିବା ଉଦ୍ଦେଶ୍ୟରେ ସେ ଉଚ୍ଚତର ପ୍ରକୋଷ୍ଠରେ ୭୬ ଜଣ ନୂତନ ପିୟର୍ ନିଯୁକ୍ତ କରି ସଂଖ୍ୟାଗରିଷ୍ଠ ଉଦାରପନ୍ଥୀ ଦଳକୁ ଦୁର୍ବଳ କରିଦେଇଥିଲେ ଏବଂ ସପ୍ତବାର୍ଷିକ ଆଇନ (Septennial Act) ପାଶକରି ପାର୍ଲାମେଣ୍ଟର କାର୍ଯ୍ୟକାଳ ପାଞ୍ଚବର୍ଷରୁ ସାତବର୍ଷକୁ ବୃଦ୍ଧି କରିଥିଲେ । ଏହା ଫଳରେ ଯେଉଁ ଆଇନ ବଳରେ ପ୍ରତିବର୍ଷ ନିମ୍ନତର ପ୍ରକୋଷ୍ଠର ୫୦ ଜଣ ସଦସ୍ୟ ଆସନ ତ୍ୟାଗ କରୁଥିଲେ ସେହି ଆଇନର ପରିବର୍ତ୍ତନ କରାଯାଇଥିଲା । ଏହିପରି ଭାବରେ ଉଦାରପନ୍ଥୀମାନେ ଯେଉଁ ସଂସଦୀୟ ବ୍ୟବସ୍ଥା ନିଜ ସ୍ୱାର୍ଥରକ୍ଷା ପାଇଁ ପ୍ରବର୍ତ୍ତନ କରିଥିଲେ ତାହା ସେମାନଙ୍କ ବିରୁଦ୍ଧରେ ପରିଚାଳିତ ହୋଇଥିଲା । ଅଷ୍ଟାଦଶ ଲୁଇ ମଧ୍ୟମ ପନ୍ଥା ଓ ଶାନ୍ତିମୂଳକ ନୀତି ଅନୁସରଣ କରିଥିଲେ ମଧ୍ୟ ତାଙ୍କ ରାଜତ୍ୱକାଳରେ କେତେକ ଗଣ୍ଡଗୋଳ ଓ ହିଂସାକାଣ୍ଡ ଦମନ କରିବାକୁ ଅସମର୍ଥ ହୋଇଥିଲେ । ଫଳରେ ରାଜତ୍ୱର ଶେଷ-ଭାଗରେ ସେ ପ୍ରତିକ୍ରିୟାଶୀଳ ନୀତି ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ । ସେ ଯାହାହେଉ ୧୮୨୪ ମସିହା ସେପ୍ଟେମ୍ବର ମାସରେ ଅଷ୍ଟାଦଶ ଲୁଇ ପ୍ରାଣତ୍ୟାଗ କରିଥିଲେ ।

## ଦଶମ ଚାର୍ଲସଙ୍କ ରାଜତ୍ୱ (୧୮୨୪-୧୮୩୦)

## (The Reign of Charles X, 1824-1830)

ଅଷ୍ଟାଦଶ ଲୁଇଙ୍କ ପରେ ତାଙ୍କ କନିଷ୍ଠ ଭ୍ରାତା କମ୍ପଟେ ଡି' ଆରଟଏସ ଦଶମ ଚାର୍ଲସ ନାମ ଧାରଣ କରି ଫ୍ରାନ୍ସର ସିଂହାସନ ଆରୋହଣ କରିଥିଲେ । ସେ ଜଣେ ବଡ଼ ପ୍ରତିକ୍ରିୟାଶୀଳବାଦୀ ଥିଲେ । ତାଙ୍କ ରାଜତ୍ୱ କାଳରେ ପ୍ରତିକ୍ରିୟାଶୀଳ ନୀତି ଚରମ ସୀମାରେ ପହଞ୍ଚିଥିଲା । କିନ୍ତୁ ତାଙ୍କ ରାଜତ୍ୱର ଆରମ୍ଭରେ ଫରାସୀ ଜାତିର ବିଚଳିତ ମନକୁ ଆଶ୍ୱସ୍ତକରିବା ପାଇଁ ସେ ପ୍ରଥମେ ଉଦ୍ୟମ କରିଥିଲେ । ଅଷ୍ଟାଦଶ ଲୁଇ ପ୍ରଦତ୍ତ ସନନ୍ଦକୁ ସମର୍ଥନ କରିବେ ବୋଲି ସେ ତାଙ୍କର ଦୃଢ଼ ଅଭିପ୍ରାୟ ଜଣାଇଦେଇଥିଲେ । ତାଙ୍କ ଦୃଷ୍ଟିରେ ସକଳ ଫରାସୀବାସୀ ସମାନ ବୋଲି ମଧ୍ୟ ଘୋଷଣା କରିଥିଲେ । ସେ ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିଦେଇଥିଲେ ଏବଂ ମୁଦ୍ରଣୋଷ୍ଠ ଉଠାଇଦେବା ଫଳରେ ଲୋକମାନେ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ମନ୍ତ୍ରୀ ଭିଲେଲ ସଂସଦୀୟ ସଂଖ୍ୟା ଗରିଷ୍ଠତା ଲାଭ ଫଳରେ ତାଙ୍କୁ ସଂପୂର୍ଣ୍ଣ ନିରାପଦ ମନେକର ଏବଂ ଦଶମ ଚାର୍ଲସଙ୍କ ସିଂହାସନ ଆରୋହଣ ଫଳରେ ତାଙ୍କୁ ଶକ୍ତିଶାଳୀ ଭାବି ଚରମରାଜତନ୍ତ୍ରବାଦୀମାନଙ୍କ କାର୍ଯ୍ୟକ୍ରମରେ ଥିବା ପରିକଳ୍ପନା ଗୁଡ଼ିକ ଉପସ୍ଥାପିତ କରିଥିଲେ । ଏହି ପରିକଳ୍ପନାଗୁଡ଼ିକ ମଧ୍ୟରେ ବିଦେଶାଗତ ସ୍ୱଦେଶତ୍ୟାଗୀ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ (The emigres) କ୍ଷତିପୂରଣ ଦେବା ପରିକଳ୍ପନା ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ଏହି ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଫରାସୀ ବିପ୍ଳବ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଦେଶ ତ୍ୟାଗକରି ବିଦେଶ ଚାଲିଯିବାରୁ ସେମାନଙ୍କର ଭୂସମ୍ପତ୍ତି ସବୁ ବାଜ୍ୟାପ୍ତ କରାଯାଇ କୃଷକମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଥିଲା । ଏହା ଫଳରେ ଯେଉଁ କୃଷକମାନେ ଜମିର ମାଲିକ ହେଲେ ସେମାନଙ୍କୁ ଉକ୍ତ ଜମିରୁ ଉଚ୍ଛେଦ କରାଯିବ ନାହିଁ ବୋଲି ସନନ୍ଦରେ ସର୍ତ୍ତ ରହିଥିଲା । ଚାର୍ଲସ ସନନ୍ଦ ସର୍ତ୍ତ ନ ଭାଙ୍ଗି ସେହି ସମ୍ଭ୍ରାନ୍ତବ୍ୟକ୍ତି-ମାନଙ୍କୁ ୯୮୮ ନିୟୁତ ଫ୍ରାଙ୍କ କ୍ଷତିପୂରଣ ଦେବା ପାଇଁ ବ୍ୟବସ୍ଥାପକସଭାକୁ ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବ ଉପରେ ଯୁକ୍ତିତର୍କ ବଡ଼ ସରଗରମ ହୋଇ ଉଠିଥିଲା । ଚରମ ରାଜତନ୍ତ୍ରବାଦୀମାନଙ୍କ ମଧ୍ୟରୁ କେତେକ ସମାଲୋଚନା କରିଥିଲେ ଯେ ପ୍ରସ୍ତାବିତ କ୍ଷତିପୂରଣର ପରିମାଣ ଯଥେଷ୍ଟ ନୁହେଁ; କିନ୍ତୁ ଅଧିକାଂଶ ସମର୍ଥକ କ୍ଷତିପୂରଣ କଳ୍ପନା ଅଗ୍ରାହ୍ୟ କରି ସେମାନଙ୍କର ହୃତ ଭୂସମ୍ପତ୍ତି ଫେରିପାଇବା ପାଇଁ ଦାବୀ ଉପସ୍ଥାପିତ କରିଥିଲେ । ସେମାନଙ୍କର ଆପତ୍ତି ସତ୍ତ୍ୱେ, ପ୍ରସ୍ତାବଟି ୧୮୨୫ ମସିହାରେ ବ୍ୟବସ୍ଥାପକ ସଭା ଦ୍ୱାରା ମଞ୍ଜୁର ହୋଇ ଆଇନରେ ପରିଣତ ହୋଇଥିଲା । ଚାର୍ଲସ ଏହାକୁ ଏକ ନ୍ୟାୟ-ବିଚାର ବୋଲି କହିଥିଲେ । ମୋଟ ଉପରେ ଏହି ଆଇନ ସ୍ୱଦେଶତ୍ୟାଗୀ ସମ୍ଭ୍ରାନ୍ତଲୋକ-ମାନଙ୍କୁ ଏବଂ ସେମାନଙ୍କର ଜମିର ନୂତନ ଅଧିକାରୀମାନଙ୍କୁ ସନ୍ତୁଷ୍ଟ କରିଥିଲା ସତ; କିନ୍ତୁ ଏହା ଅଧିକାଂଶ ଫରାସୀ ଜନସାଧାରଣଙ୍କୁ ସନ୍ତୁଷ୍ଟ କରିପାରି ନ ଥିଲା । ଦେଶର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ସମ୍ଭ୍ରାନ୍ତଲୋକମାନଙ୍କୁ କ୍ଷତିପୂରଣ ବାବଦ ମୂଳଧନ ନ ଦେଇ ପ୍ରତିବର୍ଷ ତାହାର ସୁଧଦେବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ପ୍ରଚଳିତ ଜାତୀୟ ଋଣର ସୁଧହାର ପାଞ୍ଚରୁ ତିନିଭାଗକୁ କମାଇଦେଇ ସେହି ସୁଧ ଦେବା ସ୍ଥିର ହେଲା । ଋଣଦାତାମାନଙ୍କର ସୁଧହାର କମାଇ ଦିଆଯାଇଥିବାରୁ ସେମାନେ ଅସନ୍ତୋଷ ପ୍ରକାଶ କଲେ । ତେଣୁ ରାଜତନ୍ତ୍ର ସରକାର ଏକ ଶକ୍ତିଶାଳୀ ପୁଞ୍ଜିପତି ଗୋଷ୍ଠୀ ବିଶେଷତଃ ବ୍ୟାଙ୍କର ମାଲିକମାନଙ୍କୁ ତାହାର ଶତ୍ରୁ କରିଦେଇଥିଲା ।

ଧର୍ମସ୍ଥଳୀର ଅପବ୍ୟବହାର ଓ ଦେବସ୍ୱ ଅପହରଣ ବିରୁଦ୍ଧରେ ଅନ୍ୟ ଏକ ଆଇନ ପାଶ କରାଇ ଚାର୍ଲସ ଅଧିକାଂଶ ଫରାସୀ ଜନସାଧାରଣଙ୍କୁ ଅସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ତାଙ୍କ ଶାସନ ପାଇଁ ଦୁର୍ନାମ ଅର୍ଜନ କରିଥିଲେ । ଏହି ଆଇନ ଅନୁସାରେ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ କୋଠାବାଡ଼ିରେ ଚୋରି ଡକାୟତି ହେଲେ ଏବଂ ପବିତ୍ର ପାତ୍ରଗୁଡ଼ିକୁ ଅପବିତ୍ର କରାଗଲେ ଅପରାଧୀକୁ ମୃତ୍ୟୁଦଣ୍ଡ ଦିଆଯିବା ସ୍ଥିର ହୋଇଥିଲା । ଏହି ବର୍ବର ଆଇନ ଫଳରେ ବୁରବନମାନଙ୍କର ଫ୍ରାନ୍ସ ଉପରେ ଅଧିକାର ଦୁର୍ବଳ ହୋଇଯାଇଥିଲା ।

ସମାଜର ମଧ୍ୟବିତ୍ତ ଏବଂ ନିମ୍ନଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଏହା ଅତି ଉତ୍କଣ୍ଠା ସୃଷ୍ଟି କରିଥିଲା । ସେମାନେ ଯାଜକୀୟ ପ୍ରତିକ୍ରିୟାକୁ ରାଜନୈତିକ ଓ ସାମାଜିକ ପ୍ରତିକ୍ରିୟାଠାରୁ ଅଧିକ ଭୟ କରିଥିଲେ । ଯାଜକ ସମ୍ପ୍ରଦାୟର ଖ୍ରୀଷ୍ଟଧର୍ମ ପ୍ରଚାରପାଇଁ ନୂତନ ଉତ୍ସାହ, କ୍ୟାଥଲିକ୍ ଧର୍ମଯାଜକମାନଙ୍କର ରେଜେଷ୍ଟ୍ରି ବିବାହକୁ ଉପପତ୍ନୀ ଗ୍ରହଣ ବୋଲି ନିନ୍ଦାବାଦ କରାଯାଇଥିଲା ଏବଂ ଏହାକୁ ମଧ୍ୟ ଅବୈଧ ଘୋଷଣା କରାଯାଇଥିଲା । ଜେସୁଇଟ୍ ସମ୍ପ୍ରଦାୟର ଯାଜକମାନଙ୍କ ଫ୍ରାନ୍ସରେ ପ୍ରବେଶ ଏବଂ ସେମାନଙ୍କର ପ୍ରକାଶ୍ୟ କାର୍ଯ୍ୟାବଳୀ ଯାଜକ ସମ୍ପ୍ରଦାୟର ଫ୍ରାନ୍ସରେ ପ୍ରତିପତ୍ତି ବୃଦ୍ଧିର ସୂଚନା ଦେଇଥିଲା । ଜନସାଧାରଣଙ୍କର ଯାଜକ ସମ୍ପ୍ରଦାୟର ପ୍ରଭାବ ବୃଦ୍ଧି ବିଷୟରେ ପୂର୍ବରୁ ଯେଉଁ ଧାରଣା ହୋଇଥିଲା; ତାହା ଏତଦ୍ଵାରା ଦୃଢ଼ୀଭୂତ ହୋଇଥିଲା । ଯେତେବେଳେ ୧୮୨୭ ମସିହାରେ ପୋପଙ୍କର ଜୟନ୍ତୀ ମହାସମାରୋହରେ ପାଳନ କରାଯାଇଥିଲା ଓ୍ୱେଲିଂଟନ୍ ଯଥାର୍ଥରେ ମନ୍ତବ୍ୟ ଦେଇଥିଲେ—ରାଜନୈତିକ ଅନୁଭୂତି ବୋଲି ଏପରି କୌଣସି ବିଷୟ ନାହିଁ । ଦ୍ୱିତୀୟ ଜେମ୍ସ ସମ୍ପର୍କରେ ଚେତାବନୀ ତାଙ୍କ ସମ୍ମୁଖରେ ଥାଇ ମଧ୍ୟ ଦଶମ ଚାର୍ଲସ ଏକ ସରକାର ଯାଜକ ସମ୍ପ୍ରଦାୟ କର୍ତ୍ତୃକ, ଯାଜକ ସମ୍ପ୍ରଦାୟ ମାଧ୍ୟମରେ ଏବଂ ଯାଜକ ସମ୍ପ୍ରଦାୟ ପାଇଁ ପ୍ରତିଷ୍ଠା କରୁଥିଲେ ।

('There is no such thing as political experience,' remarked Wellington, 'with the warning of James II before him, Charles X was setting up a government by priests, through priests and for priests.')

ସରକାରଙ୍କ ନୀତି ସମ୍ପର୍କରେ ତିକ୍ତ ଓ ବ୍ୟାପକ ସମାଲୋଚନା ଅତ୍ୟନ୍ତ ଅଶୁଭ-ସୂଚକ ଥିଲା । ମନ୍ତ୍ରିମଣ୍ଡଳ କିନ୍ତୁ ତାହାର ଯୋଜନାଗୁଡ଼ିକ ଅତି ନିର୍ବୋଧତା ସହିତ କାର୍ଯ୍ୟରେ ପରିଣତ କରିବାରେ ଅଗ୍ରସର ହୋଇଥିଲେ । ଏହି ସରକାର ବିପ୍ଳବରୁ ଲାଭ ମିଳିଥିବା ପୈତୃକ ସମ୍ପତ୍ତିକୁ ସମାନ ଭାବରେ ସମସ୍ତ ଉତ୍ତରାଧିକାରୀ ମଧ୍ୟରେ ବଣ୍ଟନ କରାଯିବା ଅଧିକାର ଉପରେ ଆକ୍ରମଣ କରିଥିଲା । ମନ୍ତ୍ରିମଣ୍ଡଳ ଜ୍ୟେଷ୍ଠାଧିକାର ନୀତି ପୁନଃ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଏକ ବିନମ୍ର ପ୍ରସ୍ତାବ ଉପସ୍ଥାପିତ କରିଥିଲେ ।

ଏହିପରି ପଦକ୍ଷେପ ଏବଂ ତାର ବିଫଳତା ମନ୍ତ୍ରିମଣ୍ଡଳକୁ ଜନସାଧାରଣଙ୍କ ମଧ୍ୟରେ ଅପ୍ରିୟ କରିଥିଲେ ମଧ୍ୟ ମନ୍ତ୍ରିମଣ୍ଡଳ ମୁଦ୍ରଣ ଆଇନକୁ ଅଧିକ କଠୋର କରିଥିଲେ ଏବଂ ସମ୍ବାଦପତ୍ରଗୁଡ଼ିକ ଉପରେ ଅଧିକ କଟକଣା ଜାରି କରିଥିଲେ । ଏ ଆଇନ ବିରୁଦ୍ଧରେ ଦୃଢ଼ ସମାଲୋଚନା ଏବଂ ପ୍ରତିରୋଧ ହୋଇଥିଲା । ନିମ୍ନତର ପ୍ରକୋଷ୍ଠରେ ଏ ଆଇନ ଗୃହୀତ ହେବା ସତ୍ତ୍ୱେ ଉଚ୍ଚତର ପ୍ରକୋଷ୍ଠରେ ତାର ବିରୋଧ ଏପରି ପ୍ରବଳ ହୋଇଥିଲା ଯେ ମନ୍ତ୍ରିମଣ୍ଡଳ ସେଠାରେ ଭୋଟଦାନ ପୂର୍ବରୁ ତାକୁ ପ୍ରତ୍ୟାହାର କରି ନେଇଥିଲେ । ପ୍ୟାରିସର ଜନସାଧାରଣ ଏ ଆଇନରୁ ନିଷ୍କୃତି ପାଇଥିବାରୁ ଆନନ୍ଦ ଉଲ୍ଲାସରେ ଉତ୍ସବ ପାଳନ କରିଥିଲେ ।

ମନ୍ତ୍ରିମଣ୍ଡଳର ତ୍ରୁଟିଗୁଡ଼ିକ ଏତିକରେ ଶେଷ ହୋଇ ନଥିଲା । ଏହି ମୁଦ୍ରଣ ଆଇନ ପ୍ରତ୍ୟାହାର କରିନେବାର କିଛିଦିନ ପରେ ରାଜା ଜାତୀୟ ରକ୍ଷୀବାହିନୀ (National Guard) ପରିଦର୍ଶନ କରିଥିଲେ । ରାଜାଙ୍କୁ ସାଦର ଅଭ୍ୟର୍ଥନା କରାଯାଇଥିଲା; କିନ୍ତୁ ଜାତୀୟରକ୍ଷୀମାନଙ୍କଠାରୁ 'ସନନ୍ଦ ଚିରସ୍ଥାୟୀ ହେଉ', 'ମନ୍ତ୍ରିମଣ୍ଡଳର ପତନ ହେଉ' ଏବଂ 'ଜେସୁଇଟମାନେ ଧ୍ୱଂସ ହୁଅନ୍ତୁ'—ଏହିସବୁ ଚିତ୍କାର ଶୁଣାଯାଇଥିଲା । ଭିଲେଲ ଏହି ବାହିନୀକୁ ଭାଙ୍ଗିଦେବା ପାଇଁ ଦାବୀ କରିଥିଲେ । ରାଜା ସମ୍ମତି ଦେବାରୁ ଏହି ବାହିନୀକୁ ଭାଙ୍ଗି ଦିଆଯାଇଥିଲା । ପ୍ୟାରିସର ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ଏଥିରେ ଅପମାନିତ ହୋଇଥିଲେ । ସେମାନେ ସେ ପର୍ଯ୍ୟନ୍ତ ମନ୍ତ୍ରିମଣ୍ଡଳକୁ ବିରୋଧ କରୁଥିଲେ ମଧ୍ୟ ରାଜାଙ୍କ ପ୍ରତି ଅନୁରକ୍ତ ଥିଲେ; କିନ୍ତୁ ଭିଲେଲଙ୍କୁ ସମର୍ଥନ କରିବା ଫଳରେ ରାଜା ସେମାନଙ୍କର ଆସ୍ଥା ହରାଇଥିଲେ ।

ମନ୍ତ୍ରିମଣ୍ଡଳ ତାହାର କ୍ଷମତା ଧୀରେ ଧୀରେ କମିଯିବାର ଲକ୍ଷ୍ୟ କରିଥିଲେ ମଧ୍ୟ ଆତ୍ମସମର୍ପଣ କରିବାକୁ ରାଜି ହୋଇ ନଥିଲେ; ବରଂ ତାହାର ବିରୋଧୀମାନଙ୍କୁ ଦମନ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ମୁଦ୍ରଣ ଆଇନକୁ ଉଚ୍ଚତର ପ୍ରକୋଷ୍ଠରେ ଗୃହୀତ କରାଇ ନପାରି ସେ ପ୍ରକୋଷ୍ଠରେ ନିଜର ସମର୍ଥକମାନଙ୍କୁ ନିଯୁକ୍ତ କରି ସେ ଆଇନ ପାରି କରେଇ ନେବାପାଇଁ ଭିଲେଲ୍ ବଦ୍ଧପରିକର ହୋଇଥିଲେ । ତେଣୁ ସେ ୭୬ ଜଣ ନୂତନ ପିୟର ନିଯୁକ୍ତ କରିଥିଲେ । ଇତିମଧ୍ୟରେ ନିମ୍ନତର ପ୍ରକୋଷ୍ଠରେ ମନ୍ତ୍ରିମଣ୍ଡଳ ବିପକ୍ଷରେ ବିରୋଧୀ ସଦସ୍ୟ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଭିଲେଲ ନିମ୍ନତର ପ୍ରକୋଷ୍ଠରେ ମୁଦ୍ରଣ ଆଇନକୁ ଗୃହୀତ କରାଇ ନେଇଥିଲେ ମଧ୍ୟ ସେଠାରେ ମନ୍ତ୍ରିମଣ୍ଡଳର ସମର୍ଥକମାନଙ୍କ ସଂଖ୍ୟା ଦିନକୁ ଦିନ କମିଯିବାର ଦେଖି ତାକୁ ଭାଙ୍ଗିଦେବାକୁ ନିଷ୍ପତ୍ତି କରିଥିଲେ । ମନ୍ତ୍ରିମଣ୍ଡଳ ସଭ୍ୟମାନେ ଭାବିଥିଲେ ଯେ, ନିମ୍ନତର ପ୍ରକୋଷ୍ଠ ପାଇଁ ପୁନଃ ନିର୍ବାଚନ ହେଲେ ସେମାନଙ୍କର ସମର୍ଥକମାନଙ୍କ ସଂଖ୍ୟା ଅତ୍ୟଧିକ ହେବେ ଏବଂ ଏହା ଫଳରେ ସେମାନଙ୍କର ପ୍ରତିପତ୍ତି ନୀତି ବଜାୟ ରହିବ । ସେମାନଙ୍କ ଆଶାବାଦ ସତ୍ତ୍ୱେ, ଦୁର୍ଭାଗ୍ୟବଶତଃ ମନ୍ତ୍ରିମଣ୍ଡଳର ସମର୍ଥକମାନଙ୍କ ସଂଖ୍ୟା ବିରୋଧୀମାନଙ୍କ ସଂଖ୍ୟାଠାରୁ କମ୍ ହୋଇଥିଲା । ଭିଲେଲ ମନ୍ତ୍ରିମଣ୍ଡଳର ପରାଜୟ ସ୍ୱୀକାର କରି ମନ୍ତ୍ରିପଦରୁ ଓହରି ଯାଇଥିଲେ ।

ମାର୍ଟିଗନାକ୍ (Martignac) ମନ୍ତ୍ରିମଣ୍ଡଳ ୧୮୨୮ ମସିହା ଜାନୁୟାରୀ ମାସରେ କାର୍ଯ୍ୟଭାର ଗ୍ରହଣ କଲେ । ଏହାକୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହି ମନ୍ତ୍ରିମଣ୍ଡଳ ପ୍ରତି ରାଜାଙ୍କର ସହାନୁଭୂତି ନଥିଲା କି ପାର୍ଲାମେଣ୍ଟ (ସଂସଦ)ର ଆନ୍ତରିକ ସମର୍ଥନ ନ ଥିଲା । ଦଶମ ଚାର୍ଲସ ନୂତନ ମନ୍ତ୍ରୀମାନଙ୍କୁ କହିଥିଲେ, 'ଭିଲେଲଙ୍କ ନୀତି ମୋର ଥିଲା ଏବଂ ମୁଁ ଆଶାକରେ ତମେମାନେ ତାହା ପାଳନ କରିବାକୁ ଯଥାସାଧ୍ୟ ଉଦ୍ୟମ କରିବ ।' ମାର୍ଟିଗନାକ୍ କିନ୍ତୁ ସେପରି କୌଣସି ଉଦ୍ୟମ କରି ନ ଥିଲେ; ବରଂ ସେ ଉଦାର-ପନ୍ଥୀ ନୀତି ଗ୍ରହଣ କରିଥିଲେ । ସେ ମୁଦ୍ରଣ ଆଇନକୁ କୋହଳ କରି ମୁଦ୍ରଣ ଉପରୁ କଟକଣା

ହଟାଇ ଦେଇଥିଲେ । ଏକ ଶିକ୍ଷା ଆଇନ ସମ୍ପାଦନ କରାଯାଇଥିଲା ଏବଂ ତାହା ଜେସୁଇଟ-ମାନଙ୍କ ବିରୁଦ୍ଧରେ ପରିଚାଳିତ ହୋଇଥିଲା । ମାର୍ଟିଗନାକ୍‌ଙ୍କ କାର୍ଯ୍ୟପ୍ରଣାଳୀ ଦକ୍ଷିଣପନ୍ଥୀ-ମାନଙ୍କପାଇଁ ସୁବିଧାଜନକ ହୋଇନଥିଲା କି ବାମପନ୍ଥୀମାନଙ୍କ ପାଇଁ ସୁବିଧାଜନକ ହୋଇ-ନଥିଲା । ସୁତରାଂ ତାଙ୍କୁ ଅବିଳମ୍ବେ ଇସ୍ତଫା ଦେବାକୁ ପଡ଼ିଥିଲା ।

୧୮୨୯ ମସିହାରେ ମାର୍ଟିଗନାକ୍‌ଙ୍କ ପତନ ସଙ୍ଗେ ସଙ୍ଗେ ନ୍ୟାୟ୍ୟ ଅଧିକାରୀ ବୁରବନ୍ ଶାସନ ଅଧୀନରେ ପୁରାତନ ଓ ନୂତନ ଫ୍ରାନ୍ସର ମିଶ୍ରଣ ଏବଂ ରାଜତନ୍ତ୍ର ଓ ସାମ୍ବିଧାନିକ ସ୍ୱାଧୀନତାର ସଙ୍ଗଠ ପାଇଁ ଯେଉଁ ଶେଷ ଉଦ୍ୟମ ହୋଇଥିଲା, ତାହାର ମଧ୍ୟ ପତନ ଘଟିଲା । ନୂତନ ମନ୍ତ୍ରିମଣ୍ଡଳର ମନ୍ତ୍ରୀମାନଙ୍କର ନାମ ଘୋଷଣା ଫରାସୀ ଜନସାଧାରଣଙ୍କର ସ୍ୱାଗତଯୋଗ୍ୟ ହୋଇ ନଥିଲା । ମୁଖ୍ୟମନ୍ତ୍ରୀରୂପେ ପଲିଗନାକ (Polignac) ନିଯୁକ୍ତ ପାଇଥିଲେ । ସେ ଫରାସୀ ବିପ୍ଳବ ଆରମ୍ଭକାଳରେ ସ୍ୱଦେଶତ୍ୟାଗୀମାନଙ୍କର ଅନ୍ୟତମ ନେତା ଥିଲେ । ୧୮୧୫ ମସିହାରେ ସେ ସନନ୍ଦର ବିରୋଧ କରିଥିଲେ ଏବଂ ତାକୁ ସମର୍ଥନ କରିବାପାଇଁ ବହୁଦିନ ପର୍ଯ୍ୟନ୍ତ ମନାକରି ଦେଇଥିଲେ । ତାଙ୍କ ମନ୍ତ୍ରିମଣ୍ଡଳର ଅନ୍ୟାନ୍ୟ ମନ୍ତ୍ରୀମାନେ ମଧ୍ୟ ଲୋକପ୍ରିୟ ନ ଥିଲେ । ଲୋକମାନଙ୍କର ଧାରଣା ହେଲା ଯେ, ଏହି ମନ୍ତ୍ରିମଣ୍ଡଳର ନିଯୁକ୍ତି ନୂତନ ଫରାସୀସମାଜ ବିରୁଦ୍ଧରେ ଏକ ଯୁଦ୍ଧ ଘୋଷଣା । ଏହି ଧାରଣା ବ୍ୟାପକ ଏବଂ ସର୍ବଦଳସମ୍ମତ ହେବାରୁ ବିଭିନ୍ନ ଉଦାରପନ୍ଥୀ ଦଳଗୁଡ଼ିକ ନିର୍ଣ୍ଣିତ ବିପଦର ସମ୍ମୁଖୀନ ହେବାପାଇଁ ସଂଗଠିତ ହେବା ଆରମ୍ଭ କରିଥିଲେ । ଲୋକେ ବୁରବନ୍ ରାଜବଂଶ ଏବଂ ସମ୍ବିଧାନ ପରସ୍ପର ବିରୋଧୀ ବୋଲି ପ୍ରକାଶ କଲେ । ଡ୍ୟୁକ୍-ଅଫ୍-ଅରଲିନସଙ୍କୁ ଫରାସୀ ରାଜଗାଦିରେ ବସାଇବା ଉଦ୍ଦେଶ୍ୟରେ ପଥ ପରିଷ୍କାର କରିବାକୁ ଗୋଟିଏ କ୍ଷୁଦ୍ରଦଳ ଗଢ଼ା-ଯାଇଥିଲା । ପରସ୍ପର ମଧ୍ୟରେ ମତଭେଦ ଥିଲେ ମଧ୍ୟ ବିଭିନ୍ନ ଦଳଗୁଡ଼ିକ ଅରଲିନସପନ୍ଥୀ, ବୋନାପାର୍ଟପନ୍ଥୀ ଏବଂ ସାଧାରଣତନ୍ତ୍ରପନ୍ଥୀ ନୂତନ ମନ୍ତ୍ରିମଣ୍ଡଳର ମିଳିତ ପ୍ରତିରୋଧ କରିବାପାଇଁ ଏକଜୁଟ ହୋଇଥିଲେ । ମନ୍ତ୍ରିମଣ୍ଡଳ ନିଯୁକ୍ତିରେ ଅସନ୍ତୋଷ ପ୍ରକାଶ ପାଉଥିଲା-ବେଳେ, ପଲିଗନାକ୍ ତାଙ୍କର ଲକ୍ଷ୍ୟ ଘୋଷଣା କରିଥିଲେ । 'ସମାଜର ପୁନର୍ଗଠନ, ଯାଜକ ସମ୍ପ୍ରଦାୟକୁ ରାଜ୍ୟରେ ତାହାର ପୂର୍ବ ପ୍ରାଧାନ୍ୟ ପ୍ରତ୍ୟର୍ପଣ ଏବଂ ଏକ ଅଭିଜାତ ସମ୍ପ୍ରଦାୟ ସୃଷ୍ଟି ଓ ତାକୁ ବିଶେଷ ଅଧିକାର ପ୍ରଦାନ' ତାଙ୍କର ଲକ୍ଷ୍ୟ ଥିଲା ବୋଲି ଘୋଷିତ ହେଲା ।

ମନ୍ତ୍ରିମଣ୍ଡଳ ଲୋକମାନଙ୍କର ବୈର ମନୋଭାବ ଯୋଗୁ କିଛିଦିନ ପର୍ଯ୍ୟନ୍ତ ନିଷ୍କ୍ରିୟ ରହିଥିଲା; କିନ୍ତୁ ୧୮୩୦ ମସିହା ମାର୍ଚ୍ଚ ମାସରେ ରାଜାଙ୍କ ବିରୁଦ୍ଧରେ ସଂଘର୍ଷ ଆରମ୍ଭ ହୋଇଥିଲା । ଏହା ଅଳ୍ପକାଳ ସ୍ଥାୟୀ ହେଲେ ମଧ୍ୟ ଏପରି ତୀବ୍ର ହେଲା ଯେ ରାଜା ଦଶମ ଚାର୍ଲସଙ୍କ ପତନ ଏବଂ ନିର୍ବାସନରେ ଏହାର ଅବସାନ ଘଟିଥିଲା ।

ପ୍ରଥମେ ରାଜା ଦଶମ ଚାର୍ଲସ ଗୋଟିଏ ବକ୍ତୃତା ଦେଇ ପାର୍ଲାମେଣ୍ଟ ଅଧିବେଶନ ଉଦ୍‌ଘାଟନ କରିଥିଲେ । ଏହି ବକ୍ତୃତାରେ ସେ ବିରୋଧୀଦଳର ଭୂମିକାକୁ ସମାଲୋଚନା କରିଥିଲେ ଏବଂ ମନ୍ତ୍ରିମଣ୍ଡଳକୁ ଦୃଢ଼ଭାବରେ ସମର୍ଥନ କରନ୍ତି ବୋଲି ପ୍ରକାଶ କରିଥିଲେ ।

ନିମ୍ନତର ପ୍ରକୋଷ୍ଠ ୧୮୩୦ରେ ସ୍ୱତନ୍ତ୍ର ନ ହୋଇ ମନ୍ତ୍ରିମଣ୍ଡଳର ଅପସାରଣ ଦାବୀକରି ଗୃହର ଅଧିକସଂଖ୍ୟକ ସଦସ୍ୟଙ୍କ ଦ୍ୱାରା ସ୍ୱାକ୍ଷରିତ ଏକ ମାନପତ୍ର ରାଜାଙ୍କୁ ଦେଇଥିଲେ । ଉତ୍ତରରେ ରାଜା ତାଙ୍କ ନିଷ୍ପତ୍ତି ଅପରିବର୍ତ୍ତନୀୟ ଘୋଷଣା କରିବା ସଙ୍ଗେ ସଙ୍ଗେ ନିମ୍ନତର ପ୍ରକୋଷ୍ଠକୁ ଭାଙ୍ଗି ଦେଇଥିଲେ । ସେ ଆଶାପୋଷଣ କରିଥିଲେ ଯେ, ପୁନର୍ବାର ନିର୍ବାଚନ କରାଗଲେ ସେ ନିମ୍ନତର ପ୍ରକୋଷ୍ଠରେ ସଂଖ୍ୟାଗରିଷ୍ଠତା ଲାଭ କରିବେ ଏବଂ ବିରୋଧୀଦଳକୁ ଦୃଢ଼-ଭାବରେ ଦମନ କରିବେ; କିନ୍ତୁ ତାଙ୍କର ସେ ଆଶା ନୈରାଶ୍ୟରେ ପରିଣତ ହୋଇଥିଲା । ନିର୍ବାଚନରେ ସେ ପରାସ୍ତ ହେଲେ ଏବଂ ବିରୋଧୀଦଳର ସଂଖ୍ୟା ନିମ୍ନତର ପ୍ରକୋଷ୍ଠରେ ବୃଦ୍ଧି ପାଇଥିଲା ।

ଉଦାରପନ୍ଥୀମାନେ ସଂଖ୍ୟାଗରିଷ୍ଠତା ହାସଲ କରିଥିଲେ ମଧ୍ୟ ସେମାନେ ରାଜତନ୍ତ୍ର ବିରୋଧୀ ନଥିଲେ । ରାଜା ସେମାନଙ୍କୁ ଅନୁଗ୍ରହ ପ୍ରଦର୍ଶନକରି ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିଥିଲେ ଅଧିକାଂଶ ବିରୋଧୀଦଳର ସଦସ୍ୟ ସନ୍ତୁଷ୍ଟ ହୋଇଥାନ୍ତେ । ରାଜା ଦଶମ ଚାର୍ଲସ ପଲିଗନାକ୍‌ଙ୍କୁ ବିଦାୟ ଦେବାକୁ ରାଜି ଥିଲେ; କିନ୍ତୁ ଜାର୍ ପ୍ରଥମ ନିକୋଲାସ୍ ଏବଂ ପ୍ରିନ୍ସ ମେଟାରନିକ୍‌ଙ୍କ ପ୍ରରୋଚନାରେ ଭିନ୍ନ ପନ୍ଥା ଅବଲମ୍ବନ କରିଥିଲେ । ରାଜା ପଲିଗନାକ୍‌ଙ୍କଠାରୁ ନିଜକୁ ଅଭିନ୍ନ କରିଥିବାରୁ ପଲିଗ୍‌ନାକଙ୍କୁ ବିଦାୟ ଦେବା ରାଜପଦତ୍ୟାଗ ସଙ୍ଗେ ସମାନ ବୋଲି ତାଙ୍କର ମନେହେଲା । ତେଣୁ ସେ ଏ ବିଷୟରେ ଆତ୍ମସମର୍ପଣ କରିବେ ନାହିଁ ବୋଲି ସିଦ୍ଧାନ୍ତ କରି ମନ୍ତ୍ରିମଣ୍ଡଳ ବରଖାସ୍ତ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଲେ । ତାଙ୍କର ଜ୍ୟେଷ୍ଠ ଭ୍ରାତା ଅଷ୍ଟାଦଶ ଲୁଇ ଲୋକମାନଙ୍କୁ ଅନୁଗ୍ରହ ପ୍ରଦର୍ଶନ କରି ନାନା ଅସୁବିଧାର ସମ୍ମୁଖୀନ ହୋଇ ମୃତ୍ୟୁବରଣ କରିଥିଲେ ବୋଲି ସେ ମତ ପ୍ରକାଶ କରିଥିଲେ ।

## ଜୁଲାଇ ବିପ୍ଳବ ୧୮୩୦ (The July Revolution, 1830)

ଦଶମ ଚାର୍ଲସ ଏହାପରେ ରାଜବିରୋଧୀମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ଦୃଢ଼ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ । ତାଙ୍କ ଲକ୍ଷ୍ୟ ହାସଲ କରିବା ପାଇଁ ସେ ଯେଉଁ ପଦକ୍ଷେପମାନ ନେଇଥିଲେ ତାହା ବିଫଳହେବାରୁ ସେ ବଳ ପ୍ରୟୋଗ ନୀତି ଅବଲମ୍ବନ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ସେ ପରିସ୍ଥିତିର ମୁକାବିଲା ଉଦ୍ଦେଶ୍ୟରେ କେତେଗୁଡ଼ିଏ ଜରୁରୀ ଆଇନ (Ordinances) ଜାରିକରିବାକୁ ନିଷ୍ପତ୍ତି କରିଥିଲେ । ତାଙ୍କ ପରାମର୍ଶ କ୍ରମେ ପଲିଗ୍‌ନାକ୍ ଚାରୋଟି ସ୍ୱେଚ୍ଛାଚାରମୂଳକ ଜରୁରୀ ଆଇନ ୧୮୩୦ ମସିହା ଜୁଲାଇ ୨୬ ତାରିଖରେ ପ୍ରବର୍ତ୍ତନ କରିଥିଲେ । ପ୍ରଥମଟି ଦ୍ୱାରା ସମ୍ବାଦପତ୍ରର ଅଧିକାର ଗୁଡ଼ିକ ସଙ୍କୁଚିତ କରାଗଲା । ଦ୍ୱିତୀୟଟି ଦ୍ୱାରା ନବନିର୍ବାଚିତ ନିମ୍ନତର ପ୍ରକୋଷ୍ଠକୁ ଭାଙ୍ଗି ଦିଆଗଲା ଏବଂ ଭାଙ୍ଗି ଦେବାର କାରଣ ଦର୍ଶାଗଲା ଯେ, ନିର୍ବାଚନ ବେଳେ ନିର୍ବାଚକ-ମାନଙ୍କୁ ପ୍ରତାରଣା ଏବଂ ବିଭ୍ରାନ୍ତ କରିବା ପାଇଁ ବିଭିନ୍ନ କୌଶଳ ଅବଲମ୍ବନ କରାଯାଇଥିଲା । ଏସବୁ କୌଶଳ ପୁନରାବୃତ୍ତିର ପ୍ରତିରୋଧ କରିବା ପାଇଁ ଅନ୍ୟ ଏକ ଜରୁରୀ

ଆଇନ ଆବଶ୍ୟକ ହୋଇଥିଲା । ତେଣୁ ତୃତୀୟ ଜରୁରି ଆଇନ ପ୍ରବର୍ତ୍ତନ କରାଯାଇ ନିର୍ବାଚନ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ କରାଯାଇଥିଲା । ନିମ୍ନତର ପ୍ରକୋଷ୍ଠର ସଭ୍ୟ ସଂଖ୍ୟା ୨୫୮ କୁ ହ୍ରାସ କରାଗଲା ଏବଂ ପ୍ରତିବର୍ଷ ଏହାର ଏକ ପଞ୍ଚମାଂଶ ସଭ୍ୟଙ୍କ ନବୀକରଣ କରାଯିବାର ସ୍ଥିର ହେଲା । ଭୋଟ ଅଧିକାର ପାଇଁ ସମ୍ପତ୍ତି ଯୋଗ୍ୟତାକୁ ଅତି ଚତୁରତାର ସହିତ ପ୍ରବର୍ତ୍ତନ କରାଯାଇ ରାଜନୈତିକ କ୍ଷମତା ଗୋଟିଏ ଶ୍ରେଣୀର ଶକ୍ତିଶାଳୀ ଭୂସମ୍ପତ୍ତି ଅଧିକାରୀମାନଙ୍କ ହସ୍ତରେ ମୁଖ୍ୟତଃ ପୁରାତନ ଶାସନ ବ୍ୟବସ୍ଥା ପ୍ରଚଳିତ ସମୟର ଅଭିଜାତ ସମ୍ପ୍ରଦାୟଙ୍କ ହସ୍ତରେ ନ୍ୟସ୍ତ କରାଯାଇଥିଲା । ତା'ଛଡ଼ା ଏ ଜରୁରି ଆଇନ ଫଳରେ ଭୋଟଦାତାମାନଙ୍କର ନୂତନ ତାଲିକା ପ୍ରସ୍ତୁତ କରାହୋଇ ସେଥିରେ ପୂର୍ବ ଭୋଟଦାତା-ମାନଙ୍କ ମଧ୍ୟରୁ ମାତ୍ର ଏକ-ଚତୁର୍ଥାଂଶକୁ ସ୍ଥାନ ଦିଆଯାଇଥିଲା ଏବଂ ଅନ୍ୟମାନଙ୍କର ଭୋଟାଧିକାର କାଢ଼ିନିଆଯାଇଥିଲା । ଅର୍ଥାତ୍ ଏକଲକ୍ଷ ଭୋଟଦାତାଙ୍କ ପରିବର୍ତ୍ତେ ପ୍ରାୟ ପଚିଶ ହଜାର ଭୋଟଦାତାଙ୍କୁ ଭୋଟର ତାଲିକାରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଚତୁର୍ଥ ଜରୁରି ଆଇନ ଦ୍ୱାରା ନିମ୍ନତର ପ୍ରକୋଷ୍ଠ ପାଇଁ ନୂତନ ନିର୍ବାଚନ ବ୍ୟବସ୍ଥା କରାଯାଇଥିଲା ଏବଂ ଏହି ନିର୍ବାଚନ ଦ୍ୱାରା ପ୍ରତିଷ୍ଠିତ ହେବାକୁ ଥିବା ନିମ୍ନତର ପ୍ରକୋଷ୍ଠ ବୈଠକ ପାଇଁ ତାରିଖ ଧାର୍ଯ୍ୟ କରାଯାଇଥିଲା ।

ଦଶମ ଚାର୍ଲସ ଏବଂ ତାଙ୍କର ମନ୍ତ୍ରୀ ପଲିଗ୍ନାକଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ, ଏ ସବୁ ଜରୁରି ଆଇନ ପ୍ରବର୍ତ୍ତନ ଫଳରେ ଆଉ କୌଣସି ଗଣ୍ଡଗୋଳ ହେବାର ସମ୍ଭାବନା ନାହିଁ । ସେମାନଙ୍କ ମତରେ ଏସବୁ ଆଇନ ସାମାନ୍ୟ କେତେକ ଲୋକଙ୍କ ସ୍ୱାର୍ଥରେ ବାଧା ଦେବ, ତେଣୁ ଜନସାଧାରଣ ସେମାନଙ୍କୁ ସାହାଯ୍ୟ କରିବା ପାଇଁ କଦାପି ଆନ୍ଦୋଳନ କରିବେ ନାହିଁ । ପୁଲିସ, ମନ୍ତ୍ରୀ ତାଙ୍କର ସହକର୍ମୀମାନଙ୍କୁ ଅଭୟବାଣୀ ଦେଇଥିଲେ ଯେ, ପ୍ୟାରିସ୍‌ରେ ଆଉ ବିକ୍ଷୋଭ ହେବନାହିଁ । ସରକାରଙ୍କ ପ୍ରତି ବିପଦର ଭୟନାହିଁ ଭାବି ସରକାର କୌଣସି ସତର୍କମୂଳକ ବ୍ୟବସ୍ଥା ଗ୍ରହଣ କଲେନାହିଁ । ଚାର୍ଲସ ଏହି ଦୁର୍ଭାଗ୍ୟ-ଜନକ ଆଦେଶନାମା ସ୍ୱାକ୍ଷର କଲାପରେ ନିଜର ନିରାପତ୍ତା ବିଷୟରେ କୌଣସି ଆଶଙ୍କା ନ କରି ମୃଗୟା କରିବାକୁ ବାହାରିଯାଇଥିଲେ । ସେହି ସନ୍ଧ୍ୟାରେ ସେ ଫେରି ଦେଖିଲେ ଯେ, ସବୁ ଶାନ୍ତ ଓ ନିସ୍ତବ୍ଧ । ଡଚେସ୍ ଅଫ୍ ବେରି ଅବଶେଷରେ ସେ 'ବାସ୍ତବ ରାଜା' ବୋଲି ନିଜକୁ ପ୍ରମାଣ କରିଥିବାରୁ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ପ୍ରକୃତରେ ଏହି ଜରୁରି ଆଇନ ସମ୍ବାଦପତ୍ର ଏବଂ ନିମ୍ନତର ପ୍ରକୋଷ୍ଠ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା । ନିମ୍ନତର ପ୍ରକୋଷ୍ଠର ଅଧିବେଶନ ଶେଷ ପର୍ଯ୍ୟନ୍ତ ବସିନଥିଲା । ଏହାର ସଦସ୍ୟମାନେ ଫ୍ରାନ୍ସର ଏଣେତେଣେ ବିକ୍ଷିପ୍ତ ହୋଇ ରହିଥିଲେ । ଅଳ୍ପ କେତେକ ସଦସ୍ୟ ପ୍ୟାରିସ୍‌ରେ ଥିଲେ; କିନ୍ତୁ ପ୍ୟାରିସର ଉଦାରପନ୍ଥୀ ସମ୍ବାଦପତ୍ର ସମ୍ପାଦକମାନେ ଜରୁରି ଆଇନ ପ୍ରତିରୋଧ କରିବାରେ ପ୍ରଥମ ପଦକ୍ଷେପ ନେଇଥିଲେ ଏବଂ ଥାୟର୍ସ (Thiers)ଙ୍କ ନେତୃତ୍ୱରେ ଏକ ପ୍ରତିବାଦପତ୍ର ପ୍ରକାଶ କରିଥିଲେ । ସେମାନେ ଦେଶରେ ଆଇନର ରାଜତ୍ୱ ପରିବର୍ତ୍ତେ ଜୁଲମ୍ ରାଜତ୍ୱ ଆରମ୍ଭ ହୋଇଯାଇଛି ବୋଲି କହିଥିଲେ ।

ଏମାନଙ୍କ ପରେ ନିମ୍ନତର ପ୍ରକୋଷ୍ଠର ଉଦାରପନ୍ଥୀ ସଦସ୍ୟମାନେ ଜରୁରି ଆଇନ ବିରୁଦ୍ଧରେ ଅନୁଷ୍ଠାନିକ ପ୍ରତିବାଦ ଚିଠା ପ୍ରସ୍ତୁତ କରିଥିଲେ । ଏହି ଜରୁରି ଆଇନର ଗୁରୁତ୍ୱ ଯେତେବେଳେ ଉପଲବ୍ଧି କରାଗଲା, ସେତେବେଳେ ଲୋକମାନଙ୍କର କ୍ରୋଧ ପ୍ରକାଶ ପାଇଲା । ଲୋକମାନେ ବିଭିନ୍ନ ରାସ୍ତାରେ ଜମା ହୋଇ ଚିତ୍କାର କରିଥିଲେ —'ମନ୍ତ୍ରିମଣ୍ଡଳର ପତନ ହେଉ' 'ଚାର୍ଟର ଅକ୍ଷୟ ହେଉ' । ୧୮୧୪ ମସିହାରେ ଫ୍ରାନ୍ସ ପ୍ରତି ବିଶ୍ୱାସ-ଘାତକତା କରିଥିବା ମାରମଣ୍ଟଙ୍କୁ ପ୍ୟାରିସ୍ ସୈନ୍ୟବାହିନୀର ସେନାପତି ରୂପେ ନିଯୁକ୍ତ କରାଯିବା ଫଳରେ ପ୍ରଜ୍ୱଳିତ ଅଗ୍ନିରେ ଇନ୍ଧନ ଦିଆଯାଇଥିଲା; ଅର୍ଥାତ୍ ମାରମଣ୍ଟଙ୍କ ନିଯୁକ୍ତି ପ୍ୟାରିସ୍ ଜନତାର କ୍ରୋଧ ବୃଦ୍ଧିର କାରଣ ହୋଇଥିଲା । ତା'ଛଡ଼ା ଛଟେଇ ହୋଇଥିବା ଛାପାଖାନାର ଶ୍ରମିକମାନେ ମଧ୍ୟ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ ।

୧୮୩୦ ମସିହା ଜୁଲାଇ ୩୦ ତାରିଖରେ ପ୍ୟାରିସରେ ଗୃହଯୁଦ୍ଧ ଆରମ୍ଭ ହୋଇ-ଯାଇଥିଲା । ଏହି ଯୁଦ୍ଧ ତିନିଦିନଧରି ଚାଲିଥିଲା । ଏହାକୁ ରାଜପଥ ଲଢ଼ାଇ ବୋଲି କୁହାଯାଏ ଏବଂ ପ୍ୟାରିସରେ ଏହା ସୀମାବଦ୍ଧ ହୋଇଥିଲା । ବିଦ୍ରୋହୀମାନେ ରାଜକୀୟବାହିନୀର ତୀବ୍ର ପ୍ରତିରୋଧ କରିଥିଲେ ଏବଂ ମୁହାଁମୁହିଁ ସଂଗ୍ରାମରେ ସେମାନେ ବାରମ୍ବାର ରାଜକୀୟବାହିନୀକୁ ପରାସ୍ତକରି ପ୍ୟାରିସକୁ ନିଜର ଆୟତ୍ତାଧୀନ କରିଥିଲେ । ରାଜା ଦଶମ ଚାର୍ଲସ ନିରୁପାୟ ହୋଇ ତାଙ୍କ ନାତିଙ୍କ ସପକ୍ଷରେ ସିଂହାସନ ତ୍ୟାଗ କରିଥିଲେ ।

## ଜୁଲାଇ ବିପ୍ଳବର ଫଳାଫଳ (The Results of July Revolution)

ଫ୍ରାନ୍ସରେ ୧୮୩୦ ମସିହା ଜୁଲାଇମାସର ବିଦ୍ରୋହ ସାମାନ୍ୟ ରକ୍ତପାତଦ୍ୱାରା ଦେବଦତ୍ତ ରାଜାଧିକାର ମତଉପରେ ପ୍ରତିଷ୍ଠିତ ରାଜତନ୍ତ୍ରର ଅବସାନ ଘଟାଇଥିଲା । ଦଶମ ଚାର୍ଲସଙ୍କ ରାଜତ୍ୱକାଳରେ ପ୍ରତିକ୍ରିୟାଶୀଳ ରାଜନୀତି ଚରମସୀମାରେ ପହଞ୍ଚିଥିଲା । ସେ ଇଂଲଣ୍ଡର ଷ୍ଟୁଆର୍ଟରାଜା ଦ୍ୱିତୀୟ ଜେମ୍ସଙ୍କ ପରି ଦେବଦତ୍ତ ରାଜାଧିକାରରେ ବିଶ୍ୱାସୀ ଥିଲେ ଓ କେବଳ ଜେସୁଇଟ୍ ଏବଂ ସ୍ୱଦେଶତ୍ୟାଗୀ ସମ୍ଭ୍ରାନ୍ତ ଲୋକମାନଙ୍କ ସୁବିଧାପାଇଁ ଶାସନ ପରିଚାଳନା କରିଥିଲେ । ତେଣୁ ତାଙ୍କ ପତନ ଫଳରେ ଫ୍ରାନ୍ସର ଜନସାଧାରଣ ଆଶ୍ୱସ୍ତ ହୋଇଥିଲେ ଏବଂ ଇତିହାସର ପୁନରାବୃତ୍ତି ନ କରିବା ପାଇଁ ସେମାନେ ଫରାସୀ ସିଂହାସନ ଉପରେ ତାଙ୍କ ନାତିଙ୍କ ଦାବୀକୁ ଅଗ୍ରାହ୍ୟ କରିଦେଇଥିଲେ । କିନ୍ତୁ ଏଭଳି ରାଜତନ୍ତ୍ର ବଦଳରେ ଅନ୍ୟ କିପରି ଶାସନ ବ୍ୟବସ୍ଥା ପ୍ରଚଳିତ ହେବ ଏହା ଥିଲା ସେ ସମୟର ଗୁରୁତ୍ୱପୂର୍ଣ୍ଣ ସମସ୍ୟା । ସେତେବେଳେ ଫ୍ରାନ୍ସର ପରିସ୍ଥିତି ଦେଖି ମନେ ହେଉଥିଲା ଯେ ଏକ ଭୟାବହ ଗୃହଯୁଦ୍ଧ ଯେକୌଣସି ମୁହୂର୍ତ୍ତରେ ଲାଗିଯାଇ ଫ୍ରାନ୍ସର ଶାସନ ବ୍ୟବସ୍ଥା ଏବଂ ଅର୍ଥନୈତିକ ଜୀବନ ବିପନ୍ନ କରିଦେବ । ସାଧାରଣତନ୍ତ୍ରବାଦୀ ଏବଂ ମଧ୍ୟବିତ୍ତ ଉଦାରପନ୍ଥୀମାନଙ୍କ ମଧ୍ୟରେ ଏହି ଯୁଦ୍ଧ ଅନିବାର୍ଯ୍ୟ ବୋଲି ବିଶ୍ୱାସ କରାଯାଉଥିଲା । ଯେଉଁମାନେ ରାଜକୀୟବାହିନୀ ସହିତ ପ୍ରକୃତ ଯୁଦ୍ଧ କରିଥିଲେ, ସେମାନେ ନିଃସନ୍ଦେହରେ

ଫ୍ରାନ୍ସରେ ସାଧାରଣତନ୍ତ୍ର ପ୍ରତିଷ୍ଠା ଚାହୁଁଥିଲେ; କିନ୍ତୁ ସାମ୍ବାଦିକମାନେ, ବ୍ୟବସ୍ଥାପକସଭାର ସଦସ୍ୟମାନେ ଏବଂ ଅଧିକାଂଶ ପ୍ୟାରିସ୍‌ବାସୀ ଏପରି ସମାଧାନର ବିରୋଧୀ ଥିଲେ । ସେମାନେ ସାଧାରଣତନ୍ତ୍ର ବିରୁଦ୍ଧରେ ପ୍ରଥମ ପଦକ୍ଷେପ ନେଇଥିଲେ ଯେତେବେଳେ ଲୁଇ ଫିଲିପ୍‌ପି, ଡ୍ୟୁକ୍-ଅଫ୍-ଅର୍ଲିନ୍ସଙ୍କ ପ୍ରାର୍ଥୀତ୍ୱ ଫ୍ରାନ୍ସର ରାଜସିଂହାସନ ପାଇଁ ଉପସ୍ଥାପିତ କରିଥିଲେ । ଲୁଇ ଫିଲିପ୍‌ପି ଥିଲେ ଉଦାର ମତବାଦର ସମର୍ଥକ ଏବଂ ବୁରବନ୍ ରାଜ-ପରିବାରର କନିଷ୍ଠତର ଶାଖାର ପ୍ରତିନିଧି । ସାଧାରଣତନ୍ତ୍ର ଏବଂ ରାଜତନ୍ତ୍ର ମଧ୍ୟରୁ କେଉଁଟି ଫ୍ରାନ୍ସ ପାଇଁ ଅନୁକୂଳ ହେବ ତାହାର ଶେଷ ନିଷ୍ପତ୍ତି ସାଧାରଣତନ୍ତ୍ରବାଦୀଙ୍କର ବାସ୍ତବ ନେତା ଲଫାୟେଟ (Lafayette) ଙ୍କ ଉପରେ ନିର୍ଭର କରୁଥିଲା । ଯେ ଯାହାହେଉ ଲଫାୟେଟଙ୍କ ଉଦ୍ୟମ ଫଳରେ ଗୃହଯୁଦ୍ଧର ଆଶଙ୍କା ଦୂର ହୋଇଥିଲା ଏବଂ ଲୁଇ ଫିଲିପ୍‌ପିଙ୍କୁ ଫ୍ରାନ୍ସର ରାଜପଦରେ ଅଭିଷିକ୍ତ କରାଯାଇଥିଲା । ଲୁଇ ଫିଲିପ୍‌ପିଙ୍କର ଉଦାର ନୈତିକ ମତବାଦ ସର୍ବଜନବିଦିତ ଥିଲା । ତାଙ୍କ ଅଧୀନରେ ଏକ ନୂତନ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରାଯାଇଥିଲା । ଏଥିରେ ଧର୍ମନୈତିକ ସମତା, ସାମ୍ବାଦିକ ସ୍ୱାଧୀନତା ଏବଂ ଗଣତନ୍ତ୍ର —ଏହି ତିନୋଟି ମୌଳିକ ନୀତିକୁ ପ୍ରାଧାନ୍ୟ ଦିଆଯାଇଥିଲା । ଏହାଛଡ଼ା ରାଜନୈତିକ କ୍ଷମତା ମଧ୍ୟବିତ୍ତ ଶ୍ରେଣୀର ହସ୍ତରେ ନ୍ୟସ୍ତ ହୋଇଥିଲା; କାରଣ ସେମାନେ ଥିଲେ ଜୁଲାଇ ବିପ୍ଳବର ସଙ୍ଗଠକ ଏବଂ ସେମାନଙ୍କର ଉଦ୍ୟମରେ ହିଁ ଦଶମ ଚାର୍ଲସଙ୍କ ନିରଙ୍କୁଶ ଶାସନର ଅବସାନ ଘଟିଥିଲା । ଫ୍ରାନ୍ସରେ ଏହି ବିପ୍ଳବ ଫଳରେ ଉଦାର ରାଜନୀତି ଅର୍ଥାତ୍ ଗଣତନ୍ତ୍ରର ବିଜୟ ହୋଇଥିଲା । ଏକଥା କେହି ଅସ୍ୱୀକାର କରିବେନାହିଁ ଯେ ଏହି ବିପ୍ଳବ ଜନସାଧାରଣରେ ସାର୍ବଭୌମତ୍ୱକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଇଉରୋପର ଅନ୍ୟାନ୍ୟ ଦେଶମାନଙ୍କ ଉପରେ ବ୍ୟାପକ ପ୍ରଭାବ ପକାଇଥିଲା ।

## ଜୁଲାଇ ବିପ୍ଳବର ପ୍ରତିଧ୍ୱନି (The Echo of July Revolution)

ପ୍ୟାରିସ ଜୁଲାଇ ବିପ୍ଳବର ପ୍ରତିଧ୍ୱନି ଇଉରୋପର ବହୁଦେଶରେ ଶୁଣାଯାଇଥିଲା । ଏହି ବିପ୍ଳବ ଜାତୀୟ ସ୍ୱାଧୀନତା ପାଇଁ ସେ ଦେଶମାନଙ୍କରେ ପ୍ରବଳ ଉତ୍ସାହ ସୃଷ୍ଟି କରିଥିଲା । ଏହି ପ୍ରସଙ୍ଗରେ ମେଟାରନିକ୍‌ଙ୍କର ଏକ ସରସ ସଂକ୍ଷିପ୍ତ ଉକ୍ତି ଥିଲା, 'ଫ୍ରାନ୍ସକୁ ଥଣ୍ଡା ଧରିଲେ ସମଗ୍ର ଇଉରୋପରେ ଛିଙ୍କ ହୁଏ ।' (The epigram of Metternich was that 'when France catches cold all Europe Sneezes.') ପ୍ରକୃତରେ ଏହି ବିପ୍ଳବ ଇଉରୋପର ସର୍ବତ୍ର ବ୍ୟାପକ ଜନଆନ୍ଦୋଳନ ପାଇଁ ଥିଲା ଏକ ଶୁଭ ସଙ୍କେତ ଏବଂ ଭିଏନା କଂଗ୍ରେସ ନିର୍ମିତ ରାଜନୈତିକ ସୌଧପ୍ରତି ଥିଲା ଏକ ବଜ୍ରାଘାତ । ଫରାସୀବାସୀ ଏକ ସାମ୍ବିଧାନିକ ସରକାର ଲାଭକରିବା ଫଳରେ ଉଦାର ନୀତିବାଦର ବିଜୟ ହୋଇଥିଲା ଏବଂ ବେଲ୍‌ଜିୟମ, ଜର୍ମାନୀ, ଇଟାଲୀ, ପୋଲଣ୍ଡ,

ସ୍ପେନ, ପର୍ତ୍ତୁଗାଲ ଓ ଇଂଲଣ୍ଡରେ ଜନସାଧାରଣ ସ୍ୱାଧୀନତା ଏବଂ ସ୍ୱାୟତ୍ତଶାସନ ଲାଭ-କରିବା ଉଦ୍ଦେଶ୍ୟରେ ସ୍ୱର ଉତ୍ତୋଳନ କରିଥିଲେ ।

## ବେଲଜିୟମ ବିଦ୍ରୋହ

ଫ୍ରାନ୍ସର ରାଜନୀତିକ ବିସ୍ଫୋରଣ ଅବିଳମ୍ବେ ନେଦରଲ୍ୟାଣ୍ଡରେ ଅନୁଭବ କରାଯାଇଥିଲା । ଭିଏନା କଂଗ୍ରେସ ବେଲଜିୟମବାସୀଙ୍କର ଇଚ୍ଛା ବିରୁଦ୍ଧରେ ବେଲଜିୟମକୁ ହଲାଣ୍ଡ ସହିତ ଜବରଦସ୍ତି ସଂଯୋଗ କରିଥିଲା । କାରଣ ହଲାଣ୍ଡକୁ ଶକ୍ତିଶାଳୀ କରି ଭବିଷ୍ୟତରେ ଫରାସୀମାନଙ୍କର ପ୍ରଥମ ଆକ୍ରମଣକୁ ପ୍ରତିରୋଧ କରିବା ଉକ୍ତ କଂଗ୍ରେସର ଲକ୍ଷ୍ୟ ଥିଲା । ବେଲଜିଆନମାନେ କିନ୍ତୁ ଡଚ୍‌ମାନଙ୍କ ସହିତ ସେମାନଙ୍କର ଧର୍ମ, ଭାଷା, ଅର୍ଥନୈତିକ ଜୀବନ ଏବଂ ନୀତିଗୁଡ଼ିକ ବିଷୟରେ ପାର୍ଥକ୍ୟ ଥିବାର ଯୁକ୍ତି ଦର୍ଶାଇ ହଲାଣ୍ଡ ସହିତ ସଂଯୋଗ ବିରୁଦ୍ଧରେ କ୍ରୋଧ ପ୍ରକାଶ କରିଥିଲେ । ଡଚ୍‌ମାନେ ପ୍ରୋଟେଷ୍ଟାଣ୍ଟ ଏବଂ ବେଲଜିଆନମାନେ ଉତ୍ସାହୀ କ୍ୟାଥଲିକ୍ ଥିଲେ । ଡଚ୍‌ମାନେ ଟ୍ୟୁଟନିକ୍ ଭାଷା କହୁଥିଲାବେଳେ ବେଲଜିଆନମାନେ ଫ୍ଲେମିଶ ବା ଭିନ୍ନ ପ୍ରକାର ଟ୍ୟୁଟନିକ୍ ଭାଷା କହୁଥିଲେ । ଡଚ୍‌ମାନେ ଥିଲେ କୃଷିଜୀବୀ ଓ ବ୍ୟବସାୟୀ ଏବଂ ଅବାଧ ବାଣିଜ୍ୟର ପକ୍ଷପାତି; କିନ୍ତୁ ବେଲଜିଆନମାନେ ଥିଲେ ପଣ୍ୟ ଉତ୍ପାଦନକାରୀ ଏବଂ ଶିଳ୍ପ ପ୍ରତିଷ୍ଠାତା ଏବଂ ଅବାଧ ବାଣିଜ୍ୟର ବିରୋଧୀ । ଉଭୟଙ୍କର ଐତିହାସିକ କ୍ରମବିକାଶ ମଧ୍ୟ ସମାନ ନ ଥିଲା । ଏହାଛଡ଼ା ଡଚ୍‌ମାନଙ୍କର ସଂଖ୍ୟା ବେଲଜିଆନମାନଙ୍କଠାରୁ ନ୍ୟୂନ ଥିଲେ ମଧ୍ୟ ସେମାନେ ଅଧିକ ରାଜନୈତିକ କ୍ଷମତା ଉପଭୋଗ କରୁଥିଲେ ବୋଲି ବେଲଜିଆନମାନେ ଅଭିଯୋଗ କରିଥିଲେ ଏବଂ ଡଚ୍‌ମାନଙ୍କର ପ୍ରାଧାନ୍ୟ ବିରୁଦ୍ଧରେ ପ୍ରତିବାଦ କରିଥିଲେ । ରାଜା ଉଇଲିୟମଙ୍କର ସ୍ପଷ୍ଟ ଉଦ୍ଦେଶ୍ୟ ଥିଲା, ତାଙ୍କ ଅଧୀନରେ ଥିବା ଦୁଇଜାତିର ଲୋକମାନଙ୍କୁ ଏକୀକରଣ କରିବା; କିନ୍ତୁ ବେଲଜିଆନମାନେ ଏହାକୁ ବରାବର ବିରୋଧ କରିଆସୁଥିଲେ । ସେମାନେ ମଧ୍ୟ ସରକାରଙ୍କ ଟିକସ ବ୍ୟବସ୍ଥାକୁ ସମାଲୋଚନା କରୁଥିଲେ । ଉଭୟଙ୍କ ମଧ୍ୟରେ ରହିଥିବା ଧର୍ମଗତ ପାର୍ଥକ୍ୟ ଯୋଗୁ ବେଲଜିଆନମାନେ ଡଚ୍‌ମାନଙ୍କ ପ୍ରତି ଘୃଣାଭାବ ପୋଷଣ କରୁଥିଲେ । ବେଲଜିଆନମାନଙ୍କର ଅସନ୍ତୋଷ ବୃଦ୍ଧି ପାଇଲା ଯେତେବେଳେ ଡଚ୍‌ଭାଷାକୁ ସରକାରୀଭାଷା କରିବାପାଇଁ ଉଦ୍ୟମ ହେଲା । ଏଥିରେ ବେଲଜିଆନମାନେ କ୍ରୋଧାନ୍ୱିତ ହୋଇ ପୃଥକ ଶାସନ ଦାବୀ କରିଥିଲେ । ରାଜା ଉଇଲିୟମ ସେମାନଙ୍କ ଦାବୀର ପ୍ରତିରୋଧ କରିଥିଲେ ।

ବେଲଜିଆନମାନେ ଫ୍ରାନ୍ସର ବିକ୍ଷୁବ୍ଧ ଜନତାଙ୍କ ପରି ବିଦ୍ରୋହ ଆରମ୍ଭ କରି-ଦେଲେ ଏବଂ ଡଚ୍ ସରକାର ସେନାବାହିନୀକୁ ପରାଜିତ କଲେ । ସେମାନେ ଅସ୍ଥାୟୀ ସଭା ଆହ୍ୱାନ କରି ଭିଏନା କଂଗ୍ରେସର ଅପମାନଜନକ ବ୍ୟବସ୍ଥା ନାକଚ କରି ସ୍ୱାଧୀନତା ଘୋଷଣା କଲେ । ଫ୍ରାନ୍ସର ନୂତନ ରାଜା ଲୁଇ ଫିଲିପ୍ପି ବେଲଜିଆନମାନଙ୍କର

ବିଦ୍ରୋହକୁ ଫାନ୍ସର ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ପରିଚାଳିତ କରିବାକୁ ଚାହିଁଥିଲେ । ଫଳରେ ଏକ ଆନ୍ତର୍ଜାତିକ ସଙ୍କଟ ଆସନ୍ନ ବୋଲି ମନେହେଲା । ଏହି ବିଦ୍ରୋହ ଭିଏନା ବ୍ୟବସ୍ଥାର ଏକ ପ୍ରଧାନ ସନ୍ଧି ବିରୁଦ୍ଧରେ ଆହ୍ୱାନ ଦେଇଥିବାରୁ, ଇଉରୋପୀୟ ଶକ୍ତିମାନେ ବିଚଳିତ ହୋ'ଇପଡ଼ିଥିଲେ । ତା'ଛଡ଼ା ସେମାନଙ୍କର ସନ୍ଦେହ ହୋଇଥିଲା ଯେ ଫ୍ରାନ୍ସ ସୁବିଧା ଉଠାଇବା ମତଲବରେ ବେଲଜିୟମରେ ବିଦ୍ରୋହକୁ ଉତ୍ସାହିତ କରୁଛି । ତେଣୁ ସେମାନେ ଫ୍ରାନ୍ସର ରାଜା ଲୁଇ ଫିଲିପ୍‌ପିଙ୍କୁ ଏ ବିଦ୍ରୋହରୁ କୌଣସି ଫାଏଦା ଉଠାଇବାକୁ ଦେଇ ନ ଥିଲେ । ଇଂଲଣ୍ଡର ମନ୍ତ୍ରୀ ପାମର ଷ୍ଟୋନ୍ ଲୁଇଫିଲିପ୍‌ପିଙ୍କ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ନ ଦେବା ପାଇଁ ଲଣ୍ଡନରେ ଇଉରୋପୀୟ ଶକ୍ତିମାନଙ୍କର ଏକ ସମ୍ମିଳନୀ ଆହ୍ୱାନ କରିଥିଲେ । ସେଠାରେ ନିଷ୍ପତ୍ତି କରାଯାଇଥିଲା ଯେ ବେଲଜିୟମ ଏକ ସ୍ୱାଧୀନ ଓ ନିରପେକ୍ଷ ଦେଶ ହେବ ଏବଂ ଏହାର ନିରପେକ୍ଷତାକୁ ସ୍ଥାୟୀ କରିବା ସଙ୍ଗେ ତାହା ରକ୍ଷାକରିବା ପାଇଁ ପ୍ରତିଶ୍ରୁତି ଦିଆଯିବ; ତା'ଛଡ଼ା ଏହାର ସରକାର ଏକ ସାମ୍ବିଧାନିକ ରାଜତନ୍ତ୍ର ହେବ । ୧୮୩୧ ମସିହାରେ ବେଲ୍‌ଜିୟମ୍ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା ଏବଂ ଏହାର ରାଜା ହେଲେ ଲିଓପୋଲ୍‌ଡ୍ ଅଫ୍-କୋବର୍‌ଗ । ବେଲଜିଆନମାନଙ୍କ ସଫଳ ବିଦ୍ରୋହ ଫଳରେ ଜାତୀୟତାବାଦର ବିପୁଳ ବିଜୟ ହେଲା ଏବଂ ଭିଏନା ବ୍ୟବସ୍ଥାର ଉଚ୍ଛେଦ ସାଧନ ହେଲା । ଏହା ମଧ୍ୟ ମେଟାରନିକଙ୍କ ବ୍ୟବସ୍ଥା ପରିତ୍ୟାଗର ଏକ ଜ୍ୱଳନ୍ତ ଉଦାହରଣ ହୋଇଥିଲା ।

## ପୋଲଣ୍ଡର ବିଦ୍ରୋହ

୧୮୩୦ ମସିହାର ଫରାସୀ ବିପ୍ଳବ ପରେ ବେଲଜିୟମ ନାମକ ଏକ ନୂତନ ରାଜ୍ୟ ଗଠିତ ହୋଇଥିଲେ ମଧ୍ୟ ପୋଲଣ୍ଡ ନାମକ ଅନ୍ୟ ଏକ ରାଜ୍ୟ ଲୋପ ପାଇଯାଇଥିଲା । ପୋଲଣ୍ଡବାସୀ ବେଲଜିଆନଙ୍କ ପରି ଜୁଲାଇ ବିପ୍ଳବ ଦ୍ୱାରା ବିଶେଷ ପ୍ରଭାବିତ ହୋଇ ରୁଷିଆ ବିରୁଦ୍ଧରେ ପୂର୍ଣ୍ଣ ସ୍ୱାଧୀନତା ପାଇଁ ବିଦ୍ରୋହ କରିଥିଲେ ଏବଂ ଏହି ବିଦ୍ରୋହ ଏକ ଜାତୀୟ ଜାଗରଣରେ ପରିଣତ ହୋଇଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ପୋଲଣ୍ଡର ତିନୋଟି ପଡ଼ୋଶୀ ରାଜ୍ୟ—ରୁଷିଆ, ପ୍ରୁସିଆ ଏବଂ ଅଷ୍ଟ୍ରିଆ ଅନ୍ୟାୟରେ ତାକୁ ଦଖଲ କରି ନିଜ ନିଜ ମଧ୍ୟରେ ବାଣ୍ଟି ନେଇଥିଲେ । ଭିଏନା କଂଗ୍ରେସରେ ପ୍ରାଚୀନ ପୋଲଣ୍ଡ ରାଜ୍ୟ ଆଂଶିକ ଭାବେ ପୁନଃ ପ୍ରତିଷ୍ଠା କରାଯାଇଥିଲା । ରୁଷିଆ ଭିଏନା କଂଗ୍ରେସରେ ପୋଲଣ୍ଡର ଅଧିକାଂଶ ଅଞ୍ଚଳ କ୍ଷତିପୂରଣ ବାବଦରେ ଲାଭକରିଥିଲା । ଅଷ୍ଟ୍ରିଆ ଓ ପ୍ରୁସିଆ ପୋଲଣ୍ଡର ଯେଉଁ ଅଂଶଗୁଡ଼ିକ ପାଇଥିଲେ ସେ ଗୁଡ଼ିକ ରୁଷିଆକୁ ଅର୍ପଣ କରିଦେଇ ତାହା ପରିବର୍ତ୍ତେ ଅନ୍ୟାନ୍ୟ କ୍ଷତିପୂରଣ ଗ୍ରହଣ କରିଥିଲେ । ରୁଷିଆର ଜାର୍ ପ୍ରଥମ ଆଲେକ୍‌ଜାଣ୍ଡାର କେତେକ ପରିମାଣରେ ଏକ ସୀମିତ ପ୍ରାଚୀନ ପୋଲଣ୍ଡରାଜ୍ୟ ପୁନଃ ପ୍ରତିଷ୍ଠା କରିଥିଲେ । ସେ

ରୁଷିଆରେ ନିରଙ୍କୁଶ ଶାସକ ହୋଇଥିଲେ ମଧ୍ୟ ପୋଲାଣ୍ଡକୁ ଏକ ସମ୍ବିଧାନ ପ୍ରଦାନ କରିଥିଲେ ଏବଂ ସାମ୍ବିଧାନିକ ରାଜା ରୂପେ ସେଠାରେ ଶାସନ ଚଳାଇଥିଲେ । ତାଙ୍କ ତତ୍ତ୍ୱାବଧାନରେ ପୋଲାଣ୍ଡରେ ସ୍ୱତନ୍ତ୍ର ଶାସନ ବ୍ୟବସ୍ଥା କରାଯାଇଥିଲା ଏବଂ ପୋଲାଣ୍ଡ-ବାସୀଙ୍କୁ ସେଠାରେ ସେମାନଙ୍କର ଏକ ସୈନ୍ୟବାହିନୀ ପ୍ରତିଷ୍ଠା କରିବାକୁ ସୁଯୋଗ ଦିଆ-ଯାଇଥିଲା । ପୋଲାଣ୍ଡବାସୀ ଯଦିଓ ଜାର୍ ଆଲେକ୍‌ଜାଣ୍ଡାର-ପ୍ରଦତ୍ତ ଗଣତନ୍ତ୍ରମୂଳକ ଶାସନ ବ୍ୟବସ୍ଥାର ଅଧୀନରେ ବାସ କରୁଥିଲେ, ତଥାପି ସେମାନେ ନିଜକୁ ସମ୍ପୂର୍ଣ୍ଣ ସ୍ୱାଧୀନ କରି ପୋଲାଣ୍ଡର ଲୁପ୍ତଗୌରବର ପୁନରୁଦ୍ଧାର କରିବାକୁ ଦୃଢ଼ ସଂକଳ୍ପ କରିଥିଲେ ।

ଆଲେକ୍‌ଜାଣ୍ଡାରଙ୍କ ରାଜତ୍ୱକାଳରେ ପୋଲାଣ୍ଡରେ ସର୍ବତ୍ର ଅସନ୍ତୋଷ ଭାବ ଦେଖାଦେଇଥିଲେ ମଧ୍ୟ ସେ ଜୀବିତ ଥିବା ଯାଏଁ ତାଙ୍କ ବିରୁଦ୍ଧରେ କୌଣସି ଆନ୍ଦୋଳନ ହୋଇନଥିଲା । ଉଦାରମନା ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ତାଙ୍କ ଭ୍ରାତା ପ୍ରଥମ ନିକୋଲାସ୍ ଯେତେବେଳେ ରାଜସିଂହାସନ ଆରୋହଣ କଲେ, ସେତେବେଳେ ପରିସ୍ଥିତି ଭିନ୍ନ ଆକାର ଧାରଣ କରିଥିଲା । ନୂତନ ଜାର୍ ଥିଲେ ଜଣେ ସ୍ୱେଚ୍ଛାଚାରୀ ଶାସକ ଏବଂ ତାଙ୍କ ନିରଙ୍କୁଶ ଶାସନ ଫଳରେ ସ୍ୱଦେଶ ଅନୁରାଗୀ ପୋଲାଣ୍ଡବାସୀଙ୍କ ମନରେ ଅବିଶ୍ୱାସ ଏବଂ ଅଶାନ୍ତି ଉପୁଜିଥିଲା । ପ୍ୟାରିସରେ ବିଦ୍ରୋହ ସଫଳ ହୋଇଥିବାର ସମ୍ବାଦ ପୋଲାଣ୍ଡରେ ପହଞ୍ଚିଲା ମାତ୍ରେ ସେମାନେ ଜାର୍ ନିକୋଲାସଙ୍କ ଶାସନ ବିରୁଦ୍ଧରେ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠିଥିଲେ । ଜାର୍ ନିକୋଲାସ୍‌ଙ୍କ ୱାରସୋରେ ଅବସ୍ଥାପିତ ପ୍ରତିନିଧିଙ୍କର କୁଶାସନରେ ଅସ୍ଥିର ହୋଇପଡ଼ିଥିବା ପୋଲାଣ୍ଡବାସୀ ଜାରଙ୍କ ନିରଙ୍କୁଶ ଶାସନରୁ ମୁକ୍ତି ଲାଭକରିବା ପାଇଁ କେତେକ ଉତ୍ସାହୀଲୋକଙ୍କ ନେତୃତ୍ୱରେ ପ୍ରଥମେ ୱାରସୋଠାରେ ୧୮୩୧ ମସିହାରେ ବିଦ୍ରୋହ ଆରମ୍ଭ କରିଥିଲେ । ଏହି ବିଦ୍ରୋହ ଦେଶର ଅନ୍ୟାନ୍ୟ ପ୍ରାନ୍ତକୁ ଦାବାନଳ ପରି ଦ୍ରୁତଗତିରେ ବ୍ୟାପିଯାଇଥିଲା । ଏହିପରି ଭାବରେ ସମଗ୍ର ପୋଲାଣ୍ଡରେ ବିଦ୍ରୋହାଗ୍ନି ଜଳି ଉଠିଥିଲା । ପୋଲାଣ୍ଡବାସୀଙ୍କଦ୍ୱାରା ଏକ ଅସ୍ଥାୟୀ ସରକାର ୱାରସୋରେ ଗଢ଼ାଯାଇଥିଲା । ଦକ୍ଷ ନେତୃତ୍ୱ ଏବଂ ସଂଗଠନ ବିନା ସେମାନେ ଅତି ସାହସର ସହିତ ସଂଗ୍ରାମ କରିଥିଲେ ସତ; କିନ୍ତୁ ଶେଷରେ ସେମାନେ ଶୃଙ୍ଖଳିତ ରୁଷସୈନ୍ୟମାନଙ୍କ ନିକଟରେ ବଶତା ସ୍ୱୀକାର କରିବାକୁ ବାଧ୍ୟହୋଇଥିଲେ । ସେମାନଙ୍କର ସ୍ଥିତି ଆଭ୍ୟନ୍ତରୀଣ କଳହଯୋଗୁ ଅଧିକ ଦୁର୍ବଳ ହୋଇପଡ଼ିଥିଲା । ପ୍ରାୟ ଏକ ବର୍ଷ ନିର୍ଭୀକ ପ୍ରତିରୋଧ କଲାପରେ ୱାରସୋ ଶତ୍ରୁ ନିକଟରେ ଆତ୍ମସମର୍ପଣ କଲା । ଏହା ଫଳରେ ପୋଲାଣ୍ଡର ଭାଗ୍ୟବିପର୍ଯ୍ୟୟ ହେଲା ।

ପୋଲାଣ୍ଡବାସୀଙ୍କ ବିଦ୍ରୋହ ଦୃଢ଼ହସ୍ତରେ ଦମନ କରାଯାଇଥିଲା । ସେମାନଙ୍କର ଜାତୀୟତା ନଷ୍ଟ କରିଦେବା ଉଦ୍ଦେଶ୍ୟରେ ପ୍ରଥମ ନିକୋଲାସ୍ କଠୋର ପଦକ୍ଷେପ ନେଇଥିଲେ । ପୋଲାଣ୍ଡବାସୀ ସେମାନଙ୍କର ସ୍ୱତନ୍ତ୍ର ମର୍ଯ୍ୟାଦା ହରାଇବା ସଙ୍ଗେ ସଙ୍ଗେ ସେମାନେ ଉପଭୋଗ କରୁଥିବା ସମ୍ବିଧାନକୁ ମଧ୍ୟ ବାତିଲ କରିଦିଆଯାଇଥିଲା । ପୋଲାଣ୍ଡକୁ ରୁଷିଆ-ସାମ୍ରାଜ୍ୟଭୁକ୍ତ କରାଯାଇ ଏକ ପ୍ରଦେଶରେ ପରିଣତ କରାଗଲା । ପୋଲିସ୍ ଭାଷା

ପରିବର୍ତ୍ତେ ରୁଷୀୟ ଭାଷା ପ୍ରବର୍ତ୍ତନ କରାହୋଇଥିଲା । ପୋଲାଣ୍ଡବାସୀଙ୍କର କ୍ୟାଥଲିକ୍ ଧର୍ମ ବଦଳରେ ସଂସ୍କାର ବିରୋଧୀ ଗ୍ରୀକ୍ ଖ୍ରୀଷ୍ଟଧର୍ମ (The Greek orthodox church) ପୋଲାଣ୍ଡରେ ସ୍ଥାନ ପାଇଥିଲା । ବିଦ୍ରୋହୀମାନଙ୍କ ପ୍ରତି କଠୋର ଶାସ୍ତି-ବିଧାନ କରାଯାଇଥିଲା । କେତେକ ବିଦ୍ରୋହୀଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା ଏବଂ ଅନେକେ ସାଇବେରିଆକୁ ନିର୍ବାସିତ ହୋଇଥିଲେ । ଏହିପରି ନିର୍ମମଭାବରେ ପୋଲାଣ୍ଡର ମୁକ୍ତି-ଆନ୍ଦୋଳନକୁ ଦମନ କରାଯାଇଥିଲା ।

## ଜର୍ମାନୀରେ ବିଦ୍ରୋହ

ଫରାସୀ ବିଦ୍ରୋହର ପ୍ରଭାବ ପାଇଁ ଜର୍ମାନୀରେ ନାନାପ୍ରକାର ଗଣବିକ୍ଷୋଭ ଏବଂ ଷଡ଼ଯନ୍ତ୍ର ସୃଷ୍ଟି ହୋଇଥିଲା । ଉତ୍ତର ଜର୍ମାନୀର କ୍ଷୁଦ୍ରରାଜ୍ୟଗୁଡ଼ିକ ଯଥା ବ୍ରନ୍‌ସଉଇକ୍, ହ୍ୟାନୋଭର, ସ୍ୟାକସନୀ ଏବଂ ହେସେ ସେମାନଙ୍କର ଶାସକମାନଙ୍କଠାରୁ ଗଣତାନ୍ତ୍ରିକ ଶାସନସଂସ୍ଥାମାନ ବଳପୂର୍ବକ ଆଦାୟ କରିଥିଲେ । ଦକ୍ଷିଣ ଜର୍ମାନୀର ବେଭେରିଆ, ଉର୍ଟେମ୍‌ବର୍ଗ ପ୍ରଭୃତି ଶାସକମାନେ ୧୮୧୫ ମସିହା ପରେ ଯେଉଁ ଗଣତାନ୍ତ୍ରିକ ଶାସନ ସଂସ୍ଥାମାନ ସେଠାକାର ଲୋକମାନଙ୍କ ପାଇଁ ମଞ୍ଜୁର କରିଥିଲେ ସେଗୁଡ଼ିକର ଦୃଢ଼ୀକରଣ କରାଯାଇଥିଲା । ଫଳରେ ଜର୍ମାନୀର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକରେ ସାମ୍ବିଧାନିକ ସରକାରମାନ ପ୍ରତିଷ୍ଠା କରାଯାଇଥିଲା; କିନ୍ତୁ ସେମାନଙ୍କର ଦୁଇ ନେତା ଅଷ୍ଟ୍ରିୟା ଏବଂ ପ୍ରୁସିୟା ନିରଙ୍କୁଶ ଶାସନ ବ୍ୟବସ୍ଥା ପ୍ରତି ଦୃଢ଼ ସମର୍ଥନ ଜଣାଇଥିଲେ । ମେଟାରନିକଙ୍କ ସାହାଯ୍ୟରେ ପ୍ରତିଶ୍ରୁତି ପାଇଲା ମାତ୍ରେ ଜର୍ମାନୀର ଅନ୍ତର୍ଭୁକ୍ତ ବିଭିନ୍ନ ରାଜ୍ୟର ଶାସକମାନେ ସେମାନଙ୍କ ପ୍ରଦତ୍ତ ଗଣତାନ୍ତ୍ରିକ ଶାସନ ସଂସ୍ଥାଗୁଡ଼ିକ ନାକଚ କରିଦେଇଥିଲେ । ସ୍ୟାକ୍‌ସନିରେ ଯଦିଓ ଶାସନତନ୍ତ୍ର ବାତିଲ କରାଯାଇନଥିଲା, ଏହା ବାସ୍ତବ କ୍ଷେତ୍ରରେ ଆଉ କାର୍ଯ୍ୟକାରୀ ହୋଇନଥିଲା । ମେଟାରନିକ୍ ଜର୍ମାନୀ ରାଜ୍ୟସଂଘର ପାର୍ଲିମେଣ୍ଟକୁ ଭୁଲାଇ ତାହାଦ୍ୱାରା ସାଧାରଣ ସଭାସମିତି, ଛାପାଖାନା ଏବଂ ବିଶ୍ୱବିଦ୍ୟାଳୟଗୁଡ଼ିକ ବିରୁଦ୍ଧରେ ଅଧିକ ଦମନ-ମୂଳକ ଆଇନ ଗୃହୀତ କରାଇନେଇଥିଲେ । ଜର୍ମାନୀରେ ଉଦାରନୈତିକ ଆନ୍ଦୋଳନଗୁଡ଼ିକ ଦମନ କରିବା ପାଇଁ ତାଙ୍କ ପ୍ରରୋଚନାରେ ଅଷ୍ଟ୍ରିୟା, ପ୍ରୁସିଆ ଓ ରୁଷିଆ ଏକ ମେଣ୍ଟ ବାନ୍ଧିଥିଲେ ।

## ଇଟାଲୀରେ ବିଦ୍ରୋହ

ଫ୍ରାନ୍ସର ବୈପ୍ଳବିକ ତରଙ୍ଗ ଇଟାଲୀରେ ମଧ୍ୟ ପହଞ୍ଚିଥିଲା । ସେଠାରେ ଗୁପ୍ତ ସଂଘଗୁଡ଼ିକ ସକ୍ରିୟ ହୋଇଉଠିଥିଲେ । ପାରମା, ମଡେନା ଏବଂ ପୋପ୍‌ଙ୍କ ରାଜ୍ୟରେ ବିଦ୍ରୋହ ଦେଖାଦେଇଥିଲା; କିନ୍ତୁ ଅଷ୍ଟ୍ରିୟା ସୈନ୍ୟବାହିନୀର ହସ୍ତକ୍ଷେପ ଯୋଗୁଁ ସେ ସବୁ

ବିଦ୍ରୋହ କଠୋର ଭାବରେ ଦମନ କରାଯାଇଥିଲା । ସେ ଯାହାହେଉ ବିଦ୍ରୋହ ଦମନ ଫଳରେ ଅଷ୍ଟ୍ରିୟା ପ୍ରତି ଇଟାଲୀର ଘୃଣାଭାବ ବୃଦ୍ଧି ପାଇବାକୁ ଲାଗିଲା ।

## ସ୍ପେନ ଓ ପର୍ତ୍ତୁଗାଲରେ ଜୁଲାଇ ବିପ୍ଳବର ପରୋକ୍ଷ ପ୍ରଭାବ

ଜୁଲାଇ ବିଦ୍ରୋହର ଅଳ୍ପ କେତେବର୍ଷ ମଧ୍ୟରେ ଗଣତାନ୍ତ୍ରିକ ଶାସନ ପଦ୍ଧତି ଉଭୟ ସ୍ପେନ ଓ ପର୍ତ୍ତୁଗାଲରେ ପ୍ରତିଷ୍ଠିତ ହୋଇଥିଲା । ଏହା ଯେ କେବଳ ଜୁଲାଇ ବିପ୍ଳବର ପ୍ରଭାବ ଫଳରେ ସମ୍ଭବ ହୋଇଥିଲା ତାହା ନୁହେଁ, ଉଭୟ ରାଜ୍ୟର ଆଭ୍ୟନ୍ତରୀଣ ପରିସ୍ଥିତି ଥିଲା ଏହାର ପ୍ରଧାନ କାରଣ । ଉତ୍ତରାଧିକାର ସଂକ୍ରାନ୍ତ ଗଣ୍ଡଗୋଳ ଯୋଗୁ ଉଭୟ ରାଜ୍ୟରେ ବିଦ୍ରୋହ ହୋଇଥିଲା । ସ୍ପେନ ରାଜଗାଦିର ଉତ୍ତରାଧିକାରୀ କିଏ ହେବ, ଏ ବିଷୟରେ ସପ୍ତମ ଫର୍ଡିନେଣ୍ଡଙ୍କର ଶିଶୁକନ୍ୟା ଇସାବେଲା ଏବଂ ଇସାବେଲାଙ୍କ ପିତୃବ୍ୟ ଡନ୍ କାରଲସ୍‌ଙ୍କ ମଧ୍ୟରେ ବିବାଦ ଉପୁଜିଲା । ସ୍ପେନର ଉଦାରପନ୍ଥୀ ଦଳ ଇସାବେଲାଙ୍କୁ ସମର୍ଥନ କଲାବେଳେ ଯାଜକସମ୍ପ୍ରଦାୟ ଏବଂ ସ୍ୱେଚ୍ଛାତନ୍ତ୍ରବାଦୀମାନେ କାରଲସ୍‌ଙ୍କୁ ସମର୍ଥନ କରିଥିଲେ । ଇଂଲଣ୍ଡ ଏବଂ ଫ୍ରାନ୍ସର ସାହାଯ୍ୟ ଫଳରେ ଇସାବେଲା ତାଙ୍କ ସ୍ଥିତି ବଜାୟ ରଖିପାରିଥିଲେ ।

ପର୍ତ୍ତୁଗାଲ ରାଜସିଂହାସନ ଅଧିକାର କରିବା ପାଇଁ ଦୁଇଜଣ ଦାବୀଦାର-ପ୍ରଥମ ପେଡ୍ରୋଙ୍କ କନ୍ୟା ଡନାମେରିୟା ଏବଂ ତାଙ୍କ କନିଷ୍ଠ ଭ୍ରାତା ଡମ୍ ମିଗୁଏଲଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ଡନାମେରିୟା ପ୍ରଥମେ ରାଜସିଂହାସନ ଅଧିକାରକରି ଲୋକମାନଙ୍କ ପାଇଁ ଏକ ଉଦାରନୈତିକ ସମ୍ବିଧାନ ମଞ୍ଜୁର କରିଥିଲେ; କିନ୍ତୁ ତାଙ୍କ ପିତୃବ୍ୟ ଡମ୍ ମିଗୁଏଲ ରାଜସିଂହାସନ ବଳପୂର୍ବକ ଅଧିକାରକରି ସେ ସମ୍ବିଧାନକୁ ନାକଚ କରିଦେଇଥିଲେ । ଡନାମେରିୟାଙ୍କୁ ଇଂଲଣ୍ଡ ଏବଂ ଫ୍ରାନ୍ସ ସମର୍ଥନ କରିଥିଲେ । ସେମାନଙ୍କ ସାହାଯ୍ୟ ଫଳରେ ଡନ୍ ମିଗୁଏଲ ପରାସ୍ତହୋଇ ରାଜ୍ୟ ଛାଡ଼ି ଚାଲିଯାଇଥିଲେ । ତେଣୁ ଡନାମେରିୟା ସାମ୍ବିଧାନିକ ଶାସକରୂପେ ନିରାପଦରେ ଶାସନ କଲେ । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ସ୍ପେନ ଓ ପର୍ତ୍ତୁଗାଲ ସହିତ ଇଂଲଣ୍ଡ ଏବଂ ଫ୍ରାନ୍ସ ଚତୁଃଶକ୍ତି ମେଣ୍ଟବାନ୍ଧି ଉଭୟ ରାଜ୍ୟରେ ଉଦାରନୈତିକ ସମ୍ବିଧାନ ପ୍ରତିଷ୍ଠା ପାଇଁ ସାହାଯ୍ୟ କରିଥିଲେ ।

## ଇଂଲଣ୍ଡରେ ଜୁଲାଇ ବିପ୍ଳବର ପ୍ରଭାବ

ଇଂଲଣ୍ଡ ଉପରେ ମଧ୍ୟ ଜୁଲାଇ ବିପ୍ଳବର ପ୍ରଭାବ ପଡ଼ିଥିଲା; କିନ୍ତୁ ସେଠାରେ ବିଦ୍ରୋହ ପରିବର୍ତ୍ତେ ସଂସ୍କାରମୂଳକ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଇଂଲଣ୍ଡର ରକ୍ଷଣଶୀଳ ଦଳ ବେଶ୍ ବୁଝିପାରିଥିଲେ ଯେ ଗଣତାନ୍ତ୍ରିକ ପ୍ରଭାବକୁ ଆଉ ଦବେଇରଖିବା ସମ୍ଭବପର ନୁହେଁ । ଫଳରେ ୧୮୩୨ ମସିହାରେ ସଂସ୍କାର ଆଇନ ପ୍ରବର୍ତ୍ତିତ କରାଯାଇଥିଲା ।

ସୁତରାଂ ଫ୍ରାନ୍ସର ଜୁଲାଇ ବିପ୍ଳବ ଇଉରୋପ ମହାଦେଶ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଯଦିଓ ଇଟାଲୀ, ଜର୍ମାନୀ ଏବଂ ପୋଲଣ୍ଡରେ ପ୍ରତିକ୍ରିୟାଶୀଳ ଶକ୍ତିର ବିଜୟ ଘଟିଥିଲା, ତଥାପି ଏ କଥା କେହି ଅସ୍ୱୀକାର କରିବେନାହିଁ ଯେ ଏହି ବିପ୍ଳବ ଫ୍ରାନ୍ସରେ ଗଣତନ୍ତ୍ର ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ବେଲଜିୟମର ସ୍ୱାଧୀନତା ଲାଭପାଇଁ ବିଶେଷ ସାହାଯ୍ୟ କରିଥିଲା । ଏହି ବିପ୍ଳବର ଗୁରୁତ୍ୱ ଥିଲା ସୁଦୂରପ୍ରସାରୀ ଏବଂ ଏହା ଜାତୀୟ ସଂଗ୍ରାମ ଏବଂ ଗଣତାନ୍ତ୍ରିକ ଆନ୍ଦୋଳନ ପାଇଁ ଥିଲା ପ୍ରେରଣାର ଏକ ଅପୂର୍ବ ଉତ୍ସ ।

---

# ଦଶମ ଅଧ୍ୟାୟ

## ଫ୍ରାନ୍‌ସରେ ଅର୍‌ଲିନ୍‌ସ ରାଜବଂଶ (The Orleanist Dynasty)

## ଲୁଇ ଫିଲିପ୍‌ପିଙ୍କ ରାଜତ୍ୱ (୧୮୩୦-୪୮)
## (The Reign of Louis Philippe,: 1830-48)

୧୮୩୦ ମସିହା ବିପ୍ଲବ ଫଳରେ ବୁରବନ୍ ରାଜବଂଶର ପତନ ଘଟିଲା ଏବଂ ଅର୍‌ଲିନ୍‌ସ ପରିବାରର ଲୁଇ ଫିଲିପ୍‌ପି ଫରାସୀ ରାଜସିଂହାସନରେ ଅଧିଷ୍ଠିତ ହେଲେ । ବୁରବନ୍ ଓ ଅରଲିନ୍‌ସ ପରିବାର ମଧ୍ୟରେ ରକ୍ତଗତ ସମ୍ପର୍କ ଥିଲା । ବୁରବନ୍ ପରିବାର ଜ୍ୟେଷ୍ଠ ଅଂଶ ହେତୁ ରାଜସିଂହାସନ ଉପଭୋଗ କରୁଥିଲା । ଅରଲିନ୍‌ସ ପରିବାର କନିଷ୍ଠ ଅଂଶ ଥିବାଯୋଗୁ କେବଳ ଆଭିଜାତ୍ୟ ଓ ମର୍ଯ୍ୟାଦା ଉପଭୋଗ କରୁଥିଲା । ଲୁଇ ଫିଲିପ୍‌ପିଙ୍କ ସରକାରକୁ ଜୁଲାଇ ରାଜତନ୍ତ୍ର ବୋଲି ଅଭିହିତ କରାଯାଇଥାଏ; କାରଣ ୧୮୩୦ ମସିହା ଜୁଲାଇ ମାସରେ ବିପ୍ଲବ ହେବା ଫଳରେ ଏ ସରକାର ପ୍ରତିଷ୍ଠିତ ହୋଇଥିଲା । ଲୁଇ ଫିଲିପ୍‌ପି ବୈପ୍ଲବିକ ଫ୍ରାନ୍‌ସ ସପକ୍ଷରେ ଯୁଦ୍ଧ କରିଥିଲେ ଏବଂ ଉଦାର-ନୈତିକ ମତବାଦ ପୋଷଣ କରୁଥିଲେ ବୋଲି ଫ୍ରାନ୍‌ସରେ ପ୍ରାୟ ସମସ୍ତଙ୍କୁ ଜଣା ଥିଲା । ସେ 'ଫ୍ରାନ୍‌ସର ରାଜା' ଆଖ୍ୟା ଗ୍ରହଣ କରିବା ପରିବର୍ତ୍ତେ ସେ 'ଫରାସୀମାନଙ୍କର ରାଜା' (King of the French) ଆଖ୍ୟା ଗ୍ରହଣ କରିଥିଲେ । ତଦ୍ୱାରା ସେ ଦୃଢ଼ ଭାବରେ ଜଣାଇ ଦେବାକୁ ଚାହିଁଥିଲେ ଯେ ତାଙ୍କର ରାଜପଦ ବଂଶଗତ ଅଧିକାର ଉପରେ ପ୍ରତିଷ୍ଠିତ ନୁହେଁ; ବରଂ ତାହା ଲୋକମାନଙ୍କର ମନୋନୟନ ଉପରେ ପ୍ରତିଷ୍ଠିତ । ସେ ସେଥିପାଇଁ ଲୋକମାନଙ୍କ ନିକଟରେ ଋଣୀ ବୋଲି ସ୍ୱୀକାର କରିଥିଲେ । ସେ ଜଣେ ବୁଦ୍ଧିମାନ, ହିତାକାଙ୍କ୍ଷୀ ଏବଂ ଅକପଟ ସ୍ୱଭାବର ଲୋକ ଥିଲେ ଏବଂ ତାଙ୍କର ରାଜଗରିମା ନ ଥିଲା । ଲୁଇ ଫିଲିପ୍‌ପି ନିରାଡ଼ମ୍ବର ଜୀବନଯାପନ କରୁଥିଲେ ଏବଂ ଜଣେ ସାଧାରଣ ନାଗରିକ ପରି ପ୍ୟାରିସ୍‌ର ରାସ୍ତାରେ ଚାଲିବୁଲି କରୁଥିଲେ । ସେ ନିଜର ପିଲାମାନଙ୍କୁ ଜନସାଧାରଣଙ୍କ ବିଦ୍ୟାଳୟରେ ଭର୍ତ୍ତି କରାଇଥିଲେ । ଏହିପରି ଭାବରେ ଲୁଇ ଫିଲିପ୍‌ପି ରାଜା ଓ ପ୍ରଜା ମଧ୍ୟରେ ପ୍ରଭେଦ ଦୂର କରିବାକୁ ଉଦ୍ୟମ କରିଥିଲେ । ସେ ବୁରବନ୍ ପତାକା ବଦଳରେ ବିପ୍ଲବର ତ୍ରିରଙ୍ଗ ପତାକା ପୁନଃ ପ୍ରଚଳନ କରିଥିଲେ । ଲୁଇ ଫିଲିପ୍‌ପି ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିଲେ ଏବଂ ତ୍ରିରଙ୍ଗ ପତାକା ଏବଂ ସାଧାରଣ ନାଗରିକଙ୍କ ପୋଷାକ ପରିଧାନର ମୂଲ୍ୟ ବୁଝିଥିଲେ । ସରଳତା ଏବଂ ସଂଯମ ତାଙ୍କ ଜୀବନର ମୂଳ ନୀତି ଥିଲା ।

## ଲୁଇ ଫିଲିପ୍‌ପିଙ୍କର ଆଭ୍ୟନ୍ତରୀଣ ନୀତି

ରକ୍ଷଣଶୀଳ ଆଦର୍ଶରେ ସାମ୍ବିଧାନିକ ରାଜତନ୍ତ୍ର ପ୍ରତିଷ୍ଠା ଲୁଇ ଫିଲିପ୍‌ପିଙ୍କ ନୀତି ଥିଲା । ସାହାହେଉ ସେ ସମ୍ପତ୍ତି ଯୋଗ୍ୟତା କମାଇଦେଇ ଅଧିକ ସଂଖ୍ୟକ ଲୋକଙ୍କୁ ଭୋଟ ଅଧିକାର ଅର୍ପଣ କରିଥିଲେ । ଯେଉଁମାନେ ପ୍ରତ୍ୟକ୍ଷ କର ବାର୍ଷିକ ଦୁଇଶହ ଫ୍ରାଙ୍କ ଦେଉଥିଲେ, କେବଳ ସେଇମାନଙ୍କୁ ଭୋଟ ଅଧିକାର ଦିଆଯାଇଥିଲା ଏବଂ ଯେଉଁମାନେ ପାଞ୍ଚଶହ ଫ୍ରାଙ୍କ ପ୍ରତ୍ୟକ୍ଷ କର ଦେଉଥିଲେ, କେବଳ ସେଇମାନଙ୍କୁ ବ୍ୟବସ୍ଥାପକସଭାର ଆସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାର ଅଧିକାର ଦିଆଯାଇଥିଲା । ଫଳରେ ଭୋଟଦାତାଙ୍କ ସଂଖ୍ୟା ଏକଲକ୍ଷରୁ ଦୁଇଲକ୍ଷକୁ ବୃଦ୍ଧି ପାଇଥିଲା; କିନ୍ତୁ ଫ୍ରାନ୍‌ସର ଲୋକସଂଖ୍ୟା ତିରିଶ ନିୟୁତରୁ ଅଧିକ ଥିବା ଦୃଷ୍ଟିରୁ ଏ ପରିବର୍ତ୍ତନ ବିଶେଷ ଆକର୍ଷଣୀୟ ହୋଇନଥିଲା । ଫଳରେ ଶାସନ-କ୍ଷମତା ଭୂମିହୀନ ଅଭିଜାତ ସମ୍ପ୍ରଦାୟ ଲୋକମାନଙ୍କ ହାତରୁ ଧନୀ ମଧ୍ୟବିତ୍ତ (ବୁର୍ଜୋଆ) ଶ୍ରେଣୀର ଲୋକମାନଙ୍କ ହାତକୁ ଚାଲିଯାଇଥିଲା । ଲୋକମାନଙ୍କୁ ବିଶେଷ ଅଧିକାର ଦେବା ଉଦ୍ଦେଶ୍ୟରେ ଚାର୍ଟରରେ ଆବଶ୍ୟକ ସଂଶୋଧନ କରାଯାଇଥିଲା । ପିୟର୍ ପଦବୀ (Peerage)କୁ ବଂଶାନୁକ୍ରମିକ ହେବା ବନ୍ଦ କରିଦିଆଯାଇଥିଲା । ଲୁଇ ଫିଲିପ୍‌ପି ପୁରାତନ ଶାସନ ବ୍ୟବସ୍ଥାର ପୁନଃ ପ୍ରବର୍ତ୍ତନ କରିନଥିଲେ କିମ୍ବା ଯାଜକ ସମ୍ପ୍ରଦାୟ ଓ ସମ୍ଭ୍ରାନ୍ତଶ୍ରେଣୀର କ୍ଷମତା ପୁନଃ ପ୍ରତିଷ୍ଠା କରିନଥିଲେ । ଯଦିଓ ସେ ପୁରାତନ ଶାସନପଦ୍ଧତିର ନୀତିଗୁଡ଼ିକ ପରିତ୍ୟାଗ କରିଥିଲେ, ତଥାପି ସେ ଗଣତନ୍ତ୍ରମୂଳକ ଶାସନ ପ୍ରତିଷ୍ଠା ଦିଗରେ ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇ ନ ଥିଲେ । ସଂଶୋଧିତ ଚାର୍ଟର ପ୍ରବର୍ତ୍ତନ ଫଳରେ ଯେଉଁ ବ୍ୟବସ୍ଥା ସାବ୍ୟସ୍ତ କରାଯାଇଥିଲା, ତାହାର ଆଉ ପରିବର୍ତ୍ତନ ସେ ଚାହୁଁ ନଥିଲେ । ସେ ସଂଶୋଧିତ ଚାର୍ଟରକୁ ଚୂଡ଼ାନ୍ତ ବୋଲି ମତ ବ୍ୟକ୍ତକରିଥିଲେ । ତାଙ୍କର ନୀତି ଯଥେଚ୍ଛାଚାରୀ ନ ଥିଲା କି ଗଣତାନ୍ତ୍ରିକ ନ ଥିଲା; ବରଂ ତାହା ଥିଲା ନରମପନ୍ଥୀ ବା ମଧ୍ୟମାଚାରୀ । ତେଣୁ ଲୁଇ ଫିଲିପ୍‌ପିଙ୍କ ନୀତିକୁ 'ସ୍ୱର୍ଣ୍ଣୋଜ୍ଜ୍ୱଳ ମଧ୍ୟମ' (Golden mean) ନୀତି ନାମରେ ଅଭିହିତ କରାଯାଏ । ଏହି ନୀତି ଗ୍ରହଣ ଫଳରେ ଫ୍ରାନ୍‌ସର ଅଗ୍ରଗତିର ପଥ ରୁଦ୍ଧ ହୋଇଯାଇଥିଲା । ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ପ୍ରାଧାନ୍ୟ ଯୋଗୁ ଦରିଦ୍ର ଜନସାଧାରଣ ତାଙ୍କ ଅମଳରେ କୌଣସି ରାଜନୈତିକ ସୁବିଧା ସୁଯୋଗ ପାଇ ନ ଥିଲେ । ରାଜନୈତିକ ଅଧିକାର ଉଚ୍ଚ ମଧ୍ୟବିତ୍ତଶ୍ରେଣୀର ଏକଚାଟିଆ ହୋଇଥିଲା । ଭୋଟ ଅଧିକାର ଧନସମ୍ପଦ ଭିତ୍ତିରେ ନିର୍ଦ୍ଧାରିତ ହେଉଥିବାରୁ, ଦରିଦ୍ର ଜନସାଧାରଣ ଜୁଲାଇ ବିପ୍ଳବକୁ ସଫଳକରିବା ସତ୍ତ୍ୱେ ସେଥିରୁ ବଞ୍ଚିତ ହୋଇଥିଲେ । ଲୁଇ ଫିଲିପ୍‌ପିଙ୍କର ଏହି ପକ୍ଷପାତ ନୀତି ଫଳରେ ଜନସାଧାରଣଙ୍କ ମଧ୍ୟରେ ଅସନ୍ତୋଷ ପ୍ରକାଶ ପାଇଥିଲା । ତା'ଛଡ଼ା ଶ୍ରମିକ ଶ୍ରେଣୀର ଅଭାବ-ଅଭିଯୋଗ ଏହି ରାଜନୈତିକ ଅସନ୍ତୋଷ ମଧ୍ୟରେ ଏକ ଅର୍ଥନୈତିକ କାରଣ ଯୋଗାଇଥିଲା । ଏହି ଅର୍ଥନୈତିକ ଅସନ୍ତୋଷ ମଧ୍ୟରୁ ସମାଜବାଦର ଉତ୍ପତ୍ତି ହେଲା ।

ସମଗ୍ର ଦେଶପାଇଁ ଲୁଇ ଫିଲିପ୍‌ପିଙ୍କ ରାଜତ୍ୱକାଳ ଏକ ସମୃଦ୍ଧିର ଯୁଗ ଥିଲା । ଶିଳ୍ପବିପ୍ଳବ ଫଳରେ ଫ୍ରାନ୍‌ସ ଏକ ବିରାଟ ପରିବର୍ତ୍ତନ ମଧ୍ୟରେ ଗତି କରିଥିଲା । ବାଣିଜ୍ୟ-ବ୍ୟବସାୟ ବୃଦ୍ଧି ପାଇଥିଲା ଏବଂ ଉତ୍ପାଦନ କ୍ଷେତ୍ରରେ ଫ୍ରାନ୍‌ସର କ୍ରମ ବିକାଶ ହୋଇଥିଲା । ରାସ୍ତାଘାଟର ଉନ୍ନତି ଘଟିଥିଲା । ଜଳସେଚନ ଓ ଯୋଗାଯୋଗର ସୁବିଧାପାଇଁ କେନାଲଗୁଡ଼ିକୁ ମରାମତି କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ଉନ୍ନତି ବିଧାନ କରାଯାଇଥିଲା । ବୁର୍‌ବନମାନଙ୍କର ଅମଳରେ ରାଜତନ୍ତ୍ର ଯେପରିମାଣରେ ପ୍ରତିକ୍ରିୟାଶୀଳ ଥିଲା, ଲୁଇ ଫିଲିପ୍‌ପିଙ୍କ ଅମଳରେ ତାହାଠାରୁ କମ୍ ପରିମାଣରେ ଥିଲା । ସ୍ଥାନୀୟ ସ୍ୱାୟତ୍ତଶାସନ ସଂସ୍ଥାଗୁଡ଼ିକର କ୍ଷମତା ବୃଦ୍ଧି ପାଇଥିଲା ଏବଂ ଦଣ୍ଡବିଧି ଆଇନର କଠୋରତା ହ୍ରାସ ପାଇଥିଲା । ପ୍ରାଥମିକ ଶିକ୍ଷାଦାନ ପାଇଁ ଆବଶ୍ୟକ ପଦକ୍ଷେପ ନିଆଯାଇଥିଲା । ଏହିସବୁ କାର୍ଯ୍ୟକଳାପ ଲୁଇ ଫିଲିପ୍‌ପିଙ୍କ ଉଦାରତାର ନିଦର୍ଶନ ଥିଲା । ଲୁଇ ଫିଲିପ୍‌ପି ନିଜକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ନେପୋଲିୟନ ବୋନାପାର୍ଟଙ୍କ ଦେହାବଶେଷ ସେଣ୍ଟହେଲେନା ଦ୍ୱୀପରୁ ଫ୍ରାନ୍‌ସକୁ ସ୍ଥାନାନ୍ତରିତ କରି ଏବଂ ସେହି ଦେହାବଶେଷ ପ୍ରତି ଜାତିର ସମ୍ମାନ ପ୍ରଦର୍ଶନ କରିବାପାଇଁ ଏକ ପ୍ରକାଣ୍ଡ ସୁରମ୍ୟ ସ୍ମୃତିସ୍ତମ୍ଭ ନିର୍ମାଣ କରିଥିଲେ । ଅଧିକନ୍ତୁ ତାଙ୍କର ମନ୍ତ୍ରୀ ଥିୟର୍ସ ନେପୋଲିୟନଙ୍କର କୀର୍ତ୍ତି ବର୍ଣ୍ଣନାକରି ଏକ ସ୍ତୁତିଗାଥା ରଚନା କରିଥିଲେ । ଲୁଇ ଫିଲିପ୍‌ପିଙ୍କର ଏହିସବୁ ଉଦ୍ୟମ ବାସ୍ତବିକ ତାଙ୍କ ପ୍ରତି ଏକ ବୁମେରାଙ୍ଗ ( Boomerang ) ହୋଇଥିଲା । ଅର୍ଥାତ୍ ଏହିସବୁ ଉଦ୍ୟମ ଫଳରେ ବହୁ ଫରାସୀବାସୀ ମହାବୀର ସମ୍ରାଟ ନେପୋଲିୟନଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ଏବଂ ନେପୋଲିୟନଙ୍କ ସମୟର ପ୍ରବୀଣ ସୈନ୍ୟମାନଙ୍କର ସନ୍ତାନମାନେ ତାଙ୍କୁ ଜଣେ ଦେବତା ବୋଲି ବିଚାରିଥିଲେ । ତେଣୁ ଲୁଇ ଫିଲିପ୍‌ପିଙ୍କ ଅମଳର ଧନିକଶ୍ରେଣୀର ଶାସନ ସେମାନଙ୍କ ଦୃଷ୍ଟିରେ ଅତି ଘୃଣ୍ୟ ଏବଂ ବିରକ୍ତିଜନକ ହୋଇଥିଲା ।

ଜୁଲାଇ ରାଜତନ୍ତ୍ରର ଭିତ୍ତି ଅତି ଦୁର୍ବଳ ଥିଲା । ଏହା ରାଜ୍ୟର କୌଣସି ପ୍ରଭାବଶାଳୀ ଗୋଷ୍ଠୀର ମିତ୍ରତା ଉପରେ ନିର୍ଭର କରିପାରୁ ନ ଥିଲା । ନ୍ୟାଯ୍ୟ ଅଧିକାର ମତବାଦରେ ବିଶ୍ୱାସୀ ଦଳ, ଲୁଇ ଫିଲିପ୍‌ପି ଫ୍ରାନ୍‌ସର ରାଜଗାଦି ଜବରଦସ୍ତ ଦଖଲକରିଥିବାର ଅଭିଯୋଗକରି ତାଙ୍କୁ ଘୃଣାଚକ୍ଷୁରେ ଦେଖୁଥିଲେ । ସେମାନେ ବୁର୍‌ବନ୍ ରାଜବଂଶର ପୁନଃ ପ୍ରତିଷ୍ଠା ଚାହୁଁଥିଲେ । ସାଧାରଣତନ୍ତ୍ରବାଦୀମାନେ ଜୁଲାଇ ବିପ୍ଳବ ପରିଚାଳନା କରିଥିବାରୁ ସବୁ ପ୍ରକାର ରାଜତନ୍ତ୍ରର ବିରୋଧ କରୁଥିଲେ । ତଥାପି ଆପୋଷ ନିଷ୍ପତ୍ତି ଫଳରେ ଲୁଇ ଫିଲିପ୍‌ପି ରାଜପଦରେ ଅଧିଷ୍ଠିତ ହୋଇଥିବାରୁ, ସେମାନେ କେବଳ ତାଙ୍କ ପ୍ରତି ସହନଶୀଳ ନୀତି ଅବଲମ୍ବନ କରିଥିଲେ । ସେମାନେ ଆଶା କରିଥିଲେ ଯେ ନବପ୍ରତିଷ୍ଠିତ ରାଜତନ୍ତ୍ର ଉଦାର ଜାତୀୟନୀତି ଅନୁସରଣ କରିବେ ଏବଂ ସର୍ବଦଳ ସ୍ୱାର୍ଥ ଦୃଷ୍ଟିରୁ ଦେଶକୁ ଏକ ଗଣତାନ୍ତ୍ରିକ ପଥରେ ଆଗେଇ ନେବେ; କିନ୍ତୁ ସେମାନଙ୍କର ସେ ଆଶା ନିରାଶାରେ ପରିଣତ ହୋଇଥିଲା । ଅଳ୍ପଦିନ ମଧ୍ୟରେ ଦେଖାଗଲା ଯେ ଲୁଇ ଫିଲିପ୍‌ପି ଏକ ଶ୍ରେଣୀଗତ ଶାସନ ବ୍ୟବସ୍ଥା ସ୍ଥାପନ କରିଛନ୍ତି ଯାହା ଅଭିଜାତତନ୍ତ୍ର ଏବଂ ଗଣତନ୍ତ୍ରର ବିରୋଧୀ । ରାଜା

ମଧ୍ୟମପନ୍ଥା ଅବଲମ୍ବନ କରିଥିବାରୁ ଏବଂ ଶାସନ କ୍ଷେତ୍ରରେ ଜନସାଧାରଣଙ୍କୁ ବିରୋଧ କରୁଥିବାରୁ ସେମାନେ ହତାଶ ହୋଇଥିଲେ । ବୋନାପାର୍ଟବାଦୀମାନେ ନେପୋଲିୟନଙ୍କର ଗୌରବମୟ ଇତିହାସ ଜନସାଧାରଣଙ୍କୁ ସ୍ମରଣ କରାଇଦେଇଥିଲେ ଏବଂ ଲୁଇ ଫିଲିପ୍‌ଙ୍କ ନୀତି ଭୀରୁତା ଓ କାପୁରୁଷତା ଉପରେ ପ୍ରତିଷ୍ଠିତ ଥିବାରୁ ଏବଂ ତାହାଙ୍କୁ ଅନୁପ୍ରାଣିତ କରିପାରୁ ନ ଥିବାରୁ ସେମାନେ ତାଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରୁଥିଲେ । ଯାଜକ ସମ୍ପ୍ରଦାୟ ଏବଂ କ୍ୟାଥଲିକମାନେ ଦଶମ ଚାର୍ଲସଙ୍କ ରାଜତ୍ୱକାଳରେ ଯେଉଁସବୁ ସୁବିଧା-ସୁଯୋଗ ଭୋଗ କରୁଥିଲେ ତାହା ପୁନର୍ବାର ଫେରିପାଇବା ପାଇଁ ଉତ୍ସୁକ ଥିଲେ । ସମାଜବାଦୀମାନେ ସେମାନଙ୍କର ନେତା ଲୁଇ ବ୍ଲାଙ୍କ ନେତୃତ୍ୱରେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ-ପ୍ରଭାବିତ ରାଜତନ୍ତ୍ରର ବିରୋଧ କରୁଥିଲେ । ସେମାନେ ସମାଜବାଦୀ ସରକାର ପ୍ରତିଷ୍ଠା କରିବା ପାଇଁ ଆଗ୍ରହୀ ଥିଲେ । ତେଣୁ ଜୁଲାଇ ବିପ୍ଳବ ଫଳରେ ଯେଉଁ ରାଜତନ୍ତ୍ର ପ୍ରତିଷ୍ଠା କରାଯାଇଥିଲା, ତାହା ଉଚ୍ଚମଧ୍ୟବିତ୍ତଶ୍ରେଣୀ ବ୍ୟତୀତ ଅନ୍ୟ କାହାକୁ ସନ୍ତୁଷ୍ଟ କରିପାରି ନ ଥିଲା ।

ଲୁଇ ଫିଲିପ୍‌ଙ୍କ ରାଜତ୍ୱ କାଳରେ ପ୍ରଥମ ଦଶନ୍ଧିରେ ନିଜ ସ୍ଥିତି ବଜାୟରଖିବା ପାଇଁ ତାଙ୍କୁ କ୍ରମାଗତ ବିଭିନ୍ନ ଶତ୍ରୁର ମୁକାବିଲା କରିବାକୁ ପଡ଼ିଥିଲା । ଡଚେସ୍ ଡ' ବେରୀ ତାଙ୍କ ପୁଅକୁ ରାଜଗାଦିରେ ବସାଇବା ଉଦ୍ଦେଶ୍ୟରେ ନ୍ୟାଯ୍ୟ ଅଧିକାର ମତବାଦରେ ବିଶ୍ୱାସୀ ଦଳକୁ ୧୮୩୨ ମସିହାରେ ପ୍ରଭେନ୍ସ ଓ ଲା ଭେଣ୍ଡୀରେ ବିଦ୍ରୋହ କରିବା-ପାଇଁ ପ୍ରେରଣା ଦେଇଥିଲେ । ସାଧାରଣତନ୍ତ୍ରବାଦୀମାନେ ୧୮୩୪ ମସିହାରେ ଲୁଇ ଫିଲିପ୍‌ଙ୍କ ଶାସନ ବିରୁଦ୍ଧରେ ଲିଓଁଠାରେ ଦଙ୍ଗାହାଙ୍ଗାମ ଆରମ୍ଭ କରିଦେଇଥିଲେ ଏବଂ ତାଙ୍କୁ ହତ୍ୟାକରିବା ପାଇଁ ୧୮୩୫ ମସିହାରେ ଉଦ୍ୟମ କରିଥିଲେ । ନେପୋଲିୟନ୍ ବୋନାପାର୍ଟଙ୍କ ପୁତୁରା ଲୁଇ ନେପୋଲିୟନ୍ ଫ୍ରାନ୍ସର ରାଜଗାଦି ବଳପୂର୍ବକ ଅଧିକାର କରିନେବା ଉଦ୍ଦେଶ୍ୟରେ ୧୮୩୫ ଏବଂ ୧୮୪୦ ମସିହାରେ ଷ୍ଟ୍ରାସବର୍ଗ ଏବଂ ବୋଲନ୍‌ଠାରେ ଲୋକମାନଙ୍କୁ ବିଦ୍ରୋହ କରିବାକୁ ମତାଇଥିଲେ; କିନ୍ତୁ ଏସବୁ ବିଦ୍ରୋହକୁ ଫରାସୀ ସରକାର ଦୃଢ଼ହସ୍ତରେ ଦମନ କରିଥିଲେ । ସାଧାରଣତନ୍ତ୍ରବାଦୀମାନେ ଲୁଇ ଫିଲିପ୍‌ଙ୍କୁ ହତ୍ୟାକରିବା ପାଇଁ ଉଦ୍ୟମ କରିଥିବାରୁ ସେମାନଙ୍କ ଉପରେ ବିଶେଷ ଅତ୍ୟାଚାର କରାଯାଇଥିଲା । ସେମାନଙ୍କର ସମିତି ଏବଂ ସମାଜଗୁଡ଼ିକୁ ଭାଙ୍ଗିଦିଆଯାଇଥିଲା ଏବଂ ସମ୍ବାଦପତ୍ରଗୁଡ଼ିକ ଉପରେ ଅତ୍ୟଧିକ ଅର୍ଥଦଣ୍ଡ ଲଦିଦିଆଯାଇ ସେଗୁଡ଼ିକୁ ଦବାଇ ଦିଆଯାଇଥିଲା । ପରିଶେଷରେ ୧୮୩୫ର ସେପ୍‌ଟେମ୍ବର ଆଇନ (September Law, 1835) ଦ୍ୱାରା ପ୍ରଚଳିତ ରାଜତନ୍ତ୍ର ଶାସନ ବ୍ୟତୀତ ଅନ୍ୟ କୌଣସି ପ୍ରକାର ଶାସନ ବ୍ୟବସ୍ଥା ସପକ୍ଷରେ ତର୍କକରିବା ନିଷେଧ କରାଯାଇଥିଲା । ଏହିସବୁ ଆଇନ ଫଳରେ ବ୍ୟକ୍ତିଗତ ସ୍ୱାଧୀନତା ଏକ ଫମ୍ପା ଶବ୍ଦରେ ପରିଣତ ହୋଇଥିଲା ।

ଲୁଇ ନେପୋଲିୟନ୍ ନେପୋଲିୟନ ବୋନାପାର୍ଟଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟକଳାପ ପ୍ରତି ଫରାସୀ ଜନସାଧାରଣଙ୍କର ବିଶେଷ ଆଗ୍ରହ ଥିବାର ଦେଖି ଲୁଇ ଫିଲିପ୍‌ଙ୍କର ଶାସନ

ବିରୁଦ୍ଧରେ ଦୁଇଥର ବିଦ୍ରୋହ କରିଥିଲେ; କିନ୍ତୁ ତାହା ବିଫଳ ହୋଇଥିଲା । ଏ କଥା ସ୍ପଷ୍ଟ ଯେ ଦ୍ୱିତୀୟ ବିଦ୍ରୋହ ପରେ ସେ ଜନବିଗ୍ଭର (Public trial)ର ସୁଯୋଗ ନେଇ ନାଟକୀୟ ଭାବରେ ଆବିର୍ଭାବ ହୋଇ ଫରାସୀ ଜାତିକୁ 'ନେପୋଲିୟନଙ୍କ ଉପକଥା' (Napoleonic Legend) ଉପହାର ଦେଇଥିଲେ । ସେ କହିଥିଲେ, "ମୁଁ ଆପଣମାନଙ୍କ ନିକଟରେ ପୁନଃ ଉପସ୍ଥାପିତ କରୁଛି, ଏକ ନୀତି, ଏକ ଉଦ୍ଦେଶ୍ୟ, ଏକ ପରାଜୟ । ନୀତି ହେଲା ଜନତାର ସାର୍ବଭୌମତ୍ୱ; ଉଦ୍ଦେଶ୍ୟ ହେଲା ସାମ୍ରାଜ୍ୟ (ପ୍ରତିଷ୍ଠା); ପରାଜୟ ହେଲା ଓ୍ୱାଟରଲୁ । ନୀତିଟି ଆପଣମାନେ ସ୍ୱୀକାର କରିଛନ୍ତି; ଉଦ୍ଦେଶ୍ୟକୁ ଆପଣମାନେ ସାହାଯ୍ୟ କରିଛନ୍ତି, ପରାଜୟର ଆପଣମାନେ ପ୍ରତିଶୋଧ ନେବାକୁ ଚାହାଁନ୍ତି ।" (He said, "I represent to you a principle, a cause, a defeat. The principle is that of the sovereignty of the people; the cause, that of Empire, the defeat, Waterloo. The principle you have recognized; the cause you have served, the defeat you wish to avenge.") ସେ ଯାହାହେଉ ବିଦ୍ରୋହ ପରିଗ୍ଭଳନା କରିଥିବାରୁ ଲୁଇ ନେପୋଲିୟନଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ କାରାରୁଦ୍ଧ କରାଯାଇଥିଲା । ସେ ଛଅବର୍ଷ କାରାବାସ କଲାପରେ, କାରାଗାରରୁ ଖସି ପଳାଇଯାଇଥିଲେ ।

ଲୁଇ ଫିଲିପ୍‌ପିଙ୍କ ପ୍ରଥମ ଦଶବର୍ଷ ରାଜତ୍ୱକାଳରେ ଯେଉଁସବୁ ବିଦ୍ରୋହ ତାଙ୍କ ବିରୁଦ୍ଧରେ ହୋଇଥିଲା, ତାହା ପ୍ରକୃତପକ୍ଷେ ବିଫଳ ହୋଇଥିଲେ ମଧ୍ୟ ତାଙ୍କ ବିପକ୍ଷରେ ସଞ୍ଚିତ ହୋଇଥିବା ଶକ୍ତିଗୁଡ଼ିକ ଯେ କେତେଦୂର ବିପଜ୍ଜନକ ତାହାର ସୂଚନା ଦେଇଥିଲା ।

## ବୈଦେଶିକ ନୀତି

ଲୁଇ ଫିଲିପ୍‌ପିଙ୍କର ବୈଦେଶିକ ନୀତି ଶାନ୍ତିପୂର୍ଣ୍ଣ ଥିଲା । ସେ ଇଂଲଣ୍ଡ ସହିତ ପାରମ୍ପରିକ ଶତ୍ରୁଭାବ ଓ ପ୍ରତିଦ୍ୱନ୍ଦ୍ୱିତା ପରିବର୍ତ୍ତେ ତାହା ସହିତ ବନ୍ଧୁତା ସ୍ଥାପନ କରିଥିଲେ । ଭିଏନା କଂଗ୍ରେସରେ ଫ୍ରାନ୍‌ସର ଯେ ମର୍ଯ୍ୟାଦାହାନି ହୋଇଥିଲା, ତାହାର ସ୍ମୃତି ଫରାସୀଜାତିର ମନରୁ ଲିଭି ନ ଥିଲା । ସେମାନେ ଆଶାକରିଥିଲେ ଯେ ଲୁଇ ଫିଲିପ୍‌ପି ଶକ୍ତିଶାଳୀ ଓ ଚମକପ୍ରଦ ବୈଦେଶିକ ନୀତି ଅନୁସରଣ କରି ଫ୍ରାନ୍‌ସର ହୃତଗୌରବ ପୁନରୁଦ୍ଧାର କରିବେ; କିନ୍ତୁ ସେ ସେହି ପନ୍ଥା ଅନୁସରଣ କରି ନ ଥିଲେ । ଆହୁରି ମଧ୍ୟ ସେମାନେ ଗ୍ଭହିଁଥିଲେ ଯେ ଲୁଇ ଫିଲିପ୍‌ପି ସିଂହାସନ ଆରୋହଣ ସଙ୍ଗେ ସଙ୍ଗେ ସେ ଇଉରୋପର ନିର୍ଯ୍ୟାତିତ ଜନସାଧାରଣଙ୍କର ସାହାଯ୍ୟ ପାଇଁ ଅଗ୍ରସର ହେବେ; କିନ୍ତୁ ସେମାନଙ୍କର ସେ ଆଶା ବିଫଳ ହୋଇଥିଲା । ସେ ପୁଣି ଇଟାଲୀ ଏବଂ ବିଦ୍ରୋହ ସପକ୍ଷରେ ହସ୍ତକ୍ଷେପ କରିବାକୁ ମନାକରିଦେଲେ । ଫରାସୀବାସୀ ସାମରିକ ଗୌରବ ଅର୍ଜନ

ପାଇଁ ବ୍ୟାକୁଳ ହୋଇପଡ଼ିଥିବାରୁ ଲୁଇ ଫିଲିପ୍‌ଙ୍କର ଏପରି ଉଦାସୀନ ମନୋଭାବ ଦେଖି ସେମାନେ ବଡ଼ ବିରକ୍ତ ଏବଂ ଅସନ୍ତୁଷ୍ଟ ହୋଇଥିଲେ । ସେ ବେଲ୍‌ଜିୟମମାନଙ୍କ ବିଦ୍ରୋହକୁ ଫ୍ରାନ୍ସର ସ୍ୱାର୍ଥରେ ଲଗାଇବା ପାଇଁ ଯେଉଁ ଉଦ୍ୟମ କରିଥିଲେ, ତାହା ଇଂଲଣ୍ଡର ବୈଦେଶିକ ମନ୍ତ୍ରୀ ପାମର ଷ୍ଟୋନଙ୍କ ଦୃଢ଼ମନୋଭାବ ଫଳରେ ବ୍ୟର୍ଥ ହୋଇଥିଲା, ଏବଂ ବେଲଜିୟମ ବ୍ୟାପାରଗୁଡ଼ିକ ନିଷ୍ପତ୍ତି କରିବା ବାଗରେ ସେ ଶେଷରେ ଇଂଲଣ୍ଡର ସମର୍ଥକ ଭୂମିକା ଗ୍ରହଣ କରିଥିଲେ । ୧୮୪୦ ମସିହାରେ ପୂର୍ବାଞ୍ଚଳରେ ସଙ୍କଟକାଳ ଉପୁଜିବା-ବେଳେ ସେ ମେହେମେତ୍ ଆଲିଙ୍କର ତୁର୍କୀ ବିରୁଦ୍ଧରେ ଅଭିଯାନକୁ ସମର୍ଥନ କରିଥିଲେ; କାରଣ ମିଶରର ପାଶା ମେହେମେତ୍ ଆଲି ସିରିଆ ଦଖଲକରି ଯେତେବେଳେ କନଷ୍ଟାଣ୍ଟିନୋପଲ ଅଧିକାର କରିନେବା ପାଇଁ ତୁର୍କୀ ସୁଲତାନଙ୍କୁ ଧମକ ଦେଲେ, ସେତେବେଳେ ଜାତୀୟ ସ୍ୱାର୍ଥଦୃଷ୍ଟିରୁ ଫରାସୀବାସୀ ମେହେମେତ୍ ଆଲିଙ୍କୁ ସାହାଯ୍ୟକରିବା ପାଇଁ ଲୁଇ ଫିଲିପ୍‌ଙ୍କ ଉପରେ ଚାପ ପକାଇଥିଲେ । ଲୁଇ ଫିଲିପ୍‌ ଜନମତକୁ ଉପେକ୍ଷାକରି ଥିୟୋର୍‌ସଙ୍କୁ ମନ୍ତ୍ରିମଣ୍ଡଳର ଅଧ୍ୟକ୍ଷ ରୂପେ ନିଯୁକ୍ତ କରିଥିଲେ । ଥିୟୋର୍ସ ମଧ୍ୟ ମେହେମେତ୍ ଆଲିଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସାମରିକ ପ୍ରସ୍ତୁତ କରିଥିଲେ; କିନ୍ତୁ ପାମର୍‌ଷ୍ଟୋନ ଲୁଇ ଫିଲିପ୍‌ ସରକାରର ଅଭିସନ୍ଧି ବୁଝିପାରି ତାକୁ ବାଧା ଦେବା ସଙ୍ଗେ ସଙ୍ଗେ ପୂର୍ବାଞ୍ଚଳ ପ୍ରଶ୍ନ ସମାଧାନ କ୍ଷେତ୍ରରେ ଲୁଇ ଫିଲିପ୍‌ଙ୍କୁ ଉପେକ୍ଷା କରିଥିଲେ । ଲୁଇ ଫିଲିପ୍‌ ଏଥିରେ ନିଜକୁ ଅପମାନିତ ମନେକରି ଯୁଦ୍ଧ ଧମକ ଦେଇଥିଲେ । କିନ୍ତୁ ପରେ ସେଥିରୁ ସେ ଓହରି ଯାଇଥିଲେ ଏବଂ ଥିୟୋର୍ସଙ୍କୁ ମନ୍ତ୍ରିପଦରୁ ଅନ୍ତର କରିଥିଲେ । ଏକଥା ସ୍ୱୀକାର କରିବାକୁ ହେବ ଯେ ଲୁଇ ଫିଲିପ୍‌ ଯୁଦ୍ଧପନ୍ଥା ଅବଲମ୍ବନ କରିଥିଲେ, ଇଉରୋପୀୟ ଶକ୍ତିମାନଙ୍କ ସହିତ ତାଙ୍କର ସଂଘର୍ଷ ଅନିର୍ବାର୍ଯ୍ୟ ହୋଇଥାନ୍ତା । ଅବଶେଷରେ ସ୍ପେନୀୟ ବିବାହ ବ୍ୟାପାର ନେଇ ଇଂଲଣ୍ଡ ସହିତ କୂଟନୈତିକ ବିବାଦ ଉପୁଜିବାରୁ, ଲୁଇ ଫିଲିପ୍‌ ଇଂଲଣ୍ଡର ସହାନୁଭୂତି ହରାଇଥିଲେ । ସେ ରାଣୀ ଭିକ୍ଟୋରିୟାଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା ନ କରି ସ୍ପେନୀୟ ରାଣୀଙ୍କର ଭଗ୍ନୀ ଓ ଉତ୍ତରାଧିକାରିଣୀଙ୍କ ସହିତ ତାଙ୍କର ପୁତ୍ରଙ୍କୁ ବିବାହ ଦେବାପାଇଁ ଜବାବ ଦେଇଥିଲେ । ଅବଶ୍ୟ ଲୁଇ ଫିଲିପ୍‌ଙ୍କ ରାଜତ୍ୱକାଳରେ ଆଲଜେରିଆ ସମ୍ପୂର୍ଣ୍ଣରୂପେ ଅଧିକୃତ ହୋଇଥିଲା ଏବଂ ସେହି ସମୟରେ ଫ୍ରାନ୍ସ ଆଫ୍ରିକାର ଗିନି ଉପକୂଳରେ ଏବଂ ମାଡ଼ାଗାସ୍କାରରେ ନିଜକୁ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ । ମୋଟଉପରେ କହିବାକୁ ଗଲେ ଲୁଇ ଫିଲିପ୍‌ଙ୍କର ବୈଦେଶିକ ନୀତି ବିଫଳ ହୋଇଥିଲା । କାରଣ ଯେଉଁ ଫରାସୀ ଜନସାଧାରଣ ନେପୋଲିୟନ୍‌ ବୋନାପାର୍ଟଙ୍କର ବୀରତ୍ୱପୂର୍ଣ୍ଣ କାହାଣୀଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ; ସେମାନଙ୍କୁ ଲୁଇ ଫିଲିପ୍‌ଙ୍କର ଭୀରୁ ଓ କାପୁରୁଷ ନୀତି ଆଦୌ ସନ୍ତୁଷ୍ଟ କରିପାରି ନ ଥିଲା । ଲୁଇ ଫିଲିପ୍‌ ବୈଦେଶିକ ନୀତି କ୍ଷେତ୍ରରେ ଜାତୀୟ ମର୍ଯ୍ୟାଦା ପ୍ରତି ବିଶ୍ୱାସଘାତକତା ଏବଂ ଅଯଥାରେ ଇଂଲଣ୍ଡର ଆନୁଗତ୍ୟ ସ୍ୱୀକାର କରିଛନ୍ତି ବୋଲି ସେମାନେ ଉପଲବ୍‌ଧି କରିଥିଲେ । ତେଣୁ ଫରାସୀବାସୀ ଏହି କାପୁରୁଷ ଏବଂ ଅପମାନ-ଜନକ ବୈଦେଶିକ ନୀତିରୁ ମୁକ୍ତି ପାଇବାପାଇଁ ପ୍ରସ୍ତୁତ ହେଉଥିଲେ ।

# ଲୁଇ ଫିଲିପ୍‌ଙ୍କ ଶାସନର ଦୋଷ-ଦୁର୍ବଳତା

ନ୍ୟାଯ୍ୟ ଅଧିକାର ମତବାଦୀମାନେ ଲୁଇ ଫିଲିପ୍‌ଙ୍କ ଶାସନକୁ ଅବଜ୍ଞା, ସାଧାରଣତନ୍ତ୍ରବାଦୀମାନେ ଅବିଶ୍ୱାସ ଏବଂ ବୋନାପାର୍ଟବାଦୀମାନେ ଉପହାସ କରୁଥିବାରୁ ସେ ସମ୍ବିଧାନବାଦୀମାନଙ୍କ ସମର୍ଥନରେ ଶାସନ ପରିଚାଳନା କରିଥିଲେ; କାରଣ ସେମାନେ ଲୁଇ ଫିଲିପ୍‌ଙ୍କୁ ପ୍ରଦତ୍ତ ୧୮୩୦ ମସିହାର ସମ୍ବିଧାନ ବଜାୟ ରଖିବାକୁ ଚାହୁଁଥିଲେ । ସେହି ସମ୍ବିଧାନବାଦୀମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବ୍ୟାଙ୍କ ମାଲିକ, ଶିଳ୍ପପତି, ବଣିକ ଏବଂ ବିଭିନ୍ନ ବୃତ୍ତି ଅବଲମ୍ବନକାରୀ ଏବଂ ସେମାନେ ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀଭୁକ୍ତ ଥିଲେ । ସହଯୋଗୀ ଭୋଟ ଅଧିକାର ସୀମିତ କରାଯିବା ଫଳରେ ଧନିକ ଶ୍ରେଣୀ ଶାସନ କ୍ଷେତ୍ରରେ ପ୍ରାଧାନ୍ୟ ବିସ୍ତାର କରିଥିଲେ ଏବଂ ରାଜା ଲୁଇ ଫିଲିପ୍‌ ମଧ୍ୟ ଏହି ଦଳର ସ୍ୱାର୍ଥକୁ ନିଜର ଏବଂ ଦେଶର ସ୍ୱାର୍ଥ ବୋଲି ବିଚାରୁଥିଲେ । ତେଣୁ ଜୁଲାଇ ରାଜତନ୍ତ୍ର କହିଲେ ବୁଝାଉଥିଲା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଶାସନତନ୍ତ୍ର ଏବଂ ଏହା ସୀମିତ ଭୋଟଅଧିକାର ଭିତ୍ତିରେ କେବଳ ସେହି ଶ୍ରେଣୀର ସ୍ୱାର୍ଥରକ୍ଷା ପାଇଁ ପରିଚାଳିତ ହେଉଥିଲା । ତେଣୁ ସାଧାରଣ ଜନତା ଲୁଇ ଫିଲିପ୍‌ଙ୍କୁ ବିଦ୍ରୂପକରି 'ନାଗରିକ ରାଜା' ( Citizen King ) ଆଖ୍ୟା ଦେଇଥିଲେ । ଲୁଇ ଫିଲିପ୍‌ ଯଦିଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀଙ୍କର ସମର୍ଥନ ଓ ସାହାଯ୍ୟ ଉପରେ ନିର୍ଭର କରୁଥିଲେ, ସେ ସେମାନଙ୍କର ନେତାମାନଙ୍କ ସହିତ ସବୁ ବିଷୟରେ ଏକମତ ହେଉନଥିଲେ । ତେଣୁ ରାଜା, ମନ୍ତ୍ରିମଣ୍ଡଳ ଏବଂ ବ୍ୟବସ୍ଥାସଭା ମଧ୍ୟରେ ବାରମ୍ବାର କଳହ ଉପୁଜୁଥିଲା । ପ୍ରଥମ ଦଶବର୍ଷ ରାଜତ୍ୱକାଳ ମଧ୍ୟରେ ଲୁଇ ଫିଲିପ୍‌ ବହୁ ମନ୍ତ୍ରୀଙ୍କୁ ନିଯୁକ୍ତ କରିଥିଲେ ଏବଂ ବହୁ ମନ୍ତ୍ରୀଙ୍କୁ ବରଖାସ୍ତ କରିଥିଲେ ।

ଲୁଇ ଫିଲିପ୍‌ ୧୮୪୦ ମସିହାରେ ଯେତେବେଳେ ଥାୟାର୍ସଙ୍କୁ ବରଖାସ୍ତକରି ଗିଜୋଟ ( Guizot )ଙ୍କୁ ନିଯୁକ୍ତ କଲେ, ସେତେବେଳେ ଫରାସୀବାସୀଙ୍କର ଅସନ୍ତୋଷ ଅତମାତ୍ରାରେ ବୃଦ୍ଧି ପାଇଥିଲା । ଗିଜୋଟ ଏକ ପ୍ରବଳ ଜିଦଖୋର ଏବଂ ରକ୍ଷଣଶୀଳ ନୀତି ଅନୁସରଣ କରିଥିଲେ । ସେ ଇଂଲଣ୍ଡର ମନ୍ତ୍ରୀ ଓ୍ୱାଲପୋଲଙ୍କ ପରି ବ୍ୟବସ୍ଥାପକସଭା ଉପରେ କ୍ଷମତା ବଜାୟ ରଖିବା ଉଦ୍ଦେଶ୍ୟରେ ଲାଞ୍ଚ ଓ ଦୁର୍ନୀତିର ଆଶ୍ରୟ ନେଇଥିଲେ । ସାମ୍ବିଧାନିକ ପନ୍ଥା ଅବଲମ୍ବନ କରି ଲୋକମାନଙ୍କର ଆଇନ ପରିବର୍ତ୍ତନ କରିବାର କୌଣସି ଉପାୟ ନ ଥିଲା । ତେଣୁ ନିମ୍ନତର ପ୍ରକୋଷ୍ଠ ( ଚ୍ୟାମ୍ବର-ଅଫ-ଡେପୁଟିଜ୍‌ )ର ଭିତରେ ଏବଂ ବାହାରେ ଗିଜୋଟଙ୍କର ରକ୍ଷଣଶୀଳ ନୀତିର ପ୍ରବଳ ପ୍ରତିରୋଧ କରାଯାଇଥିଲା । ଫଳରେ ଦୁଇଟି ଆନ୍ଦୋଳନ ମୁଣ୍ଡ ଟେକିଥିଲା; ସେଥିମଧ୍ୟରୁ ଗୋଟିଏ ଚାହୁଁଥିଲା ରାଜନୈତିକ ପରିବର୍ତ୍ତନ ଏବଂ ଅନ୍ୟଟି ଚାହୁଁଥିଲା ସାମାଜିକ ପରିବର୍ତ୍ତନ । ନିମ୍ନତର ପ୍ରକୋଷ୍ଠରେ ଏକ ସଂସ୍କାରପନ୍ଥୀ ଦଳର ସୃଷ୍ଟି ହୋଇଥିଲା । ଏହି ଦଳ ଭୋଟଦାତାମାନଙ୍କର ସଂଖ୍ୟାବୃଦ୍ଧି ଦାବୀ କରିଥିଲା । ଐତିହାସିକ ଏବଂ ରାଜନୀତିଜ୍ଞ ଥାୟାର୍ସ ଏହି ଦଳର ନେତୃତ୍ୱ

ନେଇଥିଲେ । ଥାୟୁର୍ସ ଗ୍ରହିଥିଲେ ଯେ ତାଙ୍କର ମତ, 'ରାଜା ରାଜତ୍ୱ କରନ୍ତୁ କିନ୍ତୁ ଶାସନ କରନ୍ତୁନାହିଁ' କାର୍ଯ୍ୟରେ ପରିଣତ ହେଉ; କିନ୍ତୁ ଗିଜୋଟ ପ୍ରଚଳିତ ବ୍ୟବସ୍ଥାର ଯେକୌଣସି ପରିବର୍ତ୍ତନର ବିରୋଧୀ ଥିଲେ । ତାଙ୍କର ନିଷ୍କ୍ରିୟ ମତ ଏତେ ଦୃଢ଼ ଥିଲା ଯେ, ଲମାଟାଇନ୍ ତାର ସମାଲୋଚନାମୂଳକ ମନ୍ତବ୍ୟରେ କହିଥିଲେ, 'ମନ୍ତ୍ରୀମାନଙ୍କର ଆଉ ପ୍ରୟୋଜନ ନାହିଁ, ଏକ ସ୍ତମ୍ଭ ମଧ୍ୟ କ୍ରମାଗତ ଶାସନ ଚଳେଇ ପାରିବ ।' ଏପରି ନିଷ୍କ୍ରିୟ ମତ ଅନୁସରଣ କରାଯିବା ଫଳରେ ସଂସ୍କାରପନ୍ଥୀ ଦଳର ତତ୍ପରତା ବୃଦ୍ଧି ପାଇବାକୁ ଲାଗିଲା ।

ଅନ୍ୟ ଏକ ବିରୋଧୀ ଆନ୍ଦୋଳନ ସମାଜବାଦ ନାମକ ଏକ ନୂତନ ଭାବଧାରାରୁ ଉଦ୍‌ଗତ ହୋଇଥିଲା । ଫ୍ରାନ୍‌ସରେ ଶିଳ୍ପର କ୍ରମବିକାଶ ସାଙ୍ଗକୁ ପ୍ରଚୁର ପରିମାଣର ଉତ୍ପାଦନ ଏବଂ କଳକବ୍‌ଜାର ପ୍ରବର୍ତ୍ତନ ହେବା ଫଳରେ ଶ୍ରମିକମାନେ ଦୁଃଖ ଦୁର୍ଦ୍ଦଶା ଭୋଗିଲେ; କିନ୍ତୁ ମଧ୍ୟବିତ୍ତଶ୍ରେଣୀର ପୁଞ୍ଜିପତିମାନେ ଅତ୍ୟଧିକ ଧନ ଉପାର୍ଜନକରି ଆମୋଦ-ପ୍ରମୋଦରେ କାଳ କଟାଇଲେ । କଳକାରଖାନା ପ୍ରତିଷ୍ଠା କରାଯିବାରୁ କାରିଗରମାନେ (ହସ୍ତଶିଳ୍ପୀମାନେ) ସେମାନଙ୍କର ଜୀବିକା ହରାଇଲେ । ପୁରୁଷ, ସ୍ତ୍ରୀଲୋକ ଏବଂ ଶିଶୁମାନେ ସାମାନ୍ୟ ମଜୁରିରେ ଘଣ୍ଟା ଘଣ୍ଟା ଧରି କଳକାରଖାନାରେ କାମ କରୁଥିଲେ । ପୁଞ୍ଜିପତିମାନଙ୍କ ମଧ୍ୟରେ କଳକାରଖାନା ପ୍ରତିଷ୍ଠା ପାଇଁ ଅବାଧ ପ୍ରତିଦ୍ୱନ୍ଦ୍ୱିତାର ପ୍ରତିରୋଧ ଉଦ୍ଦେଶ୍ୟରେ ନୂତନ ପୁଞ୍ଜିବାଦ ସରକାର ନିକଟରେ ରାଜନୈତିକ ପ୍ରତିକାର ପରିବର୍ତ୍ତେ ସାମାଜିକ ଏବଂ ଅର୍ଥନୈତିକ ପ୍ରତିକାରମାନ ଦାବୀ କରାଯାଇଥିଲା । ଫଳରେ ସମାଜବାଦର ଅଭ୍ୟୁଦୟ ହେଲା । ସେଣ୍ଟ ସାଇମନଙ୍କର ଅନୁଗାମୀ ଲୁଇ ବ୍ଲାଙ୍କଙ୍କ ନେତୃତ୍ୱରେ ସମାଜବାଦୀମାନେ ଲୁଇ ଫିଲିପ୍‌ପିଙ୍କ ଉଚ୍ଚ ମଧ୍ୟବିତ୍ତ-ଶ୍ରେଣୀ ପ୍ରଭାବିତ ରାଜତନ୍ତ୍ରର ବିରୋଧ କରିଥିଲେ । ଜୁଲାଇ ରାଜତନ୍ତ୍ର 'ଧନୀମାନଙ୍କର ସରକାର, ଧନୀମାନଙ୍କ ଦ୍ୱାରା ପରିଚାଳିତ ସରକାର ଏବଂ ଧନୀମାନଙ୍କ ପାଇଁ ଉଦ୍ଦିଷ୍ଟ ସରକାର' ବୋଲି ଲୁଇ ବ୍ଲାଙ୍କ ତା ଉପରେ ଦୋଷାରୋପ କରିଥିଲେ । ତାଙ୍କର ଲେଖାଗୁଡ଼ିକ ସାଧାରଣଲୋକମାନଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଥିଲା । ତାଙ୍କର ମୂଲ୍ୟବାନ୍ ଗ୍ରନ୍ଥ 'ଶ୍ରମିକ ସଂଗଠନ' ( The Organisation of Labour )ରେ ଲୁଇ ବ୍ଲାଙ୍କ ଘରୋଇ ପୁଞ୍ଜିପତିମାନଙ୍କର ଅପସାରଣ ସଙ୍ଗେ ସଙ୍ଗେ ଅବାଧ ପ୍ରତିଯୋଗିତାର ଅପସାରଣକୁ ସମର୍ଥନ କରିଥିଲେ । ଅର୍ଥାତ୍ ସେ କଳକାରଖାନାଗୁଡ଼ିକର ଜାତୀୟକରଣ ଏବଂ ଧନିକ ଓ ମାଲିକ ଶ୍ରେଣୀର ଉଚ୍ଛେଦ ସାଧନ ଦାବୀ କରିଥିଲେ । ତା ଛଡ଼ା ସେ ଘୋଷଣା କରିଥିଲେ ଯେ ପ୍ରତ୍ୟେକ ଲୋକର କାର୍ଯ୍ୟକରିବା ଅଧିକାର ରହିଛି ଏବଂ ସରକାରର ତାହା ଯୋଗାଇ ଦେବାର ଦାୟିତ୍ୱ ରହିଛି । ଏହିସବୁ ପ୍ରସ୍ତାବ ରାଜା ଲୁଇ ଫିଲିପ୍‌ପିଙ୍କର ସମର୍ଥନ ଲାଭକରି ନ ଥିଲା କି ଶାସନ ଦାୟିତ୍ୱରେ ଥିବା ଉଚ୍ଚ ମଧ୍ୟବିତ୍ତଶ୍ରେଣୀର ସହାନୁଭୂତି ପାଇ ନ ଥିଲା । ଫଳରେ ଶ୍ରମିକମାନେ ଗୁପ୍ତ ସମିତିମାନ ଗଢ଼ିଲେ ଏବଂ ସେଗୁଡ଼ିକର

ଜଣଆରେ ସମାଜବାଦ ପ୍ରଚ୍ଚର କରାଗଲା । ୧୮୪୮ ମସିହା ଫେବୃୟାରୀ ମାସରେ ଲୁଇ ଫିଲିପଙ୍କ ଶାସନର ଅବସାନ ଘଟାଇବା ଉଦ୍ଦେଶ୍ୟରେ ଯେଉଁ ବିପ୍ଳବ ସଂଗଠିତ ହୋଇଥିଲା ସେଥିରେ ଶ୍ରମିକମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

## ଫରାସୀ-ବିପ୍ଳବ (ଫେବୃୟାରୀ ୧୮୪୮)
## The French Revolution (February 1848)

ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଯଦି ଫରାସୀ ସରକାର ଚମକପ୍ରଦ ବୈଦେଶିକ ନୀତି ଅନୁସରଣ କରି ଫରାସୀବାସୀଙ୍କ ଯଶ-ଗୌରବର ଆକାଂକ୍ଷା କରିପାରି ଥାନ୍ତେ, ତେବେ ସେମାନେ ତାହାର ଯେକୌଣସି ଦୋଷ ତ୍ରୁଟି କ୍ଷମାକରିବାକୁ କୁଣ୍ଠାବୋଧ କରିନଥାନ୍ତେ । ଲୁଇ ଫିଲିପ୍‌ଙ୍କ ଭୀରୁ ଓ କାପୁରୁଷ ବୈଦେଶିକ ନୀତି ଅବଲମ୍ବନ ଫଳରେ ଫରାସୀବାସୀଙ୍କର ଆସ୍ଥା ହରାଇଥିଲେ । ତା ଛଡ଼ା ତାଙ୍କ ଆଭ୍ୟନ୍ତରୀଣ ନୀତି କେବଳ ଧନୀ ମଧ୍ୟବିତ୍ତ ଶ୍ରେଣୀର ସ୍ୱାର୍ଥରକ୍ଷାପାଇଁ ପରିଚାଳିତ ହେଉଥିବାରୁ, ଦେଶର ଅନ୍ୟ ସବୁ ଶ୍ରେଣୀର ଲୋକେ ତାଙ୍କ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରିଥିଲେ । ଗିଜୋଟଙ୍କର ସଂସ୍କାରବିରୋଧୀ କାର୍ଯ୍ୟକ୍ରମ ବିରୁଦ୍ଧରେ ଜନସାଧାରଣ ଉତ୍ତେଜିତ ହୋଇପଡ଼ିଥିଲେ । ଫ୍ରାନ୍ସର ଉଦାରପନ୍ଥୀ ଲେଖକ ଲାମାଟାଇନ୍ ସେତେବେଳର ପରିସ୍ଥିତି ବିଷୟରେ ଯଥାର୍ଥରେ ମନ୍ତବ୍ୟ ପ୍ରକାଶ କରିଥିଲେ ଯେ 'ଫ୍ରାନ୍ସ କ୍ଲାନ୍ତ ହୋଇପଡ଼ିଲାଣି' (France is bored) । ୧୮୩୦ ମସିହା ବିପ୍ଳବରୁ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକେ ସବୁ ସୁବିଧା ଉଠାଇଥିବାର ଦେଖି ସମାଜବାଦୀମାନେ ସାଧାରଣତନ୍ତ୍ରବାଦୀମାନଙ୍କ ସହିତ ଯୋଗ ଦେଇଥିଲେ ଏବଂ ଭୋଟଦାତାମାନଙ୍କ ସଂଖ୍ୟା ବୃଦ୍ଧି ଦାବୀ କରିଥିଲେ । ସେ ଯାହାହେଉ ବିଭିନ୍ନ ଦିଗରୁ ଜୁଲାଇ ରାଜତନ୍ତ୍ରର ପ୍ରତିରୋଧ କରାଯାଇଥିଲା । ଜଣେ ସମାଲୋଚକଙ୍କ ମତରେ 'ଫ୍ରାନ୍ସ ସେହି ମୁହୂର୍ତ୍ତରେ ଆଗ୍ନେୟଗିରି ଉପରେ ଶୋଇଥିଲା ।'

ପ୍ରକୃତରେ ଭୋଟଦାନ ପ୍ରଶ୍ନନେଇ ରାଜନୈତିକ ସଙ୍କଟ ଉଦ୍ଭବ ହୋଇଥିଲା । ଥାୟାର୍ସଙ୍କଦ୍ୱାରା ପରିଚାଳିତ ସଂସ୍କାରପନ୍ଥୀ ଦଳ ନିମ୍ନତର କକ୍ଷ (ଚ୍ୟାମ୍ବର-ଅଫ-ଡେପୁଟିଜ)ରେ ପ୍ରଭାବଶାଳୀ ହୋଇଉଠିଥିଲେ ଏବଂ ନିର୍ବାଚନ ଏବଂ ସଂସଦୀୟ ସଂସ୍କାର ଦାବୀ କରିବା ସଙ୍ଗେ ସଙ୍ଗେ ସେ କକ୍ଷରୁ ଚାକିରିଆମାନଙ୍କର ବହିଷ୍କାର ମଧ୍ୟ ଦାବୀ କରିଥିଲେ । ଗିଜୋଟ କିନ୍ତୁ ଏସବୁ ଦାବୀ ପ୍ରତି ଭ୍ରୂକ୍ଷେପ କରିନଥିଲେ । ସେ ଦୃଢ଼ଭାବରେ କହିଥିଲେ ଯେ ଜନସାଧାରଣ ସଂସ୍କାର ସ୍ପୃହା କରୁନାହାନ୍ତି । ତେଣୁ ସଂସ୍କାରପନ୍ଥୀ ଦଳ ଏକ ଅଭିନବ ପନ୍ଥା ଅବଲମ୍ବନ କରି ସେମାନଙ୍କ ମତ ପ୍ରଚ୍ଚର କରିବାକୁ ଲାଗିଥିଲେ । ସେମାନେ ୧୮୪୭ ମସିହାରେ ଭୋଜିସଭାମାନ ଆୟୋଜନ କରି ସେଥିରେ ସଂସ୍କାର ସପକ୍ଷରେ ବକ୍ତୃତାର ବ୍ୟବସ୍ଥା କରିଥିଲେ । ଅଳ୍ପଦିନ ମଧ୍ୟରେ ସଂସ୍କାର ପାଇଁ ଦାବୀ ସର୍ବଜନସମ୍ମତ

ହୋଇଥିଲା । ଯେତେବେଳେ ସଂସ୍କାର ସପକ୍ଷରେ ଦାବୀ ବୃଦ୍ଧି ପାଇଲା, ସେତେବେଳେ ଫରାସୀ ସରକାର ଆତଙ୍କିତ ହୋଇପଡ଼ିଥିଲେ ଏବଂ ସମସ୍ତ ରାଜନୈତିକ ଭୋଜସଭା ଏବଂ ସଂସ୍କାର ସପକ୍ଷରେ ବିକ୍ଷୋଭ ପ୍ରଦର୍ଶନ ନିଷିଦ୍ଧ କରିଦେଇଥିଲେ । ସରକାରଙ୍କ ନିଷିଦ୍ଧ ଆଜ୍ଞା ସତ୍ତ୍ୱେ ଜନସାଧାରଣ ପ୍ୟାରିସରେ ଭୋଜିସଭାର ବ୍ୟବସ୍ଥା କରି ତା ମାଧ୍ୟମରେ ସେମାନଙ୍କର ପ୍ରଚାରକାର୍ଯ୍ୟ ଚଳାଇବାରେ ଲାଗିଲେ । କ୍ରମେ ଗିଜୋଟଙ୍କ ମନ୍ତ୍ରିମଣ୍ଡଳର ପଦତ୍ୟାଗ ଓ ସଂସ୍କାର ଆଇନପାଇଁ ଦାବୀ ଗୁରୁତର ଆକାର ଧାରଣ କରିଥିଲା । ବିକ୍ଷୁବ୍ଧ ଜନତା ନାନା ପ୍ରକାର ଗଣ୍ଡଗୋଳ ଆରମ୍ଭ କରିବାରୁ ସରକାର ଜାତୀୟ ସାମରିକ ବାହିନୀର ସାହାଯ୍ୟ ଗ୍ରହଣ କରିଥିଲେ । ଏଥିରେ ବିକ୍ଷୁବ୍ଧ ଜନତା ଭୀତ ନ ହୋଇ 'ସଂସ୍କାର ଅକ୍ଷୟ ହେଉ' 'ଗିଜୋଟଙ୍କର ପତନ ହେଉ' ଇତ୍ୟାଦି ଧ୍ୱନିମାନ ଦେଇଥିଲେ । ଏହି ଆନ୍ଦୋଳନ ଆରମ୍ଭ ହେଲାବେଳେ ସାମ୍ବିଧାନିକ ପନ୍ଥା ଅବଲମ୍ବନ କରାଯାଇଥିଲା ଏବଂ ସଂସ୍କାରବିରୋଧୀ ଅପ୍ରିୟ ମନ୍ତ୍ରୀ ଗିଜୋଟଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା । ରାଜା ଲୁଇ ଫିଲିପ୍ପି ଲୋକମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଗିଜୋଟଙ୍କୁ ପଦଚ୍ୟୁତ କରିଥିଲେ; କିନ୍ତୁ ସେଥିରେ କୌଣସି ଫଳ ହେଲାନାହିଁ; କାରଣ ଇତିମଧ୍ୟରେ ସୈନ୍ୟମାନେ ବିକ୍ଷୋଭକାରୀମାନଙ୍କ ଉପରେ ଗୁଳି ଚଳାଇବାରୁ ଲୋକମାନେ ଅତିଶୟ ଉତ୍ତ୍ୟକ୍ତ ହୋଇ ପ୍ରତିହଂସା ପାଇଁ ଚିତ୍କାର କରିଥିଲେ । ଫଳରେ ଆନ୍ଦୋଳନ ବୈପ୍ଳବିକ ରୂପ ଧାରଣ କରିଥିଲା ଏବଂ 'ବିପ୍ଳବ ଅକ୍ଷୟ ହେଉ', 'ସାଧାରଣତନ୍ତ୍ର ଅକ୍ଷୟ ହେଉ' ଧ୍ୱନିରେ ପ୍ୟାରିସ୍ ମୁଖରିତ ହେଲା । ଦଙ୍ଗା ଆରମ୍ଭ ହୋଇଗଲା, ରାଜାଙ୍କ ସୈନ୍ୟମାନଙ୍କୁ ରୋକିବା ଉଦ୍ଦେଶ୍ୟରେ ପ୍ୟାରିସ୍‌ରେ ପ୍ରତିବନ୍ଧକମାନ ସୃଷ୍ଟି କରାଯାଇ ରାସ୍ତା ସବୁ ଅବରୋଧ କରାଗଲା ଏବଂ ଘରଗୁଡ଼ିକ ଲୁଣ୍ଠନ କରାହେବା ସଙ୍ଗେ ସଙ୍ଗେ ଟ୍ୟୁଲେରିଜ୍ ରାଜପ୍ରାସାଦ ଲୋକମାନଙ୍କଦ୍ୱାରା ଘେରାଉ କରାଯାଇଥିଲା । ତେଣୁ ୧୮୪୮ ମସିହା ଫେବୃୟାରୀ ମାସରେ ପ୍ୟାରିସ ଜନତା ପ୍ରକାଶ୍ୟଭାବରେ ବିଦ୍ରୋହରେ ଲିପ୍ତ ହେଲେ । ଅବଶେଷରେ ୧୮୪୮ ମସିହା ଫେବୃୟାରୀ ୨୪ ତାରିଖ ଦିନ ଲୁଇ ଫିଲିପ୍ପି ନିଜର ଶିଶୁ ପୌତ୍ରକୁ ସିଂହାସନ ଅଧିକାର କରିବାର ସୁଯୋଗ ଦେବା ଉଦ୍ଦେଶ୍ୟରେ ସିଂହାସନ ତ୍ୟାଗକରି ପ୍ରାଣଭୟରେ ଇଂଲଣ୍ଡକୁ ପଳାଇ ଯାଇଥିଲେ ।

ସେ ଯାହାହେଉ ଲୋକମାନେ ରାଜତନ୍ତ୍ର ଆଉ ଚାଲୁରହିବା ଚାହିଁନଥିଲେ । ତେଣୁ ସେମାନେ ଲୁଇ ଫିଲିପ୍ପିଙ୍କ ଶିଶୁ ପୌତ୍ରକୁ ଫ୍ରାନ୍ସର ରାଜପଦରେ ଅଧିଷ୍ଠିତ ନ କରି ଫ୍ରାନ୍ସକୁ ଏକ ସାଧାରଣତନ୍ତ୍ର ରାଜ୍ୟ ବୋଲି ଘୋଷଣା କରିଥିଲେ । ଲମାଟାଇନଙ୍କ ନେତୃତ୍ୱରେ ଏକ ଅସ୍ଥାୟୀ ସାଧାରଣତନ୍ତ୍ର ସରକାର ଗଢ଼ାଯାଇଥିଲା । ସମାଜବାଦୀ ନେତା ଲୁଇ ବ୍ଲାଙ୍କ ଏହାର ସଭ୍ୟ ରହିଲେ । ସୁତରାଂ ବିପ୍ଳବ ବିଜୟ ଲାଭକଲା ଏବଂ ଫ୍ରାନ୍ସ ଦ୍ୱିତୀୟ ଥର ପାଇଁ ସାଧାରଣତନ୍ତ୍ର ରାଜ୍ୟରେ ପରିଣତ ହେଲା ।

## ୧୮୪୮ ମସିହା ଫରାସୀ-ବିପ୍ଳବର ପ୍ରତିଧ୍ୱନି

ଆଧୁନିକ ଇଉରୋପ ଇତିହାସରେ ୧୮୪୮ ମସିହା ଏକ ଘଟଣାବହୁଳ ବର୍ଷ । ଏହି ମସିହାର ଫରାସୀ-ବିପ୍ଳବ ଇଉରୋପରେ ବ୍ୟାପକ ବିଦ୍ରୋହ ସୃଷ୍ଟି ହେବାପାଇଁ ପ୍ରେରଣା ଦେଇଥିଲା । ମଧ୍ୟ ଏବଂ ପଶ୍ଚିମ ଇଉରୋପ ଉପରେ ଏହାର ଆଘାତ ଅତି ପ୍ରବଳ ହୋଇଥିଲା । ଭିଏନାରୁ ପ୍ୟାରିସ୍ ପର୍ଯ୍ୟନ୍ତ ଏବଂ ନେପଲ୍‌ସରୁ ବର୍ଲିନ ପର୍ଯ୍ୟନ୍ତ ଗଣବିଦ୍ରୋହ ବ୍ୟାପିଯାଇଥିଲା । ଅଷ୍ଟ୍ରିଆ ସାମ୍ରାଜ୍ୟର ମୂଳଦୁଆ ଦୋହଲିଯାଇଥିଲା । ଇଉରୋପର ମୁଖ୍ୟ କାର୍ଯ୍ୟାଳୟ ଭିଏନାରେ ତ୍ରିମୂଳ ପରିଷ୍ଟିତ ଉପୁଜି, ମେଟାରନିକ୍‌ଙ୍କୁ ଚାନସେଲର (ପ୍ରଧାନମନ୍ତ୍ରୀ) ପଦରୁ ଇସ୍ତଫା ଦେବାପାଇଁ ବାଧ୍ୟ କରାଯାଇଥିଲା । ମାଟରନିକ୍‌ଙ୍କ ପତନ ଥିଲା ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ପୁରାତନ ଶାସନ ପଦ୍ଧତି ଯେ କିପରି ନୂତନ ଯୁଗର ଜାଗ୍ରତ-ଶକ୍ତି ନିକଟରେ ପରାଜୟ ସ୍ୱୀକାର କଲା, ତାହାର ଏ ଥିଲା ସଙ୍କେତ । ଏହାର ଫଳାଫଳ ଅଚିରେ ଅନୁଭୂତ ହୋଇଥିଲା । ଏକ ସପ୍ତାହ ମଧ୍ୟରେ ହଙ୍ଗାରୀ, ଜର୍ମାନୀ ଓ ଇଟାଲୀରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେଲା ଏବଂ ପ୍ରତିକ୍ରିୟାଶୀଳ ଶକ୍ତିମାନେ ସବୁଠାରେ ପରାଜିତ ହେଲେ । ଅନ୍ତତଃ କିଛି ଦିନ ପାଇଁ ନ୍ୟାଯ୍ୟ ଅଧିକାର ଏବଂ ସ୍ୱେଚ୍ଛାଚାର ବିରୁଦ୍ଧରେ ଜାତୀୟତା ଏବଂ ଗଣତନ୍ତ୍ରର ବିଜୟ ହେଲା । ଇଂଲଣ୍ଡରେ ଚାର୍ଟିଷ୍ଟ ଆନ୍ଦୋଳନର ଦ୍ରୁତ ଅଗ୍ରଗତି ହୋଇଥିଲା । ଆୟରଲ୍ୟାଣ୍ଡର ଯୁବ ଆୟର୍‌ଲ୍ୟାଣ୍ଡ (Young Ireland) ଦଳର ତତ୍ପରତା ଫଳରେ ସେଠାରେ ସଶସ୍ତ୍ର ବିଦ୍ରୋହ ହୋଇଥିଲା ।

## ଅଷ୍ଟ୍ରୀୟ ସାମ୍ରାଜ୍ୟରେ ବିଦ୍ରୋହ

ଅଷ୍ଟ୍ରୀୟ ସାମ୍ରାଜ୍ୟ ବିଭିନ୍ନ ଜାତି ଏବଂ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ନେଇ ଗଠିତ ହୋଇଥିଲା । ଜର୍ମାନମାନେ ଅଷ୍ଟ୍ରିଆରେ, ଚେକ୍‌ସମାନେ ବୋହେମିଆରେ, ମ୍ୟାଗାୟାର-ମାନେ ହଙ୍ଗାରୀରେ, ପୋଲମାନେ ଗାଲିସିଆରେ ଏବଂ ଇଟାଲୀୟମାନେ ଲମ୍ବାର୍ଡ଼ି ଓ ଭିନିସିଆରେ ସେମାନଙ୍କର ଆସନ ସୁଦୃଢ଼ କରିଥିଲେ । ଅଷ୍ଟ୍ରିଆର ଦକ୍ଷିଣପୂର୍ବ ପଟେ ହଙ୍ଗାରୀର ପାର୍ଶ୍ୱଦେଶରେ ସ୍ଳାଭଜାତିର ଲୋକେ ବସବାସ କରୁଥିଲେ ଏବଂ ସେମାନଙ୍କ ମଧ୍ୟରେ କ୍ରୋଟମାନେ ଥିଲେ ଅତ୍ୟଧିକ ଯୁଦ୍ଧପିପାସୁ ଏବଂ ବୁଦ୍ଧିମାନ୍ । ଭୌଗୋଳିକ ଦୃଷ୍ଟିକୋଣରୁ ବିଚାରକଲେ ଜଣାପଡ଼େ ଯେ ବିଭିନ୍ନ ଜାତିର ଲୋକମାନେ କୌଣସି ସ୍ଥାନରେ ପରସ୍ପରଠାରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇନଥିଲେ । ମ୍ୟାଗାୟାର ଓ ସ୍ଳାଭମାନେ ଏକତ୍ର ହଙ୍ଗାରୀରେ ଏବଂ ଚେକ୍‌ସ ଓ ଜର୍ମାନମାନେ ଏକତ୍ର ବୋହେମିଆରେ ବାସକରୁଥିଲେ । ଅଷ୍ଟ୍ରୀୟ ସାମ୍ରାଜ୍ୟରେ ଜର୍ମାନ ଏବଂ ମ୍ୟାଗାୟାରମାନଙ୍କର ସଂଖ୍ୟା ସେଠାକାର ମିଳିତ ଲୋକସଂଖ୍ୟାଠାରୁ ଅଧିକ ନ ଥିଲେ ମଧ୍ୟ ସେମାନେ ସେଠାରେ ପ୍ରତିପତ୍ତି ବିସ୍ତାର କରିଥିଲେ । ତେଣୁ ସେଠାରେ ବାସ କରୁଥିବା ଅନ୍ୟାନ୍ୟ ଜାତିର

ଲୋକମାନଙ୍କ ମଧ୍ୟରେ ଜାତୀୟ ଚେତନା ଦେଖାଯାଇଥିଲା ଏବଂ ଅଷ୍ଟ୍ରୀୟ ସାମ୍ରାଜ୍ୟର ପ୍ରତ୍ୟେକ ଅଞ୍ଚଳର ଲୋକେ ଜାତୀୟତାବାଦରେ ଉଦ୍‌ବୁଦ୍ଧ ହୋଇ ଅଷ୍ଟ୍ରିୟା ସରକାରଙ୍କ ନିରଙ୍କୁଶ ଶାସନରୁ ମୁକ୍ତ ହେବାପାଇଁ ପ୍ରସ୍ତୁତ ହେଉଥିଲେ । ହ୍ୟାପସ୍‌ବର୍ଗ ରାଜତନ୍ତ୍ର ନାନା ଜାତିର ସାମ୍ରାଜ୍ୟର ଯୋଗସୂତ୍ର ହୋଇଥିବାରୁ ତାକୁ ଅତି ଜଟିଳ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଅଷ୍ଟ୍ରିୟାର ସରକାର ଯଦି ଅଧୀନସ୍ଥ ଜାତିଗୁଡ଼ିକୁ ଯଥେଷ୍ଟ ପରିମାଣର ସ୍ୱାୟତ୍ତଶାସନ ଅଧିକାର ଦେଇଥାନ୍ତେ, ତାହାହେଲେ ସମସ୍ୟାର ସନ୍ତୋଷଜନକ ସମାଧାନ ହୋଇ ପାରିଥାନ୍ତା; କିନ୍ତୁ ମେଟାରନିକଙ୍କଠାରୁ ଏପରି ଉଦାର ମନୋଭାବ ଆଶାକରିବା ବୃଥା । ଗୋଟିଏ ଜାତିକୁ ଅନ୍ୟ ଗୋଟିଏ ଜାତି ବିରୁଦ୍ଧରେ ମତାଇବା ଏବଂ 'ବିଭେଦ ଘଟାଇ ଶାସନକରିବା' (divide and rule) ନୀତି ଅବଲମ୍ବନ କରିବା ଫଳରେ ଅଷ୍ଟ୍ରୀୟ ସରକାର ଅଧୀନସ୍ଥ ଜାତିଗୁଡ଼ିକୁ ନିଜର ଆୟତ୍ତାଧୀନ କରିବାକୁ ସମର୍ଥ ହୋଇଥିଲେ । ଲୋକମାନଙ୍କର ଉଚ୍ଚ ଅଭିଳାଷଗୁଡ଼ିକୁ କିଛିକାଳ ପାଇଁ ପ୍ରତିରୋଧ କରାଯାଇପାରେ; କିନ୍ତୁ ସେଗୁଡ଼ିକୁ ଧ୍ୱଂସ କରାଯାଇପାରେନା । ମ୍ୟାଗାୟାରମାନେ ସେମାନଙ୍କର ଜାତୀୟ ଦାବୀ-ଗୁଡ଼ିକର ସ୍ୱୀକୃତି ପାଇଁ ଆନ୍ଦୋଳନ ଚାଲୁ ରଖିଥିଲେ ଏବଂ ଲାଟିନ୍ ଭାଷା ପରିବର୍ତ୍ତେ ନିଜର ଭାଷାକୁ ହଙ୍ଗେରୀର ସରକାରୀ ଭାଷା ରୂପେ ପ୍ରତିଷ୍ଠା କରିବାର ଅଧିକାର ପାଇଥିଲେ । ମୁଦ୍ରଣ ଯନ୍ତ୍ର ସାହାଯ୍ୟରେ କୋସୁଥ ନାମକ ଜଣେ ମ୍ୟାଗାୟାର ଆଇନଜୀବୀ ମ୍ୟାଗାୟାର ଭାଷାରେ ଏକ ସମ୍ବାଦପତ୍ର ପ୍ରକାଶ କଲେ ଏବଂ ଜନସାଧାରଣଙ୍କ ମଧ୍ୟରେ ରାଜନୈତିକ ଚେତନା ଜାଗ୍ରତ କରିବାପାଇଁ ବିଶେଷ ଉଦ୍ୟମ କରିଥିଲେ । ଏହି ସମୟରେ ଡିକ୍ ନାମକ ଅନ୍ୟ ଜଣେ ସ୍ୱଦେଶପ୍ରେମୀ ମ୍ୟାଗାୟାର ଉଦାରନୈତିକ ସଂସ୍କାର ଆଣିବା ଅଭିପ୍ରାୟରେ ଏକ ଆନ୍ଦୋଳନପାଇଁ ଆହ୍ୱାନ ଦେଇଥିଲେ । ସେହିପରି ବୋହେମିୟାରେ ଚେକ୍‌ମାନେ ସେମାନଙ୍କର ଭାଷା ଏବଂ ଇତିହାସର ଅଧ୍ୟୟନ ପୁନଃ ପ୍ରବର୍ତ୍ତନ କରିଥିଲେ । ସେମାନେ ମଧ୍ୟ ସାମ୍ରାଜ୍ୟର ଅନ୍ୟ ସ୍ଲାଭଜାତୀୟ ଲୋକମାନଙ୍କୁ ସ୍ଲାଭ ଜାତି ମଧ୍ୟରେ ଅବିଭକ୍ତ ସମ୍ପର୍କ ରହିଛି ବୋଲି ସ୍ୱୀକାର କରିବାକୁ ଆବେଦନ କରିଥିଲେ । କେନ୍ଦ୍ର ସରକାର ଲୋକମାନଙ୍କର ଦୃଷ୍ଟି ରାଜନୀତିରୁ ଫେରାଇ ଆଣିବା ଉଦ୍ଦେଶ୍ୟରେ ଜାତୀୟ ଭାଷା ପୁନରୁଦ୍ଧାର କରିବାକୁ ପ୍ରୋତ୍ସାହିତ କରିଥିଲେ । ଭାଷାତତ୍ତ୍ୱ-ସମ୍ପର୍କିତ ସମାଜଗୁଡ଼ିକ ଜାତୀୟତାବାଦ ପ୍ରଚାର ପାଇଁ ଆବରଣ ଭଳି କାର୍ଯ୍ୟ କରୁଥିଲା । କୃଷକମାନେ ଏହି ପ୍ରଚାରର ସୁଯୋଗ ନେଇ ସାମନ୍ତ ସେବା (Feudal Service) ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ।

କୃଷକ-ଅଶାନ୍ତି ଫଳରେ ଅଷ୍ଟ୍ରିୟା ସାମ୍ରାଜ୍ୟରେ ପ୍ରଥମ ପ୍ରକାଶ୍ୟ ବିଦ୍ରୋହ ୧୮୪୬ ମସିହାରେ ଗାଲିସିୟାରେ ହୋଇଥିଲା । ସେ ବିଦ୍ରୋହକୁ ଅଳ୍ପ ସମୟ ମଧ୍ୟରେ ଦମନ କରାଯାଇଥିଲା ଏବଂ ତାହାର ପରିଣାମ ସ୍ୱରୂପ ପୋଲ୍‌ମାନଙ୍କ ସ୍ୱାଧୀନତାର ଏକମାତ୍ର ନିଦର୍ଶନ ସ୍ୱାଧୀନ କ୍ରାକାଓ (Cracow) ନଗର ଅଷ୍ଟ୍ରିୟାଦ୍ୱାରା ଅଧିକୃତ ହୋଇ ଅଷ୍ଟ୍ରୀୟ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରାଗଲା । ଏ କଥା କେହି ଅସ୍ୱୀକାର କରିବେନାହିଁ ଯେ ଅଷ୍ଟ୍ରୀୟ

ସାମ୍ରାଜ୍ୟରେ ବହୁ ପରିମାଣର ଦହନଶୀଳ ସାମଗ୍ରୀ ଠୁଳ ହୋଇଥିଲା ଏବଂ ବ୍ୟାପକ ଅଗ୍ନିକାଣ୍ଡ ଘଟାଇବା ପାଇଁ ମାତ୍ର ଏକ ସ୍ଫୁଲିଙ୍ଗର ଆବଶ୍ୟକତା ଥିଲା ।

ପ୍ରତିକ୍ରିୟାଶୀଳ ମନୋବୃତ୍ତିର ଧ୍ୱଂସ ସାଧନ ପାଇଁ ୧୮୪୮ ମସିହାର ଫରାସୀ ବିପ୍ଳବ ଆବଶ୍ୟକୀୟ ସ୍ଫୁଲିଙ୍ଗ ଯୋଗାଇଥିଲା । ଏହି ବିପ୍ଳବ ସମଗ୍ର ଅଷ୍ଟ୍ରୀୟ ସାମ୍ରାଜ୍ୟରେ ବିଦ୍ରୋହର ବ୍ୟାପକ ପ୍ରସାରପାଇଁ ଥିଲା ଏକ ସଙ୍କେତ । ପ୍ରକୃତରେ ଏହି ବିପ୍ଳବ ଫଳରେ ସମଗ୍ର ଇଉରୋପରେ ଅନ୍ୟ ଚୌଦଟି ବିପ୍ଳବ ସଙ୍ଗଠିତ ହୋଇଥିଲା । ଅଷ୍ଟ୍ରୀୟ ସାମ୍ରାଜ୍ୟରେ ମିଲାନ ଓ ଭେନିସ୍, ଭିଏନା ଏବଂ ବୋହେମିୟାରେ ବିପ୍ଳବ ସୃଷ୍ଟି ହୋଇଥିଲା । ହଙ୍ଗେରୀରେ ବିପ୍ଳବ ସଙ୍ଗଠିତ ହୋଇ ଅଷ୍ଟ୍ରିୟାର କେନ୍ଦ୍ର ସରକାରପାଇଁ ଏକ ଉଦ୍‌ବେଗ-ଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଅଷ୍ଟ୍ରୀୟ ସାମ୍ରାଜ୍ୟରେ ପାଞ୍ଚଟି ପ୍ରଧାନ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ମନେହେଲା ଏହି ବହୁ ଭାଷାଭାଷୀ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯିବା ବିଧିର ବିଧାନ । ହ୍ୟାପ୍‌ସବର୍ଗ ରାଜତନ୍ତ୍ର ଯେ କି ଏକପୁରୁଷ ହେଲା ସ୍ୱେଚ୍ଛାଚାରୀ ଶାସନ ଏବଂ ବିଶେଷ ଅଧିକାରର ଆଶ୍ରୟ ଏବଂ ସୁରକ୍ଷାସ୍ଥଳୀ ଥିଲା, ତାହା ଏ ସବୁ ବିପ୍ଳବ ଯୋଗୁ ଟଳମଳ ହେବାକୁ ଲାଗିଲା ।

ରାଜଧାନୀ ଭିଏନାରେ ୧୮୪୮ ମସିହା ମାର୍ଚ୍ଚ ୧୩ ତାରିଖ ଦିନ ପ୍ରଥମେ ଗଣ-ଆନ୍ଦୋଳନର ସୂତ୍ରପାତ ହେଲା । ଏହି ଆନ୍ଦୋଳନ ଥିଲା ଆଂଶିକ ଜନପ୍ରିୟ ଏବଂ ଆଂଶିକ ବୁର୍ଜ୍ଜୋବାଦୀ ଏବଂ ଏହାର ଲକ୍ଷ୍ୟ ଥିଲା ମୁଖ୍ୟତଃ ଗଣତନ୍ତ୍ରମୂଳକ । ବିପ୍ଳବର ପ୍ରଥମ ଧକ୍କାରେ ମେଟାରନିକ୍ ଆତ୍ମରକ୍ଷା ପାଇଁ ଇଂଲଣ୍ଡକୁ ପଳାଇଯାଇଥିଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ପ୍ରତିକ୍ରିୟାଶୀଳ ଶାସନବ୍ୟବସ୍ଥାର ଅବସାନ ଘଟିଲା । ଭିଏନା କେତେଦିନ ପାଇଁ ଛାତ୍ର ଏବଂ ନାଗରିକମାନଙ୍କର ନିୟନ୍ତ୍ରଣାଧୀନରେ ରହିଥିଲା । ମେଟାରନିକ୍ ଭିଏନା ଛାଡ଼ି ଚାଲିଯିବା ପରେ ସମ୍ରାଟ ପ୍ରଥମ ଫର୍ଡିନେଣ୍ଡ ଏକ ଉଦାରନୈତିକ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସମ୍ବାଦପତ୍ରଗୁଡ଼ିକୁ ସ୍ୱାଧୀନତା ଦିଆଗଲା । 'ନ୍ୟାସନାଲ୍ ଗାର୍ଡ୍' ନାମରେ ଏକ ଜାତୀୟ ସେନାବାହିନୀ ଗଢ଼ାହେଲା ଏବଂ ବ୍ୟକ୍ତିଗତ ସ୍ୱାଧୀନତା ମଧ୍ୟ ଅର୍ପଣ କରାଗଲା । ଫର୍ଡିନେଣ୍ଡ ଅଷ୍ଟ୍ରିୟା ନିମିତ୍ତ ଏକ ନୂତନ ସମ୍ବିଧାନ ପ୍ରସ୍ତୁତର ପ୍ରତିଶ୍ରୁତି ଦେଇଥିଲେ ଏବଂ ସେହି ପ୍ରତିଶ୍ରୁତି ଅନୁସାରେ ସମଗ୍ର ଅଷ୍ଟ୍ରିୟା ସାମ୍ରାଜ୍ୟପାଇଁ ଏକ ସାମ୍ବିଧାନିକ ସଭା ଗଠନ କରାଯାଇଥିଲା । ସାମ୍ବିଧାନିକ ସଭାର ବୈଠକକୁ ଅପେକ୍ଷା ନ କରି ୧୮୪୮ ମସିହା ଅପ୍ରେଲ ୨୫ ତାରିଖ ଦିନ ମନ୍ତ୍ରିମଣ୍ଡଳ ନୂତନ ସମ୍ବିଧାନ ଘୋଷଣା କରିଥିଲେ । ଏହି ସମ୍ବିଧାନ ଅନୁସାରେ ଅଷ୍ଟ୍ରିୟା ରାଜ୍ୟର ଅବିଭାଜ୍ୟ ଏକତା ପ୍ରକାଶ କରାଯାଇଥିଲା । ହଙ୍ଗେରୀ, କ୍ରୋଟିୟା ଏବଂ ଟ୍ରାନ୍‌ସିଲ୍‌ଭାନିୟା ବ୍ୟତୀତ ହ୍ୟାପ୍‌ସବର୍ଗ ସାମ୍ରାଜ୍ୟର ସମଗ୍ର ଅଞ୍ଚଳ ଏହି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏହି ସମ୍ବିଧାନ ନିରଙ୍କୁଶ ଶାସନବ୍ୟବସ୍ଥାକୁ ଏକ ସାମ୍ବିଧାନିକ ରାଜତନ୍ତ୍ରରେ ପରିଣତ କରିଥିଲା ଏବଂ ଏହା ସାମାଜିକ ଏବଂ ଧର୍ମନୈତିକ ସ୍ୱାଧୀନତା ଉପରେ ଆଧାରିତ ଥିଲା । ଦ୍ୱିକକ୍ଷବିଶିଷ୍ଟ ଏକ ବ୍ୟବସ୍ଥାପକସଭା ଗଠନ

କରାଯାଇଥିଲା ଏବଂ 'ମନ୍ତ୍ରିମଣ୍ଡଳର ଦାୟିତ୍ୱ' ନୀତି ସ୍ୱୀକାର କରାଯାଇଥିଲା । କେତେକ ବିଷୟରେ ଉଲ୍ଲେଖଯୋଗ୍ୟ ଅଗ୍ରଗତିର ସୂଚନା ଦେଇଥିଲେ ମଧ୍ୟ ଏହି ନୂତନ ସମ୍ବିଧାନ ବ୍ୟାପକ ଅସନ୍ତୋଷ ସୃଷ୍ଟି କରିଥିଲା । ଗଣତନ୍ତ୍ରବାଦୀମାନେ ନୂତନ ସମ୍ବିଧାନକୁ ଅଭିଜାତ-ଗୋଷ୍ଠୀ ସମ୍ବନ୍ଧୀୟ ବୋଲି ଅଭିହିତ କରିଥିଲେ । ମୋଟଉପରେ ଅଷ୍ଟ୍ରିୟାବାସୀ ଏହି ସମ୍ବିଧାନକୁ ଅଗ୍ରାହ୍ୟ କରିଦେଇଥିଲେ । ସମ୍ରାଟ ଫର୍ଡିନେଣ୍ଡ ଏହି ପରିସ୍ଥିତିରେ ଭିଏନା ଛାଡ଼ି ଇନ୍ସବାର୍କ ନାମକ ସ୍ଥାନକୁ ଚାଲିଯାଇଥିଲେ । ସେ ଯାହାହେଉ ସାମ୍ବିଧାନିକ ସଭାର ବୈଠକ ବସିଲା ଏବଂ ନୂତନ ସମ୍ବିଧାନର ପ୍ରସ୍ତୁତି କାର୍ଯ୍ୟ ଚାଲିଲା । ଏହି ସଭାର ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଲା ସାର୍ଫପ୍ରଥା (ଭୂମି ଦାସତ୍ୱ)ର ଉଚ୍ଛେଦସାଧନ । ଭିଏନାରେ ନୂତନ ଗଣ୍ଡଗୋଳ ଉପୁଜିବାରୁ ଫର୍ଡିନେଣ୍ଡ ତାଙ୍କ ପୁତୁରା ଫ୍ରାନ୍‌ସିସ୍ ଯୋସେଫଙ୍କୁ ରାଜସିଂହାସନ ଅଧିକାର କରିବାପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ ଅଷ୍ଟ୍ରିୟାର ରାଜସିଂହାସନ ତ୍ୟାଗ କରିଥିଲେ ।

ଦ୍ୱିତୀୟ ଆନ୍ଦୋଳନ ମିଲାନ୍ ଓ ଭେନିସ୍‌ରେ ଉପୁଜିଥିଲା । ମିଲାନ ଓ ଭେନିସବାସୀ ଅଷ୍ଟ୍ରିୟାର ସାମ୍ରାଜ୍ୟବାଦୀ ଓ ସ୍ୱେଚ୍ଛାଚାରୀ ସରକାର ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେମାନେ ଅଷ୍ଟ୍ରୀୟ ଦୁର୍ଗରକ୍ଷକ ସେନାଦଳକୁ ବିତାଡ଼ିତ କରି, ସାର୍ଡିନିୟାର ରାଜାଙ୍କର ସାହାଯ୍ୟଭିକ୍ଷା କରିଥିଲେ । ଅବିଳମ୍ବେ ଅଷ୍ଟ୍ରିୟା ସରକାରକୁ ସାର୍ଡିନିୟା ରାଜା ଚାର୍ଲସ ଆଲବର୍ଟଙ୍କ ନେତୃତ୍ୱରେ ପରିଚାଳିତ ଇଟାଲୀୟ ସ୍ୱାଧୀନତା ସଂଗ୍ରାମର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଚାର୍ଲସ ଆଲବର୍ଟ ଅଷ୍ଟ୍ରିୟା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ନ୍ୟାପ୍‌ଲସ୍, ସିସିଲି, ଟସ୍କେନି, ଲମ୍ବାର୍ଡି ପ୍ରଭୃତି ରାଜ୍ୟମାନଙ୍କରୁ ସୈନ୍ୟମାନେ ଅଷ୍ଟ୍ରିୟା ବିରୁଦ୍ଧରେ ଏହି ଯୁଦ୍ଧରେ ଯୋଗଦାନ କରିଥିଲେ ।

ତୃତୀୟ ଆନ୍ଦୋଳନର କେନ୍ଦ୍ର ଥିଲା ବୋହେମିୟାର ରାଜଧାନୀ ପ୍ରାଗ୍ । ସେଠାରେ ସ୍ଲାଭ୍‌ଜାତିଭୁକ୍ତ ଚେକ୍‌ମାନେ ଅଷ୍ଟ୍ରିୟା ବିରୁଦ୍ଧରେ ବିଦ୍ରୋହ କଲେ । ସେମାନେ ଜର୍ମାନମାନଙ୍କ ସହିତ ସେମାନଙ୍କର ସମାନ ଅଧିକାର ଦାବୀକରିବା ସଙ୍ଗେ ସଙ୍ଗେ ସେମାନଙ୍କର ରାଜ୍ୟପାଇଁ ସ୍ୱାୟତ୍ତଶାସନ ଦାବୀ କରିଥିଲେ । ନୂତନ ସମ୍ବିଧାନର ଚିଠା ପ୍ରସ୍ତୁତ କରାଯାଇଥିଲା ଏବଂ ଅଷ୍ଟ୍ରିୟା ସମ୍ରାଟଙ୍କୁ ଚେକ୍ ସରକାରକୁ ସ୍ୱୀକୃତି ଦେବାକୁ ବାଧ୍ୟ କରାଯାଇଥିଲା । ସେଠାରେ ଜାତୀୟବାଦୀ ଏବଂ ଜର୍ମାନବିରୋଧୀ ଆନ୍ଦୋଳନ ହୋଇଥିଲା । ସେଠାକାର ଜର୍ମାନବାସୀମାନେ ବୋହେମିୟାକୁ ଏକ ସମ୍ପୂର୍ଣ୍ଣ ଜର୍ମାନ ରାଜ୍ୟରେ ସାମିଲ କରିବାପାଇଁ ଦାବୀ କରି ଆସୁଥିବାରୁ ବୋହେମିୟା ସରକାରକୁ ଅଷ୍ଟ୍ରିୟାର ସ୍ୱୀକୃତି ଫଳରେ ସେମାନେ ନିଜକୁ ବଡ଼ ଅପମାନିତ ମନେକରିଥିଲେ । ତେଣୁ ଜର୍ମାନମାନଙ୍କୁ ସନ୍ତୁଷ୍ଟକରିବା ଉଦ୍ଦେଶ୍ୟରେ ବୋହେମିୟାରେ ଯେକୌଣସି ଯୋଜନା ପ୍ରସ୍ତୁତ କରାଯିବ, ସେମାନେ ତାର ପ୍ରବଳ ପ୍ରତିରୋଧ କରିବେ ବୋଲି ପ୍ରକାଶ କରିଥିଲେ ।

ଚତୁର୍ଥ ଆନ୍ଦୋଳନର ମୁଖ୍ୟ କାର୍ଯ୍ୟାଳୟ ଥିଲା ହଙ୍ଗେରୀର ରାଜଧାନୀ ବୁଦାପେଷ୍ଟ । ସ୍ଥାନୀୟ ସ୍ୱାୟତ୍ତଶାସନ ଏବଂ ସାମ୍ବିଧାନିକ ସରକାର ପ୍ରତିଷ୍ଠା ମ୍ୟାଗାୟାର ଆନ୍ଦୋଳନର

ପ୍ରଧାନ ଲକ୍ଷ୍ୟ ଥିଲା । ଭିଏନା-ବିଦ୍ରୋହ ଏବଂ ମେଟାରନିକଙ୍କ ପତନ ସମ୍ବାଦ ହଙ୍ଗେରୀରେ ପହଞ୍ଚିଲା ମାତ୍ରେ ମ୍ୟାଗ୍ୟାରମାନେ ବୁଦାପେଷ୍ଟଠାରେ ଅଷ୍ଟ୍ରିୟାର ପ୍ରତିକ୍ରିୟାଶୀଳ ଶାସନ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଦେଲେ । କୋସୁଥଙ୍କ ନେତୃତ୍ୱରେ ପରିଚାଳିତ ହୋଇ ମ୍ୟାଗ୍ୟାରମାନେ ଅଷ୍ଟ୍ରିୟା ସାମ୍ରାଜ୍ୟରେ ଜର୍ମାନମାନଙ୍କ ପ୍ରାଧାନ୍ୟର ପ୍ରତିରୋଧ କରିଥିଲେ । ସେମାନେ ହଙ୍ଗେରୀକୁ ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଜ୍ୟ ରୂପେ ପ୍ରତିଷ୍ଠା କରିବାକୁ ଏବଂ ହ୍ୟାପସ୍‌ବର୍ଗ ସାମ୍ରାଜ୍ୟ ସହିତ କେବଳ ବ୍ୟକ୍ତିଗତ ବନ୍ଧନରେ ଆବଦ୍ଧହେବାକୁ ଚାହିଁଥିଲେ । ଆବଶ୍ୟକତା ଦୃଷ୍ଟିରୁ ଅଷ୍ଟ୍ରିୟାର ସମ୍ରାଟ ସେମାନଙ୍କର ଦାବି ଗ୍ରହଣ କରିଥିଲେ । ତା'ପରେ ମ୍ୟାଗ୍ୟାରମାନେ ସେମାନଙ୍କ ଡାଏଟ ବା ପାର୍ଲାମେଣ୍ଟରେ ପ୍ରସିଦ୍ଧ 'ମାର୍ଚ୍ଚ ଆଇନ' ଗୃହୀତ କରାଇନେଲେ । ଏହି ମାର୍ଚ୍ଚ ଆଇନ ଅନୁସାରେ ସାମନ୍ତ ପ୍ରଥାର ଉଚ୍ଛେଦ କରାଗଲା ଏବଂ ସମ୍ଭ୍ରାନ୍ତ ଶ୍ରେଣୀର ବିଶେଷ ଅଧିକାରଗୁଡ଼ିକ ଲୋପ କରିଦିଆଗଲା । ତା'ଛଡ଼ା 'ଜୁରୀଦ୍ୱାରା ବିଚାର' ବ୍ୟବସ୍ଥା, ଧର୍ମସମ୍ବନ୍ଧୀୟ ସ୍ୱାତନ୍ତ୍ର୍ୟ ଏବଂ ସମ୍ବାଦପତ୍ରର ସ୍ୱାଧୀନତା ପ୍ରବର୍ତ୍ତିତ କରାଯାଇଥିଲା । ପାର୍ଲାମେଣ୍ଟ ବର୍ଷରେ ଅନ୍ତତଃ ଥରେ ଆହୂତ ହେବାର ନୀତି ଗୃହୀତ ହେଲା । ଅଷ୍ଟ୍ରିୟାର ସମ୍ରାଟଙ୍କୁ ହଙ୍ଗେରୀର ରାଜା ବୋଲି ସ୍ୱୀକାର କରାଗଲେ ମଧ୍ୟ ହଙ୍ଗେରୀବାସୀ ପୃଥକ୍ ଜାତୀୟ ପତାକା ଗ୍ରହଣ କରିଥିଲେ । ହଙ୍ଗେରୀର ଆନ୍ଦୋଳନ ଉଗ୍ର ଜାତୀୟତାବାଦ ଉପରେ ପ୍ରତିଷ୍ଠିତ ହୋଇଥିଲା ଏବଂ ମ୍ୟାଗ୍ୟାରମାନେ ଏହି ଆନ୍ଦୋଳନରୁ ସବୁ ଫାଏଦା ଉଠାଇବାକୁ ଚାହିଁଥିଲେ । ସେମାନେ ହଙ୍ଗେରୀର ସୀମାମଧ୍ୟରେ ଥିବା କ୍ରୋଟ, ସାର୍ବ ପ୍ରଭୃତି ଜାତିମାନଙ୍କର ଜାତୀୟ ଅଧିକାରକୁ ଉପେକ୍ଷାକରି କେବଳ ନିଜର ଜାତୀୟ ଅଧିକାର ଦୃଢ଼ଭାବରେ ଦାବୀ କରିଥିଲେ । ତେଣୁ କ୍ରୋଟମାନେ ହଙ୍ଗେରୀରେ ମ୍ୟାଗ୍ୟାରମାନଙ୍କ ପ୍ରାଧାନ୍ୟ ବିରୁଦ୍ଧରେ ପ୍ରତିବାଦ କରିଥିଲେ । କୋସୁଥ୍ ସେମାନଙ୍କ ସହିତ ଆପୋଷ ମୀମାଂସା କରିବାକୁ ରାଜି ନ ହେବାରୁ ସେମାନେ ସେମାନଙ୍କର ରାଜ୍ୟପାଳ ଜାଲସିକ (Jallacic)ଙ୍କ ନେତୃତ୍ୱରେ ମ୍ୟାଗ୍ୟାରମାନଙ୍କ ପ୍ରାଧାନ୍ୟର ତୀବ୍ର ପ୍ରତିରୋଧ କରିଥିଲେ ଏବଂ ସେମାନଙ୍କଦ୍ୱାରା ପରିଚାଳିତ ହଙ୍ଗେରୀ ସରକାରର ବଶତା ସ୍ୱୀକାର କରିବାକୁ ମନାକରିଦେଲେ ।

ଏହା ଫଳରେ ଅଷ୍ଟ୍ରିୟା ସାମ୍ରାଜ୍ୟରେ ପଞ୍ଚମ ଆନ୍ଦୋଳନର ସୂତ୍ରପାତ ହେଲା । ଏ ଆନ୍ଦୋଳନ ଅଷ୍ଟ୍ରିୟା ବିରୋଧୀ ନ ହୋଇ ହଙ୍ଗେରୀ ବିରୁଦ୍ଧରେ ପରିଚାଳିତ ହୋଇଥିଲା । ଏହି ଆନ୍ଦୋଳନର କେନ୍ଦ୍ର ଥିଲା ଇଲିରିଆର ଆଗ୍ରାମ ସହର । ଅବିଳମ୍ବେ ମ୍ୟାଗ୍ୟାର ଏବଂ କ୍ରୋଟମାନେ ଅନ୍ତର୍ଦ୍ୱନ୍ଦ୍ୱରେ ବ୍ୟାପୃତ ହୋଇଥିଲେ । ଏହା ଉଭୟଙ୍କ ସ୍ୱାର୍ଥପ୍ରତି ବିପଜ୍ଜନକ ହୋଇଥିଲା । ଏହିପରିଭାବରେ ଅଷ୍ଟ୍ରିୟା ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଦ୍ରୋହାଗ୍ନି ଜଳିଉଠିଲା । ପ୍ରଥମେ ଏହିସବୁ ସଶସ୍ତ୍ର ଆନ୍ଦୋଳନ ସାମୟିକ ସଫଳତା ହାସଲକଲେ ମଧ୍ୟ ତୁରନ୍ତ ତାହା ବିପଦର ସମ୍ମୁଖୀନ ହୋଇଥିଲା । ଅଷ୍ଟ୍ରୀୟ ସରକାର ବିଭିନ୍ନ ଅଞ୍ଚଳରେ ଗୋଟିଏ ଜାତିର ଅନ୍ୟ ଗୋଟିଏ ଜାତି ସହିତ କଳହର ସୁଯୋଗ ନେଇ ପ୍ରଥମେ ବୋହେମିଆର ବିଦ୍ରୋହ ଏବଂ ତା'ପରେ ଇଟାଲୀର ବିଦ୍ରୋହ ଦମନ କରିଥିଲେ । ଏହି ଦୁଇ

ବିଦ୍ରୋହ ଦମନ କଲା ଉତ୍ତାରୁ ଅଷ୍ଟ୍ରିୟା ପ୍ରଥମେ ଚେକ୍ମାନଙ୍କର ନେତା ଏବଂ ସେନାପତି ଜାଲସିକଙ୍କର ହଙ୍ଗେରୀ ଆକ୍ରମଣକୁ ସମର୍ଥନ କରିଥିଲା ଏବଂ ପରେ ସେ ନିଜେ ହଙ୍ଗେରୀ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ହଙ୍ଗେରୀ ଫର୍ଡିନେଣ୍ଡଙ୍କ ରାଜସିଂହାସନ ତ୍ୟାଗ ସ୍ୱୀକାର କରିନଥିଲା; କାରଣ ତାଙ୍କର ଉତ୍ତରାଧିକାରୀ ଫ୍ରାନସିସ୍ ଯୋସେଫ ହଙ୍ଗେରୀ ବିରୁଦ୍ଧରେ ରାଜତ୍ୱର ଆରମ୍ଭରୁ ପ୍ରତିକ୍ରିୟାଶୀଳ ମନୋଭାବ ଦେଖାଇଥିଲେ । ସୁତରାଂ ଅଷ୍ଟ୍ରୀୟ ସରକାର ଏହାକୁ ଅପମାନଜନକ ମନେକରି ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ହଙ୍ଗେରୀର ସ୍ୱାତନ୍ତ୍ର୍ୟ ନାକଚ କରିଦେଇଥିଲେ । ତାହାର ଉତ୍ତରରେ କୋସୁଥ୍ଙ୍କ ନେତୃତ୍ୱରେ ପରିଚାଳିତ ହୋଇ ମ୍ୟାଗାୟାରମାନେ ହଙ୍ଗେରୀର ସ୍ୱାଧୀନତା ଘୋଷଣାକଲେ । ତା ସଙ୍ଗେ ସଙ୍ଗେ ହଙ୍ଗେରୀକୁ ଏକ ସାଧାରଣତନ୍ତ୍ର ରାଜ୍ୟରେ ପରିଣତ କଲେ । ଫଳରେ ହଙ୍ଗେରୀ ଏବଂ ଅଷ୍ଟ୍ରିୟା ମଧ୍ୟରେ ଯୁଦ୍ଧ ଲାଗିଗଲା । ପ୍ରଥମେ ହଙ୍ଗେରୀବାସୀ ବୀରତ୍ୱର ସହିତ ଯୁଦ୍ଧକରି ଅଷ୍ଟ୍ରୀୟ ସୈନ୍ୟବାହିନୀର ପ୍ରବଳ ପ୍ରତିରୋଧ କରିଥିଲେ । ଏହି ଯୁଦ୍ଧ ହଙ୍ଗେରୀ ସପକ୍ଷରେ ଗତିକରୁଥିବାର ଦେଖି ରୁଷିଆର ଜାର୍ ପ୍ରଥମ ନିକୋଲାସ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଥିଲେ । ତାଙ୍କର ଭୟହେଲା ଯେ ମ୍ୟାଗାୟାରମାନଙ୍କର ବିଜୟ ହେଲେ ଅଧୀନରେ ଥିବା ଅସନ୍ତୁଷ୍ଟ ପୋଲ୍ମାନେ ସ୍ୱାଧୀନତା ଲାଭପାଇଁ ସେଥିରୁ ପ୍ରେରଣା ପାଇବେ । ତେଣୁ ଅଷ୍ଟ୍ରୀୟ ସମ୍ରାଟ ଯେତେବେଳେ ମ୍ୟାଗାୟାରମାନଙ୍କୁ ଦମନକରିବାପାଇଁ ତାଙ୍କ ସାହାଯ୍ୟ ଲୋଡ଼ିଲେ, ସେତେବେଳେ ସେ ଅକୁଣ୍ଠିତଚିତ୍ତରେ ତାହା ଦେବାକୁ ରାଜିହେଲେ ଏବଂ ଏକ ବିଶାଳ ସୈନ୍ୟବାହିନୀ ହଙ୍ଗେରୀକୁ ପଠାଇ ସେଠାକାର ବିଦ୍ରୋହ ଦମନକରିବା ସଙ୍ଗେ ସଙ୍ଗେ ହଙ୍ଗେରୀ ସାଧାରଣତନ୍ତ୍ରର ମଧ୍ୟ ଉଚ୍ଛେଦ ସାଧନ କରିଥିଲେ । ଏହିପରି ଭାବରେ ଅଷ୍ଟ୍ରୀୟ ସାମ୍ରାଜ୍ୟରେ ଉପୁଜିଥିବା ବିଦ୍ରୋହଗୁଡ଼ିକ ଦମନ କରି ଅଷ୍ଟ୍ରୀୟ ସରକାର ଅଷ୍ଟ୍ରୀୟ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିଥିଲେ ।

## ଜର୍ମାନୀରେ ଫରାସୀ-ବିପ୍ଳବର ପ୍ରଭାବ

କହିବା ବାହୁଲ୍ୟ ଯେ ଫ୍ରାନସର ଫେବୃୟାରୀ ବିପ୍ଳବ ଜର୍ମାନୀକୁ ମଧ୍ୟ ପ୍ରଭାବିତ କରିଥିଲା । ଜର୍ମାନୀରେ ବ୍ୟାପକ ବିଦ୍ରୋହ ହୋଇଥିଲା ଏବଂ ବର୍ଲିନରେ ଭୟାନକ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ପ୍ରୁସିଆର ରାଜା ଫ୍ରେଡ଼ରିକ୍ ଉଇଲିୟମ ନିଜ ରାଜ୍ୟରେ ଗଣତାନ୍ତ୍ରିକ ଶାସନବ୍ୟବସ୍ଥା ପ୍ରତିଷ୍ଠା କରିବାକୁ ବାଧ୍ୟହୋଇଥିଲେ । ଜର୍ମାନୀର ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକରେ ଶାସନକର୍ତ୍ତାମାନେ ସେମାନଙ୍କର ପତନୋନ୍ମୁଖୀ ରାଜସିଂହାସନକୁ ରକ୍ଷାକରିବା ଉଦ୍ଦେଶ୍ୟରେ ସେମାନଙ୍କର ପ୍ରଜାମାନଙ୍କୁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ମଞ୍ଜୁର କରିଥିଲେ । ଏହାଛଡ଼ା ଜର୍ମାନୀରେ ଜାତୀୟତାବାଦୀ ଆନ୍ଦୋଳନ ଫଳରେ ସମଗ୍ର ଜର୍ମାନୀପାଇଁ ଏକ ପାର୍ଲିଆମେଣ୍ଟ (ଜାତୀୟ ସଭା) ଫ୍ରାଙ୍କଫୋର୍ଟଠାରେ ବସିଥିଲା ଏବଂ ଜର୍ମାନୀକୁ ଏକ ଉଦାରନୈତିକ ସଂଯୁକ୍ତ ରାଷ୍ଟ୍ରରୂପେ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରିଥିଲା ।

# ଉପସଂହାର

୧୮୪୮ ବିପ୍ଳବର ମୋଟାମୋଟି ଫଳାଫଳ ବିଷୟରେ ବିଚାରକଲେ ସ୍ପଷ୍ଟ ଜଣାଯାଏ ଯେ ଏହା ବେଶି କିଛି ସଫଳତା ହାସଲ କରିପାରି ନ ଥିଲା । ଅବଶ୍ୟ ଜର୍ମାନୀର ବହୁ ଶାସନକର୍ତ୍ତା ବିଶେଷତଃ ପ୍ରୁସିଆର ରାଜା ଏବଂ ଇଟାଲୀର ମଧ୍ୟ ବହୁ ଶାସନକର୍ତ୍ତା ବିପ୍ଳବଯୋଗୁ ଆତଙ୍କିତ ହୋଇପଡ଼ିଥିଲେ ଏବଂ ନିଜ ନିଜ ରାଜ୍ୟରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିଥିଲେ । ସେ ଯାହାହେଉ, ଅଷ୍ଟ୍ରିଆ ଓ ହଙ୍ଗେରୀରେ ପ୍ରତିକ୍ରିୟାଶୀଳମାନଙ୍କର ବିଜୟ ଏବଂ ଇଟାଲୀରେ ବିପ୍ଳବୀମାନଙ୍କର ପରାଜୟ ଫଳରେ ପ୍ରୁସିଆ ଏବଂ ଜର୍ମାନୀର ଅନ୍ୟାନ୍ୟ ଶାସନକର୍ତ୍ତାମାନଙ୍କର ଭୟ ଦୂର ହୋଇଥିଲା । ସେମାନେ କ୍ରମେ ସେମାନଙ୍କଦ୍ୱାରା ପ୍ରଦତ୍ତ ଗଣତାନ୍ତ୍ରିକ ଶାସନବ୍ୟବସ୍ଥା ନାକଚ କରିଦେଇଥିଲେ । ତେଣୁ ୧୮୪୮ ମସିହା ବିପ୍ଳବର ଫଳାଫଳ ଦୀର୍ଘକାଳସ୍ଥାୟୀ ହୋଇପାରିନଥିଲା । ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟ ଉଦାରନୈତିକ ପନ୍ଥା ଅବଲମ୍ବନକରି ମଧ୍ୟ ଜର୍ମାନୀକୁ ଏକତ୍ରୀକରଣ କରିବା ଦିଗରେ ବିଫଳ ହୋଇଥିଲା; କିନ୍ତୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଇଟାଲୀ ଏବଂ ଜର୍ମାନୀରେ ଏହି ବିପ୍ଳବ ଜାତୀୟତାବାଦ ଏବଂ ଜାତୀୟ ଐକ୍ୟପାଇଁ ପ୍ରେରଣାର ଉତ୍ସ ହୋଇଥିଲା ।

---

# ଏକାଦଶ ଅଧ୍ୟାୟ

## ପ୍ରିନ୍ସ ମେଟାରନିକ୍ଙ୍କ ଜୀବନୀ ଓ କାର୍ଯ୍ୟକଳାପ

## ( The Career and Achievements of Prince Metternich )

କୂଟନୀତିବିଶାରଦ ମେଟାରନିକ୍ ୧୮୦୯ ମସିହାରୁ ପ୍ରାୟ ଚାଳିଶ ବର୍ଷ ଯାଏଁ ଅଷ୍ଟ୍ରିୟାର ଚାନ୍ସେଲର ହିସାବରେ ତାହାର ଉଭୟ ଆଭ୍ୟନ୍ତରୀଣ ନୀତି ଏବଂ ବୈଦେଶିକ ନୀତି ପରିଚାଳନା କରିଥିଲେ । ନେପୋଲିୟନଙ୍କ ସହିତ ଯୁଦ୍ଧର ଶେଷ ପର୍ଯ୍ୟାୟରେ ସେ ଅଷ୍ଟ୍ରିୟାର ନୀତିକୁ ଏପରି ଦକ୍ଷତାର ସହିତ ପରିଚାଳନା କରିଥିଲେ ଯେ ତାହା ଫଳରେ ନେପୋଲିୟନଙ୍କ ପରାଜୟର ପଥ ପରିଷ୍କାର ହୋଇଯାଇଥିଲା । ତାଙ୍କର ଏହି ସାଫଲ୍ୟ ପାଇଁ ସେ ନିଜକୁ 'ନେପୋଲିୟନ-ବିଜେତା' ବୋଲି ସଗର୍ବେ ଘୋଷଣା କରିଥିଲେ । ସେ ନେପୋଲିୟନଙ୍କୁ ଯେତିକି ଘୃଣା କରୁଥିଲେ, ରୁଷିଆର କ୍ଷମତା ବୃଦ୍ଧିକୁ ମଧ୍ୟ ସେତିକି ଭୟ କରୁଥିଲେ । ଉଭୟ ନେପୋଲିୟନ୍ ଓ ପ୍ରଥମ ଜାର୍ ଆଲେକ୍‌ଜାଣ୍ଡାରଙ୍କ ଶକ୍ତି ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ସେ ୧୮୧୦ ମସିହାରୁ ୧୮୧୩ ମସିହା ପର୍ଯ୍ୟନ୍ତ ଜଣଙ୍କୁ ଅନ୍ୟଜଣଙ୍କ ବିରୁଦ୍ଧରେ ମତାଇବା ନୀତି ଅବଲମ୍ବନ କରିଥିଲେ । ତାଙ୍କର ସୁଚିନ୍ତିତ ଯୋଜନାଗୁଡ଼ିକ ଏପରି ଫଳପ୍ରଦ ହୋଇଥିଲା ଯେ ଲିପ୍‌ଜିଗ୍ ଯୁଦ୍ଧରେ ଏବଂ ତାର ପରବର୍ତ୍ତୀ ଅଭିଯାନରେ ଅଷ୍ଟ୍ରିୟାର ହସ୍ତକ୍ଷେପ ଏକ ନିଷ୍ପତ୍ତିମୂଳକ ଘଟଣା ବୋଲି ପ୍ରମାଣିତ ହୋଇଥିଲା । ଅଷ୍ଟ୍ରିୟାର ନିଷ୍ପତ୍ତିମୂଳକ ଭୂମିକା ଗ୍ରହଣ ଓ ମେଟାରନିକ୍‌ଙ୍କର ଅସାଧାରଣ ବ୍ୟକ୍ତିତ୍ୱର ସ୍ୱୀକୃତି ସ୍ୱରୂପ ରାଜଧାନୀ ଭିଏନାରେ ଆନ୍ତର୍ଜାତିକ କଂଗ୍ରେସ ବସି ଇଉରୋପର ମାନଚିତ୍ର ପୁନର୍ଗଠନ କରିବାପାଇଁ ସ୍ଥିରକରାଗଲା ।

ଭିଏନା କଂଗ୍ରେସର ପଥପ୍ରଦର୍ଶକ ଓ ନିୟାମକ ଥିଲେ ମେଟାରନିକ୍ । ତାଙ୍କର ଜଟିଳ ପ୍ରଶ୍ନଗୁଡ଼ିକ ସହଜରେ ଏବଂ ଦକ୍ଷତାର ସହିତ ସମାଧାନ କରିବାର ସାମର୍ଥ୍ୟ ଏବଂ କୂଟନୀତିକ ଅନୁଭୂତି ଯୋଗୁ ଭିଏନା କଂଗ୍ରେସରେ ସେ ପ୍ରଭୁତ୍ୱ ବିସ୍ତାର କରିପାରିଥିଲେ । ସେ ପରବର୍ତ୍ତୀ ତୋଡ଼ିଏ ବର୍ଷକାଳ ଇଉରୋପୀୟ କୂଟନୀତିକ୍ଷେତ୍ରରେ ଥିଲେ ପ୍ରଧାନ ଶକ୍ତି । ତାଙ୍କର ଅଙ୍ଗୁଳି ନିର୍ଦ୍ଦେଶରେ ଇଉରୋପୀୟ ରାଜନୀତି ୧୮୧୫ ମସିହାରୁ ୧୮୩୦ ମସିହା ପର୍ଯ୍ୟନ୍ତ ପରିଚାଳିତ ହୋଇଥିଲା । ଇଉରୋପୀୟ ଶକ୍ତି-ସଂଗଠନ ତାଙ୍କର ନେତୃତ୍ୱରେ ପୁଲିସ୍ ବାହିନୀରେ ପରିଣତ ହୋଇଥିଲା ଏବଂ ସେ ସମସ୍ତ ପ୍ରଗତିଶୀଳ ଓ ଉଦାରନୈତିକ ଆନ୍ଦୋଳନକୁ ଦୃଢ଼ହସ୍ତରେ ଦମନ କରିଥିଲେ । ମେଟାରନିକ୍‌ଙ୍କ ନୀତି ଥିଲା ଇଉରୋପର ଶାନ୍ତି ଏବଂ ସ୍ଥିତାବସ୍ଥା ରକ୍ଷାକରିବା ପାଇଁ ଭିଏନା

ରାଜନାମାକୁ ବଜାୟ ରଖିବା । ସେ ବିଶ୍ୱାସ କରୁଥିଲେ ଯେ ଗଣତନ୍ତ୍ରବାଦ ଓ ଜାତୀୟତାବାଦର ଦୃଢ଼ ପ୍ରତିରୋଧ କରାଗଲେ ଇଉରୋପରେ ଶାନ୍ତି ପ୍ରତିଷ୍ଠା ହୋଇ-ପାରିବ । ତାଙ୍କ ବ୍ୟକ୍ତିତ୍ୱର ଏପରି ଏକ ଆକର୍ଷଣକାରୀ ଶକ୍ତି ଥିଲା ଯେ ତଦ୍ୱାରା ଜାର୍ ଆଲେକ୍‌ଜାଣ୍ଡାର୍ ନିଜର ଉଦାରନୈତିକ ଦୃଷ୍ଟିକୋଣ ପରିତ୍ୟାଗକରି ମେଟାରନିକ୍‌ଙ୍କ



ପ୍ରିନ୍‌ସ ମ୍ୟାଟରନିକ୍ ( ୧୭୭୩—୧୮୫୯ )

ପ୍ରତିକ୍ରିୟାଶୀଳ ନୀତିର ସମର୍ଥକ ହୋଇଥିଲେ । ପ୍ରୁସିୟାର ରାଜା ମଧ୍ୟ ମେଟାରନିକ୍‌ଙ୍କ ଇଙ୍ଗିତରେ ତାଙ୍କ ବୈଦେଶିକ ନୀତି ପରିଚାଳନା କରିବାକୁ ରାଜି ହୋଇଥିଲେ । ତାଙ୍କର ଚତୁର ପରିଚାଳନାରେ 'ପବିତ୍ରମେଣ୍ଟ' ଏବଂ ଇଉରୋପୀୟ 'ଶକ୍ତି-ସଂଗଠନ' ସମସ୍ତ ପ୍ରଗତିଶୀଳ ଆନ୍ଦୋଳନକୁ ଦମନକରିବା ଲକ୍ଷ୍ୟରେ ଉନ୍ନୋତି ପୂର୍ବ ଇଉରୋପୀୟ ରାଷ୍ଟ୍ରଙ୍କୁ ନେଇ ଏକ ସଂକୀର୍ଣ୍ଣ ଗୋଷ୍ଠୀରେ ପରିଣତ ହୋଇଥିଲା । ଏଣିକି ଶାନ୍ତିରକ୍ଷା କହିଲେ ବୁଝାଗଲା ନିରଙ୍କୁଶ ଶାସନର ସୁରକ୍ଷା । ଲକ୍ଷ୍ୟ ହାସଲକରିବା

ଉଦ୍ଦେଶ୍ୟରେ ମେଟାରନିକ୍ କେନ୍ଦ୍ର ଇଉରୋପ ଉପରେ ନିଜର ଏକଚ୍ଛତ୍ରବାଦ ଶାସନନୀତି ଲାଦିଦେଇଥିଲେ ଏବଂ ଇଉରୋପୀୟ ରାଜନୀତିକୁ ଅଷ୍ଟ୍ରିୟାଦ୍ୱାରା ପରିଚାଳିତ କରାଇଥିଲେ । ମେଟାରନିକ୍‌ଙ୍କ ଦମନନୀତି ଯେ ୧୮୩୦ ମସିହା ଜୁଲାଇ ବିପ୍ଳବ ପର୍ଯ୍ୟନ୍ତ ସଫଳ ହୋଇଥିଲା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ପରବର୍ତ୍ତୀ ଅଠରବର୍ଷ ମଧ୍ୟରେ ତାଙ୍କର ଏ ଦମନନୀତିର ଉଚ୍ଛେଦ ସାଧନ କରାଯାଇଥିଲା । ୧୮୪୮ ମସିହା ଫରାସୀ ବିପ୍ଳବରେ ଦମନ-ନୀତି ବିରୁଦ୍ଧରେ ଉଦାରନୀତିର ବିଜୟହାସଲ ଏକ ଯୁଗାନ୍ତକାରୀ ଘଟଣା । ଉକ୍ତ ବିପ୍ଳବ ସଙ୍ଗେ ସଙ୍ଗେ ମେଟାରନିକ୍‌ଙ୍କର ପତନ ଓ ତାଙ୍କ ଦମନନୀତିର ଅବସାନ ଘଟିଲା ।

ମେଟାରନିକ୍ ୧୮୧୫ରୁ ୧୮୪୮ ମଧ୍ୟରେ କେବଳ ଅଷ୍ଟ୍ରିୟା ଓ ଜର୍ମାନ ରାଜନୀତି-କ୍ଷେତ୍ରରେ ପ୍ରଭୁତ୍ୱ ବିସ୍ତାରକରିଥିଲେ; ତେଣୁ ଏହି କାଳ-ବିଭାଗକୁ 'ମେଟାରନିକ୍‌ଙ୍କ ଯୁଗ' (Era of Metternich) ବୋଲି ଅଭିହିତ କରାଯାଇଥାଏ । ଅଷ୍ଟ୍ରିୟା, ଜର୍ମାନୀ ଏବଂ ଇଉରୋପରେ ତାଙ୍କର ନୀତିକୁ ସଂକ୍ଷେପରେ 'ମେଟାରନିକ୍ ବ୍ୟବସ୍ଥା' (System of Metternich) ବୋଲି ପ୍ରକାଶ କରାଯାଏ । ନିଃସନ୍ଦେହରେ କୁହାଯାଇପାରେ ଯେ, ଏହି ସମସ୍ତ ମଧ୍ୟରେ ସେ ସାଧାରଣତଃ ଯାହା ଚାହିଁଥିଲେ ତାହା ପାଇଥିଲେ, ଯଦିଓ କେତେକ ସ୍ଥଳରେ ତାଙ୍କ ବ୍ୟବସ୍ଥା ଲଙ୍ଘନ ହେବାର ଦେଖାଯାଇଥିଲା । ସେ ଇଉରୋପରେ ପ୍ରତିକ୍ରିୟାଶୀଳ ନୀତିର ପ୍ରତୀକ ଥିଲେ । ତାଙ୍କ ମତରେ ଗଣତନ୍ତ୍ରବାଦ ବିଶୃଙ୍ଖଳା ସୃଷ୍ଟି-କରିବା ପାଇଁ ଅଭିପ୍ରେତ ଥିଲା । ସେ ମଧ୍ୟ କହୁଥିଲେ ଯେ 'ଦିବାଲୋକକୁ ଘନ ଅନ୍ଧକାର ରାତ୍ରିରେ ପରିଣତ କରିବାରେ' ଗଣତନ୍ତ୍ର କେବେ ବିଫଳ ହେବନାହିଁ । ତେଣୁ ମେଟାରନିକ୍‌ଙ୍କ ମତରେ ଲୋକମାନଙ୍କର ଦାବୀ ପ୍ରତି ସହାନୁଭୂତିଶୀଳ ହୋଇ କୌଣସି ଅନୁଗ୍ରହ ଦେଖାଇଲେ ତାହାର ପରିଣତି ହେବ ବିଶୃଙ୍ଖଳା ଓ ରକ୍ତପାତ । ତାଙ୍କର ପ୍ରଭାବ ଫଳରେ ଭିଏନା କଂଗ୍ରେସରେ 'ନ୍ୟାଯ୍ୟ ଅଧିକାର ନୀତି' ଗ୍ରହଣ କରାଯାଇଥିଲା । ସେଠାରେ ତାଙ୍କ କୂଟନୀତିର ପୁରସ୍କାର ସ୍ୱରୂପ ଲମ୍ବାର୍ଡ଼ି, ଭିନିସିଆ ଓ ଡାଲମେସିଆ ଅଷ୍ଟ୍ରିୟା ସାମ୍ରାଜ୍ୟରେ ସାମିଲ ହୋଇଥିଲା । ସେ ଜର୍ମାନୀକୁ ରାଷ୍ଟ୍ରସଂଘର ପାର୍ଲାମେଣ୍ଟ (Federal Diet) ସାହାଯ୍ୟରେ ଏବଂ ଇଟାଲୀକୁ ସନ୍ଧିର ସାହାଯ୍ୟରେ ଆୟତ୍ତାଧୀନ କରି ଉଭୟ ଅଞ୍ଚଳରେ ଅଷ୍ଟ୍ରିୟାର ପ୍ରାଧାନ୍ୟ ବିସ୍ତାର କରିଥିଲେ । ତାଙ୍କର ପ୍ରଭାବ ଫଳରେ ଇଉରୋପ ମହାଦେଶରେ ୧୮୧୫ ରୁ ୧୮୪୮ ମସିହା ପର୍ଯ୍ୟନ୍ତ ନିରଙ୍କୁଶ ଶାସକଗୋଷ୍ଠୀ ମୁଣ୍ଡ ଟେକିଥିଲେ । ତାଙ୍କର ଲକ୍ଷ୍ୟ ଥିଲା ଅଷ୍ଟ୍ରିୟାର ନେତୃତ୍ୱାଧୀନରେ ଏକ ପ୍ରତିକ୍ରିୟାଶୀଳ ଇଉରୋପକୁ ସୁଦୃଢ଼ କରିବା ଏବଂ ତାକୁ ସୁରକ୍ଷିତ କରିବା ।

## ମେଟାରନିକ୍‌ଙ୍କ ଜର୍ମାନ ନୀତି

ମେଟାରନିକ୍‌ଙ୍କ ମତରେ ଜର୍ମାନ ଜାତିର ଏକତ୍ରୀକରଣ ଏକ ଘୃଣ୍ୟ ବିଷୟ । ବିଭାଜିତ ଜର୍ମାନୀ ଉପରେ ଅଷ୍ଟ୍ରିୟାର କର୍ତ୍ତୃତ୍ୱ ପ୍ରତିଷ୍ଠାକରିବା ମେଟାରନିକ୍‌ଙ୍କ ନୀତି ଥିଲା ।

ଅଷ୍ଟ୍ରିୟା ପ୍ରାୟ ପାଞ୍ଚଶହ ବର୍ଷଧରି ଜର୍ମାନ ବ୍ୟାପାରରେ ପ୍ରତିପତ୍ତି ବିସ୍ତାର କରିଆସିଥିଲା ଏବଂ ଯଦି ଜର୍ମାନୀରେ ଜାତୀୟ ଆନ୍ଦୋଳନକୁ ଦମନ କରାଯାଏ, ତାହାହେଲେ ସେ ପୁଣି ବହୁବର୍ଷ ଧରି ସେହିପରି ପ୍ରତିପତ୍ତି ବିସ୍ତାର କରିପାରିବ । ଭିଏନା କଂଗ୍ରେସରେ ସମଗ୍ର ଜର୍ମାନୀକୁ ଅଷ୍ଟ୍ରିୟାର ନେତୃତ୍ୱରେ ଏକ ଜର୍ମାନ ରାଜ୍ୟସଙ୍ଘରେ ପରିଣତ କରାଯାଇ ଅଷ୍ଟ୍ରିୟାର କର୍ତ୍ତୃତ୍ୱକୁ ସ୍ୱୀକାର କରାଯାଇଥିଲା । ଏହି ସଙ୍ଘର ପାର୍ଲାମେଣ୍ଟରେ ଅଷ୍ଟ୍ରିୟାର ପ୍ରତିନିଧି ସଭାପତି ରହିଲେ । ମେଟାରନିକ୍‌ଙ୍କ କୂଟନୀତି ଫଳରେ କ୍ଷୁଦ୍ର ଜର୍ମାନ ରାଜ୍ୟଗୁଡ଼ିକ ତାଙ୍କ ପକ୍ଷ ଗ୍ରହଣ କଲେ । ଜର୍ମାନ ପାର୍ଲାମେଣ୍ଟରେ ମେଟାରନିକ୍‌ଙ୍କ ପ୍ରଭୁତ୍ୱ ଫଳରେ ଯେଉଁମାନେ ସେହି ପାର୍ଲାମେଣ୍ଟ ସାହାଯ୍ୟରେ ଜର୍ମାନ ଏକତା ହାସଲ କରିବାକୁ ଆଶା କରିଥିଲେ ସେମାନଙ୍କର ସେ ଆଶା ବ୍ୟର୍ଥ ହୋଇଗଲା ।

ମେଟାରନିକ୍ ମଧ୍ୟ ପାର୍ଲାମେଣ୍ଟରେ ତାଙ୍କ ପ୍ରଭାବଦ୍ୱାରା ଜର୍ମାନୀର ବିପ୍ଳବାତ୍ମକ ଆନ୍ଦୋଳନ ଗୁଡ଼ିକର ପ୍ରସାରକୁ ପ୍ରତିରୋଧ କରିବାରେ ଉପଯୋଗ କରିଥିଲେ । ସେ କଟ୍‌ଜେବ୍ୟୁଙ୍କର ହତ୍ୟାର ସୁଯୋଗ ନେଇ ଜର୍ମାନ ରାଜାମାନଙ୍କୁ ବିପ୍ଳବାତ୍ମକ ଆନ୍ଦୋଳନର ଭୟାବହ ପରିଣତି ବିଷୟରେ ଚେତାଇ ଦେଇଥିଲେ ଏବଂ ସେମାନଙ୍କ ସାହାଯ୍ୟ ପାଇ ନିନ୍ଦନୀୟ କାର୍ଲସବାଦ ଡିକ୍ରୀଗୁଡ଼ିକ (Carlsbad Decrees) ପାର୍ଲାମେଣ୍ଟ ଦ୍ୱାରା ମଞ୍ଜୁର କରାଇ ନେଇଥିଲେ । ଏହି କାର୍ଲସବାଦ ଡିକ୍ରୀଗୁଡ଼ିକ ଅନୁମୋଦିତ ହେବା ଫଳରେ ମେଟାରନିକ୍ ଜର୍ମାନ ରାଜ୍ୟ ସଙ୍ଘର ବିଜେତା ହୋଇଥିଲେ । ଏତଦ୍ୱାରା ଜର୍ମାନ ଇତିହାସରେ ଏକ ପୁରୁଷ ପାଇଁ ସ୍ୱାଧୀନତା ନିରୋଧ କରାଗଲା ବୋଲି ଘୋଷିତ ହୋଇଥିଲା । ତା'ଛଡ଼ା ସ୍ୱାଧୀନ ପାର୍ଲାମେଣ୍ଟ, ବାକ୍ ସ୍ୱାତନ୍ତ୍ର୍ୟ, ମୁଦ୍ରଣ ସ୍ୱାଧୀନତା ଏବଂ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ ସ୍ୱାଧୀନତା—ଏ ସବୁକୁ ଦବେଇ ଦିଆଯାଇଥିଲା । ପ୍ରୁସିୟାର ରାଜା ନିଜ ଲୋକମାନଙ୍କୁ ଯେଉଁ ସନନ୍ଦ ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ, ତାହା ରକ୍ଷା ନ କରିବା ପାଇଁ ମେଟାରନିକ୍ ପ୍ରବର୍ତ୍ତାଇଥିଲେ । ତାଙ୍କର ଜର୍ମାନ ନୀତି ହେଲା କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରମାନଙ୍କର ବୈଶିଷ୍ଟ୍ୟକୁ ଉତ୍ସାହିତ କରିବା ଓ ଜର୍ମାନୀକୁ ଦୁର୍ବଳ ଓ ବିଭକ୍ତକରି ରଖିବା । ସେ ଦୃଢ଼ ଜନ୍ମା ଉଦାର ଜର୍ମାନୀ ଚାହୁଁନଥିଲେ । ଯେତେବେଳେ ୧୮୩୦ ମସିହାରେ ପ୍ୟାରିସ୍‌ର ଜୁଲାଇ ବିପ୍ଳବର ପ୍ରତିଧ୍ୱନି ଜର୍ମାନୀରେ ପହଞ୍ଚିଲା ଏବଂ ବର୍ଣ୍ଣସଭିକ, ସ୍ୟାକ୍‌ସନି, ହେସେ-କାସେଲ୍ ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ରାଷ୍ଟ୍ରଗୁଡ଼ିକରେ ବିପ୍ଳବ ଆରମ୍ଭ ହୋଇଗଲା, ସେତେବେଳେ ସେଠାକାର ଶାସକମାନେ ବାଧ୍ୟହୋଇ ପ୍ରଜାମାନଙ୍କୁ କେତେକ ସୁଯୋଗ ଏବଂ ସୁବିଧା ଦେଲେ । ଅଷ୍ଟ୍ରିୟା ଓ ପ୍ରୁସିୟାର ସରକାର ନିଜ ନିଜ ରାଜ୍ୟରେ ଏ ସବୁ ବିପ୍ଳବକୁ ଦମନ କରିଥିଲେ ସତ; କିନ୍ତୁ ମେଟାରନିକ୍ ବିପ୍ଳବଗୁଡ଼ିକୁ ବିପଦର ସଙ୍କେତ ବିଚାରି ଜର୍ମାନ ପାର୍ଲାମେଣ୍ଟକୁ ବ୍ୟଲ୍ କରାଇଥିଲେ ଏବଂ ତାହାଦ୍ୱାରା ୧୮୩୨ ମସିହାରେ ଅତିରିକ୍ତ ଦମନଶୀଳ ବ୍ୟବସ୍ଥା ମଞ୍ଜୁର କରାଇ ନେଇଥିଲେ । ଏହି ବ୍ୟବସ୍ଥା ଅନୁଯାୟୀ ସର୍ବସାଧାରଣ ସଭା ସମିତି ଓ ମୁଦ୍ରଣ ଯାଞ୍ଚ ବ୍ୟବସ୍ଥା କଠୋର କରାଯାଇଥିଲା ଓ ବିଶ୍ୱବିଦ୍ୟାଳୟ ଗୁଡ଼ିକ

ଉପରେ ବିଶେଷ ନଜର ଦିଆଯାଇଥିଲା । ମେଟାରନିକ୍ଙ୍କ ପ୍ରରୋଚନା ଫଳରେ ରୁଷିଆ, ପ୍ରୁସିୟା ଏବଂ ଅଷ୍ଟ୍ରିୟା ସ୍ୱାଧୀନତା ବିରୁଦ୍ଧରେ ପୁଣି ମେଣ୍ଟ ବାନ୍ଧିଥିଲେ ଏବଂ ୧୮୩୩ ମସିହାରେ ସେମାନେ ଜର୍ମାନୀର ଉଦାରନୈତିକ ଆନ୍ଦୋଳନଗୁଡ଼ିକୁ ଦମନକରିବା ଏବଂ ସବୁଠି ଗାଣତାନ୍ତ୍ରିକ ପ୍ରବୃତ୍ତିକୁ ସଂଯତ କରିବାପାଇଁ ଏକ ପାରସ୍ପରିକ ସନ୍ଧିରେ ସ୍ୱାକ୍ଷର କଲେ ।

## ମେଟାରନିକ୍ଙ୍କ ଇଟାଲୀୟ ନୀତି

ଭିୟେନା କଂଗ୍ରେସରେ ଇଟାଲୀ ପୂର୍ବପରି କେତେଗୁଡ଼ିଏ ରାଷ୍ଟ୍ରରେ ବିଭକ୍ତ ହେବାର ଦେଖି ମେଟାରନିକ୍ ସନ୍ତୋଷ ପ୍ରକାଶ କରିଥିଲେ । ଇଟାଲୀ ନାମଟି ଏକ ଭୌଗୋଳିକ ସଂଜ୍ଞା ବୋଲି ସେ କହିଥିଲେ । ଜର୍ମାନୀ ପରି ଇଟାଲୀରେ ତାଙ୍କ ପ୍ରଭାବ ଜାତୀୟତାବାଦୀ ଓ ସାମ୍ବିଧାନିକ ଆନ୍ଦୋଳନମାନ ଦମନ କରିବାରେ ବ୍ୟବହାର କରାଯାଇଥିଲା । ଉଦାର-ନୀତିକ ଆନ୍ଦୋଳନଗୁଡ଼ିକର ପରିଣାମ ଅଷ୍ଟ୍ରିୟାର ଦୁଇଟି ପ୍ରଦେଶ—ଲମ୍ବାର୍ଡ଼ି ଓ ଭିନିସିୟାକୁ ବିଶେଷ ପ୍ରଭାବିତ କରିବ ବୋଲି ସେ ଆଶଙ୍କା କରିଥିଲେ । ଅଷ୍ଟ୍ରିୟା ଲମ୍ବାର୍ଡ଼ିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିବାରୁ ଇଟାଲୀୟମାନେ ସେମାନଙ୍କର ଶାସକ-ମାନଙ୍କର ଆଜ୍ଞାନୁବର୍ତ୍ତୀ ହେବାପାଇଁ ସେ ଚାପ ପକାଇଥିଲେ । ନେପଲସ୍‌ରେ ଫର୍ଡିନାଣ୍ଡ ରାଜା ଗୋପନୀୟ ଭାବେ ପ୍ରତିଶ୍ରୁତି ଦେଇଥିଲେ ଯେ ସେ ତାଙ୍କ ଶାସନରେ ଅଷ୍ଟ୍ରିୟା ଇଚ୍ଛା ବିରୁଦ୍ଧରେ କୌଣସି ପରିବର୍ତ୍ତନ କରିବେନାହିଁ । ଯେତେବେଳେ ୧୮୨୦ ମସିହାରେ ନେପଲ୍‌ସରେ ରାଜା ଫର୍ଡିନେଣ୍ଡଙ୍କ ଅତ୍ୟାଚାରୀ ଶାସନ ବିରୁଦ୍ଧରେ ଉଦାରନୀତିକ ଆନ୍ଦୋଳନ ହେଲା, ମେଟାରନିକ୍ ଟ୍ରପୋରେ ଏକ କଂଗ୍ରେସ ଅଧିବେଶନ ଡକାଇ ରୁଷିଆର ଜାର୍ ଓ ପ୍ରୁସିୟାର ରାଜାଙ୍କ ପ୍ରବର୍ତ୍ତାଇ ସାମରିକ ହସ୍ତକ୍ଷେପ ନୀତି ମଞ୍ଜୁର କରାଇନେଇଥିଲେ । ଟ୍ରପୋ କଂଗ୍ରେସ ଇଉରୋପୀୟ ବ୍ୟାପାରରେ ତାଙ୍କର ପ୍ରତିପତ୍ତି ଶୀର୍ଷସ୍ଥାନରେ ପହଞ୍ଚିବାର ଲକ୍ଷ୍ୟ କରିଥିଲା । ଟ୍ରପୋରେ ସାମରିକ ହସ୍ତକ୍ଷେପ ନୀତି ଗ୍ରହଣ କରାଯାଇଥିଲେ ମଧ୍ୟ ଅଷ୍ଟ୍ରିୟାର ନେପଲ୍‌ସରେ ହସ୍ତକ୍ଷେପ ବିଷୟ ମୁଲତବି ରଖାଗଲା ଏବଂ ପରବର୍ତ୍ତୀ ବୈଠକ ଲାଇବେକ୍‌ରେ ବସି ଏ ବିଷୟରେ ବିଚାର କରିବ ବୋଲି ସ୍ଥିର କରାଗଲା । ଲାଇବେକ୍ କଂଗ୍ରେସ ନେପଲ୍‌ସରେ ଅଷ୍ଟ୍ରିୟାର ହସ୍ତକ୍ଷେପକୁ ସମର୍ଥନ କଲା । କଂଗ୍ରେସଠାରୁ କ୍ଷମତା ଲାଭକରି ମେଟାରନିକ୍ ଏକ ଅଷ୍ଟ୍ରୀୟ ସୈନ୍ୟବାହିନୀ ନେପଲ୍‌ସକୁ ପଠାଇ ସେଠାକାର ବିପ୍ଳବ ଦମନ କରିଥିଲେ ଏବଂ ସେ ମଧ୍ୟ ପିଡ଼ମଣ୍ଟରେ ସେହିପରି ଏକ ଆନ୍ଦୋଳନକୁ ଦମନ କରିଥିଲେ । ଯେତେବେଳେ ଫ୍ୟାନ୍ସର ଜୁଲାଇ ବିପ୍ଳବ ଇଟାଲୀରେ ପ୍ରତିଧ୍ୱନିତ ହେଲା ଏବଂ ପାରମା, ମୋଡ଼େନା ଓ ପୋପଙ୍କ ରାଜ୍ୟରେ ବିଦ୍ରୋହମାନ ତେଜି ଉଠିଲା, ମେଟାରନିକ୍ ଦୃଢ଼ହସ୍ତରେ ସେସବୁକୁ ଦମନ କରିଥିଲେ ।

## ଗ୍ରୀକ୍‌ମାନଙ୍କ ସ୍ୱାଧୀନତା ସଂଗ୍ରାମ ପ୍ରତି ମେଟାରନିକ୍‌ଙ୍କ ଦୃଷ୍ଟିଭଙ୍ଗୀ

ଗ୍ରୀକ୍‌ମାନଙ୍କ ସ୍ୱାଧୀନତା ସଂଗ୍ରାମ ପ୍ରତି ମେଟାରନିକ୍ ପ୍ରତିକ୍ରିୟାଶୀଳ ମନୋଭାବ ପ୍ରକାଶ କରିଥିଲେ । ଯେତେବେଳେ ଗ୍ରୀକ୍‌ମାନେ ତୁର୍କୀ କବଳରୁ ମୁକ୍ତ ହେବାପାଇଁ ନିର୍ଭୀକ ସଂଗ୍ରାମ ଚଳାଇଲେ ଏବଂ ସମଗ୍ର ଇଉରୋପ ସେମାନଙ୍କ ସଂଗ୍ରାମ ପ୍ରତି ସହାନୁଭୂତି ପ୍ରଦର୍ଶନ କଲା, ସେତେବେଳେ ମେଟାରନିକ୍ ପ୍ରତିଷ୍ଠିତ ସରକାରଙ୍କ ବିରୁଦ୍ଧରେ ଗ୍ରୀକ୍‌ମାନେ ଅସ୍ତ୍ର ଧାରଣ କରିଥିବାରୁ ସେମାନଙ୍କୁ ବିଦ୍ରୋହୀ ଆଖ୍ୟା ଦେଇଥିଲେ । ସେ ଜାର୍ ଆଲେକ୍‌ଜାଣ୍ଡାରଙ୍କୁ ଗ୍ରୀକ୍‌ମାନଙ୍କ ସାହାଯ୍ୟ ପାଇଁ ଆସିବାକୁ ବାଧା ଦେଇଥିଲେ । ଆହୁରି ମଧ୍ୟ ସେ ବଲ୍‌କାନ ଅଞ୍ଚଳରେ ରୁଷିଆର କ୍ଷମତା ପ୍ରସାରକୁ ଭୟ କରୁଥିଲେ । ସେ ମନ୍ତବ୍ୟ ଦେଇଥିଲେ ଯେ ଗ୍ରୀକ୍ ବିଦ୍ରୋହ ସଭ୍ୟତାର ଅନ୍ତରାଳରେ ଜଳି ଆପେ ଆପେ ନିର୍ବାପିତ ହେଉ । (He remarked, "Let the greek Revolt burn itself out beyond the pale of Civilisation).

## ମେଟାରନିକ୍‌ଙ୍କ ଅଷ୍ଟ୍ରିୟା ନୀତି

ମେଟାରନିକ୍ ତାଙ୍କ ଅଷ୍ଟ୍ରିୟା ନୀତି ସଂକ୍ଷେପରେ ଏବଂ ଦୃଢ଼ଭାବରେ ଘୋଷଣା କରିଥିଲେ, "ଆମ୍ଭେମାନେ ପ୍ରତିରୋଧ ବ୍ୟବସ୍ଥା ଅନୁସରଣ କରୁଛୁ, ଯେପରି ଆମ୍ଭେମାନେ ଦମନ ବ୍ୟବସ୍ଥା ଅବଲମ୍ବନ କରିବାକୁ ବାଧ୍ୟ ନ ହେବୁ । ଆମ୍ଭମାନଙ୍କ ଦୃଢ଼ ବିଶ୍ୱାସ ଜନ୍ମିଛି ଯେ, ଯଦି ଗୋଟିଏ ସରକାର ପ୍ରଭାବିତ ହୋଇ କୌଣସି ଅନୁଗ୍ରହ ଦେଖାଏ, ତାହାହେଲେ ଏହା ତାହାର ସ୍ଥିତିର ମୂଳଭିତ୍ତିକୁ ଆଘାତ କରିବ ।" (Metternich asserted, "We follow a system of prevention in order that we may not be compelled to follaw one of repression· We are firmly convinced that any concession a Government may be induced to make strikes at the basis of its existence)." ଅଷ୍ଟ୍ରିୟା ରାଜ୍ୟରେ ପ୍ରତିଷ୍ଠିତ ବ୍ୟବସ୍ଥାକୁ ପୁଲିସର ଦୃଢ଼ କାର୍ଯ୍ୟାନୁଷ୍ଠାନ ଓ କଠୋର ଶାସନ ସାହାଯ୍ୟରେ ରକ୍ଷାକରିବାପାଇଁ ସେ ବିଶେଷ ଉଦ୍ୟମ କରିଥିଲେ । ବହୁସଂଖ୍ୟକ ଗୁପ୍ତଚର ନିଯୁକ୍ତ କରିଥିଲେ । ସେମାନଙ୍କର କାର୍ଯ୍ୟ ହେଲା ବିଶ୍ୱ ବିଦ୍ୟାଳୟମାନଙ୍କରେ ପ୍ରଫେସରମାନଙ୍କ ବକ୍ତୃତା ମନୋଯୋଗ ସହ ଶୁଣିବା ଏବଂ ଛାତ୍ରମାନଙ୍କର ଆନ୍ଦୋଳନ ପ୍ରତି ଲକ୍ଷ୍ୟ ରଖିବା । ସମ୍ବାଦ ପରିବେଷଣରେ କଠୋର ଯାଞ୍ଚ ବ୍ୟବସ୍ଥା ପ୍ରତିଷ୍ଠିତ ହୋଇଥିଲା । ଅଷ୍ଟ୍ରୀୟମାନେ କାଳେ ବୈପ୍ଲବିକ ଭାବଧାରାଦ୍ୱାରା ଅନୁପ୍ରାଣିତ ହେବେ, ସେଥିପାଇଁ ସେମାନଙ୍କୁ ବିଦେଶ ଭ୍ରମଣରେ ଯିବାକୁ ଅନୁମତି ଦିଆଯାଉନଥିଲା ।

ମେଟାରନିକ୍ ଅଷ୍ଟ୍ରିୟାର ଚ୍ୟାନ୍‌ସେଲର ହୋଇଥିବାରୁ ଅଷ୍ଟ୍ରିୟାର ସ୍ୱାର୍ଥରକ୍ଷା କରିବା ଥିଲା ତାଙ୍କ ନୀତିର ମୂଳ ଉଦ୍ଦେଶ୍ୟ । ସେ ବେଶ୍ ବୁଝିଥିଲେ ଯେ ଅଷ୍ଟ୍ରିୟା ସାମ୍ରାଜ୍ୟ ବିଭିଧ ଜାତିର ଲୋକଙ୍କୁ ନେଇ ଗଠିତ, ତେଣୁ ଗଣତନ୍ତ୍ର ଓ ଜାତୀୟତାବାଦ ପ୍ରଭୃତି ଉଦାର-ନୈତିକ ଭାବଧାରା ତାହାର ଏକତାକୁ ଧ୍ୱଂସ କରିଦେବ । ସୁତରାଂ ଯେକୌଣସି ଉପାୟରେ ଅଷ୍ଟ୍ରିୟାକୁ ଉଦାରନୀତିକ ପ୍ରଭାବରୁ ମୁକ୍ତ ରଖିବାପାଇଁ ତାଙ୍କ ନୀତିର ମୂଳ ଲକ୍ଷ୍ୟ ଥିଲା । ଅଷ୍ଟ୍ରିୟାର ସମ୍ରାଟଙ୍କୁ ସେ ପରାମର୍ଶ ଦେଇଥିଲେ, 'ଶାସନ କର ଏବଂ କିଛୁ ପରିବର୍ତ୍ତନ କରନାହିଁ ।' He advised, ('Govern and change nothing.') ସେ ଜାଣିଥିଲେ ଯେ ଜାତୀୟତାବାଦ ଅଷ୍ଟ୍ରିୟା ପ୍ରତି ବିପଜ୍ଜନକ ହେବ । କାଳେ ଅଷ୍ଟ୍ରିୟାର ପ୍ରଜାମାନେ ସେମାନଙ୍କ ଅଧିକାର ପ୍ରତି ସଚେତନ ହେବେ ଏବଂ ନିଜ ଦାବୀକୁ ପ୍ରତିଷ୍ଠିତ କରିବାକୁ ଉଦ୍ୟମ କରିବେ, ସେଥିପାଇଁ ସେମାନଙ୍କୁ ଅଜ୍ଞ ରଖିବା ସେ ପସନ୍ଦ କରୁଥିଲେ । ସେ ମଧ୍ୟ ବାହାର ଜଗତକୁ ବିପ୍ଳବର ସଂସ୍ପର୍ଶରୁ ମୁକ୍ତରଖିବା ଚାହୁଁଥିଲେ; କାରଣ ସେ ହୃଦୟଙ୍ଗମ କରିଥିଲେ ଯେ ଯଦି ଅଷ୍ଟ୍ରିୟାର ପଡ଼ୋଶୀ ରାଜ୍ୟରେ ବିପ୍ଳବ ଦେଖାଦିଏ, ତାହାହେଲେ ଅଷ୍ଟ୍ରିୟାକୁ ସେ ବିପ୍ଳବରୁ ରକ୍ଷାକରିବା ସମ୍ଭବପର ନୁହଁ ।

## ମେଟାରନିକ୍‌ଙ୍କ ଚରିତ୍ରର ମୂଲ୍ୟାଙ୍କନ

ମେଟାରନିକ୍ ଜଣେ ସୁଶିକ୍ଷିତ, ସୁରୁଚିସମ୍ପନ୍ନ ଏବଂ ସୁଚତୁର କୂଟନୀତିଜ୍ଞ ଥିଲେ । ସେ ଏତେ ସ୍ୱାର୍ଥପର ଥିଲେ ଯେ ନିଜର ଦୋଷତ୍ରୁଟି ବିଷୟରେ ଚିନ୍ତା ନ କରି ଅନ୍ୟମାନଙ୍କ ଉପରେ ସବୁ ଦୋଷ ଲଦିଦେଉଥିଲେ । ସେ ଥିଲେ ଅହଂବାଦୀ ଏବଂ ତାଙ୍କ ଦୃଢ଼ ଧାରଣା କେବେହେଁ ପରିବର୍ତ୍ତନ ହେଉନଥିଲା । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କ ନୀତି ଅଭ୍ରାନ୍ତ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ତାଙ୍କର ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇଗଲା ପରେ ମଧ୍ୟ ସେ କହୁଥିଲେ 'ମୋ ମନ କଦାପି ଭ୍ରାନ୍ତଧାରଣା ପୋଷଣ କରିନାହିଁ ।' ('My mind has not entertained error.') ସେ ଥିଲେ ପୁରାତନ ଶାସନ-ପଦ୍ଧତିର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କର ନୀତି ହେଲା, ଭିଏନା କଂଗ୍ରେସ ବ୍ୟବସ୍ଥା ବଜାୟ ରଖି ଇଉରୋପର ଶାନ୍ତି ଏବଂ ସ୍ଥିତାବସ୍ଥା ରକ୍ଷାକରିବା ।

ସେ ଶାନ୍ତି ପ୍ରତିଷ୍ଠା କରିବାପାଇଁ ଦମନନୀତି ଅବଲମ୍ବନ କରିଥିଲେ ମଧ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ନେପୋଲିୟନଙ୍କ ସହିତ ଦୀର୍ଘକାଳବ୍ୟାପୀ ଯୁଦ୍ଧ ପରେ ଇଉରୋପ ମହାଦେଶରେ ଶାନ୍ତି ପ୍ରତିଷ୍ଠା ଅତ୍ୟନ୍ତ ଆବଶ୍ୟକ ହୋଇଥିଲା । ଫରାସୀ ବିପ୍ଳବ ସମୟରେ ଯେଉଁ ରକ୍ତପାତ ହେଲା, ତାହା ସାରା ଇଉରୋପରେ ଏପରି ଆତଙ୍କ ସୃଷ୍ଟି କଲା ଯେ ମହାଦେଶର ସାଧାରଣ ଲୋକେ ଆନ୍ତର୍ଜାତିକ ଶାନ୍ତିପାଇଁ ପ୍ରବଳ ଆଗ୍ରହ ପ୍ରକାଶ କରିଥିଲେ । ତେଣୁ ମେଟାରନିକ୍ ଇଉରୋପର ଅବସ୍ଥା ବିଚାରକରି କହୁଥିଲେ, 'ଇଉରୋପର ଲୋକେ ସ୍ୱାଧୀନତା ଚାହାଁନ୍ତିନାହିଁ, କେବଳ ଚାହାଁନ୍ତି ଶାନ୍ତି ।' ('What the

European peoples want is not liberty but peace.') ତେଣୁ ଶାନ୍ତି ଓ ସ୍ଥିତାବସ୍ଥା ବଜାୟ ରଖିବାପାଇଁ ସେ ଉଦ୍ୟମୀ ହୋଇଥିଲେ । ଏହା ସ୍ୱୀକାର କରିବାକୁ ହେବ ଯେ ମେଟାରନିକ୍‌ଙ୍କ ନୀତି ଫଳରେ ଇଉରୋପରେ ତିରିଶବର୍ଷକାଳ ଶାନ୍ତିରକ୍ଷା କରାଯାଇ ପାରିଥିଲା । ଅନ୍ୟ ଦିଗରୁ ବିଚାରକଲେ, ଅସ୍ୱୀକାର କରିହେବନାହିଁ ଯେ ମେଟାରନିକ୍‌ଙ୍କ ନୀତି ଦୂରଦୃଷ୍ଟିର କୌଣସି ପରିଚୟ ଦେଇନଥିଲା । ତାଙ୍କର କାର୍ଯ୍ୟକାରିତେ ଗଠନରେ ପ୍ରକାଶ ନ ପାଇ ଦମନରେ ପ୍ରକାଶ ପାଇଥିଲା । ସେ ସମୟର ଭାବଧାରା ସହିତ ମେଟାରନିକ୍‌ଙ୍କ ନୀତିର କୌଣସି ସାମଞ୍ଜସ୍ୟ ନ ଥିଲା । ସେ ସଂଗ୍ରାମରେ ହାରିଯାଉଥିବା କଥା ବେଶ୍ ହୃଦୟଙ୍ଗମ କରିପାରିଥିଲେ । ସେ ସବୁବେଳେ କହୁଥିଲେ, 'ମୁଁ ଏହି ପୃଥିବୀକୁ ଅତିଶୀଘ୍ର କିମ୍ବା ଅତି ବିଳମ୍ବରେ ଆସିଛି ।' ସେ ବିପ୍ଳବୀମାନଙ୍କୁ ଅବରୋଧ କରିପାରିଥିଲେ ସତ; କିନ୍ତୁ ସେମାନଙ୍କ ଚିନ୍ତାଧାରାକୁ ଅବରୋଧ କରିପାରି ନଥିଲେ । ଏହି ସମସ୍ତ ତ୍ରୁଟି ମେଟାରନିକ୍‌ଙ୍କ ବିଫଳତାର ପ୍ରଧାନ କାରଣ ଥିଲା ।

---

# ଦ୍ୱାଦଶ ଅଧ୍ୟାୟ

## ପ୍ରାଚ୍ୟ ସମସ୍ୟା (The Eastern Question)

## କ୍ରିମିୟା ଯୁଦ୍ଧ ( ୧୮୫୪-୫୬ )
## ( The Crimean War, 1854-56 )

ଲଣ୍ଡନ ସନ୍ଧି (୧୮୪୧) ସ୍ୱାକ୍ଷର ଫଳରେ ପୂର୍ବାଞ୍ଚଳ ସମସ୍ୟାର ସମାଧାନ ହୋଇ ପାରି ନ ଥିଲା ସତ; କିନ୍ତୁ ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ତାର ପରବର୍ତ୍ତୀ କେତେ ବର୍ଷ ତୁର୍କୀ ସାମ୍ରାଜ୍ୟରେ ଶାନ୍ତିଭଙ୍ଗ ପ୍ରାୟ ହୋଇନଥିଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ କ୍ରିମିୟା ଯୁଦ୍ଧ ୟୁରୋପୀୟ ଇତିହାସରେ ଶାନ୍ତିଭଙ୍ଗ କରିବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ସମସ୍ୟାକୁ ପୁନର୍ଜ୍ଜୀବିତ କରିଥିଲା । ଏହି ଯୁଦ୍ଧ ଫଳରେ ଭିଏନା କଂଗ୍ରେସଦ୍ୱାରା ପ୍ରତିଷ୍ଠିତ ରାଷ୍ଟ୍ରୀୟ ବ୍ୟବସ୍ଥା ବାଧାପ୍ରାପ୍ତ ହୋଇଥିଲା । ତେଣୁ ଯଥାର୍ଥରେ 'କ୍ରିମିୟା ଯୁଦ୍ଧକୁ ସାଧାରଣ ଅର୍ଥରେ ୟୁରୋପ ଇତିହାସର ଜଳ-ବିଭାଜକ' ବୋଲି କୁହାଯାଏ । ('The Crimean war is in general sense a watershed of European history.') ଏହି ଯୁଦ୍ଧରେ ଯେଉଁ ନୂତନ ଶକ୍ତି ପ୍ରକାଶ ପାଇଲା, ତାହା ବାସ୍ତବରେ ଥିଲା ଜାତୀୟତା ଏବଂ ଉଦାରମତବାଦର ବିଜୟ ପ୍ରତୀକ ।

ପବିତ୍ର ଧର୍ମସ୍ଥାନ ଜେରୁଜେଲମର ରକ୍ଷଣାବେକ୍ଷଣ ନେଇ ଗ୍ରୀକ୍ ଓ ଲାଟିନ୍ ଧର୍ମଯାଜକମାନଙ୍କ ମଧ୍ୟରେ ବିବାଦ ଫଳରେ ଏ ଯୁଦ୍ଧ ଆରମ୍ଭ ହୋଇଥିଲେ ମଧ୍ୟ ତାହାର ପଶ୍ଚାତ୍‌ଦେଶରେ ଅନ୍ୟ ଗୂଢ଼ତଥ୍ୟ ନିହିତ ଥିଲା । ଏକ ଅତୀତ ସନ୍ଧି (Capitulations of 1740) ଅନୁସାରେ ତୁର୍କୀ ଫ୍ରାନ୍‌ସକୁ ନିଜର ଲ୍ୟାଟିନ୍ ଧର୍ମଯାଜକମାନଙ୍କର ତତ୍ତ୍ୱାବଧାନର ଦାୟିତ୍ୱ ଦେଇଥିଲା । ୧୭୭୪ର କୁଚ୍‌ଚୁକ୍ କୈନାର୍ଡଜି (Kutchuk Kainnardji) ସନ୍ଧି ଫଳରେ ରୁଷିଆ ତୁର୍କୀ ସାମ୍ରାଜ୍ୟର ଅଧୀନରେ ଥିବା ଗ୍ରୀକ୍ ଧର୍ମସ୍ଥାନଗୁଡ଼ିକର ଅଭିଭାବକତ୍ୱର ଅଧିକାର ପାଇଥିଲେ । ଫରାସୀ ବିପ୍ଳବ ସମୟରେ ଫ୍ରାନ୍‌ସ ସରକାର ନିଜ ସମସ୍ୟାନେଇ ବ୍ୟସ୍ତଥିବାବେଳେ, ଗ୍ରୀକ୍ ଧର୍ମଯାଜକମାନେ କ୍ରମେ ସେମାନଙ୍କର ଶତ୍ରୁ ଲାଟିନ୍ ଧର୍ମଯାଜକମାନଙ୍କର ଅଧିକାରଗୁଡ଼ିକ ଅନ୍ୟାୟଭାବରେ ନିଜ ହାତକୁ ଆଣିଲେ । ଏହା ଫଳରେ ଗ୍ରୀକ୍ ଓ ଲ୍ୟାଟିନ ଧର୍ମଯାଜକମାନଙ୍କ ମଧ୍ୟରେ ଯେଉଁ କଳହ ସୃଷ୍ଟି ହେଲା, ସେଥିରେ ତୃତୀୟ ନେପୋଲିୟନ୍ ଲ୍ୟାଟିନ୍ ଧର୍ମଯାଜକମାନଙ୍କ ପକ୍ଷ ନେଲେ ଏବଂ ସେମାନଙ୍କର ତତ୍ତ୍ୱାବଧାନର ଦାୟିତ୍ୱ ଫ୍ରାନ୍‌ସ ପୁନରାୟ ଗ୍ରହଣକରିବା ପାଇଁ ଦାବିକରିବା ସଙ୍ଗେ ସଙ୍ଗେ ଲ୍ୟାଟିନ୍ ଧର୍ମଯାଜକମାନଙ୍କର ଅଧିକାରଗୁଡ଼ିକ

ପ୍ରତ୍ୟର୍ପଣକରିଦେବା ପାଇଁ ମଧ୍ୟ ଦାବୀ କରିଥିଲେ । ତୁର୍କ ସୁଲତାନ ନେପୋଲିୟନଙ୍କ ଦାବିମାନ ଗ୍ରହଣ କରିବାକୁ ରାଜିହୋଇଥିଲେ; କିନ୍ତୁ ରୁଷିଆର ଜାର୍ ପ୍ରଥମ ନିକୋଲାସ ଗ୍ରୀକ୍ ଧର୍ମଯାଜକମାନଙ୍କ ପକ୍ଷନେଇ ଫ୍ରାନସକୁ ଦାନକରିଥିବା ବିଶେଷ ସୁବିଧାଗୁଡ଼ିକ ପ୍ରତ୍ୟାହାର କରିନେବାପାଇଁ ତୁର୍କ ସୁଲତାନଙ୍କ ଉପରେ ଚାପ ପକାଇଥିଲେ । ତୁର୍କ ସୁଲତାନ ବିଷମ ସଙ୍କଟରେ ପଡ଼ି ରୁଷିଆ ଏବଂ ଫ୍ରାନସ ମଧ୍ୟରେ ଆପୋଷ ନିଷ୍ପତ୍ତିପାଇଁ ଉଦ୍ୟମ କରିଥିଲେ; କିନ୍ତୁ ତାହା ବିଫଳ ହୋଇଥିଲା ।

ଫ୍ରାନସ କିମ୍ବା ରୁଷିଆ କେହି ଆପୋଷ ନିଷ୍ପତ୍ତି କରିବାକୁ ଚାହୁଁ ନ ଥିଲେ । ଗ୍ରୀକ୍ ଓ ଲ୍ୟାଟିନ୍ ଧର୍ମଯାଜକମାନଙ୍କ କଳହର ଅନ୍ତରାଳରେ ଉଭୟ ରୁଷିଆ ଓ ଫ୍ରାନସର ଗୂଢ଼ ଉଦ୍ଦେଶ୍ୟ ଲୁକ୍କାୟିତ ଥିଲା । ତୃତୀୟ ନେପୋଲିୟନ୍ ବଳପୂର୍ବକ ଅଧିକାର କରିଥିବା ରାଜପଦର ଦୁର୍ବଳତା ବିଷୟରେ ସଚେତନ ଥିଲେ । ତେଣୁ ସେ ଆକ୍ରମଣାତ୍ମକ ବୈଦେଶିକ ନୀତି ଅନୁସରଣ କରି ତାଙ୍କ ରାଜପଦ ସୁଦୃଢ଼ କରିବାକୁ ଏବଂ ତାଙ୍କ ଶାସନ ପ୍ରତି ଫରାସୀ ଜନସାଧାରଣଙ୍କୁ ଆକୃଷ୍ଟ କରିବାକୁ ଚାହିଁଥିଲେ । ଏହା ଛଡ଼ା ସେ ନେପୋଲିୟନ୍ ବୋନାପାର୍ଟ ଅମଳର ଔଜ୍ଜ୍ୱଲ୍ୟ ଏବଂ ପ୍ରାଧାନ୍ୟ ପୁନଃ ପ୍ରତିଷ୍ଠାକରି ତାଙ୍କ ମସ୍କୋ ଅଭିଯାନ ବିଫଳତାର ପ୍ରତିଶୋଧ ନେବାପାଇଁ ସଂକଳ୍ପ କରିଥିଲେ । ତୃତୀୟ ନେପୋଲିୟନଙ୍କର ମଧ୍ୟ ରୁଷିଆର ଜାର୍ ପ୍ରଥମ ନିକୋଲାସଙ୍କ ବିରୁଦ୍ଧରେ ବ୍ୟକ୍ତିଗତ ଆକ୍ରୋଶ ଥିଲା; କାରଣ ନିକୋଲାସ୍ ଅନ୍ୟ ରାଜାମାନଙ୍କୁ ସମ୍ବୋଧନ କଲାବେଳେ ଯେପରି ସୌଜନ୍ୟ ପ୍ରଦର୍ଶନ କରୁଥିଲେ, ତାଙ୍କୁ ସମ୍ବୋଧନ କଲାବେଳେ ସେପରି କରୁନଥିଲେ; ବରଂ ତାଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାର କରିଥିଲେ । ସୁତରାଂ ଗ୍ରୀକ୍ ଏବଂ ଲ୍ୟାଟିନ୍ ଧର୍ମଯାଜକମାନଙ୍କର ବିବାଦକୁ ଆଳ ଦେଖାଇ ରୁଷିଆ ସହିତ ଯୁଦ୍ଧ ସୃଷ୍ଟି କରିବାପାଇଁ ନେପୋଲିୟନଙ୍କୁ ଏକ ଅପୂର୍ବ ସୁଯୋଗ ମିଳିଲା ।

ଅନ୍ୟ ଦିଗରେ ରୁଷିଆ ଏହି ଘଟଣାର ବହୁ ପୂର୍ବରୁ ତୁର୍କ ସାମ୍ରାଜ୍ୟକୁ ଭାଗ ଭାଗକରି ବାଣ୍ଟିନେବା ପାଇଁ ପ୍ରସ୍ତାବ କରିଥିଲା । ପବିତ୍ର ଧର୍ମସ୍ଥାନ ନେଇ ରୁଷିଆ ଓ ଫ୍ରାନସ ମଧ୍ୟରେ ଯେଉଁ ବିବାଦ ଉପୁଜିଲା, ସେଥିରୁ ରୁଷିଆଫାଏଦା ଉଠାଇବାକୁ ଅକ୍ଳାନ୍ତ ଉଦ୍ୟମ କରିଥିଲା । ସେ ତୁର୍କୀକୁ 'ଇଉରୋପର ଏକ ରୋଗଗ୍ରସ୍ତ ରାଜ୍ୟ' ବୋଲି ବିଶ୍ୱାସ କରୁଥିଲେ ଏବଂ ତୁର୍କ ସାମ୍ରାଜ୍ୟର ପତନ ଆସନ୍ନ ବୋଲି ଦୃଢ଼ମତ ପୋଷଣ କରିଥିଲେ । ତେଣୁ ରୁଷିଆ ପ୍ରକୃତ ପକ୍ଷରେ ତୁର୍କ ସାମ୍ରାଜ୍ୟର ବିଭାଜନ ଏବଂ ବଣ୍ଟନ ଲାଗି ଇଂଲଣ୍ଡ ନିକଟରେ ପ୍ରସ୍ତାବ ଉଠାଇଥିଲା । ୧୮୫୩ ମସିହାରେ ଜାର୍ ପ୍ରଥମ ନିକୋଲାସ୍ ସେଣ୍ଟପିଟର୍ସବର୍ଗଠାରେ ଇଂଲଣ୍ଡର ରାଷ୍ଟ୍ରଦୂତ ସଙ୍ଗରେ ଆଳାପକଲାବେଳେ ଇଂଲଣ୍ଡ ସହିତ ତୁର୍କୀ ବିଷୟରେ ଏକ ବୁଝାମଣା କରିବା ତାଙ୍କର ଲକ୍ଷ୍ୟବୋଲି ପ୍ରକାଶ କରିଥିଲେ । ରୋଗଗ୍ରସ୍ତ ତୁର୍କୀର ଧ୍ୱଂସସାଧନ ପୂର୍ବରୁ ତାର ଅଞ୍ଚଳଗୁଡ଼ିକ ଭାଗ ଭାଗକରି ବାଣ୍ଟିନେବା ଏହି ବୁଝାମଣା ଉପରେ ନିର୍ଭର କରୁଥିଲା । ପ୍ରଥମ ନିକୋଲାସ ସୂଚନା ଦେଇଥିଲେ ଯେ ରୁଷିଆର ତୁର୍କୀ-ବିଭାଜନ ପ୍ରସ୍ତାବ ଯଦି କାର୍ଯ୍ୟକାରୀ କରାଯାଏ ତାହାହେଲେ ଇଂଲଣ୍ଡ, ମିଶର ଏବଂ କ୍ରୀଟ ଲାଭକରିବ ଏବଂ

ରୁଷିଆ ତାହାର ନିୟନ୍ତ୍ରଣାଧୀନରେ କନଷ୍ଟାଣ୍ଟିନୋପଲ୍ ଏବଂ ଡାର୍ଡାନେଲସ ରଖିବ । ଇଂଲଣ୍ଡ କିନ୍ତୁ ତୁର୍କ ସାମ୍ରାଜ୍ୟର ଧ୍ୱଂସ ଅବଶ୍ୟମ୍ଭାବୀ ବୋଲି ସ୍ୱୀକାର କରିବାକୁ ରାଜି ହୋଇ-ନ ଥିଲି କି ତୁର୍କୀ ବିଭାଜନର କୌଣସି କଳ୍ପନାକୁ ସମର୍ଥନ କରିବ ବୋଲି ପ୍ରତିଶ୍ରୁତି ଦେଇ ନ ଥିଲା । ସେ ତୁର୍କୀର ପୁନଃସଂସ୍କାର ଉପରେ ଆସ୍ଥା ରଖିଥିଲା; ତେଣୁ ଇଂଲଣ୍ଡ ତୁର୍କୀର ଅଖଣ୍ଡତା ବଜାୟରଖିବା ନୀତି ଗ୍ରହଣକରି ରୁଷିଆର ତୁର୍କ-ସାମ୍ରାଜ୍ୟକୁ ଭାଗ ଭାଗ କରି-ନେବା ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଇଥିଲା । ଏକଥା ନିଶ୍ଚିତ ସତ୍ୟ ଯେ ଇଂଲଣ୍ଡ ନିଜ ସ୍ୱାର୍ଥ ଦୃଷ୍ଟିରୁ ତୁର୍କୀର ଅଖଣ୍ଡତା ରକ୍ଷାକରିବାକୁ ଚାହିଁଥିଲା । ସେ ଯଦି ରୁଷିଆର ପ୍ରସ୍ତାବରେ ରାଜିହୋଇଥାନ୍ତା, ତା'ହେଲେ ତାହା ପକ୍ଷରେ ରୁଷିଆର ସମ୍ପ୍ରସାରଣ ନୀତିକୁ ବାଧାଦେବା ସମ୍ଭବପର ହୋଇ ନ ଥାନ୍ତା ।

ପ୍ରଥମ ନିକୋଲାସ୍ କିନ୍ତୁ ଆକ୍ରମଣାତ୍ମକ ନୀତି ଗ୍ରହଣ କରିବାପାଇଁ ବଦ୍ଧପରିକର ଥିଲେ । ସେ ମେନ୍‌ସିକଫ୍ ନାମକ ଜଣେ ଦକ୍ଷ ରାଷ୍ଟ୍ରଦୂତଙ୍କୁ କନଷ୍ଟାଣ୍ଟିନୋପଲ ପଠାଇଥିଲେ ଏବଂ ତାଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା ଯେ ସେ ପବିତ୍ର ଧର୍ମାନୁଷ୍ଠାନଗୁଡ଼ିକ ସମ୍ପର୍କରେ ସନ୍ତୋଷଜନକ ବ୍ୟବସ୍ଥା ଦାବିକରିବା ବ୍ୟତୀତ ତୁର୍କୀସ୍ଥିତ ସଂସ୍କାରବିରୋଧୀ ଗ୍ରୀକ୍ ଖ୍ରୀଷ୍ଟାନ ପ୍ରଜାମାନଙ୍କ ଉପରେ ରୁଷିଆର ଅଭିଭାବକତ୍ୱର ସ୍ୱୀକୃତି ମଧ୍ୟ ଦାବି କରିବେ । ପ୍ରଥମ ଦାବିଟି କୁଚୁକ୍ କୈନାର୍ଡ଼ିଜ ସନ୍ଧି ଉପରେ ନିର୍ଭରକରି କରାଯାଇଥିଲା । ଦ୍ୱିତୀୟ ଦାବିଟିର କୌଣସି ଭିତ୍ତି ନ ଥିଲା ଏବଂ ଯଦି ଏ ଦାବିଟି ଗ୍ରହଣ କରାଯାଇଥାନ୍ତା, ତା'ହେଲେ ରୁଷିଆ ତୁର୍କୀର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ପାଇଁ ସ୍ଥାୟୀ ଅଧିକାର ପାଇଥାନ୍ତା । ତୁର୍କ ସୁଲତାନ ତୁର୍କୀରେ ଅବସ୍ଥାପିତ ଇଂଲଣ୍ଡର ରାଷ୍ଟ୍ରଦୂତ ଷ୍ଟ୍ରାଟ୍‌ଫୋର୍ଡ଼ ରେଡ଼କ୍ଲିଫ୍‌ଙ୍କ ପରାମର୍ଶକ୍ରମେ ରୁଷିଆ ଜାର୍‌ଙ୍କଠାରୁ ଆସିଥିବା ଦୁଇଟି ପ୍ରଶ୍ନକୁ ପୃଥକ୍ କରିଦେଇଥିଲେ । ସେ ପବିତ୍ର ଧର୍ମାନୁଷ୍ଠାନ ସମ୍ବନ୍ଧରେ ଦାବୀକୁ ଗ୍ରହଣ କରିବାକୁ ରାଜିହୋଇଥିଲେ । ଅର୍ଥାତ୍ ତୁର୍କ ସୁଲତାନ ଗ୍ରୀକ୍ ଖ୍ରୀଷ୍ଟିଆନମାନଙ୍କର ଧର୍ମାନୁଷ୍ଠାନର ଅଭିଭାବକତ୍ୱ ରୁଷିଆ ଉପରେ ନ୍ୟସ୍ତ କରିବାକୁ ସ୍ୱୀକୃତି ଦେଇଥିଲେ; କିନ୍ତୁ ଗ୍ରୀକ୍ ନାଗରିକମାନଙ୍କ ଉପରେ ରୁଷିଆର କୌଣସି ଅଧିକାର ତୁର୍କୀ ସ୍ୱୀକାର କରିବାକୁ ରାଜି ହୋଇନଥିଲା । ଏହି କାରଣରୁ ଜାର୍ ପ୍ରଥମ ନିକୋଲାସ୍ କ୍ରୁଦ୍ଧ ହୋଇ ତୁର୍କୀ ଅନ୍ତର୍ଗତ ଓ୍ୱାଲାଚିଆ ଓ ମୋଲଡାଭିଆ ନାମକ ଡାନ୍ୟୁବୀୟ ରାଜ୍ୟ ଦୁଇଟି ଅଧିକାର କରିନେଇଥିଲେ । ଏହିପରିଭାବରେ ତୁର୍କୀ ଉପରେ ଚାପ ପକାଇ ନିଜ ଉଦ୍ଦେଶ୍ୟ ସାଧନକରିବା ଥିଲା ନିକୋଲାସ୍‌ଙ୍କ ଅଭିପ୍ରାୟ ।

ରୁଷିଆକର୍ତ୍ତୃକ ଡାନ୍ୟୁବୀୟ ରାଜ୍ୟ ଦୁଇଟି ଅଧିକୃତ ହେବା ଫଳରେ ଯେଉଁ ସମସ୍ୟାର ଉଦ୍‌ଭବ ହେଲା, ତାହା ଇଉରୋପୀୟ ଶକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେମାନେ ରୁଷିଆର ଏପରି ଆଚରଣରେ ବିଚଳିତ ହୋଇପଡ଼ିଥିଲେ ଏବଂ ଏ ସମସ୍ୟା ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଇଂଲଣ୍ଡ, ଫ୍ରାନ୍‌ସ, ଅଷ୍ଟ୍ରିଆ ଏବଂ ପ୍ରୁସିଆ ଭିଏନା ପ୍ରସ୍ତାବ (Vienna Note) ନାମରେ ଏକ ପ୍ରସ୍ତାବ ଉଭୟ ରୁଷିଆ ଓ ତୁର୍କୀ ନିକଟକୁ ପ୍ରେରଣ

କରିଥିଲେ । ଏହି ପ୍ରସ୍ତାବରେ କୈନାର୍ଡ୍ଜ ଓ ଏଡ୍ରିୟାନୋପଲ ସନ୍ଧି ଦୁଇଟି ଅନୁମୋଦନ କରାଯିବା ସଙ୍ଗେ ସଙ୍ଗେ ତୁର୍କୀର ଖ୍ରୀଷ୍ଟିୟାନ ପ୍ରଜାମାନଙ୍କ ସଂରକ୍ଷଣର ଆବଶ୍ୟକତା ରହିଛି ବୋଲି ଦୃଢ଼ଭାବରେ ଘୋଷଣା କରାଯାଇଥିଲା । ରୁଷିଆ ଏ ପ୍ରସ୍ତାବ ଗ୍ରହଣ କରିଥିଲା; କାରଣ ଏଥିରେ ଉଲ୍ଲେଖ ଥିବା ତୁର୍କୀର 'ଖ୍ରୀଷ୍ଟିୟାନ ପ୍ରଜାମାନଙ୍କର ସଂରକ୍ଷଣ' ପଙ୍କ୍ତିଟିକୁ 'ଜାର୍‌ଙ୍କଦ୍ୱାରା ସଂରକ୍ଷଣ' ବୋଲି ବ୍ୟାଖ୍ୟା କରିଥିଲେ; କିନ୍ତୁ ତୁର୍କୀ ଇଂଲଣ୍ଡର ରାଷ୍ଟ୍ରଦୂତ ଷ୍ଟ୍ରାଟ୍‌ଫୋର୍ଡ ରେଡକ୍ଲିଫଙ୍କ ପ୍ରରୋଚନାରେ ଏହା 'ସୁଲତାନଙ୍କଦ୍ୱାରା ସଂରକ୍ଷଣ' ବୋଲି ବ୍ୟାଖ୍ୟା କରିଥିଲା । ରୁଷିଆ ତୁର୍କୀର ବ୍ୟାଖ୍ୟାକୁ ଅଗ୍ରାହ୍ୟ କରିଦେଇଥିଲା । ଷ୍ଟ୍ରାଟ୍‌ଫୋର୍ଡ ରେଡକ୍ଲିଫଙ୍କ କଠୋର ମନୋଭାବ ଯୋଗୁ ସମସ୍ୟାର ସମାଧାନ ସମ୍ଭବ ହୋଇ ନ ଥିଲା । ତାଙ୍କ ପ୍ରରୋଚନା ଫଳରେ ଚତୁଃଶକ୍ତିଙ୍କର ନିଷ୍ପତ୍ତିକୁ ତୁର୍କୀ ପ୍ରତ୍ୟାଖ୍ୟାନ କରିଦେଇଥିଲା । ତାହା କରିବାଦ୍ୱାରା ନିଜ ସରକାରର ନିଷ୍ପତ୍ତିକୁ ମଧ୍ୟ ସେ ମାନିନଥିଲେ । ରୁଷିଆର ଜାର୍ ପ୍ରଥମ ନିକୋଲାସ୍‌ଙ୍କ ବିରୁଦ୍ଧରେ ଷ୍ଟ୍ରାଟ୍‌ଫୋର୍ଡ ରେଡକ୍ଲିଫଙ୍କର ବ୍ୟକ୍ତିଗତ ଆକ୍ରୋଶ ଥିଲା । ଇଂରେଜ ସରକାର ତାଙ୍କୁ ତୁର୍କୀରୁ ପ୍ରତ୍ୟାହାର କରି ନେଇଥିଲେ ପରିସ୍ଥିତି ହୁଏତ ଭିନ୍ନ ପ୍ରକାର ହୋଇଥାନ୍ତା; କିନ୍ତୁ ପାମରଷ୍ଟୋନ ଯେ କି ରୁଷିଆ ଜାର୍‌ଙ୍କ ସହିତ ଷ୍ଟ୍ରାଟ୍‌ଫୋର୍ଡ ରେଡକ୍ଲିଫଙ୍କ କଳହ ପାଇଁ ମୂଳରୁ ଦାୟୀ ସେ ମନ୍ତ୍ରିମଣ୍ଡଳରେ ଥିବାଯୋଗୁ ତାହା ସମ୍ଭବପର ହୋଇନଥିଲା । ପାମରଷ୍ଟୋନଙ୍କ ଇଂରେଜ ସରକାର ଉପରେ ଏତେ ବେଶି ପ୍ରଭାବ ଥିଲା ଯେ ସେ ଯୁଦ୍ଧର ପ୍ରତିରୋଧକୁ ବାଧା ଦେଇଥିଲେ । ଇଂଲଣ୍ଡର ଏପରି ହୋଦ୍ଦୁଲ୍ୟମାନ ନୀତି କ୍ରିମିୟା ଯୁଦ୍ଧର ପ୍ରଧାନ କାରଣ ବୋଲି ଅନେକେ ମନେକରନ୍ତି ।

କୂଟନୀତି ବିଫଳ ହେବାରୁ ସମସ୍ୟାର ସମାଧାନ କେବଳ ତରବାରି ସାହାଯ୍ୟରେ ହୋଇପାରିବ ବୋଲି ବିଶ୍ୱାସ କରାଯାଇଥିଲା । 'ଭିଏନା ପ୍ରସ୍ତାବ' ପ୍ରତ୍ୟାଖ୍ୟାନ କଲାପରେ, ତୁର୍କୀ ରୁଷିଆକୁ ତାର ଅଧିକୃତ ଓ୍ୱାଲାଚିୟା ଓ ମୋଲଡାଭିୟା—ରାଜ୍ୟ ଦୁଇଟିରୁ ଅପସରି ଯିବାକୁ ଆହ୍ୱାନ ଦେଇଥିଲା । ରୁଷିଆ ତାହା କରିବାକୁ ମନା କରିଦେଇଥିଲା । ତେଣୁ ତୁର୍କୀ ରୁଷିଆ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲା ଏବଂ ଡାନ୍ୟୁବ୍ ଅଞ୍ଚଳରେ ଆକ୍ରମଣାତ୍ମକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲା । ରୁଷିଆ ଏଥିରେ ଉତ୍ତ୍ୟକ୍ତ ହୋଇ ତାର କୃଷ୍ଣସାଗର ନୌବହର ସାହାଯ୍ୟରେ ତୁର୍କୀର ନୌବହରକୁ ସିନୋପଠାରେ ସମ୍ପୂର୍ଣ୍ଣରୂପେ ଧ୍ୱଂସକରି ପ୍ରତିଶୋଧ ନେଇଥିଲା । 'ସିନୋପ ହତ୍ୟାକାଣ୍ଡ' ('Massacre of Sinope') ବୋଲି କୁହାଯାଉଥିବା ଏହି ଘଟଣା ଇଂଲଣ୍ଡର ଜନମତକୁ ଉତ୍ତେଜିତ କରିଥିଲା । ଫ୍ରାନ୍ସ ମଧ୍ୟ ରୁଷିଆ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ପ୍ରସ୍ତୁତ ଥିଲା । ସୁତରାଂ ଇଂଲଣ୍ଡ ଏବଂ ଫ୍ରାନ୍ସ ଉଭୟ ମିଶି ରୁଷିଆ ତାର ଦଖଲରେ ଥିବା ରାଜ୍ୟ ଦୁଇଟିକୁ ଛାଡ଼ି ଚାଲିଯିବାପାଇଁ ଦାବିକରି ତା' ନିକଟକୁ ଏକ ଚରମପତ୍ର ପଠାଇଥିଲେ । ରୁଷିଆ ସେ ଦାବି ଅଗ୍ରାହ୍ୟ କରିଦେବାରୁ ଉଭୟ ଇଂଲଣ୍ଡ ଏବଂ ଫ୍ରାନ୍ସ ତୁର୍କୀ ସହିତ ଏକ ଚୁକ୍ତି ସ୍ୱାକ୍ଷର କରିଥିଲେ ଏବଂ ରୁଷିଆ ବିରୁଦ୍ଧରେ ୧୮୫୪ ମସିହାରେ ଯୁଦ୍ଧ ଘୋଷଣା କରିଥିଲେ । ଏହାର ପରବର୍ଷ ମିତ୍ରଶକ୍ତିମାନେ ପିଡମଣ୍ଟ-ସାର୍ଡିନିଆର ସୈନ୍ୟମାନଙ୍କ ସାହାଯ୍ୟ ଲାଭକରି ରୁଷିଆ ବିରୁଦ୍ଧରେ ସେମାନଙ୍କର ଶକ୍ତି ବୃଦ୍ଧି

କରିଥିଲେ । ଏହି ରାଜ୍ୟର ରାଜା ଏକ ବୃହତ୍‌ଶକ୍ତି, ବିଶେଷତଃ ଫ୍ରାନ୍‌ସର ବନ୍ଧୁତା ଲାଭକରିବା ଆଶାରେ କ୍ରିମିୟା ଯୁଦ୍ଧରେ ଯୋଗ ଦେଇଥିଲେ । ତେଣୁ ଏହି ଯୁଦ୍ଧରେ ଏକ ପକ୍ଷରେ ରୁଷିଆ କେବଳ ଅବତୀର୍ଣ୍ଣ ହୋଇଥିବା ସ୍ଥଳେ ଅନ୍ୟ ପକ୍ଷରେ ଇଂଲଣ୍ଡ, ଫ୍ରାନ୍‌ସ, ତୁର୍କୀ ଏବଂ ସାର୍ଡିନିଆ ଅବତୀର୍ଣ୍ଣ ହୋଇଥିଲେ ।

କ୍ରିମିୟା ଯୁଦ୍ଧରେ ଏହି ଚତୁଃଶକ୍ତିମେଣ୍ଟର ପ୍ରଧାନ ଲକ୍ଷ୍ୟ ଥିଲା, ରୁଷିଆକୁ ଓ୍ୱାଲଚିଆ ଏବଂ ମୋଲଡାଭିଆରୁ ବହିଷ୍କାର କରିବା, ସେହି ଲକ୍ଷ୍ୟ ଅବିଳମ୍ବେ ପୂରଣ ହୋଇଥିଲା । ତୁର୍କୀମାନେ ନିର୍ଭୀକଭାବରେ ସିଲିଷ୍ଟ୍ରିୟା ରକ୍ଷାକରିବା ଫଳରେ ଜାର୍ ନିକୋଲାସଙ୍କ ଗତିରୋଧ କରାଯାଇଥିଲା । ଅଷ୍ଟ୍ରିୟାର ଯୁଦ୍ଧପ୍ରିୟ ମନୋଭାବ ନିକୋଲାସଙ୍କ ମନରେ ମଧ୍ୟ ଭୟ ସଞ୍ଚାର କରାଇଥିଲା । ଏହିସବୁ କାରଣରୁ ନିକୋଲାସ ଡାନ୍ୟୁବୀୟ ରାଜ୍ୟଦ୍ୱୟରୁ ଅପସରି ଯାଇଥିଲେ । ମିତ୍ରଶକ୍ତିମାନେ ତୁର୍କୀକୁ ରୁଷିଆର ଧମକରୁ ରକ୍ଷାକରିବାପାଇଁ ତାହାର ଶକ୍ତି ପଙ୍ଗୁକରିଦେବାକୁ ଚାହିଁଥିଲେ । ତେଣୁ ସେମାନେ ସେବାଷ୍ଟପୋଲ ଅଧିକାର କରିବାକୁ ନିଷ୍ପତ୍ତି କରିଥିଲେ; କାରଣ ତାହା ଥିଲା ପ୍ରାଚ୍ୟରେ ରୁଷିଆ ଶକ୍ତିର ହୃତ୍‌ପିଣ୍ଡ । ମିତ୍ରଶକ୍ତିମାନେ କ୍ରିମିୟାରେ ଅବତରଣ କରି ସେବାଷ୍ଟପୋଲ ଆଡ଼କୁ ଅଗ୍ରସର ହୋଇଥିଲେ । ସେମାନେ ରୁଷିଆର ସୈନ୍ୟବାହିନୀକୁ ଆଲମା ଯୁଦ୍ଧରେ ପରାସ୍ତକରି ସେବାଷ୍ଟପୋଲ ଅବରୋଧ କରିଥିଲେ । ରୁଷିଆର ସୈନ୍ୟବାହିନୀ ମିତ୍ରଶକ୍ତିମାନଙ୍କୁ ଅବରୋଧ ଉଠାଇନେବାପାଇଁ ବାଧ୍ୟକରିବା ଉଦ୍ଦେଶ୍ୟରେ ସେମାନଙ୍କ ଉପରେ ବିଶେଷ ଚାପ ପକାଇଥିଲେ ମଧ୍ୟ ସେଥିରେ କୃତକାର୍ଯ୍ୟ ହୋଇନଥିଲେ । ଇତିମଧ୍ୟରେ ରୁଷିଆର ସୈନ୍ୟବାହିନୀ ଅନ୍ୟାନ୍ୟ ଯୁଦ୍ଧରେ ପରାଜୟ ସ୍ୱୀକାର କରିଥିଲେ । କ୍ରିମିୟା ଯୁଦ୍ଧର ମୁଖ୍ୟକାରଣଦ୍ୱାର ଜାର୍ ପ୍ରଥମ ନିକୋଲାସଙ୍କର ହଠାତ୍ ମୃତ୍ୟୁ ହେବା ଫଳରେ ଶାନ୍ତିପ୍ରତିଷ୍ଠାପାଇଁ ଆଲୋଚନାର ବାଟ ଫିଟିଲା । ବର୍ଷେକାଳ ରୁଷିଆର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସେବାଷ୍ଟପୋଲର ପତନ ହୋଇଥିଲା ଏବଂ ଏହା ପ୍ରକୃତପକ୍ଷେ ୧୮୫୫ ମସିହାରେ କ୍ରିମିୟା ଯୁଦ୍ଧର ଅବସାନ ଘଟାଇଥିଲା ।

## ପ୍ୟାରିସ ସନ୍ଧି (୧୮୫୬) ( Peace of Paris-1856 )

ପ୍ୟାରିସ ସନ୍ଧି ସ୍ୱାକ୍ଷର ଫଳରେ ଆନୁଷ୍ଠାନିକ ଭାବେ କ୍ରିମିୟା ଯୁଦ୍ଧର ଅବସାନ ଘଟିଲା । ରୁଷିଆ, ଓ୍ୱାଲଚିଆ ଓ ମୋଲଡାଭିଆ ଉପରୁ ତାହାର ଅଭିଭାବକତ୍ୱ ହରାଇଥିଲା । ଏହି ଡାନ୍ୟୁବୀୟ ରାଜ୍ୟ ଦୁଇଟିରେ ତୁର୍କୀର ସାର୍ବଭୌମତ୍ୱକୁ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ସେମାନଙ୍କୁ ସ୍ୱ-ଶାସିତ ରାଜ୍ୟରେ ପରିଣତ କରାଗଲା ଏବଂ ଇଉରୋପୀୟ ଶକ୍ତିମାନେ ଏହି ଦୁଇଟି ରାଜ୍ୟର ସ୍ଥିତିକୁ ବଜାୟ ରଖିବା ପାଇଁ ସାମୂହିକ ପ୍ରତିଶ୍ରୁତି ଦେଇଥିଲେ । ରୁଷିଆ ତୁର୍କୀର ସଂସ୍କାରବିରୋଧୀ ଗ୍ରୀକ୍-ଖ୍ରୀଷ୍ଟିଆନ ପ୍ରଜାମାନଙ୍କ

ଉପରୁ ଅଭିଭାବକତ୍ୱର ଦାବି ପ୍ରତ୍ୟାହାର କରିନେବାକୁ ବାଧ୍ୟ ହୋଇଥିଲା । କୃଷ୍ଣସାଗରକୁ ନିରପେକ୍ଷ ବୋଲି ଘୋଷଣା କରାଗଲା ଏବଂ ଯେକୌଣସି ଦେଶର ବାଣିଜ୍ୟପୋତ ଏହା ମଧ୍ୟରେ ଚଳାଚଳ କରିପାରିବ ବୋଲି ମଧ୍ୟ ନିଷ୍ପତ୍ତି କରାଗଲା । ରୁଷିଆ ବା ତୁର୍କୀ କେହି ଏହି ସାଗରର ଉପକୂଳରେ ସୈନ୍ୟ ମୋତାୟନ ବା ଦୁର୍ଗ ନିର୍ମାଣ କରିପାରିବେ ନାହିଁ । ଦକ୍ଷିଣ ରୁମାନିୟାକୁ ବେସାରବିୟା ପ୍ରତ୍ୟର୍ପଣ କରିବା ଫଳରେ ତାହାର ସୀମା ଡାନ୍ୟୁବ୍ ନଦୀ ତୀରରୁ ଅପସାରିତ ହୋଇଥିଲା । ଏହାଛଡ଼ା ତୁର୍କୀକୁ ଇଉରୋପୀୟ ଶକ୍ତି-ସଂଗଠନରେ ଯୋଗଦାନ କରିବାକୁ ଏବଂ ଆନ୍ତର୍ଜାତିକ ଆଇନକାନୁନ ଅଧୀନରେ ରହିବାକୁ ଦିଆଗଲା । ଇଉରୋପୀୟଶକ୍ତିମାନେ ତୁର୍କୀର ସ୍ୱାଧୀନତା ଏବଂ ଅଖଣ୍ଡତା ବଜାୟରଖିବା ଦାୟିତ୍ୱ ଗ୍ରହଣ କରିଥିଲେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ଏହି ସନ୍ଧିର ସର୍ତ୍ତ ଅନୁସାରେ ରୁଷିଆର ଆଞ୍ଚଳିକ ଲମ୍ବ-ପ୍ରସାର ବ୍ୟାହତ କରାହେଲା ଏବଂ ଏତଦ୍ୱାରା ରୁଷିଆର ମର୍ଯ୍ୟାଦା କେତେକ ପରିମାଣରେ କ୍ଷୁଣ୍ଣ ହେଲା; କିନ୍ତୁ ତୁର୍କୀ ନବଜୀବନ ଲାଭକଲା । ତୃତୀୟ ନେପୋଲିୟନ୍ ଆନ୍ତର୍ଜାତିକ କ୍ଷେତ୍ରରେ ଯଥେଷ୍ଟ ସୁନାମ ଅର୍ଜନକଲେ । ଇଂଲଣ୍ଡ କ୍ରିମିୟାଯୁଦ୍ଧରେ ଯୋଗଦେବା ଫଳରେ ତାହାର ଜାତୀୟଋଣ ବୃଦ୍ଧିପାଇଲା ଏବଂ ଅଷ୍ଟ୍ରିୟା ରୁଷିୟାର ଚିରଶତ୍ରୁରେ ପରିଣତ ହେଲା ।

ଏ କଥା ନିଃସନ୍ଦେହରେ କୁହାଯାଇପାରେ ଯେ କ୍ରିମିୟାଯୁଦ୍ଧ ପୂର୍ବାଞ୍ଚଳ ସମସ୍ୟାର ଏକ ବିଶିଷ୍ଟ ଅଧ୍ୟାୟ ଏବଂ ଏହା ଊନବିଂଶ ଶତାବ୍ଦୀର ଅତି ଜଟିଳ ଏବଂ ଗୁରୁତ୍ୱପୂର୍ଣ୍ଣ ସମସ୍ୟାଗୁଡ଼ିକର ଏକ ପୂର୍ବାଭାସ ମାତ୍ର । ଏହି ଯୁଦ୍ଧର ପରୋକ୍ଷ ଫଳାଫଳ ଥିଲା ସୁଦୂରପ୍ରସାରୀ । କୁହାଯାଏ ଯେ କ୍ରିମିୟା ପଙ୍କରୁ ନୂତନ ଇଟାଲୀ ଏବଂ ପରୋକ୍ଷଭାବରେ ନୂତନ ଜର୍ମାନୀ ଗଠନ କରାଯାଇଥିଲା ।' ପ୍ରକୃତରେ ଏହି ଯୁଦ୍ଧରୁ ଇଟାଲୀର ଏକତ୍ରୀକରଣ ଇତିହାସ ଆରମ୍ଭ ହୋଇଥିଲା ଏବଂ କେତେକ ପରିମାଣରେ ଜର୍ମାନୀ ଏକତ୍ରୀକରଣ ସୂଚନା ମିଳିଥିଲା । ଏହି ଯୁଦ୍ଧରେ ସାର୍ଡିନିୟାର ମନ୍ତ୍ରୀ କାଭୁର ଯୋଗଦାନକରି ଇଟାଲୀ ସମସ୍ୟାକୁ ଏକ ଆନ୍ତର୍ଜାତିକ ସମସ୍ୟାରେ ପରିଣତକରିବା ସଙ୍ଗେ ସଙ୍ଗେ ଫ୍ରାନ୍ସର ସାହାଯ୍ୟ ଲାଭକରିବାକୁ ସମର୍ଥ ହୋଇଥିଲେ । ରୁଷିଆ ଏ ଯୁଦ୍ଧରେ ପରାଜିତ ହୋଇ ତାହାର ହୃତଗୌରବ ଫେରିପାଇବା ଉଦ୍ଦେଶ୍ୟରେ ଏସିୟା ଅଭିମୁଖରେ ରାଜ୍ୟ ସଂପ୍ରସାରଣ ପାଇଁ ଯୋଜନା ପ୍ରସ୍ତୁତ କରିଥିଲା । ଏହି ଯୁଦ୍ଧ ଫଳରେ ରୁଷିଆର ଆଭ୍ୟନ୍ତରୀଣ ଏବଂ ବୈଦେଶିକ ନୀତିର ଆମୂଳଚୂଳ ପରିବର୍ତ୍ତନ ହୋଇଥିଲା । ରୁଷିଆର ଆଭ୍ୟନ୍ତରୀଣ ବ୍ୟାପାରରେ ବ୍ୟାପକ ସଂସ୍କାରମୂଳକ ପରିକଳ୍ପନା କରାଯାଇଥିଲା । ଭିଏନା କଂଗ୍ରେସ-କର୍ତ୍ତୃକ ପ୍ରତିଷ୍ଠିତ ରାଷ୍ଟ୍ରବ୍ୟବସ୍ଥାର ଭିତ୍ତି ଦୋହଲିଯାଇଥିଲା । ଅଷ୍ଟ୍ରିୟା ଏହି ଯୁଦ୍ଧରେ ନିରପେକ୍ଷ ରହିଥିଲା ସତ; କିନ୍ତୁ ରୁଷିଆର ସଙ୍କଟମୟ ମୁହୂର୍ତ୍ତରେ ଅଷ୍ଟ୍ରିୟା ତାର ବିପକ୍ଷରେ ଯୁଦ୍ଧରେ ଯୋଗଦେବ ବୋଲି ଭୟ ଦେଖାଇ ରୁଷିଆର ପରିସ୍ଥିତିକୁ ଅଧିକ ଜଟିଳ କରିଦେଇଥିଲା । ଏହି କାରଣରୁ ରୁଷିଆ ଅଷ୍ଟ୍ରିୟାକୁ ନିଜର ଶତ୍ରୁ ବୋଲି ମନେକଲା । ଅଷ୍ଟ୍ରିୟାର ହଙ୍ଗେରୀ ରାଜ୍ୟ ଯେତେବେଳେ ୧୮୪୮-୪୯ ରେ ବିଦ୍ରୋହ କଲା, ଯେତେବେଳେ

ଅଷ୍ଟ୍ରିୟା ରୁଷିଆର ସାହାଯ୍ୟରେ ସେ ବିଦ୍ରୋହ ଦମନକରିବାକୁ ସମର୍ଥ ହୋଇଥିଲା । ତେଣୁ ରୁଷିଆ କ୍ରିମିଆଯୁଦ୍ଧରେ ବ୍ୟାପୃତ ହେଲାବେଳେ ଆଶାକରିଥିଲା ଯେ ଅଷ୍ଟ୍ରିୟା ତାକୁ ସାହାଯ୍ୟ ଦେବ; କିନ୍ତୁ କ୍ରିମିଆ ଯୁଦ୍ଧରେ ଅଷ୍ଟ୍ରିୟା, ରୁଷିଆ ପ୍ରତି ବିଶ୍ୱାସଘାତକତା କରିବା ଫଳରେ ରୁଷିଆ ଅଷ୍ଟ୍ରିୟାର ଶତ୍ରୁ ପ୍ରୁସିୟା ସହିତ ମିତ୍ରତା ପାଶରେ ଆବଦ୍ଧ ହେଲା । ଜର୍ମାନୀର ଏକତ୍ରୀକରଣ ସମୟରେ ଯେତେବେଳେ ପ୍ରୁସିୟା ଅଷ୍ଟ୍ରିୟା ସହିତ ଯୁଦ୍ଧରେ ବ୍ୟାପୃତ ଥିଲା ସେତେବେଳେ ରୁଷିଆ ନିରପେକ୍ଷ ନୀତି ଅବଲମ୍ବନ କରି ପ୍ରୁସିୟାକୁ ଜୟଯୁକ୍ତ କରିବାପାଇଁ ପରୋକ୍ଷ ସାହାଯ୍ୟ କରିଥିଲା । ପ୍ରୁସିୟାର ବିଜୟ ଫଳରେ ଜର୍ମାନୀ ଏକତ୍ରୀକରଣ ପଥ ସୁଗମ ହୋଇଥିଲା ।

କେତେକ କ୍ରିମିଆଯୁଦ୍ଧକୁ ଅତି ଅନାବଶ୍ୟକ ଏବଂ ଅଯୌକ୍ତିକ ଯୁଦ୍ଧ ବୋଲି ମତ ଦେଇଛନ୍ତି । କେତେକ କହନ୍ତି ଯେ ୧୮୪୧ ମସିହା ପରି ୧୮୫୪ ମସିହାରେ ମଧ୍ୟ 'ଇଂଲଣ୍ଡ ଭୁଲ ଘୋଡ଼ାକୁ ସମର୍ଥନ କରିଥିଲା ।' ଅର୍ଥାତ୍ ଇଂଲଣ୍ଡ, କ୍ଷୀୟମାଣ ତୁର୍କ ସାମ୍ରାଜ୍ୟର ଅଖଣ୍ଡତା ବଜାୟରଖିବା ଉଦ୍ଦେଶ୍ୟରେ ତୁର୍କୀ ସପକ୍ଷରେ କ୍ରିମିଆ ଯୁଦ୍ଧରେ ଯୋଗଦେଇଥିଲା । ଇଂଲଣ୍ଡର ବିଶ୍ୱାସ ଥିଲା ଯେ ତୁର୍କୀ ସଂସ୍କାରମାନ ପ୍ରବର୍ତ୍ତନ କରି ତାର ବଲକାନ ଅଞ୍ଚଳର ଖ୍ରୀଷ୍ଟିଆନ ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିପାରିବ ଏବଂ ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକ ସମାଧାନ କରି ନିଜକୁ ଏକ ଶକ୍ତିଶାଳୀ ସାମ୍ରାଜ୍ୟରୂପେ ପୁନଃ ପ୍ରତିଷ୍ଠା କରିପାରିବ । ତୁର୍କୀ ମଧ୍ୟ ତାର ପ୍ରଶାସନିକ ପଦ୍ଧତିରେ ସଂସ୍କାର ପ୍ରବର୍ତ୍ତନ କରିବ ବୋଲି ପ୍ରତିଶ୍ରୁତି ଦେଇଥିଲା; କିନ୍ତୁ ତୁର୍କୀ ତାର ପ୍ରତିଶ୍ରୁତି ରକ୍ଷା କରିନଥିଲା । ତେଣୁ ବଲକାନ ଅଞ୍ଚଳର ଖ୍ରୀଷ୍ଟିଆନମାନେ ହତାଶ ହୋଇପଡ଼ିଥିଲେ ଏବଂ ତୁର୍କୀର ଅତ୍ୟାଚାରୀ ଶାସନରୁ ମୁକ୍ତ ପାଇବାପାଇଁ ସଂଗ୍ରାମ ଚଳାଇଥିଲେ । ଫଳରେ ପ୍ୟାରିସ ସନ୍ଧିର କେତେ ବର୍ଷ ମଧ୍ୟରେ ତୁର୍କୀ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇଯାଇଥିଲା । ତା' ଛଡ଼ା କ୍ରିମିଆଯୁଦ୍ଧ କୌଣସି ଦୀର୍ଘକାଳସ୍ଥାୟୀ ବ୍ୟବସ୍ଥା କରିବାକୁ ସକ୍ଷମ ହୋଇନଥିଲା କି ପ୍ରାଚ୍ୟ ସମସ୍ୟାର ସମାଧାନ କରିପାରି ନଥିଲା; କିନ୍ତୁ ଏକଥା ଅସ୍ୱୀକାର କରିହେବନାହିଁ ଯେ କ୍ରିମିଆଯୁଦ୍ଧ ନ ହୋଇଥିଲେ ବଲକାନ ଅଞ୍ଚଳଗୁଡ଼ିକର ସ୍ୱାଧୀନତା ସମ୍ଭବ ହୋଇ ନ ଥାନ୍ତା । ଅନ୍ୟପକ୍ଷରେ ରୁଷିଆ କନଷ୍ଟାଣ୍ଟିନୋପଲ ପର୍ଯ୍ୟନ୍ତ ତୁର୍କୀର ଅଞ୍ଚଳମାନ ଦଖଲ କରିନେଇଥାନ୍ତା । କ୍ରିମିଆଯୁଦ୍ଧ ଫଳରେ ଇଟାଲୀର ଐକ୍ୟ ପ୍ରତିଷ୍ଠିତ ହୋଇଥିଲା ଏବଂ ପରୋକ୍ଷଭାବରେ ଏ ଯୁଦ୍ଧ ଜର୍ମାନୀର ଏକତ୍ରୀକରଣ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା । ତେଣୁ କ୍ରିମିଆଯୁଦ୍ଧକୁ ଅନାବଶ୍ୟକ ଏବଂ ଅଯୌକ୍ତିକ କହିବା ସମୀଚୀନ ହେବନାହିଁ ।

## ୧୮୭୮ର ବର୍ଲିନ କଂଗ୍ରେସ ( Congress of Berlin-1878 )

୧୮୫୬ ମସିହାରେ ପ୍ୟାରିସ୍ ସନ୍ଧିଦ୍ୱାରା କ୍ରିମିଆଯୁଦ୍ଧର ଅବସାନ ଘଟିଲା; କିନ୍ତୁ ସେହି ସନ୍ଧିବେଳେ ଇଉରୋପର ଦୂରଦର୍ଶୀ ରାଜନୀତିଜ୍ଞମାନେ ଇଉରୋପରେ ତୁର୍କ ସାମ୍ରାଜ୍ୟର

ଧ୍ୱଂସ ଯେ ଅବଶ୍ୟମ୍ଭାବୀ ତାହା ସ୍ୱୀକାର କରୁନଥିଲେ । ଯେଉଁସବୁ ଇଉରୋପୀୟ ଦେଶ ସେହି ସନ୍ଧିରେ ଅଂଶ ଗ୍ରହଣ କରିଥିଲେ, ସେମାନେ ମୋଟେ ଉପଲବ୍ଧି କରିପାରି ନ ଥିଲେ ଯେ ତୁର୍କୀର ଆଭ୍ୟନ୍ତରୀଣ ଦୁର୍ବଳତା ବାହ୍ୟିକ ସାହାଯ୍ୟଦ୍ୱାରା ଦୂରୀଭୂତ କରିବା ସମ୍ଭବ ନୁହେଁ । ବିଭିନ୍ନ ବିଦେଶୀ ଶକ୍ତିଗୁଡ଼ିକ ବିଶେଷତଃ ଇଂଲଣ୍ଡ ତୁର୍କୀକୁ ରକ୍ଷାକରିବାପାଇଁ ନାନାପ୍ରକାର ଉଦ୍ୟମ ଚଳାଇଥିଲେ ମଧ୍ୟ ତୁର୍କୀର ଅଖଣ୍ଡତା ଦୀର୍ଘଦିନ ବଜାୟରଖିବା ଇଂଲଣ୍ଡ କିମ୍ବା ଅନ୍ୟ ବିଦେଶୀ ଶକ୍ତିମାନଙ୍କ ପକ୍ଷରେ ସମ୍ଭବ ହୋଇନଥିଲା । ଊନବିଂଶ ଶତାବ୍ଦୀର ଜାତୀୟ ଜାଗରଣ ବଲ୍‌କାନ ଉପଦ୍ୱୀପ ଉପରେ ବିଶେଷ ପ୍ରଭାବ ପକାଇପାରିଥିଲା ଏବଂ ତୁର୍କୀର ଶାସନାଧୀନରେ ଥିବା ସେଠାକାର ଖ୍ରୀଷ୍ଟିୟାନ ଜାତିଗୁଡ଼ିକ ସେଥିରୁ ପ୍ରେରଣା ପାଇ ସେମାନଙ୍କର ଦାସତ୍ୱଶୃଙ୍ଖଳ ଛିନ୍ନକରିବାକୁ ଅସ୍ଥିର ହୋଇପଡ଼ିଥିଲେ । ତେଣୁ ଇଉରୋପୀୟ ଶକ୍ତି-ସଂଘର ପ୍ରକାଶ୍ୟ ସହାୟତା ସତ୍ତ୍ୱେ ତୁର୍କ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହେବାକୁ ଆରମ୍ଭକଲା । ଶେଷରେ ଇଉରୋପୀୟ ରାଷ୍ଟ୍ରମାନେ ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଦେଖିପାରି ତୁର୍କ ସାମ୍ରାଜ୍ୟରେ ଯେଉଁସବୁ ବିଷୟ କାର୍ଯ୍ୟରେ ପରିଣତ ହୋଇସାରିଥିଲା, ସେସବୁ ବିଷୟକୁ ଅନିଚ୍ଛା ସହକାରେ ସ୍ୱୀକୃତି ପ୍ରଦାନ କରିଥିଲେ । ୧୮୫୬-୧୮୭୮ ମସିହା ମଧ୍ୟରେ ପ୍ୟାରିସ ସନ୍ଧିର ସର୍ତ୍ତଗୁଡ଼ିକ ଭିନ୍ନ ଭିନ୍ନ କାରଣରୁ ଭଙ୍ଗ କରାଯାଇଥିଲା ଏବଂ କେତେକ ଇଉରୋପୀୟ ଶକ୍ତିଙ୍କର ଏଥିପ୍ରତି ପ୍ରଚ୍ଛନ୍ନ ସହାନୁଭୂତି ଥିଲା ।

ପ୍ୟାରିସ୍ କଂଗ୍ରେସ ଶେଷହେବା ପରେ ପ୍ରାଚ୍ୟ ସମସ୍ୟା ପୁନର୍ବାର ଦେଖାଦେଲା ଯେତେବେଳେ ମଲଡାଭିଆ ଏବଂ ଓ୍ୱାଲାଚିଆରେ ପ୍ରଥମେ ଗଣ୍ଡଗୋଳ ସୃଷ୍ଟିହେଲା । ଏହି ରାଜ୍ୟ ଦୁଇଟି ପ୍ୟାରିସ୍ ସନ୍ଧିର ସର୍ତ୍ତକୁ ଭ୍ରୂକ୍ଷେପ ନ କରି ଏକାଠି ମିଶି ଗୋଟିଏ ରାଜ୍ୟରେ ପରିଣତ ହୋଇଥିଲେ ଏବଂ ସେହି ରାଜ୍ୟକୁ ରୁମାନିଆ କୁହାଗଲା । ଇଉରୋପୀୟ ଶକ୍ତିମାନେ ତାକୁ ୧୮୬୧ ମସିହାରେ ସ୍ୱୀକୃତି ଦେଇଥିଲେ । ଫଳରେ ରୁମାନିଆ ଏକ ସ୍ୱାଧୀନ ରାଷ୍ଟ୍ରରୂପେ ଜନ୍ମ ଲାଭକଲା ଏବଂ ଏଥିରେ ବାସ କରୁଥିବା ରୁମାନମାନେ ଏକ ନୂତନ ଜାତି ରୂପେ ଗଣ୍ୟ ହେଲେ । ସର୍ବିଆ ମଧ୍ୟ ଇଂଲଣ୍ଡ ଏବଂ ଅଷ୍ଟ୍ରିଆ ସାହାଯ୍ୟରେ ତୁର୍କ ସୈନ୍ୟଦଳ-ଗୁଡ଼ିକୁ ତାହାର ଦୁର୍ଗମାନଙ୍କରୁ ବହିଷ୍କାର କରିଦେଲା । ସୁତରାଂ ସର୍ବିଆ ଆନୁଷ୍ଠାନିକ ଭାବରେ ସ୍ୱାଧୀନତା ଲାଭ କରିଥିଲେ ମଧ୍ୟ ବାସ୍ତବରେ ସ୍ୱାଧୀନତା ଲାଭ କରିନଥିଲା । କ୍ରିମିଆ ଯୁଦ୍ଧରେ ରୁଷିଆ ପରାଜିତ ହେବା ଫଳରେ ଯେଉଁ ମାନସିକ ଅଶାନ୍ତି ଭୋଗୁଥିଲା, ସେଥିରୁ ମୁକ୍ତିପାଇ ପୂର୍ବାବସ୍ଥାକୁ ଫେରିଆସିଲା ପରେ ତୁର୍କ ସାମ୍ରାଜ୍ୟ ବ୍ୟାପାରରେ ପୁନର୍ବାର ହସ୍ତକ୍ଷେପ କରିଥିଲା । ସେ ୧୮୬୫ ମସିହାରେ କ୍ରିଶ୍ଚାନମାନଙ୍କୁ ତୁର୍କସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ପ୍ରୋତ୍ସାହିତ କରିଥିଲା ଏବଂ ଧର୍ମସ୍ୱାତନ୍ତ୍ର୍ୟ ଲାଭକରିବା ପାଇଁ ୧୮୭୦ ମସିହାରେ ବୁଲଗାରମାନଙ୍କୁ ସାହାଯ୍ୟ କରିଥିଲା । ୧୮୭୧ ମସିହାରେ ଫ୍ରାନ୍ସ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ ଚାଲିଥିଲା ବେଳେ ରୁଷିଆ ବିସମାର୍କଙ୍କଦ୍ୱାରା ଉତ୍ସାହିତ ହୋଇ ପ୍ୟାରିସ ସନ୍ଧିର କୃଷ୍ଣସାଗର ସର୍ତ୍ତଗୁଡ଼ିକ ପ୍ରତ୍ୟାଖ୍ୟାନ କରିଦେଇଥିଲା । ସୁତରାଂ ସେ ସେବାଷ୍ଟପୋଲ୍‌କୁ

ପୁନର୍ବାର ସୁଦୃଢ଼ କରିବାପାଇଁ ଏବଂ କୃଷ୍ଣସାଗରରେ ଏକ ନୌବହର ରଖିବାପାଇଁ ଅଧିକାର ପାଇଥିଲା । ଇଂଲଣ୍ଡ ଏଥିରେ ପ୍ରତିବାଦ କରିଥିଲା ସତ; କିନ୍ତୁ ତାହା ବୃଥା ହୋଇଗଲା । ସେ ଯାହାହେଉ ରୁଷିଆ ୧୮୭୭ ମସିହାରେ ତୁର୍କୀ ସହିତ ଯୁଦ୍ଧ କରିବ ବୋଲି ନିଷ୍ପତ୍ତି କରିଥିଲା ।

## ରୁଷ-ତୁର୍କ ଯୁଦ୍ଧ (୧୮୭୭-୭୮)

୧୮୭୫ ମସିହାରେ ପୂର୍ବାଞ୍ଚଳ ସମସ୍ୟା ଗୁରୁତର ଆକାର ଧାରଣକରିଥିଲା । ବଲକାନ୍ ଉପଦ୍ୱୀପରେ ଦୁଇଟି ବିଷୟ ସ୍ପଷ୍ଟ ହୋଇଯାଇଥିଲା । ପ୍ରଥମେ ତୁର୍କୀର ଅଧୀନରାଷ୍ଟ୍ରଗୁଡ଼ିକ ମଧ୍ୟରେ ଜାତୀୟ ଚେତନା ବୃଦ୍ଧିପାଇବା ଫଳରେ ସେମାନେ ସ୍ୱାଧୀନତା ପାଇବା ପାଇଁ ଅତିଶୟ ବ୍ୟାକୁଳ ହୋଇପଡ଼ିଥିଲେ । ସର୍ବ, ଗ୍ରୀକ୍ ଓ ରୁମାନମାନେ ତୁର୍କ ସରକାର ବିରୁଦ୍ଧରେ ଆନ୍ଦୋଳନ କରି ଆଂଶିକ ବା ପୂର୍ଣ୍ଣ ସ୍ୱାଧୀନତା ଲାଭକରିଥିବାରୁ ସେମାନଙ୍କଠାରୁ ପ୍ରେରଣା ପାଇ ବଲ୍‌କାନ ଅଞ୍ଚଳର ଅନ୍ୟ ସବୁ ଅଣତୁର୍କ ଅଧିବାସୀ ସ୍ୱାଧୀନତା ପାଇବା ଆଶାରେ ସେମାନଙ୍କ ପରି ଆନ୍ଦୋଳନର ପନ୍ଥା ଅନୁସରଣ କରିଥିଲେ । ବଲ୍‌କାନର ବିଭିନ୍ନ ସ୍ଲାଭ୍ ଜାତିମାନଙ୍କ ମଧ୍ୟରେ ଜାତୀୟ ମନୋଭାବ ଅତି ଦୃଢ଼ ଥିଲା ଏବଂ ସେମାନେ କ୍ରମେ କ୍ରମେ ରୁଷିଆ, ଅଷ୍ଟ୍ରିୟା ଓ ପୋଲଣ୍ଡ ରାଜ୍ୟଗୁଡ଼ିକର ସ୍ଲାଭ୍‌ମାନଙ୍କ ସହିତ ସେମାନଙ୍କର ଜାତିଗତ ଏବଂ ଗୋଷ୍ଠୀଗତ ସମ୍ପର୍କ ବିଷୟରେ ସଚେତନ ହୋଇଥିଲେ । ରୁଷିଆ ସକଳ-ସ୍ଲାଭବାଦ (Pan-Slavism)କୁ ଉତ୍ସାହିତ କରିଥିଲା ଏବଂ ତାହାର ପ୍ରତିନିଧିମାନେ ଦକ୍ଷିଣରେ ବାସକରୁଥିବା ବଲକାନ ସ୍ଲାଭ୍‌ମାନଙ୍କର ଜାତୀୟ ଚେତନା ଉଦ୍ଦୀପିତ କରିବାପାଇଁ ନିରବଚ୍ଛିନ୍ନ ପ୍ରଚାର ଚଳାଇଥିଲେ । ସାର୍ବିଆ ଦକ୍ଷିଣରେ ବାସକରୁଥିବା ସ୍ଲାଭ୍‌ମାନଙ୍କର ବିକ୍ଷୋଭର ନେତୃତ୍ୱ ଗ୍ରହଣ କରିଥିବା ମନେହେଉଥିଲା; କାରଣ ସେ ସର୍ବମାନଙ୍କୁ ଆତ୍ମୀୟ ଲୋକମାନଙ୍କୁ ନିଜ ଅଧୀନରେ ଏକତ୍ରକରିବାର ସ୍ୱପ୍ନ ଦେଖୁଥିଲା ।

ସକଳ-ସ୍ଲାଭ୍‌ବାଦ ଏବଂ ଜାତୀୟ ମନୋଭାବ ବୃଦ୍ଧି ବ୍ୟତୀତ ବଲ୍‌କାନରେ ଅନ୍ୟ ଏକ ଘଟଣା ଯୋଗୁ ସଙ୍କଟ ଘନେଇ ଆସିଥିଲା । ଏ ଘଟଣାଟି ହେଲା ତୁର୍କୀର ପୁନରୁଦ୍ଧାର ଓ ସଂସ୍କାର ବିଷୟରେ ଯେଉଁ ଆଶା ପୋଷଣ କରାଯାଇଥିଲା, ତାହା ନିରାଶାରେ ପରିଣତ ହୋଇଥିଲା । ତୁର୍କୀର ସୁଲତାନ ତାଙ୍କର ଖ୍ରୀଷ୍ଟାନ୍ ପ୍ରଜାମାନଙ୍କର ହିତପାଇଁ ପ୍ରତିଶ୍ରୁତି ଦେଇଥିବା ସଂସ୍କାରମାନ କାର୍ଯ୍ୟରେ ପରିଣତ କରିନଥିଲେ । ଅନ୍ୟ ଦିଗରେ ସୁଲତାନଙ୍କର ଅପାରଗତା ଓ ଅପବ୍ୟୟ ହେତୁ ପ୍ରଜାମାନଙ୍କ ଉପରେ ଏପରି କର ଭାର ଲଦି ଦିଆଯାଇଥିଲା ଯେ, ତାହା ସହ୍ୟ କରିବା ପାଇଁ ସେମାନଙ୍କର ଆଉ ଧୈର୍ଯ୍ୟ ନଥିଲା । କର ଅସୁଲକାରୀମାନଙ୍କର ବଳପୂର୍ବକ କର ଅାଦାୟ ବିରୁଦ୍ଧରେ ପ୍ରତିବାଦ ଜଣାଇ ୧୮୭୫ ମସିହା ଗ୍ରୀଷ୍ମଋତୁରେ ହାରଜଗୋଭିନା ପ୍ରଦେଶର କୃଷକମାନେ ତୁର୍କ ସରକାରଙ୍କ

ବିପକ୍ଷରେ ବିଦ୍ରୋହ କରିଥିଲେ । ସେହି କୃଷକମାନେ ସ୍ଲାଭ୍ ହୋଇଥିବାରୁ ସର୍ବିଆ, ବସନିଆ ଓ ମଣ୍ଟିନିଗ୍ରୋ ପ୍ରଭୃତି ସମୀପବର୍ତ୍ତୀ ଅଞ୍ଚଳମାନଙ୍କରେ ବାସ କରୁଥିବା ସ୍ଲାଭମାନେ ସେମାନଙ୍କ ପ୍ରତି ସହାନୁଭୂତି ଦେଖାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ସାହାଯ୍ୟ ମଧ୍ୟ କରିଥିଲେ । ଏହି ଆନ୍ଦୋଳନ ସୁଦୂର ବ୍ୟାପି ହେବାର ଆଶଙ୍କା ଦେଖାଦେବାରୁ ବୃହତ୍ ଶକ୍ତିମାନେ ତାକୁ ସୀମିତ କରିବା ଉଦ୍ଦେଶ୍ୟରେ ତୁର୍କିସରକାରଙ୍କ କୁଶାସନ ବିରୁଦ୍ଧରେ ପ୍ରତିବାଦ କରି ଆନ୍ଦ୍ରାସି ନୋଟ * ନାମକ ଏକ ମିଳିତ କୂଟନୈତିକ ପତ୍ର ୧୮୭୫ ମସିହା ଡିସେମ୍ବର ମାସରେ ସେହି ସରକାରଙ୍କ ନିକଟରେ ଉପସ୍ଥାପିତ କରିଥିଲେ । ଏହି ନୋଟରେ ସେମାନେ ଖ୍ରୀଷ୍ଟାନ ଧର୍ମକୁ ସ୍ୱୀକୃତି ଦେବାପାଇଁ ଏବଂ ପ୍ରତ୍ୟେକ ପ୍ରଦେଶରେ ନିର୍ବାଚିତ ପରିଷଦମାନ ପ୍ରତିଷ୍ଠା କରିବାପାଇଁ ଦାବି କରିଥିଲେ । ତା'ଛଡ଼ା ଯେଉଁ ବ୍ୟବସ୍ଥା ଅନୁଯାୟୀ କର ଅସୁଲକାରୀମାନଙ୍କୁ ଜିଲ୍ଲାଗୁଡ଼ିକ ଠିକା ଦିଆଯାଇଥିଲା, ତାହାର ଉଚ୍ଛେଦ ମଧ୍ୟ ଦାବି କରିଥିଲେ । ତୁର୍କ ସୁଲତାନ ଏହି ପ୍ରତିବାଦପତ୍ର ଗ୍ରହଣ କରିଥିଲେ ଏବଂ ସଂସ୍କାରମାନ ପ୍ରବର୍ତ୍ତନ କରିବାପାଇଁ ପ୍ରତିଶ୍ରୁତି ଦେଇଥିଲେ; କିନ୍ତୁ ବିଦ୍ରୋହୀମାନେ ମନେ କରିଥିଲେ ଯେ ଏହି ପ୍ରତିଶ୍ରୁତି ଯଥାର୍ଥ ନୁହେଁ, ତେଣୁ ସେମାନେ ସୁଲତାନଙ୍କଠାରୁ ଅଧିକ ଦୃଢ଼ ଜବାବ ଚାହିଁଥିଲେ ।

ଇତ୍ୟବସରରେ ତୁର୍କୀର ଏକ ବୃହତ୍ ପ୍ରଦେଶ, ବୁଲଗେରିଆରେ ବିଦ୍ରୋହର ପ୍ରତିଧ୍ୱନି ଶୁଣାଯାଇଥିଲା । ୧୮୭୬ ମସିହା ପ୍ରାରମ୍ଭରେ ବୁଲଗାରମାନେ ତୁର୍କୀ ବିରୁଦ୍ଧରେ ଅସ୍ତ୍ରଧାରଣ କରିଥିଲେ ଏବଂ କେତେକ ତୁର୍କ ପଦାଧିକାରୀମାନଙ୍କୁ ହତ୍ୟା କରିଥିଲେ । ବୃହତ୍ ଶକ୍ତିମାନେ ଏହି ବିଦ୍ରୋହ ଏକ ମହାସମରରେ ପରିଣତ ହେବାର ଆଶଙ୍କା କରି ତାର ପ୍ରତିରୋଧ ପାଇଁ 'ବର୍ଲିନ ମେମୋରାଣ୍ଡମ' ନାମକ ଏକ ସ୍ମାରକପତ୍ର ପ୍ରକାଶ କରିଥିଲେ ଏବଂ ସେଥିରେ ବଲ୍‌କାନ ଖ୍ରୀଷ୍ଟାନମାନଙ୍କୁ ବିଶେଷ ସୁବିଧା ଦେବା ପାଇଁ ତୁର୍କ ସରକାରଙ୍କୁ ଆହ୍ୱାନ ଦିଆଯାଇଥିଲା ଏବଂ ତାହା ନ ଦିଆଗଲେ ସଶସ୍ତ୍ର ହସ୍ତକ୍ଷେପର ଧମକ ଦିଆଯାଇଥିଲା । ତୁର୍କୀ ବିରୁଦ୍ଧରେ ବଳ ପ୍ରୟୋଗପାଇଁ ଯେକୌଣସି ପଦକ୍ଷେପ ନିଆଗଲେ ଇଂଲଣ୍ଡ ତାକୁ ସମର୍ଥନ କରିବନାହିଁ ବୋଲି ଘୋଷଣା କରିବାରୁ ସୁଲତାନ ସେଥିରେ ଉତ୍ସାହିତ ହୋଇ ଇଉରୋପର ପ୍ରତିବାଦକୁ ଉପେକ୍ଷା କରିଥିଲେ । ତୁର୍କ ସରକାର ବୁଲଗାରମାନଙ୍କ ଉପରେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଉଭୟ ସ୍ଥାୟୀ ସୈନ୍ୟଦଳ ଏବଂ ବାଶି-ବାଜାଉକ ନାମକ ଏକ ନିଷ୍ଠୁର ବେସରକାରୀ ଅସ୍ଥାୟୀ ସୈନ୍ୟଦଳକୁ ବୁଲଗେରିଆ ପ୍ରଦେଶରେ ଅଜାଡ଼ି ଦେଇଥିଲେ । ଏହି ସୈନ୍ୟମାନେ ଅସଂଖ୍ୟ ବୁଲଗାର ଖ୍ରୀଷ୍ଟାନଙ୍କୁ ନିର୍ମମଭାବରେ ହତ୍ୟା କରିଥିଲେ । ମାରିଟାଜା ଉପତ୍ୟକାରେ ଅବସ୍ଥିତ ଅଶୀଟି ଗ୍ରାମ ମଧ୍ୟରୁ ପନ୍ଦରଟି ଗ୍ରାମକୁ ବାଦ୍‌ଦେଲେ ଅନ୍ୟସବୁ ଗ୍ରାମକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦିଆଯାଇଥିଲା । ବାଟାକ୍ ସହରରେ ବାସକରୁଥିବା ୭୦୦୦ ଅଧିବାସୀଙ୍କୁ ମୂଳପୋଛ କରିଦିଆ-

* ଅଷ୍ଟ୍ରିଆର ଚ୍ୟାନ୍‌ସେଲର କାଉଣ୍ଟ ଆନ୍ଦ୍ରାସି ନାମାନୁସାରେ ।

ଯାଇଥିଲା । ଆଖମେତ୍ ଆଗା ନାମକ ଜଣେ ତୁର୍କ ସେନାପତିଙ୍କୁ ବାଟାକ୍ ଆକ୍ରମଣ କରିବାକୁ ଆଦେଶ ଦିଆଯାଇଥିଲା । ବାଟାକ୍‌ର ଅଧିବାସୀମାନେ ଆଖମେତ୍‌ଙ୍କ ସହିତ ଆଲୋଚନା ବେଳେ ସେ ଗମ୍ଭୀରଭାବରେ ଶପଥ କରିଥିଲେ ଯେ ସେମାନେ ଯଦି ଅସ୍ତ୍ରଶସ୍ତ୍ର ତ୍ୟାଗ କରିବେ, ତାହାହେଲେ ସେମାନଙ୍କର ମୁଣ୍ଡର ଗୋଟିଏ କେଶ ମଧ୍ୟ କେହି ଛୁଇଁପାରିବେ ନାହିଁ ବାଟାକ୍‌ର ଅଧିବାସୀମାନେ ଆଖମେତ୍‌ଙ୍କ ପ୍ରତିଶ୍ରୁତିକୁ ବିଶ୍ୱାସକରି ସେମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ତାଙ୍କୁ ସମର୍ପଣ କରିଦେଲେ । ଏହି ଦାବି ପୂରଣ ହେଲା ମାତ୍ରେ ଆଖମେତ୍ ବାଟାକ୍‌ରେ ଥିବା ସମସ୍ତ ଧନ ସମ୍ପଦ ତାଙ୍କୁ ଅର୍ପଣ କରିବାପାଇଁ ଅନ୍ୟ ଏକ ଦାବି ଉପସ୍ଥାପିତ କରିଥିଲେ । ବାଟାକ୍‌ବାସୀ ତାହା ମଧ୍ୟ କରିବାକୁ ରାଜି ହୋଇଥିଲେ । ସେମାନେ ସମସ୍ତ ଧନ ସମ୍ପଦ ଆଖମେତ୍‌ଙ୍କ ହସ୍ତାନ୍ତର କରିଦେବା ମାତ୍ରେ ବାଶି-ବାଜାଉକମାନଙ୍କୁ ସେମାନଙ୍କ ଉପରେ ଆକ୍ରମଣ ଚଳାଇବା ପାଇଁ ହୁକୁମ ଦିଆ ଯାଇଥିଲା । ଏହି ନିଷ୍ଠୁର ସୈନ୍ୟମାନେ ବାଟାକ୍‌ର ଅଧିବାସୀମାନଙ୍କୁ ନୃଶଂସଭାବରେ ହତ୍ୟା କରିଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ହଜାରେ କମ୍ବା ବାରଶହ ବାଟାକ୍‌ବାସୀ ପ୍ରାଣ ବିକଳରେ ଗିର୍ଜା ଏବଂ ଗିର୍ଜା ପ୍ରାଙ୍ଗଣରେ ଆଶ୍ରୟ ନେଇଥିଲେ । ଗିର୍ଜାଟି ଶକ୍ତ ଏବଂ ଦୁର୍ଭେଦ୍ୟ ହୋଇଥିବାରୁ ସେଥିରେ ବାହାର ପାଖରୁ ଅଗ୍ନିସଂଯୋଗ କରିବା ପାଇଁ ବାଶି-ବାଜାଉକମାନଙ୍କର ସମସ୍ତ ଉଦ୍ୟମ ପଣ୍ଡ ହୋଇ ଯାଇଥିଲା । ତେଣୁ ବାଶି-ବାଜାଉକମାନେ ଗିର୍ଜାର ଝରକାଗୁଡ଼ିକ ମଧ୍ୟ ଦେଇ ଗୁଳି ବର୍ଷଣ କରିଥିଲେ ଏବଂ ତାର ଛାତ ଉପରକୁ ଚଢ଼ିଯାଇ ଟାଇଲଗୁଡ଼ିକ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଇଥିଲେ ଓ ଛାତ ମଧ୍ୟ ଦେଇ ଗିର୍ଜା ଭିତରେ ଆଶ୍ରୟ ନେଇଥିବା ଲୋକମାନଙ୍କ ଉପରକୁ ପେଟ୍ରୋଲରେ ଭିଜା ହୋଇଥିବା ଜଳନ୍ତା କାଠଖଣ୍ଡମାନ ଓ ଛିଣ୍ଡାକନାଗୁଡ଼ିକ ଫିଙ୍ଗିଥିଲେ । ଅବଶେଷରେ କବାଟ ଭାଙ୍ଗି ଗିର୍ଜା ଭିତରେ ସେମାନେ ପ୍ରବେଶ କରିଥିଲେ ଏବଂ ସେଠାରେ ଜୀବିତ ଥିବା ଲୋକମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟାକରି ଅମାନୁଷିକ ହତ୍ୟାକାଣ୍ଡର ସମାପ୍ତି ଘଟାଇଲେ ।

ବୁଲଗେରିଆରେ ଘଟିଥିବା ନୃଶଂସ ହତ୍ୟାକାଣ୍ଡ ସମଗ୍ର ଇଉରୋପରେ ଉତ୍ତେଜନା-ପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟିକରିଥିଲା । ଗ୍ଲାଡଷ୍ଟୋନ ଅବସର ଜୀବନ ତ୍ୟାଗକରି ବାହାରି-ପଡ଼ିଥିଲେ ଏବଂ 'ବୁଲଗେରିଆର ବିଭୀଷିକା ଏବଂ ପୂର୍ବାଞ୍ଚଳ ପ୍ରଶ୍ନ' ନାମକ ଏକ ପାମ୍ଫଲେଟ (କ୍ଷୁଦ୍ର ପୁସ୍ତିକା)ରେ ତୁର୍କମାନଙ୍କୁ ପ୍ରକାଶ୍ୟଭାବରେ ନିନ୍ଦାକରିଥିଲେ । ଯେଉଁ ସରକାର ଭଗବାନଙ୍କ ନିୟମକୁ ଅମର୍ଯ୍ୟାଦା କରିବ ସେ ସରକାରଠାରୁ ଇଂଲଣ୍ଡ ତାହାର ସମର୍ଥନ ପ୍ରତ୍ୟାହାର କରିନେବା ଉଚିତ ଏବଂ ସେ ପୁଣି ଜୋର୍ ଦେଇ କହିଥିଲେ ଯେ 'ତୁର୍କମାନଙ୍କୁ ସବୁ ଜିନିଷପତ୍ର ସହିତ ଇଉରୋପରୁ ତଡ଼ିଦେବା ଉଚିତ ।' ଡିଜ୍‌ରେଲି ମନ୍ତ୍ରିମଣ୍ଡଳ ତୁର୍କୀ ପକ୍ଷନେବାକୁ ଚାହୁଁଥିଲେ ମଧ୍ୟ ପ୍ରବଳ ଜନମତ ବିରୁଦ୍ଧରେ ତାହା କରିବାକୁ ସାହସ କରି ନଥିଲେ ।

ବିଦ୍ରୋହ ବାତ୍ୟାଗ୍ନି ପରି ବଲ୍‌କାନର ବିଭିନ୍ନ ଅଞ୍ଚଳକୁ ବ୍ୟାପିଯାଇଥିଲା । ସର୍ବିଆ ଓ ମଣ୍ଟିନିଗ୍ରୋ ୧୮୭୬ ମସିହା ଜୁଲାଇ ମାସରେ ତୁର୍କୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ।

ରୁଷୀୟମାନେ ସେମାନଙ୍କର ସାଥୀ ସ୍ଲାଭ୍ ଓ ସମଧର୍ମାବଲମ୍ବୀମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିବା ସମୟରେ ଅତିଶୟ ଉତ୍ତେଜିତ ହୋଇଉଠିଥିଲେ ଏବଂ ରୁଷ-ସ୍ୱେଚ୍ଛାସେବକମାନେ ସହସ୍ର ସହସ୍ର ସଂଖ୍ୟାରେ ସର୍ବ ପତାକା ତଳେ ଲୁଣ୍ଡ ହୋଇଥିଲେ; କିନ୍ତୁ ତୁର୍କମାନେ ଅତି ଉତ୍କୃଷ୍ଟ ସୈନ୍ୟବାହିନୀ ସାହାଯ୍ୟରେ ଶତ୍ରୁମାନଙ୍କୁ ପରାସ୍ତ କରିଥିଲେ । ରୁଷିଆର ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ୧୮୭୬ ମସିହା ନଭେମ୍ବର ୨ ତାରିଖ ଦିନ ଇଂଲଣ୍ଡର ରାଜଦୂତଙ୍କୁ କହିଥିଲେ ଯେ ସେ ଯୁଦ୍ଧ ଚାହାଁନ୍ତିନାହିଁ; କିନ୍ତୁ ତୁର୍କୀରେ ପରିସ୍ଥିତି ଏପରି ଅସହ୍ୟ ହୋଇପଡ଼ିଛି ଯେ ଇଉରୋପ ଯଦି ସେଠାରେ ଦୃଢ଼ ପଦକ୍ଷେପ ନେବାକୁ ରାଜି ନ ହୁଏ, ତାହାହେଲେ ସେ ଏକୁଟିଆ ତାହା ନେବାକୁ ବାଧ୍ୟ ହେବେ । ସେ ନିଜର ସ୍ୱାର୍ଥପାଇଁ ଦୃଢ଼ ପଦକ୍ଷେପ ନେବାକୁ ଚାହାଁନ୍ତିନାହିଁ; ବରଂ ସେ ମାନବିକତା ଦୃଷ୍ଟିରୁ ତାହା ନେବାକୁ ଚାହାଁନ୍ତି । ସେ ଆହୁରି ମଧ୍ୟ ସ୍ପଷ୍ଟ ଜଣାଇଦେଇଥିଲେ ଯେ କନଷ୍ଟାଣ୍ଟିନୋପଲ ଅଧିକାର କରିବାକୁ ତାଙ୍କର ଆଦୌ ମାତ୍ର ଅଭିପ୍ରାୟ ନାହିଁ । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ କୂଟନୀତି ସାହାଯ୍ୟରେ ସମସ୍ତ ଗଣ୍ଡଗୋଳର ମୀମାଂସା କରିବାପାଇଁ ନୂତନ ଉଦ୍ୟମ ହୋଇଥିଲା; କିନ୍ତୁ ସମସ୍ତ ଉଦ୍ୟମ ସୁଲତାନଙ୍କର ପ୍ରତିରୋଧ ଯୋଗୁଁ ବିଫଳ ହୋଇଯାଇଥିଲା । ସୁଲତାନ କ୍ରିମିଆ ଯୁଦ୍ଧ ସମୟରେ ଇଂଲଣ୍ଡ ଏବଂ ଅନ୍ୟ କେତେକ ଇଉରୋପୀୟ ଶକ୍ତିଙ୍କର ସାହାଯ୍ୟ ଓ ସମର୍ଥନ ଲାଭ କରିଥିବାରୁ ସେ ଉପସ୍ଥିତ ପରିସ୍ଥିତିରେ ପଶ୍ଚିମ-ଇଉରୋପର ବିଶେଷତଃ ଇଂଲଣ୍ଡର ସାହାଯ୍ୟ ଓ ସମର୍ଥନ ନିଶ୍ଚୟ ଲାଭକରିବେ ବୋଲି ଆଶା ପୋଷଣ କରିଥିଲେ ।

ତୁର୍କୀରେ ଗଣ୍ଡଗୋଳ ମେଣ୍ଟାଇବାପାଇଁ ବହୁ ଦିନ ଧରି ଆଲୋଚନା ଚାଲିଥିଲେ ମଧ୍ୟ ସମସ୍ୟାର ସମାଧାନ ପାଇଁ କୌଣସି ନିଷ୍ଠାପର ଉଦ୍ୟମ ହେଉ ନ ଥିବାର ଅନୁଭବ କରି ସେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ । ତେଣୁ ସେ ଲୋକଦେଖାଣିଆ ଆଲୋଚନା ଉପରେ ଆଉ ଆସ୍ଥା ନ ରଖି ୧୮୭୭ ମସିହା ଅପ୍ରେଲ ୨୪ ତାରିଖରେ ତୁର୍କୀ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲେ । ସେ ଏହି ଯୁଦ୍ଧରେ ରୁମାନିଆ, ସର୍ବିଆ ଓ ମଣ୍ଟିନିଗ୍ରୋକୁ ନିଜର ମିତ୍ରରୂପେ ପାଇଥିଲେ ଏବଂ ୧୮୭୮ ମସିହା ଜାନୁୟାରୀ ଶେଷଯାଏ ଯୁଦ୍ଧ ଚାଲିଥିଲା । ରୁଷ ସୈନ୍ୟବାହିନୀ ଡାନ୍ୟୁବ ନଦୀ ଅତିକ୍ରମ କରିଥିଲେ ଏବଂ ଦକ୍ଷିଣକୁ ମାଡ଼ିଯାଇ କେତେକ ବିଜୟ ହାସଲକରିବା ସଙ୍ଗେ ସଙ୍ଗେ ବଲ୍‌କାନ ଅଞ୍ଚଳରେ ଏକ ଗିରିସଙ୍କଟ ଦଖଲ କରିନେଇଥିଲେ; କିନ୍ତୁ ଅଭିଯାନର ପ୍ରଧାନ ଲକ୍ଷ୍ୟ ଥିଲା ପ୍ଲେଭନା ଅଧିକାର । ଏହି ସ୍ଥାନ ଡାନ୍ୟୁବ୍ ନଦୀ ଏବଂ ବଲ୍‌କାନ ଅଞ୍ଚଳ ମଧ୍ୟରେ ଅବସ୍ଥିତ ଥିଲା ଏବଂ ରୁଷ ସୈନ୍ୟବାହିନୀ ଏହି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର ନକଲେ ବଲ୍‌କାନ ଅଞ୍ଚଳର ଦକ୍ଷିଣକୁ ନିରାପଦରେ ଅଗ୍ରସର ହେବାର ସମ୍ଭାବନା ନ ଥିଲା । ରୁଷ ସୈନ୍ୟବାହିନୀ ତୁର୍କ ସେନାପତି ଓସମାନ ପାଶାଙ୍କୁ ପ୍ଲେଭନା ଅଧିକାର ଓ ସୁଦୃଢ଼ କରିବାକୁ ବାଧା ନ ଦେଇ ବଡ଼ ଭୁଲ୍ କରିଥିଲା । ପରେ ସେମାନେ ପ୍ଲେଭନାକୁ ଅତର୍କିତ ଆକ୍ରମଣଦ୍ୱାରା ଅଧିକାର

ଦଖଲନେବା ପାଇଁ ତିନଥର ପ୍ରବଳ ଉଦ୍ୟମ କରିଥିଲେ; କିନ୍ତୁ ସେସବୁ ଉଦ୍ୟମକୁ ତୁର୍କମାନେ ପଣ୍ଡ କରିଦେଇଥିଲେ । ତା'ଛଡ଼ା ରୁଷିଆକୁ ମଧ୍ୟ ବିଶେଷ କ୍ଷତି ସହିବାକୁ ପଡ଼ିଥିଲା । ଯାହାହେଉ ରୁଷିଆ ଶେଷରେ ଏହି ସିଦ୍ଧାନ୍ତରେ ପହଞ୍ଚିଲା ଯେ ପ୍ଲେଭନା ଆକ୍ରମଣଦ୍ୱାରା ଅଧିକାର କରାଯାଇପାରିବ ନାହିଁ ଏବଂ ଏହା କେବଳ ନିୟମିତ ଅବରୋଧଦ୍ୱାରା ଅଧିକାର କରାଯାଇପାରିବ । ଟଟଲବେନ ଯେ କି କ୍ରିମିଆ ଯୁଦ୍ଧରେ ସେବାଷ୍ଟପୋଲର ପ୍ରତିରକ୍ଷକ ହିସାବରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ତାଙ୍କୁ ଏ ଅବରୋଧ କାର୍ଯ୍ୟ ସମ୍ପନ୍ନ କରିବାପାଇଁ ସର୍ବୋଚ୍ଚ ସେନାପତି ପଦରେ ନିଯୁକ୍ତ କରାଯାଇଥିଲା । ୧୮୭୭ ମସିହା ଅକ୍ଟୋବର ମାସର ମଧ୍ୟଭାଗରେ ଏକଲକ୍ଷ କୋଡ଼ିଏ ହଜାର ଲୋକଙ୍କଦ୍ୱାରା ପ୍ଲେଭନା ପୁରାପୁରି ଅବରୋଧ କରାଯାଇଥିଲା । ଓସମାନ ପାଶାଙ୍କ ପ୍ରତିରୋଧ ଅତି ଚମତ୍କାର ହୋଇଥିଲା । ସେ ବୀରତ୍ୱ ସହକାରେ ରୁଷିଆର ଏକ ବିରାଟ ସୈନ୍ୟବାହିନୀ ବିରୁଦ୍ଧରେ ତାଙ୍କର କ୍ଷୁଦ୍ର ସୈନ୍ୟବାହିନୀକୁ ପରିଚାଳନାକରି ତାକୁ ପାଞ୍ଚମାସ ଅଟକାଇ ଦେଇପାରିଥିଲେ । ପ୍ଲେଭନାର ଅବରୋଧ ମନ୍ଥର ଗତିରେ ଚାଲିଥିଲେ ମଧ୍ୟ ତାହା ସଫଳ ହୋଇଥିଲା । ୧୮୭୬ ମସିହା ଡିସେମ୍ବର ୧୦ ତାରିଖ ଦିନ ଓସମାନ ପାଶା ତାଙ୍କର ସୈନ୍ୟବାହିନୀ ଓ ଗୋଲାବାରୁଦ ସହ ରୁଷ ସୈନ୍ୟବାହିନୀ ନିକଟରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ ।

ପ୍ଲେଭନାର ପତନ ଫଳରେ ତୁର୍କୀର ପ୍ରତିରୋଧ ଶକ୍ତିର ମେରୁଦଣ୍ଡ ଭାଙ୍ଗିଯାଇଥିଲା । ଶୀତ ଋତୁର ମଧ୍ୟଭାଗରେ ରୁଷ୍ ସୈନ୍ୟବାହିନୀ ବଲ୍‌କାନ ଗିରିସଙ୍କଟଗୁଡ଼ିକ ମଧ୍ୟଦେଇ କନଷ୍ଟାଣ୍ଟିନୋପଲ ଆଡ଼କୁ ଦ୍ରୁତଗତିରେ ଅଗ୍ରସର ହୋଇଥିଲା ଏବଂ ୧୮୭୮ ମସିହା ଜାନୁଆରୀ ୨୦ ତାରିଖ ଦିନ ଏଡ୍ରିଆନପୋଲରେ ପ୍ରବେଶ କରିଥିଲା । ତୁର୍କ ସୁଲତାନ ଅଗତ୍ୟା ବାଧ୍ୟହୋଇ ଶାନ୍ତି ପ୍ରସ୍ତାବ ଦେଇଥିଲେ ଏବଂ ରୁଷିଆ ତାହା ଗ୍ରହଣ କରିଥିଲା । ୧୮୭୮ ମସିହା ମାର୍ଚ୍ଚ ୩ ତାରିଖ ଦିନ ସ୍ୟାନ ଷ୍ଟିଫାନୋ ନାମକ ଏକ ସନ୍ଧି ରୁଷିଆ ଓ ତୁର୍କୀ ମଧ୍ୟରେ ସମ୍ପାଦନ କରାଯାଇଥିଲା । ସୁତରାଂ ରୁଷିଆ ଓ ତୁର୍କୀ ମଧ୍ୟରେ ୧୮୭୭ ମସିହାରୁ ଚାଲିଥିବା ଯୁଦ୍ଧର ପରିସମାପ୍ତି ଘଟିଲା । ଏହି ସନ୍ଧି ଫଳରେ ତୁର୍କ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା । ତୁର୍କୀ ସନ୍ଧିର ସର୍ତ୍ତାନୁସାରେ ସର୍ବିଆ, ମଣ୍ଟିନିଗ୍ରୋ ଏବଂ ରୁମାନିଆର ପୂର୍ଣ୍ଣ ସ୍ୱାଧୀନତା ସ୍ୱୀକାର କରିଥିଲା ଏବଂ ସେମାନଙ୍କୁ କେତେକ ଅଞ୍ଚଳ ଦେଇଥିଲା । ଏହି ସନ୍ଧିର ବିଶେଷତ୍ୱ ହେଲା ବୁଲଗେରିଆ ସମ୍ପର୍କରେ ଏକ ବ୍ୟବସ୍ଥା ଗ୍ରହଣ କରିବା । କୃଷ୍ଣସାଗରଠାରୁ ଆଲ୍‌ବେନିଆ ପର୍ଯ୍ୟନ୍ତ ଏବଂ ଏଜିଆନ ସାଗରଠାରୁ ଡାନ୍ୟୁବ୍ ନଦୀ ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡକୁ 'ବୃହତ୍ ବୁଲ୍‌ଗେରିଆ' ନାମ ଦିଆଯାଇଥିଲା ଏବଂ ତାକୁ ଏକ ସ୍ୱାୟତ୍ତ-ଶାସିତ ରାଜ୍ୟରେ ପରିଣତ କରାଯାଇଥିଲା । ତୁର୍କ ସୁଲତାନ ସେ ରାଜ୍ୟରୁ କେବଳ କର ନେବାର ଅଧିକାର ପାଇଥିଲେ । ଏହି ନୂତନ ରାଜ୍ୟ କେବଳ ସ୍ୱାଭାବିକ ବୁଲଗେରିଆକୁ ଅନ୍ତର୍ଭୁକ୍ତ ନ କରି ଦକ୍ଷିଣରେ ରୁମେଲିଆ ଏବଂ ମେସିଡୋନିଆର ଏକ ବୃହତ୍ ଅଂଶକୁ ମଧ୍ୟ ଅନ୍ତର୍ଭୁକ୍ତ କରିଥିଲା । ବିଶେଷତଃ ରୁଷିଆ ତାହାର ସୃଷ୍ଟି 'ବୃହତ୍ ବୁଲଗେରିଆ'କୁ ନିଜ ଆୟତ୍ତାଧୀନରେ ରଖିବା ଆଶା କରାଯାଉଥିଲା ।

ବସ୍ନିଆ ଏବଂ ହାରଜଗୋଭିନାରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରାଯିବାର ସ୍ଥିର କରାଯାଇଥିଲା । ରୁଷିଆ ଏସିଆରେ ବାଟୁମ ଏବଂ କାର୍ସ୍ ଓ ଇଉରୋପରେ ବେସାରବିଆ ଦଖଲ କରିନେଲା । ରୁମାନିଆ ବେସାରବିଆ ହରାଇବାରୁ କ୍ଷତିପୂରଣ ସ୍ୱରୂପ ଦବ୍ରୁଦ୍‌ଜା ଲାଭକଲା ।

ସ୍ୟାନ ଷ୍ଟିଫାନୋ ସନ୍ଧି ରୁଷିଆର ବୈଦେଶିକ ନୀତିର ସଫଳତା ପ୍ରମାଣ କରି-ଦେଇଥିଲା । ଏହି ସନ୍ଧିରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର କ୍ରିମିଆ ଯୁଦ୍ଧରେ ରୁଷିଆର ପରାଜୟର ପ୍ରତିଶୋଧ ନେଇଥିଲେ । ଅଧିକନ୍ତୁ ବଲ୍‌କାନ ଅଞ୍ଚଳରେ ରୁଷିଆର ଆଧିପତ୍ୟ ସ୍ୱୀକାର କରାଯାଇଥିଲା । ସେ ଯାହାହେଉ, ତୁର୍କମାନଙ୍କୁ ଇଉରୋପରୁ ସେମାନଙ୍କର ସବୁ ଜିନିଷପତ୍ର ସହ ତଡ଼ିଦେବା ପାଇଁ ଗ୍ଲାଡ୍‌ଷ୍ଟୋନଙ୍କର ଯେଉଁ ଅଭିଳାଷ ଥିଲା ତାହା ପ୍ରାୟ କାର୍ଯ୍ୟରେ ପରିଣତ ହୋଇଥିଲା । ସ୍ୟାନ ଷ୍ଟିଫାନୋ ସନ୍ଧି ଫଳରେ ରୁଷିଆ ଦକ୍ଷିଣରେ ଭୂମଧ୍ୟସାଗର ଆଡ଼କୁ କ୍ଷମତା ବିସ୍ତାର କରିଥିଲା ଏବଂ 'ବୃହତ୍ତର ବୁଲଗେରିଆ' ଓ ଅନ୍ୟ କେତେକ ରାଜ୍ୟକୁ ତାର ହତିଆର ପରି ବ୍ୟବହାର କରିବାର ସୁଯୋଗ ମଧ୍ୟ ପାଇଲା । ରୁଷିଆ କ୍ଷମତାର ଏପରି ପ୍ରସାର ଇଂଲଣ୍ଡର ସ୍ୱାର୍ଥବିରୋଧୀ ଥିଲା । ଡିସ୍‌ରେଲି ସ୍ୟାନ ଷ୍ଟିଫାନୋ ସନ୍ଧି ବିଷୟ ଶୁଣିଲାମାତ୍ରେ ଅତିଶୟ କ୍ଷୁବ୍ଧ ହୋଇଥିଲେ । ସେ କହିଲେ ଯେ 'ଏ ସନ୍ଧି ଫଳରେ ତୁର୍କିସାମ୍ରାଜ୍ୟର ଇଉରୋପୀୟ ଅଞ୍ଚଳଗୁଡ଼ିକ ଲୋପ କରିଦିଆଗଲା । ଏହି ସନ୍ଧି ବୁଲଗେରିଆ ନାମରେ ଏକ ବିଶାଳ ରାଜ୍ୟ ପ୍ରତିଷ୍ଠାକଲା ଏବଂ ସେହି ରାଜ୍ୟରେ କେବଳ ଯେ ବୁଲଗାରମାନେ ବାସ କରୁଥିଲେ ତାହା ନୁହେଁ, ବହୁଜାତିର ଲୋକେ ମଧ୍ୟ ସେଠାରେ ବାସକରୁଥିଲେ । ତୁର୍କୀର ଇଉରୋପୀୟ ଅଞ୍ଚଳମାନ ରୁଷିଆର ଶାସନାଧୀନରେ ରଖାଗଲା । ସନ୍ଧିର ସବୁ ସର୍ତ୍ତକୁ ଏକତ୍ରକରିବା ଫଳରେ ଦେଖାଗଲା ଯେ କାସ୍‌ପିୟନ ସାଗର ଯେଉଁ ପରିମାଣରେ ରୁଷିଆର ଏକ ହ୍ରଦରେ ପରିଣତ ହୋଇଥିଲା, ଠିକ୍ ସେହି ପରିମାଣରେ କୃଷ୍ଣସାଗର ରୁଷିଆର ଏକ ହ୍ରଦରେ ପରିଣତ ହୋଇଥିଲା । ଇଂଲଣ୍ଡ ମତପ୍ରକାଶ କରିଥିଲା ଯେ 'ପୂର୍ବାଞ୍ଚଳ ସମସ୍ୟା' ସବୁ ଇଉରୋପୀୟ ରାଷ୍ଟ୍ରର ସମ୍ପୃକ୍ତ ବିଷୟ ହୋଇଥିବାରୁ କୌଣସି ଏକ ରାଷ୍ଟ୍ର ନିଜ ଇଚ୍ଛାନୁସାରେ ଏହି ସମସ୍ୟାର ସମାଧାନ କରି ନ ପାରେ । ତେଣୁ ଇଉରୋପୀୟ ଶକ୍ତିମାନେ ଏକ କଂଗ୍ରେସରେ ମିଳିତ ହୋଇ ସ୍ୟାନ ଷ୍ଟିଫାନୋ ସନ୍ଧି ସର୍ତ୍ତଗୁଡ଼ିକର ପରିବର୍ତ୍ତନପାଇଁ ପୁନରାଲୋଚନା କରିବାକୁ ଇଂଲଣ୍ଡ ଦାବି କରିଥିଲା । ଅଷ୍ଟ୍ରିଆ ବହୁଦିନରୁ ବଲକାନ ଦେଶଗୁଡ଼ିକ ଉପରେ ନିଜର କ୍ଷମତା ବିସ୍ତାର କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲା । ସୁତରାଂ ଅଷ୍ଟ୍ରିୟାର ସମ୍ରାଟ ଫ୍ରାନ୍‌ସିସ୍ ଯୋସେଫ ବୁଲଗେରିଆ ପରି ଶକ୍ତିଶାଳୀ ଦେଶମାନ ବଲକାନ୍ ଅଞ୍ଚଳରେ ପ୍ରତିଷ୍ଠାକରିବା ଚାହୁଁନଥିଲେ । ତାଙ୍କ ଉଦ୍ଦେଶ୍ୟ ସାଧନପାଇଁ ସେ ଇଂଲଣ୍ଡ ସହିତ ହାତ ମିଳାଇ ପୂର୍ବାଞ୍ଚଳ ସମସ୍ୟା ସହିତ ଇଉରୋପୀୟ ରାଷ୍ଟ୍ରଗୁଡ଼ିକ ସଂଶ୍ଳିଷ୍ଟ ହୋଇଥିବାରୁ ସେ ସମସ୍ୟାର ସମାଧାନ ସେମାନଙ୍କ ଉପରେ ଛାଡ଼ିଦେବାପାଇଁ ରୁଷିଆକୁ ଆହ୍ୱାନ କରିଥିଲେ । ତା'ଛଡ଼ା ଉଭୟ ଅଷ୍ଟ୍ରିଆ ଏବଂ

ଇଂଲଣ୍ଡ ଯୁଦ୍ଧ ଅବଶ୍ୟମ୍ଭାବୀ ଭାବ ଅବଲମ୍ବେ ଯୁଦ୍ଧପାଇଁ ପ୍ରସ୍ତୁତ ଚଳାଇଥିଲେ । ଏହି ଦୁଇଦେଶର ଯୁଦ୍ଧ ମନୋବୃତ୍ତି ଦେଖି ଏବଂ ନିଜ ଦୁର୍ବଳତା ଓ ତୁର୍କୀ ସହିତ ଯୁଦ୍ଧରେ ନିଜର କ୍ଷତି ବିଷୟ ହୃଦୟଙ୍ଗମ କରି ରୁଷିଆ ତୁର୍କୀ ପ୍ରଶ୍ନର ମୀମାଂସା ଭାର ଇଉରୋପୀୟ କଂଗ୍ରେସ ହାତରେ ନ୍ୟସ୍ତ କରିବାକୁ ରାଜି ହୋଇଥିଲା ।

## ୧୮୭୮ ମସିହା ବର୍ଲିନ ଚୁକ୍ତିର ସର୍ତ୍ତମାନ

୧୮୭୮ ମସିହା ଜୁନ ମାସରେ 'ନିରପେକ୍ଷ ମଧ୍ୟସ୍ଥ' ( Honest broker ) ବିସମାର୍କଙ୍କର ଅଧ୍ୟକ୍ଷତାରେ ଏକ କଂଗ୍ରେସ ବର୍ଲିନଠାରେ ବସିଥିଲା । ଏହି କଂଗ୍ରେସ ଅଷ୍ଟ୍ରିୟା ଏବଂ ଇଂଲଣ୍ଡର ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ସ୍ୟାନ ଷ୍ଟିଫାନୋ ସନ୍ଧିର ସର୍ତ୍ତଗୁଡ଼ିକୁ ଆଂଶିକ ଭାବରେ ପରିବର୍ତ୍ତନ କରିଥିଲା । ସେହି କଂଗ୍ରେସରେ ଯେଉଁ ଚୁକ୍ତି ସ୍ୱାକ୍ଷର କରାଗଲା, ତାହା ବୁଲଗାରମାନଙ୍କ ଆଶାର ସୌଧକୁ ଧୂଳିସାତ୍ କରିଦେଲା । ବର୍ଲିନ ଚୁକ୍ତିର ସର୍ତ୍ତ ଅନୁଯାୟୀ 'ବୃହତ୍ତ ବୁଲଗେରିଆ'କୁ ତିନି ଭାଗରେ ବିଭକ୍ତ କରାଯାଇଥିଲା । ଗୋଟିଏ ଭାଗକୁ ଏକ ସ୍ୱାୟତ୍ତ-ଶାସିତ କରଦରାଜ୍ୟରେ ପରିଣତ କରାଯାଇ ତୁର୍କୀ ସରକାରଙ୍କୁ ବାର୍ଷିକ କରଜଣା ଦେବାପାଇଁ ତାକୁ ବାଧ୍ୟକରାଯାଇଥିଲା ଏବଂ ତାର ନାମ ବୁଲଗେରିଆ ରଖାଗଲା । ଅନ୍ୟ ଗୋଟିଏ ଭାଗକୁ 'ପୂର୍ବ ରୁମେଲିଆ' ପ୍ରଦେଶ ନାମକରଣ କରାଯାଇ ଜଣେ ଖ୍ରୀଷ୍ଟାନ ଗଭର୍ଣ୍ଣରଙ୍କ ଅଧୀନରେ ସ୍ଥାପନ କରାହେଲା ଏବଂ ଏହି ପ୍ରଦେଶକୁ ନାମକୁମାତ୍ର ତୁର୍କୀର ଅଧୀନରେ ରଖାଗଲା । ତା'ଛଡ଼ା ମେସିଡୋନିୟାର ଯେଉଁ ଅଂଶଟି 'ବୃହତ୍ତ ବୁଲଗେରିଆ'ରେ ସାମିଲ କରିଦିଆଯାଇଥିଲା ତାକୁ ତୁର୍କୀକୁ ଫେରନ୍ତ କରି ଦିଆଯାଇଥିଲା । ରୁମାନିଆ, ସର୍ବିଆ ଏବଂ ମଣ୍ଟିନିଗ୍ରୋ ତୁର୍କୀଠାରୁ ସମ୍ପୂର୍ଣ୍ଣ ସ୍ୱାଧୀନ ହେଲେ ବୋଲି ଘୋଷଣା କରାଗଲା । ଅଷ୍ଟ୍ରିୟା ବୋସ୍ନିଆ ଏବଂ ହାରଜିଗୋଭିନା ଅଧିକାର କରି ଶାସନ କରିବାପାଇଁ ଅନୁମତି ପାଇଲା; କିନ୍ତୁ ସେ ଦୁଇ ଅଞ୍ଚଳକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାକୁ ତାକୁ ଅନୁମତି ଦିଆଯାଇ ନଥିଲା । ଅବଶ୍ୟ ଏହି ଦୁଇଟି ଅଞ୍ଚଳ ନାମମାତ୍ର ତୁର୍କୀର ଅଧୀନରେ ରହିଲାବୋଲି ବିବେଚିତ ହେଲା । ରୁଷିଆକୁ ବେସାରବିଆ ଦଖଲ କରିବାକୁ ଦିଆଗଲା । ତା'ଛଡ଼ା ରୁଷିଆ କାରସ୍, ବାଟୁମ୍ ଏବଂ ଆରଧାହାନ୍ ଅଧିକାର କଲା । ଇଂଲଣ୍ଡ ଏକ ଭିନ୍ନ ଚୁକ୍ତିଦ୍ୱାରା ସାଇପ୍ରସ ଦଖଲକଲା ।

ଏକଥା ଅସ୍ୱୀକାର କରିହେବନାହିଁ ଯେ ୧୮୫୬ର ପ୍ୟାରିସ ସନ୍ଧି ତୁର୍କୀ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିପାରିଥିଲା; କିନ୍ତୁ ସେ ସନ୍ଧିର କେତେକ ବର୍ଷ ପରେ ବର୍ଲିନଚୁକ୍ତିଦ୍ୱାରା ଇଉରୋପୀୟ ଶକ୍ତିଗୁଡ଼ିକ ସେହି ସାମ୍ରାଜ୍ୟକୁ ଖଣ୍ଡ ଖଣ୍ଡ କରିଦେଇଥିଲେ । ତୁର୍କୀ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିବା ଦାୟିତ୍ୱ ନେଇଥିବା ଦୁଇଟି ଶକ୍ତି—ଇଂଲଣ୍ଡ ଏବଂ ଅଷ୍ଟ୍ରିୟା ତୁର୍କୀର କେତେକ ଅଞ୍ଚଳ ଲୁଣ୍ଠନ କରିବାକୁ ଦ୍ୱିଧା କରିନଥିଲେ । ମନେହେଲା, ବର୍ଲିନର କୂଟନୀତିଜ୍ଞମାନେ ସ୍ୟାନ ଷ୍ଟିଫାନୋ ସନ୍ଧିର ସଂଶୋଧନ ନ୍ୟାୟ ଏବଂ ନିରପେକ୍ଷତା ଦୃଷ୍ଟିରୁ

ନକରି ତାହା ଇଂଲଣ୍ଡ ଏବଂ ଅଷ୍ଟ୍ରିୟାର ସ୍ୱାର୍ଥ ଦୃଷ୍ଟିରୁ କରିଥିଲେ । ସେମାନେ ବର୍ଲିନ କଂଗ୍ରେସରେ ଯେଉଁ ମୀମାଂସାରେ ଉପନୀତ ହେଲେ, ତାହା ବଲ୍କାନ ଲୋକମାନଙ୍କର ଜାତୀୟ ଜାଗରଣ ଏବଂ ଜାତୀୟ ସ୍ୱାର୍ଥକୁ ଉପେକ୍ଷା କରିଥିଲା । ଏହି କଂଗ୍ରେସରେ ସେମାନେ କେବଳ ଅଷ୍ଟ୍ରିୟା, ଇଂଲଣ୍ଡ ଓ ରୁଷିଆର ପରସ୍ପର ବିରୋଧୀ ସ୍ୱାର୍ଥଗୁଡ଼ିକୁ ସୁସଙ୍ଗତ କରିବା ପାଇଁ ଏକ ଶକ୍ତିସାମ୍ୟ ଓ ଆପୋଷ-ନୀତି ଅବଲମ୍ବନ କରିଥିଲେ । ରୁଷିଆ ତୁର୍କୀର କେତେକ ଅଞ୍ଚଳ ଲାଭକରିବାରୁ ଶକ୍ତିସାମ୍ୟ ରକ୍ଷାକରିବାପାଇଁ ଅଷ୍ଟ୍ରିୟାକୁ ବୋସ୍ନିଆ ଓ ହାର୍ଜେଗୋଭିନା ଦଖଲ କରିବାକୁ ଏବଂ ଇଂଲଣ୍ଡକୁ ସାଇପ୍ରସ୍ ଦଖଲକରିବାକୁ ଅନୁମତି ଦିଆଯାଇଥିଲା । ବାସ୍ତବରେ ବର୍ଲିନ ଚୁକ୍ତି ବଲ୍କାନ ଦେଶମାନଙ୍କର ଜାତୀୟତାବାଦର ପ୍ରଭାବ ଓ ପ୍ରଗତିକୁ ଆଦୌ ଭ୍ରୂକ୍ଷେପ କରିନଥିଲା । ରୁମାନୀୟମାନେ ବସବାସକରି ରହିଥିବା ବେସାରବିୟା ଅଞ୍ଚଳ ରୁଷିଆକୁ ଦେଇଦେବା ଦ୍ୱାରା ରୁମାନିଆକୁ ଅପମାନିତ କରାଯାଇଥିଲା । ବୋସ୍ନିଆ ଓ ହାର୍ଜେଗୋଭିନାର ସ୍ଲାଭ୍‌ମାନେ ସେମାନଙ୍କର ସାଥୀ ସାର୍ବିଆର ସାର୍ବମାନଙ୍କ ସହିତ ମିଳିତହେବାକୁ ଚାହୁଁଥିଲେ ମଧ୍ୟ ସେମାନଙ୍କର ଜାତୀୟ ଚେତନାକୁ ଉପେକ୍ଷା କରାଯାଇ ସେହି ଦୁଇଟି ଅଞ୍ଚଳକୁ ଅଷ୍ଟ୍ରିୟାର ଶାସନାଧୀନରେ ଛାଡ଼ିଦିଆଯାଇଥିଲା । ଏହି ବ୍ୟବସ୍ଥା ସାର୍ବିଆକୁ ଆତଙ୍କିତ କରିବା ସଙ୍ଗେ ସଙ୍ଗେ କ୍ଷୁବ୍ଧ ମଧ୍ୟ କରିଥିଲା । 'ବୃହତ୍ତ ବୁଲଗେରିଆ'କୁ ବିଭାଗ କରିଦେବା ଦ୍ୱାରା ବୁଲଗାରମାନଙ୍କର ଜାତୀୟତାବାଦ ପ୍ରତି କୁଠାରାଘାତ କରାଯାଇଥିଲା । ଏହି ପଦକ୍ଷେପ ବିଶେଷତଃ ଅଷ୍ଟ୍ରିୟାକୁ ସନ୍ତୁଷ୍ଟ କରିବାପାଇଁ ନିଆଯାଇଥିଲା । ଅଷ୍ଟ୍ରିୟା ଭୟକରୁଥିଲା ଯେ ରୁଷିଆ ପ୍ରତି ବନ୍ଧୁଭାବାପନ୍ନ 'ବୃହତ୍ ବୁଲଗେରିଆ' ଏଜିୟନ ସାଗର ଆଡ଼କୁ ତାହାର ପ୍ରସରଣର ପଥ ରୁଦ୍ଧକରିଦେବ । ଏତଦ୍‌ବ୍ୟତୀତ ବୁଲଗାରମାନଙ୍କ ପ୍ରତି ଯେଉଁ ଅମାନୁଷିକ ଅତ୍ୟାଚାର କରାଗଲା, ସେଥିରୁ କୌଣସି ଶିକ୍ଷାଲାଭ ନକରି ବର୍ଲିନ କଂଗ୍ରେସରେ ମାସିଡୋନିଆର ଖ୍ରୀଷ୍ଟିୟାନମାନଙ୍କୁ ତୁର୍କୀର ସୁଲତାନଙ୍କ ଦୟା ଉପରେ ପୁଣି ଛାଡ଼ିଦିଆଯାଇଥିଲା । ତୁର୍କୀକୁ ସାହାଯ୍ୟକରିବା ଉଦ୍ଦେଶ୍ୟରେ ବର୍ଲିନ କଂଗ୍ରେସରେ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ତୁର୍କସାମ୍ରାଜ୍ୟ ଏପରି ଖଣ୍ଡବିଖଣ୍ଡ ହୋଇଯାଇଥିଲା ଯେ ତାହାର ପୁନରୁଦ୍ଧାର ଅସମ୍ଭବ ହୋଇପଡ଼ିଥିଲା । ମାସିଡୋନିଆ ସମସ୍ୟା ଭବିଷ୍ୟତରେ ଅସ୍ଥିରତା ଓ ସଂଘର୍ଷର ନିରବଚ୍ଛିନ୍ନ ଉତ୍ସ ହୋଇଥିଲା । ବର୍ଲିନ କଂଗ୍ରେସରେ ଯେଉଁ ବ୍ୟବସ୍ଥା ବଲକାନ ଲୋକମାନଙ୍କ ଜାତୀୟତାକୁ ହେୟଜ୍ଞାନ କରିବା ସଙ୍ଗେ ସଙ୍ଗେ ତୁର୍କୀର ଅଖଣ୍ଡତା ପ୍ରତି ବିଶ୍ୱାସଘାତକତା କରିଥିଲା, ତାହା ପୂର୍ବାଞ୍ଚଳ ସମସ୍ୟାର ସନ୍ତୋଷଜନକ ସମାଧାନ ବୋଲି କୁହାଯାଇନପାରେ ।

ଇଂଲଣ୍ଡର ମନ୍ତ୍ରୀ ଡିସ୍‌ରେଲି ବର୍ଲିନ କଂଗ୍ରେସରୁ ଫେରି ଗର୍ବର ସହିତ କହିଥିଲେ, "ଆମ୍ଭେମାନେ ଉଭୟ ଶାନ୍ତି ଏବଂ ସମ୍ମାନ ଫେରାଇ ଆଣିପାରିଛୁ ।" ପ୍ରକୃତରେ ବର୍ଲିନ ଚୁକ୍ତିକୁ ଟିକିଏ ଭଲଭାବରେ ପରୀକ୍ଷାକଲେ, ଆମ୍ଭେମାନେ ସ୍ପଷ୍ଟ ଦେଖିପାରିବା ଯେ ଏହି ଚୁକ୍ତି

ଫଳରେ ଇଉରୋପରେ ସାମୟିକ ଭାବରେ ଶାନ୍ତି ପ୍ରତିଷ୍ଠା କରାଯାଇଥିଲା ସତ; କିନ୍ତୁ ସେଥିରେ ଇଂଲଣ୍ଡର ମର୍ଯ୍ୟାଦା କୌଣସିମତେ ବୃଦ୍ଧି ପାଇନଥିଲା । ଇଂଲଣ୍ଡ ତୁର୍କୀର ଅଖଣ୍ଡତା ବଜାୟ ରଖିବା ନୀତି ଗ୍ରହଣ କରି ମଧ୍ୟ ନିଜେ ସାଇପ୍ରସ୍ ଦଖଲକରିବାକୁ ଦ୍ୱିଧାବୋଧ କରିନଥିଲା । ତା'ଛଡ଼ା ବଲ୍‌କାନ ଦେଶମାନଙ୍କରେ ଜାତୀୟତାବାଦର ପ୍ରଭାବ ଓ ପ୍ରଗତିକୁ ଉପେକ୍ଷା କରିବା ଫଳରେ ୧୯୧୨ ମସିହାରେ ପ୍ରଥମ ବଲ୍‌କାନଯୁଦ୍ଧ ଏବଂ ୧୯୧୩ ମସିହାରେ ଦ୍ୱିତୀୟ ବଲ୍‌କାନଯୁଦ୍ଧ ସଂଘଟିତ ହୋଇଥିଲା । ଏକଥା ମଧ୍ୟ ଅସ୍ୱୀକାର କରିହେବନାହିଁ ଯେ ୧୯୧୪ ମସିହାର ପ୍ରଥମ ବିଶ୍ୱଯୁଦ୍ଧ ଏହି ବର୍ଲିନ ଚୁକ୍ତିର ଫଳ । ବର୍ଲିନ କଂଗ୍ରେସରେ ସମ୍ମିଳିତ ହୋଇଥିବା ରାଜନୀତିଜ୍ଞମାନେ ଚୁକ୍ତିସମ୍ପାଦନ କରିବାରେ କୌଣସି ଦୂରଦୃଷ୍ଟିର ପରିଚୟ ଦେଇନଥିଲେ । ତା'ଛଡ଼ା ସେମାନେ ରୁଷିଆର କ୍ଷମତା ବିସ୍ତାର ମଧ୍ୟ ବନ୍ଦକରିପାରିନଥିଲେ । ସବୁଠୁ ସାମୟିକଭାବରେ ରୁଷିଆ ଇଉରୋପର ରାଜନୀତିକ୍ଷେତ୍ରରୁ ନିଜେ ଅପସରି ଯାଇ ଏସିଆରେ ନିଜ କ୍ଷମତା ବିସ୍ତାର କରିବାଦିଗରେ ମନୋଯୋଗ ଦେଇଥିଲା, ଅଳ୍ପକାଳ ମଧ୍ୟରେ ପୁଣି ରୁଷିଆ ବଲ୍‌କାନ ଦେଶଗୁଡ଼ିକ ଉପରେ ପ୍ରାଧାନ୍ୟ ବିସ୍ତାର କରିବାପାଇଁ ଆପ୍ରାଣ ଉଦ୍ୟମ କରିଥିଲା । ବଲ୍‌କାନ ଅଞ୍ଚଳରେ ରୁଷିଆ ନିଜର ଆଧିପତ୍ୟ ପ୍ରତିଷ୍ଠାପାଇଁ ଉଦ୍ୟମ ଚଳାଇବା ଫଳରେ ପ୍ରଥମ ବିଶ୍ୱଯୁଦ୍ଧ ସୃଷ୍ଟି ହୋଇଥିଲା । ତୁର୍କୀ ମଧ୍ୟ ବେଶ୍ ବୁଝିପାରିଥିଲା ଯେ ତୁର୍କ-ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିବାପାଇଁ ଇଉରୋପୀୟ ଶକ୍ତିମାନଙ୍କର କୌଣସି ଆନ୍ତରିକତା ନଥିଲା । ତେଣୁ ତୁର୍କୀ ବର୍ଲିନ ଚୁକ୍ତିର ପରେ ପରେ ଇଂଲଣ୍ଡ ସହିତ ମିତ୍ରତା ଏଡ଼ିବାକୁ ଆରମ୍ଭ କରିଥିଲା ଏବଂ ଜର୍ମାନୀ ସହିତ ମିତ୍ରତା ସ୍ଥାପନ କରିବାକୁ ଅଗ୍ରସର ହୋଇଥିଲା । ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ ବର୍ଲିନଚୁକ୍ତିରୁ ନାନାପ୍ରକାର ଜଟିଳ ଆନ୍ତର୍ଜାତିକ ସମସ୍ୟାମାନ ଉଦ୍ଭବ ହୋଇଥିଲା । ସାମୟିକଭାବରେ ବର୍ଲିନଚୁକ୍ତି ଶାନ୍ତି ପ୍ରତିଷ୍ଠା କରିଥିଲେ ମଧ୍ୟ ଏଥିରେ ଭବିଷ୍ୟତପାଇଁ ଅଶାନ୍ତିର ବୀଜ ବପନ କରାଯାଇଥିଲା ।

---

# ତ୍ରୟୋଦଶ ଅଧ୍ୟାୟ

## ରୁଷିଆର ଇତିହାସ (୧୮୦୧-୧୯୧୯)

## (The History of Russia : 1801-1919)

### ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ରାଜତ୍ୱ (୧୮୦୧-୧୮୨୫)

ଜାର୍ ଆଲେକ୍‌ଜାଣ୍ଡାରଙ୍କ ମାତାମହୀ ଦ୍ୱିତୀୟ କ୍ୟାଥରାଇନ ତାଙ୍କୁ ତାଙ୍କ ପିତା-ମାତାଙ୍କଠାରୁ ନେଇଯାଇ ନିଜ ପରିକଳ୍ପନା ଅନୁସାରେ ପ୍ରତିପାଳନ କରିବାକୁ ବିଶେଷ ଉଦ୍ୟମ କରିଥିଲେ । ସେ ଆଲେକ୍‌ଜାଣ୍ଡାରଙ୍କ ଶିକ୍ଷାପାଇଁ ଏକ ଶିକ୍ଷାଦାନର ଚଠା ପ୍ରସ୍ତୁତ କରିଥିଲେ । ତାଙ୍କୁ ନ୍ୟାୟ ଓ ସାଧୁତାର ନୀତିଗୁଡ଼ିକରେ ତାଲିମ ଦିଆଯିବାପାଇଁ ସେଥିରେ ବ୍ୟବସ୍ଥା କରାଯାଇଥିଲା । କ୍ୟାଥାରାଇନ ତାଙ୍କୁ ଶିକ୍ଷା ଦେବାପାଇଁ ସୁଇଜରଲ୍ୟାଣ୍ଡ ଅଧିବାସୀ ଲି ହାର୍‌ପେଙ୍କୁ ଗୃହଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ଲି ହାର୍‌ପେ ଉଦାରନୀତି ଏବଂ ସାଧାରଣତନ୍ତ୍ରବାଦରେ ବିଶ୍ୱାସୀ ଥିଲେ ଏବଂ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠାହେବା, ଭୂମିଦାସ ପ୍ରଥାର ଅବସାନ ଘଟିବା ବିଷୟରେ ପୂର୍ବରୁ ସୂଚନା ଦେଇଥିଲେ । ଜାର୍ ଆଲେକ୍‌ଜାଣ୍ଡାର ରୁଷିଆର ସିଂହାସନ ଆରୋହଣ କଲା ସମୟରେ ଜଣେ ଉଦାର ପ୍ରକୃତିର ଯୁବକ ହୋଇଥିଲେ ମଧ୍ୟ ଆବଶ୍ୟକତା ଦୃଷ୍ଟିରୁ ନିରଙ୍କୁଶ ଶାସନ-କ୍ଷମତା ବଜାୟ ରଖିବାକୁ ଚାହିଁଥିଲେ । ସେ ସୁଶ୍ରୀ, ଗୁଣବାନ୍, ମୁଗ୍‌ଧକାରୀ, ଭାବପ୍ରବଣ, ଦୁର୍ବଳ ଓ ଆଳସ୍ୟପରାୟଣ ଥିଲେ । ଏକ ସମୟରେ ତାଙ୍କ ମାତାମହୀ କ୍ୟାଥାରାଇନ ଓ ପିତା ପଲ୍‌ଙ୍କ ସହିତ ସଦ୍‌ଭାବ ରଖିବା ଜଣକ ପକ୍ଷରେ ଦୁରୂହ ବ୍ୟାପାର ହୋଇଥିଲେ ମଧ୍ୟ ସେ ତାହା କରିପାରୁଥିବାରୁ ତାଙ୍କୁ ଛଳନାରେ ସିଦ୍ଧହସ୍ତ ବୋଲି କୁହାଯାଏ । ସେ ତାଙ୍କର ଆକର୍ଷଣକାରୀ ଶକ୍ତି ସାହାଯ୍ୟରେ ସେ ସମସ୍ୟାଗୁଡ଼ିକ ଏଡ଼ାଇଦେଇ ପାରୁଥିଲେ । ସେ ଜଣେ ଅଭିନେତା ହୋଇଥିବାରୁ ନିଜର ମନୋଭାବକୁ ବେଶ୍ ଗୋପନ ରଖିପାରୁଥିଲେ । ସେଥିପାଇଁ ତାଙ୍କ ଚରିତ୍ରରେ ଜଟିଳତା ପରିଲକ୍ଷିତ ହୁଏ । ପୁଶ୍‌କିନ୍ ତାଙ୍କୁ ଏକ ଅଦ୍ଭୁତ ଜୀବ ବୋଲି କହିଥିଲେ । ନେପୋଲିୟନ ବୋନାପାର୍ଟ ତାଙ୍କୁ ଉତ୍ତର ଟାଲ୍‌ମା ବା ଅଭିନେତା (Talma of the North) ଆଖ୍ୟା ଦେଇଥିଲେ । ମେଟାରନିକ୍‌ଙ୍କ ମତରେ ଆଲେକ୍‌ଜାଣ୍ଡାର ଏକଧାରାର ଚିନ୍ତାକରିବାକୁ ଅକ୍ଷମ ଥିଲେ ।

ବାସ୍ତବରେ ଆଲେକ୍‌ଜାଣ୍ଡାରଙ୍କ ଚରିତ୍ର ଯେପରି ଅଦ୍ଭୁତ ଧରଣର ଥିଲା, ସେହିପରି ମଧ୍ୟ ଦୁର୍ବୋଧ ଥିଲା । ସେ ଥିଲେ ଜଣେ ଆଦର୍ଶବାଦୀ ଏବଂ ତାଙ୍କର ଧର୍ମ ଉପରେ ଥିଲା ପ୍ରଗାଢ଼ ବିଶ୍ୱାସ । ତାଙ୍କର ଚରିତ୍ରରେ ଦୃଢ଼ତା ନ ଥିବାରୁ ଏବଂ ସେ ଅତ୍ୟନ୍ତ ଭାବପ୍ରବଣ

ଥିବାରୁ ଯେକୌଣସି ସାମାନ୍ୟ ବିଷୟରେ ବିଚଳିତ ହୋଇପଡୁଥିଲେ । ତାଙ୍କର ମତାମତରେ କୌଣସି ସାମଞ୍ଜସ୍ୟ ନ ଥିଲା । କୂଟନୀତି ବିଷୟରେ ସେ ଥିଲେ ସମ୍ପୂର୍ଣ୍ଣ ଅନଭିଜ୍ଞ ଏବଂ ତାଙ୍କ ଭାବଧାରା ଥିଲା ଅସଂଲଗ୍ନ । ସେ ବିଭିନ୍ନ ସମୟରେ ବିଭିନ୍ନ ରାଜନୈତିକ ମତବାଦ ପୋଷଣ କରୁଥିଲେ । ସେ କେତେବେଳେ ଗଣତାନ୍ତ୍ରିକ ମତବାଦରେ ବିଶ୍ୱାସ କରୁଥିଲେ ତ କେତେବେଳେ ସାମ୍ରାଜ୍ୟବାଦ ବା ସ୍ୱୈରତନ୍ତ୍ର ଶାସନରେ ବିଶ୍ୱାସ କରୁଥିଲେ । ଏଥିଯୋଗୁ ତାଙ୍କର ସମସାମୟିକ ଲୋକେ ତାଙ୍କୁ ନିର୍ଭରଯୋଗ୍ୟ ବୋଲି ମନେ କରୁନଥିଲେ । ତାଙ୍କ ଗୃହଶିକ୍ଷକ ଲା ହାର୍ପେ ତାଙ୍କୁ ଉଦାରନୀତି ଏବଂ ମାନବିକତା ବିଷୟରେ ଶିକ୍ଷାଦେଇ ବିଶେଷ ଅନୁପ୍ରାଣିତ କରିଥିଲେ । ତେଣୁ ରାଜଗାଦି ଲାଭକରିବା ପରେ ସେ କେତେ ବର୍ଷଯାଏ ପ୍ରଗତିଶୀଳ ଏବଂ ସଂସ୍କାରମୂଳକ ନୀତି ଅନୁସରଣ କରିଥିଲେ । ଏହା କରିବା ସତ୍ତ୍ୱେ ସେ ସ୍ୱୈରତନ୍ତ୍ର ଏବଂ ସାମରିକ ଶକ୍ତି ଉପରେ ଦୃଢ଼ ଆସ୍ଥା ସ୍ଥାପନ କରିଥିଲେ । ଫଳରେ ତାଙ୍କ ଚିନ୍ତାଧାରା ପରସ୍ପର-ବିରୋଧୀ ପ୍ରଭାବଦ୍ୱାରା ପ୍ରଭାବିତ ହୋଇଥିଲା । ସେ ଗଣତନ୍ତ୍ରବାଦ ପ୍ରତି ଅନୁରକ୍ତ ଥିଲେ ସତ; କିନ୍ତୁ ଗଣତାନ୍ତ୍ରିକ ନୀତିର ପ୍ରସାରକୁ ଭୟ କରୁଥିଲେ । ତାଙ୍କର ଜାତୀୟତାବାଦରେ ବିଶ୍ୱାସ ଥିଲେ ମଧ୍ୟ ଆନ୍ତର୍ଜାତିକ ସଂସ୍ଥା ସାହାଯ୍ୟରେ ଆନ୍ତର୍ଜାତିକ ଶାନ୍ତି ପ୍ରତିଷ୍ଠାକରିବା ଧାରଣା ତାଙ୍କ ମନରେ ପ୍ରଥମେ ସ୍ଥାନ ପାଇଥିଲା । ଆନ୍ତର୍ଜାତୀୟବାଦର ସେ ଥିଲେ ଜଣେ ଅଗ୍ରଦୂତ ଏବଂ ଆନ୍ତର୍ଜାତୀୟବାଦୀମାନଙ୍କ ମଧ୍ୟରେ (Among the Internationalists) ସେ ଥିଲେ ଅତିଶୟ ନିଷ୍ଠାପର । ଐତିହାସିକ ରାଇକରଙ୍କ ମତରେ ଜାର୍ ଆଲେକ୍‌ଜାଣ୍ଡାର ଜୟନ୍ତ ପରିମାଣରେ ଏକ ଯବକାଚରେ ନିଆଯାଇଥିବା ଦୁଇଟି ଆଲୋକ ଚିତ୍ରପଟ—ଗୋଟିଏ ପୁରୁଣା, ଅନ୍ୟଟି ନୂଆ । ('The sovereign was something like two photographs, one of the old, one of the new taken on the same lens.') ତାଙ୍କ ଚରିତ୍ରରେ ଅତୀତ ଏବଂ ବର୍ତ୍ତମାନର ସମ୍ମିଶ୍ରଣ ଦେଖିବାକୁ ମିଳେ । ଏକଥା ଅସ୍ୱୀକାର କରିହେବନାହିଁ ଯେ ନାନା ଦୋଷ ତ୍ରୁଟି ଥିବା ସତ୍ତ୍ୱେ ତାଙ୍କର ଉଦ୍ଦେଶ୍ୟ କଦାପି ନୀଚ ନଥିଲା ।

୧୮୦୧ ମସିହାରେ ସିଂହାସନ ଆରୋହଣ କଲାପରେ ଆଲେକ୍‌ଜାଣ୍ଡାର ପରବର୍ତ୍ତୀ ନେପୋଲିୟନୀୟ ଯୁଗରେ ଆକର୍ଷଣୀୟ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ନେତୃତ୍ୱରେ ରୁଷିଆ ଓ ଇଉରୋପର ରାଜନୀତି ଏବଂ ଯୁଦ୍ଧକ୍ଷେତ୍ରରେ ମୁଖ୍ୟ ନିର୍ଦ୍ଦେଶକ ଥିଲା । ଆଲେକ୍‌ଜାଣ୍ଡାର ୧୮୦୭ ମସିହା ଟିଲ୍‌ସିଟ୍ ସନ୍ଧିରେ ନେପୋଲିୟନଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ ଏବଂ ୧୮୧୧ ମସିହାରେ ହଠାତ୍ ତାଙ୍କ ସଙ୍ଗ ପରିତ୍ୟାଗକରି ତାଙ୍କର ଜଣେ ସ୍ଥାୟୀ ଏବଂ ଶକ୍ତିଶାଳୀ ଶତ୍ରୁରୂପେ କାର୍ଯ୍ୟ କଲେ । ୧୮୦୫ ରୁ ୧୮୧୫ ମସିହା ପର୍ଯ୍ୟନ୍ତ ରୁଷିଆ ଅନବରତ ଯୁଦ୍ଧରେ ବ୍ୟାପୃତ ଥିଲା ଏବଂ ସେଥିରେ ପ୍ରାୟ ସେ ସାଢ଼େ ଚାରିଲକ୍ଷ ଲୋକ ହରାଇଥିଲା । ତା'ଛଡ଼ା ସେହି ଯୁଦ୍ଧ ଯୋଗୁ ଜାତୀୟ ଋଣ ଏବଂ କରଭାର

ବହୁ ପରିମାଣରେ ବୃଦ୍ଧି ପାଇଥିଲା । ରୁଷୀୟ ପ୍ରଶାସନ ସେବା ଏପରି ଦୁର୍ନୀତିଗ୍ରସ୍ତ ହୋଇଥିଲା ଯେ ତାହା ସଂସ୍କାରର ମାର୍ଗ ରୁଦ୍ଧ କରିଦେଇଥିଲା । ୧୮୧୫ ପରର ସରକାରୀ ଇତିହାସ ଲେଖକଙ୍କ ମତରେ "ସବୁଠି ପୂରିରହିଥିଲା ଦୁର୍ନୀତି, ଅନ୍ୟାୟ, ଅସାଧୁତା" ("Everything was corrupt, everything unjust, everything dishonest.") ଏପରି ପରିସ୍ଥିତି ଯୋଗୁ ଶାସକର ନେତୃତ୍ୱ ଓ କାର୍ଯ୍ୟରେ ବାଧା ସୃଷ୍ଟି ହୋଇଥିଲା ।

## ଆଲେକ୍‌ଜାଣ୍ଡାରଙ୍କର ଆଭ୍ୟନ୍ତରୀଣ ନୀତି

ପ୍ରଥମ ଆଲେକ୍‌ଜାଣ୍ଡାର ୧୮୧୫ ମସିହାରେ ଇଉରୋପର ବିଭିନ୍ନ ରାଜ୍ୟରେ ଅଧିଷ୍ଠିତ ରାଜାମାନଙ୍କ ମଧ୍ୟରେ ଅତ୍ୟଧିକ ଉଦାରପନ୍ଥୀ ନରପତି ବୋଲି ପରିଚିତ ଥିଲେ । ମୋଟଉପରେ ଇଉରୋପର ପୁନର୍ଗଠନରେ ସେ ଥିଲେ ଉଦାରନୈତିକ ଶକ୍ତି । ସେ ଦୃଢ଼ଭାବରେ କହୁଥିଲେ ଯେ ବିଜୟୀ ଶକ୍ତିମାନଙ୍କ ପକ୍ଷରେ ଫ୍ରାନ୍‌ସକୁ ସନ୍ଧିଦେବାରେ ବଦାନ୍ୟତା ପ୍ରଦର୍ଶନ କରିବା ଉଚିତ ଥିଲା । ଅଷ୍ଟାଦଶ ଲୁଇ ଫ୍ରାନ୍‌ସର ଲୋକମାନଙ୍କୁ ସାମ୍ବିଧାନିକ ସ୍ୱାଧୀନତା ଦେବାପାଇଁ ମଧ୍ୟ ସେ ଜିଦ୍ ଧରିଥିଲେ । ସେ ଭିଏନା କଂଗ୍ରେସରେ ଜର୍ମାନମାନଙ୍କ ପ୍ରତି ସହାନୁଭୂତି ଦେଖାଇଥିଲେ । ପୋଲ୍ ପ୍ରଜାମାନଙ୍କ ପ୍ରତି ସେ ଉଦାରନୈତିକ ଶାସନ ବ୍ୟବସ୍ଥା ପ୍ରଚଳନ କରିଥିଲେ । ଫ୍ରାନ୍‌ସ ବ୍ୟତୀତ ଏକମାତ୍ର ପୋଲଣ୍ଡରେ ଗଣତାନ୍ତ୍ରିକ ଭିତ୍ତିରେ ଶାସନବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା । ଫିନ୍‌ଲ୍ୟାଣ୍ଡରେ ଏକ ଉଦାରନୈତିକ ଶାସନ ବ୍ୟବସ୍ଥା ପ୍ରଚଳନ କରିଥିଲେ । ପୋଲାଣ୍ଡରେ ନୂତନ ଶାସନବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସମ୍ବାଦପତ୍ର ଗୁଡ଼ିକର ସ୍ୱାଧୀନତା ଏବଂ ଧର୍ମ ସମ୍ବନ୍ଧରେ ସହନଶୀଳତା ନୀତି ସେ ଅନୁସରଣ କରିଥିଲେ । ସେ ରୁଷୀୟମାନଙ୍କୁ ଆଶ୍ୱାସନା ଦେଇଥିଲେ ଯେ ସେମାନଙ୍କ ପାଇଁ ନିକଟ ଭବିଷ୍ୟତରେ ଏକ ଉଦାରନୈତିକ ଶାସନ ବ୍ୟବସ୍ଥା ମଞ୍ଜୁର କରାଯିବ । ସେ କେତେକ ପ୍ରଦେଶରେ ଭୂମିଦାସମାନଙ୍କୁ ମୁକ୍ତି ଦେଇଥିଲେ ଏବଂ କ୍ରୀତଦାସ ପ୍ରଥା ଲୋପପାଇଁ ସହାୟତା କରିଥିଲେ । ସେ ଅନୁଭବ କରିଥିଲେ ଯେ ବହୁଦିନ ସେ ରୁଷିଆରେ ଅନୁପସ୍ଥିତ, ବୈଦେଶିକ ବ୍ୟାପାର ନେଇ ବ୍ୟସ୍ତ ଏବଂ ଯୁଦ୍ଧରେ ବ୍ୟାପୃତ ରହୁଥିବାଯୋଗୁ ଶାସନ କ୍ଷେତ୍ରରେ ଦୁର୍ନୀତି ବ୍ୟାପିଯାଇଥିଲା । ତେଣୁ ସେ ଦୃଢ଼ ଏବଂ ଦକ୍ଷ ଶାସନ ପ୍ରତିଷ୍ଠାକରିବାପାଇଁ ବିଶେଷ ଉଦ୍ୟମ କରିଥିଲେ । ଦୁର୍ନୀତିର ମୂଳୋତ୍ପାଟନ କରିବା ଉଦ୍ଦେଶ୍ୟରେ ସେ ଦୃଢ଼ ପଦକ୍ଷେପ ନେଇଥିଲେ; କିନ୍ତୁ ତାହା ବିଶେଷ ଫଳପ୍ରଦ ହୋଇନଥିଲା । ଜେଲଖାନାମାନଙ୍କର ଏବଂ ଦଣ୍ଡବିଧି ଆଇନଗୁଡ଼ିକର ସଂସ୍କାର କରାଯାଇଥିଲା । ଆଲେକ୍‌ଜାଣ୍ଡାର ହାସପାତାଲ ଓ ଆଶ୍ରମଗୁଡ଼ିକୁ ମୁକ୍ତହସ୍ତରେ ଦାନ କରିଥିଲେ । ରୁଷିଆରେ ରାସ୍ତାଗୁଡ଼ିକର ଅବସ୍ଥା ଭଲ ନ ଥିବାଯୋଗୁ ପରିବହନର ସୁବିଧା ନ ଥିଲା । ତେଣୁ ଦୁର୍ଭିକ୍ଷ ଏଡ଼ାଇବାପାଇଁ ସେ ପ୍ରତି ଜିଲାରେ ଶସ୍ୟ-ଭଣ୍ଡାର ସ୍ଥାପନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେ ମଧ୍ୟ ବହିର୍ବାଣିଜ୍ୟକୁ ଉତ୍ସାହିତ କରିଥିଲେ ।

ଆଲେକ୍‌ଜାଣ୍ଡାରଙ୍କର ଉଦାରନୈତିକ ନୀତି ତାଙ୍କ ସାମ୍ରାଜ୍ୟବାଦ ପ୍ରତିଷ୍ଠା ପଥରେ ବାଧା ଦେଇନଥିଲା । ସେ ନିଜ ରାଜ୍ୟର ସୀମା ସମ୍ପ୍ରସାରଣପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । ସେ ଫିନଲ୍ୟାଣ୍ଡ ଅଧିକାର କରିନେଇଥିଲେ ସତ; କିନ୍ତୁ ସେଠାରେ ଉଦାରନୈତିକ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ନେପୋଲିୟନଙ୍କ ସହିତ ମିଶି ସେ ତୁର୍କୀକୁ ଭାଗ ଭାଗ କରିଦେବାକୁ ଚାହୁଁଥିଲେ । ସେ ଯାହାହେଉ, ଭିଏନା କଂଗ୍ରେସରେ ସେ ଉଦାରନୈତିକ ମତବାଦର ପ୍ରତୀକ ଥିଲେ । ଆନ୍ତର୍ଜାତିକ କ୍ଷେତ୍ରରେ ଆଲେକ୍‌ଜାଣ୍ଡାର ତାଙ୍କ ଉଦାରନୈତିକ ମତବାଦର ପ୍ରତ୍ୟକ୍ଷ ପ୍ରମାଣ ଦେଇଥିଲେ । ଜାତୀୟତା ଭିତ୍ତିରେ ଜର୍ମାନୀ ଏବଂ ଇଟାଲୀର ପୁନର୍ଗଠନ ଏବଂ କ୍ରୀତଦାସ ବ୍ୟବସାୟର ଉଚ୍ଛେଦ-ସାଧନ ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ଇଉରୋପୀୟ ଶକ୍ତିସଙ୍ଘର ସାହାଯ୍ୟରେ ଆନ୍ତର୍ଜାତିକ ଶାନ୍ତିରକ୍ଷାର ପ୍ରସ୍ତାବ ଆଲେକ୍‌ଜାଣ୍ଡାର ହିଁ ଉତ୍ଥାପନ କରିଥିଲେ । 'ପବିତ୍ର ସଂଘ' ତାଙ୍କ ଆନ୍ତର୍ଜାତିକ ମତବାଦର ଏକ ଦୃଷ୍ଟାନ୍ତ । ସେ ଇଉରୋପର ବିଭିନ୍ନ ଶକ୍ତି-ଗୁଡ଼ିକୁ ଏକ ଭ୍ରାତୃବନ୍ଧନରେ ଆବଦ୍ଧକରିବାକୁ ଚାହିଁଥିଲେ । ସମଗ୍ର ଇଉରୋପରେ ଜନଆନ୍ଦୋଳନ ଏବଂ ମେଟାରନିକଙ୍କ କ୍ରମାଗତ ଶିକ୍ଷାଦାନ ଫଳରେ ତାଙ୍କ ଉଦାରନୈତିକ ମତବାଦର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ଉଦାରନୈତିକ ସଂସ୍କାର କର ଭୂମିକା ପରିତ୍ୟାଗକରି ଆଲେକ୍‌ଜାଣ୍ଡାର ପ୍ରତିକ୍ରିୟାଶୀଳର ଭୂମିକା ଗ୍ରହଣ କରିଥିଲେ । ନେପଲ୍‌ସ, ପିଡ଼ମଣ୍ଟ ଏବଂ ସ୍ପେନର ବିଦ୍ରୋହ ଦମନକରିବା ପଥରେ ମେଟାରନିକଙ୍କୁ ପୂର୍ଣ୍ଣ ସମର୍ଥନ କରିଥିଲେ । ତାଙ୍କର 'ପବିତ୍ର-ଚୁକ୍ତି'କୁ ଲୋକେ ଅତ୍ୟାଚାରର ପ୍ରତୀକ ବୋଲି କହିବାକୁ ଲାଗିଲେ । ସେ 'ଟ୍ରପୋ ଚୁକ୍ତିପତ୍ର' (Protocol of Troppau) ନାମକ ଏକ ପ୍ରତିକ୍ରିୟାଶୀଳ ଏବଂ ଗଣତନ୍ତ୍ର ଓ ଜାତୀୟତାବାଦର ଧ୍ୱଂସକାରୀ ଚୁକ୍ତିପତ୍ର ସ୍ୱାକ୍ଷର କରିବାକୁ କୁଣ୍ଠାବୋଧ କରିନଥିଲେ । ରୁଷୀୟ ଏବଂ ଗ୍ରୀକ୍‌ମାନେ ସମ ଖ୍ରୀଷ୍ଟିଆନ ପରିବାର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ଗ୍ରୀକ୍‌ମାନଙ୍କ ବିଦ୍ରୋହ ପ୍ରତି ରୁଷୀୟମାନଙ୍କର ଆନ୍ତରିକ ସହାନୁଭୂତି ଥିଲେ ମଧ୍ୟ ଆଲେକ୍‌ଜାଣ୍ଡାର ମେଟାରନିକ୍‌ଙ୍କର ପରାମର୍ଶ ମାନି ତୁର୍କୀ ବିରୁଦ୍ଧରେ ଗ୍ରୀକ୍‌ମାନଙ୍କ ବିଦ୍ରୋହକୁ ସାହାଯ୍ୟ କରିନଥିଲେ । ପ୍ରତିକ୍ରିୟାଶୀଳ ନୀତିରେ ତାଙ୍କର ରୂପାନ୍ତର ଉଦାରପନ୍ଥୀମାନଙ୍କ ମନରେ ଦାରୁଣ ଆଘାତ ଦେଇଥିଲା । ଫଳରେ ଆଲେକ୍‌ଜାଣ୍ଡାରଙ୍କ ନିରଙ୍କୁଶ ଏବଂ ପ୍ରତିକ୍ରିୟାଶୀଳ ସରକାରଙ୍କ ବିରୁଦ୍ଧରେ ଗୁପ୍ତ ସମିତିମାନ ପ୍ରତିଷ୍ଠିତ ହୋଇଥିଲା । ଆଲେକ୍‌ଜାଣ୍ଡାର ନିଜର ଭୁଲ ବୁଝିପାରି ଗ୍ରୀକ୍‌ମାନଙ୍କ ସପକ୍ଷରେ ମିଳିତ ହସ୍ତକ୍ଷେପପାଇଁ ଇଂଲଣ୍ଡ ସହିତ ଆଲୋଚନା ଚଳାଇଥିଲାବେଳେ ହଠାତ୍ ୧୮୨୫ ମସିହା ଡିସେମ୍ବର ୧ ତାରିଖରେ ତାଙ୍କର ମୃତ୍ୟୁ ଘଟିଲା ।

## ପ୍ରଥମ ନିକୋଲାସଙ୍କ ରାଜତ୍ୱ (୧୮୨୫-୫୫)

ପ୍ରଥମ ଆଲେକ୍‌ଜାଣ୍ଡାରଙ୍କର ଉତ୍ତରାଧିକାରୀ ହେବାପାଇଁ ତାଙ୍କର ପୁତ୍ର ନ ଥିଲା । ତାଙ୍କର ନିକଟତମ ଉତ୍ତରାଧିକାରୀ ଥିଲେ ତାଙ୍କ ଭାଇ କନ୍‌ଷ୍ଟାନ୍‌ଟାଇନ୍; କିନ୍ତୁ ସେ

ଗୋପନରେ ରାଜପଦ ଗ୍ରହଣ କରିବାକୁ ମନାକରିଦେଇଥିଲେ । ତେଣୁ ଆଲେକ୍‌ଜାଣ୍ଡାର ତାଙ୍କର ଆଉ ଜଣେ ସାନଭାଇ ନିକୋଲାସ୍‌ଙ୍କୁ ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ । ସେ ଯାହାହେଉ ଆଲେକ୍‌ଜାଣ୍ଡାରଙ୍କର ଏହି ବ୍ୟବସ୍ଥାକରଣ ଦଲିଲ କେବେ ପ୍ରକାଶ ପାଇନଥିଲା । ଫଳରେ କେତେ ସପ୍ତାହପାଇଁ ରୁଷିଆରେ ବିଶୃଙ୍ଖଳା ଏବଂ ଅନିଶ୍ଚିତତା ଦେଖାଦେଇଥିଲା । ପ୍ରଥମେ ନିକୋଲାସ ସିଂହାସନ ଆରୋହଣ କରିବାକୁ ମନାକରି-ଦେଇଥିଲେ ଏବଂ କନ୍‌ଷ୍ଟାନ୍‌ଟାଇନଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ । କେତେଦିନ ବିତିଗଲା ପରେ କନ୍‌ଷ୍ଟାନ୍‌ଟାଇନ୍ ପ୍ରକାଶ୍ୟରେ ତାଙ୍କର ରାଜସିଂହାସନ ଉପରୁ ଦାବି ପ୍ରତ୍ୟାହାର କରିନେଇଥିଲେ । କନ୍‌ଷ୍ଟାନ୍‌ଟାଇନ ଏହା କରିବା ପରେ ପରେ, ଆଲେକ୍‌-ଜାଣ୍ଡାରଙ୍କ ରାଜତ୍ୱର ଶେଷଭାଗରେ ଯେଉଁ ଅସନ୍ତୁଷ୍ଟଗୋଷ୍ଠୀ ଏବଂ ଗୁପ୍ତସମିତିଗୁଡ଼ିକ ପ୍ରତିଷ୍ଠିତ ହୋଇଥିଲା, ସେମାନେ ବିଦ୍ରୋହ ଆରମ୍ଭ କରିଦେଇଥିଲେ । ସେମାନଙ୍କର ନିର୍ଦ୍ଦିଷ୍ଟ ଲକ୍ଷ୍ୟ କ'ଣ ଥିଲା ତାହା ପରିଷ୍କାର ଭାବେ ଜଣାଯାଇନଥିଲା । ୧୮୨୫ ମସିହା ଡିସେମ୍ବର ମାସରେ ଏହି ବିଦ୍ରୋହ ଘଟିଥିବାରୁ ବିଦ୍ରୋହୀମାନଙ୍କୁ ଡିସେମ୍ବ୍ରିଷ୍ଟ ବା ଡେକାବ୍ରିଷ୍ଟ ଆଖ୍ୟା ଦିଆଯାଇଅଛି । କେତେକ ସାମରିକ ଲୋକେ ଏହି ବିଦ୍ରୋହ ଘଟାଇବା ପାଇଁ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ । କନ୍‌ଷ୍ଟାନ୍‌ଟାଇନଙ୍କ ସପକ୍ଷରେ ନାମକୁ ମାତ୍ର ଏହି ବିଦ୍ରୋହ ସଂଗଠିତ ହୋଇଥିଲା; କିନ୍ତୁ ପ୍ରକୃତ ଏହାର ଲକ୍ଷ୍ୟ ଥିଲା ବିଦ୍ୟମାନ ପ୍ରତିକ୍ରିୟାର ପ୍ରତିରୋଧ କରିବା, ନିରଙ୍କୁଶ ଶାସନର ଅବସାନ ଘଟାଇବା ଏବଂ ଉଦାରନୈତିକ ଶାସନ ବ୍ୟବସ୍ଥା ପ୍ରତିଷ୍ଠାକରିବା । ଏହି ଡିସେମ୍ବ୍ରିଷ୍ଟମାନଙ୍କର ମୂଳମନ୍ତ୍ର ଥିଲା 'କନ୍‌ଷ୍ଟାନ୍‌ଟାଇନ ଏବଂ ସମ୍ବିଧାନ' ('Constantine and Constitution') ରୁଷିଆର ବିଦ୍ରୋହୀ ସୈନ୍ୟମାନେ ଏତେ ଅଜ୍ଞ ଥିଲେ ଯେ ସେମାନେ କନଷ୍ଟିଚ୍ୟୁସନକୁ କନ୍‌ଷ୍ଟାନଟାଇନଙ୍କ ପତ୍ନୀ ବୋଲି ବିଶ୍ୱାସ କରିଥିଲେ । ଏଥିରୁ ପରିଷ୍କାର ସୂଚନା ମିଳୁଛି ଯେ ରୁଷିଆର ଉଦାରନୈତିକ ମତବାଦର ପ୍ରଗତି ଅତି ସାମାନ୍ୟ ଥିଲା । ଆବଶ୍ୟକୀୟ ସଙ୍ଗଠନ ଏବଂ ଯୋଗାଯୋଗର ଅଭାବଯୋଗୁ ଏହି ବିଦ୍ରୋହକୁ ଅନାୟାସରେ ଦମନ କରାଯାଇଥିଲା । ଡିସେମ୍ବ୍ରିଷ୍ଟ୍ ବିଦ୍ରୋହୀମାନଙ୍କ ମଧ୍ୟରୁ ଅନେକଙ୍କୁ ଯାବଜ୍ଜୀବନ କାରାବାସ ଦଣ୍ଡ ଦିଆଯାଇଥିଲା ।

ଆଲେକ୍‌ଜାଣ୍ଡାରଙ୍କ ସାନଭାଇ ପ୍ରଥମ ନିକୋଲାସ୍ ଉପାଧି ଧାରଣକରି ୩୦ ବର୍ଷ ବୟସରେ ୧୮୨୫ ମସିହାରେ ରୁଷିଆର ରାଜସିଂହାସନ ଆରୋହଣ କରିଥିଲେ । ନୂତନ ଜାର୍‌ଙ୍କର ରକ୍ଷଣଶୀଳ ନୀତି ବିଷୟରେ ଯେଉଁ ଦୃଢ଼ ଧାରଣା ଥିଲା, ତାହା ଡିସେମ୍ବ୍ରିଷ୍ଟ-ମାନଙ୍କ ବିଦ୍ରୋହ ଫଳରେ ସ୍ଥାୟୀ ହୋଇଥିଲା । ନିକୋଲାସ୍ ଦୀର୍ଘ ୩୦ ବର୍ଷକାଳ ରାଜତ୍ୱ କରିଥିଲେ ଏବଂ ତାଙ୍କ ରାଜତ୍ୱ ଘଟଣାବହୁଳ ଥିଲା । ସେ ରାଜନୀତି ବା ଶାସନ ସମ୍ବନ୍ଧରେ କୌଣସି ତାଲିମ ପାଇନଥିଲେ ଏବଂ ତାଙ୍କର ତାଲିମ କେବଳ ସୈନ୍ୟବାହିନୀରେ ସୀମାବଦ୍ଧ ଥିଲା । ତାଙ୍କର ବାସ୍ତବ, ସଂକୀର୍ଣ୍ଣ, ଦୃଢ଼ ଏବଂ ଅତିରିକ୍ତ ରକ୍ଷଣଶୀଳ ମନୋଭାବ

ତାଙ୍କ କାର୍ଯ୍ୟରେ ପ୍ରତିଫଳିତ ହୋଇଥିଲା । ସେ ଯେଉଁଠାରେ ଏବଂ ଯେଉଁ କ୍ଷେତ୍ରରେ ଅପବ୍ୟବହାରର ସନ୍ଧାନ ପାଉଥିଲେ, ତାହାର ମୂଳଚ୍ଛେଦପାଇଁ ଯଥେଷ୍ଟ ଉଦ୍ୟମ କରୁଥିଲେ; କିନ୍ତୁ ଏପରି ଏକ ବିଶାଳ, କେନ୍ଦ୍ରୀଭୂତ ଏବଂ ଅସଂଲଗ୍ନ ସାମ୍ରାଜ୍ୟରେ ଶାସନର ସମସ୍ତ ଛିଟିକିଛି ବିଷୟକୁ ନିୟନ୍ତ୍ରଣ କରିବା ଜାର୍ ନିକୋଲାସ୍‌ଙ୍କ ପକ୍ଷରେ ଅସମ୍ଭବ ଥିଲା । ତାଙ୍କର ଉଭୟ ବୈଦେଶିକ ଏବଂ ଆଭ୍ୟନ୍ତରୀଣ ନୀତି ସ୍ୱୈରଶକ୍ତିର ଉପରେ ପ୍ରତିଷ୍ଠିତ ଥିଲା । ଇଉରୋପରେ ୩୦ ବର୍ଷକାଳ ରାଜତାନ୍ତ୍ରିକ କ୍ଷମତାର ସେ ଥିଲେ ଏକ ବିରାଟ ପ୍ରାଚୀର-ସ୍ୱରୂପ । ସେ ପ୍ରତିକ୍ରିୟାଶୀଳ ନୀତିକୁ ପୁଙ୍ଖାନୁପୁଙ୍ଖ ଏବଂ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକାରୀ କରିଥିଲେ । ସେ ରୁଷିଆର ଅଧିବାସୀମାନଙ୍କ ଜୀବନଯାପନ ପ୍ରଣାଳୀର ପ୍ରତ୍ୟେକ ଦିଗ ସମ୍ପୂର୍ଣ୍ଣ ରୁଷୀୟ ଭାବଧାରାଦ୍ୱାରା ପ୍ରଭାବିତ ହେବାପାଇଁ ବିଶେଷ ଉଦ୍ୟମ କରିଥିଲେ । ସେ ରୁଷିଆକୁ ଆତ୍ମନିର୍ଭରଶୀଳ କରିବା ଚାହୁଁଥିଲେ ଏବଂ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ରୁଷିଆ ତାହା ଜୀବନର ମୌଳିକ ଏବଂ ସଠିକ୍ ନୀତିଗୁଡ଼ିକ ନିଶ୍ଚୟ ନିଜ ଭିତରେ ଖୋଜି ପାଇବ । ମହାମାନ ପିଟରଙ୍କଠାରୁ ଆରମ୍ଭକରି ତାଙ୍କର ସବୁ ପୂର୍ବାଧିକାରୀ ପଶ୍ଚିମ ଇଉରୋପର ଅନୁକରଣରେ ରୁଷିଆର ପ୍ରଗତି ସମ୍ଭବ ବୋଲି ବିଚାରିଥିଲେ ଏବଂ ରୁଷିଆରେ ପାଶ୍ଚାତ୍ୟ ପ୍ରଥା, ଆଦର୍ଶ ଓ ଅନୁଷ୍ଠାନମାନ ପ୍ରବର୍ତ୍ତନ କରିବାକୁ ଚାହୁଁଥିଲେ; କିନ୍ତୁ ନିକୋଲାସଙ୍କ ଆଭିମୁଖ୍ୟ ସେମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ; କାରଣ ରୁଷିଆର ଐତିହ୍ୟ ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥା ଥିଲା ।

ତାଙ୍କ ଦୀର୍ଘ ୩୦ ବର୍ଷ ରାଜତ୍ୱକାଳରେ ଧାରାବାହିକ ଭାବରେ ରୁଷିଆରେ ଦମନନୀତି ଚାଲିଥିଲା । ଏଥିପାଇଁ ଦୁଇଟି ପ୍ରଧାନ ଅସ୍ତ୍ର—ଗୁପ୍ତପୁଲିସ ଏବଂ ମୁଦ୍ରଣସାଈ ବ୍ୟବହାର କରାଯାଉଥିଲା । ଗୁପ୍ତପୋଲିସ ତୃତୀୟ ବିଭାଗ ( Third Section ) ନାମରେ ନାମିତ ହୋଇ ବାସ୍ତବରେ ଅପରିସୀମ ଏବଂ ଅସାଧାରଣ କ୍ଷମତା ପ୍ରୟୋଗ କରୁଥିଲେ । ସନ୍ଦେହରେ ଯେକୌଣସି ବ୍ୟକ୍ତିକୁ ଗିରଫ୍, ଦେଶରୁ ବହିଷ୍କାର ଏବଂ ପ୍ରାଣଦଣ୍ଡ ଦେବାର ସେମାନଙ୍କର ଅଧିକାର ଥିଲା । କଠୋର ମୁଦ୍ରଣସାଈ ପ୍ରୟୋଗ ଯୋଗୁ ସମ୍ବାଦପତ୍ରଗୁଡ଼ିକର ସ୍ୱାଧୀନତା କିଛି ନଥିଲା । ବାକ୍‌ସ୍ୱାତନ୍ତ୍ର୍ୟ ମଧ୍ୟ ଲୋପ କରିଦିଆଯାଇଥିଲା । ସାମାନ୍ୟ ଆଇନଭଙ୍ଗ ପାଇଁ କଠୋର ଶାସ୍ତିବିଧାନ କରାଯାଉଥିଲା । ମୁଦ୍ରଣସାଈ ଆଇନକୁ ନ ମାନି ସାମାନ୍ୟ କେତୋଟି ଶବ୍ଦ ପ୍ରକାଶନ କରାଗଲେ, ସେଥିପାଇଁ ବିନା ପ୍ରାରମ୍ଭିକ ବିଚାରରେ ନିର୍ବାସନ ଦଣ୍ଡ ଦିଆଯାଉଥିଲା । ହିସାବରୁ ଜଣାଯାଉଛି ଯେ ୧୮୩୨ରୁ ୧୮୫୨ ମସିହା ପର୍ଯ୍ୟନ୍ତ—ଏହି ୨୦ ବର୍ଷ ଭିତରେ ଦେଢ଼ଲକ୍ଷ ଲୋକଙ୍କୁ ସାଇବେରିଆକୁ ନିର୍ବାସିତ କରାଯାଇଥିଲା । ତା'ଛଡ଼ା ହଜାର ହଜାର ଲୋକ ରୁଷିଆର ଜେଲରେ ନିର୍ଜ୍ଜୀବଭାବେ ପଡ଼ିରହିଥିଲେ । କଠୋର ଯାଞ୍ଚବ୍ୟବସ୍ଥା ଯୋଗୁ ଜନସାଧାରଣ ଦୈନିକ ସମ୍ବାଦପତ୍ର ପଢ଼ିବାକୁ ଆଗ୍ରହ ପ୍ରକାଶ କରୁନଥିଲେ । ୧୮୪୩ ମସିହାରେ ରୁଷିଆର ସମସ୍ତ ଦୈନିକ ସମ୍ବାଦପତ୍ରର ଗ୍ରାହକମାନଙ୍କ ସଂଖ୍ୟା ମାତ୍ର ବାରହଜାର ଥିଲା । ବିଦେଶୀ ସାହିତ୍ୟ, ଦର୍ଶନ,

ରାଜନୀତି ସମ୍ବନ୍ଧୀୟ ପୁସ୍ତକଗୁଡ଼ିକ ରୁଷିଆରେ ପ୍ରବେଶ ନିଷିଦ୍ଧ କରାଯାଇଥିଲା । ରୁଷ ସରକାର ଲୋକମାନଙ୍କୁ ଉଦାରନୈତିକ ପ୍ରଭାବରୁ ମୁକ୍ତରଖିବା ଉଦ୍ଦେଶ୍ୟରେ ଶିକ୍ଷା, ଏପରିକି ସେମାନଙ୍କର ଚିନ୍ତାଧାରାକୁ କଠୋର ଭାବରେ ନିୟନ୍ତ୍ରଣ କରିଥିଲା । ବିଶ୍ୱବିଦ୍ୟାଳୟଗୁଡ଼ିକର ଅଧ୍ୟାପକ ଓ ପାଠ୍ୟକ୍ରମ ଉପରେ ରୁଷସରକାର କଡ଼ା ନଜର ରଖିଥିଲେ । ଜାର୍ ନିକୋଲାସ୍ କେବଳ ଆଭ୍ୟନ୍ତରୀଣ କ୍ଷେତ୍ରରେ ଉଦାରନୀତିର ପ୍ରୟୋଗ ବିରୁଦ୍ଧରେ ପଦକ୍ଷେପ ନେଇନଥିଲେ, ବିଦେଶୀରାଷ୍ଟ୍ରମାନଙ୍କରେ ମଧ୍ୟ ଉଦାରନୈତିକ ଆନ୍ଦୋଳନକୁ ଦମନକରିବା ପାଇଁ ସୈନ୍ୟ ସାହାଯ୍ୟ ଦେଉଥିଲେ । ସେ ଜନସାଧାରଣଙ୍କ ଭାବଧାରାକୁ ଭିନ୍ନଆଡ଼କୁ ନେବା ଉଦ୍ଦେଶ୍ୟରେ ରୁଷସାହିତ୍ୟ ମାଧ୍ୟମରେ ସଙ୍କୀର୍ଣ୍ଣ ଜାତୀୟତାଭାବ ଉଦ୍ରେକ କରୁଥିଲେ । କୌଣସି ବୈଦେଶିକ ରାଷ୍ଟ୍ର ପ୍ରଭାବରେ ରୁଷଜାତିର ଯେପରି ଉଦାରନୈତିକ ଚେତନା ଜାଗ୍ରତ ନହୁଏ, ସେଥିପ୍ରତି ସେ ବିଶେଷ ସତର୍କତା ଅବଲମ୍ବନ କରିଥିଲେ ।

ଜାର୍ ପ୍ରଥମ ନିକୋଲାସଙ୍କ ଅମଳରେ ସମଗ୍ର ରୁଷିଆ ଏକ ସେନାଛାଉଣିରେ ପରିଣତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନଙ୍କର ବାହ୍ୟିକ ବ୍ୟବହାର ଓ ଚିନ୍ତାଧାରାକୁ ନିୟନ୍ତ୍ରଣ କରାଯାଇଥିଲା । ରୁଷୀୟମାନେ କାଳେ ପାଶ୍ଚାତ୍ୟ ଦେଶମାନଙ୍କ ଉଦାରନୈତିକ ଚିନ୍ତାଧାରାଦ୍ୱାରା ସଂକ୍ରମିତ ହେବେ, ସେଥିପାଇଁ ସେ ରୁଷୀୟମାନଙ୍କର ବିଦେଶ ଭ୍ରମଣ ଉପରେ ବିଶେଷ କଟକଣା ଜାରିକରିଥିଲେ । ସେ ବିଦେଶ ଭ୍ରମଣପାଇଁ ଅନୁମତିପତ୍ର ବ୍ୟବସ୍ଥା (Passport System)ପ୍ରବର୍ତ୍ତନ କରିଥିଲେ । ଏହି ଅନୁମତିପତ୍ର ବ୍ୟୟସାପେକ୍ଷ ହୋଇଥିଲା ଏବଂ ଜାର୍‌ଙ୍କ ସ୍ୱୀକୃତି ମିଳିଲେ ଏହି ଅନୁମତିପତ୍ର କେବଳ ପାଞ୍ଚବର୍ଷପାଇଁ ମଞ୍ଜୁର କରାଯାଉଥିଲା । ଯଦି କୌଣସି ରୁଷଲୋକ ନିର୍ଦ୍ଦିଷ୍ଟ ସମୟରୁ ଅଧିକଦିନ ବିଦେଶରେ ରହେ, ତାହାହେଲେ ତାହାର ରୁଷିଆରେ ଥିବା ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବାର ବ୍ୟବସ୍ଥା ହୋଇଥିଲା । ସେହିପରି ବିଦେଶୀମାନଙ୍କର ରୁଷିଆ ଭ୍ରମଣକୁ ବ୍ୟାପକଭାବରେ ନିରୁତ୍ସାହିତ କରାଯାଉଥିଲା । ବିଦେଶୀମାନେ ରୁଷିଆ ଭ୍ରମଣକରିବାକୁ ଚାହିଁଲେ ରୁଷସରକାରଙ୍କଠାରୁ ଅନୁମତିପତ୍ର ନେବାକୁ ପଡ଼ୁଥିଲା ଏବଂ ସେମାନଙ୍କର ରୁଷିଆ ପରିଭ୍ରମଣର ଲକ୍ଷ୍ୟ କଣ ତାହାର କୈଫିୟତ ସେମାନଙ୍କୁ ଦେବାକୁ ପଡ଼ୁଥିଲା । ରୁଷିଆରେ ସେମାନଙ୍କର ରହଣୀ ସମୟରେ ପୁଲିସ୍ ସେମାନଙ୍କର ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲା ।

## ନିକୋଲାସଙ୍କର ପୋଲାଣ୍ଡ ନୀତି

ଫ୍ରାନ୍ସର ୧୮୩୦ ମସିହା ଜୁଲାଇ-ବିପ୍ଲବ ରୁଷିଆର ଅଧୀନରେ ଥିବା ପୋଲାଣ୍ଡ ଉପରେ ବିଶେଷ ପ୍ରଭାବ ପକାଇଥିଲା । ଫଳରେ ପୋଲ୍‌ମାନେ ରୁଷିଆ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ; କିନ୍ତୁ ନିକୋଲାସ୍ ସେ ବିଦ୍ରୋହକୁ ଦୃଢ଼ହସ୍ତରେ ଦମନ କରିଥିଲେ । ପୋଲମାନେ ଯେଉଁ ସ୍ୱାୟତ୍ତଶାସନ ୧୮୧୫ ମସିହାରୁ ଭୋଗକରି ଆସୁଥିଲେ, ତାହା

ସେମାନେ ହରାଇଥିଲେ । ଏହି ବିଦ୍ରୋହପାଇଁ ଶାସ୍ତିସ୍ୱରୂପ ପୋଲଣ୍ଡର ସଂବିଧାନକୁ ନାକଚ କରିଦିଆହେଲା ଏବଂ ତାକୁ ରୁଷିଆ ସହିତ ସମ୍ପୂର୍ଣ୍ଣଭାବେ ସାମିଲକରି ତାହାର ପୃଥକ୍ ସତ୍ତାକୁ ଲୋପକରିଦିଆଗଲା । ପୋଲମାନଙ୍କ ଉପରେ ରୁଷଭାଷା ଲଦିଦିଆଯାଇଥିଲା । ସେମାନଙ୍କର ପ୍ରାଚୀନ ଗିର୍ଜା (Orthodox Church) ପରିବର୍ତ୍ତେ କ୍ୟାଥଲିକ ଗିର୍ଜା ପ୍ରତିଷ୍ଠା କରାଯାଇଥିଲା ।

## ନିକୋଲାସ୍‌ଙ୍କ ବୈଦେଶିକ ନୀତି

ପ୍ରଥମ ନିକୋଲାସ୍‌ଙ୍କର ବୈଦେଶିକ ନୀତି ସବୁଠି ନିରଙ୍କୁଶ ଶାସନର ସମର୍ଥକ ବୋଲି ପ୍ରତିପାଦିତ ହୋଇଥିଲା । ସେ ରୁଷିଆର ଚିରାଚରିତ ରାଜ୍ୟ ସଂପ୍ରସାରଣ ନୀତି ଅବଲମ୍ବନ କରିଥିଲେ । ବୈଦେଶିକ ବ୍ୟାପାରରେ ସେ ମହାତ୍ମା କ୍ୟାଥରାଇନ୍‌ଙ୍କ ଆକ୍ରମଣାତ୍ମକ ନୀତିର ପୁନଃ ପ୍ରବର୍ତ୍ତନ କରିଥିଲେ । ବିଶେଷତଃ ତୁର୍କୀ ପ୍ରତି ଏହି ନୀତି ପ୍ରଯୁଜ୍ୟ ହୋଇଥିଲା । ତୁର୍କୀ ବିଷୟରେ ତାଙ୍କ ଭ୍ରାତା ପ୍ରଥମ ଆଲେକଜାଣ୍ଡାରଙ୍କୁ ମେଟାରନିକ୍ ବାଧାଦେଇଥିବା କଥା ସ୍ମରଣକରି ସେ ତାଙ୍କ ପ୍ରଭାବରୁ ନିଜକୁ ସମ୍ପୂର୍ଣ୍ଣ ମୁକ୍ତ ରଖିଥିଲେ ଏବଂ ସ୍ୱାଧୀନ ମାର୍ଗ ଅନୁସରଣ କରିଥିଲେ । ତୁର୍କୀର ଦୁର୍ବଳତାର ସୁଯୋଗ ନେଇ ତୁର୍କ ସାମ୍ରାଜ୍ୟ ଗ୍ରାସକରିବାକୁ ସେ ଉଦ୍ୟମ କରିଥିଲେ । ଗ୍ରୀକ୍‌ମାନଙ୍କର ସ୍ୱାଧୀନତା ସଂଗ୍ରାମରେ ସେ ଭାଗ ନେଇଥିଲେ ଏବଂ ଇଂଲଣ୍ଡ ଓ ଫ୍ରାନ୍ସ ସହିତ ମିଶି ଗ୍ରୀକ୍‌ମାନଙ୍କ ସହିତ ଆପୋଷ ମୀମାଂସା କରିବାପାଇଁ ତୁର୍କୀର ସୁଲତାନଙ୍କ ଉପରେ ଚାପ ପକାଇଥିଲେ । ସୁଲତାନ ତାହା କରିବାପାଇଁ ରାଜି ନ ହେବାରୁ ତୁର୍କୀକୁ ନାଭାରିନୋ ଯୁଦ୍ଧରେ (୧୮୨୭) ପରାଭୂତ କରାଯାଇଥିଲା । କିନ୍ତୁ ଏହାର ଅଳ୍ପଦିନପରେ ଇଂଲଣ୍ଡ ଯୁଦ୍ଧରୁ ଅପସରିଯିବାରୁ ଓ ଫ୍ରାନ୍ସ ଏଥିପ୍ରତି ଆଉ ଆଗ୍ରହ ନ ଦେଖାଇବାରୁ, ରୁଷିଆ ଏକାକୀ ତୁର୍କୀ ସହିତ ଯୁଦ୍ଧ ଅବ୍ୟାହତ ରଖିଥିଲା ଏବଂ ତାକୁ ପରାସ୍ତକରି 'ଆଡ୍ରିୟାନୋପେଲ ସନ୍ଧି' ସ୍ୱାକ୍ଷର କରିବାକୁ ବାଧ୍ୟକରିଥିଲା । ଏହି ସନ୍ଧିସର୍ତ୍ତ ଅନୁସାରେ ତୁର୍କୀ ଗ୍ରୀସ୍‌ର ସ୍ୱାଧୀନତା ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲା । ପ୍ରଥମ ନିକୋଲାସ୍ ଗ୍ରୀସ୍‌କୁ ରୁଷିଆର କର୍ତ୍ତୃତ୍ୱାଧୀନଭାବେ ରଖିବାକୁ ଚାହିଁଥିଲେ ସତ; କିନ୍ତୁ ଇଂଲଣ୍ଡ ଓ ଫ୍ରାନ୍ସ ପୁନର୍ବାର ଗ୍ରୀକ୍ ସ୍ୱାଧୀନତା ସଂଗ୍ରାମରେ ହସ୍ତକ୍ଷେପ କରିବା ଫଳରେ ଗ୍ରୀସ୍‌ର ପୂର୍ଣ୍ଣ ସ୍ୱାଧୀନତା ସ୍ୱୀକାର କରାଗଲା । ଇଂଲଣ୍ଡ, ଫ୍ରାନ୍ସ ଏବଂ ରୁଷିଆ ଗ୍ରୀସ୍‌ର ସ୍ୱାଧୀନତାରକ୍ଷା ଦାୟିତ୍ୱ ବହନକଲେ ।

ମିଶରର ପାଶା ମେହେମତ ଅଲି ଗ୍ରୀକ୍ ସ୍ୱାଧୀନତା ସଂଗ୍ରାମରେ ତୁର୍କୀର ସୁଲତାନଙ୍କୁ ସାହାଯ୍ୟ କରିବାକୁ ଯାଇ ତୁର୍କ ସାମ୍ରାଜ୍ୟର ଦୋଷଦୁର୍ବଳତା ସମ୍ପର୍କରେ ସ୍ପଷ୍ଟ ଧାରଣା କରିପାରିଥିଲେ । କିଛିଦିନ ପରେ ସେ ତୁର୍କ ସାମ୍ରାଜ୍ୟର କେତେକ ଅଞ୍ଚଳ ଅଧିକାର କରିନେବାପାଇଁ ତୁର୍କୀ ବିରୁଦ୍ଧରେ ଯୁଦ୍ଧ ଆରମ୍ଭକରିଥିଲେ ଏବଂ ସିରିଆ ଅଧିକାରପରେ ତୁର୍କୀର ରାଜଧାନୀ କନଷ୍ଟାଣ୍ଟିନୋପଲ ଅଧିକାର କରିନେବାକୁ ଧମକ୍ ଦେଲେ । ଏହି ଆସନ୍ନ

ବିପଦରୁ ରକ୍ଷାପାଇବା ପାଇଁ ସୁଲତାନ ଇଉରୋପୀୟ ଶକ୍ତିମାନଙ୍କ ନିକଟରେ ସାହାଯ୍ୟ-ଭିକ୍ଷା କଲେ । ନିକୋଲାସ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି ଇଉରୋପୀୟ ଶକ୍ତି ତୁର୍କୀକୁ ସାହାଯ୍ୟ ଦେବାକୁ ଅଗ୍ରସର ହୋଇନଥିଲେ । ଏହି ସାହାଯ୍ୟ ବିନିମୟରେ ନିକୋଲାସ୍ ସୁଲତାନଙ୍କୁ ଏକ ଚୁକ୍ତିକରିବାପାଇଁ ଆହ୍ୱାନ ଦେଇଥିଲେ । ସୁଲତାନ ନିକୋଲାସ୍‌ଙ୍କ ସାହାଯ୍ୟର ପ୍ରତିଦାନ ସ୍ୱରୂପ ତାଙ୍କ ସହିତ 'ଉନ୍‌କେୟାର ସ୍କେଲେସି' ଚୁକ୍ତି ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତିର ସର୍ତ୍ତ ଅନୁଯାୟୀ ରୁଷିଆ କୃଷ୍ଣସାଗର ଉପରେ ପ୍ରାଧାନ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲା ଏବଂ ଏହା ଫଳରେ କୃଷ୍ଣସାଗର ରୁଷିଆର ଏକ ହ୍ରଦରେ ପରିଣତ ହୋଇଥିଲା । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ବଲକାନ୍ ଅଞ୍ଚଳରେ ରୁଷିଆର ବୈଦେଶିକ ନୀତିର ସଫଳତା ଶୀର୍ଷସ୍ଥାନ ଅଧିକାର କରିଥିଲା ।

ପ୍ରଥମ ନିକୋଲାସ୍ ଏହାପରେ ପୂର୍ବାଞ୍ଚଳରୁ ପାଶ୍ଚାତ୍ୟ ବ୍ୟାପାରକୁ ତାଙ୍କ ଦୃଷ୍ଟି ଫେରାଇ ଆଣିଥିଲେ । ପରମ୍ପରା ପ୍ରତିରକ୍ଷା ଏବଂ ଉଦାରନୈତିକ ଓ ବୈପ୍ଳବିକ ଆନ୍ଦୋଳନଗୁଡ଼ିକ ଦମନକରିବା ଉଦ୍ଦେଶ୍ୟରେ ସେ ଅଷ୍ଟ୍ରିୟା ଏବଂ ପ୍ରୁସିୟା ସହିତ ଚୁକ୍ତିବଦ୍ଧ ହୋଇଥିଲେ । ୧୮୪୮-୪୯ ମସିହାରେ ହଙ୍ଗେରୀ ଅଷ୍ଟ୍ରିୟା ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରୁ ସେହି ବିଦ୍ରୋହ ଦମନକରିବା ଲକ୍ଷ୍ୟରେ ସେ ଅଷ୍ଟ୍ରିୟାକୁ ସୈନ୍ୟ-ସାହାଯ୍ୟ ଦେଇଥିଲେ; ଯାହା ଫଳରେ ବିଦ୍ରୋହୀମାନଙ୍କଦ୍ୱାରା ପ୍ରତିଷ୍ଠିତ ହଙ୍ଗେରୀ ସାଧାରଣତନ୍ତ୍ରର ଅବସାନ ଘଟିଲା । ଜର୍ମାନୀର ଏକତ୍ରୀକରଣ ପାଇଁ ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟ ଯେତେବେଳେ ପ୍ରୁସିୟାର ରାଜା ଚତୁର୍ଥ ଫ୍ରେଡରିକ୍ ଉଇଲିୟମଙ୍କୁ ସମଗ୍ର ଜର୍ମାନୀର ରାଜମୁକୁଟ ଗ୍ରହଣ କରିବାକୁ ଅନୁରୋଧ କଲା, ସେତେବେଳେ ଏ ପ୍ରସ୍ତାବକୁ ଜାର୍ ପ୍ରଥମ ନିକୋଲାସ୍ ବିରୋଧକରିବା ଭୟରେ ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ଏହିସବୁ କାରଣରୁ ଜାର୍ ପ୍ରଥମ ନିକୋଲାସ୍‌ଙ୍କ ରାଜତ୍ୱକାଳରେ ରୁଷିଆ ଇଉରୋପୀୟ ରାଜନୀତିର କେନ୍ଦ୍ରସ୍ଥଳରେ ପରିଣତ ହୋଇଥିଲା ଏବଂ ନିକୋଲାସ୍ ସେହି ରାଜନୀତିର ନିୟାମକ ରୂପେ କାର୍ଯ୍ୟ କରିଥିଲେ ।

ଜାର୍ ପ୍ରଥମ ନିକୋଲାସ୍ କ୍ରିମିୟା ଯୁଦ୍ଧ ପର୍ଯ୍ୟନ୍ତ ତୁର୍କୀ ସାମ୍ରାଜ୍ୟ ସମ୍ପର୍କରେ ଯେଉଁ ନୀତି ଅବଲମ୍ବନ କରିଥିଲେ, ତାହା ସେହି ସାମ୍ରାଜ୍ୟକୁ ଧ୍ୱଂସ କରିବା ପରିବର୍ତ୍ତେ ସେଠାରେ ରୁଷିଆର ପ୍ରଭାବ ବିସ୍ତାର କରିବା ପାଇଁ ଉଦ୍ଦିଷ୍ଟ ଥିଲା । ତେଣୁ ସେ ଆପଣାକୁ ତୁର୍କୀ ସୁଲତାନଙ୍କର ଜଣେ ମିତ୍ର ବୋଲି ଛଳନା କରି ମେହେମତ୍ ଅଲିଙ୍କ କବଳରୁ ତୁର୍କୀ ସାମ୍ରାଜ୍ୟକୁ ରକ୍ଷା କରିଥିଲେ । କିନ୍ତୁ ତାଙ୍କର ସମସ୍ତ ପରିକଳ୍ପନା ପାମରଷ୍ଟୋନଙ୍କ କୂଟନୀତି ଫଳରେ ପଣ୍ଡ ହୋଇଯାଇଥିଲା । ଏହି ପରିସ୍ଥିତିରେ ସେ ରୁଷିଆର ତୁର୍କୀ ସାମ୍ରାଜ୍ୟକୁ ଖଣ୍ଡ ଖଣ୍ଡ କରିବା ଚିରାଚରିତ ନୀତିକୁ ଫେରିଆସିବାକୁ ବାଧ୍ୟ ହୋଇଥିଲେ । ତୁର୍କୀ ଇଉରୋପର ଏକ ରୁଗ୍ଣ-ଶକ୍ତି ( Sickman of Europe ) ବୋଲି ସେ ବିବୃତିଥିଲେ ଏବଂ ତାକୁ ଭାଗ ଭାଗ କରି ବାଣ୍ଟିନେବାପାଇଁ ଇଂଲଣ୍ଡକୁ ଆହ୍ୱାନ ଦେଇଥିଲେ । ରୁଷିଆର ଏତାଦୃଶ ମନୋଭାବ ଇଂଲଣ୍ଡ ଏବଂ ଫ୍ରାନ୍‌ସରେ ବିପଦ-ସଙ୍କେତ ବୋଲି ବିଚାର କରାଯାଇଥିଲା ଏବଂ ତୁର୍କୀର ଅଖଣ୍ଡତା ବଜାୟ ରଖିବା ପାଇଁ

ଏହି ଦୁଇ ରାଷ୍ଟ୍ରରେ ବିଶେଷ ଉଦ୍ୟମ ହୋଇଥିଲା । ଫଳରେ କ୍ରିମିୟା ଯୁଦ୍ଧର ସୂତ୍ରପାତ ହେଲା । ଏହି ଯୁଦ୍ଧରେ ପ୍ରଥମ ନିକୋଲାସ୍ ଇଉରୋପର ଉଦାରନୈତିକ ରାଷ୍ଟ୍ରମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ପରାଜିତ ହେଲେ । ଏହି ପରାଜୟର ଗ୍ଲାନି ବହନ କରି ୧୮୫୫ ମସିହା ମାର୍ଚ୍ଚ ମାସ ୨ ତାରିଖ ଦିନ ସେ ଇହଲୀଳା ସାଙ୍ଗକରିଥିଲେ ।

## ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କର ରାଜତ୍ୱ (୧୮୫୫-୮୧)
### ( The Reign of Alexander-II )

ନିକୋଲାସ୍‌ଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱିତୀୟ ଆଲେକ୍‌ଜାଣ୍ଡାର କ୍ରିମିୟା ଯୁଦ୍ଧ ଚାଲିଥିବାକାଳରେ ରାଜସିଂହାସନ ଆରୋହଣ କଲେ । ପ୍ରଥମ ନିକୋଲାସ୍ ମୃତ୍ୟୁଶଯ୍ୟାରେ



[ ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ]

ତାଙ୍କ ନୀତିର ଭୁଲ୍‌ଗୁଡ଼ିକ ବୁଝିପାରିଥିଲେ ଏବଂ ଏକ ନୂତନ ନୀତି ଅନୁସରଣ କରିବା ପାଇଁ ତାଙ୍କ ପୁତ୍ର ଆଲେକ୍‌ଜାଣ୍ଡାରଙ୍କୁ ଉପଦେଶ ଦେଇଥିଲେ । ସେ କହିଲେ, 'ତମେ ନିଶ୍ଚୟ ଶାନ୍ତି ସ୍ଥାପନ କରିବ । କଠିଣ ହେଲେ ମଧ୍ୟ ତମେ ଭୂମିଦାସମାନଙ୍କୁ ନିଶ୍ଚୟ ମୁକ୍ତି ଦେବ । (Nicholas said to Alexander, 'Thou must make peace. Thou must set free the serfs; it will be hard for three.' ) ଆଲେକ୍‌ଜାଣ୍ଡାର କ୍ରିମିୟା ଯୁଦ୍ଧ ସମାପ୍ତ କରିଥିଲେ ସତ; କିନ୍ତୁ ପୁନର୍ବାର ୧୮୭୭ ମସିହାରେ ତୁର୍କୀ ସହିତ ଯୁଦ୍ଧରେ ବ୍ୟାପୃତ ହେଲେ । ସେ ଯୁଦ୍ଧରେ ବିଜୟୀ ହେବା ସତ୍ତ୍ୱେ ବର୍ଲିନ୍ କଂଗ୍ରେସରେ (୧୮୭୮) ରୁଷିଆର ରାଜନୈତିକ ଉଚ୍ଚାକାଙ୍‌କ୍ଷାର ପ୍ରତିରୋଧ କରାଯାଇଥିଲା ।

ରୁଷିଆ ପକ୍ଷରେ କ୍ରିମିୟା ଯୁଦ୍ଧ କେବଳ ପରାଜୟ ନ ଥିଲା; ତାହା ଥିଲା ଘୋର ନୈରାଶ୍ୟଜନକ ଅନୁଭୂତି । ପ୍ରଥମ ନିକୋଲାସ୍ ଯେଉଁ ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିଥିଲେ, କ୍ରିମିୟା ଯୁଦ୍ଧରେ ପରାଜୟ ତାହା ପାଇଁ ଗ୍ଲାନିକର ହୋଇଥିଲା । ଉକ୍ତ ଯୁଦ୍ଧ ସମୟରେ ସରକାରଙ୍କ ଗୁରୁତର ଅପାରଗତା ପ୍ରକଟନ ଫଳରେ ରୁଷିଆର ଅମଲାତନ୍ତ୍ର ବଦ୍‌ନାମ ହୋଇଥିଲା । ଦୁର୍ଜୟ ବୋଲି ବିବେଚିତ ହେଉଥିବା ରୁଷସୈନ୍ୟବାହିନୀ କ୍ରିମିୟା ଯୁଦ୍ଧରେ ପରାଜିତ ହେବା ଯୋଗୁଁ ରୁଷବାସୀଙ୍କର ଏହି ଧାରଣା ସମ୍ପୂର୍ଣ୍ଣ ବଦଳିଯାଇଥିଲା । ରୁଷସୈନ୍ୟବାହିନୀର ଶକ୍ତିକୁ ସେମାନେ ହେୟଜ୍ଞାନ କରିଥିଲେ ଏବଂ ଏପରି ଦୁର୍ଦ୍ଦଶା ଓ ଅପଯଶ ପାଇଁ ସୈନ୍ୟବାହିନୀ ଏବଂ ସରକାର ଉଭୟଙ୍କୁ ଦାୟୀ କରିଥିଲେ । ସରକାର ଓ ସୈନ୍ୟବାହିନୀକୁ ଆଉ ଭୟ ନ କରି ସେମାନେ ରୁଷିଆର ସାମାଜିକ ଓ ରାଜନୈତିକ ସଙ୍ଗଠନଗୁଡ଼ିକର ଆମୂଳଚୂଳ ପରିବର୍ତ୍ତନ ଦାବିକରିଥିଲେ ଏବଂ ପ୍ରତିଷ୍ଠିତ ଶାସନ ବିରୁଦ୍ଧରେ ପ୍ରତିବାଦ ଜଣାଉଥିଲେ ।

ଶାସନଭାର ଗ୍ରହଣ କଲାବେଳକୁ ଆଲେକ୍‌ଜାଣ୍ଡାରଙ୍କୁ ମାତ୍ର ୩୭ ବର୍ଷ ବୟସ ହୋଇଥିଲା । ଶାସନ ପରିଚାଳନା କରିବା ପାଇଁ ତାଙ୍କୁ ଆବଶ୍ୟକ ତାଲିମ ଦିଆଯାଇଥିଲା । ଉଦାର ନୀତି ପ୍ରତି ତାଙ୍କର କୌଣସି ଆନ୍ତରିକ ସହାନୁଭୂତି ନ ଥିଲା; କିନ୍ତୁ ନିଜ ଦେଶ ଏବଂ ଦେଶବାସୀଙ୍କ ପ୍ରତି ପ୍ରଗାଢ଼ ଅନୁରାଗ ଥିଲା । ସେ ବେଶ୍ ହୃଦୟଙ୍ଗମ କରିପାରିଥିଲେ ଯେ, ରୁଷିଆର ପରାଜୟ ପିତା ନିକୋଲାସ୍‌ଙ୍କ ବୈଦେଶିକ ନୀତି ଏବଂ ଆଭ୍ୟନ୍ତରୀଣ ବ୍ୟବସ୍ଥାର ବିଫଳତାର ପରିଚାୟକ । ଦେଶର ମର୍ଯ୍ୟାଦା ଓ ନିଜ ଦାୟିତ୍ୱ ସମ୍ପର୍କରେ ସେ ବିଶେଷ ସଚେତନ ଥିଲେ । ରୁଷିଆ ପକ୍ଷରେ କେତେବେଳେ କ'ଣ ପ୍ରୟୋଜନ, ତାହା ସେ ସହଜରେ ଉପଲବ୍ଧି କରିପାରୁଥିଲେ । ସମୟର ଆବଶ୍ୟକତା ଦୃଷ୍ଟିରୁ ସେ ରୁଷିଆର ଶାସନ-ପଦ୍ଧତିରେ ବ୍ୟାପକ ପରିବର୍ତ୍ତନ ବୁଝିଥିଲେ । ତାଙ୍କ ରାଜତ୍ୱ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପିତାଙ୍କ ଶାସନ-ବ୍ୟବସ୍ଥାର କଠୋରତାକୁ ପ୍ରଶମିତ କରିବା ପାଇଁ ଆବଶ୍ୟକ ପଦକ୍ଷେପ ଗ୍ରହଣ କରିଥିଲେ । ସର୍ବପ୍ରଥମେ ସେ ଜୀବିତଥିବା ଡିସେମ୍ବ୍ରିଷ୍ଟ (ଡେକାବ୍ରିଷ୍ଟ) ବିଦ୍ରୋହୀମାନଙ୍କୁ

ନିର୍ବାସନ-ଦଣ୍ଡରୁ ମୁକ୍ତ ଦେଇଥିଲେ । ମୁଦ୍ରଣ-ଯନ୍ତ୍ର ଖୋଲିଲ କରାଯାଇଥିଲା । ବିଦେଶ ଭ୍ରମଣ ଉପରେ ଯେଉଁ ନିଷେଧାଜ୍ଞା ଜାରି କରାଯାଇଥିଲା, ତାହା ଉଠାଇ ନିଆଗଲା । ବିଶ୍ୱବିଦ୍ୟାଳୟଗୁଡ଼ିକ ଉପରୁ ବହୁ କଟକଣା ପ୍ରତ୍ୟାହାର କରିନିଆଗଲା । ଏହାପରେ ସେ ରୁଷିଆର ଅର୍ଥନୈତିକ ଅବସ୍ଥାର ଉନ୍ନତିକଲେ। ଶିଳ୍ପ ଓ ବାଣିଜ୍ୟକୁ ପ୍ରୋତ୍ସାହିତ କରିଥିଲେ ଏବଂ ରେଲପଥ ବ୍ୟବସ୍ଥା ପାଇଁ ଏକ ଯୋଜନା କରିଥିଲେ । ବାସ୍ତବରେ ସେ ସାମରିକ ଏବଂ ଅର୍ଥନୈତିକ ପରିକଳ୍ପନାମାନ ପ୍ରସ୍ତୁତ କରି ଓ ରେଲପଥର ବିକାଶ ଘଟାଇ କ୍ରିମିୟା ଯୁଦ୍ଧରେ ରୁଷିଆର ପରାଜୟର କାରଣଗୁଡ଼ିକ ଦୂରକରିବାକୁ ଉଦ୍ୟମ କରିଥିଲେ । ତା'ଛଡ଼ା ସେ ଭୂମିଦାସମାନଙ୍କର (Serfs') ସମସ୍ୟାକୁ ଅଗ୍ରାଧିକାର ଦେବା ସଙ୍ଗେ ସଙ୍ଗେ ତାକୁ ଅତି କୌଶଳରେ ସମାଧାନ କରି ଅକ୍ଷୟ କୀର୍ତ୍ତି ଅର୍ଜନ କରିଥିଲେ ।

ପ୍ରକୃତରେ ଆଲେକ୍‌ଜାଣ୍ଡାରଙ୍କର ସଂସ୍କାରଗୁଡ଼ିକ ମଧ୍ୟରେ ଭୂମିଦାସମାନଙ୍କର ମୁକ୍ତି ହେଉଛି ସର୍ବାଧିକ ଉଲ୍ଲେଖଯୋଗ୍ୟ ଅବଦାନ । ଭୂମିଦାସ ପ୍ରଥା ରୁଷିଆରେ ତିଷ୍ଠିରହିଥିବାରୁ ଆନ୍ତର୍ଜାତିକ କ୍ଷେତ୍ରରେ ରୁଷିଆର ମର୍ଯ୍ୟାଦା କ୍ଷୁଣ୍ଣ ହେବା ସଙ୍ଗେ ସଙ୍ଗେ ଦେଶର ସାମାଜିକ ଏବଂ ଅର୍ଥନୈତିକ ବ୍ୟବସ୍ଥାର ବିଶେଷ କ୍ଷତି ଘଟିଥିଲା । ରୁଷିଆର ପ୍ରାୟ ଅର୍ଦ୍ଧେକ ବାସିନ୍ଦା ଥିଲେ ଭୂମିଦାସ । ସେମାନଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ଥିଲା । ଜମିମାଲିକମାନେ (ଜମିଦାରମାନେ) ଭିନ୍ନ ଭିନ୍ନ ପ୍ରକୃତିର ଲୋକ ହୋଇଥିବାରୁ ସେମାନଙ୍କର ଭୂମିଦାସ-ମାନଙ୍କ ପ୍ରତି ବ୍ୟବହାର ମଧ୍ୟ ଭିନ୍ନ ଭିନ୍ନ ପ୍ରକାର ହେଉଥିଲା । କେତେକ ଜମିମାଲିକ ସେମାନଙ୍କର ଭୂମିଦାସମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରିବା ବ୍ୟତୀତ ଅପମାନଜନକ ବ୍ୟବହାର ମଧ୍ୟ ପ୍ରଦର୍ଶନ କରୁଥିଲେ । ଆଉ କେତେକ ଜମିମାଲିକ ସେମାନଙ୍କର ଭୂମିଦାସ-ମାନଙ୍କ ପ୍ରତି ଭଲ ବ୍ୟବହାର ଦେଖାଉଥିଲେ ମଧ୍ୟ ସେମାନଙ୍କୁ ବ୍ୟକ୍ତିଗତ ସ୍ୱାଧୀନତାରୁ ବଞ୍ଚିତ କରିଥିଲେ; ତେଣୁ ଭୂମିଦାସମାନେ ବାରମ୍ବାର ବିଦ୍ରୋହ କରୁଥିଲେ । ୧୮୨୮ ମସିହାରୁ ୧୮୫୪ ମସିହା ମଧ୍ୟରେ ସେମାନେ ହାରାହାରି ପ୍ରତିବର୍ଷ ୬୩ଟି ବିଦ୍ରୋହ କରିଥିଲେ । ଭୂମିଦାସମାନେ ଜମି ସହିତ ବନ୍ଧାହୋଇ ରହିଥିଲେ ଏବଂ ଜମି ସହିତ ସେମାନଙ୍କୁ ବିକ୍ରି କରି ଦିଆଯାଉଥିଲା । ଜମିମାଲିକମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଅଧିକାର ସେମାନଙ୍କର ନଥିଲା । ଯେଉଁ ଭୂମିଦାସମାନେ ଜାରଙ୍କ ଜମିଦାରୀର ଅନ୍ତର୍ଭୁକ୍ତ ଥିଲେ, ସେମାନେ କେତେକ ସୁବିଧା ଉପଭୋଗ କରୁଥିଲେ । ଦ୍ୱିତୀୟ ଆଲେକ୍‌-ଜାଣ୍ଡାର ଭୂମିଦାସମାନଙ୍କର ଏପରି ଦୁର୍ଦ୍ଦଶା ଦେଖି ଭୂମିଦାସ-ବ୍ୟବସ୍ଥାର ଉଚ୍ଛେଦସାଧନ କରିବା ପାଇଁ ଦୃଢ଼ସଂକଳ୍ପ କରିଥିଲେ । ସେ ପ୍ରଥମେ ୧୮୫୮ ମସିହାରେ ତାଙ୍କ ଜମିଦାରୀର ଅନ୍ତର୍ଭୁକ୍ତ ଭୂମିଦାସମାନଙ୍କୁ ମୁକ୍ତ ଦେଇ ଏକ ଦୃଷ୍ଟାନ୍ତ ଦେଖାଇଥିଲେ । ତାହା ପରେ ସେ ସତର୍କତା ଅବଲମ୍ବନ କରି ଜମିମାଲିକମାନଙ୍କ ସହିତ ଆପୋଷ ମୀମାଂସା କରିଥିଲେ ଏବଂ ସ୍ୱାର୍ଥପର ଜମିମାଲିକମାନଙ୍କର ପ୍ରତିରୋଧ ଏଡ଼ାଇପାରିଥିଲେ । ୧୮୬୧ ମସିହା ଫେବୃୟାରୀ ୧୯ ତାରିଖ ଦିନ ମୁକ୍ତିର ଏକ ଘୋଷଣାପତ୍ର (The Edict of

**Emancipation)** ଜାରି କରି ଆଲେକ୍‌ଜାଣ୍ଡାର ସମଗ୍ର ରୁଷିଆର ଭୂମିଦାସ-ବ୍ୟବସ୍ଥାର ଉଚ୍ଛେଦସାଧନ କରିଥିଲେ । ଏହି ମୁକ୍ତି ଯେ କେବଳ ଏକ ସାମାଜିକ ସଂସ୍କାର ଥିଲା ତାହା ନୁହେଁ, ଏହାର ମଧ୍ୟ ଅର୍ଥନୈତିକ ଏବଂ ରାଜନୈତିକ ଗୁରୁତ୍ୱ ଅତ୍ୟଧିକ ଥିଲା । ଏହି ମୁକ୍ତି-ଘୋଷଣାପତ୍ରର ସର୍ତ୍ତ ଅନୁଯାୟୀ ଭୂମିଦାସମାନେ ସେମାନଙ୍କର ଜମିମାଲିକମାନଙ୍କର ଦାସତ୍ୱ-ଶୃଙ୍ଖଳରୁ ମୁକ୍ତ ପାଇଲେ ଏବଂ ସେମାନଙ୍କ ଉପରେ ସମ୍ଭ୍ରାନ୍ତବଂଶଜଙ୍କର ଯେଉଁ ଆଇନସଙ୍ଗତ ବିଚାର ଅଧିକାର ଥିଲା, ତାହା ଲୋପ କରିଦିଆଯାଇଥିଲା । ଫଳରେ ଭୂମିଦାସମାନେ ସ୍ୱାଧୀନ କୃଷକଭାବରେ ସାମାଜିକ ଅଧିକାର ପାଇଲେ ଏବଂ ତା ଛଡ଼ା ସେମାନେ ଯେଉଁ ଜମି ଚାଷକରୁଥିଲେ, ତାହାର ଅର୍ଦ୍ଧେକ ନିଜ ସମ୍ପତ୍ତି ହିସାବରେ ଲାଭ କରିଥିଲେ । ଅବଶ୍ୟ ଏଥିପାଇଁ ସେମାନଙ୍କୁ ସେମାନଙ୍କର ଜମିମାଲିକମାନଙ୍କୁ କ୍ଷତିପୂରଣ ଦେବାକୁ ପଡ଼ିବ ବୋଲି କୁହାଯାଇଥିଲା; କିନ୍ତୁ ରୁଷ ସରକାର ପ୍ରଥମେ ଜମିଗୁଡ଼ିକ ଜମି-ମାଲିକମାନଙ୍କଠାରୁ ଖରିଦ କରିନେଇଥିଲେ ଏବଂ ମୁକ୍ତ ଭୂମିଦାସମାନେ କିସ୍ତି ଓ୍ୱାରି ସେହି କ୍ଷତିପୂରଣ ଅଣଚାଶ ବର୍ଷ ମଧ୍ୟରେ ଦେବେ ବୋଲି ବ୍ୟବସ୍ଥା କରାଯାଇଥିଲା । ଏହି ସବୁ ଜମି କୌଣସି ବ୍ୟକ୍ତିକୁ ନିଜସ୍ୱ ସମ୍ପତ୍ତି ହିସାବରେ ଦିଆନଯାଇ ମିର୍ ନାମକ ଏକ ସମବାୟ ପ୍ରତିଷ୍ଠାନ ଅଧୀନରେ ରଖାଯାଇଥିଲା । ଗ୍ରାମେ ଗ୍ରାମେ ମିର ସ୍ଥାପନ କରାଯାଇଥିଲା ଏବଂ ମୁକ୍ତ ଭୂମିଦାସମାନଙ୍କୁ ଅର୍ଥ ସାହାଯ୍ୟ ଦେବାପାଇଁ କେତେ ବର୍ଷ ଲାଗି ଅଳ୍ପ ସୁଧ-ହାରରେ ରାଜ୍ୟ-କୋଷାଗାରରୁ ମିର୍‌ଗୁଡ଼ିକୁ ଅର୍ଥ ଯୋଗାଇ ଦିଆଯାଇଥିଲା । ପ୍ରତ୍ୟେକ ଗ୍ରାମର ଆବଶ୍ୟକ ଜମି ସେହି ଗ୍ରାମର ମିର ଅଧୀନରେ ରଖାଯାଇଥିଲା ଏବଂ ସେହି ଗ୍ରାମର ମୁକ୍ତ ଭୂମିଦାସମାନଙ୍କର ବ୍ୟବହାର ପାଇଁ ସେହି ଗ୍ରାମର ମିରକୁ ସେମାନଙ୍କ ମଧ୍ୟରେ ଜମି ବଣ୍ଟନ କରିବାର ଭାର ଦିଆଯାଇଥିଲା । ତା'ଛଡ଼ା ମୁକ୍ତ ଭୂମିଦାସମାନଙ୍କଠାରୁ ସେମାନଙ୍କର ମୁକ୍ତିର ଦେୟ ଆଦାୟ କରିବାର ଦାୟିତ୍ୱ ମିର ଉପରେ ନ୍ୟସ୍ତ କରାଯାଇଥିଲା ଏବଂ ଏହି ଲକ୍ଷ୍ୟ ହାସଲକରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ମିରକୁ ମୁକ୍ତ ଭୂମିଦାସମାନଙ୍କ ଉପରେ କର ବସାଇବାର ଅଧିକାର ଦିଆଯାଇଥିଲା । ଏହିରୂପେ ଜାର ଦ୍ୱିତୀୟ ଆଲେକ୍‌ଜାଣ୍ଡାର ଭୂମିଦାସମାନଙ୍କୁ ମୁକ୍ତିଦେଇ 'ମୁକ୍ତିଦାତା ଜାର୍' (Tsar the liberator) ଆଖ୍ୟା ଅର୍ଜନ କରିଥିଲେ ।

କିନ୍ତୁ ମୁକ୍ତିର ସର୍ତ୍ତଗୁଡ଼ିକ ଭୂମିଦାସମାନଙ୍କ ମନରେ ଗଭୀର ଅସନ୍ତୋଷ ସୃଷ୍ଟି କରିଥିଲା । ଏହି ମୁକ୍ତିଦ୍ୱାରା ସେମାନଙ୍କର ଅର୍ଥନୈତିକ ଅବସ୍ଥାର ବିଶେଷ ପରିବର୍ତ୍ତନ ହୋଇନଥିଲା । ନୂତନ କରଭାରରେ ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ । ସେମାନେ ଯେଉଁ ଜମିଗୁଡ଼ିକ ଦଖଲ କରିଥିଲେ, ସେଗୁଡ଼ିକୁ ନିଜର ଜମି ବୋଲି ବିଚାରୁଥିଲେ, ତେଣୁ ସେମାନେ କ୍ଷତିପୂରଣ ଦେବାକୁ ପ୍ରସ୍ତୁତ ନ ଥିଲେ । ସେମାନଙ୍କ ଭାଗରେ ଯେଉଁ ପରିମାଣର ଜମି ପଡ଼ିଥିଲା, ତାହା ଚଳିବାପାଇଁ ଯଥେଷ୍ଟ ହେଉ ନ ଥିଲା । ତା' ଛଡ଼ା ମିର (ଗ୍ରାମ୍ୟ ସମବାୟ ସମିତି) ଗୁଡ଼ିକର ଆଧିପତ୍ୟ ସେମାନଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଥିଲା ।

ସେମାନେ ଅନୁଭବ କଲେ ଯେ, ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କର 'ମୁକ୍ତି-ଘୋଷଣାପତ୍ର' ସେମାନଙ୍କୁ 'ଗଣ୍ଡର ଭୂମିଦାସ' କରିବା ଉଦ୍ଦେଶ୍ୟରେ ସମ୍ଭ୍ରାନ୍ତ ଲୋକମାନଙ୍କ କବଳରୁ କେବଳ ମୁକ୍ତି ଦେଇଥିଲା । ଏହି ନବଲବ୍ଧ ସ୍ୱାଧୀନତା ସେମାନଙ୍କ ପାଇଁ ନୈରାଶ୍ୟଜନକ ହୋଇଥିଲା । ଏହି ରୂପ ସ୍ୱାଧୀନତାର ମୂଲ୍ୟ କ'ଣ ? ଏହି ପ୍ରଶ୍ନର ଉତ୍ତର ସେମାନେ ଦାବି କରିଥିଲେ । ସେମାନଙ୍କର ଆପତ୍ତି ଓ ଅଭିଯୋଗ ସତ୍ତ୍ୱେ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, 'ମୁକ୍ତି-ଘୋଷଣାପତ୍ର' ଫଳରେ ରୁଷିଆର ଆଇନ ଅନୁମୋଦିତ ସାମାଜିକ ସଙ୍ଗଠନଗୁଡ଼ିକର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ଜମିମାଲିକମାନେ ସେମାନଙ୍କ ଭୂସମ୍ପତ୍ତିର କେତେକାଂଶରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ ଭୂମିଦାସମାନଙ୍କ ଉପରୁ ସେମାନଙ୍କର କର୍ତ୍ତୃତ୍ୱ ହରାଇଥିଲେ । ଏହାଦ୍ୱାରା ଦେଶରେ ସେମାନଙ୍କର ଆଧିପତ୍ୟ କେତେକ ପରିମାଣରେ କମିଯାଇଥିଲା; କିନ୍ତୁ କୃଷକମାନେ ନିଶ୍ଚିତଭାବରେ ଲାଭବାନ୍ ହୋଇଥିଲେ । 'ମୁକ୍ତି-ଘୋଷଣାପତ୍ର' ବ୍ୟତୀତ ଦେଶରେ ନୂତନ ସଂସ୍କାରମାନ ପ୍ରବର୍ତ୍ତନ କରାଯାଇ ସ୍ଥାନୀୟ ଅନୁଷ୍ଠାନମାନ ପ୍ରତିଷ୍ଠା କରାଯାଇଥିଲା ଏବଂ ଆଇନ ସମ୍ପର୍କୀୟ ବ୍ୟବସ୍ଥାରେ ପରିବର୍ତ୍ତନ ଅଣାଯାଇଥିଲା ।

ଭୂମିଦାସମାନଙ୍କର ମୁକ୍ତି ପରେ ପରେ ଅନ୍ୟାନ୍ୟ ସଂସ୍କାରମାନ ପ୍ରବର୍ତ୍ତନ କରାଯାଇ ରୁଷିଆକୁ ପ୍ରଗତିଶୀଳ ପାଶ୍ଚାତ୍ୟ ଦେଶମାନଙ୍କର ସମକକ୍ଷ କରାଯାଇଥିଲା । ସ୍ଥାନୀୟ ଶାସନ-କ୍ଷେତ୍ରରେ ଏବଂ ସହର ବିଭାଗୀୟ ବ୍ୟବସ୍ଥାରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଅଣାଯାଇଥିଲା । କ୍ରିମିଆ ଯୁଦ୍ଧରେ ରୁଷିଆର ଶାସନ-ବ୍ୟବସ୍ଥାର ଦୁର୍ବଳତା ପ୍ରମାଣିତ ହୋଇଥିଲା । ତେଣୁ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ସ୍ଥାନୀୟ ସ୍ୱାୟତ୍ତଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରି, କେନ୍ଦ୍ରୀଭୂତ ଶାସନ-ବ୍ୟବସ୍ଥାର କଠୋରତାକୁ କେତେକ ପରିମାଣରେ ଲାଘବ କରିଦେଇଥିଲେ । ଜେମ୍‌ସ୍‌ଟ୍‌ଭୋ (Zemstvo) ନାମକ ପ୍ରତିନିଧି-ସଭା ଦେଶର ପ୍ରତ୍ୟେକ ଜିଲାରେ ସ୍ଥାପନ କରାଯାଇଥିଲା ଏବଂ ଏହି ସଭାର ସଦସ୍ୟମାନେ ଜିଲାର ବିଭିନ୍ନ ଶ୍ରେଣୀକୁ ପ୍ରତିନିଧିତ୍ୱ କରୁଥିବା ଲୋକମାନଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ । ଏହି ଜିଲ୍ଲା ପ୍ରତିନିଧିସଭାଗୁଡ଼ିକର ସଦସ୍ୟମାନେ ପ୍ରାଦେଶିକ ପ୍ରତିନିଧିସଭା ସଦସ୍ୟମାନଙ୍କୁ ନିର୍ବାଚିତ କରୁଥିଲେ । ଏହି ସବୁ ପ୍ରତିନିଧିସଭାକୁ ରାସ୍ତା ଓ ପୋଲଗୁଡ଼ିକର ମରାମତି, ପ୍ରାଥମିକ ଶିକ୍ଷା ଓ ଜନସାଧାରଣଙ୍କ ସ୍ୱାସ୍ଥ୍ୟରକ୍ଷାର ତତ୍ତ୍ୱାବଧାନ, ବିଚାରପତି ନିର୍ବାଚନ ଏବଂ ଦୁର୍ଭିକ୍ଷ କବଳରୁ ଜନସାଧାରଣଙ୍କୁ ରକ୍ଷାକରିବାର ଦାୟିତ୍ୱ ଦିଆଯାଇଥିଲା । କିନ୍ତୁ ପ୍ରାଦେଶିକ ଲାଟ୍ (ରାଜ୍ୟପାଳ) ମାନଙ୍କର ପ୍ରାଦେଶିକ ସଭାଗୁଡ଼ିକର ରଚିତ ଆଇନକୁ ଭେଟୋ କରିବା (ନାକଚ କରିବା) ଅଧିକାର ରହିଥିବାରୁ ସେ ସଭାଗୁଡ଼ିକର କ୍ଷମତା ସୀମିତ ହୋଇଯାଇଥିଲା । ଏହା ସତ୍ତ୍ୱେ ସ୍ଥାନୀୟ ପ୍ରତିନିଧିସଭାଗୁଡ଼ିକୁ ସାର୍ବଜନିକ ବ୍ୟାପାରମାନ ପରିଚାଳନାପାଇଁ ତାଲିମ ଦିଆ-ଯାଉଥିବାରୁ ସେଗୁଡ଼ିକର ଗୁରୁତ୍ୱକୁ ଉପେକ୍ଷା କରାଯାଇପାରୁନଥିଲା । ଶାସନର ବିକେନ୍ଦ୍ରୀକରଣ ଏବଂ ସ୍ୱାୟତ୍ତଶାସନ ପ୍ରତିଷ୍ଠା ଦିଗରେ ଏହି ତାଲିମ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ।

ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ବିଚାର ବିଭାଗୀୟ ବ୍ୟବସ୍ଥାର ସଂସ୍କାର ମଧ୍ୟ ଥିଲା ସେହିପରି ଗୁରୁତ୍ୱପୂର୍ଣ୍ଣ । ଦୁର୍ନୀତି, ଅସମାନତା, ମୋକଦ୍ଦମା ଶୁଣାଣିରେ ଗୋପନୀୟତା ପାଇଁ ତତ୍କାଳୀନ ବିଚାର-ବ୍ୟବସ୍ଥା କଳୁଷିତ ହୋଇଥିଲା । ଦ୍ୱିତୀୟ ଆଲେକ୍‌ଜାଣ୍ଡାର୍ ଏହିସବୁ ଦୋଷତ୍ରୁଟି ଦୂରକରିବା ପାଇଁ ସମ୍ପୂର୍ଣ୍ଣ ଏକ ନୂତନ ଓ ଉନ୍ନତ ବିଚାର-ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ବିଚାର ବିଭାଗକୁ ଶାସନବିଭାଗଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏବଂ ମୁକ୍ତ କରିଦେଇଥିଲେ । ତେଣୁ ବିଚାରପତିମାନେ ସରକାରୀ ଅନୁଗ୍ରହ ଉପରେ ଆଉ ନିର୍ଭର ନକରି ନିର୍ଭୀକ ଭାବରେ ସେମାନଙ୍କର କାର୍ଯ୍ୟ ସମ୍ପାଦନ କଲେ । ଦ୍ୱିତୀୟ ଆଲେକ୍‌ଜାଣ୍ଡର୍ ପ୍ରକାଶ୍ୟ ଭାବରେ ମୋକଦ୍ଦମା ଶୁଣାଣି ପାଇଁ ଆଦେଶ ଦେଇଥିଲେ । ଆଇନ୍ ଦୃଷ୍ଟିରେ ସମସ୍ତେ ସମାନ ବୋଲି ସ୍ୱୀକାର କରାଯାଇଥିଲା । ସେ ଜୁରି ସାହାଯ୍ୟରେ ବିଚାର-ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ଦେଓ୍ୱାନୀ ଏବଂ ଫୌଜଦାରୀ ଆଇନ୍ ବିଧି ମଧ୍ୟ ପରିବର୍ତ୍ତନ କରାଯାଇଥିଲା । ଛୋଟ ଛୋଟ ମୋକଦ୍ଦମା ବିଚାର କରିବା ପାଇଁ ଜଷ୍ଟିସେସ୍ ଅଫ୍ ପିସ୍ (Justices of Peace) ନାମକ ବିଚାରପତିମାନଙ୍କୁ ନିଯୁକ୍ତ କରାଯାଇଥିଲା ଏବଂ ସେମାନେ ଜନସାଧାରଣଙ୍କଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ହୋଇଥିଲା । ଯେକୌଣସି ମ୍ୟାଜିଷ୍ଟ୍ରେଟଙ୍କ ନିଷ୍ପତ୍ତି ବିରୁଦ୍ଧରେ ଜିଲ୍ଲାର ସମସ୍ତ ବିଚାରପତିଙ୍କୁ ନେଇ ଗଠିତ ହୋଇଥିବା ବିଚାରକମଣ୍ଡଳୀଙ୍କ ମାସିକ ଅଧିବେଶନମାନଙ୍କରେ ଅପିଲ କରାଯିବାର ବନ୍ଦୋବସ୍ତ ହୋଇଥିଲା । ଅଧିକ ଗୁରୁତ୍ୱପୂର୍ଣ୍ଣ ବ୍ୟାପାରମାନ ବିଧିବଦ୍ଧଭାବରେ ତାଲିମପ୍ରାପ୍ତ ବିଚାରପତି-ମାନଙ୍କଦ୍ୱାରା ବିଚାରାଳୟଗୁଡ଼ିକରେ ନିଷ୍ପତ୍ତି କରାଯାଉଥିଲା ଏବଂ ସେମାନଙ୍କର ନିଷ୍ପତ୍ତି ବିରୁଦ୍ଧରେ ମଧ୍ୟ ଅପିଲ-କୋର୍ଟମାନଙ୍କରେ ଅପିଲ କରାଯାଇପାରିବ ବୋଲି ସ୍ଥିର ହୋଇଥିଲା । ଏହିସବୁ ବ୍ୟବସ୍ଥା ସତ୍ତ୍ୱେ ବିଚାରପତି କାର୍ଯ୍ୟ ଚଳାଇବା ପାଇଁ ଉପଯୁକ୍ତ ଲୋକ ଅଭାବ ପଡ଼ିବାରୁ ବିଚାର ବିଭାଗୀୟ ସଂସ୍କାରମାନ ବିଶେଷ କାର୍ଯ୍ୟକାରୀ ହୋଇପାରିନଥିଲା । ତା'ଛଡ଼ା ଜୁରୀକାର୍ଯ୍ୟ ଚଳାଇବା ପାଇଁ ମଧ୍ୟ ଉପଯୁକ୍ତ ଲୋକ ମିଳିବା ସମ୍ଭବ ହୋଇନଥିଲା । ସୁତରାଂ ବିଚାରବିଭାଗରେ ପୂର୍ବପରି ଦୁର୍ନୀତି ରହିଥିଲା ।

ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ରୁଷିଆକୁ ସମୟୋପଯୋଗୀ କରିବାପାଇଁ ଦୃଢ଼ ପଦକ୍ଷେପ ନେଇଥିଲେ । ସେ ସାରା ଦେଶରେ ରେଳପଥ ବିଛାଇଦେଇଥିଲେ । ଯାତ୍ରୀ ଓ ବ୍ୟବସାୟୀମାନଙ୍କ ସକାଶେ ଦ୍ରୁତଗାମୀ ବାଷ୍ପୀୟ ପୋତମାନ ନିର୍ମାଣ କରାଇଥିଲେ । ସେ ବିଦେଶୀ ରାଷ୍ଟ୍ରମାନଙ୍କ ସହିତ ବାଣିଜ୍ୟିକ ଚୁକ୍ତିମାନ ସମ୍ପାଦନ କରିଥିଲେ । ନୂତନ ଏବଂ ଉତ୍କୃଷ୍ଟ ଧରଣର ଆଇନ୍ ସଂହିତା (Code) ପ୍ରବର୍ତ୍ତନ କରିଥିଲେ । ସମଗ୍ର ଦେଶରେ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇଥିଲା । ତା'ଛଡ଼ା ସମସ୍ତଙ୍କ ପାଇଁ ବିଶ୍ୱବିଦ୍ୟାଳୟଗୁଡ଼ିକ ଉନ୍ମୁକ୍ତ କରିଦିଆଯାଇଥିଲା ।

ସେ ଯାହାହେଉ, ଏହି ଆଶାପ୍ରଦ ସଂସ୍କାର-ଯୁଗ ବେଶି ଦିନ ସ୍ଥାୟୀ ହୋଇପାରି-ନଥିଲା । ଦ୍ୱିତୀୟ ଆଲେକ୍‌ଜାଣ୍ଡାର ସିଂହାସନ ଆରୋହଣ କରିବାର ୧୦ ବର୍ଷ ପରେ

ସଂସ୍କାର ପ୍ରତି ତାଙ୍କର ଆଉ ଉତ୍ସାହ ରହିଲାନାହିଁ । ସେ ଅନ୍ତଃକରଣରେ ଆଦୌ ଗଣତନ୍ତ୍ର-ବାଦୀ ନ ଥିଲେ କି ଉଦାରପନ୍ଥୀ ନ ଥିଲେ । ସେ ଯେଉଁ ସଂସ୍କାରମାନ ପ୍ରବର୍ତ୍ତନ କରିଥିଲେ, ତାହା ତାଙ୍କର ଉଦାର ନୀତି ପ୍ରତି ଦୃଢ଼ବିଶ୍ୱାସର ଫଳ ନୁହେଁ; ବରଂ ତାହା ସମୟର ଆବଶ୍ୟକତା ଦୃଷ୍ଟିରୁ ସେ କରିଥିଲେ । ଯେତେବେଳେ ସେ ମନେକଲେ ଯେ ସେହି ଆବଶ୍ୟକତା ପୂରଣ ହୋଇସାରିଛି, ସେତେବେଳେ ସେ ତାହା ବନ୍ଦ କରିଦେଲେ । ପ୍ରଗତିକୁ ରୋକିଦେବା ଫଳରେ ସବୁକ୍ଷେତ୍ରରେ ବିଶୃଙ୍ଖଳତା ଦେଖାଦେଲା ଏବଂ ଏହି ବିଶୃଙ୍ଖଳତା ପରେ ପରେ ଆସିଲା ପ୍ରତିକ୍ରିୟା ।

କେତେକ ନିର୍ଦ୍ଦିଷ୍ଟ କାରଣରୁ ଦ୍ୱିତୀୟ ଆଲେକଜାଣ୍ଡାର ସଂସ୍କାର-ମାର୍ଗ ପରିତ୍ୟାଗ କରିଥିଲେ । ପ୍ରଥମତଃ ସେ ଯେଉଁ ସଂସ୍କାରମାନ ପ୍ରବର୍ତ୍ତନ କରିଥିଲେ, ସେଥିରୁ ଅଭିପ୍ରେତ ଫଳ ସଙ୍ଗେ ସଙ୍ଗେ ନ ମିଳିବାରୁ ତାହା ବିଫଳ ହୋଇଗଲା ବୋଲି ବିଗ୍ଭରି ସେ ହତୋତ୍ସାହ ହୋଇଥିଲେ; କିନ୍ତୁ ୧୮୬୩ ମସିହାରେ ପୋଲମାନେ ଜାର୍‌ଙ୍କ ଶାସନ ବିରୁଦ୍ଧରେ ବିଦ୍ରୋହ କରିବାରୁ ସେ ସଂସ୍କାର-ପ୍ରବର୍ତ୍ତନ ନୀତିରୁ ଓହରିଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ବାସ୍ତବରେ ପୋଲମାନଙ୍କ ପ୍ରତି ତାଙ୍କ ବ୍ୟବହାର ବନ୍ଧୁଭାବାପନ୍ନ ଥିଲା । ସେ ପ୍ରଥମ ନିକୋଲାସ୍‌ଙ୍କର ଦମନମୂଳକ ବ୍ୟବସ୍ଥା କୋହଳ କରିଥିଲେ । ପୋଲଭାଷା ବିଦ୍ୟାଳୟମାନଙ୍କରେ ପ୍ରବର୍ତ୍ତନ କରାଯାଇଥିଲା ଏବଂ ପୋଲାଣ୍ଡକୁ କେତେକ ପରିମାଣରେ ସ୍ୱାୟତ୍ତଶାସନ ଅଧିକାର ଦିଆଯାଇଥିଲା । ଏହି ସବୁ ବ୍ୟବସ୍ଥା ଫଳରେ ପୋଲମାନଙ୍କ ମନରେ ସ୍ୱାଧୀନତା ଓ ସ୍ୱାୟତ୍ତଶାସନ ପ୍ରତି ଉତ୍ସାହ ବୃଦ୍ଧିପାଇଲା । ସେମାନେ ଜାର୍‌ଙ୍କ ଶାସନାଧୀନରେ ରହିବାକୁ ଆଉ ଗ୍ଭହିଁଲେ ନାହିଁ । ପୋଲାଣ୍ଡର ପ୍ରଥମ ବିଭାଜନ (୧୭୭୨) ପୂର୍ବରୁ ଯେଉଁସବୁ ଅଞ୍ଚଳ ପୋଲାଣ୍ଡରେ ସାମିଲ ହୋଇଥିଲା, ତାହା ପୁନରୁଦ୍ଧାର କରି ଏକ ସ୍ୱାଧୀନ ପୋଲାଣ୍ଡ ରାଜ୍ୟ ପୁନଃ ପ୍ରତିଷ୍ଠା କରିବା ପାଇଁ ସେମାନେ ପ୍ରବଳ ଆଗ୍ରହ ପ୍ରକାଶ କରିଥିଲେ । ଦ୍ୱିତୀୟ ଆଲେକଜାଣ୍ଡାରଙ୍କର ଉଦାରନୈତିକ ସଂସ୍କାରମାନ ତାଙ୍କ ଦୁର୍ବଳତାର ପରିଚୟ ବୋଲି ସେମାନେ ମନେକରିଥିଲେ । ତେଣୁ ସେମାନେ ୧୮୬୩ ମସିହାରେ ରୁଷିଆ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ ଏବଂ ଫରାସୀ ସମ୍ରାଟ ତୃତୀୟ ନେପୋଲିୟନଙ୍କଠାରୁ ସାମରିକ ସାହାଯ୍ୟ ପାଇବାପାଇଁ ଆଶାପୋଷଣ କରିଥିଲେ । ପୋଲମାନଙ୍କର ବିଧିବଦ୍ଧ ସୈନ୍ୟବାହିନୀ ନ ଥିବାରୁ ସେମାନେ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ଜଙ୍ଗଲକୁ ପଳାଇ-ଯାଇଥିଲେ ଏବଂ ରୁଷିଆ ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ଗରିଲା ଯୁଦ୍ଧ ଚଳାଇଥିଲେ । ଇଂଲଣ୍ଡ ଏବଂ ଫ୍ରାନ୍ସ ପ୍ରଭୃତି ପାଶ୍ଚାତ୍ୟ ଶକ୍ତିମାନେ ପୋଲାଣ୍ଡ ପ୍ରତି ରୁଷିଆର ଆଚରଣ ବିରୁଦ୍ଧରେ ଦୃଢ଼ ପ୍ରତିବାଦ ଜଣାଇଥିଲେ; କିନ୍ତୁ ପ୍ରୁସିଆର ପ୍ରଧାନମନ୍ତ୍ରୀ ବିସ୍‌ମାର୍କ ରୁଷିଆକୁ ଦୃଢ଼ ସମର୍ଥନ କରିଥିଲେ । ବିସ୍‌ମାର୍କ ରୁଷିଆକୁ ଖୋଲାଖୋଲି ଏପରି ସମର୍ଥନକରିବା ଫଳରେ ଏକ ଜଟିଳ ପରିସ୍ଥିତି ସୃଷ୍ଟିହୋଇଥିଲା । ତେଣୁ ତୃତୀୟ ନେପୋଲିୟନ ପୋଲ୍‌ମାନଙ୍କୁ ସାମରିକ ସାହାଯ୍ୟ ଦେଇ ଉଭୟ ରୁଷିଆ ଏବଂ ପ୍ରୁସିଆ ସହିତ ଶତ୍ରୁତା କରିବାକୁ ଗ୍ଭହିଁନଥିଲେ ।

କୌଣସି ଇଉରୋପୀୟ ଶକ୍ତିଠାରୁ ସାହାଯ୍ୟ ନ ପାଇ ପୋଲମାନଙ୍କୁ ଏକାକୀ ରୁଷିଆ ବିରୁଦ୍ଧରେ ସଂଗ୍ରାମ ଚଳାଇବାକୁ ପଡ଼ିଥିଲା । ଦ୍ୱିତୀୟ ଆଲେକ୍‌ଜାଣ୍ଡାର ପୋଲମାନଙ୍କ ପ୍ରତି ପ୍ରତିହିଂସାପରାୟଣ ମନୋଭାବ ପୋଷଣ କରିଥିଲେ ଏବଂ ୧୮୬୪ ମସିହାରେ ଦୃଢ଼ହସ୍ତରେ ସେମାନଙ୍କର ବିଦ୍ରୋହ ଦମନ କରିଥିଲେ ।

ଏହା ପରେ ପରେ ପୋଲମାନଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ଆରମ୍ଭ ହୋଇଗଲା । ରୁଷ ସରକାର ସେମାନଙ୍କର ଜାତୀୟତା ନଷ୍ଟକରିଦେବା ଉଦ୍ଦେଶ୍ୟରେ ବିଭିନ୍ନ ପଦକ୍ଷେପ ନେଇଥିଲେ । ପୋଲଣ୍ଡ ତାହାର ସ୍ୱାୟତ୍ତଶାସନ ଅଧିକାରରୁ ବଞ୍ଚିତ ହେଲା । ପୋଲିସଭାଷା ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କରୁ ଉଠାଇଦିଆଗଲା । ପୋଲଣ୍ଡର ପ୍ରତ୍ୟେକ ଦପ୍ତରରେ ପୋଲିସ ପଦାଧିକାରୀମାନଙ୍କୁ (Polish Officers) ବାହାର କରିଦିଆଯାଇ ସେମାନଙ୍କ ସ୍ଥାନରେ ରୁଷୀୟ ପଦାଧିକାରୀମାନଙ୍କୁ ନିଯୁକ୍ତ କରାଯାଇଥିଲା । ପୋଲଣ୍ଡରେ ରୋମୀୟ କ୍ୟାଥଲିକ ଧର୍ମ ତାହାର ବିଶେଷ ଅଧିକାରଗୁଡ଼ିକ ହରାଇଲା । ସେଠାରେ ବାସକରୁଥିବା ସମ୍ଭ୍ରାନ୍ତ ଲୋକେ ରୁଷିଆବିରୋଧୀ ମନୋଭାବ ପୋଷଣ କରୁଥିବାରୁ ସେମାନଙ୍କୁ ଦମନ କରାଯାଇଥିଲା । ସେମାନଙ୍କଠାରୁ କୃଷକମାନଙ୍କୁ ବିଚ୍ଛିନ୍ନ କରାଯାଇ କୃଷକମାନଙ୍କ ପ୍ରତି ସହାନୁଭୂତି ଓ ଅନୁଗ୍ରହ ପ୍ରଦର୍ଶନ କରାଯାଇଥିଲା । ସେମାନଙ୍କୁ ଜମିମାଲିକମାନଙ୍କ କର୍ତ୍ତୃତ୍ୱରୁ ମୁକ୍ତ ଦିଆଯାଇ ଜମିଗୁଡ଼ିକ ମୁକ୍ତ କୃଷକ ଏବଂ ପୂର୍ବତନ ଜମିମାଲିକମାନଙ୍କ ମଧ୍ୟରେ ବାଣ୍ଟିଦିଆଯାଇଥିଲା । ପୋଲ୍‌ମାନଙ୍କୁ ରୁଷୀୟ ବ୍ୟବସ୍ଥା ଓ ସଂସ୍କୃତି ସହିତ ସାମିଲ କରିନେବାପାଇଁ ରୁଷ ସରକାର ପୋଲଣ୍ଡରେ ରୁଷୀକରଣ ନୀତି (the policy of Russification) ଅବଲମ୍ବନ କରିଥିଲେ । ତା'ଛଡ଼ା ପୋଲଣ୍ଡକୁ ରୁଷିଆ ସହିତ ମିଶାଇ ଦିଆଯାଇ ରୁଷ ସାମ୍ରାଜ୍ୟଭୁକ୍ତ କରାଯାଇଥିଲା ।

ପୋଲମାନଙ୍କର ବିଦ୍ରୋହ ଦମନ ପରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ଆଭ୍ୟନ୍ତରୀଣ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ରୁଷବାସୀ ଉପଲବ୍ଧି କରିଥିଲେ ଯେ ଜାର୍‌ଙ୍କ ଶାସନ ଜନସାଧାରଣଙ୍କ ନିୟନ୍ତ୍ରଣରେ ବହିର୍ଭୂତ ଥିବାରୁ, ଦ୍ୱିତୀୟ ଆଲେକ୍‌ଜାଣ୍ଡାର ଯେଉଁ ସଂସ୍କାରମାନ ପ୍ରବର୍ତ୍ତନ କରିଥିଲେ, ତାହା ଦେଶରେ ପ୍ରକୃତ ପ୍ରଗତି ଆଣିନଥିଲା । ସେମାନେ ଆଶାକରିଥିଲେ ଯେ ଆଲେକ୍‌ଜାଣ୍ଡାରଙ୍କ ସଂସ୍କାରଗୁଡ଼ିକ କାର୍ଯ୍ୟକାରୀ କରାଗଲେ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ଘଟିବ ଏବଂ ସେମାନେ ସୁଖ ଓ ଶାନ୍ତିରେ ଦିନ କାଟିବେ; କିନ୍ତୁ ଘଟଣାପ୍ରବାହରେ ସେମାନଙ୍କର ଆଶା ବ୍ୟର୍ଥ ହୋଇଗଲା । ତେଣୁ ସେମାନଙ୍କ ମଧ୍ୟରେ ଅଶାନ୍ତି ଏବଂ ଅସନ୍ତୋଷ ପ୍ରକାଶ ପାଇଲା ।

ଜନସାଧାରଣଙ୍କର ଏହି ଅସନ୍ତୋଷ ଫଳରେ ନିହିଲିଷ୍ଟ (Nihilist) ଆନ୍ଦୋଳନ ମୁଣ୍ଡ ଟେକିଲା । ନିହିଲିଷ୍ଟ ଶବ୍ଦ ଟରଗେନିଭ ପ୍ରଥମେ 'ପିତା ଓ ପୁତ୍ରମାନେ' (Father and Sons) ନାମକ ତାଙ୍କର ପ୍ରସିଦ୍ଧ ଉପନ୍ୟାସରେ ବ୍ୟବହାର କରିଥିଲେ ।

ନିହିଲିଷ୍ଟମାନେ ଥିଲେ ବୁଦ୍ଧିବାଦୀ ଏବଂ ଚରମପନ୍ଥୀ । ସେମାନେ ସମାଜର ସମ୍ପୂର୍ଣ୍ଣ ପରିବର୍ତ୍ତନ ଚାହୁଁଥିଲେ । ନିହିଲିଷ୍ଟଦଳ ପାଇଁ ବିଶ୍ୱବିଦ୍ୟାଳୟ ଓ ବ୍ୟବସାୟୀ-ଗୋଷ୍ଠୀରୁ ସଭ୍ୟ ସଂଗ୍ରହ କରାଯାଉଥିଲା । ନିହିଲିଷ୍ଟ କାହାକୁ କହନ୍ତି, ତାହା ବ୍ୟାଖ୍ୟା କରିବାକୁ ଯାଇ ଟରଗେନିଭ୍ କହିଥିଲେ ଯେ ସେ ଜଣେ ବ୍ୟକ୍ତି, ଯେ କି କୌଣସି ପ୍ରାଧିକାରୀ ନିକଟରେ ମୁଣ୍ଡ ନୁଆଁଏ ନାହିଁ ଏବଂ ପ୍ରମାଣିତ ହୋଇନଥିବା କୌଣସି ନୀତି ଗ୍ରହଣ କରେନାହିଁ । ସେ ପୁରାତନ ଶାସନ-ପଦ୍ଧତିର ସବୁ କିଛି ଧ୍ୱଂସ କରିଦେବାକୁ ଚାହେଁ; ଅର୍ଥାତ୍ ସେ ଜାର୍‌ଙ୍କର ପ୍ରଭୁତ୍ୱ, ରାଷ୍ଟ୍ରର କ୍ଷମତା, ଧର୍ମାନୁଷ୍ଠାନର ପବିତ୍ରତା ଏବଂ ସମାଜର ଦାୟିତ୍ୱକୁ ଅସ୍ୱୀକାର କରେ ଏବଂ ସେ ସବୁର ଉଚ୍ଛେଦସାଧନ ଚାହେଁ ।" ନିହିଲିଷ୍ଟବାଦ (Nihilism)ର ଅର୍ଥ ହେଲା 'ଧ୍ୱଂସ' । ଏହା ପ୍ରଥମ ଅବସ୍ଥାରେ ଥିଲା ଏକ ନାସ୍ତିସୂଚକ ତତ୍ତ୍ୱ । ସବୁ ପ୍ରକାର କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ ଚଳାଇବା ଏବଂ କର୍ତ୍ତୃତ୍ୱବାଦକୁ ସମ୍ପୂର୍ଣ୍ଣ ଲୋପକରିଦେବା ଥିଲା ଏହାର ଉଦ୍ଦେଶ୍ୟ । ନିହିଲିଷ୍ଟବାଦ କେବଳ ଏକ ନାସ୍ତିସୂଚକ ତତ୍ତ୍ୱ ନୁହେଁ, ଏହା ମଧ୍ୟ ଏକ ସାରାତ୍ମକ ନୀତି । ଏହାର ଆଦର୍ଶ ହେଲା 'ଲୋକମାନଙ୍କ ମଧ୍ୟରେ ବୁଲ' (Go among the people) । ଉତ୍ସାହୀ ଯୁବକ ଓ ଯୁବତୀମାନେ ସହର ଓ ଗ୍ରାମମାନଙ୍କରେ ଥିବା ମଜଦୁରମାନଙ୍କ ମଧ୍ୟରେ ବୁଲି ବୁଲି ସେମାନଙ୍କୁ ନିହିଲିଷ୍ଟବାଦର ମୌଳିକ ନୀତି ଶିକ୍ଷାଦେଇଥିଲେ । ନିହିଲିଷ୍ଟ ଆନ୍ଦୋଳନ ପ୍ରାରମ୍ଭରେ ଶିକ୍ଷାର ପ୍ରସାର ପାଇଁ ଉଦ୍ଦିଷ୍ଟ ଥିଲା । ନିହିଲିଷ୍ଟମାନଙ୍କର ନିରବଚ୍ଛିନ୍ନ ପ୍ରଚାର ଫଳରେ ନାରୀମାନଙ୍କୁ ସ୍ୱାଧୀନତା ମିଳିଲା ଏବଂ ଉଚ୍ଚଶିକ୍ଷା ଏବଂ ବ୍ୟବସାୟ କ୍ଷେତ୍ରରେ ସେମାନଙ୍କର ଅବାଧ ପ୍ରବେଶାଧିକାର ସାବ୍ୟସ୍ତ ହେଲା । କିନ୍ତୁ ସେମାନେ ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କୁ ହତ୍ୟାକରିବାପାଇଁ ଉଦ୍ୟମ କରିବାରୁ, ଜାର୍ ଏଥିରେ କ୍ରୁଦ୍ଧ ହୋଇ ଉଦାରନୀତି ପରିହାର କରିଥିଲେ ଏବଂ ରୁଷିଆରେ ନିରଙ୍କୁଶ ଶାସନ ପୁନଃ ପ୍ରତିଷ୍ଠା କରିବାପାଇଁ ସିଦ୍ଧାନ୍ତ କରିଥିଲେ । ତେଣୁ ସେ ପ୍ରତିକ୍ରିୟାଶୀଳମାନଙ୍କ ସହିତ ହାତ ମିଳାଇଥିଲେ ଏବଂ ସେମାନଙ୍କର ପ୍ରରୋଚନାରେ ଆତଙ୍କରାଜ ପ୍ରତିଷ୍ଠାକରି ନିହିଲିଷ୍ଟମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଚଳାଇଥିଲେ । ରୁଷ ସରକାର ନିହିଲିଷ୍ଟମାନଙ୍କୁ ଏହିପରି ଭାବରେ ଦମନ କରିବା ପାଇଁ ଉଦ୍ୟମ ଅବ୍ୟାହତ ରଖିବା ଫଳରେ ସେମାନଙ୍କର ଆନ୍ଦୋଳନ ଅରାଜକତା ଏବଂ ସନ୍ତ୍ରାସବାଦ ଆଡ଼କୁ ଗତିକରିଥିଲା । ସେମାନେ ସରକାରୀ ଉଚ୍ଚପଦାଧିକାରୀମାନଙ୍କୁ ହତ୍ୟାକରିବା ଉଦ୍ଦେଶ୍ୟରେ ଷଡ଼ଯନ୍ତ୍ରରେ ଲିପ୍ତ ରହିଲେ । ନିହିଲିଷ୍ଟମାନଙ୍କ ଉପରେ ସରକାରଙ୍କର ଅତ୍ୟାଚାର ଯେଉଁ ପରିମାଣରେ ବୃଦ୍ଧିପାଇଲା, ସେହି ପରିମାଣରେ ନିହିଲିଷ୍ଟମାନଙ୍କର ହିଂସାକାଣ୍ଡ ମଧ୍ୟ ବୃଦ୍ଧିପାଇଲା । ଅବଶେଷରେ ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କୁ ନିହିଲିଷ୍ଟମାନଙ୍କ ପ୍ରତି ବନ୍ଧୁଭାବାପନ୍ନ ନୀତି ଅବଲମ୍ବନ କରିବା ପାଇଁ ପ୍ରସ୍ତୁତ କରାଗଲା । ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ଯେଉଁ ସଂସ୍କାରଗୁଡ଼ିକ ପ୍ରବର୍ତ୍ତନ କରାଯିବ ତାହା ପ୍ରସ୍ତୁତ କରିବା ପାଇଁ ଏକ କ୍ଷମତାପ୍ରାପ୍ତ ସ୍ୱତନ୍ତ୍ର କମିସନ ନିଯୁକ୍ତ କରିବାକୁ ୧୮୮୧ ମସିହାରେ ହୁକୁମନାମା ଜାରି କରିଥିଲେ । ଯେଉଁ ଦିନ

ସେ ଏହି ହୁକୁମନାମା ସ୍ୱାକ୍ଷର କରିଥିଲେ, ଠିକ୍ ସେହିଦିନ କେତେକ ନିହିଲିଷ୍ଟ ଆତତାୟୀ ତାଙ୍କ ଉପରକୁ ବୋମା ନିକ୍ଷେପକରି ତାଙ୍କୁ ହତ୍ୟା କରିଥିଲେ ।

ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କର ହତ୍ୟା ଥିଲା ସଂସ୍କାର ପ୍ରତି ଏକ ବଡ଼ ଆଘାତ । ତାଙ୍କ ହତ୍ୟାଫଳରେ ସେ ଯେଉଁ ମିଳାମିଶା ନୀତି ଗ୍ରହଣ କରିଥିଲେ, ତାହାର ଅବସାନ ଘଟିଲା । ରୁଷିଆରେ ଉଦାରନୈତିକ ଶାସନ ପ୍ରତିଷ୍ଠାର ସକଳ ଆଶା ଲୋପପାଇଗଲା ।

## ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ବୈଦେଶିକ ନୀତି

ଦ୍ୱିତୀୟ ଆଲେକ୍‌ଜାଣ୍ଡାର୍ ଇଉରୋପୀୟ ରାଜନୀତି କ୍ଷେତ୍ରରେ ପିତାଙ୍କର 'ହସ୍ତକ୍ଷେପ ନୀତି' ପରିତ୍ୟାଗ କରିଥିଲେ ଏବଂ ଜଟିଳ ବୈଦେଶିକ ବ୍ୟାପାରରୁ ନିଜକୁ ମୁକ୍ତ ରଖିଥିଲେ । ସେ କ୍ରିମିୟା ଯୁଦ୍ଧର ଶେଷଭାଗରେ ସିଂହାସନ ଆରୋହଣ କରିଥିଲେ ଏବଂ ଇଂଲଣ୍ଡ, ଫ୍ରାନ୍‌ସ ପ୍ରଭୃତି ମିତ୍ରଶକ୍ତିମାନଙ୍କୁ ସନ୍ଧି ପ୍ରସ୍ତାବ ଦେଇ କ୍ରିମିୟା ଯୁଦ୍ଧର ଅବସାନ ଘଟାଇଥିଲେ । ୧୮୫୬ ମସିହା ପ୍ୟାରିସ୍ ସନ୍ଧି ଫଳରେ ଦକ୍ଷିଣ-ପୂର୍ବ ଇଉରୋପରେ ରୁଷିଆର ଅଗ୍ରଗତି ରୋକିଦିଆଗଲା । ଏହି ସନ୍ଧି ପରେ ପରେ ରୁଷିଆର ଆଭ୍ୟନ୍ତରୀଣ ଏବଂ ବୈଦେଶିକ ନୀତିର ଆମୂଳଚୂଳ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥିଲା । ୧୮୬୩ ମସିହାରେ ପୋଲଣ୍ଡର ଲୋକେ ରୁଷିଆ ବିରୁଦ୍ଧରେ ବିଦ୍ରୋହ କଲାବେଳେ ଫ୍ରାନ୍‌ସର ସମ୍ରାଟ ତୃତୀୟ ନେପୋଲିୟନ ସେମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିଥିବାରୁ ଦ୍ୱିତୀୟ ଆଲେକ୍‌ଜାଣ୍ଡାର୍ ଫ୍ରାନ୍‌ସ ସହିତ ମିତ୍ରତା ଛିନ୍ନକରିଥିଲେ ଏବଂ ପ୍ରୁସିୟାର ପ୍ରଧାନମନ୍ତ୍ରୀ ବିସ୍‌ମାର୍କ ପୋଲବିଦ୍ରୋହୀମାନଙ୍କୁ ଦମନକରିବାପାଇଁ ତାଙ୍କୁ ସାହାଯ୍ୟଦେବାକୁ ବାହିଁଥିବାରୁ ସେ ପ୍ରୁସିୟା ସହିତ ମିତ୍ରତା ସ୍ଥାପନ କରିଥିଲେ । ରୁଷିଆ ୧୮୪୯ ମସିହାରେ ହଙ୍ଗେରୀ ବିରୁଦ୍ଧରେ ଅଷ୍ଟ୍ରିୟାକୁ ସାହାଯ୍ୟ କରିଥିବାରୁ ସେ ଆଶା ପୋଷଣ କରିଥିଲେ ଯେ କ୍ରିମିୟା ଯୁଦ୍ଧରେ ଅଷ୍ଟ୍ରିୟା ରୁଷିଆ ସପକ୍ଷରେ ଯୁଦ୍ଧ କରିବ; କିନ୍ତୁ ଅଷ୍ଟ୍ରିଆ ତାହା କରିନଥିଲା । ଅଷ୍ଟ୍ରିୟାର ଏତାଦୃଶ କୃତଘ୍ନତାର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ୧୮୬୬ ମସିହାରେ ଅଷ୍ଟ୍ରିୟା-ପ୍ରୁସିୟା ଯୁଦ୍ଧବେଳେ ନିରପେକ୍ଷ ରହିଥିଲେହେଁ ପ୍ରୁସିୟା ପ୍ରତି ସହାନୁଭୂତିସଂପନ୍ନ ହୋଇଥିଲେ । ପ୍ରୁସିୟା ସହିତ ରୁଷିଆର ବନ୍ଧୁତ୍ୱ ଫଳରେ ପ୍ରୁସିୟା ମଧ୍ୟ ଲାଭବାନ୍ ହୋଇଥିଲା । ସେ ଅଷ୍ଟ୍ରିୟାକୁ ଯୁଦ୍ଧରେ ପରାସ୍ତ କରି ତାକୁ ଜର୍ମାନୀରୁ ବହିଷ୍କାର କରିଦେବାକୁ ସମର୍ଥ ହୋଇଥିଲା । ପ୍ରୁସିୟାର ସାହାଯ୍ୟରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ରୁଷିଆକୁ ଅଷ୍ଟ୍ରିୟା ବିରୁଦ୍ଧରେ ବେଶ୍ ସୁଦୃଢ଼ କରିପାରିଥିଲେ । ପ୍ରୁସିୟାର ସାହାଯ୍ୟରେ ସେ ମଧ୍ୟ ୧୮୫୬ ମସିହା ପ୍ୟାରିସ୍ ସନ୍ଧିର କୃଷ୍ଣସାଗର ସମ୍ପର୍କୀୟ ଅପମାନଜନକ ସର୍ତ୍ତଗୁଡ଼ିକ ୧୮୭୦ ମସିହାରେ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ତାହାପରେ ସେ ବଲ୍‌କାନ ସମସ୍ୟାଗୁଡ଼ିକ ପୁନରାୟ ଉତ୍ଥାପନ କରି ବଲ୍‌କାନ ଅଞ୍ଚଳରେ ରୁଷିଆର

ପ୍ରାଧାନ୍ୟ ପୁନରୁଦ୍ଧାର କରିବା ପାଇଁ ଉଦ୍ୟମ କରିଥିଲେ । ୧୮୭୭ ମସିହାରେ ଦ୍ୱିତୀୟ ଆଲେକଜାଣ୍ଡାର ତୁର୍କୀ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲେ ଏବଂ ଯୁଦ୍ଧରେ ଜୟଲାଭ କରି ସ୍ୟାନ ଷ୍ଟିଫାନୋ (San Stefano) ସନ୍ଧିଦ୍ୱାରା ତୁର୍କ ସୁଲତାନଙ୍କଠାରୁ ନାନା ପ୍ରକାର ସୁଯୋଗ-ସୁବିଧା ଆଦାୟ କରିନେଇଥିଲେ; କିନ୍ତୁ ଜର୍ମାନୀର ଚାନ୍‌ସେଲାର ବିସ୍‌ମାର୍କ ଅଷ୍ଟ୍ରିୟା ସହିତ ବନ୍ଧୁତା ସ୍ଥାପନ କରିବା ଉଦ୍ଦେଶ୍ୟରେ ରୁଷିଆ ପକ୍ଷ ତ୍ୟାଗକରି ବର୍ଲିନ କଂଗ୍ରେସରେ (୧୮୭୮) ଅଷ୍ଟ୍ରିୟା ପକ୍ଷ ସମର୍ଥନ କରିଥିଲେ । ତେଣୁ ବର୍ଲିନଚୁକ୍ତି ଫଳରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର ସ୍ୟାନ ଷ୍ଟିଫାନୋ ସନ୍ଧିରେ ଲାଭକରିଥିବା ସୁଯୋଗ-ସୁବିଧାର ଅନେକ କିଛି ହରାଇଥିଲେ ।

ଦ୍ୱିତୀୟ ଆଲେକ୍‌ଜାଣ୍ଡରଙ୍କର ବଲ୍‌କାନ ନୀତି ବିଶେଷ ଫଳପ୍ରଦ ହୋଇନଥିଲେ ମଧ୍ୟ ତାଙ୍କ ଅମଳରେ ରୁଷିଆର ପ୍ରଭାବ ଏସିଆରେ ଯଥେଷ୍ଟ ପ୍ରସାରଲାଭ କରିଥିଲା । ମଧ୍ୟ-ଏସିଆରେ ବାରମ୍ବାର ଅଭିଯାନ ଚଳାଇ ସେ ରୁଷିଆ ସାମ୍ରାଜ୍ୟକୁ ମର୍ଭ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଏହା ଫଳରେ ରୁଷିଆର ସୀମା ଆଫଗାନିସ୍ତାନ ଏବଂ ପାରସ୍ୟ ପର୍ଯ୍ୟନ୍ତ ବୃଦ୍ଧି ପାଇଥିଲା । ମଧ୍ୟ-ଏସିଆରେ ରୁଷିଆର ରାଜ୍ୟ-ବିସ୍ତାର ନୀତି ଇଂଲଣ୍ଡକୁ ବିଶେଷ ଆତଙ୍କିତ ଏବଂ ଅଧୀର କରିପକାଇଥିଲା । ଚୀନ ସହିତ ଆଇଗୁନ ଚୁକ୍ତି ସ୍ୱାକ୍ଷର ଫଳରେ ରୁଷିଆ ତାର ସାଇବେରିଆ ଅଞ୍ଚଳ ପ୍ରସାରଣ କରିବା ସଙ୍ଗେ ସଙ୍ଗେ ଭ୍ଲାଡିଭଷ୍ଟକ୍ ନାମକ ଏକ ଗୁରୁତ୍ୱପୂର୍ଣ୍ଣ ବନ୍ଦର ଅଧିକାର କରିନେଇଥିଲା । ଏହି ବନ୍ଦର ବିସ୍ତୃତ ଟ୍ରାନ୍‌ସ-ସାଇବେରିଆ ରେଲପଥର ଶେଷ ସୀମା ସ୍ୱରୂପ କାର୍ଯ୍ୟ କରିବା ବ୍ୟତୀତ ପ୍ରଶାନ୍ତ ମହାସାଗରରେ ରୁଷ-ନୌବହରର ସାମରିକ ଘାଟୀ ରୂପେ ମଧ୍ୟ କାର୍ଯ୍ୟ କରିଥିଲା । ଦକ୍ଷିଣରେ ଦ୍ୱିତୀୟ ଆଲେକ୍‌ଜାଣ୍ଡାର କକେଶସ୍ ପର୍ବତମାଳାର ଗୁରୁପର୍ଣ୍ଣ ଅଞ୍ଚଳ ରୁଷିଆର ଆୟତ୍ତାଧୀନ କରିଥିଲେ ।

## ତୃତୀୟ ଆଲେକ୍‌ଜାଣ୍ଡାରଙ୍କର ରାଜତ୍ୱ (୧୮୮୧-୯୪)
## ( The Reign of Alexander-III : 1881-94 )

ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କୁ ହତ୍ୟା କରାଯିବା ପରେ ତାଙ୍କ ପୁତ୍ର ତୃତୀୟ ଆଲେକ୍‌ଜାଣ୍ଡାର ୧୮୮୧ ମସିହାରେ ରୁଷିଆର ରାଜସିଂହାସନ ଆରୋହଣ କରିଥିଲେ । ତୃତୀୟ ଆଲେକ୍‌ଜାଣ୍ଡାର ପିତାଙ୍କର ଉଦାରନୀତି ତ୍ୟାଗକରି ପୁରାତନ ଦମନମୂଳକ ବ୍ୟବସ୍ଥାର ପୁନରୁଦ୍ଧାର କରିଥିଲେ । ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ହତ୍ୟା ଫଳରେ ନିହିଲିଷ୍ଟ ମତବାଦ ଅଧିକାଂଶ ରୁଷବାସୀଙ୍କର ସହାନୁଭୂତି ହରାଇଥିଲା । ନିହିଲିଷ୍ଟମାନେ କ୍ରମେ କ୍ରମେ ରୁଷିଆରେ ସେମାନଙ୍କର ପ୍ରଭାବ ହରାଇଲେ । ଜାର୍ ତୃତୀୟ ଆଲେକ୍‌ଜାଣ୍ଡାର ନିହିଲିଷ୍ଟ ସନ୍ତ୍ରାସବାଦୀମାନଙ୍କୁ ଗୋଡ଼େଇ ଗୋଡ଼େଇ ଧରି ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ । ଏହିପରି ଭାବରେ ନିହିଲିଷ୍ଟ ମତବାଦକୁ ଦମନ କରାଯାଇଥିଲା ।

ପିତାଙ୍କର ଉଦାର ନୀତି ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରିନଥିଲା । ତାଙ୍କର ଦୃଷ୍ଟିକୋଣ ଅତି ସଂକୀର୍ଣ୍ଣ ଏବଂ ଭାବଧାରା ମଧ୍ୟଯୁଗୀୟ ଥିଲା । ତେଣୁ ସେ ପ୍ରତିକ୍ରିୟାଶୀଳ ନୀତିରେ ଅଟଳ ରହିଥିଲେ ଏବଂ ତତ୍‌କାଳୀନ ନୂତନ ଭାବଧାରା ଉପରେ ତାଙ୍କର ଆସ୍ଥା ନ ଥିଲା । ତାଙ୍କ ମତରେ ରୁଷିଆର ପୁନରୁଦ୍ଧାର ସଂସ୍ଥାୟୀ ଅନୁଷ୍ଠାନମାନଙ୍କ ସାହାଯ୍ୟରେ କିମ୍ବା ପାଶ୍ଚାତ୍ୟ ଉଦାର ନୀତି ସାହାଯ୍ୟରେ କରାଯାଇ ନପାରେ; ତାହା କେବଳ ସ୍ୱଦେଶ ନୀତି ଅନୁସରଣଦ୍ୱାରା ସମ୍ଭବପର । ସେ ନୀତିଗୁଡ଼ିକ ହେଲା—ସ୍ୱେଚ୍ଛାଚାରିତା, ସ୍ୱଧର୍ମନିଷ୍ଠା ବା ସଂସ୍କାରବିରୋଧୀ ଏବଂ ସ୍ଲାଭ ଜାତୀୟତା । ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ଏପରି ମନୋଭାବର ଦୃଢ଼ ସମର୍ଥକ ଥିଲେ ତାଙ୍କର ପୂର୍ବତନ ଶିକ୍ଷକ ଏବଂ ପବିତ୍ର ଆଲୋଚନା ସଭା (Holy Synod)ର ପ୍ରୋକ୍ୟୁରେଟର (ଉପାଧ୍ୟକ୍ଷ) ପୋବେଡନସ୍ତେଭ ( Pobeydonostev ) । ପୋବେଡ଼ନସ୍ତେଭଙ୍କ ଦର୍ଶନ ପ୍ରତିକ୍ରିୟାଶୀଳ ନୀତି ଉପରେ ଆଧାରିତ ଥିଲା । ସେ ଶିକ୍ଷା ଦେଇଥିଲେ ଯେ ପଶ୍ଚିମ ଇଉରୋପର ସାମାଜିକ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକ ପ୍ରକୃତରେ ଅନିଷ୍ଟକର ଏବଂ ରୁଷିଆର ପରମ୍ପରା ବିରୋଧୀ ହୋଇଥିବାରୁ ଏଗୁଡ଼ିକ ରୁଷିଆ ପ୍ରତି ପ୍ରଯୁଜ୍ୟ ନୁହେଁ । ପୋବେଡ଼ନସ୍ତେଭଙ୍କ ମତରେ ରୁଷିଆର ଆଦର୍ଶ ହେଲା 'ଏକ ଜାର, ଏକ ଗିର୍ଜା ଏବଂ ଏକ ରୁଷିଆ ।' ଏହି ଆଦର୍ଶ ହିଁ ରୁଷିଆକୁ ପଶ୍ଚିମ ଇଉରୋପର ଅରାଜକତା ଓ ସଂଶୟବାଦରୁ ରକ୍ଷା କରିପାରିବ । ରୁଷିଆର ଅଧିକାଂଶ ଲୋକେ ରକ୍ଷଣଶୀଳ ହୋଇଥିବାରୁ ତୃତୀୟ ଆଲେକ୍‌ଜାଣ୍ଡାରଙ୍କର ପ୍ରତିକ୍ରିୟାଶୀଳ ନୀତି କାର୍ଯ୍ୟକାରୀ ପାଇଁ ସଫଳ ହୋଇଥିଲା ।

ପିତାଙ୍କର ହତ୍ୟାକାରୀ ନିହିଲିଷ୍ଟ ସନ୍ତ୍ରାସବାଦୀମାନଙ୍କୁ ଦମନକରିବା ସଙ୍ଗେ ସଙ୍ଗେ ତୃତୀୟ ଆଲେକ୍‌ଜାଣ୍ଡାର ଛାପାଖାନା ଏବଂ ବିଶ୍ୱବିଦ୍ୟାଳୟଗୁଡ଼ିକ ପୁରାପୁରି ସରକାରଙ୍କ ନିୟନ୍ତ୍ରଣାଧୀନ କରିଥିଲେ ଏବଂ ଉଦାରନୈତିକ ମନୋଭାବର ବିନାଶ ସାଧନ ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ଜେମସ୍‌ଟଭୋ ନାମକ ପ୍ରତିନିଧିସଭାର ଅଧିକାର ଅନେକ ପରିମାଣରେ ସଂକୋଚ କରାଯାଇଥିଲା । ଛାତ୍ର ଓ ଅଧ୍ୟାପକମାନଙ୍କର ଗତିବିଧି ଉପରେ ସତର୍କ ଦୃଷ୍ଟି ରଖାଯାଇଥିଲା । ସମ୍ବାଦପତ୍ରଗୁଡ଼ିକ ଉପରେ କଟକଣା ଜାରି କରାଯାଇଥିଲା । ରୁଷିଆରେ ବାସକରୁଥିବା ବିଭିନ୍ନ ଜାତିର ଲୋକମାନଙ୍କ ଜାତୀୟତାକୁ ନଷ୍ଟକରି ଦିଆଯାଇ ସେମାନଙ୍କୁ ରୁଷ ଜାତିରେ ସାମିଲ କରିଦେବାପାଇଁ ରୁଷୀକରଣ ନୀତି (The Policy of Russification) ଅନୁସରଣ କରାଯାଇଥିଲା । ତୃତୀୟ ଆଲେକଜାଣ୍ଡାର ଫିନ ଓ ପୋଲ ପ୍ରଭୃତି ଅଣରୁଷ ଲୋକେ ଯେଉଁ ବିଶେଷ ଅଧିକାରଗୁଡ଼ିକ ଉପଭୋଗ କରୁଥିଲେ, ସେଥିରୁ ସେମାନଙ୍କୁ ବଞ୍ଚିତ କରି ସମଗ୍ର ରାଜ୍ୟରେ ଏକପ୍ରକାର ନିୟମ ପ୍ରବର୍ତ୍ତନ କରିଥିଲେ । ରାଜ୍ୟର ସବୁ ଅଞ୍ଚଳରେ ଏକ ଭାଷା, ଏକ ଧର୍ମ ଏବଂ ଏକ ଆଇନ ପ୍ରଚଳନ କରିବାପାଇଁ ଦୃଢ଼ ପ୍ରଚେଷ୍ଟା କରିଥିଲେ । ଭିନ୍ନ ମତାବଲମ୍ବୀମାନଙ୍କୁ ଉଚ୍ଛେଦ କରାଯାଇ ଏବଂ ଅନାବଶ୍ୟକ ଭାଷାଗୁଡ଼ିକୁ ଲୋପ କରାଯାଇ ଯେକୌଣସି ମତେ ଏକ ଜାତୀୟତା ପ୍ରବର୍ତ୍ତନ କରିବା

ପାଇଁ ଦୃଢ଼ ପଦକ୍ଷେପ ନିଆଯାଇଥିଲା । ରୁଷିଆର ଦକ୍ଷିଣାଞ୍ଚଳରେ ବାସ କରୁଥିବା ପ୍ରୋଟେଷ୍ଟାଣ୍ଟମାନଙ୍କ ଉପରେ ଅତ୍ୟାଚାର କରାଯାଇଥିଲା । ଧର୍ମୋପଦେଶଗୁଡ଼ିକ ଯାଞ୍ଚ କରାଯାଉଥିଲା । ସାଧାରଣତଃ ଭିନ୍ନଧର୍ମାବଲମ୍ବୀମାନଙ୍କୁ ଦମନକରିବା ପାଇଁ ସବୁ ପ୍ରକାର ଉଦ୍ୟମ କରାଯାଇଥିଲା ।

ତୃତୀୟ ଆଲେକ୍‌ଜାଣ୍ଡାରଙ୍କର ବହୁସଂଖ୍ୟକ ପ୍ରଜା ଏହି ଅତ୍ୟାଚାରର ଶିକାର ହୋଇଥିଲେ । ଇହୁଦୀମାନେ ଏବଂ ରୁଷିଆରେ ବାସକରୁଥିବା ଅନ୍ୟାନ୍ୟ ଜାତିର ଲୋକେ ନିଜ ନିଜର ଭାଷା ଓ ସଂସ୍କୃତି ରକ୍ଷାକରିବାପାଇଁ ଚାହିଁଥିଲେ; କିନ୍ତୁ ତୃତୀୟ ଆଲେକ୍‌ଜାଣ୍ଡାର୍ ଜୋର୍‌କରି ସେମାନଙ୍କ ଉପରେ ରୁଷଭାଷା, ରୁଷ ଉପାସନାପଦ୍ଧତି ଓ ରୁଷ ଶାସନ-ବ୍ୟବସ୍ଥା ଲଦି ଦେଇଥିଲେ । ରୁଷିଆରେ ବାସକରୁଥିବା ଅନ୍ୟାନ୍ୟ ଜାତିର ଲୋକମାନଙ୍କ ଅପେକ୍ଷା ଇହୁଦୀମାନେ ଅଧିକ ଦୁଃଖ-ଦୁର୍ଦ୍ଦଶା ଭୋଗକରିଥିଲେ । ସେମାନଙ୍କର ସଂଖ୍ୟା ପ୍ରାୟ ପାଞ୍ଚଲକ୍ଷ ଥିଲା । ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ରାଜତ୍ୱକାଳରେ ସେମାନେ ଅକଥନୀୟ ଅତ୍ୟାଚାରର ଶିକାର ହୋଇଥିଲେ । ରୁଷିଆର ପଶ୍ଚିମାଞ୍ଚଳରେ ଅବସ୍ଥିତ ମାତ୍ର କେତୋଟି ସହରରେ ବାସକରିବା ପାଇଁ ସେମାନଙ୍କୁ ବାଧ୍ୟ କରାଯାଇଥିଲା । ସେମାନଙ୍କୁ ସ୍ଥାନୀୟ ଶାସନ-ବ୍ୟବସ୍ଥାରୁ ବାଦ୍ ଦିଆଯାଇଥିଲା ଏବଂ କେତେକ ଶିକ୍ଷାରୁ ବଞ୍ଚିତ କରାଯାଇଥିଲା । ଆହୁରି ମଧ୍ୟ ସେମାନଙ୍କୁ କୃଷିକାର୍ଯ୍ୟ କରିବାକୁ ଏବଂ ସୀମିତ କରାଯାଇଥିବା ସହରମାନଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ସମ୍ପତ୍ତି ଅଧିକାର କରିବାକୁ ମନାକରିଦିଆଯାଇଥିଲା । ସେମାନଙ୍କ ଉପରେ ପୋଗ୍ରୋ ନାମକ ସଂଗଠିତ ଆକ୍ରମଣ କରାଯାଉଥିଲା । ଏହି ଆକ୍ରମଣ ସଙ୍ଗେ ସଙ୍ଗେ ସେମାନଙ୍କର ସମ୍ପତ୍ତି ଲୁଣ୍ଠନ କରାଯାଉଥିଲା ଏବଂ ସେମାନଙ୍କର ଘରଗୁଡ଼ିକ ମଧ୍ୟ ପୋଡ଼ି-ଦିଆଯାଉଥିଲା । ଅଧିକାଂଶ ସ୍ଥଳରେ ସରକାର ଏହିସବୁ ଉପଦ୍ରବକୁ ଉତ୍ସାହିତ କରୁଥିଲେ । ରୁଷିଆର ପୋଲଣ୍ଡ ଅଞ୍ଚଳରେ ଦୋକାନ ଖୋଲିଥିବା ଦୋକାନୀମାନଙ୍କୁ ରୁଷଭାଷାରେ ସେମାନଙ୍କର ପରିଚୟପତ୍ର ଲେଖି ଦୋକାନରେ ଝୁଲାଇବାପାଇଁ ବାଧ୍ୟ କରାଯାଇଥିଲା । ତେଣୁ ବିଭିନ୍ନ ଜାତିର ଲୋକେ ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ଶାସନକୁ ଘୃଣାଚକ୍ଷୁରେ ଦେଖୁଥିଲେ ଏବଂ ତାହାର ଅବସାନ ଚାହୁଁଥିଲେ ।

ଏହିସବୁ କାରଣରୁ ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ରାଜତ୍ୱକାଳକୁ ଆତଙ୍କ ଓ ପ୍ରତିକ୍ରିୟାଶୀଳ ଯୁଗ ବୋଲି ଅଭିହିତ କରାଯାଉଥିଲେ ମଧ୍ୟ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ ତାଙ୍କ ରାଜତ୍ୱକାଳରେ ରୁଷିଆରେ ଶିଳ୍ପବିପ୍ଳବ ଆରମ୍ଭ ହୋଇଥିଲା । ଉଭୟ ଉଦ୍ୟୋଗିକ ଏବଂ ଅର୍ଥନୈତିକ ବିକାଶ ଘଟିଥିଲା । ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ମନ୍ତ୍ରୀ କାଉଣ୍ଟ ଓ୍ୱିଟିଙ୍କ ଉଦ୍ୟମ ଫଳରେ ରୁଷିଆରେ ଶିଳ୍ପୋନ୍ନତି ହୋଇପାରିଥିଲା । ତାଙ୍କ ମତରେ ଇଉରୋପ ମହାଦେଶର ବୃହତ୍ତମ ଏବଂ ଅତ୍ୟଧିକ ଜନବହୁଳ ଦେଶ, ରୁଷିଆ ଆତ୍ମନିର୍ଭରଶୀଳ ହେବା ଉଚିତ ଏବଂ ଯେ ପର୍ଯ୍ୟନ୍ତ ରୁଷିଆ ମୁଖ୍ୟତଃ ଏକ କୃଷିପ୍ରଧାନ ଦେଶ

ହୋଇ ରହିଥିବ ଏବଂ ଶିଳ୍ପଜାତ ଦ୍ରବ୍ୟପାଇଁ ଶିଳ୍ପସମୃଦ୍ଧ ଦେଶମାନଙ୍କ ଉପରେ ନିର୍ଭର କରୁଥିବ, ସେ ପର୍ଯ୍ୟନ୍ତ ତାକୁ ସେହି ଦେଶମାନଙ୍କରେ କରଦରାଜ୍ୟରୂପେ ରହିବାକୁ ପଡ଼ିବ । କଳକାରଖାନାମାନଙ୍କରେ ବିଭିନ୍ନ ସାମଗ୍ରୀ ପ୍ରସ୍ତୁତ କରିବା ପାଇଁ ଯେତେ ପରିମାଣରେ କଞ୍ଚାମାଲ ଏବଂ ଶ୍ରମ ଦରକାର ତାହା ଯୋଗାଇଦେବାକୁ ରୁଷିଆର ଯଥେଷ୍ଟ ସମ୍ବଳ ରହିଛି । ଯଦି ଶିଳ୍ପବିକାଶ ଘଟେ, ତାହାହେଲେ କୃଷିକ୍ଷେତ୍ରରୁ ପ୍ରୟୋଜନାତିରିକ୍ତ ଶ୍ରମିକମାନଙ୍କୁ ଶିଳ୍ପକ୍ଷେତ୍ରକୁ ଅଣାଯାଇପାରିବ ଏବଂ ତାହା ଫଳରେ କୃଷିସମସ୍ୟା କେତେକ ପରିମାଣରେ ଲାଘବ ହୋଇଯିବ । ଏହିସବୁ ଉଦ୍ୟୋଗିକ ଏବଂ ଅର୍ଥନୈତିକ ପରିବର୍ତ୍ତନ ଆଣିବା ପାଇଁ କାଉଣ୍ଟ ଓ୍ୱିଟି ରକ୍ଷଣକାରୀ ବାଣିଜ୍ୟଶୁଳ୍କ (Protective tariff) ଉପରେ ପୂର୍ଣ୍ଣ ଆସ୍ଥା ରଖିଥିଲେ । ତେଣୁ ସେ ସ୍ୱଦେଶୀ ଶିଳ୍ପର ବିକାଶ ପାଇଁ ବାଣିଜ୍ୟ ଶୁଳ୍କ ବୃଦ୍ଧି କରି ବ୍ୟାପକଭାବରେ ତାକୁ ଲାଗୁକରିବାକୁ ପରାମର୍ଶ ଦେଇଥିଲେ । କାଉଣ୍ଟ ଓ୍ୱିଟି ହୃଦୟଙ୍ଗମ କରିପାରିଥିଲେ ଯେ ଜାତୀୟ ଶିଳ୍ପ-ବିକାଶକୁ ତ୍ୱରାନ୍ୱିତ କରିବାକୁ ହେଲେ ବିଭିନ୍ନ ଶିଳ୍ପରେ ଅଧିକ ପରିମାଣରେ ପୁଞ୍ଜି ଖଟାଇବାକୁ ପଡ଼ିବ; କିନ୍ତୁ ଏହି ଆବଶ୍ୟକତା ପୂରଣ କରିବାକୁ ରୁଷିଆର ସାମର୍ଥ୍ୟ ନଥିବାରୁ ସେ ବିଦେଶୀ ପୁଞ୍ଜିପତିମାନଙ୍କୁ ରୁଷିଆର କଳକାରଖାନା ଏବଂ ଖଣିଗୁଡ଼ିକରେ ପୁଞ୍ଜି ଖଟାଇବାପାଇଁ ଆହ୍ୱାନ ଦେଇଥିଲେ । ସେ ସେମାନଙ୍କୁ ପରିଷ୍କାର ଜଣାଇଦେଇଥିଲେ ଯେ ଶିଳ୍ପରକ୍ଷଣକାରୀ ବ୍ୟବସ୍ଥାଯୋଗୁ ସେମାନେ କୌଣସି ଅସୁବିଧା ଭୋଗକରିବେ ନାହିଁ ଏବଂ ରୁଷିଆ ବଜାରର ସବୁ ସୁବିଧା ସେମାନଙ୍କୁ ମିଳିବ । ତା'ଛଡ଼ା ସେମାନେ ପୁଞ୍ଜି ଖଟାଇଥିବା କଳକାରଖାନାରେ ପ୍ରସ୍ତୁତ-ସାମଗ୍ରୀ ରୁଷ ସରକାର ଅଧିକ ପରିମାଣରେ କିଣିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ସେ ଏସବୁ ପ୍ରକାଶ କରିବାରୁ ରୁଷିଆରେ ବିଦେଶୀ ପୁଞ୍ଜି ବହୁପରିମାଣରେ ଅଜାଡ଼ି ହୋଇଯାଇଥିଲା । ଫଳରେ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଶିଳ୍ପୋତ୍ପାଦନ କ୍ଷେତ୍ରରେ ରୁଷିଆର ଦ୍ରୁତ ଅଗ୍ରଗତି ଲକ୍ଷ୍ୟ କରାଯାଇଥିଲା । ଯୋଗାଯୋଗ ପଥର ବିଶେଷ ଅଭାବଯୋଗୁ ରୁଷିଆରେ ଶିଳ୍ପବିକାଶ ବାଧାପ୍ରାପ୍ତ ହେବାର ସମ୍ଭାବନା ଦେଖାଦେଇଥିଲା । ତେଣୁ ଏହି ଅଭାବ ପୂରଣ କରିବା ଉଦ୍ଦେଶ୍ୟରେ ରୁଷ ସରକାର ବିସ୍ତୀର୍ଣ୍ଣ ରେଳପଥ ନିର୍ମାଣ କରିବାକୁ ସଂକଳ୍ପ କରିଥିଲେ । ଏହି ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା ଉଦ୍ଦେଶ୍ୟରେ ରୁଷ ସରକାର ପଶ୍ଚିମ ଇଉରୋପରୁ ବିଶେଷତଃ ଫ୍ରାନ୍ସରୁ ଋଣ ସଂଗ୍ରହ କରିଥିଲେ । କାଉଣ୍ଟ ଓ୍ୱିଟି ମନ୍ତ୍ରିତ୍ୱ ଗ୍ରହଣର କେତେବର୍ଷ ପୂର୍ବରୁ ରୁଷ ସରକାର ପ୍ରତିବର୍ଷ ୪୦୦ ମାଇଲରୁ କମ୍ ରେଳପଥ ନିର୍ମାଣ କରୁଥିଲେ; କିନ୍ତୁ ସେ ମନ୍ତ୍ରିତ୍ୱ ଗ୍ରହଣ କଲାଦିନରୁ ପ୍ରତିବର୍ଷ ପ୍ରାୟ ୧୪୦୦ ମାଇଲ ରେଳପଥ ନିର୍ମାଣ କରାଗଲା । ଏହି ରେଳପଥ ମଧ୍ୟରେ ଟ୍ରାନ୍ସ ସାଇବେରୀୟ ରେଳପଥ ନିର୍ମାଣ ଏକ ବିରାଟ ଯୋଜନା ଏବଂ ଏହାର ନିର୍ମାଣ କାର୍ଯ୍ୟ ଶେଷ ହେଲେ ପ୍ରଶାନ୍ତ ମହାସାଗର ସହିତ ଇଉରୋପକୁ ସଂଯୋଗ କରାଯାଇପାରିବ ଏବଂ ପୂର୍ବାଞ୍ଚଳ ରାଷ୍ଟ୍ରମାନଙ୍କୁ ବିଭିନ୍ନ ସାମଗ୍ରୀ ନେଉଥିବା ସମୟ କମିଯିବ ଓ ପରିବହନ ଖର୍ଚ୍ଚ ପ୍ରାୟ ଅଧାକୁ ଖସିଆସିବ ।

ଅର୍ଥନୈତିକ କ୍ଷେତ୍ରରେ ଏହି ବିରାଟ ପରିବର୍ତ୍ତନ ଯୋଗୁ ରୁଷସାମ୍ରାଜ୍ୟରେ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିବାର ସମ୍ଭାବନା ଦେଖାଦେଇଥିଲା । ଆଧୁନିକ ଶିଳ୍ପପ୍ରତିଷ୍ଠା କରାଯିବା ସଙ୍ଗେ ସଙ୍ଗେ ଶ୍ରମିକଶ୍ରେଣୀ ଏବଂ ଶ୍ରମିକ ସମସ୍ୟାର ଆବିର୍ଭାବ ହୋଇଥିଲା । ତା'ଛଡ଼ା ସହରଗୁଡ଼ିକର ଲୋକସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବାରେ ଲାଗିଲା । ସେଥିମଧ୍ୟରୁ ଦୁଇଟି ସହର—ମସ୍କୋ ଓ ସେଣ୍ଟ ପିଟର୍ସବର୍ଗର ଲୋକସଂଖ୍ୟା ବିଶେଷ ବୃଦ୍ଧି ପାଇଥିଲା ଏବଂ ପ୍ରତ୍ୟେକଟିରେ ଏକ ନିୟୁତରୁ ଅଧିକ ସଂଖ୍ୟକ ଲୋକ ବାସକରୁଥିଲେ । ଶିଳ୍ପାଞ୍ଚଳ ସହରମାନଙ୍କରେ ସମାଜବାଦ ଦ୍ରୁତଗତିରେ ପ୍ରସାର ଲାଭକରିଥିଲା । ଫଳରେ ଶ୍ରମିକମାନଙ୍କ ମଧ୍ୟରେ ଅଶାନ୍ତି ଦେଖାଦେଇଥିଲା । ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ଫଳରେ ଉଚ୍ଚ ମଧ୍ୟବିତ୍ତଶ୍ରେଣୀର ଲୋକେ ରାଜନୈତିକ କ୍ଷମତାରୁ ବଞ୍ଚିତ ହେବାକୁ ଚାହୁଁନଥିଲେ କି ସ୍ୱେଚ୍ଛାଚାରୀ, ସଂକୀର୍ଣ୍ଣ ଓ ଅନୁଦାର ଶାସନ ପ୍ରଣାଳୀକୁ ସମର୍ଥନ କରିନଥିଲେ । ଶିଳ୍ପବିକାଶ ସଙ୍ଗେ ସଙ୍ଗେ ଶ୍ରମିକଶ୍ରେଣୀ ଏବଂ ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି ହେଲା ଏବଂ ଏହି ଦୁଇ ଶ୍ରେଣୀ ସୃଷ୍ଟି ହେବା ଫଳରେ ରୁଷିଆର ରାଜନୈତିକ ପରିସ୍ଥିତି ଅତି ଜଟିଳ ଆକାର ଧାରଣ କରିଥିଲା । ବହୁଦିନରୁ ଶାସନ କରିଆସୁଥିବା ଶାସକଗୋଷ୍ଠୀ କାଉଣ୍ଟ ଓ୍ୱିଟିଙ୍କ ଶିଳ୍ପନୀତିର ବିରୁଦ୍ଧାଚରଣ କରିଥିଲେ; କାରଣ ଏହି ଅର୍ଥନୈତିକ ପରିବର୍ତ୍ତନ ଫଳରେ ସେମାନଙ୍କର ବିଶେଷ ଅଧିକାରଗୁଡ଼ିକ ଲୋପ ପାଇଯିବାର ସମ୍ଭାବନା ଦେଖାଯାଇଥିଲା । ସେମାନେ ନୂତନ ବ୍ୟବସ୍ଥା ସହିତ ନିଜକୁ ଖାପଖୁଆଇ ପାରିନଥିଲେ । ସୁତରାଂ ରୁଷିଆରେ ଅଶାନ୍ତିର ବହ୍ନି ଜଳିବାକୁ ଲାଗିଲା ।

ତୃତୀୟ ଆଲେକ୍‌ଜାଣ୍ଡାର ରୁଷିଆର ପୁନର୍ଗଠନ ପାଇଁ ଆଗ୍ରହ ପ୍ରକାଶ କରିଥିଲେ; କିନ୍ତୁ ରୁଷିଆରେ ପୁଞ୍ଜିର ଅଭାବ ଯୋଗୁ ସେ ଏ କାର୍ଯ୍ୟରେ ବେଶି ଅଗ୍ରସର ହୋଇ ପାରିନଥିଲେ । ଫ୍ରାନ୍‌ସର ସାଧାରଣତନ୍ତ୍ରବାଦୀମାନଙ୍କୁ ସେ ଘୃଣା କରୁଥିଲେ ମଧ୍ୟ ପୁଞ୍ଜିର ଅଭାବ ପୂରଣକରିବା ଉଦ୍ଦେଶ୍ୟରେ ଫ୍ରାନ୍‌ସ ସହିତ ଦ୍ୱିଶକ୍ତି ମୈତ୍ରୀ (Dual Alliance) କରିବାକୁ ବାଧ୍ୟ ହୋଇଥିଲେ । ଏହି ଦ୍ୱିଶକ୍ତି ମୈତ୍ରୀ ଫଳରେ ରୁଷିଆ ଫ୍ରାନ୍‌ସଠାରୁ ପ୍ରଚୁର ଆର୍ଥିକ ସାହାଯ୍ୟ ପାଇଥିଲା ଏବଂ ପୁନର୍ଗଠନ ଦିଗରେ ଆବଶ୍ୟକ ପଦକ୍ଷେପ ନେଇଥିଲା । ତୃତୀୟ ଆଲେକ୍‌ଜାଣ୍ଡାର ତେରବର୍ଷ ରାଜତ୍ୱ କଲା ପରେ ୧୮୯୪ ମସିହାରେ ଇହଲୀଳା ସାଙ୍ଗ କରିଥିଲେ ।

## ଦ୍ୱିତୀୟ ନିକୋଲାସ୍‌ଙ୍କ ରାଜତ୍ୱ ( ୧୮୯୪-୧୯୧୭ )
## ( The Reign of Nicholas II : 1894-1917 )

ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱିତୀୟ ନିକୋଲାସ୍ ୨୬ ବର୍ଷ ବୟସରେ ରୁଷିଆର ରାଜଗାଦିରେ ଅଧିଷ୍ଠିତ ହେଲେ । ସାଧାରଣତଃ ଆଶା କରାଯାଇଥିଲା ଯେ ତାଙ୍କ ରାଜତ୍ୱକାଳରେ ମୃଦୁ ଶାସନ-ପଦ୍ଧତି ପ୍ରବର୍ତ୍ତିତ ହେବ; କିନ୍ତୁ ତାହା କରାଯାଇ

ନଥିଲା । ତାଙ୍କ ମନ୍ତ୍ରଣା ସଭାର ମଧ୍ୟ କୌଣସି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରାଯାଇ ନଥିଲା । ଯେଉଁ ପୋବେଡନଷ୍ଟେଭଙ୍କୁ ନିରଙ୍କୁଶ ଶାସନର ପ୍ରତିମୂର୍ତ୍ତି ବୋଲି କୁହାଯାଉଥିଲା, ସେ ଜାର୍ ଦ୍ୱିତୀୟ ନିକୋଲାସ୍‌ଙ୍କର ମନ୍ତ୍ରଣା ସଭାରେ ଜଣେ ଶକ୍ତିଶାଳୀ ସଦସ୍ୟ ଓ ତାଙ୍କ ନୀତିର ଜଣେ ବିଶିଷ୍ଟ ସମର୍ଥକଭାବେ ରହିଥିଲେ । ଯୁବକ ନିକୋଲାସ୍ ତାଙ୍କ ପ୍ରଥମ ୧୦ ବର୍ଷ ରାଜତ୍ୱକାଳରେ ପିତାଙ୍କ ନୀତିଗୁଡ଼ିକ ଅନୁସରଣ କରିଥିଲେ । ସେ ରାଜତ୍ୱର ଆରମ୍ଭରେ ଘୋଷଣା କରିଥିଲେ, "ମୁଁ ମୋର ସମସ୍ତ ଉଦ୍ୟମ ଜାତିର ସମୃଦ୍ଧି ଉଦ୍ଦେଶ୍ୟରେ ଉତ୍ସର୍ଗକରି ମୋର ମୃତ ପିତା ଯେପରି ଦୃଢ଼ ଏବଂ ଅଟଳଭାବରେ ନିରଙ୍କୁଶ ଶାସନ ନୀତିଗୁଡ଼ିକ ରକ୍ଷାକରିଥିଲେ, ମୁଁ ସେହିପରି ଭାବରେ ସେହି ନୀତିଗୁଡ଼ିକ ନିଶ୍ଚୟ ରକ୍ଷାକରିବି ।" ("Devoting all my efforts to the prosperity of the nation" announced Nicholas II at the beginning of his reign, "I will preserve the principles of Autocracy as firmly and unswervingly as my late father.") ନିକୋଲାସ୍ ଏହି ଲକ୍ଷ୍ୟ ନେଇ ବିପ୍ଳବୀମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ଜେମେଷ୍ଟଭୋମାନଙ୍କ ମଧ୍ୟରୁ ମାତ୍ର ଗୋଟିଏ ଜେମେଷ୍ଟଭୋ ପ୍ରତିନିଧିମୂଳକ ଅନୁଷ୍ଠାନମାନ ମଞ୍ଜୁର କରିବାପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇଥିଲା । ତାହାର ଉତ୍ତରରେ ସରକାରଙ୍କ ତରଫରୁ କୁହାଯାଇଥିଲା ଏହା ଏକ ନିର୍ବୋଧ ସ୍ୱପ୍ନ । ତା'ଛଡ଼ା ସେହି ଜେମେଷ୍ଟଭୋକୁ ତୀବ୍ର ଭର୍ତ୍ସନା ମଧ୍ୟ କରାଯାଇଥିଲା ।

ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ରୁଷ ସରକାର ପୂର୍ବାପେକ୍ଷା ଅଧିକ ଅତ୍ୟାଚାରୀ ହୋଇଥିଲେ । ରୁଷିଆର ଶାସନ ଆଇନର ଶାସନ ହେବା ପରିବର୍ତ୍ତେ ସ୍ୱେଚ୍ଛାଚାରୀ ଶାସନରେ ପରିଣତ ହୋଇଥିଲା । ଦୁର୍ନୀତିଗ୍ରସ୍ତ ଅମଲାତନ୍ତ୍ର ଏବଂ ନିର୍ଦ୍ଦୟ ଓ ସନ୍ଦିଗ୍ଧ ପୁଲିସ ଏହି ସ୍ୱେଚ୍ଛାଚାରୀ ଶାସନର ହାତଆର ଭଳି କାର୍ଯ୍ୟ କରୁଥିଲେ । ରାଜଦରବାର ଦୁର୍ନୀତି ଓ ଷଡ଼ଯନ୍ତ୍ରରେ ଲିପ୍ତ ଥିଲା । ଖାମଖିଆଲି ଭାବରେ ମନ୍ତ୍ରୀମାନେ ନିଯୁକ୍ତ ହେଉଥିଲେ ଏବଂ ବରଖାସ୍ତ ମଧ୍ୟ ହେଉଥିଲେ । ଉଦାରପନ୍ଥୀମାନେ ସାମ୍ବିଧାନିକ ସଂସ୍କାର ପ୍ରବର୍ତ୍ତନର ଆଶା ନ ଦେଖି ବିଶେଷ ହତୋତ୍ସାହ ହୋଇପଡ଼ିଥିଲେ । ଗାଁ ଗଣ୍ଡାର କୃଷକ ଓ ସହରର ମଜଦୁରମାନେ ଧର୍ମଘଟ, ଦଙ୍ଗାହାଙ୍ଗାମ ଏବଂ ବିଶୃଙ୍ଖଳ ଆନ୍ଦୋଳନ ମାଧ୍ୟମରେ ସେମାନଙ୍କର ଅସନ୍ତୋଷ ପ୍ରକାଶ କରିଥିଲେ । ସୋସିଆଲ ଡେମକ୍ରାଟ (ସାମାଜିକ ଗଣତନ୍ତ୍ରବାଦୀ) ଓ ସୋସିଆଲ ରିଭଲ୍ୟୁସନାରୀ (ସାମାଜିକ ବିପ୍ଳବବାଦୀ ) ଦଳ ଦ୍ୱୟର ପ୍ରଚ୍ଛନ୍ନ ବୈପ୍ଳବିକ କାର୍ଯ୍ୟାବଳୀର ତୀବ୍ରତା ବୃଦ୍ଧି ପାଇବାକୁ ଲାଗିଲା । ରୁଷିଆର ଜଣେ ଲବ୍ଧପ୍ରତିଷ୍ଠ ପ୍ରଫେସର ଭିନୋଗ୍ରାଡଫ୍ ଇଂଲଣ୍ଡରେ ୧୮୯୨ ମସିହାରେ ଦ୍ୱିତୀୟ ନିକୋଲାସଙ୍କ ଶାସନ ବିଷୟରେ ମତ ବ୍ୟକ୍ତ କରିଥିଲେ, "ଜଣେହେଲେ କେହି ଅନୁସନ୍ଧାନ, ଗିରଫ, କାରାବାସ ଏବଂ ସୁଦୂର ଅଞ୍ଚଳକୁ ଅପସାରଣରୁ ନିଜକୁ ସୁରକ୍ଷିତ ମନେ କରୁ

ନଥିଲେ । କର୍ତ୍ତୃପକ୍ଷଙ୍କ ସ୍ୱାର୍ଥ ରାଜନୈତିକ ତତ୍ତ୍ୱାବଧାନରୁ ଆରମ୍ଭକରି ସବୁପ୍ରକାର ବ୍ୟକ୍ତିଗତ ବ୍ୟାପାରରେ ହସ୍ତକ୍ଷେପ ଯାଏ ବୃଦ୍ଧି ପାଇଥିଲା ।...ଏହି ପ୍ରକାର ଆଇନଗତ ସଂରକ୍ଷଣ ଆମ୍ଭେମାନେ ରୁଷିଆରେ ଉପଭୋଗ କରୁଛୁ ।" ପୁଣି "ଏପରି ସରକାର ଆଇନ ଏବଂ ନ୍ୟାୟର ପ୍ରକୃତ ପୃଷ୍ଠପୋଷକ ନୁହନ୍ତି । ଆଇନକୁ ନ ମାନି ସରକାରୀ ନିର୍ଦ୍ଦେଶକୁ ମାନିବା-ପାଇଁ ରୁଷ ସରକାର ବାଧ୍ୟ କରୁଥିଲେ ଏବଂ ଆଇନ ପ୍ରତି ସରକାରଙ୍କ ଅବମାନନା ସବୁ କ୍ଷେତ୍ରରେ ସୁସ୍ପଷ୍ଟ ହୋଇଯାଇଥିଲା ।"

ଏ ଭଳି ବ୍ୟବସ୍ଥା ଦ୍ୱାରା ଲୋକମାନଙ୍କୁ ଭୟଭୀତ କରାଯାଇ ଚୁପ୍ କରିଦିଆଯାଇ ପାରେ; କିନ୍ତୁ ସେମାନଙ୍କୁ କଦାପି ସନ୍ତୁଷ୍ଟ କରାଯାଇପାରେନା । ବାସ୍ତବରେ ଅସନ୍ତୋଷ ଦିନକୁ ଦିନ ବୃଦ୍ଧିପାଇ ବିସ୍ଫୋରଣ ପାଇଁ ସୁଯୋଗ ଅପେକ୍ଷାରେ ଥିଲା । ବିସ୍ତୀର୍ଣ୍ଣ ରେଳପଥ ନିର୍ମାଣ ଏବଂ ଉଭୟ ସୈନ୍ୟବାହିନୀ ଓ ନୌବାହିନୀର ଭରଣ ପୋଷଣ ଯୋଗୁ ସରକାରୀ ଋଣ ଏବଂ ବ୍ୟୟ ଅତିମାତ୍ରାରେ ବୃଦ୍ଧି ପାଇଲା । ଅର୍ଥନୈତିକ ସମସ୍ୟାକୁ ସମ୍ଭାଳିବା ଉଦ୍ଦେଶ୍ୟରେ ଲୋକମାନଙ୍କ ଉପରେ ଅତ୍ୟଧିକ କର ବସାଯାଇଥିଲା । ଏହି କରଭାର ମୁଖ୍ୟତଃ ଦରିଦ୍ର ଲୋକମାନଙ୍କ ଉପରେ ପଡ଼ିଥିଲା ।

ଏହି କରଭାର ଯୋଗୁ କୃଷକଶ୍ରେଣୀ ଅତିଶୟ ଦୁଃଖ ଦୁର୍ଦ୍ଦଶା ଭୋଗିଲେ । ଅଧିକାଂଶ କ୍ଷେତ୍ରରେ କୃଷକମାନେ ଯେଉଁ ଗୋ-ମହିଷ-ଘୋଟକାଦି ପଶୁମାନଙ୍କୁ ଗୃହରେ ପାଳିଥିଲେ, ସେମାନଙ୍କର ସଂଖ୍ୟା ଦିନକୁ ଦିନ କମିଯାଇଥିଲା । ରୁଷିଆର ଶସ୍ୟାଗାରମାନଙ୍କ ମଧ୍ୟରେ ଗଣ୍ୟ ହେଉଥିବା ସାମରା ପ୍ରଦେଶର କେତେକ ଜିଲ୍ଲାରେ ଏକ ତୃତୀୟାଂଶ କିମ୍ବା ଅର୍ଦ୍ଧେକ ଲୋକ ନିଜର ଗୁଜୁରାଣ ମେଣ୍ଟାଇ ନ ପାରି ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ । କର ସଂଗ୍ରହକାରୀମାନେ ଏହିପରି ଲୋକମାନଙ୍କଠାରୁ କର ଆଦାୟ କରିବାର ଆଶା ତ୍ୟାଗକରି ଯେଉଁମାନଙ୍କ ନିକଟରେ କିଛି ଧନ ଥିଲା; ସେମାନଙ୍କ ଉପରେ ଅଧିକ ଚାପପକାଇ କର ଆଦାୟ କରୁଥିଲେ । ଏକଥା ବିନା ଦ୍ୱିଧାରେ କୁହାଯାଇ ପାରେଯେ, ରୁଷ କୃଷକମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା କର ଦେବାପାଇଁ ଯଥେଷ୍ଟ ଉପାର୍ଜ୍ଜନ କରିବା । ଜଣେ ରୁଷ ମାଜିଷ୍ଟ୍ରେଟଙ୍କ ମତରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରତ୍ୟେକ କୃଷକକୁ ସବୁପ୍ରକାର ଅପମାନ ଭୋଗିବାକୁ ପଡ଼ୁଥିଲା ।

ତା'ଛଡ଼ା କୌଣସି ବୃତ୍ତି ଅବଲମ୍ବନକାରୀ ଶିକ୍ଷିତ ବ୍ୟକ୍ତିର ଅବସ୍ଥା ଅନୁଧ୍ୟାନକଲେ ସେ କି ଦୁର୍ଦ୍ଦଶା ଭୋଗକରୁଥିଲା ତାହା ସୁସ୍ପଷ୍ଟ ହୋଇଯିବ । ଯଦି ସେ ଜଣେ ବିଶ୍ୱବିଦ୍ୟାଳୟର ପ୍ରଫେସର ହୋଇଥିବେ, ପୁଲିସ ତାଙ୍କର ଗତିବିଧି ଲକ୍ଷ୍ୟ କରୁଥିବ ଏବଂ ଯେକୌଣସି ମୁହୂର୍ତ୍ତରେ ଚାକିରିରୁ ତାଙ୍କର ଅପସାରଣ ହେବାର ସମ୍ଭାବନା ଥିଲା । ପ୍ରଫେସର ମିଲ୍ୟୁକଭଙ୍କ ପରି ଜଣେ ଲବ୍ଧପ୍ରତିଷ୍ଠ ଐତିହାସିକଙ୍କୁ ଅନ୍ୟ କାରଣ ନଥାଇ କେବଳ ତାଙ୍କର ଅନିଷ୍ଟକର ଲକ୍ଷ୍ୟପାଇଁ ଚାକିରିରୁ ବହିଷ୍କାର କରିଦିଆଯାଇଥିଲା । ଯଦି ଜଣେ କୌଣସି ସମ୍ବାଦପତ୍ରର

ସମ୍ପାଦକ ଆଇ କର୍ତ୍ତୃପକ୍ଷଙ୍କ ପ୍ରତି ଡାସୋଚକ ମନୋଭାବ ପୋଷଣ କରୁନଥିବେ, ତାହାହେଲେ ତାଙ୍କର ସ୍ଥିତି ଅନିଶ୍ଚିତ ହୋଇପଡ଼ୁଥିଲା । ଯେକୌଣସି ସ୍ୱାଧୀନଚେତା ବୁଦ୍ଧିଜୀବୀର ଏପରି ପରିସ୍ଥିତିରେ ଶ୍ୱାସରୋଧ ହୋଇଯିବା ସ୍ୱାଭାବିକ । ଯାଞ୍ଚ ବ୍ୟବସ୍ଥା ଦିନକୁ ଦିନ ଅଧିକ କଠୋର ହୋଇଥିଲା । ଗ୍ରୀନଙ୍କର 'ଇଂଲଣ୍ଡ ଇତିହାସ' (History of England) ଏବଂ ବ୍ରାଇସଙ୍କର 'ଆମେରିକୀୟ ରାଜ୍ୟଗୋଷ୍ଠୀ' (American Common Wealth) ଏହି ଦୁଇଟି ପୁସ୍ତକକୁ ଯାଞ୍ଚ କରାଯାଇ ଅବୈଧ ଘୋଷଣା କରାଯାଇଥିଲା । କଠୋର ଯାଞ୍ଚ ବ୍ୟବସ୍ଥା ସତ୍ତ୍ୱେ ରୁଷିଆରେ ପାଶ୍ଚାତ୍ୟପ୍ରଭାବ ରୋକିବା ଦିଗରେ ସରକାର ବହୁ ବାଧା-ବିଘ୍ନର ସମ୍ମୁଖୀନ ହୋଇଥିଲେ । ସରକାର ପ୍ରତିହିଂସାପରାୟଣ ହୋଇ ସନ୍ଦେହରେ ଅନେକ ଲୋକଙ୍କୁ ଗିରଫ କରିଥିଲେ । ଛାତ୍ରମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିବାପାଇଁ ପୁଲିସ୍‌କୁ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦିଆଯାଇଥିଲା; କାରଣ ଶିକ୍ଷିତ ଉତ୍ସାହୀ ଯୁବକମାନେ ଅର୍ଥହୀନ ନିରଙ୍କୁଶ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ସେମାନଙ୍କ ମଧ୍ୟରୁ ବହୁ ଯୁବକ ଅଦୃଶ୍ୟ ହୋଇଯାଇଥିଲେ ଏବଂ ଗୋଟିଏ ବର୍ଷରେ ବିଶ୍ୱବିଦ୍ୟାଳୟଗୁଡ଼ିକରୁ ଅଦୃଶ୍ୟ ହୋଇଥିବା ଯୁବକମାନଙ୍କ ମଧ୍ୟରୁ ଏକ ପଞ୍ଚମାଂଶ କେବଳ ମସ୍କୋ ବିଦ୍ୟାଳୟର ଛାତ୍ର ଥିଲେ । ସମ୍ଭବତଃ ସେମାନଙ୍କୁ ସାଇବେରିଆକୁ କିମ୍ବା ଇଉରୋପରେ ଥିବା ଜେଲଖାନାକୁ ପଠାଇ ଦିଆଯାଇଥିଲା ।

ସମଗ୍ର ରୁଷ ସାମ୍ରାଜ୍ୟରେ ରୁଷୀକରଣ ନୀତି (The Policy of Russification) ଅବ୍ୟାହତ ରହିଥିଲା । ବିଶେଷତଃ ଏହି ନୀତି ଫିନଲ୍ୟାଣ୍ଡରେ କଡ଼ାକଡ଼ି ଭାବରେ କାର୍ଯ୍ୟରେ ପରିଣତ କରାଯାଇଥିଲା । ବହୁପୂର୍ବରୁ ଏକ ଉଦାରନୈତିକ ଚୁକ୍ତିର ସର୍ତ୍ତ ଅନୁସାରେ ରୁଷିଆ ଫିନ୍‌ଲ୍ୟାଣ୍ଡ ଲାଭ କରିଥିଲା; କିନ୍ତୁ ରୁଷିଆ ସହିତ ଫିନ୍‌ଲ୍ୟାଣ୍ଡ ସାମିଲ୍ ହୋଇନଥିଲା । ଫିନଲ୍ୟାଣ୍ଡ ପୂର୍ବପରି ଗ୍ରାଣ୍ଡଡଚି ରୂପେ ରହିଲା ଏବଂ ରୁଷିଆର ଜାର୍ କେବଳ ଏହାର ଗ୍ରାଣ୍ଡଡ୍ୟୁକ୍ ହୋଇରହିଲେ । ଏହାର ନିଜର ପାର୍ଲାମେଣ୍ଟ, ମୌଳିକଆଇନ ବା ସମ୍ବିଧାନ ଥିଲା । ଜାର୍ ସେ ସବୁ ପ୍ରତି ସମ୍ମାନ ଦେଖାଇବେ ବୋଲି ଶପଥ ନେଇଥିଲେ । ଫିନ୍‌ଲ୍ୟାଣ୍ଡର ମୌଳିକ ଆଇନମାନ ଉଭୟ ଡାୟେଟ ଏବଂ ଗ୍ରାଣ୍ଡ-ଡ୍ୟୁକ୍‌ଙ୍କ ବିନା ଅନୁମୋଦନରେ ପରିବର୍ତ୍ତନ, ବ୍ୟାଖ୍ୟା ବା ରଦ୍ଦ କରାଯାଇପାରିବ ନାହିଁ । ଫିନ୍‌ଲ୍ୟାଣ୍ଡ ଏକ ସାମ୍ବିଧାନିକ ରାଷ୍ଟ୍ର ହିସାବରେ ନିଜର ଶାସନ ନିଜେ ଚଳାଉଥିଲା ଏବଂ ଜାର୍‌ଙ୍କ ଜରିଆରେ ରୁଷିଆ ସହିତ କେବଳ ସଂପୃକ୍ତ ଥିଲା । ଏହାର ନିଜର ସୈନ୍ୟବାହିନୀ, ମୁଦ୍ରା ଏବଂ ଡାକ ବ୍ୟବସ୍ଥା ଥିଲା । ଉଦାରନୈତିକ ଶାସନ ଫଳରେ ଫିନ୍‌ଲ୍ୟାଣ୍ଡ ବିଭିନ୍ନ କ୍ଷେତ୍ରରେ ଉନ୍ନତି କରିଥିଲା ଏବଂ ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ଏହାର ଲୋକସଂଖ୍ୟା ପ୍ରାୟ ଏକ ନିୟୁତରୁ ତିନି ନିୟୁତକୁ ବୃଦ୍ଧି ପାଇଥିଲା । ସ୍କ୍ରାଇନ ନାମକ ରୁଷ ଐତିହାସିକଙ୍କ ମତରେ ଫିନ୍‌ଲ୍ୟାଣ୍ଡ ଭୌତିକ ସଭ୍ୟତାର ସବୁପ୍ରକାର ମୌଳିକ ଉପାଦାନରେ ରୁଷିଆଠାରୁ ଅନ୍ତତଃ ତିରିଶ ବର୍ଷ ଆଗରେ ଥିଲା । ଫିନ୍‌ଲ୍ୟାଣ୍ଡ ନିଜର ସମ୍ବିଧାନ ଏବଂ

ସ୍ୱତନ୍ତ୍ର ସଙ୍ଗଠନ ଉପଭୋଗ କରୁଥିବା ଦେଖି, ରୁଷିଆର ଶାସନଦାୟିତ୍ୱରେ ଥିବା ଲୋକେ ନିଜକୁ ଅପମାନିତ ମନେକରୁଥିଲେ । ସେମାନେ ରୁଷିଆକୁ ଏକତ୍ରୀକରଣ ଏବଂ ରୁଷୀକରଣ କରିବା ଉଦ୍ଦେଶ୍ୟରେ ଜାର୍‌ଙ୍କ ଶାସନାଧୀନ ଅଞ୍ଚଳମାନଙ୍କରେ ଥିବା ସମସ୍ତ ବୈଶିଷ୍ଟ୍ୟ ଅପସାରଣ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ତୃତୀୟ ଆଲେକ୍‌ଜାଣ୍ଡାରଙ୍କ ରାଜତ୍ୱ କାଳରେ ଫିନ୍‌ମାନଙ୍କର ସ୍ୱାଧୀନତା ଉପରେ ପ୍ରଥମ ଆକ୍ରମଣ ଆରମ୍ଭ ହୋଇଥିଲା । ଦ୍ୱିତୀୟ ନିକୋଲାସଙ୍କ ରାଜତ୍ୱକାଳରେ ଏହି ଆକ୍ରମଣକୁ ବ୍ୟାପକ କରାଯାଇଥିଲା ଏବଂ ସେ ୧୮୯୯ ମସିହା ଫେବୃୟାରୀ ୧୫ ତାରିଖରେ ଦ୍ୱିତୀୟ ନିକୋଲାସ ଫିନ୍‌ଲ୍ୟାଣ୍ଡର ସମ୍ବିଧାନ ରଦ୍ଦ କରିଦିଆଗଲା ବୋଲି ଏକ ଇସ୍ତାହାର ଜାରି କରିଥିଲେ । ତେଣୁ ସେହିଦିନଠାରୁ ରୁଷିଆ ଯେପରି ଶାସିତ ହେଉଥିଲା ଫିନ୍‌ଲ୍ୟାଣ୍ଡ ସେହିପରି ଶାସିତ ହେଲା । ଫିନ୍‌ଲ୍ୟାଣ୍ଡରେ ପ୍ରବର୍ତ୍ତିତ କରାଯାଇଥିବା ରୁଷୀକରଣ କାର୍ଯ୍ୟ ଅବ୍ୟାହତ ରହିଥିଲା । ଫିନ୍ ସୈନ୍ୟବାହିନୀକୁ ରୁଷ ସୈନ୍ୟବାହିନୀରେ ସାମିଲ କରିଦିଆଯାଇଥିଲା । ଫିନ୍‌ଲ୍ୟାଣ୍ଡର ଯେଉଁସବୁ ଚାକିରିରେ ଫିନ୍‌ମାନେ ନିଯୁକ୍ତ ହୋଇଥିଲେ, ସେ ସବୁ ଚାକିରିରେ ରୁଷ କର୍ମଚାରୀମାନଙ୍କୁ ନିଯୁକ୍ତ କରାଗଲା ଏବଂ ସେଠାକାର ସମ୍ବାଦପତ୍ରଗୁଡ଼ିକୁ ଦବେଇ ଦିଆଯାଇଥିଲା । ତା'ଛଡ଼ା ଫିନ୍ ଜାତୀୟତାକୁ ଜାଣିଶୁଣି ଧ୍ୱଂସ କରିଦିଆଯାଇଥିଲା । ଫିନ୍‌ମାନେ ରୁଷିଆର ଏସବୁ ଅତ୍ୟାଚାର ଯୋଗୁ କ୍ଷୁବ୍ଧ ହେଲେ ମଧ୍ୟ ସେମାନଙ୍କ ସଂଖ୍ୟା ମାତ୍ର ତିନି ନିୟୁତ ହୋଇଥିବାରୁ ସେମାନେ ରୁଷିଆର ଏକ ଶହ ତିରିଶ ନିୟୁତ ଲୋକ ଏବଂ ତାହାର ନିରଙ୍କୁଶ ଶାସକ ବିରୁଦ୍ଧରେ ବିଦ୍ରୋହ କରିବାକୁ ସାହସ କରିନଥିଲେ । ତେଣୁ ନିକଟ ଭବିଷ୍ୟତରେ ଏସବୁ ଅତ୍ୟାଚାରର ପ୍ରତିକାର ଆଶା ନ ଦେଖି ହତାଶ ହୋଇପଡ଼ୁଥିଲେ । ଯାହାହେଉ ରୁଷ-ଜାପାନୀ ଯୁଦ୍ଧ (୧୯୦୪-'୫)ରେ ରୁଷିଆର ସର୍ବନାଶୀ ପରାଜୟ ଫଳରେ ଫିନ୍‌ମାନଙ୍କ ଦୁଃଖର ସାମୟିକ ଉପଶମ ହୋଇଥିଲା ।

ଅନ୍ୟ ଦିଗରେ ପୁଲିସର ତତ୍ପରତା ଏବଂ ଅତ୍ୟାଚାର ସତ୍ତ୍ୱେ ବୈପ୍ଳବିକ କାର୍ଯ୍ୟ-କଳାପ ଚାଲୁ ରହିଥିଲା ଏବଂ ସନ୍ତ୍ରାସବାଦର ପୁନରାବୃତ୍ତି ହୋଇଥିଲା । ରୁଷିଆର ଆଭ୍ୟନ୍ତରୀଣ ମନ୍ତ୍ରୀ, ପ୍ଲେଭ୍ ଦେଶର ଏହି ଆଭ୍ୟନ୍ତରୀଣ ଅସନ୍ତୋଷର ଗତି ବଦଳାଇବା ପାଇଁ ଏକ ଛୋଟ ସଫଳ ଯୁଦ୍ଧ (A successful little war)ର ଆବଶ୍ୟକତା ରହିଛି ବୋଲି ମତବ୍ୟକ୍ତ କରିଥିଲେ । ରୁଷିଆ ଅବଶ୍ୟ ୧୯୦୪ ମସିହାରେ ଜାପାନ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲା । ଯୁଦ୍ଧର କୁପରିଚାଳନା ଓ ଅବ୍ୟବସ୍ଥା ଯୋଗୁ ରୁଷ ସରକାର ଏହି ଯୁଦ୍ଧକୁ ଆଦୌ ଜନପ୍ରିୟ କରିପାରି ନଥିଲେ । ରୁଷ ସାମରିକବାହିନୀର ଧାରାବାହିକ ପରାଜୟ ଓ ଧ୍ୱଂସ ସମ୍ବାଦ ରୁଷିଆର ରାଜଧାନୀରେ ପହଞ୍ଚିବା ଫଳରେ ଉଭୟ ଯୁଦ୍ଧ ଓ ଯୁଦ୍ଧ ପରିଚାଳନା କରୁଥିବା ରୁଷ ସରକାରଙ୍କ ବିରୁଦ୍ଧରେ ଅସନ୍ତୋଷ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ପୋର୍ଟଆର୍ଥର (Port Arther)ର ପତନ ସମ୍ବାଦ ପାଇବା ମାତ୍ରେ ଛାତ୍ରମାନେ ସାମରିକ ରାସ୍ତାରେ ପରେଡ଼ କରି 'ନିରଙ୍କୁଶ ଶାସନର ଅବସାନ ଘଟୁ' ଏବଂ

'ଯୁଦ୍ଧ ବନ୍ଦ ହେଉ' ବୋଲି ଚିତ୍କାର କରିଥିଲେ । ରୁଷ-ଜାପାନ ଯୁଦ୍ଧରେ ରୁଷିଆର ବିପର୍ଯ୍ୟୟ ଘଟିଥିବାରୁ ଜାର୍ ସରକାରଙ୍କ ବିରୁଦ୍ଧରେ ରୁଷିଆରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ପ୍ଲେଭିଙ୍କୁ ୧୯୦୪ ମସିହା ଜୁଲାଇ ମାସରେ ହତ୍ୟା କରାଗଲା । ୧୯୦୫ ମସିହା ଫେବୃଆରୀ ମାସରେ ଜାରିନାଙ୍କ ଭଗ୍ନୀଙ୍କର ସ୍ୱାମୀ ମସ୍କୋର ପୂର୍ବତନ ଗଭର୍ଣ୍ଣର ଜେନେରାଲ ଗ୍ରାଣ୍ଡଡ୍ୟୁକ ସାରଗିଅସଙ୍କୁ ମଧ୍ୟ ହତ୍ୟା କରାଯାଇଥିଲା ।

ଏହି ଦୁଇଜଣଙ୍କ ହତ୍ୟା ବ୍ୟାପାର ରୁଷ-ଜାପାନ ଯୁଦ୍ଧ ଘଟଣାବଳୀର ପରିପ୍ରେକ୍ଷୀରେ ବିଚାର କଲେ ଆମ୍ଭେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିବା ଯେ, ତାହା ରୁଷ ସରକାରଙ୍କ ପାଇଁ ଆସନ୍ନ ବିପଦର ଏକ ଚେତାବନୀ । ପ୍ଲେଭିଙ୍କୁ ହତ୍ୟାକଲା ପରେ ମିରସ୍କୀ ନାମକ ଏକ ଉଦାରମନା ବ୍ୟକ୍ତିଙ୍କୁ ଆଭ୍ୟନ୍ତରୀଣ ମନ୍ତ୍ରୀ ରୂପେ ନିଯୁକ୍ତ କରାଗଲା । ସେ ଇତସ୍ତତଃ ହୋଇ ଜେମଷ୍ଟଭୋଙ୍କୁ ୧୯୦୪ ମସିହାରେ ସମ୍ମିଳନୀ ବସାଇବା ପାଇଁ ଅନୁମତି ଦେଇଥିଲେ । ସେମାନେ ଅଧିକ ରାଜନୈତିକ ଓ ଧର୍ମ ସମ୍ବନ୍ଧୀୟ ସ୍ୱାଧୀନତା, ଆଇନଗତ ସମାନତା, ସ୍ୱୟଂତ୍ତ ଶାସନର କ୍ଷମତାବୃଦ୍ଧି ଏବଂ ସମ୍ବିଧାନସଂସ୍କାର ଦ୍ୱାରା ପ୍ରତିନିଧିରୂପୀ ସରକାର ପ୍ରତିଷ୍ଠା ଦାବୀ କରିଥିଲେ । ସେମାନେ ଦ୍ୱିତୀୟ ନିକୋଲାସଙ୍କଠାରୁ କେବଳ ସଂସ୍କାର କ୍ଷେତ୍ରରେ ଏକ ଅସ୍ପଷ୍ଟ ପ୍ରତିଶ୍ରୁତି ପାଇଥିଲେ । ମୋଟଉପରେ କହିବାକୁ ଗଲେ ସେମାନଙ୍କର ସମସ୍ତ ଦାବୀ ଅଗ୍ରାହ୍ୟ କରାଯାଇଥିଲା । ଫଳରେ ଜାର୍‌ଙ୍କ ପ୍ରତିପକ୍ଷ ଚରମପନ୍ଥା ଗ୍ରହଣ କରିଥିଲେ ଏବଂ ଧର୍ମଘଟ ଓ ବିକ୍ଷୋଭ ଜାର୍ ସରକାରଙ୍କ ବିରୁଦ୍ଧରେ ବୃଦ୍ଧି ପାଇଥିଲା ।

୧୯୦୫ ମସିହା ଜାନୁୟାରୀ ମାସରେ ସେଣ୍ଟ ପିଟର୍ସବର୍ଗରେ ଥିବା ପୁଟିଲଭ କାରଖାନାରେ ଧର୍ମଘଟ ପ୍ରସାର ଲାଭ କରିଥିଲା । ଫାଦର୍ ଗ୍ୟାପନଙ୍କ ନେତୃତ୍ୱରେ ଦୁଇଲକ୍ଷ ଶ୍ରମିକ ସେମାନଙ୍କର ପରିବାରବର୍ଗଙ୍କ ସହିତ ୧୯୦୫ ମସିହା ଜାନୁୟାରୀ ୨୨ ତାରିଖ ଦିନ ଜେମଷ୍ଟଭୋ ସମ୍ମିଳନୀର ଦାବିଗୁଡ଼ିକ ଉପରେ ଆଧାରିତ ଏକ ଆବେଦନପତ୍ର ଜାର୍‌ଙ୍କ ହାତରେ ଦେବାପାଇଁ ଏକ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାରେ ତାଙ୍କ ଶୀତକାଳୀନ ପ୍ରାସାଦକୁ ଯାଇଥିଲେ । ବଡ଼ ପରିତାପର ବିଷୟ ଏହି ଯେ, ଜାର୍ ଆବେଦନପତ୍ର ଗ୍ରହଣ କରିବା ପରିବର୍ତ୍ତେ ଏହି ଶାନ୍ତିପୂର୍ଣ୍ଣ ବିକ୍ଷୋଭକୁ ଦମନକରିବାକୁ ଚାହିଁଥିଲେ ଏବଂ ତାଙ୍କ ଆଦେଶରେ ତାଙ୍କ ଦେହରକ୍ଷୀ କସାକମାନେ ନିରୀହ ଶୋଭାଯାତ୍ରାକାରୀମାନଙ୍କ ଉପରେ ଗୁଳିବର୍ଷଣ କରିଥିଲେ । ତାହା ଫଳରେ ବହୁଲୋକ ପ୍ରାଣ ହରାଇଥିଲେ ଏବଂ ବହୁଲୋକ କ୍ଷତବିକ୍ଷତ ହୋଇଥିଲେ । ଏହି ଘଟଣା ରବିବାର ଦିନ ଘଟିଥିବାରୁ ଏହାକୁ 'ରକ୍ତାକ୍ତ ରବିବାର' (Bloody Sunday) ବୋଲି ଅଭିହିତ କରାଯାଇଅଛି ।

ଏହି ଅତ୍ୟାଚାରର ସମ୍ବାଦ ଅଳ୍ପ ସମୟ ମଧ୍ୟରେ ରୁଷିଆର ବିଭିନ୍ନ ସ୍ଥାନରେ ପହଞ୍ଚି ଯାଇଥିଲା ଏବଂ ସମଗ୍ର ରୁଷିଆରେ ଆତଙ୍କ ସୃଷ୍ଟି କରିଥିଲା । ଫଳରେ ଏକପ୍ରକାର ବ୍ୟାପକ

ଅଶାନ୍ତ ରୁଷିଆରେ ଦେଖାଦେଲା । ବିଶେଷତଃ ପୁରପଲ୍ଲୀ ଅଞ୍ଚଳରେ କୃଷକମାନେ ବଡ଼ ବଡ଼ ଜମିଦାରମାନଙ୍କୁ ଲୁଣ୍ଠନ କରିଥିଲେ । ରୁଷିଆର ସୈନ୍ୟବାହିନୀରେ ମଧ୍ୟ ବିଦ୍ରୋହ ମୁଣ୍ଡଟେକିଲା । ଯଦିଓ ରୁଷ-ଜାପାନ ଯୁଦ୍ଧ ଶେଷ ହୋଇଯାଇଥିଲା, ରୁଷ ସରକାର ଯୁଦ୍ଧ-ପାଇଁ ପ୍ରସ୍ତୁତ କରାଯାଇଥିବା ସୈନ୍ୟଦଳଙ୍କୁ ଭାଙ୍ଗିଦେବା (Demobilise) ବିଳମ୍ବ କରିବା ପାଇଁ ନିଷ୍ପତ୍ତି କରିଥିଲେ । ଜାର୍ ଶାସନର ଭିତ୍ତି ଦୋହଲିଯାଇଥିଲା । ତେଣୁ ରୁଷ ସରକାର ସ୍ୱତନ୍ତ୍ର ହୋଇ ଘୋଷଣା କରିଥିଲେ ଯେ, ଅବିଳମ୍ବେ ଡୁମା ବା ଜାତୀୟ ସଭା ଡକାଯାଇ ତାଠାରୁ ସଂସ୍କାର ବିଷୟ ପରାମର୍ଶ ନିଆଯିବ । ରୁଷିଆର ଜାତୀୟ ସଭା ବସାଇବା ବାସ୍ତବରେ ଜନସାଧାରଣଙ୍କ ପାଇଁ ଅତି ସାମାନ୍ୟ ଅନୁଗ୍ରହ ହୋଇଥିବାରୁ ତାହା ସେମାନଙ୍କୁ ସନ୍ତୁଷ୍ଟ କରିପାରି ନଥିଲା । ଉଦାରପନ୍ଥୀମାନେ ପ୍ରକୃତରେ ବ୍ୟାପକ ଭୋଟାଧିକାର ଭିତ୍ତିରେ ଏକ ବ୍ୟବସ୍ଥାପକ ସଭା ନିର୍ବାଚନ କରିବାପାଇଁ ଶୀଘ୍ର ବିକ୍ଷୋଭ ଆରମ୍ଭ କରିଦେଇଥିଲେ । ସମାଜବାଦୀମାନେ ଧର୍ମଘଟର ଆୟୋଜନ କରିଥିଲେ ଏବଂ ତାହା ବିଶେଷ ସଫଳ ହୋଇଥିଲା । ପରିବହନ ବ୍ୟବସ୍ଥା ଅଚଳ କରିଦିଆଯାଇଥିଲା । ଅଧିକାଂଶ କାରଖାନା ବନ୍ଦ କରିଦିଆଯାଇଥିଲା ଏବଂ ଜାତିର ଅର୍ଥନୈତିକ ଜୀବନଧାରା ପଙ୍ଗୁ କରିଦିଆଯାଇଥିଲା । ଜାର୍ ଦ୍ୱିତୀୟ ନିକୋଲାସ୍ କାଉଣ୍ଟ ଓ୍ୱିଟି (ଯେ କି କିଛିଦିନ ପାଇଁ ପ୍ରଧାନମନ୍ତ୍ରୀ ହୋଇଥିଲେ)ଙ୍କର ପରାମର୍ଶ ଅନୁସାରେ ଜନସାଧାରଣଙ୍କ ପ୍ରତି ଅଧିକ ଅନୁଗ୍ରହ ପ୍ରଦର୍ଶନ କରିବାପାଇଁ ନିଷ୍ପତ୍ତି କରିଥିଲେ । ତେଣୁ ୧୯୦୫ ମସିହା ଅକ୍ଟୋବର ୧୭ ତାରିଖ ଦିନ 'ଅକ୍ଟୋବର ମ୍ୟାନିଫେଷ୍ଟୋ' ନାମକ ଏକ ସରକାରୀ ଇସ୍ତାହାର ଜାରି କରିଥିଲେ । ଏହି ଇସ୍ତାହାର ରୁଷବାସୀଙ୍କର ସମ୍ବିଧାନ ଲାଭପାଇଁ ଏକ ପ୍ରବେଶଦ୍ୱାର ବୋଲି କୁହାଯାଇପାରେ । ଏହି ଇସ୍ତାହାରରେ ବ୍ୟକ୍ତିର ପବିତ୍ରତା ଅକ୍ଷୁଣ୍ଣ ରଖିବାପାଇଁ କୁହାଯାଇଥିଲା । ତା'ଛଡ଼ା ବିବେକ ସ୍ୱାଧୀନତା, ସମ୍ବାଦପତ୍ର ସ୍ୱାଧୀନତା ଏବଂ ସମ୍ମେଳନ ସ୍ୱାଧୀନତା ପ୍ରଭୃତି କେତେକ ମୌଳିକଅଧିକାର ମଞ୍ଜୁର କରାଯାଇଥିଲା । ଅତି ବ୍ୟାପକ ଭୋଟ ଦାନ ଭିତରେ ଡୁମାର ନିର୍ବାଚନ କରାଯାଇ ତାକୁ ଆଇନପ୍ରଣୟନ କ୍ଷମତା ପ୍ରଦାନ କରାଯାଇଥିଲା ।

ପ୍ରଥମ ଡୁମାର ଅଧିବେଶନ ୧୯୦୭ ମସିହା ମେ ମାସରେ ବଡ଼ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ବସିଥିଲା; କିନ୍ତୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, 'ଅକ୍ଟୋବର ମ୍ୟାନିଫେଷ୍ଟୋ' ବିରୋଧୀମାନଙ୍କୁ ଭାଗ ଭାଗ କରିଦେବାରେ ସଫଳ ହୋଇଥିଲା । ଯେଉଁମାନେ ଏହି 'ଅକ୍ଟୋବର ମ୍ୟାନିଫେଷ୍ଟୋ'ର ପ୍ରସ୍ତାବଗୁଡ଼ିକ ସହିତ ଏକମତ ହୋଇଥିଲେ ସେମାନେ ଅକ୍ଟୋବ୍ରିଷ୍ଟ ଦଳରୂପେ ସଙ୍ଗଠିତ ହୋଇଥିଲେ । ଯେଉଁମାନେ ଅଧିକ ଅଗ୍ରସର ହେବାପାଇଁ ଚାହୁଁଥିଲେ ଏବଂ ଡୁମାକୁ ଇଂଲଣ୍ଡର ପାର୍ଲାମେଣ୍ଟ ଆଦର୍ଶରେ ଗଠନକରିବାକୁ ଆଶାପୋଷଣ କରିଥିଲେ ସେମାନେ ସାମ୍ବିଧାନିକ ଗଣତାନ୍ତ୍ରିକ ଦଳ ବା କ୍ୟାଡେଟ୍ ରୂପେ ନିଜକୁ ପ୍ରତିଷ୍ଠା କରିଥିଲେ । ତା'ଛଡ଼ା ଯେଉଁମାନେ ସମାଜବାଦ

ପ୍ରତିଷ୍ଠା କରିବାକୁ ଚାହୁଁଥିଲେ ସେମାନେ ସମାଜବାଦୀଦଳ ଗଠନ କରିଥିଲେ । ସମାଜବାଦୀମାନେ ବୈପ୍ଳବିକ ସଂଗ୍ରାମ ବଜାୟ ରଖିବାକୁ ଚାହିଁଥିଲେ । ତେଣୁ କିଛିଦିନ ପାଇଁ ଧର୍ମଘଟ, ଦଙ୍ଗା ଓ କୃଷକ ବିଦ୍ରୋହ ଚାଲୁରହିଥିଲା । ଏହିସବୁ ଦଳ ଗୋଷ୍ଠୀ-ବିବାଦରେ ମାତିଥିବାରୁ ଜାର୍‌ଙ୍କ ବିରୁଦ୍ଧରେ ଏକଜୁଟ ହୋଇପାରିନଥିଲେ । ରୁଷ ସରକାର ସମାଲୋଚନାକାରୀମାନଙ୍କ ମଧ୍ୟରେ ଥିବା ମତାନ୍ତରର ସୁଯୋଗ ନେଇ ଜାତୀୟ ପାର୍ଲାମେଣ୍ଟରେ ଦ୍ୱିତୀୟ ପ୍ରକୋଷ୍ଠ ସୃଷ୍ଟି କରିଥିଲେ ଏବଂ ପ୍ରକୃତରେ ଏହାକୁ ରକ୍ଷଣଶୀଳ ପ୍ରକୋଷ୍ଠ ରୂପେ ଗଠନ କରାଯାଇଥିଲା । ତା'ଛଡ଼ା ରୁଷ ସରକାର ମୌଳିକ ଆଇନମାନ (Organic laws) ଜାରି କରିଥିଲେ । ଏହି ମୌଳିକଆଇନ ବଳରେ ଜାର୍ ଅନ୍ୟସବୁ ଆଇନ ନାକଚ କରିବା ପାଇଁ ଅଖଣ୍ଡ କ୍ଷମତା (Absolute veto power)ର ଅଧିକାରୀ ହେଲେ । ଡ୍ୟୁମା ହାତରେ କୌଣସି ବାସ୍ତବ କ୍ଷମତା ଛାଡ଼ି ଦିଆଯାଇ ନଥିଲା । ଯେତେବେଳେ ଡ୍ୟୁମା ମନ୍ତ୍ରୀମାନଙ୍କୁ ଆୟତ୍ତାଧୀନ କରିବାକୁ ଉଦ୍ୟମ କଲା, ସେତେବେଳେ ନିଜ କ୍ଷମତାର ସୀମା ଅତିକ୍ରମ କରିଥିବା ଦୋଷରେ ଦୋଷୀସାବ୍ୟସ୍ତ କରାଯାଇ ତାକୁ ଭାଙ୍ଗି ଦିଆଯାଇଥିଲା । ଏଥିରେ କ୍ୟାଡେଟମାନେ ହତୋତ୍ସାହ ହୋଇ ସେଣ୍ଟପିଟରସବର୍ଗ ବିଶ୍ୱବିଦ୍ୟାଳୟର ପ୍ରଫେସର ମିଲ୍ୟୁକଭଙ୍କ ନେତୃତ୍ୱରେ ଫିନଲ୍ୟାଣ୍ଡର ଭାଇବର୍ଗକୁ ପଳାଇଯାଇ ସେଠାରୁ 'ଭାଇବର୍ଗ ମ୍ୟାନିଫେଷ୍ଟୋ' ନାମକ ଏକ ଘୋଷଣାପତ୍ର ପ୍ରକାଶ କରିଥିଲେ । ଏଥିରେ ରୁଷବାସୀଙ୍କୁ ପ୍ରତିଶ୍ରୁତି ଭଙ୍ଗ କରିଥିବା ରୁଷ ସରକାରଙ୍କୁ ଅନ୍ୟଏକ ଡ୍ୟୁମା ନ ଡାକିବା ଯାଏ କୌଣସି କର ନଦେବା ପାଇଁ ଏବଂ ରୁଷ ସରକାରଙ୍କ ଅଧୀନରେ କୌଣସି ସାମରିକ ଚାକିରି ନ କରିବା ପାଇଁ ଆହ୍ୱାନ ଦିଆଯାଇଥିଲା । ଏପରି ଧମକରେ ସରକାର ଦବି ନଯାଇ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଉକ୍ତ ମ୍ୟାନିଫେଷ୍ଟୋର ସ୍ୱାକ୍ଷରକାରୀମାନଙ୍କ ସହିତ ଅନ୍ୟ ବିପ୍ଳବୀମାନଙ୍କୁ କଠିନ ଶାସ୍ତି ଦେଇଥିଲେ ।

ଜାର୍ ଯେଉଁଦିନ ପ୍ରଥମ ଡ୍ୟୁମାକୁ ଭାଙ୍ଗି ଦେଇଥିଲେ ଠିକ୍ ସେହି ଦିନ ଆଭ୍ୟନ୍ତରୀଣ ମନ୍ତ୍ରୀ ଷ୍ଟୋଲିପିନ୍‌ଙ୍କୁ ପ୍ରଧାନ ମନ୍ତ୍ରୀ ରୂପେ ନିଯୁକ୍ତ କରିଥିଲେ । ଷ୍ଟୋଲିପିନ ନିର୍ଭୀକ, ନିଷ୍ଠାପର ଏବଂ ସାଧାରଣ ସରକାରୀ କର୍ମଚାରୀଠାରୁ ଅଧିକ କର୍ମରତ ଓ ଚତୁର ଥିଲେ । ବିପ୍ଳବଦମନ ସମସ୍ୟାର ସମ୍ମୁଖୀନ ହୋଇଥିଲେ ହେଁ ସେ ଡ୍ୟୁମାକୁ ଏକ ଅନୁଷ୍ଠାନ ରୂପେ ସହ୍ୟ କରିବାକୁ ରାଜିଥିଲେ । କାରଣ ସେ ଅନୁଭବ କରିଥିଲେ ଯେ, ସରକାରଙ୍କୁ ସତର୍କ କରିବାପାଇଁ ଏହାର ଆବଶ୍ୟକତା ରହିଛି; କିନ୍ତୁ ଡ୍ୟୁମାର ଗଠନପଦ୍ଧତି ବିଷୟରେ ସେ ଭିନ୍ନ ମତ ପୋଷଣ କରିଥିଲେ । ତାଙ୍କ ମତରେ ଭୂସମ୍ପତ୍ତିଶାଳୀ ଭଦ୍ରବ୍ୟକ୍ତିମାନଙ୍କୁ ନେଇ ଡ୍ୟୁମା ଗଠନ ହେବା ଉଚିତ । କାରଣ ସେ ବିଶ୍ୱାସକରୁଥିଲେ ଯେ, ସେହିମାନଙ୍କର ଦେଶର ଦୃଢ଼ଭିତ୍ତି ରହିଛି । ସେ ନିଜର ବିଶ୍ୱାସକୁ କାର୍ଯ୍ୟରେ ପରିଣତ କରିବା ପାଇଁ ନିର୍ବାଚନରେ କାରସାଦି କରିଥିଲେ ମଧ୍ୟ ଦ୍ୱିତୀୟ ଡ୍ୟୁମାର ଆକାର ପ୍ରକାର ବଦଳାଇ ଦେଇ ପାରିନଥିଲେ ।

ଦ୍ୱିତୀୟ ଡ୍ୟୁମାର ଅଧିବେଶନ ୧୯୦୭ ମସିହା ମାର୍ଚ୍ଚ ମାସରେ ବସିଥିଲା; କିନ୍ତୁ ପୂର୍ବପରି ଡ୍ୟୁମା ଏବଂ ମନ୍ତ୍ରିମଣ୍ଡଳ ମଧ୍ୟରେ ଅଚଳ ଅବସ୍ଥା ଉପୁଜିଥିଲା । ତିନିମାସ ନପୂରୁଣୁ ଅଧିବେଶନ ବାତିଲ କରିଦିଆଯିବା ସଙ୍ଗେ ସଙ୍ଗେ ଦ୍ୱିତୀୟ ଡ୍ୟୁମାକୁ ଭାଙ୍ଗି ଦିଆଯାଇଥିଲା ।

ତୃତୀୟ ଡ୍ୟୁମାର ଅଧିବେଶନ ଡକାଯିବା ପୂର୍ବରୁ ଷ୍ଟୋଲିପିନ୍ ଜମିଦାର ଓ ଶାଣ୍ଡି ରୁଷ ଲୋକଙ୍କ ମଧ୍ୟରୁ ଅଧିକ ପ୍ରତିନିଧି ନେବା ଉଦ୍ଦେଶ୍ୟରେ ନିର୍ବାଚନ ଆଇନର ସଂଶୋଧନ କରିଥିଲେ ଏବଂ ରୁଷ ସରକାରଙ୍କୁ ଅଧିକ ସମାଲୋଚନା କରୁଥିବା ଶ୍ରମିକ, କୃଷକ ଏବଂ ଅଣରୁଷୀୟମାନଙ୍କର ପ୍ରତିନିଧିତ୍ୱକୁ ବାତିଲ କରିଦେଇଥିଲେ । ସେ ସାମ୍ବିଧାନିକ କ୍ଷମତାର ଅପବ୍ୟବହାର କରି ସରକାରଙ୍କର ଅଧୀନତା ସ୍ୱୀକାରକରୁଥିବା ଏକ ଡ୍ୟୁମା ନିର୍ବାଚନ କରିବାରେ କୃତକାର୍ଯ୍ୟ ହୋଇଥିଲେ ।

ତୃତୀୟ ଡ୍ୟୁମାର ଅଧିବେଶନ ୧୯୦୭ ମସିହା ନଭେମ୍ବର ମାସରେ ଡକାଯାଇଥିଲା । ନିର୍ବାଚନ ଆଇନର ସଂଶୋଧନ କରି ଭୋଟଦାତାମାନଙ୍କ ସଂଖ୍ୟା କମାଇଦେବା ପରେ ଯେଉଁ ନିର୍ବାଚନ କରାଯାଇଥିଲା ସେଥିରେ ଜୟଯୁକ୍ତ ହୋଇଥିବା ଲୋକେ ଏହି ତୃତୀୟ ଡ୍ୟୁମାର ସଦସ୍ୟ ଥିଲେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସରକାରଙ୍କ ନୀତିକୁ ସମର୍ଥନକରୁଥିବା ରକ୍ଷଣଶୀଳ ଲୋକମାନଙ୍କୁ ନେଇ ଏହି ଡ୍ୟୁମା ଗଠନ କରାଯାଇଥିଲା । ଏହାକୁ ଏକ ବ୍ୟବସ୍ଥାପକ ସଭା ନକହି, ଏକ ପରାମର୍ଶଦାତା ସଭା କହିବା ସମୀଚୀନ ହେବ । ତୃତୀୟ ଡ୍ୟୁମା ୧୯୧୨ ମସିହା ଯାଏଁ ତିଷ୍ଠିଥିଲା ଏବଂ ତାହାର ନିର୍ଦ୍ଦିଷ୍ଟ ପାଞ୍ଚ ବର୍ଷ କାର୍ଯ୍ୟକାଳ ଶେଷ ହୋଇଥିଲା ।

ତୃତୀୟ ଡ୍ୟୁମାର କାର୍ଯ୍ୟକାଳ ପୂରିଲା ପରେ ଚତୁର୍ଥ ଡ୍ୟୁମାର ଅଧିବେଶନ ୧୯୧୨ ମସିହାରେ ବସିଥିଲା । ଏହାର ଆକାର ପ୍ରକାର ପୂର୍ବବର୍ତ୍ତୀ ତୃତୀୟ ଡ୍ୟୁମାର ଆକାର ପ୍ରକାର ସଦୃଶ ଥିଲା; କିନ୍ତୁ ଚତୁର୍ଥ ଡ୍ୟୁମା ତୃତୀୟ ଡ୍ୟୁମାଠାରୁ ଅଧିକ ଆଜ୍ଞାବହ ହୋଇଥିଲା । ଏହାର ମଧ୍ୟ ପାଞ୍ଚବର୍ଷ କାର୍ଯ୍ୟକାଳ ପୂରିଥିଲା । ସତର୍କମୂଳକ ବ୍ୟବସ୍ଥା ଗ୍ରହଣ କରିବା ସତ୍ତ୍ୱେ ସରକାରଙ୍କ ବିରୁଦ୍ଧରେ ସମାଲୋଚନା ଚାଲୁରହିଥିଲା । ରାସପୁଟିନଙ୍କ ରାଜଦରବାରରେ ବିଶେଷ ପ୍ରତିପତ୍ତି ଏଥିପାଇଁ ଦାୟୀ । ଚତୁର୍ଥ ଡ୍ୟୁମାର ଅଧିବେଶନ ବସିଥିଲା ବେଳେ ୧୯୧୭ ମସିହାରେ ରୁଷବିପ୍ଳବର ସୂତ୍ରପାତ ହୋଇଥିଲା ଏବଂ ଏହାର ସଦସ୍ୟମାନେ ଅସ୍ଥାୟୀ ସରକାର ଗଢ଼ିଥିଲେ ।

ଡ୍ୟୁମା ସବୁଓ ମହତ୍ତ୍ୱକାର୍ଯ୍ୟ ସାଧନକରିବା ଦଗରେ ନିଜକୁ ଅସହାୟ ମନେକରିଥିଲା, ତଥାପି ଏହା ରୁଷଜାତିପାଇଁ କହିବାକୁ ପଶ୍ଚାତ୍‌ପଦ ହୋଇନଥିଲା । ତେଣୁ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ଡ୍ୟୁମା ଗଣତନ୍ତ୍ରର ବୀଜ ଧାରଣ କରିଥିଲା ଏବଂ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରିଥିଲା । ଜାର୍ ଦ୍ୱିତୀୟ ନିକୋଲାସ୍ ପ୍ରଥମ ଡ୍ୟୁମାର ଅଧିବେଶନ ବସିଲାବେଳେ ଦେଖିପାରିଲେ ଯେ, ଡ୍ୟୁମାରେ ପ୍ରତିନିଧିତ୍ୱ

କରୁଥିବା ତାଙ୍କ ବିରୋଧୀ ସଦସ୍ୟମାନେ ତାଙ୍କ ବିରୁଦ୍ଧରେ ଏକଜୁଟ ହେବା ପରିବର୍ତ୍ତେ ନିଜ ନିଜ ମଧ୍ୟରେ କଳହରେ ମାତିଛନ୍ତି । ତେଣୁ ସେ ଡୁମାର କ୍ଷମତାକୁ ପଙ୍ଗୁ କରିଦେବାପାଇଁ ବିଭିନ୍ନ ପଦକ୍ଷେପ ନେଇଥିଲେ । ଷ୍ଟଲପିନ ୧୯୦୬ ମସିହାରେ ପ୍ରଧାନମନ୍ତ୍ରୀ ନିଯୁକ୍ତ ହେବା ପରେ ରୁଷସରକାରଙ୍କ ପରିଚାଳନାକରିବା ଭାର ତାଙ୍କ ଉପରେ ପଡ଼ିଥିଲା । ତାଙ୍କୁ 'ରୁଷିଆର ବିସମାର୍କ' ଆଖ୍ୟା ଦିଆଯାଇଥିଲା । ସେ ଦୃଢ଼ଶାସନ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ସଂସ୍କାରମୂଳକ ବ୍ୟବସ୍ଥା ମଧ୍ୟ ପ୍ରବର୍ତ୍ତନ କରିଥିଲେ । ସେ ଏକଦିଗରେ ନିରଙ୍କୁଶ ଶାସନ ବ୍ୟବସ୍ଥା ରକ୍ଷାକରିବାକୁ ଚାହିଁଥିଲେ, ଅନ୍ୟ ଦିଗରେ ଡୁମାକୁ ବିପ୍ଳବର ଏକ କେନ୍ଦ୍ର ହେବାକୁ ନଦେଇ ତାହାକୁ ସରକାରଙ୍କର ଏକ ସହାୟକ ସଂସ୍ଥାରୂପେ ଚାଲୁରଖିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ସେ ଦେଶରେ ଉଚ୍ଛୃଙ୍ଖଳତାକୁ ଦୃଢ଼ଭାବରେ ଦମନକରିବା ସଙ୍ଗେ ସଙ୍ଗେ କେତେକ ସଂସ୍କାର ପ୍ରବର୍ତ୍ତନକରି ଶ୍ରମିକଶ୍ରେଣୀ ଓ କୃଷକଶ୍ରେଣୀଙ୍କୁ ତୁଷ୍ଟକରିବାକୁ ଚାହିଁଥିଲେ । ତାଙ୍କ ସମୟରେ ଏତେଗୁଡ଼ିଏ ଲୋକଙ୍କୁ ଫାଶୀ ଦିଆଯାଇଥିଲା ଯେ, ଘାତକର ଦଉଡ଼ିକୁ 'ଷ୍ଟଲପିନଙ୍କ ଗଳାବନ୍ଧ' (Stolypin's necktie) ବୋଲି କୁହାଯାଉଥିଲା । ସେ ଯାହାହେଉ ଷ୍ଟଲପିନଙ୍କର ସ୍ଥାୟୀ ଦୁର୍ଦ୍ଦଶାର ଅବସାନ ଘଟାଇବାପାଇଁ ଦୃଢ଼ ପଦକ୍ଷେପମାନ ନେଇଥିଲେ । କୃଷକମାନଙ୍କ ପ୍ରତି ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନ ହେଲା ୧୯୦୬ ମସିହାର ଜମିଜମା ସଂକ୍ରାନ୍ତ ଆଇନ । ସେହି ଆଇନବଳରେ ଯେକୌଣସି କୃଷକ ଗ୍ରାମ୍ୟ ମିର ( ଗ୍ରାମ୍ୟ ଗୋଷ୍ଠୀ ) ଠାରୁ ନିଜକୁ ବିଚ୍ଛିନ୍ନ କରି ନିଜେ ଚାଷକରୁଥିବା ଜମିର ମାଲିକ ହୋଇପାରିବ । ତା'ଛଡ଼ା ନିଜର ଭାଗ୍ୟ ପରିବର୍ତ୍ତନ କରିବାପାଇଁ ଯଦି ଜଣେ କୃଷକ କୌଣସି ସ୍ଥାନକୁ ଯିବାକୁ ଚାହୁଁଥିଲା, ତାହାହେଲେ ତାକୁ ସେ ସ୍ଥାନକୁ ଯିବାକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥିଲା । ତାକୁ ମଧ୍ୟ ଜନସେବା ପାଇଁ ଉଦ୍ଦିଷ୍ଟ ଚାକିରିରେ ଭର୍ତ୍ତିହେବାକୁ ସୁବିଧା ମିଳିଥିଲା । ଇତିମଧ୍ୟରେ ଜମି ବିକି କରିବାକୁ ସୁଯୋଗ ଦେବାପାଇଁ ଭୂ-ବ୍ୟାଙ୍କମାନ ପ୍ରତିଷ୍ଠା କରାଯାଇଥିଲା । ଅବଶ୍ୟ କେତେକ କୃଷକ ସେମାନଙ୍କ ଜମି ବିକି କରିଦେଇ ଅଧିକ ଉପାର୍ଜନ କରିବାପାଇଁ ସହରମାନଙ୍କୁ ଚାଲିଯାଇଥିଲେ । କିନ୍ତୁ ବହୁକୃଷକ ପୁରାତନ ବ୍ୟବସ୍ଥା ଉପରେ ଆସ୍ଥାରଖି ମିରରୁ ବିଚ୍ଛିନ୍ନ ହେବାକୁ ମନ ବଳାଇ ନଥିଲେ । ସେମାନେ ଭାବୁଥିଲେ ଯଦି ତାଙ୍କ ପୂର୍ବପୁରୁଷମାନେ ସେହି ମିରରେ ରହି ସେମାନଙ୍କର ଗୁଜୁରାଣ ମେଣ୍ଟାଇପାରୁଥିଲେ ସେମାନେ କାହିଁକି ତାହା କରିପାରିବେ ନାହିଁ । ଆହୁରି ମଧ୍ୟ ଅଧିକ ଆଧୁନିକ ପଦ୍ଧତିରେ କୃଷି ସମ୍ବନ୍ଧରେ ଶିକ୍ଷାଦେବା ପାଇଁ କେତେକ ଉଦ୍ୟମ କରାଯାଇଥିଲା ।

ସେ ଯାହାହେଉ ଭୂ-ସଂସ୍କାର ପ୍ରବର୍ତ୍ତନ ପରେ ପରେ ସହରକୁ ଯେଉଁ ଜନ-ପ୍ରବାହ ହୋଇଥିଲା ତାହା ଏକ ସ୍ମରଣୀୟ ଅନୁଭୂତି । ଷ୍ଟଲପିନ ଶ୍ରମିକମାନଙ୍କ ପ୍ରତି ସହାନୁଭୂତି ଦେଖାଇ ଶ୍ରମିକସଙ୍ଘଗୁଡ଼ିକୁ ଆଇନସଙ୍ଗତ କରିଥିଲେ ଏବଂ ଶ୍ରମିକ ବୀମାପାଇଁ ସାଧାରଣ ଯୋଜନାମାନ ପ୍ରବର୍ତ୍ତନ କରିଥିଲେ । ଷ୍ଟଲପିନ କୃଷକ ଓ ଶ୍ରମିକମାନଙ୍କ ମଙ୍ଗଳପାଇଁ

କେତେକ କାର୍ଯ୍ୟକରିବା ସତ୍ତ୍ୱେ ତାଙ୍କ ବିରୁଦ୍ଧରେ ବହୁଶତ୍ରୁ ବାହାରିଥିଲେ । ଜାରିନା ଏବଂ ରକ୍ଷଣଶୀଳ ଲୋକମାନଙ୍କଠାରୁ ଆରମ୍ଭକରି ଚରମପନ୍ଥୀ ଏବଂ ବିପ୍ଳବୀମାନଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ବିରୁଦ୍ଧରେ ଉଠିଥିଲେ । ରକ୍ଷଣଶୀଳ ଲୋକମାନେ ଡୁମା ଚାହୁଁ ନଥିଲା ବେଳେ ଉଦାରପନ୍ଥୀମାନେ ଡୁମାର କ୍ଷମତା ହ୍ରାସକରିବା ସପକ୍ଷରେ ନଥିଲେ । ତା'ଛଡ଼ା ଷ୍ଟଲିପିନଙ୍କର ସାଧାରଣ ଶାନ୍ତି ଓ ଶୃଙ୍ଖଳାଭଙ୍ଗ ବିରୁଦ୍ଧରେ କଠୋର ପଦକ୍ଷେପମାନ ବିପ୍ଳବୀମାନଙ୍କ ମନରେ ଆତଙ୍କ ସୃଷ୍ଟିକରିଥିଲା । ତାଛଡ଼ା ଷ୍ଟଲିପିନ କୃଷକମାନଙ୍କର ସମର୍ଥନ ଲାଭକରିଥିବାରୁ ବିପ୍ଳବୀମାନେ ସେମାନଙ୍କର ଆଉ ସମର୍ଥନ ନପାଇ ଷ୍ଟଲିପିନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତରହିଲେ । ଷ୍ଟଲିପିନଙ୍କୁ ହତ୍ୟାକରିବାପାଇଁ ୧୯୧୦ ମସିହାରେ ଉଦ୍ୟମ ହୋଇଥିଲା; କିନ୍ତୁ ସେ ଅଳ୍ପକେ ମୃତ୍ୟୁମୁଖରୁ ରକ୍ଷାପାଇଯାଇଥିଲେ । ତା'ପରବର୍ଷ ୧୯୧୧ ମସିହାରେ ଜାର୍ ନିକୋଲାସ୍ଙ୍କ ଉପସ୍ଥିତିରେ କଭ୍ର ଇମ୍ପିରିଏଲ ଥିଏଟରରେ ତାଙ୍କୁ ହତ୍ୟାକରାଯାଇଥିଲା । ତାଙ୍କ ମୃତ୍ୟୁ ଫଳରେ ରୁଷିଆର ନିରଙ୍କୁଶ ଶାସନ ତାହାର ଜଣେ ବଡ଼ ସାହାଯ୍ୟକାରୀ ଏବଂ ସମର୍ଥକଙ୍କୁ ହରାଇଲା । ୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭହୋଇଯିବାରୁ ଷ୍ଟଲିପିନଙ୍କ ଭୂ-ସଂସ୍କାର ବାଧାପ୍ରାପ୍ତ ହେଲା । ଯଦି ସେହି ଭୂ-ସଂସ୍କାର କ୍ରମାଗତ ଚାଲୁରଖାଯାଇଥାନ୍ତା ତାହାହେଲେ ରୁଷବିପ୍ଳବର ଯେପରିଭାବରେ କ୍ରମବିକାଶ ହେଲା ସେପରିଭାବରେ କ୍ରମବିକାଶ ହେବା ହୁଏତ ସମ୍ଭବ ହୋଇନଥାନ୍ତା । ମୋଟଉପରେ କହିବାକୁ ଗଲେ ଜାର୍ଙ୍କ ନିରଙ୍କୁଶ ଶାସନ ବିରୁଦ୍ଧରେ ୧୯୦୫ ମସିହାରେ ଯେଉଁ ମୁକ୍ତିସଂଗ୍ରାମ ରୁଷିଆରେ ହୋଇଥିଲା, ତାହା ବିଫଳହୋଇଥିଲା ସତ; କିନ୍ତୁ ରୁଷସରକାରଙ୍କ ବିରୁଦ୍ଧରେ ଅସନ୍ତୋଷ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ରୁଷିଆର ପ୍ରଥମ ବିଶ୍ୱଯୁଦ୍ଧରେ ଯୋଗଦାନ ଫଳରେ ରୁଷସରକାରଙ୍କର ଅପାରଗତା ପ୍ରମାଣିତ ହୋଇଥିଲା ଏବଂ ୧୯୧୭ ମସିହା ବିପ୍ଳବପାଇଁ ପଥପରିଷ୍କାର ହୋଇଯାଇଥିଲା ।

## ୧୯୧୭ ମସିହା ରୁଷବିପ୍ଳବ
### (The Russian Revolution, 1917)

ପ୍ରଥମ ବିଶ୍ୱଯୁଦ୍ଧ ଫଳରେ କେନ୍ଦ୍ରଇଉରୋପରେ ଜାତୀୟତା ଓ ଗଣତନ୍ତ୍ର—ଏହି ଦୁଇଟି ନୀତିର ବିଜୟ ହୋଇଥିଲା । ରୁଷିଆରେ କିନ୍ତୁ ଏହି ଯୁଦ୍ଧ ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନମାନ ଆଣିଥିଲା । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ରୁଷିଆର ସାମାଜିକ କ୍ଷେତ୍ରରେ ଯେଉଁ ବିରାଟ ବୈପ୍ଳବିକ ପରିବର୍ତ୍ତନ ଘଟିଲା, ଫରାସୀବିପ୍ଳବ ଓ ଶିଳ୍ପବିପ୍ଳବ ପରଠାରୁ ସେପରି ପରିବର୍ତ୍ତନ ବିଶ୍ୱର ଅନ୍ୟକୌଣସି ରାଷ୍ଟ୍ରରେ ଘଟିନଥିଲା । ଅବଶ୍ୟ ରୁଷବିପ୍ଳବର ଗୁରୁତ୍ୱ ସେତେବେଳେ ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରାଯାଇନଥିଲା । କିନ୍ତୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ସେହି ବିପ୍ଳବ ରୁଷିଆରେ

ଅଭୂତପୂର୍ବ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ଏପରି ଏକ ଫଳପ୍ରସୂ ଆନ୍ଦୋଳନ ସୃଷ୍ଟି କରିଥିଲା ଯାହାର ପ୍ରଭାବ ଥିଲା ସୁଦୂର ପ୍ରସାରୀ ।

ପ୍ରଥମ ବିଶ୍ୱଯୁଦ୍ଧରେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବରୁ ରୁଷିଆରେ ଅସନ୍ତୋଷ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ରୁଷିଆର ପ୍ରତ୍ୟେକଶ୍ରେଣୀର ଲୋକଙ୍କ ମଧ୍ୟରେ ଜାର୍‌ଙ୍କ ନିରଙ୍କୁଶ ଶାସନର ପ୍ରତିରୋଧ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ରୁଷବିପ୍ଳବର ମୌଳିକ ଓ ମୁଖ୍ୟ କାରଣ ଦୁଇଟି ହେଲା ନାସ୍ତିବାଚକ ଏବଂ ଅସ୍ତିବାଚକ । ନାସ୍ତିବାଚକ କାରଣ କହିଲେ ନିରଙ୍କୁଶ ଶାସନର ବିଫଳତାକୁ ବୁଝାଏ । ଅସ୍ତିବାଚକ କାରଣ କହିଲେ ପାଶ୍ଚାତ୍ୟ ଜ୍ଞାନାଲୋକର ପ୍ରବେଶ ଫଳରେ ଯେଉଁ ଆନ୍ଦୋଳନ ସୃଷ୍ଟି ହୋଇ ଶେଷରେ ପ୍ରଚଳିତ ବ୍ୟବସ୍ଥାର ଉଚ୍ଛେଦସାଧନ କଲା ତାହାକୁ ହିଁ ବୁଝାଏ । ଏହି କାରଣ ଦୁଇଟି ପରସ୍ପର ସହିତ ଏପରି ସଂପୃକ୍ତ ଯେ, ଗୋଟିକୁ ବାଦ୍‌ଦେଇ ଅନ୍ୟଟି ବିଷୟରେ ଆଲୋଚନାକରିବା ସମ୍ଭବପର ନୁହେଁ । ତେଣୁ ରୁଷିଆରେ ବିପ୍ଳବ କେଉଁ ପରିସ୍ଥିତିରେ ସୃଷ୍ଟି ହେଲା ତାହା ଜାଣିବାକୁ ଚାହିଁଲେ ରୁଷିଆର ତତ୍‌କାଳୀନ ରାଜନୈତିକ, ସାମାଜିକ, ଅର୍ଥନୈତିକ ଏବଂ ବୌଦ୍ଧିକ ଅବସ୍ଥାକୁ ବିଚାରକୁ ନେବାକୁ ପଡ଼ିବ ।

## ରାଜନୈତିକ ଅବସ୍ଥା

୧୭୮୯ ମସିହା ଫରାସୀ ବିପ୍ଳବ ସହିତ ୧୯୧୭ ମସିହା ରୁଷବିପ୍ଳବର ବହୁ ସାମଞ୍ଜସ୍ୟ ରହିଛି । ଫରାସୀ ସରକାରଙ୍କପରି ରୁଷସରକାର ଯେପରି ସ୍ୱେଚ୍ଛାଚାରୀ ଥିଲା ସେହିପରି ଅପାରଗ ମଧ୍ୟ ଥିଲା । ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କୁ ବାଦ୍‌ଦେଲେ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ପରେ ଯେଉଁ ଜାର୍‌ମାନେ ଶାସନଗାଦିରେ ବସିଥିଲେ ସେମାନେ ସମସ୍ତେ ନିରଙ୍କୁଶ ଶାସନ ପ୍ରତିଷ୍ଠାକରିବା ସଙ୍ଗେ ସଙ୍ଗେ ଲୋକମାନଙ୍କ ଉପରେ ଅତ୍ୟାଚାର ମଧ୍ୟ କରିଥିଲେ । ଦ୍ୱିତୀୟ ଆଲେକ୍‌ଜାଣ୍ଡାର ପ୍ରଥମେ କେତେକ ସଂସ୍କାରମୂଳକ କାର୍ଯ୍ୟକରିଥିଲେ ସତ; କିନ୍ତୁ ପରେ ମେଟର୍ନିକ୍‌ଙ୍କଦ୍ୱାରା ପରିଚାଳିତ ହୋଇ ସ୍ୱୈରାଚାରୀ ଶାସନ ପୁନଃପ୍ରତିଷ୍ଠା କରିଥିଲେ । କ୍ରିମିୟା ଯୁଦ୍ଧ ଏବଂ ରୁଷ-ଜାପାନ ଯୁଦ୍ଧରେ ରୁଷିଆର ପରାଜୟ ଜାର୍ ଶାସନର ଦୋଷ ଦୁର୍ବଳତାକୁ ପଦାରେ ପକାଇ ଦେଇଥିଲା । ଜାର୍‌ଙ୍କ ନିରଙ୍କୁଶ ଶାସନର ଅପାରଗତା ଏବଂ ଉପସ୍ଥିତ ପ୍ରଥମବିଶ୍ୱଯୁଦ୍ଧର ସମ୍ମୁଖୀନ ହେବାପରେ ବିଫଳତା ରୁଷବିପ୍ଳବ ଘଟାଇବାରେ ଏକ ବଳିଷ୍ଠ କାରଣ ହୋଇଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ରୁଷିଆ ତଥାପି ପୁରାତନ ଶାସନପ୍ରଣାଳୀକୁ ଅନୁସରଣ କରୁଥିଲା । ରୁଷସରକାର ସ୍ୱେଚ୍ଛାଚାରୀ ଶାସନ ଚଳାଇଥିଲେ ଏବଂ ରୁଷିଆର ଅଧିକାଂଶ ଲୋକେ କୃଷିବ୍ୟବସାୟ ଉପରେ ନିର୍ଭରଶୀଳ ଥିଲେ । ରୁଷିଆର ନିରଙ୍କୁଶ ଶାସନ ଅବଶ୍ୟ କୌଣସି କୌଣସି ସମୟରେ ଉଦାରନୀତି ଅବଲମ୍ବନ କରିଥିଲେ ମଧ୍ୟ ଅଧିକାଂଶ ସମୟରେ ନିର୍ବୋଧ ଓ ଖାମଖିଆଲି ଥିଲା । ଜାର୍ ଏକଧାରରେ ରୁଷିଆର ସର୍ବୋଚ୍ଚ

ଶାସନକର୍ତ୍ତା, ଦେବଦତ୍ତ ଅଧିକାର ବଳରେ ରାଜା, ରାଷ୍ଟ୍ରନାୟକ ଏବଂ ଗିର୍ଜାର ଅଧ୍ୟକ୍ଷ ଥିଲେ । ଜନସାଧାରଣ ପ୍ରତିମାପୂଜା କଲାବେଳେ ଯେପରି ଭକ୍ତି ପ୍ରଦର୍ଶନ କରୁଥିଲେ ଜାର୍‌ଙ୍କ ପ୍ରତି ସେହିପରି ଭକ୍ତିପ୍ରଦର୍ଶନ କରୁଥିଲେ । କିନ୍ତୁ ଦେଶର ପ୍ରକୃତ ଓ ପ୍ରଧାନଶକ୍ତି ଥିଲେ ଭୂସମ୍ପତ୍ତିଶାଳୀ ଅଭିଜାତ ସମ୍ପ୍ରଦାୟ । ଏହି ସମ୍ପ୍ରଦାୟର ଲୋକେ ସରକାରଙ୍କ ଅଧୀନରେ ଥିବା ଉଚ୍ଚପଦପଦବୀମାନ ଅଧିକାର କରିଥିଲେ । ଜାର୍ ପ୍ରଥମ ନିକୋଲାସ୍ ନୂତନ ନୀତି ବିଶେଷତଃ ବୈଦେଶିକ ନୀତି ପ୍ରବର୍ତ୍ତନ କରିବାରେ ନେତୃତ୍ୱ ଦେଇଥିଲେ ମଧ୍ୟ ଅଧିକାଂଶ ଜାର୍‌ଙ୍କର ଶାସନ ପରିଚାଳନା କରିବାରେ ଶକ୍ତି ନଥିଲା କି ଯୋଗ୍ୟତା ନଥିଲା । ସେମାନେ ଥିଲେ ଭୀରୁ ବା ଆଦର୍ଶବାଦୀ ବା ଦୁର୍ଦ୍ଦାନ୍ତ ପ୍ରତିକ୍ରିୟାଶୀଳ । ସେମାନେ ରାଜ୍ୟଶାସନ ପାଇଁ ସେମାନଙ୍କର ଅଭିଜାତ ସମ୍ପ୍ରଦାୟର ପରାମର୍ଶଦାତାମାନଙ୍କ ଉପରେ ନିର୍ଭରଶୀଳ ଥିଲେ । ବାସ୍ତବରେ ପରାମର୍ଶଦାତାମାନଙ୍କ ମଧ୍ୟରୁ ଅଧିକାଂଶ ରୁଷିଆରେ ଯେକୌଣସି ପରିବର୍ତ୍ତନର ବିରୋଧ କରୁଥିଲେ । ଇଉରୋପର କୌଣସି ରାଷ୍ଟ୍ର ତାହାର ଅଭ୍ୟାସଗୁଡ଼ିକରେ ରୁଷିଆଠାରୁ ଅଧିକ ଆସକ୍ତ ନଥିଲା କି ତାହାର କାର୍ଯ୍ୟକ୍ରମରେ ରୁଷିଆଠାରୁ ଅଧିକ ଆବଦ୍ଧ ହୋଇ ରହିନଥିଲା । ରୁଷିଆର ଅଭ୍ୟାସଗୁଡ଼ିକ ଊନବିଂଶ ଶତାବ୍ଦୀର ଇଉରୋପ ସହିତ ପୂରାପୂରି ଖାପ ଖାଉନଥିଲା । କାରଣ ରୁଷିଆର ପରିସ୍ଥିତି ଇଉରୋପର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କଠାରୁ ଭିନ୍ନ ଥିଲା । ରୁଷ ସାମ୍ରାଜ୍ୟ ଏଡ଼େ ବିଶାଳ ଥିଲା ଯେ, ସେଠାରେ କେନ୍ଦ୍ରୀଭୂତ କ୍ଷମତା ପ୍ରୟୋଗକରିବା କଠିନ ହୋଇପଡ଼ିଥିଲା । ତା'ଛଡ଼ା ରୁଷଜନସାଧାରଣ ନିଜର ମତାମତ ସ୍ପଷ୍ଟଭାବରେ ଦେବାକୁ ଅକ୍ଷମ ଥିଲେ । ଏପରି ପରିସ୍ଥିତିରେ ଅମଲାତନ୍ତ୍ର ଏବଂ ପୁଲିସ ଅତ୍ୟାଚାରୀ ହେବା ସମ୍ଭବ ହୋଇଥିଲା । ରୁଷିଆର ଜାର୍‌ଙ୍କ ପ୍ରତି ଏବଂ 'ପବିତ୍ର ରୁଷିଆ' ପ୍ରତି ଜନସାଧାରଣଙ୍କର ପ୍ରକୃତ ଅନୁରକ୍ତି ଥିବାର ଅନେକ ଦୃଷ୍ଟାନ୍ତ ଅବଶ୍ୟ ରହିଛି । ସାଧାରଣତଃ ସରକାରୀ କର୍ମଚାରୀମାନେ ସୁବିଧାବାଦୀଥିଲେ ଏବଂ ଗରିବମାନଙ୍କୁ ଅତ୍ୟଧିକ ଶୋଷଣକରି ନିଜର ସ୍ୱାର୍ଥସାଧନରେ ବ୍ୟସ୍ତ ଥିଲେ । ରୁଷସରକାର କୌଣସିପ୍ରକାରେ ସାମ୍ରାଜ୍ୟର ଅଖଣ୍ଡତା ରକ୍ଷାକରିବାକୁ ସମର୍ଥ ହୋଇଥିଲା; କିନ୍ତୁ ସେ ସରକାର ଆଦୌ କାର୍ଯ୍ୟଦକ୍ଷ ନଥିଲା ବରଂ ଥିଲା ନିଷ୍ଠୁର ଓ ଅତ୍ୟାଚାରୀ । ଜାର୍ ଓ ତାଙ୍କର ମନ୍ତ୍ରୀମାନେ ଲୋକେ ଶିକ୍ଷିତ ହେବା ଚାହୁଁ ନଥିଲେ । ସମ୍ଭ୍ରାନ୍ତ ଲୋକମାନଙ୍କର ପୁଅମାନେ ପ୍ରାୟ ବାହାର-ଜଗତ ଦେଖି ନଥିଲେ । ମହାୟସୀ କ୍ୟାଥାରାଇନ ଓ ପରେ ପ୍ରଥମ ଆଲେକ୍‌ଜାଣ୍ଡାର ପାଶ୍ଚାତ୍ୟ ଉଦାରମତବାଦ ପ୍ରତି କେତେକ ପରିମାଣରେ ଆକୃଷ୍ଟ ହୋଇଥିଲେ । ସେମାନଙ୍କର ଉଦ୍ୟମ ଫଳରେ ସମ୍ଭ୍ରାନ୍ତ ଲୋକମାନଙ୍କ ମଧ୍ୟରେ ଏକ ଗୋଷ୍ଠୀ ଗଢ଼ିଉଠିଲା ଯେ କି ପାଶ୍ଚାତ୍ୟ ଦେଶମାନଙ୍କଠାରୁ ପ୍ରେରଣା ଚାହୁଁଥିଲା । କିନ୍ତୁ ରୁଷିଆର ସ୍ଲାଭୋଫିଲ୍ (ସ୍ଲାଭ୍ ପ୍ରେମୀ) ନାମକ ଏକ ଶକ୍ତିଶାଳୀ ଗୋଷ୍ଠୀ ରୁଷିଆର ଆତ୍ମନିର୍ଭରଶୀଳତା ଉପରେ ଜୋର୍ ଦେଇଥିଲା ଏବଂ ସ୍ୱଦେଶୀ ଅନୁଷ୍ଠାନଗୁଡ଼ିକର ଯେକୌଣସି ପରିବର୍ତ୍ତନକୁ ନିନ୍ଦାକରିଥିଲା । ତା'ଛଡ଼ା ପାଶ୍ଚାତ୍ୟ ସଂସ୍କୃତି ରୁଷବାସୀଙ୍କର ଆତ୍ମପ୍ରତ୍ୟୟ ନଷ୍ଟକରିବା ପାଇଁ ଏକ ପ୍ରଭାବଶାଳୀ ଶକ୍ତି ବୋଲି ଏହି ସ୍ଲାଭୋଫିଲ ଗୋଷ୍ଠୀ ମନେକରୁଥିଲା । ପ୍ରଥମ ନିକୋଲାସ୍ ସ୍ଲାଭୋଫିଲମାନଙ୍କ ମଧ୍ୟରେ ବିଶିଷ୍ଟ

ସ୍ଥାନ ଅଧିକାର କରିଥିଲେ । ସେ ତାଙ୍କ ପ୍ରଜାମାନଙ୍କର ବିଦେଶ ଯାତ୍ରାକୁ ବାଧାଦେଇଥିଲେ, ପତ୍ରପତ୍ରିକା ପ୍ରକାଶନ ବିଶେଷତଃ ପାଶ୍ଚାତ୍ୟ ଦେଶମାନଙ୍କର ପ୍ରକାଶନ ଉପରେ କଠୋର ଯାଞ୍ଚବ୍ୟବସ୍ଥା ଲାଗୁକରିଥିଲେ, ବିଶ୍ୱବିଦ୍ୟାଳୟମାନଙ୍କର ଅଧିକାରଗୁଡ଼ିକ ପ୍ରତ୍ୟାହାର କରିନେଇଥିଲେ ଏବଂ ଗୁପ୍ତପୁଲିସ୍ (ଆଖରାନା)ଙ୍କ ସାହାଯ୍ୟରେ ସମସ୍ତ ରାଜନୈତିକ ଅପରାଧୀଙ୍କୁ ସାଇବେରିୟାକୁ ପଠାଇଦେଇଥିଲେ । ରୁଷିଆକୁ ପବିତ୍ର ଏବଂ ଅକଳଙ୍କ ରଖିବାପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ଥିଲା । ସେ ମଧ୍ୟ ରୁଷିଆକୁ ପାଶ୍ଚାତ୍ୟ ଭାବଧାରାରୁ ବିଚ୍ଛିନ୍ନକରି ରଖିବା ପାଇଁ ଦୃଢ଼ପଦକ୍ଷେପ ଗ୍ରହଣ କରିଥିଲେ । ତା'ଛଡ଼ା ରୁଷିଆର ଲୋକେ ଯେପରି ବେଶି ନ ଭାବନ୍ତି ସେଥିପ୍ରତି ଦୃଷ୍ଟି ଦିଆଯାଉଥିଲା ।

## ସାମାଜିକ ପରିସ୍ଥିତି

ରୁଷିଆର ସମାଜ ଫରାସୀ ସମାଜ ପରି ବିଶେଷ ଅଧିକାରପ୍ରାପ୍ତ ଶ୍ରେଣୀ ଏବଂ (Privileged Class) ବିଶେଷାଧିକାର ବଞ୍ଚିତ ଶ୍ରେଣୀ (Unprivileged Class) ଏହି ଦୁଇଟି ଶ୍ରେଣୀରେ ବିଭକ୍ତ ହୋଇଥିଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ରୁଷ ସମାଜର ଉଚ୍ଚସ୍ତରରେ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଓ ନିମ୍ନସ୍ତରରେ ସର୍ଫମାନେ (ଭୂମିଦାସମାନେ) ଥିଲେ । ସମ୍ଭ୍ରାନ୍ତ ବ୍ୟକ୍ତିମାନେ ବିଶେଷାଧିକାର ଶ୍ରେଣୀରେ ଓ ସର୍ଫମାନେ ବିଶେଷାଧିକାର ବଞ୍ଚିତ ଶ୍ରେଣୀରେ ଅନ୍ତର୍ଭୁକ୍ତ ହୋଇଥିଲେ । ତେଣୁ ରୁଷ ସମାଜ କେବଳ ସମ୍ଭ୍ରାନ୍ତଗୋଷ୍ଠୀ ଓ ସର୍ଫଗୋଷ୍ଠୀ ଦ୍ୱାରା ଗଠିତ ହୋଇଥିଲା । ରୁଷିଆରେ ଥିବା ଜମିର ବେଶିଭାଗ ସମ୍ଭ୍ରାନ୍ତ ଗୋଷ୍ଠୀର ଅଧୀନରେ ଥିଲା ଏବଂ ସେହି ଗୋଷ୍ଠୀର ଲୋକେ ବଡ଼ ବଡ଼ ସରକାରୀ ଚାକିରିରେ ନିଯୁକ୍ତ ହୋଇଥିଲେ । ସୈନ୍ୟବାହିନୀ ଓ ନୌବାହିନୀରେ କମିଶନ ମଧ୍ୟ ସେମାନେ ପାଉଥିଲେ । ରୁଷିଆର ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକେ ଅଷ୍ଟାଦଶ ଶତାବ୍ଦୀ ଫ୍ରାନ୍ସର ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କ ପରି ରାଜଦରବାରରେ ସ୍ଥାନପାଇଥିଲେ । କେତେକ ସମ୍ଭ୍ରାନ୍ତ ଲୋକେ ପାଶ୍ଚାତ୍ୟ ଦେଶମାନ ଭ୍ରମଣ କରିବା ଫଳରେ କୁସଂସ୍କାରମୁକ୍ତ ହେବା ସଙ୍ଗେ ସଙ୍ଗେ ନୂତନ ଆଲୋକର ସନ୍ଧାନ ମଧ୍ୟ ପାଇଥିଲେ । ଆଉ କେତେକ ସମ୍ଭ୍ରାନ୍ତବ୍ୟକ୍ତି ରୁଷିଆର ଯେକୌଣସି ବିଶ୍ୱବିଦ୍ୟାଳୟରେ ରହି ନିଜ ବିଷୟରେ ଚିନ୍ତା କରିବାକୁ ଶିଖିଥିଲେ । କିନ୍ତୁ ଅଧିକାଂଶ ସମ୍ଭ୍ରାନ୍ତଲୋକେ ପଲ୍ଲୀ ଅଞ୍ଚଳରେ ବଡ଼ ବଡ଼ ଜମିମାଲିକ ଥିଲେ ଏବଂ ବର୍ଷସାରା ସେମାନେ ସେମାନଙ୍କର ଇଲାକାରେ ରହୁଥିଲେ ଏବଂ ସରଳ ଓ ନୀରସ ଜୀବନ ଯାପନ କରୁଥିଲେ । ପୋଷାକ ପରିଚ୍ଛଦରେ ସେମାନେ ସେମାନଙ୍କର କାମ କରୁଥିବା କୃଷକମାନଙ୍କଠାରୁ ସର୍ଫମାନଙ୍କଠାରୁ ସହଜେ ବାରି ହେଉନଥିଲେ । ସେ ଯାହାହେଉ ଜଣେ ଗ୍ରେଟକାଟିଆ ସମ୍ଭ୍ରାନ୍ତଲୋକର ମଧ୍ୟ ତାଙ୍କ ଅଧୀନରେ ଥିବା ସର୍ଫମାନଙ୍କ ଉପରେ ଅଖଣ୍ଡକ୍ଷମତା ରହିଥିଲା । ସେ ସେମାନଙ୍କ ଆଚରଣର ଯାଞ୍ଚକାରୀ ଥିଲେ ଏବଂ ସେମାନଙ୍କଠାରୁ ଟିକସ ଆଦାୟକରି ତାହା ସରକାରଙ୍କ ନିକଟରେ ଜମାଦେବାର ଦାୟିତ୍ୱ ନେଇଥିଲେ । ତାଙ୍କ ବିନାନୁମତିରେ

ସେମାନେ ବିବାହ କରିପାରୁ ନଥିଲେ । ସେ ଚାହିଁଲେ ସେମାନଙ୍କୁ ସାଇବେରିଆକୁ ନିର୍ବାସିତ କରିପାରୁଥିଲେ । ମୃତ୍ୟୁଦଣ୍ଡ କିମ୍ବା ଆଜୀବନ ଅକର୍ମଣ୍ୟ କରିଦେବା ଦଣ୍ଡ ବ୍ୟତୀତ ସେ ଅନ୍ୟସବୁ ଦଣ୍ଡ ସେମାନଙ୍କୁ ଦେଇପାରୁଥିଲେ । ସାଧାରଣତଃ କୃଷକମାନଙ୍କୁ ଦେଶର ଅସ୍ଥାବୋଲି କୁହାଯାଏ । ଜଣେ ଲେଖକ ରୁଷିଆର କୃଷକମାନଙ୍କୁ ମୃତାତ୍ମା (Dead Soul) ବୋଲି ଅଭିହିତ କରିଥିଲେ; କାରଣ ସେମାନଙ୍କୁ ପଣ୍ୟଦ୍ରବ୍ୟ ପରି ଜମିସହିତ ବିକ୍ରି କରି ଦିଆଯାଉଥିଲା ।

ରୁଷିଆରେ କୃଷକମାନେ ସର୍ବସାଧାରଣ ଭୂସ୍ୱତ୍ୱ ବ୍ୟବସ୍ଥା ଅଧୀନରେ ଥିଲେ । ପ୍ରତ୍ୟେକ କୃଷକ ନିଜର ଦାୟିତ୍ୱରେ ଥିବା କେତେକ ଅଣଓସାରିଆ ଟୁକୁରା ଜମି ଚାଷ କରୁଥିଲା । ହେତୁସବୁ ବିକ୍ଷିପ୍ତ ଟୁକୁରାଜମି ଚାଷ କରିବାପାଇଁ ତାକୁ ସମୟେ ସମୟେ ୧୯ ମାଇଲ ପର୍ଯ୍ୟନ୍ତ ଯା ଆସ କରିବାକୁ ପଡ଼ୁଥିଲା । ଫଳରେ ବହୁ ମୂଲ୍ୟ ସମୟ ଓ ପରିଶ୍ରମ ବୃଥାହେଉଥିଲା । କେତେକ ଜମି ମଧ୍ୟ ଚାଷକରିହୋଇ ପାରୁନଥିଲା । କୃଷି ପଦ୍ଧତିଗୁଡ଼ିକ ସାଧାରଣତଃ ଅତିପୁରୁଣାକାଳିଆ ହୋଇଥିବାରୁ ପୂର୍ବ ଉର୍ବରତା ଫେରାଇ ଆଣିବାପାଇଁ କେତେକ ଟୁକୁରାଜମିକୁ ପ୍ରତିବର୍ଷ ପଡ଼ିଆରଖି ଦିଆଯାଉଥିଲା । ସେ ଯାହାହେଉ କୃଷକମାନଙ୍କୁ ଏକତ୍ର ଗୋଚର, ପ୍ରାନ୍ତର ଏବଂ ଅରଣ୍ୟ ବ୍ୟବହାର କରିବାକୁ ଦିଆଯାଇଥିଲା ।

ପ୍ରତ୍ୟେକ ସର୍ଫକୁ ତାର ମାଲିକର ବ୍ୟବହାର ପାଇଁ ଛାଡ଼ିଦିଆଯାଇଥିବା ନିର୍ଦ୍ଦିଷ୍ଟ ଇଲାକାରେ ସପ୍ତାହରେ ତିନିଦିନ କାମକରିବାକୁ ପଡ଼ୁଥିଲା ଏବଂ ତାର କେତେକ ପିଲାପିଲିଙ୍କି ମାଲିକର ପାରିବାରିକ କାର୍ଯ୍ୟରେ ନିଯୁକ୍ତ କରାଯାଇପାରୁଥିଲା । ମିଳିତଭାବରେ କୃଷକମାନେ ମିରବା ଗ୍ରାମ୍ୟଗୋଷ୍ଠୀ ଗଠନ କରିଥିଲେ ଏବଂ ସେଠାରେ ବୟୋଜ୍ୟେଷ୍ଠମାନଙ୍କ ଶାସନ ମଧ୍ୟରେ ସ୍ୱାୟତ୍ତଶାସନ ପ୍ରାଥମିକ ଅବସ୍ଥାରେ ତିଷ୍ଠିରହିଥିଲା । ଏହି ମିର ନିଜେ ଜମିରୁ ସାମୟିକ ପୁନର୍ବଣ୍ଟନ ପରିଚାଳନା କରୁଥିଲା । ପ୍ରତ୍ୟେକ ବୟସ୍କ ଲୋକ ଜମିର ଭାଗ ପାଇବା ପାଇଁ ହକଦାର ହୋଇଥିବାରୁ ଓ ଜମିର ପରିମାଣ ବୃଦ୍ଧି ନ ପାଉଥିବାରୁ, ପ୍ରତ୍ୟେକଲୋକର ଭାଗ ଦିନକୁ ଦିନ କମିଯିବାରେ ଲାଗିଲା । କୃଷକ ତାର ଭାଗଜମିକୁ ଉନ୍ନତକରିବାପାଇଁ କୌଣସି ଉତ୍ସାହ ପାଉନଥିଲା । କାରଣ ପରବର୍ତ୍ତୀ ପୁନର୍ବଣ୍ଟନ ସମୟରେ ତାର ସେ ଜମି ହରାଇବାର ସମ୍ଭାବନା ମଧ୍ୟ ଥିଲା । ରୁଷିଆର ଲୋକସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପ୍ରତ୍ୟେକ କୃଷକର ଚାଷଜମି କ୍ରମଶଃ ହ୍ରାସପାଇବାକୁ ଲାଗିଲା । ଲୋକସଂଖ୍ୟା ବୃଦ୍ଧିହେବା ଏବଂ କୃଷିପଦ୍ଧତି ଅପରିବର୍ତ୍ତିତ ରହିବା ଫଳରେ ରୁଷିଆରେ ବାରମ୍ବାର ଦୁର୍ଭିକ୍ଷ ଦେଖାଦେଇଥିଲା ।

ଜମି ପୁନର୍ବଣ୍ଟନ ପାଇଁ ବ୍ୟବସ୍ଥା ରହିଥିବାରୁ, କୃଷକ ନୂତନ ଚାଷପ୍ରଣାଳୀ ପ୍ରବର୍ତ୍ତନ କରିବାଦିଗରେ ତାହାର ନେତୃତ୍ୱ ଦେବା ଶକ୍ତି ହରାଇଥିଲା ଏବଂ ନିର୍ଦ୍ଦିଷ୍ଟ ଅଭ୍ୟାସଗୁଡ଼ିକ ଉପରେ ତାକୁ ନିର୍ଭରକରିବାକୁ ପଡୁଥିଲା । ତାହାର ଚିତ୍ତବିନୋଦନ ବସ୍ତୁଗୁଡ଼ିକ ହେଲା

ସ୍ୱେଚ୍ଛାଚାରିତା ଓ ରକ୍ଷଣଶୀଳ ଧର୍ମ, ଅନ୍ଧବିଶ୍ୱାସ ଏବଂ ମଦ୍ୟପାନ । ନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ତାକୁ ଅତ୍ୟନ୍ତ ନିମ୍ନସ୍ତରରେ ସ୍ଥାନ ଦିଆଯାଇଥିଲା । କୃଷକ ବା ସର୍ଫମାନଙ୍କ ଅବସ୍ଥା ଆମେରିକାର ନିଗ୍ରୋ କ୍ରୀତଦାସଙ୍କ ଅବସ୍ଥାଠାରୁ କୌଣସିମତେ ଅଧିକ ସ୍ୱଚ୍ଛଳ ନଥିଲା । ବାସ୍ତବିକ ରୁଷିଆ ପରି ଅନୁନ୍ନତ ଦେଶରେ ସର୍ଫପ୍ରଥା ଚିରସ୍ଥାୟୀ ହେବା ବିଷୟରେ ସନ୍ଦେହ ପ୍ରକାଶ ପାଇଥିଲା । ଜାର୍ ପ୍ରଥମ ଆଲେକ୍‌ଜାଣ୍ଡାର ବାଲ୍‌ଟିକ ପ୍ରଦେଶଗୁଡ଼ିକର ସର୍ଫମାନଙ୍କୁ ମୁକ୍ତି ଦେଇଥିଲେ; କିନ୍ତୁ ସେମାନଙ୍କ ପାଇଁ କୌଣସି ଜମି ଯୋଗାଇ ନଦେବାରୁ ସେମାନେ ମଜୁରି ଲାଗି ଜୀବିକା ଉପାର୍ଜନ କରିବାକୁ ବାଧ୍ୟ ହୋଇଥିଲେ । ଫଳରେ ସେମାନଙ୍କ ଅବସ୍ଥା ପୂର୍ବାପେକ୍ଷା ଅଧିକ ଶୋଚନୀୟ ହୋଇପଡ଼ିଥିଲା । ଜାର୍ ପ୍ରଥମ ନିକୋଲାସ୍ ମଧ୍ୟ ସର୍ଫମାନଙ୍କୁ ମୁକ୍ତିଦେବାପାଇଁ ଚାହିଁଥିଲେ; କିନ୍ତୁ ସେ ତାହା ନକରିବାରୁ ତାଙ୍କୁ ଶାସ୍ତି ଭୋଗିବାକୁ ପଡ଼ିଥିଲା । କ୍ରିମିୟା ଯୁଦ୍ଧରେ ରୁଷିଆ ପରାସ୍ତହେବାରୁ ତାର ଅଭିଜାତ ସମ୍ପ୍ରଦାୟ ହୃଦୟଙ୍ଗମ କରିପାରିଥିଲେ ଯେ, ଗୋଟିଏ ଦେଶର ଅର୍ଥନୀତି ଯଦି ସର୍ଫପ୍ରଥା ଉପରେ ଭିତ୍ତିକରିଥିବ, ତାହାହେଲେ ସେ ଦେଶ ପାଶ୍ଚାତ୍ୟ ଶକ୍ତିମାନଙ୍କର ସମକକ୍ଷ ହୋଇପାରିବନାହିଁ । ବାସ୍ତବିକ ସର୍ଫମାନେ ସୈନ୍ୟହେବାପାଇଁ ଉପଯୁକ୍ତ ନୁହଁନ୍ତି । ଯେତେଦିନଯାଏ ଏହି ସର୍ଫପ୍ରଥା ରୁଷିଆରେ ପ୍ରଚଳିତ ଥିବ, ସେତେଦିନଯାଏ ତାହାର ସୈନ୍ୟବାହିନୀ ଦୁର୍ବଳ ହୋଇ ରହିଥିବ । ତେଣୁ କ୍ରିମିୟା ଯୁଦ୍ଧର ତିକ୍ତ ଅନୁଭୂତି ଏବଂ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ସିଂହାସନପ୍ରାପ୍ତି ଫଳରେ ସର୍ଫମାନଙ୍କ ମୁକ୍ତିପାଇଁ ପଥ ପରିଷ୍କାର ହୋଇଗଲା । ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ରାଜାଜ୍ଞାଦ୍ୱାରା ୧୮୬୧ ମସିହାରେ ସର୍ଫପ୍ରଥା ଉଠାଇଦିଆଯାଇଥିଲା । ସର୍ଫମାନେ ମୁକ୍ତିପାଇଲେ ମଧ୍ୟ ସେମାନଙ୍କ ଆର୍ଥିକ ଅବସ୍ଥାର ବିଶେଷ କିଛି ଉନ୍ନତି ହୋଇ ନଥିଲା । ସେମାନେ ଅଧିକ ଜମି ପାଇଁ ପାଟିତୁଣ୍ଡ କରୁଥିଲେ; କାରଣ ସେମାନଙ୍କର ସଂଖ୍ୟା ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ସେମାନଙ୍କର ଅଧିକାରରେ ଥିବା ଛୋଟ ଛୋଟ ଚାଷଜମିଗୁଡ଼ିକ ଉପରେ ଅଧିକ ଚାପ ପଡ଼ିଥିଲା । ତେଣୁ ସେମାନେ ଅସନ୍ତୁଷ୍ଟଗୋଷ୍ଠୀ ହିସାବରେ ନିଜର ଦୁଃଖ ଲାଘବକରିବା ପାଇଁ ସୁଯୋଗ ଅପେକ୍ଷାରେ ଥିଲେ । ଯେକୌଣସି ଆନ୍ଦୋଳନ ସେମାନଙ୍କୁ ଦୁଃଖରୁ ଅବ୍ୟାହତି ଦେବାକୁ ପ୍ରତିଶ୍ରୁତି ଦେବ, ସେମାନେ ସେ ଆନ୍ଦୋଳନରେ ଯୋଗ-ଦେବାପାଇଁ ପ୍ରସ୍ତୁତହୋଇ ରହିଥିଲେ ।

## ପାଶ୍ଚାତ୍ୟ ଭାବଧାରାର ରୁଷିଆ ଉପରେ ପ୍ରଭାବ

ଫ୍ରାନ୍ସ ପରି ରୁଷିଆରେ ଭୌତିକ ବିପ୍ଳବ ପୂର୍ବରୁ ଭାବରାଜ୍ୟରେ ବିପ୍ଳବ ସଂଘଟିତ ହୋଇଥିଲା । ଜାର୍‌ମାନେ ରୁଷିଆକୁ ପାଶ୍ଚାତ୍ୟ ଉଦାରନୈତିକ ଏବଂ ଉଗ୍ର ଚିନ୍ତାଧାରାରୁ ମୁକ୍ତରଖିବା ଉଦ୍ଦେଶ୍ୟରେ ପଶ୍ଚିମ ଇଉରୋପ ସହିତ ରୁଷିଆର ସବୁପ୍ରକାର ଯୋଗାଯୋଗ ବନ୍ଦ କରିବାପାଇଁ ଶତ ଉଦ୍ୟମ କରିବା ସତ୍ତ୍ୱେ, ପଶ୍ଚିମ ଇଉରୋପୀୟ ଚିନ୍ତାଧାରା ଏବଂ ଆଦର୍ଶ ଧୀରେ ଧୀରେ ରୁଷିଆରେ ପ୍ରବେଶ କରିଥିଲା । ଏ ସବୁର ପ୍ରଭାବ ଫଳରେ ରୁଷିଆରେ ଏପରି

ଏକ ଆନ୍ଦୋଳନ ସୃଷ୍ଟି ହୋଇଥିଲା ଯେ କି ପ୍ରଚଳିତ ବ୍ୟବସ୍ଥାକୁ ଧ୍ୱଂସ କରିଦେଇଥିଲା । ତା'ଛଡ଼ା ଏହି ନୂତନ ପ୍ରଭାବ ରୁଷିଆର ସାହିତ୍ୟରେ ପ୍ରକାଶ ପାଇଥିଲା । ଟଲଷ୍ଟୟ, ଟାରଗେନେଭ ଏବଂ ଡୋଷ୍ଟୟେଭସ୍କୀଙ୍କର ଶ୍ରେଷ୍ଠ ଉପନ୍ୟାସଗୁଡ଼ିକ ପାଶ୍ଚାତ୍ୟ ଚିନ୍ତାଧାରା ଓ ଆଦର୍ଶ ଉପରେ ଆଧାରିତ ହୋଇଥିବାରୁ ସେଗୁଡ଼ିକ ରୁଷିଆର ଯୁବସମ୍ପ୍ରଦାୟର କଳ୍ପନା-ଶକ୍ତିକୁ ବିଶେଷଭାବରେ ଆଲୋଡ଼ିତ କରିଥିଲା । ଉଦାରପନ୍ଥୀ ଏବଂ ଶିକ୍ଷିତ ସମ୍ପ୍ରଦାୟ ପାଶ୍ଚାତ୍ୟ ଢାଞ୍ଚାରେ ରାଜନୈତିକ ସଂସ୍କାରମାନ ଦାବିକରୁଥିଲା ବେଳେ ଚରମପନ୍ଥୀ ବୁଦ୍ଧିଜୀବୀମାନେ ମାର୍କସ ଏବଂ ବାକୁନିନଙ୍କଦ୍ୱାରା ପ୍ରଭାବିତ ହୋଇ ସମାଜବାଦ ଓ ଅରାଜକତା ଆଡ଼କୁ ଗତି କରିଥିଲେ । ଚରମପନ୍ଥୀମାନଙ୍କର ଉତ୍ତେଜନାପୂର୍ଣ୍ଣ ଚିନ୍ତାଧାରା ନିହିଲିଷ୍ଟ ବା ସନ୍ତ୍ରାସବାଦର ଅଭିବୃଦ୍ଧି ଘଟାଇଥିଲା । ନିହିଲିଷ୍ଟମାନେ ରୁଷିଆର ସମସ୍ତ ପ୍ରଚଳିତ ବ୍ୟବସ୍ଥାକୁ ଧ୍ୱଂସ କରିଦେବାପାଇଁ ଉଦ୍ୟମ କରିଥିଲେ; କିନ୍ତୁ ସେମାନଙ୍କର ସମସ୍ତ ଉଦ୍ୟମ ବିଫଳ ହୋଇଥିଲା । ଶେଷରେ ନିହିଲିଷ୍ଟବାଦକୁ ପ୍ରାୟ ଉଚ୍ଛେଦ କରିଦିଆଗଲା; କିନ୍ତୁ ସମାଜବାଦ ତିଷ୍ଠି ରହିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ରୁଷିଆ ଶିଳ୍ପକ୍ଷେତ୍ରରେ ବିଶେଷ ପ୍ରଗତି ହାସଲ କରିଥିଲା । ବହୁ ସହର ଗଢ଼ିଉଠିଲା ଏବଂ କଳକାରଖାନାମାନ ହଠାତ୍ ଚାରିଆଡ଼େ ବିଛେଇ ହୋଇଗଲା । ଫଳରେ ଦୁଇଟି ନୂତନଗୋଷ୍ଠୀ—ପୁଞ୍ଜିପତିଗୋଷ୍ଠୀ ଏବଂ ପୌର ଶ୍ରମିକ ଗୋଷ୍ଠୀ ସୃଷ୍ଟି ହେଲା । ସେମାନଙ୍କ ସହିତ ଦେଖାଦେଲା କାରଖାନା ଜୀବନର ସମସ୍ୟାମାନ ଏବଂ ପୌର ଶ୍ରମିକର ଦୃଷ୍ଟିକୋଣ । ଶିଳ୍ପ-ଶ୍ରମିକମାନଙ୍କୁ ଯେଉଁ ପରିସ୍ଥିତିରେ ଜନଗହଳି ସହରମାନଙ୍କରେ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା, ତାହା ସେମାନଙ୍କୁ ବଡ଼ ଅସହ୍ୟ ବୋଧ ହେଉଥିଲା । ବାସ୍ତବରେ ଏହି ଶ୍ରେଣୀର ଶ୍ରମିକମାନେ ସମାଜବାଦର ବାର୍ତ୍ତାକୁ ସାଦରେ ଗ୍ରହଣ କରିନେଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ମାର୍କସଙ୍କ ବାଣୀକୁ ଜନପ୍ରିୟ କରାଯାଇଥିଲା ଓ ଔପନ୍ୟାସିକ ମ୍ୟାକସିମ ଗର୍କିଙ୍କପରି ଚରମପନ୍ଥୀମାନଙ୍କଦ୍ୱାରା ତାହା ଚାରିଆଡ଼େ ପ୍ରଚାର କରାଯାଇଥିଲା । ମାର୍କସଙ୍କର ବୈପ୍ଳବିକ ସମାଜବାଦ ଶିଳ୍ପ ଶ୍ରମିକମାନଙ୍କ ମଧ୍ୟରେ ଦ୍ରୁତ ଅଗ୍ରଗତି କରିବା ସଙ୍ଗେ ସଙ୍ଗେ ବହୁ ବୁଦ୍ଧିଜୀବୀଙ୍କୁ ମଧ୍ୟ ଆକୃଷ୍ଟ କରିପାରିଥିଲା । ୧୮୯୫ ମସିହାରେ ସାମାଜିକ ଗଣତାନ୍ତ୍ରିକ ଦଳ (Social Democratic Party) ଗଠନ କରାଯାଇଥିଲା ଏବଂ ସମାଜବାଦ ପ୍ରତିଷ୍ଠା ଥିଲା ଏହାର ପ୍ରଧାନ ଲକ୍ଷ୍ୟ । ଏହି ଦଳର କାର୍ଯ୍ୟକ୍ରମ ଅନ୍ୟ ଦେଶମାନଙ୍କରେ ଥିବା ସମାଜବାଦୀମାନଙ୍କର କାର୍ଯ୍ୟକ୍ରମ ସହିତ ସମାନ ଥିଲା । କୃଷକଶ୍ରେଣୀ ମଧ୍ୟବିତ୍ତ ଶ୍ରେଣୀର ଚରମପନ୍ଥୀମାନଙ୍କଦ୍ୱାରା ପରିଚାଳିତ ହୋଇ ପୌର ଶ୍ରମିକମାନଙ୍କ ଆଦର୍ଶ ଅନୁକରଣରେ ୧୯୦୧ ମସିହାରେ ସାମାଜିକ ବିପ୍ଳବୀଦଳ (Social Revolutionary Party) ଗଠନ କରିଥିଲେ । ଏହି ଦଳର କାର୍ଯ୍ୟକ୍ରମରେ ସମ୍ଭ୍ରାନ୍ତଶ୍ରେଣୀ ଲୋକମାନଙ୍କର ବଡ଼ ବଡ଼ ଇଲାକାଗୁଡ଼ିକ ବାଜ୍ୟାପ୍ତ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଭାଙ୍ଗି ଛୋଟ ଛୋଟ ସ୍ୱତନ୍ତ୍ରକ୍ଷେତ୍ରରେ ପରିଣତ କରିବାପାଇଁ

ସୂଚନା ଦିଆଯାଇଥିଲା । ଯଦିଓ ଏହି ଦଳ ସନ୍ତ୍ରାସବାଦ ଏକ ଅସ୍ତ୍ରରୂପେ ବ୍ୟବହାର ହୋଇପାରେ ବୋଲି କହୁଥିଲେ ତଥାପି ଉପସ୍ଥିତ ପରିସ୍ଥିତିରେ ତାହା ନକରି ଭବିଷ୍ୟତରେ ଆବଶ୍ୟକ ହେଲେ ତାହା କରିବାପାଇଁ ସ୍ଥିରକରିଥିଲେ । ଏହିପରି ଏକ ବୈପ୍ଳବିକ ଆନ୍ଦୋଳନ ମୁଣ୍ଡଟେକିଲା ଏବଂ ସେହି ଆନ୍ଦୋଳନର ମୂଳଲକ୍ଷ୍ୟ ହେଲା ସାମାଜିକ ନୀତିଗୁଡ଼ିକ ଉପରେ ଭିତ୍ତିକରି ରୁଷିଆର ସାମାଜିକ ଏବଂ ରାଜନୈତିକ ବ୍ୟବସ୍ଥାମାନ ପୁନର୍ଗଠନ କରିବା ।

ରୁଷିଆର ସାମାଜିକ ଗଣତନ୍ତ୍ରବାଦୀ ଦଳରେ ଶୃଙ୍ଖଳା ପ୍ରଶ୍ନ ଓ କାର୍ଯ୍ୟପ୍ରଣାଳୀ ନେଇ ମତଭେଦ ହେବାରୁ ସେହି ଦଳ ୧୯୦୩ ମସିହାରେ ଦୁଇଟି ଦଳରେ ବିଭକ୍ତ ହୋଇଗଲା । ଏହାର ଚରମପନ୍ଥୀ ଗୋଷ୍ଠୀ ଭ୍ଲାଡିମିର ଇଲିଆନଭ (ଲେନିନ)ଙ୍କ ନେତୃତ୍ୱରେ ପରିଚାଳିତ ହୋଇ ମୁଖ୍ୟ ସଂସ୍ଥାରୁ ବାହାରିଯାଇଥିଲେ । ଏହି ଗୋଷ୍ଠୀର ସଭ୍ୟମାନେ ବଲସେଭିକ୍ (ସଂଖ୍ୟା ଗରିଷ୍ଠ ଗୋଷ୍ଠୀ) ନାମରେ ଅଭିହିତ ହେଲେ; କାରଣ ଯେଉଁସବୁ ପ୍ରଶ୍ନ ନେଇ ଦଳ ଭାଙ୍ଗିଲା ସେହିସବୁ ପ୍ରଶ୍ନ ଆଲୋଚନା ହେଲାବେଳେ ଏମାନେ ଏକମତ ପୋଷଣ କରିଥିଲେ ଏବଂ ଏମାନଙ୍କର ସଂଖ୍ୟା ଦଳରେ ଅଧିକ ଥିଲା । ଦଳର ନରମପନ୍ଥୀ ଗୋଷ୍ଠୀ ଲୋକଙ୍କୁ ମେନସେଭିକ୍ (ସଂଖ୍ୟା ଲଘିଷ୍ଠ ଗୋଷ୍ଠୀ) କୁହାଗଲା । ସାମାଜିକ ଗଣତନ୍ତ୍ରବାଦୀ ଦଳ ଭାଙ୍ଗିଲା-ବେଳେ ବଲ୍‌ସେଭିକମାନଙ୍କ ସଂଖ୍ୟା ମେନସେଭିକମାନଙ୍କ ସଂଖ୍ୟାଠାରୁ ସେହି ଦଳରେ ଅଧିକ ଥିଲେ ମଧ୍ୟ ସେମାନଙ୍କୁ ଦୁଇଟି ପୃଥକ୍ ଦଳ ହିସାବରେ ବିଚାରକଲେ ଆମ୍ଭେମାନେ ସ୍ପଷ୍ଟ ଜାଣିପାରିବା ଯେ ବଲ୍‌ସେଭିକ ଦଳ ମେନସେଭିକ ଦଳ ଅପେକ୍ଷା କ୍ଷୁଦ୍ରତର । ଅର୍ଥାତ୍ ବଲ୍‌ସେଭିକ ଦଳର ସଭ୍ୟସଂଖ୍ୟା ମେନସେଭିକ ଦଳର ସଭ୍ୟ ସଂଖ୍ୟାଠାରୁ ଅତି କମ୍ ଥିଲା । ବଲ୍‌ସେଭିକମାନେ ଉଗ୍ରପନ୍ଥା ସପକ୍ଷରେ ଥିଲେ ଏବଂ ମଜଦୁରମାନଙ୍କର ଏକଛତ୍ର ଶାସନ ପ୍ରତିଷ୍ଠା କରିବାପାଇଁ ସେମାନେ ଏତେ ବ୍ୟଗ୍ର ଥିଲେ ଯେ ଆବଶ୍ୟକ ହେଲେ ବଳ ପ୍ରୟୋଗ କରିବାକୁ ଏବଂ ହିଂସାକାଣ୍ଡ ଘଟାଇବାକୁ ପଶ୍ଚାତ୍‌ପଦ ହେବେନାହିଁ । ସେମାନେ ମଜଦୁର ଶ୍ରେଣୀ ବ୍ୟତୀତ ଅନ୍ୟ କୌଣସି ଶ୍ରେଣୀକୁ ସ୍ୱୀକାର କରୁନଥିଲେ । ତା'ଛଡ଼ା ମଧ୍ୟବିତ୍ତ ଶ୍ରେଣୀର ରାଜନୈତିକ ଦଳଗୁଡ଼ିକ ପ୍ରତି ବୈରଭାବ ପୋଷଣ କରୁଥିଲେ । ଅନ୍ୟ ପଟରେ ମେନସେଭିକ୍‌ମାନେ ସେମାନଙ୍କର ମତାମତରେ ଏବଂ କାର୍ଯ୍ୟ ପ୍ରଣାଳୀରେ ଅପେକ୍ଷାକୃତ କମ୍ ଉଗ୍ରଭାବ ପ୍ରଦର୍ଶନ କରୁଥିଲେ । ସେମାନେ ଧୀର, ମନ୍ଥର ଏବଂ କ୍ରମିକ ଗତିରେ ସମାଜବାଦର ବିଜୟପାଇଁ ଅପେକ୍ଷା କରି ରହିବାକୁ ରାଜିଥିଲେ ଏବଂ ଇତ୍ୟବସରରେ ନିରଙ୍କୁଶ ଶାସନର ଧ୍ୱଂସ ସାଧନ ଉଦ୍ଦେଶ୍ୟରେ ଅନ୍ୟ ରାଜନୈତିକ ଦଳମାନଙ୍କ ସହିତ ସହଯୋଗ କରିବାପାଇଁ ପ୍ରସ୍ତୁତ ଥିଲେ ।

ପ୍ରଥମେ ଲେନିନଙ୍କ ନେତୃତ୍ୱ ପାଇଁ ରୁଷିଆରେ ପରିସ୍ଥିତି ଅନୁକୂଳ ନଥିଲା କି ସେଥିପାଇଁ ସମୟ ଆସି ନଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆରେ ନିରଙ୍କୁଶ ଶାସନ ବିରୁଦ୍ଧରେ ଯୁଦ୍ଧଡାକରା ସମାଜବାଦୀମାନଙ୍କ ଅପେକ୍ଷା ଉଦାରପନ୍ଥୀମାନଙ୍କଠାରୁ ଅଧିକ

ଜୋର୍‌ରେ ଆସିଥିଲା । ଶିଳ୍ପବିପ୍ଳବ ଫଳରେ ଏକ ଅତି ଉନ୍ନତ ଓ କର୍ମଠ ମଧ୍ୟବିତ୍ତଶ୍ରେଣୀ ଗଠନ କରାଯାଇଥିଲା । ବଣିକ, କାରଖାନା ମାଲିକ ଏବଂ ଅନ୍ୟାନ୍ୟ ବ୍ୟବସାୟୀମାନେ ଉଦାରପନ୍ଥୀ ବୁର୍ଜିଆମାନଙ୍କ ସହିତ ହାତ ମିଳାଇ ଏକ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ଦାବି କରିଥିଲେ । ଜେମଷ୍ଟଭୋଗୁଡ଼ିକ ମଧ୍ୟ ସକ୍ରିୟ ହୋଇ ଉଠିଥିଲେ ଏବଂ ସଂସ୍କାରପାଇଁ ଏକ ନିଦିଷ୍ଟ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ । ସେହି କାର୍ଯ୍ୟକ୍ରମ ଅନୁସାରେ ସେମାନେ ଅବାଧରେ ନିର୍ବାଚିତ ଏକ ଜାତୀୟ ସଭା, ଦାୟିତ୍ୱସମ୍ପନ୍ନ ମନ୍ତ୍ରିମଣ୍ଡଳ, ନାଗରିକମାନଙ୍କର ସମତା, ସମ୍ବାଦପତ୍ର ସ୍ୱାଧୀନତା ଏବଂ ବାକ୍ ଓ ଧର୍ମ ସ୍ୱାତନ୍ତ୍ର୍ୟ ଦାବି କରିଥିଲେ । ଜାର୍ ଦ୍ୱିତୀୟ ନିକୋଲସ୍ ପ୍ରତିକ୍ରିୟାଶୀଳ ମନ୍ତ୍ରୀ ପ୍ଲେଭିଙ୍କଦ୍ୱାରା ପ୍ରଭାବିତ ହୋଇ ଏହିସବୁ ଦାବି ପ୍ରତି କର୍ଣ୍ଣପାତ କରିନଥିଲେ । ରୁଷ ସରକାର ଜାଣିପାରି ନ ଥିଲେ ଯେ ଲୋକମାନେ ନିରଙ୍କୁଶ ଶାସନ ଆଉ ଚାହୁଁନାହାନ୍ତି । ତେଣୁ ସରକାରଙ୍କ ବିରୁଦ୍ଧରେ ତୃମୂଳ ଆନ୍ଦୋଳନର ସୂଚନା ମିଳିଥିଲେ ମଧ୍ୟ ରୁଷ ସରକାର ତାକୁ ଭ୍ରୂକ୍ଷେପ ନ କରି ଧାରାବାହିକ ଭାବରେ ଅତ୍ୟାଚାର ଏବଂ ଦମନ ଲୀଳା ଚଳାଇଥିଲେ । ନିକୋଲାସ୍‌ଙ୍କର ଏକଜିଦିଆ ସ୍ୱଭାବ ଏବଂ ତାଙ୍କ ବିରୁଦ୍ଧରେ ସଙ୍ଗଠିତ ନୂତନ ଦଳଗୁଡ଼ିକର ଅନ୍ତର୍ନିହିତ ଶକ୍ତି ପ୍ରତି ତାଙ୍କର ହେୟଜ୍ଞାନ —ଏହି ଦୁଇଟି ବିପ୍ଳବର ପ୍ରଧାନ କାରଣଗୁଡ଼ିକ ମଧ୍ୟରେ ଅନ୍ତର୍ଭୁକ୍ତ ।

ରୁଷ-ଜାପାନ ଯୁଦ୍ଧରେ ରୁଷିଆର ପରାଜୟ ଫଳରେ ସରକାରଙ୍କର ମର୍ଯ୍ୟାଦା ଯେ କେବଳ ହାନି ହେଲା, ତାହା ନୁହେଁ । ସେହି ସରକାରଙ୍କ ବିରୁଦ୍ଧରେ କ୍ରମଶଃ ବୃଦ୍ଧିପାଉଥିବା ଉତ୍ତେଜନା ହଠାତ୍ ୧୯୦୫ ମସିହାରେ ଏକ ବିପ୍ଳବରେ ପରିଣତ ହୋଇ ରୁଷ ସରକାରଙ୍କ ଆସ୍ଥାନକୁ ଦୋହଲାଇ ଦେଇଥିଲା । ୧୯୦୫ ମସିହାରେ ସାରାଦେଶରେ ବିକ୍ଷୋଭ ଓ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଜେମଷ୍ଟଭୋଗୁଡ଼ିକ ବିଭିନ୍ନ ସଂସ୍କାର ଦାବି କରିଥିଲେ । ମଜଦୁରମାନେ ଧର୍ମଘଟ କଲେ ଏବଂ କୃଷକମାନେ ଜମିଦାରମାନଙ୍କର ଶସ୍ୟଭଣ୍ଡାର-ଗୁଡ଼ିକ ଲୁଣ୍ଠନ କଲେ । ଦ୍ୱିତୀୟ ନିକୋଲାସ କ୍ରମଶଃ ବୃଦ୍ଧି ପାଉଥିବା ବିଶୃଙ୍ଖଳାକୁ ରୋକିବା ଦିଗରେ ଅସମର୍ଥ ହେବାରୁ ସେ ବାଧ୍ୟ ହୋଇ ସଂସ୍କାରମାନ ପ୍ରବର୍ତ୍ତନ କରିବାକୁ ପ୍ରତିଶ୍ରୁତି-ଦେବା ସଙ୍ଗେ ସଙ୍ଗେ ଡୁମା ବା ଜାତୀୟସଭା ଡକାଇଥିଲେ । ସଂସଦୀୟ ଶାସନ ଓ ନିରଙ୍କୁଶ ଶାସନ ମଧ୍ୟରେ ସମନ୍ୱୟ ଆଣିବାପାଇଁ ଯେଉଁ ଉଦ୍ୟମ ଚାଲିଥିଲା, ତାହା ଶେଷରେ ବିଫଳ ହୋଇଗଲା । ଦ୍ୱିତୀୟ ନିକୋଲାସ ସରକାର ବିରୋଧୀମାନଙ୍କ ମଧ୍ୟରେ ମତାନ୍ତରର ସୁଯୋଗ ନେଇ ଡୁମାକୁ ଏକ ଆଲୋଚନାମୂଳକ ସଭାରେ ପରିଣତ କରିଥିଲେ । ୧୯୦୭ ମସିହାବେଳକୁ ବିପ୍ଳବ ପ୍ରାୟ ତାର ଶକ୍ତି ହରାଇଥିଲା ଏବଂ ପ୍ରତିକ୍ରିୟା ଖୁବ୍ ଜୋର୍-ସୋର୍‌ରେ ଚାଲିଥିଲା । ରୁଷ ସରକାର କେତେକଙ୍କୁ ଅନୁଗ୍ରହ ଦେଖାଇଲାବେଳେ ଆଉ କେତେକଙ୍କୁ ଦୃଢ଼ଭାବରେ ଦମନ କରିଥିଲେ ।

୧୯୦୫ ମସିହା ବିପ୍ଳବକୁ ରୁଷ ସରକାର ଏହିପରିଭାବରେ ରୋକି ଦେଇଥିଲେ ମଧ୍ୟ ରୁଷିଆର ପ୍ରତ୍ୟେକ ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଉପୁଜିଥିବା ଅସନ୍ତୋଷର ବହ୍ନିକୁ

ସ୍ଥାପିତ କରିପାରିନଥିଲେ । ବୁର୍ଜୁଆମାନେ ବ୍ୟକ୍ତିଗତ ସ୍ୱାଧୀନତା ଏବଂ ପୁଞ୍ଜିର ରାଜନୈତିକ ସଂସ୍କାର ସ୍ପୃହା ଥିଲାବେଳେ, ପୁଞ୍ଜିପତି ଓ ଅନ୍ୟାନ୍ୟ ମଧ୍ୟବିତ୍ତ ଶ୍ରେଣୀର ଲୋକେ ଏକ ସାମ୍ବିଧାନିକ ସରକାର ପ୍ରତିଷ୍ଠା କରି ନିରଙ୍କୁଶ ଶାସନ ବ୍ୟବସ୍ଥାକୁ ସୀମିତ କରିବା ସ୍ପୃହା ଥିଲେ । କୃଷକମାନଙ୍କର କ୍ରମେ କ୍ରମେ ସଂଖ୍ୟାବୃଦ୍ଧି ହେବାରୁ, ସେମାନେ ଅଧିକ ଜମି ଦାବି କରୁଥିଲେ । ଜାର୍‌ମାନେ ସୁସଙ୍ଗତଭାବରେ ରୁଷୀକରଣ ନୀତି (The Policy of Russification) ଅନୁସରଣ କରିବା ଫଳରେ ରୁଷସରକାରଙ୍କ ଅଧୀନରେ ଥିବା ଇହୁଦୀ ଓ ଅନ୍ୟାନ୍ୟ ଜାତିର ଲୋକମାନେ ଅତ୍ୟନ୍ତ ବିକ୍ଷୁବ୍ଧ ହୋଇ ସେହି ନୀତିର ତୀବ୍ର ସମାଲୋଚନା କରିଥିଲେ । ଏହିସବୁ ଅସନ୍ତୁଷ୍ଟଗୋଷ୍ଠୀ ଉଦାରପନ୍ଥୀ ଓ ସମାଜବାଦୀ ନାମକ ଦୁଇଟି ଦଳରେ ବିଭକ୍ତ ହେଲେ ମଧ୍ୟ ସେମାନେ ଏକ ସଙ୍ଗରେ ଜାର୍‌ଙ୍କ ନିରଙ୍କୁଶ ଶାସନ ବ୍ୟବସ୍ଥା ବିରୁଦ୍ଧରେ ଯେଉଁ ଆନ୍ଦୋଳନ ଚଳାଇଥିଲେ, ତାହା ଦ୍ୱିତୀୟ ନିକୋଲାସଙ୍କ ରାଜତ୍ୱକାଳରେ ଗୁରୁତର ଆକାର ଧାରଣ କରି ଶେଷରେ ଜାର୍‌ଙ୍କ ଶାସନର ଅବସାନ ଘଟାଇଲା ।

## ୧୯୧୭ ବିପ୍ଲବର ଆଶୁ କାରଣ

ରୁଷ-ଜାପାନ ଯୁଦ୍ଧ ଜାର୍‌ଙ୍କ ଶାସନ ବ୍ୟବସ୍ଥାର ମୂଳଦୁଆ ଦୋହଲାଇ ଦେଇଥିଲା; କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ ତାହାର ଧ୍ୱଂସ ସାଧନ କରିଥିଲା । ନିରଙ୍କୁଶ ଶାସନ ଫଳରେ ରୁଷିଆ କେତେଦୂର କ୍ଷତିଗ୍ରସ୍ତ ହୋଇଛି, ତାହା ଏହି ବିଶ୍ୱଯୁଦ୍ଧ ପ୍ରମାଣ କରିଦେଇଥିଲା । ମୋଟା-ମୋଟି ଭାବରେ ପ୍ରଥମ ବିଶ୍ୱଯୁଦ୍ଧ ନିରଙ୍କୁଶ ଶାସନ ପତନର ଆଶୁକାରଣ ବୋଲି ଧରାଯାଏ । ଏହି ଯୁଦ୍ଧର ପ୍ରାରମ୍ଭରେ ରୁଷିଆର ଲୋକମାନଙ୍କ ମଧ୍ୟରେ ଉତ୍ସାହ ଓ ସ୍ୱଦେଶପ୍ରୀତିର ଅଭାବ ନଥିଲା । ରୁଷିଆରେ କେହିହେଲେ ଏହା ବିରୁଦ୍ଧରେ ମତ ପ୍ରକାଶ କରିନଥିଲେ । ରୁଷିଆ ଏ ଯୁଦ୍ଧକୁ 'ପବିତ୍ର ଯୁଦ୍ଧ' ବୋଲି ମନେକରିଥିଲା ଏବଂ ଏଥିପାଇଁ ଅତି ହର୍ଷୋତ୍ପାଦକ ଓ ବଳିଷ୍ଠ ଉଦ୍ୟମର ଆବଶ୍ୟକତା ରହିଛି ବୋଲି ବିଶ୍ୱାସଥିଲା; କିନ୍ତୁ ରୁଷିଆ ଏହି ଯୁଦ୍ଧରେ ପାଶ୍ଚାତ୍ୟ ଶତ୍ରୁମାନଙ୍କର ସମକକ୍ଷ ହୋଇପାରିନଥିଲା; କାରଣ ରୁଷିଆ ଏତେଦୂର ଅନଗ୍ରସର ଥିଲା ଯେ ସେପର୍ଯ୍ୟନ୍ତ ପାଶ୍ଚାତ୍ୟ ଦେଶମାନଙ୍କର ଶିଳ୍ପକୌଶଳର ଦକ୍ଷତା ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସକ୍ଷମ ହୋଇନଥିଲା ଓ ରେଳପଥଗୁଡ଼ିକ ବିଶାଳ ସୈନ୍ୟ-ବାହିନୀର ପରିବହନ ପାଇଁ ସୁବିଧାଜନକ ହୋଇନଥିଲା । ରୁଷିଆର ଗୋଳାବାରୁଦ କାରଖାନାଗୁଡ଼ିକ ଯେଉଁ ପରିମାଣର ଯୁଦ୍ଧ ସରଞ୍ଜାମ ଉତ୍ପାଦନ କରିବାର ଆବଶ୍ୟକତା ଥିଲା, ତାହା ଉତ୍ପାଦନ କରିବାକୁ ଅସମର୍ଥ ଥିଲା । ତା'ଛଡ଼ା ଉଚ୍ଚପଦବୀରେ ଥିବା ବ୍ୟକ୍ତିମାନେ ପ୍ରୀତିପ୍ରଦ ତୋଷଣନୀତି ଅବଲମ୍ବନ କରିଥିଲେ । ଯୁଦ୍ଧମନ୍ତ୍ରୀ କେତେକ ବ୍ୟବସାୟୀଙ୍କ ସହିତ ଯୁଦ୍ଧୋପକରଣ ଯୋଗାଇଦେବା ପାଇଁ ଚୁକ୍ତି କରିଥିଲେ; କିନ୍ତୁ ସେମାନେ ସରକାରଙ୍କୁ ଠକାଇଦେଇ ବହୁ ଟଙ୍କା ଆତ୍ମସାତ୍ କରିଥିଲେ । ୧୯୧୫ ମସିହାର ଅଭିଯାନ

ବେଳେ ବନ୍ଧ କର ଅଭାବ ପୂରଣ କରାଯାଇ ପାରୁନଥିଲା ଏବଂ ଗୋଳା ମଧ୍ୟ ନିଅଣ୍ଟ ପଡ଼ୁଥିଲା । ଫଳରେ ରୁଷିଆର ଶୋଚନୀୟ ପରାଜୟ ଘଟିଲା । ଜନସାଧାରଣ ସରକାରଙ୍କ ବିରୁଦ୍ଧରେ ପ୍ରବଳ ପ୍ରତିବାଦ କରିଥିଲେ । ଡୁମା, ଅସନ୍ତୁଷ୍ଟ ଜନତାର ମୁଖପାତ୍ର ଭାବରେ ରୁଷିଆର ଜାର୍ ଦ୍ୱିତୀୟ ନିକୋଲାସ୍‌ଙ୍କ ଉପରେ ଚାପ ପକାଇବାରୁ ସେ ଅପାରଗ ଯୁଦ୍ଧମନ୍ତ୍ରୀଙ୍କୁ ବରଖାସ୍ତ କରିବା ସଙ୍ଗେ ସଙ୍ଗେ ଜାତିର ସାମରିକ ସାମର୍ଥ୍ୟ ବୃଦ୍ଧି ପାଇଁ ଯେଉଁ ଉଦ୍ୟମ କରାଗଲା, ସେଥିରେ କେତେକ ପରିମାଣରେ ସାହାଯ୍ୟ କରିବାପାଇଁ ଡୁମାକୁ ଅନୁମତି ଦେଇଥିଲେ ।

ଦେଶଭକ୍ତମାନେ ରୁଷିଆକୁ ଅଧିକ ଶକ୍ତିଶାଳୀ କରିବାକୁ ଚିନ୍ତାକଲାବେଳେ ରୁଷିଆରେ ପ୍ରଚ୍ଛନ୍ନ ପ୍ରତିକ୍ରିୟାଶୀଳ ବାରମ୍ବାର ତାହାର ଭାଗ୍ୟ ଗଢ଼ିବାରେ ଉପର ମାରାତ୍ମକ ଭୂମିକା ଗ୍ରହଣ କରିଥିଲା, ତାହା ବିପ୍ଳବକୁ ନେଇଯାଇଥିଲେ । ଯୁଦ୍ଧକାଳୀନ ଦୁର୍ଦ୍ଦଶା ବିପ୍ଳବ ଆଡ଼କୁ ରୁଷିଆକୁ ଆଗେଇନେବା ଭୟରେ ପୁରାତନ ପ୍ରତିକ୍ରିୟାଶୀଳଗୋଷ୍ଠୀ ଯୁଦ୍ଧକୁ ଘୃଣାକରିବା ସଙ୍ଗେ ସଙ୍ଗେ ଋଷିଆର ଉଦାରପନ୍ଥୀ ମିତ୍ରରାଷ୍ଟ୍ର ଫ୍ରାନ୍ସକୁ ମଧ୍ୟ ଘୃଣା କରିଥିଲେ । ଏହି ଗୋଷ୍ଠୀର ଲୋକେ ସୁନ୍ଦରୀ ଓ ଦୃଢ଼ମନା ଜାରିନା ଆଲେକଜାଣ୍ଡ୍ରିଆଙ୍କୁ ସେମାନଙ୍କର ସମର୍ଥକ ରୂପେ ବାଛି ନେଇଥିଲେ । ସାଧାରଣତଃ ଜାରିନା ଦୁର୍ବଳମନା ଜାର୍‌ଙ୍କୁ ନିଜର ଇଚ୍ଛାନୁସାରେ ପରିଚାଳନା କରୁଥିଲେ ଏବଂ ଜଣେ ଅତି ବଳିଷ୍ଠ ଓ ବାସ୍ତବ ଶାସକ ହେବାକୁ ଉପଦେଶ ଦେଉଥିଲେ । ସେ ଜର୍ମାନୀ ସହିତ ଗୁପ୍ତ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ ବୋଲି ଯେଉଁ ଜନରବ ହେଉଥିଲା, ତାହାର ସତ୍ୟତା ବିଷୟରେ ଯଥାର୍ଥ ପ୍ରମାଣ ମିଳିନଥିଲା । ତାଙ୍କର ପୁତ୍ର ଜାର୍‌ଉଚଙ୍କୁ ନିରଙ୍କୁଶ ଶାସନକ୍ଷମତା ଅକ୍ଷୟ ଅବସ୍ଥାରେ ହସ୍ତାନ୍ତରିତ କରାଯାଉ, ଏହା ଥିଲା ତାଙ୍କର ଏକମାତ୍ର ଚିନ୍ତାର ବିଷୟ । ସେ ଜାର୍‌ଙ୍କୁ କହୁଥିଲେ ଯେ ସେମାନଙ୍କର ପୁତ୍ରପାଇଁ ସେମାନଙ୍କୁ ଶକ୍ତ ହେବାକୁ ପଡ଼ିବ, ନଚେତ୍ ତାହାର ଉତ୍ତରାଧିକାରୀ ସୂତ୍ରେ ପ୍ରାପ୍ତ ରାଜ୍ୟର ପରିସ୍ଥିତି ଭୟାବହ ହୋଇପଡ଼ିବ । ଦ୍ୱିତୀୟ ନିକୋଲାସ ତାଙ୍କର ଭାବପ୍ରବଣା ସ୍ତ୍ରୀଙ୍କ କଥାକୁ ପ୍ରାୟ ସବୁ ସମୟରେ ଶୁଣୁଥିଲେ ଏବଂ ସବୁ ରାଜନୈତିକ ବ୍ୟାପାରରେ ତାଙ୍କ ସହିତ ପରାମର୍ଶ କରୁଥିଲେ । ପରିସ୍ଥିତି ଅତି ଗୁରୁତର ଆକାର ଧାରଣା କରିଥିଲା, ଯେତେବେଳେ ଦେଖାଗଲା ଯେ ଜାରିନା ରାସପୁଟିନ ନାମକ ଜଣେ ହୀନଚରିତ୍ର ଲୋକଦ୍ୱାରା ପରିଚାଳିତ ହେଲେ ।

ଗ୍ରେଗରି ରାସପୁଟିନ ଥିଲେ ସାଇବେରିଆର ଜଣେ କୃଷକ । ସେ ୩୦ ବର୍ଷ କାଳ ଆଡ଼ୁଆଲରେ ରହି ଜଣେ ରହସ୍ୟାବୃତ୍ତ ଭ୍ରମଣକାରୀ ହୋଇଥିଲେ ଏବଂ ଶେଷରେ ସେ ଜଣେ ମହାତ୍ମାର ସମ୍ମାନ ଅର୍ଜନ କରିଥିଲେ । ପ୍ରକୃତରେ ସେ ଥିଲେ ଜଣେ ଲମ୍ପଟ ଏବଂ କ୍ଷମତା ବିସ୍ତାରକରିବାପାଇଁ ତାଙ୍କର ଥିଲା ପ୍ରବଳ ଆକାଂକ୍ଷା । ରାଜପରିବାରର ନିକଟବର୍ତ୍ତୀ ହେବା ପରେ ତାଙ୍କର ଅବୈରାଗ୍ୟ କରିବା ଖ୍ୟାତିକୁ ଏକ ଅସ୍ତ୍ରରୂପେ ବ୍ୟବହାର କରିଥିଲେ । ଥରେ ଜାର୍‌ଉଚ ବ୍ଲିଡର (ରକ୍ତସ୍ରାବ) ବୋଲି କୁହାଯାଉଥିବା ଏକ

ଅସାଧାରଣ ରୋଗରେ ଆକ୍ରାନ୍ତ ହୋଇ ଭୀଷଣ ଯନ୍ତ୍ରଣା ଭୋଗ କରୁଥିଲାବେଳେ ରାସପୁଟିନଙ୍କୁ ରାଜପ୍ରାସାଦକୁ ଡକାଯାଇଥିଲା ଏବଂ ସେ ରାଜପ୍ରାସାଦକୁ ଆସି ଜାର୍‌ଭିଚଙ୍କ ଚିକିତ୍ସା କରିଥିଲେ । ଅତିଶୀଘ୍ର ତାଙ୍କ ରୋଗର ଉପଶମ ହୋଇଥିଲା ଏବଂ ରାସପୁଟିନଙ୍କ ଚିକିତ୍ସା ଉପରେ ଭରସା କରି ଉଭୟ ଜାର୍ ଏବଂ ଜାରିନା ତାଙ୍କୁ ଜାର୍‌ଭିଚଙ୍କ ଚିକିତ୍ସା ଭାର ଅର୍ପଣ କରିଥିଲେ । ତେଣୁ ରାସପୁଟିନ ବରାବର ରାଜପ୍ରାସାଦକୁ ଆସିଲେ ଏବଂ ରାଜ-ପରିବାରରେ ତାଙ୍କର ସମ୍ମାନ ଦିନକୁ ଦିନ ବୃଦ୍ଧି ପାଇଲା । ସେ ଏକଦା ପ୍ରକାଶ କରିବାର ଶୁଣାଯାଇଥିଲା ଯେ ଜାର୍ ଏବଂ ତାଙ୍କ ପରିବାରର ଭାଗ୍ୟଡୋରି ତାଙ୍କ ନିଜ ଭାଗ୍ୟଡୋରି ସହିତ ଏକାଠି ଛନ୍ଦିହୋଇ ରହିଛି । ସେ ଯାହାହେଉ ରାସପୁଟିନ ରାଜପରିବାରର ଚିକିତ୍ସକ ଭୂମିକା ଗ୍ରହଣ କରିବାରେ ସନ୍ତୁଷ୍ଟ ହୋଇନଥିଲେ ଏବଂ ରାଜନୀତି ବିଷୟରେ ଅନଧିକାର ଚର୍ଚ୍ଚା କରିଥିଲେ । ଜାରିନାଙ୍କୁ ପ୍ରଭାବିତ କରି ମନ୍ତ୍ରୀମାନଙ୍କୁ ବରଖାସ୍ତ କରାଉଥିଲେ ଏବଂ ସେମାନଙ୍କ ସ୍ଥାନରେ ନୂତନ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରାଉଥିଲେ । ରାସପୁଟିନଙ୍କ ସୁପାରିଶରେ ଷ୍ଟରମାରଙ୍କ ପରି ଜଣେ ଅଯୋଗ୍ୟ ଲୋକଙ୍କୁ ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ କରାଯାଇଥିଲା ଏବଂ ତାଙ୍କୁ ମଧ୍ୟ ବୈଦେଶିକ ବ୍ୟାପାର ଦପ୍ତର ଦିଆଯାଇଥିଲା । ପ୍ରୋଟପୋପଭ ନାମକ ଅନ୍ୟ ଜଣେ ଅଯୋଗ୍ୟ ବ୍ୟକ୍ତିଙ୍କୁ ଆଭ୍ୟନ୍ତରୀଣ ବ୍ୟାପାର ମନ୍ତ୍ରୀରୂପେ ନିଯୁକ୍ତ କରାଯାଇଥିଲା । ପ୍ରଥମ ବିଶ୍ୱଯୁଦ୍ଧର ଅତି ସଙ୍କଟମୟ କାଳରେ ଏହିପରି ଅଯୋଗ୍ୟ ବ୍ୟକ୍ତିମାନେ ରୁଷିଆର ପରିଚାଳନାଭାର ଗ୍ରହଣ କରିଥିଲେ ।

ଡୁମାର ସଭ୍ୟମାନଙ୍କୁ କେବଳ ରୁଷିଆର ଏହି ପରିସ୍ଥିତି ଜଣା ଥିଲା । ରୁଷିଆର ମୁଖ୍ୟ ସେନାପତି ଗ୍ରାଣ୍ଡଡ୍ୟୁକ୍ ନିକୋଲାସ ରୁଷିଆର ଶାସନ କ୍ଷେତ୍ରରେ ରାସପୁଟିନଙ୍କ ହସ୍ତକ୍ଷେପର ସମାଲୋଚନା କରିଥିଲେ ଓ ଜାରିନାଙ୍କୁ ପାଗଳାଗାରଦରେ ଭର୍ତ୍ତି କରିବା ଉଚିତ ବୋଲି ସେ କହିଥିବାର ଶୁଣାଗଲା । ରାସପୁଟିନଙ୍କୁ ଅପମାନିତ କରିଥିବାରୁ ଗ୍ରାଣ୍ଡଡ୍ୟୁକ ନିକୋଲାସଙ୍କୁ ପଦଚ୍ୟୁତ କରାଯାଇଥିଲା । ଜାର୍ ନିଜେ ସୈନ୍ୟବାହିନୀର ପରିଚାଳନା ଦାୟିତ୍ୱ ନେଇ ଯେତେବେଳେ ଯୁଦ୍ଧର ସମ୍ମୁଖସମରକୁ ପ୍ରସ୍ଥାନ କଲେ ସେତେବେଳେ ଜାରିନା ରାସପୁଟିନଙ୍କ ପରାମର୍ଶରେ ନୀତି ନିର୍ଦ୍ଦେଶ କରିବାପାଇଁ ଅଧିକ ସ୍ୱାଧୀନତା ଲାଭ କରିଥିଲେ । ୧୯୧୬ ମସିହାରେ ଡୁମାର ଅଧିବେଶନ ବସିଥିଲାବେଳେ ସଦସ୍ୟମାନେ ରୁଷିଆର କୁଶାସନ ବିରୁଦ୍ଧରେ କ୍ରୋଧ ପ୍ରକାଶ କରିଥିଲେ । ଶତ୍ରୁପକ୍ଷଙ୍କ ସହିତ ରୁଷିଆ ପୃଥକ୍ ସନ୍ଧି କରିବ ବୋଲି ଗୁଜବ ପ୍ରଚାର ହେଲା ମାତ୍ରେ ରୁଷ ସରକାରଙ୍କୁ ତୀବ୍ର ସମାଲୋଚନା କରାଯାଇଥିଲା । ଡୁମାରେ ମିଲ୍ୟୁକଭଙ୍କର ଉତ୍ତେଜନାପୂର୍ଣ୍ଣ ବକ୍ତୃତା ଷ୍ଟରମାରଙ୍କ ପତନର ସଙ୍କେତ ଥିଲା । ଷ୍ଟରମାରଙ୍କ ପତନ ପରେ ଯେ ତାଙ୍କର ଉତ୍ତରାଧିକାରୀ ହେଲେ ସେ ତାଙ୍କ ପରି ଜଣେ ଅଯୋଗ୍ୟ ବ୍ୟକ୍ତି ଥିଲେ; କିନ୍ତୁ ଷ୍ଟରମାରଙ୍କୁ ଯେପରି ଜଣେ ବିଶ୍ୱାସଘାତକ ବୋଲି ସନ୍ଦେହ କରାଯାଇଥିଲା ତାଙ୍କର ଉତ୍ତରାଧିକାରୀଙ୍କୁ ଅନ୍ତତଃ ସେପରି ସନ୍ଦେହ କରାଯାଇ ନଥିଲା । ରାସପୁଟିନଙ୍କ ବିରୁଦ୍ଧରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା ଏବଂ

ବିଶିଷ୍ଟ ରକ୍ଷଣଶୀଳ ଲୋକେ ତାଙ୍କର ମୁଣ୍ଡକାଟ ପାଇଁ ଦୃଢ଼ଭାବରେ ଦାବି କରିଥିଲେ । ରୁଷିଆର ରାଜଦରବାରରେ ଯେତେବେଳେ ଭୂତ ରାଜତ୍ୱ କରୁଥିଲା ପରି ମନେହେଉଥିଲା ଓ ଦିନକୁ ଦିନ ସେଠାରେ ସଭ୍ୟ ସଂଖ୍ୟା କମିବାକୁ ଲାଗିଲା ।

ରୁଷିଆରେ ଅବସ୍ଥା ଏପରି ଅସମ୍ଭାଳ ହୋଇଥିଲା ଯେ ନିମ୍ନସ୍ତରରୁ ଯଦି ବିପ୍ଳବ ସଙ୍ଗଠିତ ହୋଇ ନଥାନ୍ତା, ଉଚ୍ଚସ୍ତରରୁ ତାହା ନିଶ୍ଚୟ ସଙ୍ଗଠିତ ହୋଇଥାନ୍ତା । ୧୯୧୬ ମସିହା ଡିସେମ୍ବର ମାସରେ ପୂର୍ଣ୍ଣାତ୍ମା ବୋଲଉଥିବା ରାସପୁଟିନଙ୍କୁ ନିର୍ମମ ଭାବରେ ହତ୍ୟା କରାଯାଇ ତାଙ୍କର ମୃତଦେହକୁ ନେଭାରେ ଫିଙ୍ଗି ଦିଆଯାଇଥିଲା । ଜାରିନାଙ୍କର ଚକ୍ରାନ୍ତକାରୀ ମଧ୍ୟରୁ କେବଳ ପ୍ରଟୋପୋପଭ ରହିଲେ । ରୁଷ ସରକାରଙ୍କ ବିରୁଦ୍ଧରେ ଉତ୍ତେଜନା ଦିନକୁ ଦିନ ବୃଦ୍ଧି ପାଉଥିଲେ ମଧ୍ୟ ସରକାର ପରିସ୍ଥିତିକୁ ସୁଧାରିବା ପାଇଁ କୌଣସି ପଦକ୍ଷେପ ନେଇ ନ ଥିଲେ କି ଭାରୀର ବିପର୍ଯ୍ୟୟ ଘଟିପାରେ ବୋଲି ମଧ୍ୟ ଚିନ୍ତାକରି ପାରି ନଥିଲେ । ତା'ଛଡ଼ା ସରକାର ଯୁଦ୍ଧ ପରିଚାଳନା କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ଜାରିନା ଆଲେକ୍‌ଜାଣ୍ଡ୍ରା ତାଙ୍କର ବିରୋଧୀମାନଙ୍କୁ ହେୟଜ୍ଞାନ କରିଥିଲେ ଏବଂ ନିରଙ୍କୁଶ ଶାସନ ବଜାୟ ରଖିବାକୁ ଦୃଢ଼ପ୍ରତିଜ୍ଞ ହୋଇଥିଲେ । ସେ ଏବଂ ତାଙ୍କର କୁଚକ୍ରୀ ଗୋଷ୍ଠୀ ପ୍ରକାଶ୍ୟରେ ଯୁଦ୍ଧ ବିରୋଧୀ ବୋଲି ଘୋଷିତ ହୋଇଥିଲେ । ଜାରିନାଙ୍କ ନିର୍ଦ୍ଦେଶରେ ସରକାର ଯୁଦ୍ଧ ପରିଚାଳନାରେ ଅବହେଳା କରିଥିଲେ ବୋଲି ସନ୍ଦେହ କରାଯାଇଥିଲା । ଯୁଦ୍ଧ ପରିଚାଳନାରେ ସରକାର ବାଧା ଦେଉଛନ୍ତି ବୋଲି ଡୁମାରେ ଖୋଲାଖୋଲି ଅଭିଯୋଗ କରାଯାଇଥିଲା ।

## ମାର୍ଚ୍ଚ ବିପ୍ଳବ ( ୮ ମାର୍ଚ୍ଚ—ନୂତନ ପଞ୍ଜିକା, ୨୩ ଫେବୃଆରୀ—ପୂର୍ବ ପ୍ରଚଳିତ ପଞ୍ଜିକା )

## The March Revolution (i) ( 8 March N. S., 23 February O. S. )

ଲୋକମାନଙ୍କର ଅସନ୍ତୋଷ ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଏହି ଅସନ୍ତୋଷ ଫଳରେ କୃଷକମାନେ ପଲ୍ଲୀଅଞ୍ଚଳରେ ଦଙ୍ଗା ଆରମ୍ଭ କରିଦେଲେ । ମଜଦୁରମାନେ

---

(i) According to Julian Calendar (Old style) the Revolution took place in February 1917 but according to Gregorian Calendar (New style) it took place in March 1917. Most of the European Countries changed to the Gregorian Calendar (New style) in the 18th Century but the change was not made in Russia until 1918.

ପଲ୍ଲୀଅଞ୍ଚଳରେ ଧର୍ମଘଟ କଲେ ଏବଂ କେତେକ ଲୋକ ସୈନ୍ୟବାହିନୀ ଛାଡ଼ି ପଳାଇଲେ । ଅବସ୍ଥା ଗୁରୁତର ଆକାର ଧାରଣକଲା ଯେତେବେଳେ ଲୋକମାନେ ଖାଦ୍ୟ ସାମଗ୍ରୀ ଅଭାବରୁ ବହୁ ଦୁଃଖ ଦୁର୍ଦ୍ଦଶା ଭୋଗିଲେ । ୧୯୧୭ ମସିହା ମାର୍ଚ୍ଚ ମାସରେ ରୁଷିଆର ରାଜଧାନୀ ପେଟ୍ରୋଗ୍ରାଡ (Petrograd) (ii) ଠାରେ ଖାଦ୍ୟର ଅଭାବ ପଡ଼ିବାରୁ ଲୋକେ ଆନ୍ଦୋଳନ ଆରମ୍ଭ କରିଦେଲେ । ମଜଦୁର ଶ୍ରେଣୀ ପେଟ୍ରୋଗ୍ରାଡରେ ଧର୍ମଘଟ କଲାବେଳେ, କେତେକ ଲୋକ ରୋଟି ଖାଇବାକୁ ନପାଇ ସେଠାରେ ଦଙ୍ଗା ଆରମ୍ଭ କରିଦେଲେ । ଆଉ କେତେକ ଲୋକ ସ୍ୱତଃପ୍ରବୃତ୍ତ ହୋଇ ନିରଙ୍କୁଶ ଶାସନ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଏହିପରିଭାବରେ ରୁଷିଆରେ ମାର୍ଚ୍ଚ ବିପ୍ଳବର ସୂତ୍ରପାତ ହେଲା । କେନ୍ଦ୍ର ସରକାର କିମ୍ବା ପୌର ଶାସନ କେହି ଏସବୁ ଧର୍ମଘଟ, ଦଙ୍ଗା ଏବଂ ବିକ୍ଷୋଭ ଦମନ କରିପାରି ନଥିଲେ; କାରଣ ଦୁର୍ଗରେ ରହିଥିବା ସୈନ୍ୟଦଳ ବିଦ୍ରୋହୀ ହୋଇ-ଉଠିଲେ ଏବଂ ଶାନ୍ତି ଶୃଙ୍ଖଳା ରକ୍ଷାକରିବାର ଦାୟିତ୍ୱ ତୁଲାଇବାକୁ ମନାକରିଦେଲେ । ଯେଉଁ ସୈନ୍ୟମାନଙ୍କୁ ବିଦ୍ରୋହ ଦମନ କରିବାକୁ ପଠାଗଲା ସେମାନେ ବିଦ୍ରୋହ ଦମନକରିବା ପରିବର୍ତ୍ତେ 'ରୋଟି ଏବଂ ସ୍ୱାଧୀନତା' ପାଇଁ ଚିତ୍କାର କରୁଥିବା ବିକ୍ଷୋଭକାରୀଙ୍କ ସହିତ ଯୋଗଦେଇଥିଲେ । ଦିନକୁ ଦିନ ପରିସ୍ଥିତି ଅଧିକ ଖରାପ ହେଲା ଏବଂ ମାର୍ଚ୍ଚ ୧୪ ତାରିଖ ଦିନ ବିଦ୍ରୋହକୁ ଠିକ୍ ବାଟରେ ପରିଚାଳନା କରିବା ଏବଂ ସ୍ଥାନୀୟ ଶାସନକାର୍ଯ୍ୟ ସମ୍ପାଦନ କରିବାପାଇଁ ଏକ ସୋଭିଏତ୍ (ଶ୍ରମିକ ଓ ସୈନ୍ୟ ସମିତି) ପ୍ରତିଷ୍ଠା କରାଯାଇଥିଲା । ଅବିଳମ୍ବେ ଉଇଣ୍ଟର ପାଲେସ (ଶୀତ ଋତୁ କଟାଇବାପାଇଁ ପ୍ରାସାଦ) ଉପରେ ଲାଲଝଣ୍ଡା ଉଡ଼ିଥିଲା । ବିକ୍ଷୁବ୍ଧ ଜନତା ରୁଷୀୟ 'ବାଷ୍ଟାଇଲ' କୁହାଯାଉଥିବା ସେଣ୍ଟସ୍ପିଟର ଏବଂ ପଲ୍ ଦୁର୍ଗକୁ ଅଧିକାର କରିନେଇଥିଲେ ।

ମାର୍ଚ୍ଚ ୧୫ ତାରିଖ ଦିନ ଦ୍ୱିତୀୟ ନିକୋଲାସ୍ ଡୁମାକୁ ଭାଙ୍ଗିଦେବାପାଇଁ ଉଦ୍ୟମ କରିଥିଲେ; କିନ୍ତୁ ତାହା ସଫଳ ହୋଇ ନଥିଲେ । ଡୁମା ତାର ସ୍ଥିତି ବଜାୟ ରଖିଥିଲା । ମାତ୍ର ଦୁଇଦିନ ପରେ ଏହାର ଅନୁରୋଧରେ ଜାର୍ ଦ୍ୱିତୀୟ ନିକୋଲାସ୍ ରାଜସିଂହାସନ ତ୍ୟାଗ କରିଥିଲେ । ସେ ଯେତେବେଳେ ଦେଖିଲେ ଯେ ତାଙ୍କର ଦେହରକ୍ଷୀ ତାଙ୍କୁ ଛାଡ଼ିଗଲା ସେତେବେଳେ ତାଙ୍କର ରାଜସିଂହାସନ ତ୍ୟାଗ କରିବା ଛଡ଼ା ଅନ୍ୟ ଗତି କିଛି ନଥିଲା । ପଲ୍ଲୀଅଞ୍ଚଳରେ ଥିବା ତାଙ୍କର ଏକ ରାଜପ୍ରାସାଦକୁ ସେ ଯିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ସେ ଆହୁରି ମଧ୍ୟ କହିଥିଲେ, 'ମୁଁ ଫୁଲ ଭଲପାଏ ।' ସେ ଯାହାହେଉ ତାଙ୍କୁ ଏବଂ ତାଙ୍କ ପରିବାରକୁ ଅତି ନିକଟରେ ଥିବା ଏକ ପ୍ରାସାଦରେ ବନ୍ଦୀକରି ରଖାଯାଇଥିଲା । ସେମାନଙ୍କୁ ପରେ ଧାରାବାହିକଭାବେ ସ୍ଥାନାନ୍ତର କରିବାଯାଏ ସେମାନେ

---

(ii) St. Petersburg was thought to be too 'German' of the name was changed to Petrograd in 1914. Petrograd became Leningrad in 1924.

ସେଠାରେ ରହିଥିଲେ । ଇତ୍ୟବସରରେ କେହି ଖାଲିପଡ଼ିଥିବା ରାଜସିଂହାସନ ଅଧିକାର କରିବାକୁ ଚାହିଁନଥିଲେ । ତେଣୁ ରୁଷିଆ ବସ୍ତୁତଃ ଏକ ସାଧାରଣତନ୍ତ୍ରରେ ପରିଣତ ହୋଇଥିଲା ।

ଏହା ଏକ ବିଚିତ୍ର ସାଧାରଣତନ୍ତ୍ର ଥିଲା । ଡୁମାଦ୍ୱାରା ମନୋନୀତ କ୍ୟାଡେଟମାନଙ୍କୁ (ସାମ୍ବିଧାନିକ ଗଣତନ୍ତ୍ରବାଦୀମାନଙ୍କୁ) ନେଇ ଏକ ଅସ୍ଥାୟୀ ସରକାର ଗଢ଼ାଯାଇଥିଲା ଏବଂ ପେଶାଦାର ରାଜନୀତିଜ୍ଞ ମିଲ୍ୟୁକଭ୍ ସେମାନଙ୍କୁ ପରିଚାଳିତ କରୁଥିଲେ । କ୍ୟାଡେଟମାନେ ଅସ୍ଥାୟୀ ସରକାର ଗଠନ କରିଥିଲେ ମଧ୍ୟ ପ୍ରକୃତ କ୍ଷମତା ମେନସେଭିକ ବା ନରମପନ୍ଥୀ ସମାଜବାଦୀମାନଙ୍କର ଆୟତ୍ତାଧୀନ ସୋଭିଏଟ୍ ପ୍ରୟୋଗ କରୁଥିଲା । ସେହି କ୍ଷମତା ଅସ୍ଥାୟୀ ସରକାରଙ୍କୁ ଅଭିଜାତ ସମ୍ପ୍ରଦାୟ ଏବଂ ଉଚ୍ଚ-ମଧ୍ୟବିତ୍ତଗୋଷ୍ଠୀ ନିୟନ୍ତ୍ରଣ କରୁଥିଲାବେଳେ ସୋଭିଏଟ୍ ମଜଦୁର ଶ୍ରେଣୀର ଲୋକଙ୍କ କର୍ତ୍ତୃତ୍ୱରେ ଥିଲା । ଜାର୍‌ଙ୍କ ପତନ ପରେ ଉଭୟ ସୋଭିଏଟ୍ ଏବଂ ଅସ୍ଥାୟୀ ସରକାର ଜାର୍‌ଙ୍କ ହାତରୁ ଚାଲିଯାଇଥିବା କ୍ଷମତାର ଅଧିକାରୀ ବୋଲି ଦାବିକରିଥିଲେ । ସୋଭିଏଟ୍‌କୁ ଆୟତ୍ତାଧୀନରେ ରଖିଥିବା ମେନସେଭିକ୍‌ମାନେ ଅସ୍ଥାୟୀ ସରକାରଙ୍କୁ ଶାସନ ଦାୟିତ୍ୱ ଦେବାକୁ ରାଜି ହୋଇଥିଲେ; କାରଣ ସେମାନେ ବିଶ୍ୱାସ କରୁଥିଲେ ଯେ ସାମାଜିକ ବିପ୍ଲବଆଡ଼କୁ ଗତିକରିବାକୁ ହେଲେ ପ୍ରଥମ ପଦକ୍ଷେପ ହିସାବରେ ବୁର୍ଜୋଆ (ଉଚ୍ଚ-ମଧ୍ୟବିତ୍ତ) ପାର୍ଲାମେଣ୍ଟର ଆବଶ୍ୟକତା ରହିଛି; କିନ୍ତୁ ମେନସେଭିକମାନେ ବୁର୍ଜୋଆମାନଙ୍କ ଅପେକ୍ଷା ଅଶାନ୍ତିର ଉତ୍ପୃଷ୍ଠସ୍ଥଳ ସହିତ ଅଧିକ ସଂସ୍ପର୍ଶରେ ଆସୁଥିବାରୁ ଏବଂ ମଜଦୁର ଓ ସୈନ୍ୟମାନଙ୍କ ଉପରେ ସେମାନଙ୍କର ସାଂଗଠନିକ ନିୟନ୍ତ୍ରଣ ଥିବାରୁ ସେମାନେ ରୁଷିଆରେ ବାସ୍ତବ କ୍ଷମତା ଅଧିକାର କରିଥିଲେ । ତେଣୁ ପେଟ୍ରୋଗ୍ରାଡ ସୋଭିଏଟ୍ ଅସ୍ଥାୟୀ ସରକାରରେ ଯୋଗ ନଦେଇଥିଲେ ମଧ୍ୟ ତାହାର ଅନୁମୋଦନକ୍ରମେ ସେ ସରକାର ପ୍ରତିଷ୍ଠିତ ହୋଇଥିଲା । ଯଦିଓ ଅଭିଜାତ ସମ୍ପ୍ରଦାୟ ଓ ଉଚ୍ଚ-ମଧ୍ୟବିତ୍ତ ଗୋଷ୍ଠୀର ଲୋକେ ଅସ୍ଥାୟୀ ସରକାରର ସଭ୍ୟ ଥିଲେ, ତଥାପି ସୋଭିଏଟ ଏବଂ ଅସ୍ଥାୟୀ ସରକାର ମଧ୍ୟରେ ଯୋଗସୂତ୍ର ରକ୍ଷାକରିବାପାଇଁ ସୋଭିଏଟ୍‌ର ଉପସଭାପତି ଆଲେକ୍‌ଜାଣ୍ଡାର କେରେନସ୍କିଙ୍କୁ ବିଚାର ବିଭାଗୀୟ ମନ୍ତ୍ରୀ ନିଯୁକ୍ତ କରାଯାଇଥିଲା । ସୋଭିଏଟ୍ ବିପ୍ଳବର ଏକପ୍ରକାର ରକ୍ଷକ (Watch dog) ବୋଲି ଦାବି କରିଥିଲା । ତା'ଛଡ଼ା ଏହା ଅସ୍ଥାୟୀ ସରକାରର ଯାଞ୍ଚକାରୀ ପରି କାର୍ଯ୍ୟ କରିଥିଲା ଏବଂ ଯଥାସମୟରେ ସେ ସରକାରକୁ ନିଷ୍ପ୍ରଭ କରିଦେଇଥିଲା । ଫ୍ରାନ୍‌ସର ଜାକୋବିନ କ୍ଲବ୍ ସଦୃଶ ଏହାର ଶାଖା ସବୁ ଦେଶର ଚାରିଆଡ଼େ ପ୍ରତିଷ୍ଠା କରାଯାଇଥିଲା । ସୋଭିଏଟ୍‌ଗୁଡ଼ିକ ଏତେ ଶକ୍ତିଶାଳୀ ହୋଇଗଲେ ଯେ ସେଗୁଡ଼ିକ ଅତି ଅଳ୍ପଦିନ ମଧ୍ୟରେ ସରକାର-ପରିଚାଳନା ନିଜ ହାତକୁ ନେଇଗଲେ । ସୁତରାଂ ବିପ୍ଳବ ଏକ ଉଦାରନୈତିକ ଓ ଗଣତାନ୍ତ୍ରିକ ଆନ୍ଦୋଳନରୂପେ କାର୍ଯ୍ୟକରିବାରେ ବ୍ୟର୍ଥ ହୋଇଯାଇଥିଲା । ଏହି ବ୍ୟର୍ଥତାପାଇଁ ମୁଖ୍ୟତଃ ଦୁଇଟି କାରଣ ଦାୟୀ; ଦ୍ୱୈତ ନେତୃତ୍ୱ ଏବଂ ସର୍ବୋଚ୍ଚ ସ୍ଥାନରେ ଅରାଜକତା । ଏତଦ୍ ବ୍ୟତୀତ ଅନ୍ୟାନ୍ୟ କାରଣମାନ ମଧ୍ୟ ରହିଛି ।

ଅସ୍ଥାୟୀ ସରକାର ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରଚଳିତ ଥିବା ଉଦାରନୈତିକ ସଂସ୍କାରମାନ ଯଥା:—ବାକ୍ ସ୍ୱାତନ୍ତ୍ର୍ୟ, ସମ୍ମେଳନ ସ୍ୱାତନ୍ତ୍ର୍ୟ, ମୁଦ୍ରଣ ସ୍ୱାତନ୍ତ୍ର୍ୟ ଓ ଧର୍ମ-ସ୍ୱାତନ୍ତ୍ର୍ୟ ମଞ୍ଜୁର କରିଥିଲେ ଏବଂ ରୁଷିଆରେ ଏକ ସ୍ଥାୟୀ ସରକାରର ଗଠନପ୍ରଣାଳୀ ନିର୍ଣ୍ଣୟକରିବା ପାଇଁ ଅବିଳମ୍ବେ ଏକ ଜାତୀୟ ସାମ୍ବିଧାନିକ ସଭା ନିର୍ବାଚିତ ହେବ ବୋଲି ଘୋଷଣା କରିଥିଲେ । ତା'ଛଡ଼ା ଅସ୍ଥାୟୀ ସରକାର ଜନସାଧାରଣଙ୍କର ସ୍ୱଦେଶ ପ୍ରେମକୁ ଉଦ୍ଦୀପିତ କରିବା ସଙ୍ଗେ ସଙ୍ଗେ ଯୁଦ୍ଧ ଚାଲୁରଖିବା ପାଇଁ ମଧ୍ୟ ଘୋଷଣା କରିଥିଲେ । ସେହି ସରକାରକୁ ପରିଚାଳନା କରୁଥିବା କ୍ୟାଡେଟମାନେ ପ୍ରକୃତରେ ସେମାନଙ୍କର ଆଦର୍ଶ ଏବଂ ଦୃଷ୍ଟିକୋଣରେ ଏତେଦୂର ପାଶ୍ଚାତ୍ୟ ଏବଂ ନିଜ ଜନ୍ମଭୂମିରେ ଏତେଦୂର ବିଦେଶୀୟ ଥିଲେ ଯେ ରୁଷିଆକୁ ଠିକ୍‌ଭାବେ ଉପଲବ୍ଧି କରିପାରିନଥିଲେ । ରୁଷବାସୀ ଏତେଦୂର ଅନୁନ୍ନତ ଏବଂ ଦୁଃଖ ଓ ଅବସାଦରେ ଏତେଦୂର ଭାଙ୍ଗି ପଡ଼ିଥିଲେ ଯେ କ୍ୟାଡେଟମାନଙ୍କର ଏକ ସୂକ୍ଷ୍ମ ଏବଂ ଉଦାରନୈତିକ ନୈତୃତ୍ୱସହିତ ସେମାନେ ନିଜକୁ ଖାପଖୁଆଇ ପାରି-ନଥିଲେ । ଦେଶର ଜନସାଧାରଣ ରାଜନୈତିକ ସଂସ୍କାରପାଇଁ ଆଦୌ ଆଗ୍ରହ ପ୍ରକାଶ କରିନଥିଲେ । ସେମାନଙ୍କର ଜରୁରୀ ଆବଶ୍ୟକତାଗୁଡ଼ିକ ହେଲା, ଶାନ୍ତି, ରୋଟି ଏବଂ ଭୂମି । ସେମାନେ ସାମ୍ବିଧାନିକ ସଭା ଡକାହେବା ଯାଏ କିମ୍ବା ସେମାନଙ୍କର କୃଷି ସମସ୍ୟାର ବୈଜ୍ଞାନିକ ସମାଧାନ ପର୍ଯ୍ୟନ୍ତ ଅପେକ୍ଷାକରିବାକୁ ପ୍ରସ୍ତୁତ ନଥିଲେ । ସେମାନେ କୌଣସି ଆଇନ ଓ ଶୃଙ୍ଖଳା ଚାହୁଁନଥିଲେ କି ଅଧିକ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ନଥିଲେ । ଜାରଙ୍କ ପତନ ସଙ୍ଗେ ସଙ୍ଗେ ଯେଉଁ ନୈତିକ ବନ୍ଧନ ସେମାନଙ୍କୁ ଏକାଠି ବାନ୍ଧିରଖିଥିଲା, ତାହା ମଧ୍ୟ ହଠାତ୍ ଛିଣ୍ଡିଯାଇଥିଲା ଏବଂ ଭୌତିକ ଏକତା ଧ୍ୱଂସକାରୀ ଯୁଦ୍ଧର ଚାପରେ ଭୁସୁଡ଼ି ପଡ଼ିଥିଲା । ତା' ପରେ ପରେ ଆସିଲା ବିପ୍ଳବ ।

ଜନସାଧାରଣ ରାଜନୈତିକ ଆଦର୍ଶକୁ ଭିତ୍ତିକରି କୌଣସି ବିପ୍ଳବ ଚାହୁଁନଥିଲେ । ସେମାନେ ଏପରି ଏକ ବିପ୍ଳବ ଚାହୁଁଥିଲେ, ଯାହାକି ସମ୍ପୂର୍ଣ୍ଣ ସାମାଜିକ ଏବଂ ଅର୍ଥନୈତିକ ପରିବର୍ତ୍ତନ ଆଣିପାରିବ । ତେଣୁ ଯେଉଁ ବିପ୍ଳବ ଏକ ଉଦାରନୈତିକ ଆନ୍ଦୋଳନରୂପେ ଆରମ୍ଭ ହୋଇଥିଲା, ତାହା କ୍ରମଶଃ ସମାଜବାଦ ଆଡ଼କୁ ଗତି କରିଥିଲା । ସମଗ୍ର ରୁଷିଆରେ ମଜଦୁରମାନଙ୍କୁ ନେଇ ସୋଭିଏଟ୍‌ମାନ ପ୍ରତିଷ୍ଠା କରାଯାଇଥିଲା ଏବଂ ସେ ସବୁ ସାର୍ବଜନୀନ ବିକ୍ଷୋଭ ଏବଂ ପ୍ରଚାରର କେନ୍ଦ୍ର ହୋଇଥିଲା । ବିଶୃଙ୍ଖଳା ସାରା ଦେଶରେ ବ୍ୟାପି ଯାଇଥିଲା । ପ୍ରଥମେ କାରଖାନାଗୁଡ଼ିକର ବିଶୃଙ୍ଖଳାର ଶିକାର ହୋଇଥିଲା ଏବଂ ଆତ୍ମପ୍ରତ୍ୟୟ ହରାଇଥିଲା । ସେଠାରେ ମଜଦୁରମାନେ ମନଦେଇ କାର୍ଯ୍ୟ କରିନଥିଲେ ଏବଂ ସେମାନେ ଅଧିକ ମଜୁରି ଓ କମ ସମୟ କାମପାଇଁ ଧର୍ମଘଟ କରିଥିଲେ । ତା'ଛଡ଼ା ବହୁ ସମୟ ଧରି ରାଜନୈତିକ ଆଲୋଚନାରେ ସମୟ ନଷ୍ଟ କରୁଥିଲେ । ପଲ୍ଲୀଅଞ୍ଚଳମାନଙ୍କରେ କୃଷକମାନେ ସୋଭିଏଟ୍‌ମାନଙ୍କଠାରୁ ପ୍ରେରଣା ପାଇ ବୈପ୍ଳବିକ ଭାବ ପୋଷଣ କରିଥିଲେ । ବହୁ କ୍ଷେତ୍ରରେ ସେମାନେ ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କର ଜମିବାଡ଼ି ଦଖଲ କରିନେଇଥିଲେ ଏବଂ

ତିନକୁ ତିନ ଅଧିକରୁ ଅଧିକ ଜମି ପଡ଼ିଆ ପଡ଼ିଲା । ଦେଶରେ ବିଶୃଙ୍ଖଳା ବ୍ୟାପିବା ସଙ୍ଗେ ସଙ୍ଗେ ରୁଷିଆର ଅର୍ଥନୈତିକ ବ୍ୟବସ୍ଥା ମଧ୍ୟ ବିପର୍ଯ୍ୟସ୍ତ ହୋଇଥିଲା । ସହରମାନଙ୍କରୁ ପଲ୍ଲୀଅଞ୍ଚଳଗୁଡ଼ିକୁ ପଣ୍ୟଦ୍ରବ୍ୟ ଯିବା ବନ୍ଦ ହୋଇଗଲା ଏବଂ ସେହିପରି ପଲ୍ଲୀ-ଅଞ୍ଚଳଗୁଡ଼ିକରୁ ସହରମାନଙ୍କୁ ଖାଦ୍ୟସାମଗ୍ରୀ ଆଉ ପଠାଗଲାନାହିଁ । ଫଳରେ ସହରମାନଙ୍କରେ ଖାଦ୍ୟଦ୍ରବ୍ୟର ଅଭାବ ପଡ଼ିଲା ଓ ଦୁର୍ଭିକ୍ଷର ଆଶଙ୍କା ଦେଖାଦେଲା । ସୈନ୍ୟବାହିନୀରେ କାର୍ଯ୍ୟକରୁଥିବା କୃଷକମାନଙ୍କ ମଧ୍ୟରୁ ଅନେକେ ସମସ୍ତ ବ୍ୟବହାର-ଯୋଗ୍ୟ ଜମି ଦଖଲ ହୋଇଯିବା ପୂର୍ବରୁ ସୈନ୍ୟବାହିନୀ ଛାଡ଼ି ଜମି ଦଖଲକରିବା ଉଦ୍ଦେଶ୍ୟରେ ଗ୍ରାମାଞ୍ଚଳକୁ ଧାଇଁଥିଲେ । ସାମରିକ-ବାହିନୀର ପୁରୋଭାଗ ଭାଙ୍ଗିପଡ଼ିବା ଫଳରେ ବିଶୃଙ୍ଖଳା ଅତିମାତ୍ରାରେ ବୃଦ୍ଧିପାଇଥିଲା । ଶାସନକ୍ଷେତ୍ରରେ ଗ୍ରାମାଞ୍ଚଳ ଓ ସହରାଞ୍ଚଳ-ମାନଙ୍କରେ ବିଶୃଙ୍ଖଳା ଓ ଅରାଜକତା ଦେଖାଦେବା ସଙ୍ଗେ ସଙ୍ଗେ ସୈନ୍ୟବାହିନୀରେ ମଧ୍ୟ ବିଶୃଙ୍ଖଳା ଓ ଅରାଜକତା ଦେଖାଦେଇଥିଲା । ସାଧାରଣ ସୈନ୍ୟମାନେ ସେମାନଙ୍କର ଉଚ୍ଚପଦାଧିକାରୀମାନଙ୍କୁ ମାନିଲେ ନାହିଁ ଓ ସେମାନଙ୍କ ମଧ୍ୟରୁ କେତେକଙ୍କୁ ହତ୍ୟାକଲେ । କେତେକ କ୍ଷେତ୍ରରେ ରୁଷସୈନ୍ୟମାନେ ଗଡ଼ିଖାଇ ପାରହୋଇ ଅପର ପାର୍ଶ୍ୱକୁ ଯାଇଥିଲେ ଏବଂ ଜର୍ମାନମାନଙ୍କ ସହିତ ବନ୍ଧୁତା କରିଥିଲେ । ସୈନ୍ୟମାନଙ୍କୁ ମଧ୍ୟ ସୋଭିଏଟ୍‌ରେ ପ୍ରବେଶାଧିକାର ଦିଆଗଲା, ତେଣୁ ସେମାନଙ୍କୁ ରାଜନୀତିକୁ ଟାଣିନିଆ-ଯାଇଥିଲା । ଏ ସବୁ କରିବା ଫଳରେ ସୈନ୍ୟବାହିନୀ ଯୁଦ୍ଧର ଏକ ହତିଆର ହିସାବରେ ଅଦରକାରୀ ହୋଇପଡ଼ିଲା । ଶେଷରେ ଫିନ୍ ଓ ପୋଲ୍ ପ୍ରଭୃତି ଅଧୀନସ୍ଥ ଜାତିଗୁଡ଼ିକ ସେମାନଙ୍କର ସ୍ୱାଧୀନତା ଦୃଢ଼ଭାବରେ ଘୋଷଣାକରିବା ସଙ୍ଗେ ସଙ୍ଗେ ରୁଷିଆ ସହିତ ସେମାନଙ୍କ ପରାଧୀନତାର ବନ୍ଧନ ଛିନ୍ନକରିବା ଆରମ୍ଭ କରିଦେଲେ । ରୁଷ ସାମ୍ରାଜ୍ୟ ଦ୍ରୁତଗତିରେ ଖଣ୍ଡ ଖଣ୍ଡ ହୋଇଯିବାର ସମ୍ଭାବନା ଦେଖାଦେଲା । ରୁଷିଆର ଭୌତିକ ଓ ନୈତିକ ସ୍ଥିତି ଦୋହଲି ଯାଇଥିଲା ।

ଉଦାରପନ୍ଥୀ କ୍ୟାଡେଟ୍‌ମାନଙ୍କର ଯୁଦ୍ଧନୀତି ଏଥିମଧ୍ୟରେ ଜନପ୍ରିୟତା ହରାଇଥିଲା । ତେଣୁ ସେମାନେ ଅସ୍ଥାୟୀ ସରକାରରୁ ବିତାଡ଼ିତ ହୋଇଥିଲେ ଏବଂ ସେମାନଙ୍କର ସ୍ଥାନ ମେନସେଭିକ୍‌ମାନେ ପୂରଣ କରିଥିଲେ । କ୍ୟାଡେଟ୍‌ମାନଙ୍କର ପତନର ପ୍ରଧାନ କାରଣ ହେଲା, ସେମାନେ ରୁଷିଆର ମିତ୍ରମାନଙ୍କ ସହାୟତାରେ କ୍ରମାଗତ ଯୁଦ୍ଧ ଚଳାଇବାପାଇଁ ସେମାନଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । ସେମାନଙ୍କର ପତନ ପରେ ମେନସେଭିକ୍‌ମାନଙ୍କର ନେତା ଆଲେକ୍‌ଜାଣ୍ଡାର କେରେନ୍‌ସ୍କି ପ୍ରଥମେ ଯୁଦ୍ଧମନ୍ତ୍ରୀ ଏବଂ ପରେ ପ୍ରଧାନମନ୍ତ୍ରୀ ହୋଇଥିଲେ । ତାଙ୍କର ନୀତି ଥିଲା, ଯୁଦ୍ଧ ଚାଲୁରଖିବା ଏବଂ ତାର ଦ୍ରୁତ ଏବଂ ସମ୍ମାନଜନକ ସମାପ୍ତି ଘଟାଇବା । ସେ ନିରାପଦ ପଥରେ ଯୁଦ୍ଧ ପରିଚାଳନା କରିବାକୁ ଚାହୁଁଥିଲେ ଏବଂ ସେ ଗଣତାନ୍ତ୍ରିକ ଶାସନ ଏବଂ ସାମାଜିକ ସଂସ୍କାରମାନ ପ୍ରବର୍ତ୍ତନ କରିବେ ବୋଲି ଲୋକମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ସେ ନରମପନ୍ଥୀ ସମାଜବାଦୀମାନଙ୍କ ନେତା ହୋଇଥିବାରୁ ସାମ୍ବିଧାନିକ ପଦ୍ଧତି ଅନୁସରଣକରି କ୍ରମଶଃ

ସମାଜବାଦ ଆଡ଼କୁ ଅଗ୍ରସର ହେବା ଚାହିଁଥିଲେ; କିନ୍ତୁ ଚରମପନ୍ଥୀ ସମାଜବାଦୀ ବା ବଲ୍‌ସେଭିକ୍‌ମାନେ ତାଙ୍କ ନୀତି ଅନୁମୋଦନ କରିନଥିଲେ; ସେମାନେ ଯୁଦ୍ଧବିରୋଧୀ ଥିଲେ ଏବଂ ବିନା ରାଜ୍ୟାଧିକାର ଓ ବିନା କ୍ଷତିପୂରଣ ଭିତ୍ତିରେ ଶାନ୍ତି-ପ୍ରତିଷ୍ଠା ଚାହୁଁଥିଲେ । ସେମାନେ ପ୍ରଚଳିତ ବ୍ୟବସ୍ଥାକୁ ଜବରଦସ୍ତି ବିପର୍ଯ୍ୟସ୍ତ କରି ମଜଦୁରମାନଙ୍କର ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିବାପାଇଁ ମଧ୍ୟ ଦୃଢ଼ମତ ପୋଷଣ କରିଥିଲେ ।

ସେ ଯାହାହେଉ କେରେନସ୍କି ରୁଷ ସୈନ୍ୟବାହିନୀକୁ ପ୍ରୋତ୍ସାହିତ କରି ଶତ୍ରୁ ବିରୁଦ୍ଧରେ ଚମକପ୍ରଦ ଆକ୍ରମଣ ଚଳାଇଥିଲେ ଏବଂ ଶତ୍ରୁପକ୍ଷ ଏପରି ଅପ୍ରତ୍ୟାଶିତ ଆକ୍ରମଣରେ ସମ୍ମୁଖୀନ ହୋଇ ନ ପାରି ଅସ୍ଥାୟୀ ଭାବରେ ପରାଜୟ ସ୍ୱୀକାର କରିଥିଲେ; କିନ୍ତୁ ରୁଷ-ସୈନ୍ୟମାନେ ବଲସେଭିକ୍‌ମାନଙ୍କର ଯୁଦ୍ଧବିରୋଧୀ ପ୍ରଚାରଦ୍ୱାରା ପ୍ରଭାବିତ ହୋଇ ଯୁଦ୍ଧ କରିବାକୁ ରୋକ୍‌ଠୋକ୍ ମନା କରିଦେବା ଫଳରେ ଯୁଦ୍ଧ ଚାଲୁରଖିବା ଅସମ୍ଭବ ହୋଇ ପଡ଼ିଥିଲା ଓ ଦ୍ରୁତଗତିରେ ରୁଷିଆର ବିପର୍ଯ୍ୟୟ ଘଟିଲା । ଏପରି ସଙ୍କଟଜନକ ପରିସ୍ଥିତିର ସୁଯୋଗ ନେଇ ବଲସେଭିକ୍‌ମାନେ ମେନସେଭିକଙ୍କ ବିରୁଦ୍ଧରେ ଗଣବିକ୍ଷୋଭ କରାଇବା ପାଇଁ ଉଦ୍ୟମ କରିଥିଲେ ସତ; କିନ୍ତୁ ତାହା ବିଫଳ ହୋଇଥିଲା । କେରେନସ୍କି ବଲ୍‌ସେଭିକ୍‌ମାନଙ୍କର ପ୍ରକାଶ୍ୟବିରୋଧ ସତ୍ତ୍ୱେ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଦମନ କରିବାକୁ ଦ୍ୱିଧା କରିଥିଲେ । ବଲସେଭିକ୍‌ମାନଙ୍କର ସୁଦକ୍ଷ ନେତା ଟ୍ରଟ୍‌ସ୍କି ମାତ୍ର କେତେ ସପ୍ତାହ କାରାଦଣ୍ଡ ଭୋଗିଥିଲେ ଏବଂ ଅନ୍ୟ ଜଣେ ସୁଦକ୍ଷ ନେତା ଲେନିନ୍ କିଛିଦିନ ଲୁଚିଛପି ରହି ଫିନ୍‌ଲ୍ୟାଣ୍ଡକୁ ପଳାଇ ଯାଇଥିଲେ ଏବଂ ସେଠାରେ ରହି ତାଙ୍କ ଦଳର କ୍ରିୟାକଳାପ ପରିଚାଳିତ କରିଥିଲେ । କେତେଦିନ ଅତିବାହିତ ହେଲାପରେ କେରେନ୍‌ସ୍କି ଏବଂ ତାଙ୍କର ମେନସେଭିକ୍ ଦଳ ଦେଶରେ ପ୍ରତିଷ୍ଠା ହରାଇଥିଲେ ଓ ବଲ୍‌ସେଭିକ୍‌ମାନେ କ୍ରମଶଃ ଜନସାଧାରଣଙ୍କ ଉପରେ ପ୍ରଭାବ ବିସ୍ତାର କରିଥିଲେ ।

## ନଭେମ୍ବର ବିପ୍ଳବ (୭ ନଭେମ୍ବର—ନୂତନ ପଞ୍ଜିକା, ୨୫ ଅକ୍ଟୋବର ପୂର୍ବପ୍ରଚଳିତ ପଞ୍ଜିକା)

## The November Revolution (iii) (7 November N. S., 25 October O. S.)—

ଜର୍ମାନୀ ମେନସେଭିକ୍ ଓ ବଲ୍‌ସେଭିକ୍‌ମାନଙ୍କ ମଧ୍ୟରେ କଳହ ଏବଂ ରୁଷ ସରକାରଙ୍କର ଯୁଦ୍ଧରେ ବିପର୍ଯ୍ୟୟର ସୁଯୋଗ ନେଇ ରିଗା ଅଧିକାର କରିନେଲା ଓ ରାଜଧାନୀ

---

(iii) According to Julian Calendar ( Old style ) the Revolution brokeout in October 1917 but according to Gregorian Calendar (New style) the Revolution brokeout in November 1917.

ପେଟ୍ରୋଗ୍ରାଡ ଦଖଲ କରିନେବ ବୋଲି ଧମକ ଦେଲା । ଇତ୍ୟବସରରେ ବଲସେଭିକ୍‌ମାନେ ଶାସନରେ ହଠାତ୍ ପରିବର୍ତ୍ତନ ଆଣିବାପାଇଁ ପ୍ରସ୍ତୁତ ହେଉଥିଲେ । ସେମାନେ ପ୍ରଥମେ ସେମାନଙ୍କର ସଙ୍ଗଠନକୁ ଶକ୍ତିଶାଳୀ କରିଥିଲେ । ବଲସେଭିକ୍ ଦଳର ସଭ୍ୟ ସଂଖ୍ୟା ଅତି ଦ୍ରୁତଗତିରେ ବୃଦ୍ଧି ପାଇଥିଲା । ବଲସେଭିକ୍ ଦଳର ଏକ ଗୁପ୍ତ କଂଗ୍ରେସ ପେଟ୍ରୋଗ୍ରାଡଠାରେ ବସି ସଶସ୍ତ୍ର ବିଦ୍ରୋହ କରିବାପାଇଁ ନିଷ୍ପତ୍ତି କରିଥିଲା । ଲେନିନ୍ ଫିନ୍‌ଲ୍ୟାଣ୍ଡରେ ରହି ଏସବୁ କାର୍ଯ୍ୟ କରିବାପାଇଁ ପରାମର୍ଶ ଦେଇଥିଲେ ।



( ଲେନିନ )

ଲେନିନ୍ ଏବଂ ଟ୍ରଟସ୍କି ହଠାତ୍ ସକ୍ରିୟ ହୋଇ ଉଠିଲେ ଏବଂ 'ସୋଭିଏଟ୍‌କୁ ସମସ୍ତ କ୍ଷମତା ଅର୍ପଣ କରାଯାଉ' ବୋଲି ଆହ୍ୱାନ ଦେଲେ; କାରଣ ସେମାନେ ଜାଣିଥିଲେ

ଯେ ପେଟ୍ରୋଗ୍ରାଡ ସୋଭିଏଟ୍ ସରକାରଙ୍କ କ୍ଷମତାକୁ ଅତି ନ୍ୟୂନ କରିଦେଇଥିଲା । ବଲସେଭିକ୍‌ମାନଙ୍କର ସଂଖ୍ୟା ପେଟ୍ରୋଗ୍ରାଡ ସୋଭିଏଟ୍‌ରେ ଦ୍ରୁତଗତିରେ ବୃଦ୍ଧି ପାଉଥିବାର ଲକ୍ଷ୍ୟକରି ସେମାନେ ଦୃଢ଼ ଆଶା ପୋଷଣ କରିଥିଲେ ଯେ ବଲସେଭିକ୍‌ମାନେ ଅତିଶୀଘ୍ର ଏହି ମୁଖ୍ୟ ସଙ୍ଗଠନକୁ ନିଜ ଅକ୍ତିଆରକୁ ଆଣିପାରିବେ । ୧୯୧୭ ମସିହା ଅକ୍ଟୋବର ମାସରେ ବଲସେଭିକ୍‌ମାନେ ଚତୁରତା ସହିତ ଉଭୟ ପେଟ୍ରୋଗ୍ରାଡ ଏବଂ ମସ୍କୋ ସୋଭିଏଟ୍‌କୁ ଅକ୍ତିଆର କରି ନେଇଥିଲେ ଓ ନଭେମ୍ବର ୯ ତାରିଖ ଦିନ ସହସା ବଳ ପ୍ରୟୋଗଦ୍ୱାରା ଅସ୍ଥାୟୀ ମେନସେଭିକ୍ ସରକାରଙ୍କୁ ଗାଦିଚ୍ୟୁତ କରିଥିଲେ । କେରେନ୍‌ସ୍କି କିଛି ସମୟ ବଲସେଭିକ୍‌ମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇଲା ପରେ ହତାଶ ହୋଇ ଦେଶ ଛାଡ଼ି ପଳାଇଯାଇଥିଲେ । ତେଣୁ ବଲସେଭିକ୍‌ମାନଙ୍କର ବିଜୟ ହେଲା । ଏହିପରି ୧୯୧୭ ମସିହାର ଦ୍ୱିତୀୟ ବିପ୍ଲବ ବହୁ ବାଧା ବିଘ୍ନ ଅତିକ୍ରମକରି ତାର କାର୍ଯ୍ୟ ସାଧନ କରିଥିଲା । ଫଳରେ ରୁଷିଆର ଶାସନ-କ୍ଷମତା ବଲସେଭିକ୍‌ମାନଙ୍କ ହାତକୁ ଆସିଥିଲା ।

## ବଲ୍‌ସେଭିକ୍ ସରକାର (The Bolshevist Government)

ବଲସେଭିକ୍‌ମାନେ ସଶସ୍ତ୍ର ବିଦ୍ରୋହ କରି ଶାସନ-କ୍ଷମତା ଅକ୍ତିଆର କରିଥିଲେ । ସୋଭିଏଟ୍‌ଗୁଡ଼ିକର ମଜଦୁର ଓ ସୈନିକ ପ୍ରତିନିଧିମାନେ ଏକ ଜାତୀୟ କଂଗ୍ରେସରେ ମିଳିତ ହୋଇ ନୂତନ ବଲସେଭିକ୍ ସରକାରଙ୍କୁ ସୋଭିଏଟ୍ ଅଫ୍ ପିପୁଲ୍‌ସ କମିସାର୍‌ସ (iv) (The Soviet of Peoples Commissars) ନାମ ଗ୍ରହଣ କରିବାପାଇଁ କ୍ଷମତା ଅର୍ପଣ କରିଥିଲେ । ତା'ଛଡ଼ା କଂଗ୍ରେସ ସେହି ପିପୁଲ୍‌ସ କମିସାର୍‌ସର ଚେୟାରମେନ (ସଭାପତି) ରୂପେ ଲେନିନ୍‌ଙ୍କୁ, ବୈଦେଶିକ କମିସାର (ମନ୍ତ୍ରୀ) ରୂପେ, ଟ୍ରଟସ୍କିଙ୍କୁ ଏବଂ ଜାତିଗୁଡ଼ିକର କମିସାରରୂପେ ଷ୍ଟାଲିନ୍‌ଙ୍କୁ ଅନୁମୋଦନ କରିଥିଲେ । ବଲସେଭିକ୍ ସରକାରଙ୍କର ପ୍ରଧାନ ଲକ୍ଷ୍ୟଥିଲା ଯେ ମଜଦୁରମାନେ ଏକଚ୍ଛତ୍ର ଶାସନ (The Dictatorship of the Proletariat) ପ୍ରତିଷ୍ଠା କରିବେ । ଲେନିନ୍‌ଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଏହି ଲକ୍ଷ୍ୟ ପୂରଣ କରିବାକୁ ହେଲେ ବଲସେଭିକମାନଙ୍କୁ ବହୁ ତ୍ୟାଗ ସ୍ୱୀକାର କରିବାକୁ ଏବଂ କ୍ଷତି ସହିବାକୁ ପଡ଼ିବ । ସେ ନିଜର ମତ ବ୍ୟକ୍ତକରିବା ଉଦ୍ଦେଶ୍ୟରେ ଲେଖିଥିଲେ, "ସେ ପ୍ରକୃତ ସମାଜବାଦୀ ନୁହେଁ, ଯେ ହୃଦୟଙ୍ଗମ କରିପାରେନା ବୁର୍ଜୋଆଁ ବିରୁଦ୍ଧରେ ବିଜୟ ହାସଲ କରିବାକୁ ହେଲେ, ବିସ୍ତୀର୍ଣ୍ଣ ଅଞ୍ଚଳ ହରାଇବାକୁ ଏବଂ ପରାଜୟ ବରଣକରିବାକୁ ପଡ଼ିପାରେ; ସେ ପ୍ରକୃତ ସମାଜବାଦୀ ନୁହେଁ ଯେ ସାମାଜିକ ବିପ୍ଳବର ବିଜୟପାଇଁ ନିଜର ପିତୃଭୂମିକୁ

---

(iv) 'ମନ୍ତ୍ରୀ'ଶବ୍ଦ ବୁର୍ଜୋଆଁ ମାନଙ୍କଦ୍ୱାରା ବ୍ୟବହୃତ ହେଉଥିବାରୁ ବଲସେଭିକ୍‌ମାନେ ସେ ଶବ୍ଦ ବ୍ୟବହାର ନକରି ତା'ପରିବର୍ତ୍ତେ 'କମିସାର' ଶବ୍ଦ ବ୍ୟବହାର କରିଥିଲେ ।

ଉତ୍ସର୍ଗ କରି ନପାରିବ ।" ତାଙ୍କ ମତରେ ପୃଥିବୀ କେତେକ ଜାତିରେ ବିଭକ୍ତ ହୋଇନାହିଁ, ତାହା କେତେକ (ସାମାଜିକ ପଦମର୍ଯ୍ୟାଦା ଅନୁଯାୟୀ) ଶ୍ରେଣୀରେ ବିଭକ୍ତ ହୋଇଛି । ସେ ମାର୍କସଙ୍କ ଚିନ୍ତାଧାରାକୁ ଅନୁସରଣକରି ମଜଦୁରମାନଙ୍କର ଏକଚ୍ଛତ୍ର-ଶାସନ ସମ୍ପୂର୍ଣ୍ଣ ସୁଦୃଢ଼ ନକଲା ପର୍ଯ୍ୟନ୍ତ ସେ ଶ୍ରେଣୀ-ସଂଗ୍ରାମ ଚଲାଇବେ । ଉଭୟ ଲେନିନ୍ ଏବଂ ଟ୍ରଟସ୍କି ଜାଣିଥିଲେ ଯେ ବଲସେଭିକ୍‌ମାନେ ପେଟ୍ରୋଗ୍ରାଡ୍ ଏବଂ ମସ୍କୋରେ ପ୍ରକୃତ କ୍ଷମତା ଅକ୍ତିଆର କରିଥିଲେ ମଧ୍ୟ ସମଗ୍ର ରୁଷିଆରେ ସେମାନେ ସଂଖ୍ୟାଲଘୁଦଳରୂପେ ରହିଥିଲେ । ତେଣୁ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ହାସଲକରିବାକୁ ହେଲେ ରୁଷିଆର ଭିତରେ ଏବଂ ବାହାରେ ବଲ୍‌ସେଭିକ ଶାସନକୁ ଗ୍ରହଣ କରାଇନେବାକୁ ପଡ଼ିବ । ତା'ଛଡ଼ା ସେମାନେ ନିର୍ଦ୍ଦିଷ୍ଟ ପଦ୍ଧତି ଅନୁସରଣକରି ଏକ ସରକାର ଗଠନକରିବେ ଏବଂ ତାହାର ସାହାଯ୍ୟରେ ସାମ୍ୟବାଦ ନୀତି ଅବଲମ୍ବନକରି ରୁଷିଆରେ ସାମାଜିକ ଓ ଅର୍ଥନୈତିକ ଜୀବନକୁ ପୁନର୍ଗଠନ କରିବେ । ଏହିସବୁ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ପ୍ରଥମେ ଦେଶରେ ଶାନ୍ତିପ୍ରତିଷ୍ଠା କରିବାର ଆବଶ୍ୟକତା ରହିଛି ବୋଲି ସେମାନେ ଅନୁଭବ କରିଥିଲେ । ତେଣୁ ଲେନିନ୍ ସର୍ବାଧିକ କ୍ଷମତାର ଅଧିକାରୀ ହେବାମାତ୍ରେ ବିଦ୍ରୋହର ଅବସାନ ଘଟାଇବାପାଇଁ ଦୃଢ଼ସଂକଳ୍ପ କରିଥିଲେ । ସେ କେବଳ ଜନସାଧାରଣଙ୍କ ଦାବି ପୂରଣକରିବାପାଇଁ ଶାନ୍ତି ଚାହୁଁନଥିଲେ, ତାଙ୍କ ଦେଶରେ ନିଜର ଶତ୍ରୁମାନଙ୍କୁ ଧ୍ୱଂସ କରିଦେବା ଉଦ୍ଦେଶ୍ୟରେ ଶକ୍ତିସଞ୍ଚୟ କରିବାପାଇଁ ମଧ୍ୟ ତାହା ଚାହୁଁଥିଲେ । ତେଣୁ ବଲସେଭିକ୍ ସରକାରଙ୍କୁ "ସୋଭିଏଟ୍ ଅଫ୍ ପିପୁଲସ୍ କମିସାରସ୍" ରୂପେ ପୁନର୍ଗଠିତ କଲାପରେ ଟ୍ରଟସ୍କି ସରକାରଙ୍କ ତରଫରୁ କେନ୍ଦ୍ରଶକ୍ତିମାନଙ୍କ ସହିତ ଶାନ୍ତିଚୁକ୍ତି ସ୍ୱାକ୍ଷର କରିବା ଅଭିପ୍ରାୟରେ କଥାବାର୍ତ୍ତା ଚଳାଇଥିଲେ । ରୁଷିଆର ମିତ୍ରମାନେ ଟ୍ରଟସ୍କିଙ୍କର ଏ କଥାବାର୍ତ୍ତାକୁ ଭ୍ରୂକ୍ଷେପ କରିନଥିଲେ ସତ, କିନ୍ତୁ ଜର୍ମାନମାନେ ତାଙ୍କ ଶାନ୍ତିପ୍ରସ୍ତାବ ପ୍ରତି କେବଳ ଯେ ଗୁରୁତ୍ୱ ଦେଇଥିଲେ ତାହା ନୁହେଁ, ସେମାନେ ମଧ୍ୟ ତାହା ଗ୍ରହଣକରିବାକୁ ରାଜି ହୋଇଯାଇଥିଲେ । ଫଳରେ ଜର୍ମାନୀସହିତ ଯୁଦ୍ଧରେ ପ୍ରବୃତ୍ତଥିବା ରୁଷସୈନ୍ୟବାହିନୀକୁ ଭାଙ୍ଗି ଦିଆଯାଇଥିଲା ଏବଂ ରୁଷସରକାର ଜର୍ମାନୀସହିତ ବ୍ରେଷ୍ଟ-ଲିଟୋଭସ୍କ (Brest Litovsk) ସନ୍ଧି ୧୯୧୮ ମସିହା ମାର୍ଚ୍ଚ ୬ ତାରିଖରେ ସ୍ୱାକ୍ଷର କରିଥିଲେ । ମନେହୁଏ ଏହାଠାରୁ ଅଧିକ ଅପମାନଜନକ ସନ୍ଧି କୌଣସି ଜାତୀୟ ସରକାର ସେପର୍ଯ୍ୟନ୍ତ ସ୍ୱାକ୍ଷର କରିନଥିଲେ । ଏହି ସନ୍ଧିର ସର୍ତ୍ତ ଅନୁଯାୟୀ ରୁଷିଆ ଯୁଦ୍ଧରୁ ଓହରି ଯାଇଥିଲା ଏବଂ ପୋଲଣ୍ଡ ଓ ବଲ୍‌ଟିକ ପ୍ରଦେଶଗୁଡ଼ିକ ସମେତ ସମସ୍ତ ପଶ୍ଚିମ ପ୍ରଦେଶକୁ ଜର୍ମାନୀକୁ ହସ୍ତାନ୍ତର କରିଥିଲା । ଅର୍ଥାତ୍ ମହାମାନ ପିଟରଙ୍କ ସମୟରୁ ରୁଷିଆ ଯେଉଁସବୁ ଅଞ୍ଚଳ ଅଧିକାର କରିଥିଲା, ସେହିସବୁ ଅଞ୍ଚଳ ତାକୁ ହରାଇବାକୁ ପଡ଼ିଥିଲା । ଲେନିନ୍ ଓ ତାଙ୍କ ଅନୁଗାମୀମାନଙ୍କ ମତରେ ସାମାଜିକ ବିପ୍ଳବର ବିଜୟପାଇଁ କାର୍ଯ୍ୟକରିବାକୁ ହେଲେ କୌଣସି ତ୍ୟାଗକୁ ଅତି ମହାନ୍ ବୋଲି କୁହାଯାଇନପାରେ । ତେଣୁ ସେମାନେ ଏସବୁ ତ୍ୟାଗ ପ୍ରତି ଗୁରୁତ୍ୱ ନଦେଇ ସାମାଜିକ ବିପ୍ଳବ ସମ୍ପାଦନ କରିବାପାଇଁ ବଦ୍ଧପରିକର ହୋଇଥିଲେ ।

ଇତ୍ୟବସରରେ ଲେନିନ୍ ଦେଶକୁ ନିଜ ଅକ୍ତିଆରକୁ ଆଣିବାପାଇଁ ଧ୍ୟାନ ଦେଇଥିଲେ । ସ୍ୱାଧୀନ ଜନମତକୁ ପ୍ରଶ୍ରୟ ନଦେବା ଉଦ୍ଦେଶ୍ୟରେ ବଲସେଭିକ୍ ପତ୍ରପତ୍ରିକା ପ୍ରକାଶନ ବ୍ୟତୀତ ଅନ୍ୟଦଳମାନଙ୍କର ପତ୍ରପତ୍ରିକା ପ୍ରକାଶନ ଉପରେ କଟକଣା ଜାରି କରାଯିବା ସଙ୍ଗେ ସଙ୍ଗେ ସାଧାରଣସଭା ଓ ସମିତି ଉପରେ ନିଷେଧାଜ୍ଞା ଜାରି କରାଯାଇଥିଲା । ସେ କେବଳ ନୀତିଦୃଷ୍ଟିରୁ ବିପ୍ଳବକୁ ଏକ ଗଣଆନ୍ଦୋଳନ ହିସାବରେ ସ୍ୱୀକୃତି ଦେବାକୁ (ବଲସେଭିକମାନେ ଗଣତନ୍ତ୍ରକୁ ବୁର୍ଜୋଆ ବୋଲି ବିଚାର କରୁଥିଲେ) ଚାହୁଁ ନଥିଲେ । ଜନସାଧାରଣ ମେନସେଭିକ ଏବଂ ସାମାଜିକ ବିପ୍ଳବୀଦଳମାନଙ୍କ ସହିତ ସମ୍ପୃକ୍ତଥିବା କଥା ପ୍ରକାଶ୍ୟରେ ଘୋଷଣାକରିବା ଦୃଷ୍ଟିରୁ ମଧ୍ୟ ସେ ତାହା ଚାହୁଁଥିଲେ । କାରଣ ସେ ଜାଣିଥିଲେ ଯେ ସେମାନଙ୍କୁ ନିଜ ମତ ଯଦି ପ୍ରକାଶ କରିବାକୁ ଦିଆଯାଏ ତାହା-ହେଲେ ସେମାନେ ତାଙ୍କୁ ନେତୃତ୍ୱରୁ ବାହାର କରିଦେବେ । ଥରକୁ ଥର ସ୍ଥଗିତ ରଖାଯିବା ପରେ ଶେଷରେ ୧୯୧୮ ମସିହା ଜାନୁୟାରୀ ମାସରେ ବସିବାକୁ ଯାଉଥିବା ସାମ୍ବିଧାନିକ ସଭାରେ ତାଙ୍କ ବିରୋଧୀମାନଙ୍କର ବିପ୍ଳବକୁ ଧ୍ୱଂସକରିଦେବା ପାଇଁ ଲେନିନ୍‌ଙ୍କୁ ସୁଯୋଗ ମିଳିଲା । ଅବଶ୍ୟ ସେ ସାମ୍ବିଧାନିକ ସଭାପାଇଁ ହେଉଥିବା ନିର୍ବାଚନକୁ ନିଜ ଆୟତ୍ତରେ ରଖିବାପାଇଁ ଉଦ୍ୟମକରି ମଧ୍ୟ ବିଫଳ ହୋଇଥିଲେ । ତେଣୁ ସାମ୍ବିଧାନିକ ସଭା ବସିଲା ପରେ ଯେତେବେଳେ ସେ ଦେଖିଲେ ଯେ ତାହା ସାମାଜିକ ବିପ୍ଳବୀମାନଙ୍କର କର୍ତ୍ତୃତ୍ୱାଧୀନରେ ରହିଛି ଏବଂ ସେମାନଙ୍କୁ ତାଙ୍କ ନେତୃତ୍ୱ ଗ୍ରହଣ କରିନେବାପାଇଁ ବାଧ୍ୟକରିବା ସମ୍ଭବ ନୁହେଁ, ସେତେବେଳେ ଲେନିନ୍ ନୌବାହିନୀର ଏକଦଳ ସୈନ୍ୟଙ୍କୁ ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ସେହି ସଭାର ସଭ୍ୟମାନଙ୍କୁ ବିତାଡ଼ିତ କରିବାପାଇଁ ପଠାଇଥିଲେ । ସେହି ସଭାରେ ଥିବା କୃଷକ ପ୍ରତିନିଧିମାନେ ନୌସେନାମାନେ ପହଞ୍ଚିବାମାତ୍ରେ କପରି ଦ୍ରୁତଗତିରେ ଏଣେତେଣେ ପଳାଇଲେ ତାହା ଶୁଣିବାମାତ୍ରେ ସେ ଏତେ ଜୋର୍‌ରେ ହସିଲେ ଯେ ତାଙ୍କର କେତେଜଣ ବିଶ୍ୱସ୍ତ ଅନୁଚର ଭୟକରିଯାଇଥିଲେ ଯେ ତାହାଦ୍ୱାରା ସେ ନିଜ ସ୍ୱାସ୍ଥ୍ୟର କ୍ଷତି ଘଟାଇବେ । ସେ ଯାହାହେଉ ଶ୍ରେଣୀସଂଘର୍ଷର ଅନ୍ୟ ଏକ ପଦକ୍ଷେପ ହେଲା ସାମ୍ବିଧାନିକ ସଭାର ପତନ । ତା'ପରେ ପରେ ଲେନିନ୍ ଏବଂ ଟ୍ରଟସ୍କି ଫରାସୀ ରାଷ୍ଟ୍ରବିପ୍ଳବ ସମୟର 'ଆତଙ୍କ ରାଜ' (The Reign of Terror) ଢାଞ୍ଚାରେ ରୁଷିଆରେ ଏକ 'ଆତଙ୍କ ରାଜ' ପ୍ରତିଷ୍ଠା କରିଥିଲେ ଏବଂ ତାହା ସହିତ ଦ୍ରୁତ ବିଚାରପାଇଁ ଏକ ବୈପ୍ଳବିକ ବିଚାରାଳୟ ମଧ୍ୟ ସ୍ଥାପନ କରିଥିଲେ । ହଜାର ହଜାର ରୁଷବାସୀ ଏହି ବିଚାରାଳୟର ଶିକାର ହୋଇଥିଲେ । କେବଳ ଯେ ପ୍ରତିକ୍ରିୟାଶୀଳ ଲୋକମାନେ ଏହା ଭୟରେ ରୁଷିଆ ଛାଡ଼ି ବିଦେଶରେ ନିର୍ବାସିତର ଜୀବନଯାପନ କଲେ ତାହା ନୁହେଁ, ହଜାର ହଜାର ସଂଖ୍ୟାରେ ଉଦାରପନ୍ଥୀ ଏବଂ ନରମପନ୍ଥୀ ସମାଜବାଦୀମାନେ ମଧ୍ୟ ପ୍ରତିକ୍ରିୟାଶୀଳ ଲୋକମାନଙ୍କର ପଥ ଅନୁସରଣ କରିଥିଲେ । ଯେଉଁମାନେ ଦେଶ ଛାଡ଼ି ପଳାଇଯାଇ ପାରିଲେନାହିଁ, ସେମାନେ ମୃତ୍ୟୁଦଣ୍ଡ ଭୋଗକଲେ । ଆଉ କେତେ ଲୋକ ନିଜକୁ ରକ୍ଷାକରିବା ଉଦ୍ଦେଶ୍ୟରେ କେତେଦିନ ରୁଷିଆରେ ଲୁଚିଛପି ରହିଲେମଧ୍ୟ ଧରାପଡ଼ିଯିବା ଭୟରେ

ସେମାନେ ଶେଷରେ ବଲସେଭିକ୍ ଦଳରେ ଯୋଗଦେଲେ । କେବଳ ୟୁକ୍ରେନ୍‌ର ବିଭିନ୍ନ ଗୋଷ୍ଠୀର ଲୋକେ ବିଦେଶୀ ଶକ୍ତିମାନଙ୍କ ସାହାଯ୍ୟରେ ବଲସେଭିକ୍‌ମାନଙ୍କ ବିରୁଦ୍ଧରେ ଗୃହଯୁଦ୍ଧ ଆରମ୍ଭ କରିଦେଇଥିଲେ । ତେଣୁ ସେଠାରେ ବଲସେଭିକ୍‌ମାନଙ୍କୁ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା; କିନ୍ତୁ ଶେଷରେ ଲେନିନ୍ ସରକାର ବିଜୟୀ ହୋଇଥିଲେ ।

ଲେନିନ୍ ମାର୍କସ୍‌ଙ୍କ ସମାଜବାଦ ନୀତିଗୁଡ଼ିକ ପ୍ରଥମେ କାର୍ଯ୍ୟକାରୀ କରିଥିଲେ । ବାସ୍ତବ ରାଜନୀତିଜ୍ଞ ହୋଇଥିବାରୁ ସେ ପ୍ରତିରୋଧର କେନ୍ଦ୍ରକୁ ଧ୍ୱଂସକରିଦେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ କେତେକ ଅର୍ଥନୈତିକ ସୁବିଧା ମଧ୍ୟ ଦେଉଥିଲେ । ସେ ମଜଦୁରମାନଙ୍କପାଇଁ ଦୈନିକ ଆଠଘଣ୍ଟା ଶ୍ରମ ମଞ୍ଜୁର କରିଥିଲେ । କଳକାରଖାନାଗୁଡ଼ିକର ମାଲିକମାନଙ୍କୁ କ୍ଷତିପୂରଣ ନ ଦିଆଯାଇ ସବୁ କଳକାରଖାନା ବଲସେଭିକ୍ ସରକାରଙ୍କଦ୍ୱାରା ଦଖଲ କରିନିଆଯାଇଥିଲା ଏବଂ ତାହାର ପରିଚାଳନା ଭାର ମଜଦୁରମାନଙ୍କ ହାତରେ ଛାଡ଼ିଦିଆଯାଇଥିଲା । ସେହିପରି ଜମିଗୁଡ଼ିକ ଜାତୀୟକରଣ କରାଗଲା ବୋଲି ଘୋଷଣା କରାଯାଇ ସେସବୁକୁ କୃଷକମାନଙ୍କର ଅବାଧ ଦଖଲରେ ଛାଡ଼ିଦିଆଯାଇଥିଲା । ଲେନିନ୍ ପୂର୍ବରୁ 'ଲାଲ୍ ଫୌଜ' ନାମକ ଏକ ବିରାଟ ସୈନ୍ୟବାହିନୀ ଗଠନ କରିସାରିଥିଲେ । ଟ୍ରଟ୍‌ସ୍କିଙ୍କ ଅଧୀନରେ ସେହି ସୈନ୍ୟବାହିନୀ ଗୃହଯୁଦ୍ଧରେ ଲଢ଼ିବା ସଙ୍ଗେ ସଙ୍ଗେ ଦୃଢ଼ଭାବରେ 'ଆତଙ୍କରାଜ' ପ୍ରତିଷ୍ଠା କରିଥିଲା । ତା'ଛଡ଼ା ନୂତନ ସ୍ୱେଚ୍ଛାତନ୍ତ୍ର ଶାସନର ଅତି ପ୍ରୟୋଜନୀୟ ହତିଆର ଭଳି କାର୍ଯ୍ୟ କରିଥିଲା । ଲେନିନ୍ ମୂଳତଃ ଧ୍ୱଂସମୂଳକ କାର୍ଯ୍ୟରେ ବ୍ୟାପୃତ ରହିଥିଲେ ଏବଂ ତାଙ୍କର ମୌଳିକ ଉଦ୍ଦେଶ୍ୟ ଥିଲା ସମ୍ପୂର୍ଣ୍ଣ ଏକ ନୂତନ ବ୍ୟବସ୍ଥା ପ୍ରତିଷ୍ଠା କରିବା ।

ଲେନିନ୍ ଯେଉଁ ବଲସେଭିକ୍ ବାଦ (ସାମ୍ୟବାଦ)ର କ୍ରମବିକାଶ ଘଟାଇଥିଲେ, ସେଥିରେ ଗୁଡ଼ିଏ ବିଷୟ ଅନ୍ତର୍ଭୁକ୍ତ କରାଯାଇଥିଲା । ପ୍ରଥମଟି ହେଲା ପୁଞ୍ଜିବାଦର ଉଚ୍ଛେଦ ସାଧନ କରିବା ଏବଂ ତାହା ସ୍ଥାନରେ ସମାଜବାଦୀ ଶାସନବ୍ୟବସ୍ଥା ପ୍ରତିଷ୍ଠା କରିବା । ଏହି ଲକ୍ଷ୍ୟ ହାସଲ କରିବା ଉଦ୍ଦେଶ୍ୟରେ ସମସ୍ତ ବ୍ୟକ୍ତିଗତ ପୁଞ୍ଜି ଲୋପ କରିଦିଆଯାଇଥିଲା । ସୁଧ ବା ଖଜଣା ବାବଦରେ ବା ଅନ୍ୟ କୌଣସି ବାଟରେ ମିଳୁଥିବା ସମସ୍ତ ଲାଭକୁ ବାତିଲ କରାଯାଇଥିଲା । ତା'ଛଡ଼ା ବଲସେଭିକ୍ ସରକାର ଶାସନ କ୍ଷମତା ଦଖଲ କରିବା ପୂର୍ବରୁ ରୁଷିଆ ଯେଉଁ ସମସ୍ତ ବୈଦେଶିକ ଋଣ ସଂଗ୍ରହ କରିଥିଲା, ତାହା ଲେନିନ୍ ସରକାରଦ୍ୱାରା ପ୍ରତ୍ୟାଖ୍ୟାନ କରାଯାଇଥିଲା । ଯଦିଓ ସେତେବେଳେ ଲୋକସଂଖ୍ୟାର ଦଶ ଦଶମିକ ଲୋକ ମଜଦୁର (ସର୍ବହରା) ଶ୍ରେଣୀରେ ଅନ୍ତର୍ଭୁକ୍ତ ହୋଇଥିଲେ, କାଳକ୍ରମେ ପ୍ରତ୍ୟେକ ଲୋକଙ୍କୁ ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯିବାର ସ୍ଥିର କରାଯାଇଥିଲା । ରୁଷିଆରେ କେହି ଉଦ୍ୟୋଗକାରୀ ରହିବେ ନାହିଁ କି କେହି ବ୍ୟକ୍ତିଗତ ଭଡ଼ାଟିଆ ମଜଦୁର ରହିବେ ନାହିଁ ବୋଲି ଘୋଷଣା କରାଯାଇଥିଲା । ଆହୁରି ମଧ୍ୟ ନିଷ୍ପତ୍ତି କରାଯାଇଥିଲା ଯେ, ରୁଷିଆରେ

ରାଷ୍ଟ୍ରକର୍ତ୍ତୃକ ନିଯୁକ୍ତ ମଜଦୁରମାନଙ୍କ ବ୍ୟତୀତ ଅଲଗା ଲୋକ କେହି ରହିବେ ନାହିଁ । ଦ୍ୱିତୀୟ ବିଷୟଟି ହେଲା ସାମ୍ୟବାଦକୁ ଏକ ସାମାଜିକ ବିପ୍ଲବ ବୋଲି ବୁଝିବାକୁ ପଡ଼ିବ । ତେଣୁ ସାମ୍ୟବାଦ ପ୍ରତିଷ୍ଠା କରିବାକୁ ହେଲେ ସମାଜର ନିମ୍ନତମ ଶ୍ରେଣୀକୁ ସର୍ବୋଚ୍ଚ ସ୍ଥାନ ଦେବାକୁ ପଡ଼ିବ । ଅର୍ଥାତ୍ ରୁଷିଆରେ ଥିବା ଅନ୍ୟ ଶ୍ରେଣୀମାନଙ୍କୁ ସମାଜଚ୍ୟୁତ ବୋଲି ଧରିନିଆଯାଇ ମଜଦୁରଶ୍ରେଣୀକୁ ସର୍ବୋଚ୍ଚ ସ୍ଥାନରେ ରଖିବାକୁ ହେବ । ଏ କଥା ଅସ୍ୱୀକାର କରିହେବ ନାହିଁ ଯେ ଯେତେଦିନ ଯାଏ ଶ୍ରେଣୀ-ସଂଘର୍ଷରେ ମଜଦୁରଶ୍ରେଣୀ ବ୍ୟତୀତ ଅନ୍ୟ ଶ୍ରେଣୀ-ଗୁଡ଼ିକ ଧ୍ୱଂସ ନ ପାଉଛନ୍ତି, ସେତେଦିନ ଯାଏ ସାମ୍ୟବାଦ ପ୍ରତିଷ୍ଠା କରିବା ସମ୍ଭବ ହେବ ନାହିଁ । ତୃତୀୟ ବିଷୟଟି ହେଲା ପ୍ରଚଳିତ ସଂସ୍କାରବିରୋଧୀ କ୍ୟାଥଲିକ୍ ଧର୍ମ (Catholic Church)କୁ ଧ୍ୱଂସ କରି ତାହା ସ୍ଥାନରେ ସାମ୍ୟବାଦକୁ ଏକ ଧର୍ମରୂପେ ପ୍ରତିଷ୍ଠା କରିବାକୁ ପଡ଼ିବ । ତେଣୁ ବିକଶିତ ସାମ୍ୟବାଦ କ୍ୟାଥଲିକ ଧର୍ମକୁ ଧ୍ୱଂସ କରିବାପାଇଁ ଉଦ୍ୟମ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ନିଜକୁ ଏକ ଧର୍ମରେ ପରିଣତ କରିଥିଲା; କିନ୍ତୁ ଏହି ଧର୍ମର ଭୌତିକ ଜଗତ ବ୍ୟତୀତ ଅନ୍ୟ କାହା ସହିତ ସମ୍ପର୍କ ନଥିଲା । ଚତୁର୍ଥ ବିଷୟଟି ହେଲା ପାଶ୍ଚାତ୍ୟ ରାଷ୍ଟ୍ରବ୍ୟବସ୍ଥା ପରିବର୍ତ୍ତି ବୃତ୍ତିଭିତ୍ତିକ ରାଷ୍ଟ୍ରଗଠନ କରିବା । ସୁତରାଂ ଲେନିନ୍ ପାଶ୍ଚାତ୍ୟ ଦେଶମାନଙ୍କରେ ବିକଶିତ ହୋଇଥିବା ରାଷ୍ଟ୍ରବ୍ୟବସ୍ଥା କେତେକ ପରିମାଣରେ ଜନସଂଖ୍ୟା ବଣ୍ଟନ ଅନୁଯାୟୀ ଆଞ୍ଚଳିକ ପ୍ରତିନିଧିତ୍ୱ ଉପରେ ଭିତ୍ତି କରିଥିବାରୁ ତାହା ପରିତ୍ୟାଗ କରି ସିଣ୍ଡିକାଲିବାଦୀଙ୍କ ପରିକଳ୍ପନାନୁଯାୟୀ ଏକ ବୃତ୍ତିଭିତ୍ତିକ ରାଷ୍ଟ୍ର ଗଠନକରିବା ପାଇଁ ସୂଚନା ଦେଇଥିଲେ । ଏକସମୟରେ ଏହି ଚାରୋଟି ଲକ୍ଷ୍ୟକୁ ସଫଳ କରିବାକୁ ହେଲେ ରୁଷିଆକୁ ଅର୍ଥନୈତିକ, ସାମାଜିକ, ରାଜନୈତିକ ଏବଂ ଧର୍ମ ସମ୍ବନ୍ଧୀୟ ବିପ୍ଲବ ମଧ୍ୟଦେଇ ଗତିକରିବାକୁ ପଡ଼ିବ ।

ଲେନିନ୍ ବିଶ୍ୱାସ କରୁଥିଲେ ଯେ ରାଜନୈତିକ ପୁନର୍ଗଠନର ବିଶେଷ ଗୁରୁତ୍ୱ ରହିଛି; କାରଣ କର୍ତ୍ତୃତ୍ୱକୁ ସଂଗଠିତ ଏବଂ ସବଳ ବଳବତ୍ତର ନ କଲାଯାଏ ଫଳଲାଭର କୌଣସି ଆଶା ନାହିଁ । ସେ କହୁଥିଲେ, 'ଆମର ପ୍ରଥମ ସମ୍ମିଳିତ ଧ୍ୱନି (Watch word) ହେଉଛି କେନ୍ଦ୍ରୀକରଣ ।' ରୁଷିଆର ରାଜନୈତିକ ଗଠନ ପ୍ରଣାଳୀ ୧୯୧୮ ମସିହାରେ ଘୋଷଣା କରାଯାଇଥିବା ସଂବିଧାନଦ୍ୱାରା ନିର୍ଣ୍ଣୟ କରାଯାଇଥିଲା ଏବଂ ପରେ ସେହି ସଂବିଧାନର କେତେକ ପରିବର୍ତ୍ତନ କରାଯାଇ ସମ୍ପ୍ରସାରଣ କରାଯାଇଥିଲା । ଏହି ସଂବିଧାନରେ ଉଲ୍ଲେଖ ଥିଲା ଯେ ପ୍ରତ୍ୟେକ ସହର ଏବଂ ପଲ୍ଲୀଅଞ୍ଚଳରେ ଗୋଟିଏ କରି ସୋଭିଏଟ୍ ବା ମଜଦୁର ପରିଷଦ ରହିବ । ଏହି ସ୍ଥାନୀୟ ସୋଭିଏଟ୍‌ଗୁଡ଼ିକ ପ୍ରାଦେଶିକ ସୋଭିଏଟ୍‌ମାନଙ୍କରେ ସେମାନଙ୍କର ପ୍ରତିନିଧିତ୍ୱ କରିବାପାଇଁ ପ୍ରତିନିଧିମାନଙ୍କୁ ବାଛିବେ । ପ୍ରାଦେଶିକ ସୋଭିଏଟ୍-ମାନଙ୍କ ମଧ୍ୟରୁ 'ସକଳ ରୁଷୀୟ ସୋଭିଏଟ କଂଗ୍ରେସ' (All Russian Congress of Soviets) ମନୋନୀତ ହେବ । ଏହି ଜାତୀୟ କଂଗ୍ରେସ ରୁଷିଆର ପ୍ରଧାନ ବ୍ୟବସ୍ଥାପକ ସଭା ହେବ ବୋଲି ସ୍ଥିର କରାଯାଇଥିଲା । ସଂବିଧାନରେ ଆହୁରି ମଧ୍ୟ ଉଲ୍ଲେଖ କରାଯାଇଥିଲା

ଯେ ଉକ୍ତ କଂଗ୍ରେସ ଗୋଟିଏ କେନ୍ଦ୍ରୀୟ କାର୍ଯ୍ୟନିର୍ବାହକ କମିଟି ନିର୍ବାଚନ କରିବ ଏବଂ ସେହି କମିଟି ପିପୁଲ୍ସ କମିସାରସ୍ ନାମକ ଏକ ମନ୍ତ୍ରିପରିଷଦ ବା କ୍ୟାବିନେଟ୍ ନିର୍ବାଚନ କରିବ । ସୋଭିଏଟ୍ ଗୁଡ଼ିକର ନିର୍ବାଚନ ପାଇଁ ଅଷ୍ଟାଦଶ ବର୍ଷ ବା ତା'ଠାରୁ ଊର୍ଦ୍ଧ୍ୱ ବୟସ୍କ ସମସ୍ତ ନାଗରିକ ( ଉଭୟ ପୁରୁଷ ଓ ସ୍ତ୍ରୀ )ଙ୍କୁ ଗୋଟିଏ ସର୍ତ୍ତରେ ( ଯେଉଁମାନେ ଉତ୍ପାଦନକ୍ଷମ ଶ୍ରମ ଦେଇ ସେମାନଙ୍କର ଜୀବିକା ଅର୍ଜନ କରୁଥିବେ ) ଭୋଟାଧିକାର ମଞ୍ଜୁର କରାଯାଇଥିଲା । ବିପ୍ଳବୀ ସୈନିକ ଏବଂ ନାବିକମାନଙ୍କୁ ଭୋଟାଧିକାର ଦିଆଯାଇଥିଲା । କିନ୍ତୁ ଧର୍ମଯାଜକ ସମ୍ପ୍ରଦାୟ, ସମ୍ଭ୍ରାନ୍ତଗୋଷ୍ଠୀ ଏବଂ ଅଧିକାଂଶ ମଧ୍ୟବିତ୍ତଶ୍ରେଣୀର ଲୋକମାନଙ୍କୁ ଏଥିରୁ ବଞ୍ଚିତ କରାଯାଇଥିଲା । ଭୋଟ ବ୍ୟବସ୍ଥା କୃଷକମାନଙ୍କ ଅପେକ୍ଷା କାରିଗରମାନଙ୍କ ପାଇଁ ଅଧିକ ଅନୁକୂଳ ଥିଲା । ଜାତୀୟ କଂଗ୍ରେସ ଏପରିଭାବରେ ସଙ୍ଗଠିତ ହୋଇଥିଲା ଯେ ସେଥିରେ ପୌର ମଜଦୁର ପ୍ରତିନିଧିମାନେ ଗ୍ରାମ୍ୟ ଶ୍ରମିକ ପ୍ରତିନିଧିମାନଙ୍କ ଉପରେ ପ୍ରାଧାନ୍ୟ ଲାଭକରିବା ସୁନିଶ୍ଚିତ ଥିଲା । କାରଣ ପ୍ରତି ପଚିଶ ହଜାର ପୌର ଭୋଟରମାନଙ୍କ ପାଇଁ ଜଣେ ପ୍ରତିନିଧି ରହୁଥିବାବେଳେ ପ୍ରତି ଏକଲକ୍ଷ ପଚିଶ ହଜାର ଗ୍ରାମ୍ୟ ଭୋଟରମାନଙ୍କପାଇଁ ସେହି ଜଣେ ପ୍ରତିନିଧି ରହିବା ସ୍ଥିର କରାଯାଇଥିଲା । ସଂବିଧାନରେ ନାଗରିକମାନଙ୍କୁ ମେହନତ କରିବାପାଇଁ ବାଧ୍ୟ କରାଯିବା ସଙ୍ଗେ ସଙ୍ଗେ ନାଗରିକ ଅଧିକାରଗୁଡ଼ିକ ମଧ୍ୟ ଉଲ୍ଲେଖ କରାଯାଇଥିଲା । ଅବଶ୍ୟ ୧୯୨୨ ମସିହାରେ ରୁଷ-ସରକାର ପୂର୍ବରୁ ହସ୍ତାନ୍ତର କରାଯାଇଥିବା ତାହାର କେତେକ ଅଞ୍ଚଳ ଫେରିପାଇଲା ଫଳରେ ଏକ ସଙ୍ଘୀୟ-ବ୍ୟବସ୍ଥା ରୁଷିଆରେ ପ୍ରତିଷ୍ଠା କରାଯାଇଥିଲା । ସେହି ଦିନଠାରୁ ରୁଷିଆକୁ 'ସମାଜବାଦୀ ସୋଭିଏଟ୍ ସାଧାରଣତନ୍ତ୍ର ସଙ୍ଘ' ( Union of Socialist Soviet Republics or U. S. S. R. ) ବୋଲି ଅଭିହିତ କରାଗଲା । ଆନୁଷ୍ଠାନିକ ଭାବରେ ରୁଷିଆରେ ଶାସନକ୍ଷମତା ବ୍ୟବସ୍ଥାପକ ସଭା ଏବଂ କାର୍ଯ୍ୟ-ନିର୍ବାହକ କମିଟି ଉପରେ ନ୍ୟସ୍ତ ହୋଇଥିଲେ ମଧ୍ୟ ବାସ୍ତବ ଶାସନ କ୍ଷମତା ବଲସେଭିକ୍ ଦଳର କେନ୍ଦ୍ରୀୟ କମିଟି ହାତରେ ରହିଥିଲା ।

---

# ଚତୁର୍ଦ୍ଦଶ ଅଧ୍ୟାୟ

## ଫ୍ରାନ୍ସର ଇତିହାସ (୧୮୪୮-୧୮୭୦)

## ( The History of France : 1848-1870 )

## ଫ୍ରାନ୍ସରେ ଦ୍ୱିତୀୟ ସାଧାରଣତନ୍ତ୍ର

### ( ଫେବୃୟାରୀ ୧୮୪୮ ରୁ ଡିସେମ୍ବର ୧୮୫୨ )

### ( The Second Republic in France : February 1848-December 1852 )

ଲୁଇ ଫିଲିପ୍ ରାଜପଦ ତ୍ୟାଗ କରିବା ପରେ ଫ୍ରାନ୍ସରେ ଦ୍ୱିତୀୟ ସାଧାରଣତନ୍ତ୍ର ପ୍ରତିଷ୍ଠା କରାଯାଇଥିଲା । ଲାମରଟାଇନଙ୍କର ଅଧ୍ୟକ୍ଷତାରେ ଏକ ଅସ୍ଥାୟୀ ସରକାର ୧୮୪୮ ଫେବୃୟାରୀ ୨୪ ତାରିଖରେ ଗଢାଯାଇଥିଲା ଏବଂ ଏକ ସାମ୍ବିଧାନିକ ସଭା ନିର୍ବାଚିତ ହୋଇ ଏକ ସମ୍ବିଧାନ ପ୍ରସ୍ତୁତ ନ କରିବାଯାଏଁ ସେହି ସରକାରଙ୍କୁ ରାଜ୍ୟ ଶାସନଭାର ଅର୍ପଣ କରାଯାଇଥିଲା । ଅସ୍ଥାୟୀ ସରକାର ଦୁଇଟି ଗୋଷ୍ଠୀ--ସାଧାରଣତନ୍ତ୍ରବାଦୀ ଓ ସମାଜବାଦୀଙ୍କୁ ନେଇ ଗଠନ କରାଯାଇଥିଲା । ସମାଜବାଦୀ ଗୋଷ୍ଠୀ ଲୁଇ ବ୍ଲାଙ୍କଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଏବଂ ପ୍ୟାରିସ୍‌ର ସଶସ୍ତ୍ର ଜନତାର ସମର୍ଥନ ଲାଭକରି ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କ ବିରୁଦ୍ଧରେ ଦୁଇଟି ଉଲ୍ଲେଖନୀୟ ବିଜୟ ହାସଲ କରିଥିଲେ । ଫେବୃୟାରୀ ୨୫ ତାରିଖ ଦିନ ସରକାର ଲୁଇ ବ୍ଲାଙ୍କଙ୍କ ପ୍ରସ୍ତାବ ଗ୍ରହଣ କରି 'କର୍ମ ଅଧିକାର' (Right to work) ନୀତି ଘୋଷଣା କରିଥିଲେ ଏବଂ ତା' ପରଦିନ 'ଜାତୀୟ କାରଖାନାମାନ' ତୁରନ୍ତ ପ୍ରତିଷ୍ଠା କରିବାପାଇଁ ଆଦେଶ ଦେଇଥିଲେ । ଏହା ହେଲା ସମାଜବାଦୀ ଗୋଷ୍ଠୀର ପ୍ରଥମ ବିଜୟ । ସେହି ଗୋଷ୍ଠୀର ଦ୍ୱିତୀୟ ବିଜୟ ହେଲା ଯେତେବେଳେ ଲୁଇ ବ୍ଲାଙ୍କଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଶନ ଲାକ୍ସେମବର୍ଗଠାରେ ବସାଯାଇ ମଜଦୁରମାନଙ୍କ ଭାଗ୍ୟ ପରିବର୍ତ୍ତନର ଦାୟିତ୍ୱ ତାହା ଉପରେ ନ୍ୟସ୍ତ କରାଗଲା; କିନ୍ତୁ ଜାତୀୟ କାରଖାନାଗୁଡ଼ିକ ପ୍ରତିଷ୍ଠା କରିବାର ଦାୟିତ୍ୱ ସାଧାରଣତନ୍ତ୍ରବାଦୀମାନଙ୍କୁ ଦିଆଯାଇଥିଲା ଏବଂ ସେହି ସାଧାରଣତନ୍ତ୍ରବାଦୀମାନେ ସମାଜବାଦୀ ପରୀକ୍ଷାକୁ ବଦ୍‌ନାମ କରିବାକୁ ଇଚ୍ଛୁକ ଥିଲେ । ସାଧାରଣତନ୍ତ୍ରବାଦୀମାନେ ସରକାରୀ ସାହାଯ୍ୟପ୍ରାପ୍ତ କାରଖାନାମାନ ପ୍ରତିଷ୍ଠାକରି ପ୍ରତ୍ୟେକ ଲୋକକୁ ନିଜର ବୃତ୍ତି ଅବଲମ୍ବନ କରିବାପାଇଁ ସୁଯୋଗ ଦେବା ପରିବର୍ତ୍ତେ ସବୁପ୍ରକାର ଶ୍ରମିକମାନଙ୍କୁ ଦୁଇ ଫ୍ରାଁ ମାଇସ୍‌ରେ ମାଟି ଖୋଳା ଓ ପୁଣି ମାଟି

ଉନ୍ନତିକରିବା କାମରେ ଲଗାଇ ପ୍ରତ୍ୟେକଙ୍କୁ ଦୈନିକ ଦୁଇ ଫ୍ରାଙ୍କ କରି ମଜୁରି ଦେଉଥିଲେ । ଦେଖାଗଲା ଯେ ୧୮୪୮ ମସିହା ମାର୍ଚ୍ଚ ଓ ମେ ମାସ ମଧ୍ୟରେ ଶ୍ରମିକସଂଖ୍ୟା ଛଅ ହଜାରରୁ ଏକଲକ୍ଷକୁ ବୃଦ୍ଧି ପାଇଛି । ଏହିପରି ଭାବରେ ଜାତୀୟ କାରଖାନାଗୁଡ଼ିକ ଜନସାଧାରଣଙ୍କ ଧନର ଅପବ୍ୟୟ କରିବା ସଙ୍ଗେ ସଙ୍ଗେ ଆଳସ୍ୟକୁ ପ୍ରଶ୍ରୟ ଦେଉଥିଲା ।

ଅସ୍ଥାୟୀ ସରକାର ସର୍ବଭୌମାଧିକାର ପ୍ରବର୍ତ୍ତନ କରିଥିଲେ ଏବଂ ଜାତୀୟ ସାଂବିଧାନିକ ସଭାର ନିର୍ବାଚନ ପାଇଁ ବ୍ୟବସ୍ଥା ମଧ୍ୟ କରିଥିଲେ । ନଅଶହ ସଭ୍ୟଙ୍କୁ ନେଇ ଗଢ଼ାଯାଇଥିବା ସେହି ସଭା ୧୮୪୮ ମସିହା ମେ ୪ ତାରିଖରେ ବସିଥିଲା । ଏହି ପରିସ୍ଥିତିରେ ଅସ୍ଥାୟୀ ସରକାର ଶାସନକ୍ଷମତାରୁ ଓହରିଯାଇଥିଲେ ।

ଅସ୍ଥାୟୀ ସରକାର ଲାମରଟାଇନଙ୍କ ଅଧ୍ୟକ୍ଷତାରେ ଗଢ଼ାଯାଇଥିଲେ ମଧ୍ୟ ତାହା ଦୁଇଟି ବିବଦମାନ ଗୋଷ୍ଠୀ—ସମାଜବାଦୀ ଏବଂ ସାଧାରଣତନ୍ତ୍ରବାଦୀର ମିଳିତ ସରକାର ହୋଇଥିବାରୁ ଆଭ୍ୟନ୍ତରୀଣ ଗୋଷ୍ଠୀ-ବିବାଦ ଫଳରେ ଦୁର୍ବଳ ହୋଇପଡ଼ିଥିଲା । ଏହା ସତ୍ତ୍ୱେ କେତେକ ଗୁରୁତ୍ୱପୂର୍ଣ୍ଣ ସଂସ୍କାର ସର୍ବସମ୍ମତିକ୍ରମେ ପ୍ରବର୍ତ୍ତନ କରାଯାଇଥିଲା । ରାଜନୈତିକ ଅପରାଧଗୁଡ଼ିକ ପାଇଁ ପୂର୍ବରୁ ଦିଆଯାଉଥିବା ମୃତ୍ୟୁଦଣ୍ଡକୁ ଉଠାଇ ଦିଆଯାଇଥିଲା । ସର୍ବଭୌମାଧିକାର ଘୋଷଣା କରାଗଲାଫଳରେ ରାଜନୈତିକ କ୍ଷମତା ପ୍ରାୟ ଦୁଇଲକ୍ଷ ସୁବିଧା-ଉପଭୋଗୀ ଧନୀଲୋକଙ୍କ ହାତରୁ ନବେଲକ୍ଷ ନିର୍ବାଚକଙ୍କ ହାତକୁ ଚାଲିଯାଇଥିଲା । ଫରାସୀ ଉପନିବେଶଗୁଡ଼ିକରେ ନିଗ୍ରୋ କ୍ରୀତଦାସ ପ୍ରଥା ଉଚ୍ଛେଦ କରାଯାଇଥିଲା । ମୁଦ୍ରଣ-ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରାଯାଇଥିଲା । ସର୍ବସାଧାରଣ-ସଭା ଓ ସଂଗଠନ ଉପରେ କୌଣସି କଟକଣା ରଖାଯାଇନଥିଲା । ଏସବୁ ବ୍ୟତୀତ ନାଗରିକମାନଙ୍କୁ ଜାତୀୟ ରକ୍ଷାବାହିନୀର ସଭ୍ୟ ହେବାର ପୂର୍ଣ୍ଣ ଅଧିକାର ଦିଆଯାଇଥିଲା । ଫଳରେ ପ୍ୟାରିସ୍‌ର ରାଜନୈତିକ ଜୀବନରେ ହଠାତ୍ ପରିବର୍ତ୍ତନ ଦେଖାଯାଇଥିଲା । ବହୁସଂଖ୍ୟାରେ ସମ୍ବାଦପତ୍ର ଓ ରାଜନୈତିକ ଦଳଗୁଡ଼ିକର ପୁସ୍ତିକା (Pamphlets) ପ୍ରକାଶପାଇଲା ଏବଂ ସେଗୁଡ଼ିକୁ ଶସ୍ତାରେ କିଣିବାକୁ ମିଳିଲା । ରାଜନୈତିକ କ୍ଲବମାନ ଭିନ୍ନ ଭିନ୍ନ ସ୍ଥାନରେ ଖୋଲିଲା ଏବଂ ଜନମତକୁ ତାହା ବିଶେଷ ଭାବରେ ପ୍ରଭାବିତ କରିବାକୁ ଲାଗିଲା ।

ସେ ଯାହାହେଉ ଜାତୀୟ ସାଂବିଧାନିକ ସଭା ପାଇଁ ୧୮୪୮ ମସିହା ଅପ୍ରେଲ ୨୩ ତାରିଖ ଦିନ ନିର୍ବାଚନ ହେଲାପରେ ତାହାର ପ୍ରଥମ ଅଧିବେଶନ ମେ ୪ ତାରିଖ ଦିନ ବସିଥିଲା ଏବଂ ସର୍ତ୍ତ ଅନୁସାରେ ଅସ୍ଥାୟୀ ସରକାରଙ୍କ କାର୍ଯ୍ୟକାଳ ମଧ୍ୟ ଶେଷ ହୋଇଗଲା । ଏହି ସାଂବିଧାନିକ ସଭାର ନଅଶହ ସଭ୍ୟଙ୍କ ମଧ୍ୟରୁ ପ୍ରାୟ ଆଠଶହ ଜଣ ନରମପନ୍ଥୀ ସାଧାରଣତନ୍ତ୍ରବାଦୀ ଥିଲେ । ସମାଜବାଦୀମାନେ ପ୍ରାୟ ନିର୍ବାଚନରେ ମୂଳପୋଛ ହୋଇଯାଇଥିଲେ । ଅସ୍ଥାୟୀ ସରକାର ଶାସନକ୍ଷମତା ତ୍ୟାଗ କରିବାରୁ ସାଂବିଧାନିକ ସଭା ଶାସନ ପରିଚାଳନା ପାଇଁ ସଭ୍ୟମାନଙ୍କ ମଧ୍ୟରୁ ସମାଜବାଦବିରୋଧୀ

ପାଞ୍ଚଜଣ ସଭ୍ୟଙ୍କୁ ନେଇ ଲମରଟାଇନଙ୍କ ଅଧ୍ୟକ୍ଷତାରେ ଏକ ନୂତନ କାର୍ଯ୍ୟନିର୍ବାହକା ସମିତି ପ୍ରତିଷ୍ଠା କରିଥିଲା ଏବଂ ସେହି ସମିତିକୁ ସଂବିଧାନ ପ୍ରସ୍ତୁତ ନହେବା ଯାଏଁ ଶାସନ ପରିଚାଳନା କରିବାପାଇଁ କ୍ଷମତା ଦିଆଯାଇଥିଲା । ସମିତିର ସଭ୍ୟମାନେ ଲୁଇ ବ୍ଲାଙ୍କର ବିରୋଧୀ ଥିଲେ । ସାଂବିଧାନିକ ସଭା ମଧ୍ୟ ଲୁଇ ବ୍ଲାଙ୍କର ଶ୍ରମମନ୍ତ୍ରୀପଦ ସୃଷ୍ଟି କରିବା ଦାବିକୁ ପ୍ରତ୍ୟାଖ୍ୟାନ କରିଦେଇଥିଲା । ପ୍ୟାରିସର ଶ୍ରମିକମାନେ ଲୁଇ ବ୍ଲାଙ୍କଙ୍କର ଦାବି ଅଗ୍ରାହ୍ୟ କରାଯିବାରୁ ଏବଂ ନିର୍ବାଚନର ଫଳାଫଳ ସେମାନଙ୍କର ସ୍ୱାର୍ଥ ବିରୁଦ୍ଧରେ ଯାଇଥିବାରୁ ଅତିଶୟ କ୍ରୁଦ୍ଧ ହୋଇଥିଲେ ଏବଂ ସେମାନେ ଯେତେବେଳେ ଦେଖିଲେ ଯେ, ସାଂବିଧାନିକ ସଭା ନିକଟରୁ କିଛି ପାଇବାର ଆଉ ଆଶା ନାହିଁ, ସେତେବେଳେ ସେମାନେ ବିଦ୍ରୋହ ଆରମ୍ଭ କରିଦେଲେ । ଫେବୃୟାରୀ ବିପ୍ଳବ ଫଳରେ ଯେପରି ଏକ ସାଧାରଣତନ୍ତ୍ର ରାଷ୍ଟ୍ର ପ୍ରତିଷ୍ଠା କରାଗଲା, ସେହିପରି ସେମାନେ ଏହି ନୂତନ ବିପ୍ଳବ ଘଟାଇ ଏକ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ । ସେମାନେ ମେ ମାସ ୧୫ ତାରିଖ ଦିନ ସଭା ପ୍ରକୋଷ୍ଠ ଉପରେ ଆକ୍ରମଣ ଚଳାଇ ପ୍ରତିନିଧିମାନଙ୍କୁ ସେଠାରୁ ତଡ଼ିଦେଇଥିଲେ ଏବଂ ସାଂବିଧାନିକ ସଭା ଭାଙ୍ଗି ଦିଆଗଲା ଓ ସେମାନଙ୍କର ଏକ ନୂତନ ଅସ୍ଥାୟୀ ସରକାର ପ୍ରତିଷ୍ଠା କରାଗଲା ବୋଲି ଘୋଷଣା କରିଥିଲେ; କିନ୍ତୁ ସେମାନଙ୍କର ଏହି ବିଜୟ ଅଳ୍ପକାଳ ସ୍ଥାୟୀ ହୋଇଥିଲା । ଜାତୀୟରକ୍ଷୀବାହିନୀ ସାଂବିଧାନିକ ସଭାକୁ ଶ୍ରମିକମାନଙ୍କ କବଳରୁ ମୁକ୍ତ କରିଥିଲେ ଏବଂ କେତେକ ବିଦ୍ରୋହୀ ନେତାଙ୍କୁ ବନ୍ଦୀ କରିଥିଲେ ।

ସାଂବିଧାନିକ ସଭା ମଧ୍ୟ ଅବମାନିତ ହେବା ଫଳରେ ବିଶେଷ କ୍ରୁଦ୍ଧ ହୋଇ-ଉଠିଥିଲା ଏବଂ ଜାତୀୟ କାରଖାନାଗୁଡ଼ିକ ବିପଦର କାରଣ ହୋଇଥିବାରୁ ସେଗୁଡ଼ିକ ଧ୍ୱଂସ କରିଦେବା ପାଇଁ ବଦ୍ଧପରିକର ହୋଇଥିଲା । ଜାତୀୟ କାରଖାନାଗୁଡ଼ିକ ଉଠାଇ ଦିଆଗଲା ବୋଲି ଘୋଷଣା କରାଗଲା । ଏଥିରେ ଶ୍ରମିକମାନେ କ୍ରୁଦ୍ଧ ହୋଇ ପୁନର୍ବାର ବିଦ୍ରୋହ କରିଥିଲେ ଏବଂ ସାଂବିଧାନିକ ସଭାକୁ ଭାଙ୍ଗିଦେବା ପାଇଁ ଓ କାରଖାନାଗୁଡ଼ିକ ପୁନର୍ବାର ଖୋଲିବା ପାଇଁ ଦାବି କରିଥିଲେ । ସାଂବିଧାନିକ ସଭା ଏହି ବିଦ୍ରୋହକୁ ଦମନ କରିବା ଉଦ୍ଦେଶ୍ୟରେ ଜେନେରାଲ କାଭାଇଗ୍ନାକଙ୍କୁ ପ୍ରଭୂତ କ୍ଷମତା ପ୍ରଦାନ କରିଥିଲା ଏବଂ ପାଞ୍ଚଜଣିଆ କାର୍ଯ୍ୟ ନିର୍ବାହକା ସମିତି ଇସ୍ତଫା ଦେଇଥିଲେ । ଫଳରେ ଚକ୍ରାନ୍ତ ଗୃହଯୁଦ୍ଧ ଲାଗିଯାଇଥିଲା । ଜୁନ ୨୩ ତାରିଖରୁ ୨୬ ତାରିଖ ପର୍ଯ୍ୟନ୍ତ ପ୍ୟାରିସର ରାସ୍ତାମାନଙ୍କରେ ଭୟାବହ ଲଢ଼ାଇ ଚାଲିଥିଲା । ସରକାରୀ ସୈନ୍ୟମାନଙ୍କୁ ବାଧାଦେବା ପାଇଁ ରାସ୍ତାଗୁଡ଼ିକ ମଧ୍ୟ ଅବରୋଧ କରାଯାଇଥିଲା । ଏହି ଗୃହଯୁଦ୍ଧର ପରିଣାମ କ'ଣ ହେବ ତାହା ବହୁ ସମୟ ଧରି ଅନିଶ୍ଚିତ ଥିଲା । ଯେ ଯାହାହେଉ, ଶେଷରେ ବିଦ୍ରୋହୀମାନଙ୍କୁ ଦୃଢ଼ହସ୍ତରେ ଦମନ କରାଯାଇଥିଲା ।

ସମାଜବାଦୀମାନଙ୍କୁ ଦମନ କଲାପରେ ସାଂବିଧାନିକ ସଭା ଫ୍ରାନ୍ସ ପାଇଁ ସଂବିଧାନ ପ୍ରସ୍ତୁତ କଲା । ସାଧାରଣତନ୍ତ୍ର ଫ୍ରାନ୍ସର ନିର୍ଦ୍ଦିଷ୍ଟ ଦରକାର ବୋଲି ଏହି ସଭା ଘୋଷଣା

କରିଥିଲା । ସର୍ବଜନୀନ ଭୋଟାଧିକାର ମଧ୍ୟ ପ୍ରବର୍ତ୍ତନ କରାଯାଇଥିଲା । ସାଂବିଧାନିକ ସଭା ନିଷ୍ପତ୍ତି କରିଥିଲା ଯେ, ବ୍ୟବସ୍ଥାପକ ସଭା ଏକ ସଂସଦୀୟ ସଭା ହେବ ଏବଂ ଏଥିରେ ସର୍ବଜନୀନ ଭୋଟାଧିକାର ଭିତ୍ତିରେ ତିନି ବର୍ଷ ପାଇଁ ନିର୍ବାଚିତ ୭୫୦ ଜଣ ସଭ୍ୟ ରହିବେ । ଏହି ତିନି ବର୍ଷ ସମୟ ପୂରିଗଲେ ବ୍ୟବସ୍ଥାପକ ସଭାର ସମ୍ପୂର୍ଣ୍ଣ ନବୀକରଣ କରାଯିବ ବୋଲି ଘୋଷଣା କରାଗଲା ।

କାର୍ଯ୍ୟନିର୍ବାହିକା କ୍ଷମତା ସାଧାରଣତନ୍ତ୍ରର ପ୍ରେସିଡେଣ୍ଟଙ୍କ ଉପରେ ନ୍ୟସ୍ତ କରାଯିବ । ପ୍ରେସିଡେଣ୍ଟ ରାଷ୍ଟ୍ର-ମୁଖ୍ୟ ହେବେ ଓ ସେ ଚାରିବର୍ଷ ପାଇଁ ସର୍ବଜନୀନ ଭୋଟାଧିକାର ଭିତ୍ତିରେ ନିର୍ବାଚିତ ହେବେ । ତାଙ୍କର ଏହି ନିର୍ଦ୍ଦିଷ୍ଟ କାର୍ଯ୍ୟକାଳ ପୂରଣହେବାର ଅବ୍ୟବହିତ ପରେ ସେ ପୁନର୍ନିର୍ବାଚନ ପାଇଁ ଆଇନ ଅନୁଯାୟୀ ଯୋଗ୍ୟ ବିବେଚିତ ହେବେ ନାହିଁ । କିନ୍ତୁ ଚାରିବର୍ଷ ବ୍ୟବଧାନ ପରେ ସେ ପୁନର୍ନିର୍ବାଚିତ ହୋଇପାରନ୍ତି ବୋଲି ସଂବିଧାନରେ ବ୍ୟବସ୍ଥା କରାଯାଇଥିଲା । ପ୍ରେସିଡେଣ୍ଟଙ୍କୁ ଯଥେଷ୍ଟ କ୍ଷମତା ଦିଆଯାଇଥିଲା । ସେତେବେଳେ ବିଚାର କରାଯାଇଥିଲା ଯେ, ତାଙ୍କୁ ଏତେ କ୍ଷମତା ଦେବାରେ ଯେଉଁ ବିପଦ ରହିଛି, ତାହା ତାଙ୍କର କାର୍ଯ୍ୟକାଳ ଅଳ୍ପକାଳସ୍ଥାୟୀ କରାଯିବା ଯୋଗୁ ଏବଂ ତୁରନ୍ତ ପୁନର୍ନିର୍ବାଚିତ ହେବାର ଆଶଙ୍କା ନଥିବା ଫଳରେ ବହୁପରିମାଣରେ ହ୍ରାସ ପାଇଯିବ । ତେଣୁ ବ୍ୟବସ୍ଥାପକ ସଭାକୁ ଆଇନ ପ୍ରଣୟନ ପ୍ରସ୍ତାବ ଦେବାପାଇଁ ତାଙ୍କୁ ଅଧିକାର ଦିଆଯାଇଥିଲା । ସଶସ୍ତ୍ର-ବାହିନୀର ପରିଚାଳନାଭାର ତାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ମନ୍ତ୍ରୀମାନଙ୍କୁ ଏବଂ ସାମରିକ ଓ ବେସାମରିକ ଅଧିକାରୀମାନଙ୍କୁ ନିଯୁକ୍ତ ଏବଂ ବରଖାସ୍ତ କରିବାର ଅଧିକାର ତାଙ୍କୁ ଦିଆଯାଇଥିଲା । ଏ ସବୁ ଛଡ଼ା ଚୁକ୍ତି ବିଷୟରେ କଥାବାର୍ତ୍ତା କରିବା ଓ ଚୁକ୍ତି ମଞ୍ଜୁର କରିବାପାଇଁ ମଧ୍ୟ ତାଙ୍କୁ କ୍ଷମତା ଦିଆଯାଇଥିଲା । ଅବଶ୍ୟ ସର୍ତ୍ତ ରଖାଯାଇଥିଲା ଯେ, ଚୁକ୍ତି-ଗୁଡ଼ିକ ବଳବତ୍ତର କରିବାକୁ ହେଲେ ବ୍ୟବସ୍ଥାପକ ସଭାର ଅନୁମୋଦନ ଆବଶ୍ୟକ । ତେଣୁ ପ୍ରେସିଡେଣ୍ଟ ଜଣେ ଅତି ଶକ୍ତିଶାଳୀ ବ୍ୟକ୍ତି ହେବେ ବୋଲି ସୂଚନା ମିଳିଥିଲା । ସେ ସିଧା-ସଳଖ ଲୋକମାନଙ୍କଦ୍ୱାରା ନିର୍ବାଚିତ ହେଉଥିବାରୁ ଏବଂ ଅସୀମ କ୍ଷମତାର ଅଧିକାରୀ ହେବା ଫଳରେ ବ୍ୟବସ୍ଥାପକ ସଭାର ନିଷ୍ପତ୍ତିକୁ ଅଗ୍ରାହ୍ୟ କରିଦେବାର ସମ୍ଭାବନା ଥିଲା । ଏଭଳି ସଂବିଧାନ ଫ୍ରାନ୍ସରେ ରାଜତନ୍ତ୍ର ପୁନଃପ୍ରତିଷ୍ଠା କରିବା ଦିଗରେ ଯେ ସହାୟକ ହେବ ତାହା କେହି ଅସ୍ୱୀକାର କରିପାରିବେ ନାହିଁ ।

ନେପୋଲିୟନ୍ ବୋନାପାର୍ଟଙ୍କ ପୁତୁରା ଓ ହଲଣ୍ଡର ପୂର୍ବତନ ରାଜା ଲୁଇ ବୋନାପାର୍ଟଙ୍କ ପୁଅ ଲୁଇ ନେପୋଲିୟନ୍ ଜାତୀୟ ସାଂବିଧାନିକ ସଭାର ସଭ୍ୟ ଥିଲେ । ସେ ଜେନେରାଲ କାଭେଇଗନାକ, ଲେଡ୍ରୁ-ରୋଲିନ୍ ଏବଂ ଲାମରଟାଇନଙ୍କ ସହିତ ପ୍ରେସିଡେଣ୍ଟ ପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ନେପୋଲିୟନ୍ ନାମ ଫ୍ରାନ୍ସର କୃଷକମାନଙ୍କ ଉପରେ ଚମତ୍କାର ପ୍ରଭାବ ପକାଇଥିଲା । ଲୁଇ ନେପୋଲିୟନ ଅତ୍ୟଧିକ ଭୋଟ ପାଇ ପ୍ରେସିଡେଣ୍ଟ ନିର୍ବାଚିତ ହୋଇଥିଲେ । ତାଙ୍କର ନିକଟତମ ପ୍ରତିଦ୍ୱନ୍ଦ୍ୱୀ ୧୫ ଲକ୍ଷରୁ କିଛି

ଊଣା ଭୋଟ ପାଇଥିବା ସ୍ଥଳେ ସେ ୫୪ ଲକ୍ଷରୁ କିଛି ଅଧିକ ଭୋଟ ପାଇଥିଲେ । ଲୁଇ ନେପୋଲିୟନ୍ ୧୮୪୮ ମସିହା ଡିସେମ୍ବର ୨୦ ତାରିଖରେ ଫ୍ରାନ୍ସର ପ୍ରେସିଡେଣ୍ଟ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସେହିଦିନ ସାଂବିଧାନିକ ସଭା ନିକଟରେ 'ଗଣତାନ୍ତ୍ରିକ ସାଧାରଣତନ୍ତ୍ର ପ୍ରତି ଅନୁରକ୍ତ ରହିବେ' ବୋଲି ସେ ଶପଥ ନେଇଥିଲେ । ସେ କହିଥିଲେ, "ମୋର କର୍ତ୍ତବ୍ୟ ସୁସ୍ପଷ୍ଟ । ମୁଁ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ହିସାବରେ ଏହା ପାଳନ କରିବି । ଫ୍ରାନ୍ସ ଯେଉଁ ସାଧାରଣତନ୍ତ୍ରକୁ ପ୍ରତିଷ୍ଠା କରିଛି, ତାକୁ ଯେଉଁମାନେ ଅବୈଧ ଉପାୟରେ ବଦଳାଇବାପାଇଁ ଉଦ୍ୟମ କରିବେ, ମୁଁ ସେମାନଙ୍କୁ ଦେଶର ଶତ୍ରୁ ବୋଲି ବିଚାରିବି ।"

ଫରାସୀମାନେ ଜଣେ ରାଜପୁତ୍ରକୁ ପ୍ରେସିଡେଣ୍ଟ ରୂପେ ବାଛି ଶାସନ ପରିଚାଳନା କ୍ଷେତ୍ରରେ ଏକ ନୂଆ କଥା ପ୍ରବର୍ତ୍ତନ କରିଥିଲେ । ୧୮୪୯ ମସିହା ମେ ମାସରେ ସେମାନେ ଏକ ବ୍ୟବସ୍ଥାପକ ସଭା ନିର୍ବାଚିତ କରି ଠିକ୍ ସେହିପରି ଏକ ବିସ୍ମୟ ସୃଷ୍ଟି କରିଥିଲେ । ଏହି ସଭାର ୭୫୦ ଜଣ ସଭ୍ୟଙ୍କ ମଧ୍ୟରୁ ୫୦୦ ଜଣ ସଭ୍ୟ ଥିଲେ ରାଜତନ୍ତ୍ରବାଦୀ । ସେହି ରାଜତନ୍ତ୍ରବାଦୀମାନେ ତିନିଭାଗରେ ବିଭକ୍ତ ହୋଇଥିଲେ; ଯଥା—ବୈଧତାବାଦୀ, ଅରଲିଅନ୍ସପକ୍ଷବାଦୀ ଏବଂ କେତେକ ବୋନାପାର୍ଟବାଦୀ । ଅନ୍ୟ ସଭ୍ୟମାନଙ୍କ ମଧ୍ୟରେ ୭୦ ଜଣ ନରମପନ୍ଥୀ ସାଧାରଣତନ୍ତ୍ରବାଦୀ ଏବଂ ପ୍ରାୟ ୧୮୦ ଜଣ ସମାଜବାଦୀ ଥିଲେ । ପ୍ରଚଳିତ ଶାସନପଦ୍ଧତି ପ୍ରତି କେବଳ ୭୦ ଜଣ ନରମପନ୍ଥୀ ସାଧାରଣତନ୍ତ୍ରବାଦୀ ପ୍ରକୃତ ଅନୁରକ୍ତ ଥିଲେ । ତେଣୁ ସାଧାରଣତନ୍ତ୍ର ସଂବିଧାନ ଅନୁସାରେ ନିର୍ବାଚିତ ପ୍ରଥମ ବ୍ୟବସ୍ଥାପକସଭା ଅତ୍ୟଧିକ ରାଜତନ୍ତ୍ରବାଦୀ ଥିଲା । ସୁତରାଂ ଉଭୟ ପ୍ରେସିଡେଣ୍ଟ ଏବଂ ଅଧିକାଂଶ ବ୍ୟବସ୍ଥାପକ ସଭାର ସଭ୍ୟ ଯେଉଁ ସଂବିଧାନ ଅନୁସାରେ ନିର୍ବାଚିତ ହୋଇଥିଲେ, ସେହି ସଂବିଧାନର ବିରୋଧୀ ମନେହେଉଥିଲେ । ଲୁଇ ନେପୋଲିୟନ୍ ଫରାସୀମାନଙ୍କର ଆଶା ଓ ଆକାଂକ୍ଷାକୁ ପ୍ରତିଫଳିତ କରୁଛନ୍ତି ବୋଲି ଅନୁଭବକରି ସେ ୧୮୦୯ ମସିହାରେ କହିଲେ, "ନେପୋଲିୟନ ନାମ ଏକ ପୂର୍ଣ୍ଣ କାର୍ଯ୍ୟକ୍ରମ । ଏହା ଭିତ୍ତରେ ଶୃଙ୍ଖଳା, କ୍ଷମତା, ଧର୍ମ, ଦେଶ ଭିତରେ ଜନକଲ୍ୟାଣ ଏବଂ ଦେଶ ବାହାରେ ଜାତୀୟ ଗୌରବ ।" (Louis Napoleon said, "The name, Napoleon is a complete programme in itself, it stands for order, authority, religion, the welfare of the people within, without for national dignity.") 'ନେପୋଲିୟନ' ନାମ ମଧ୍ୟରେ ଏକ କୁହୁକ ଥିଲା । ନେପୋଲିୟନ ବୋନାପାର୍ଟଙ୍କ ଅମଳରେ ଫ୍ରାନ୍ସ ଥରେ ଇଉରୋପର ସର୍ବେସର୍ବା ହୋଇଥିଲା । ନେପୋଲିୟନ ବୋନାପାର୍ଟଙ୍କ ନୀତି ଅନୁସରଣକରି ଲୁଇ ନେପୋଲିୟନ ଫ୍ରାନ୍ସର ହୃତ ଗୌରବ ଫେରାଇଆଣିବାକୁ ବାହାରିଥିଲେ । ତାଙ୍କର ନାମ 'ନେପୋଲିୟନ' ହୋଇଥିବାରୁ ସେ ଅନେକ ପରିମାଣରେ ଜନପ୍ରିୟ ହୋଇପାରିଥିଲେ । ସେ ସାଂବିଧାନିକ ସଭାର ସଭ୍ୟ ହିସାବରେ ତାଙ୍କ ବ୍ୟକ୍ତିତ୍ୱର କୌଣସି ପରିଚୟ ଦେଇନଥିଲେ ମଧ୍ୟ ତାଙ୍କ

ନାମର କୃଷକବଳରେ ବିପୁଳ ସମର୍ଥନ ପାଇ ଫ୍ରାନ୍ସ ସାଧାରଣତନ୍ତ୍ରର ପ୍ରେସିଡେଣ୍ଟ ହୋଇଥିଲେ । ୧୮୪୮ ମସିହାରେ ବିଧିପୂର୍ବକ ପ୍ରେସିଡେଣ୍ଟ ପଦରେ ପ୍ରତିଷ୍ଠିତ ହେବାଠାରୁ ସହସା ବଳପ୍ରୟୋଗଦ୍ୱାରା ୧୮୫୧ ମସିହାରେ ଶାସନ ପରିବର୍ତ୍ତନ କରିବା ପର୍ଯ୍ୟନ୍ତ ଲୁଇ ନେପୋଲିୟନ୍ ସାଧାରଣତନ୍ତ୍ରର କୌଣସି ଅବମାନନା କରିନଥିଲେ ସତ; କିନ୍ତୁ ଏହି ସମୟ ମଧ୍ୟରେ କୌଣସି ବିଧାୟକ ସଂସ୍କାର ବା ସାମାଜିକ ସଂସ୍କାର ପ୍ରବର୍ତ୍ତନ ହୋଇନଥିଲା । ବରଂ ଏହି ସମୟ ମଧ୍ୟରେ ଦଳଗତ ସୁବିଧାପାଇଁ ରାଜନୀତି କ୍ଷେତ୍ରରେ ଏପରି ଦଳାଦଳି ଚାଲିଥିଲା ଯେ, ତାହା ଫ୍ରାନ୍ସର ଅଗ୍ରଗତି ପଥରେ ବିଶେଷ ବାଧା ସୃଷ୍ଟି କରିଥିଲା ।

ପ୍ରଥମେ ପ୍ରେସିଡେଣ୍ଟ ଏବଂ ରାଜତନ୍ତ୍ରବାଦୀମାନେ ସାଧାରଣତନ୍ତ୍ରବାଦୀ ଦଳ ବିରୁଦ୍ଧରେ ସହଯୋଗ କରିଥିଲେ; କାରଣ ଉଭୟେ ସେହି ଦଳକୁ ପ୍ରକୃତ ଶତ୍ରୁ ମନେକରିଥିଲେ । ସେହି ସହଯୋଗପାଇଁ ଅବିଳମ୍ବେ ସୁଯୋଗ ମିଳିଲା । କେତେକ ସାଧାରଣତନ୍ତ୍ରବାଦୀ ୧୮୪୯ ମସିହା ଜୁନ ୧୩ ତାରିଖ ଦିନ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ଏହି ବିଦ୍ରୋହ ସହଜରେ ଦମନ କରାଯାଇଥିଲା । ସରକାରଙ୍କର ଏହି ବିଜୟ ପରେ ପରେ କର୍ତ୍ତୃପକ୍ଷ ବିରୋଧୀଦଳକୁ ପଙ୍ଗୁ କରିଦେବା ପାଇଁ ଅଗ୍ରସର ହୋଇଥିଲେ । ସାଧାରଣତନ୍ତ୍ରବାଦୀ ଦଳର ୩୩ ଜଣ ପ୍ରତିନିଧିଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କର ସମ୍ବାଦପତ୍ରଗୁଡ଼ିକୁ ଦବେଇ-ଦିଆଯାଇଥିଲା । ବର୍ଷକପାଇଁ ସର୍ବସାଧାରଣ-ସଭା ନିଷିଦ୍ଧ କରାଯାଇଥିଲା ଏବଂ ଏହି ଆଦେଶ ପରେ ବହୁବାର ନବୀକରଣ ହୋଇଥିଲା । ସ୍କୁଲ ଶିକ୍ଷକମାନେ ସମଗ୍ର ଫ୍ରାନ୍ସରେ ସାଧାରଣତନ୍ତ୍ରର ଶକ୍ତିଶାଳୀ ସମର୍ଥକ ଥିଲେ । ସେହିପରି ଯାଜକ ସମ୍ପ୍ରଦାୟ ରାଜତନ୍ତ୍ରର ସମର୍ଥକ ଥିଲେ । ତେଣୁ ସରକାର ଶିକ୍ଷକଗୋଷ୍ଠୀ ଉପରେ ପ୍ରତିହିଂସାପରାୟଣ ହୋଇ ଶିକ୍ଷାର ପୁନଃସଂଗଠନ ବାହାନାରେ ତାର ନିୟନ୍ତ୍ରଣଭାର ଯାଜକ ସମ୍ପ୍ରଦାୟ ହସ୍ତରେ ନ୍ୟସ୍ତ କରିଥିଲେ । ତା'ଛଡ଼ା ପ୍ୟାରିସ୍‌ରେ ସାମରିକ ଆଇନ ଜାରିକରିବା ଫଳରେ ପ୍ରେସିଡେଣ୍ଟଙ୍କୁ ପୂର୍ବାପେକ୍ଷା ଅତ୍ୟଧିକ ବାସ୍ତବ କ୍ଷମତା ମିଳିଲା ।

ସାଧାରଣତନ୍ତ୍ରବାଦୀ ନେତାମାନଙ୍କୁ ବାହାରକରିଦେଲା ଉତ୍ତାରୁ ଅଧିକ ପରିମାଣରେ ଦମନଶୀଳ ଆଇନ ଗୃହୀତ କରାଇନେବା ସହଜ ହୋଇଯାଇଥିଲା । ବ୍ୟବସ୍ଥାପକ ସଭାଦ୍ୱାରା ୧୮୫୦ ମସିହାରେ ମତାଧିକାର ଆଇନକୁ ସ୍ୱୀକୃତ ଦିଆଗଲା । ଏହି ଆଇନ ଅନୁଯାୟୀ ଯେଉଁ କରଦାତାମାନେ ଏକାଦିକ୍ରମେ ଗୋଟିଏ କମ୍ୟୁନ୍ (ଶାସନ ସଂକ୍ରାନ୍ତ କ୍ଷୁଦ୍ର ବିଭାଗ)ରେ ଅନ୍ୟୂନ ତିନି ବର୍ଷ ବାସକରିଥିବେ, ସେମାନେ କେବଳ ଭୋଟ ଦେବାପାଇଁ ଯୋଗ୍ୟ ବିବେଚିତ ହେବେ । ଏହି ଆଇନ ବାସ୍ତବରେ ସର୍ବଭୋଟାଧିକାର ଉଠାଇଦେଇଥିଲା ଏବଂ ପରୋକ୍ଷ ଭାବରେ ସମ୍ପତ୍ତି ଯୋଗ୍ୟତା ପୁନଃ ପ୍ରତିଷ୍ଠିତ କରିଥିଲା । ତା'ଛଡ଼ା ଏହି ଆଇନ-ବଳରେ ତିରିଶ ଲକ୍ଷ ମଜଦୁର ଅର୍ଥାତ୍ ନିର୍ବାଚନମଣ୍ଡଳୀର ଏକ-ତୃତୀୟାଂଶ ଭୋଟାଧିକାରରୁ ବଞ୍ଚିତ ହୋଇଥିଲେ; କାରଣ ସ୍ୱତନ୍ତ୍ର ସେମାନେ କୌଣସି ଟିକସ ଦେଉନଥିଲେ କିମ୍ବା କାମ

ଖୋଜିବା ଉଦ୍ଦେଶ୍ୟରେ ସେମାନେ ବାରମ୍ବାର ସେମାନଙ୍କର ବାସସ୍ଥାନ ବଦଳାଉଥିଲେ । ତେଣୁ ତିନିବର୍ଷ ବାସସ୍ଥାନ ଯୋଗ୍ୟତା ହାସଲ କରିପାରି ନଥିଲେ । ଏହାପରେ ଯେଉଁମାନେ ଭୋଟାଧିକାରରୁ ବଞ୍ଚିତ ହେଲେ ସେମାନେ ଅବଶ୍ୟ ବ୍ୟବସ୍ଥାପକ ସଭାକୁ ଅତିମାତ୍ରାରେ ଘୃଣାକରିବାକୁ ଲାଗିଲେ । ଅନ୍ୟ ଏକ ଆଇନ ମଞ୍ଜୁର କରାଯାଇ ସମ୍ବାଦପତ୍ର-ସ୍ୱାତନ୍ତ୍ର୍ୟ ସୀମିତ କରାଯାଇଥିଲା; କାରଣ ସମ୍ବାଦପତ୍ର ସମ୍ପାଦକମାନଙ୍କଠାରୁ ପଚିଶ ହଜାର ଫ୍ରାଙ୍କ୍ ପ୍ରାରମ୍ଭିକ ଜମା ନେବାର ବ୍ୟବସ୍ଥା ପୁନଃ ପ୍ରତିଷ୍ଠିତ କରାଯାଇଥିଲା । ଏହି ସର୍ତ୍ତ ପୂରଣ ନକରିପାରିବାରୁ ସାଧାରଣତନ୍ତ୍ରବାଦୀ ଓ ସମାଜତନ୍ତ୍ରବାଦୀମାନଙ୍କର ଅଧିକାଂଶ ଶସ୍ତା ସମ୍ବାଦପତ୍ରର ପ୍ରକାଶନ ପୂର୍ବରୁ ବନ୍ଦକରି ଦିଆଯାଇଥିଲା ।

ସାଧାରଣତନ୍ତ୍ରବାଦୀମାନଙ୍କୁ ଚୁପ୍‌କରିଦେଲା ପରେ ବିଜୟୀ ପ୍ରେସିଡେଣ୍ଟ ଏବଂ ବ୍ୟବସ୍ଥାପକ ସଭା ପରସ୍ପର ମଧ୍ୟରେ କଳହ ଆରମ୍ଭ କରି ଦେଇଥିଲେ । ବହୁ କ୍ଷୁଦ୍ର କ୍ଷୁଦ୍ର ବ୍ୟାପାରରେ କଳହ ଦେଖାଦେଇଥିଲା ସତ; କିନ୍ତୁ ତାହା ସଂବିଧାନ ସଂଶୋଧନ ପ୍ରଶ୍ନ ଉପରେ ଅତିଶୟ ସୁସ୍ପଷ୍ଟ ଏବଂ ତିକ୍ତ ହୋଇଥିଲା । ସଂବିଧାନର ବ୍ୟବସ୍ଥା ଅନୁସାରେ ପ୍ରେସିଡେଣ୍ଟଙ୍କର ଚାରିବର୍ଷ କାର୍ଯ୍ୟକାଳ ଶେଷ ହୋଇଗଲେ ତାଙ୍କର ପୁନଃନିର୍ବାଚନ ନିଷିଦ୍ଧ କରାଯାଇଥିଲା । ଲୁଇ ନେପୋଲିୟନ ପ୍ରେସିଡେଣ୍ଟ ରୂପେ ତାଙ୍କର ଚାରିବର୍ଷ କାର୍ଯ୍ୟକାଳ ଶେଷ ହେଲାପରେ ସାଧାରଣ ରାଜନୈତିକ ଜୀବନରୁ ଅପସରିଯିବାକୁ ଚାହୁଁ ନଥିଲେ । ତାଙ୍କ ମନରେ ବିଶ୍ୱାସ ଜନ୍ମିଥିଲା ଯେ ଯଦି ଏହି ଦଫାଟି ରଦ୍ଦକରି ଦିଆଯାଏ, ତାହାହେଲେ ବହୁସଂଖ୍ୟକ ଫରାସୀ ଲୋକେ ତାଙ୍କୁ ପ୍ରେସିଡେଣ୍ଟ ରୂପେ ପୁନଃନିର୍ବାଚିତ କରିବେ । ବ୍ୟବସ୍ଥାପକ ସଭା ଏହି ଦଫାଟିକୁ ସଂଶୋଧନ କରିବାପାଇଁ ସେ ପ୍ରସ୍ତାବ ଦେଇଥିଲେ; କିନ୍ତୁ ସେ ସଭା ତାହା କରିବାକୁ ମନାକରିଦେଇଥିଲା । ଶାନ୍ତିପୂର୍ଣ୍ଣ ଉପାୟରେ କ୍ଷମତାରେ କ୍ରମାଗତ ରହିବାପାଇଁ ପ୍ରେସିଡେଣ୍ଟଙ୍କର ଯେଉଁ ଇଚ୍ଛାଭିଳାଷ ଥିଲା, ତାହା ବାଧାପ୍ରାପ୍ତ ହୋଇଥିଲା । ସେ ତାଙ୍କ କାର୍ଯ୍ୟରେ ଦେଖାଇ ଦେଇଥିଲେ ଯେ, ତାଙ୍କର ସେହି ଲକ୍ଷ୍ୟ ହାସଲ କରିବାପାଇଁ ସେ ଯେକୌଣସି ଉପାୟ ଅବଲମ୍ବନ କରିବାକୁ ପ୍ରସ୍ତୁତ ଅଛନ୍ତି । ସେ କେବଳ ସହସା ବଳପ୍ରୟୋଗଦ୍ୱାରା ଶାସନରେ ଅଦ୍ଭୁତ ପରିବର୍ତ୍ତନ ଆଣିବାପାଇଁ କଳ୍ପନା କରିନଥିଲେ; ସେ ତାକୁ ଯଥାଯଥ ଭାବରେ ଏବଂ ସଫଳତାର ସହିତ କାର୍ଯ୍ୟରେ ପରିଣତ କରିଥିଲେ । ବ୍ୟବସ୍ଥାପକ ସଭାକୁ ଲୋକମାନଙ୍କ ଆଗରେ ଦୁର୍ନାମ କରିବା ଉଦ୍ଦେଶ୍ୟରେ ସେ ଦିନେ ଯେଉଁ ଭୋଟାଧିକାର ସୀମିତକରିବା ଆଇନକୁ ଗ୍ରହଣ କରିନେବା ପାଇଁ ବିଶେଷ ଚାପ ଦେଇଥିଲେ, ସେହି ଆଇନକୁ ବାତିଲ କରିଦେବା ପାଇଁ ଦାବିକରିଥିଲେ । ପ୍ରେସିଡେଣ୍ଟ ନିର୍ଲଜ୍ଜଭାବରେ କପଟତା ଆଚରଣ କରି ନିଜକୁ ସଂବିଧାନର ଅଭିଭାବକ ଓ ସର୍ବଭୋଟାଧିକାରର ପ୍ରତିନିଧି ବୋଲି ପରିଚୟ ଦେବାକୁ ଚାହିଁଥିଲେ । ସେ ବିଶ୍ୱାସ କରିଥିଲେ ଯେ, ଯଦି ସେ ବ୍ୟବସ୍ଥାପକ ସଭାଉପରେ ଆକ୍ରମଣ କରିବେ, ତାହାହେଲେ ମଜଦୁରମାନେ ସେ ସଭା ସପକ୍ଷରେ ହସ୍ତକ୍ଷେପ କରିବେ ନାହିଁ । ତେଣୁ ସେ ବଳପ୍ରୟୋଗ

ଦ୍ୱାରା ହଠାତ୍ ଶାସନ ପରିବର୍ତ୍ତନ କରିବାପାଇଁ ଦୃଢ଼ପ୍ରତିଜ୍ଞ ହୋଇଥିଲେ ଏବଂ ତାଙ୍କର ଉଦ୍ୟମ ସଫଳ କରିବା ଉଦ୍ଦେଶ୍ୟରେ ସେ ଗୁପ୍ତଭାବରେ ବିଭିନ୍ନ ପଦକ୍ଷେପ ନେଇଥିଲେ । ସାମରିକ ଓ ବେସାମରିକ ସ୍ତରରେ ଲୋକ ନିଯୁକ୍ତ କରିବାର କ୍ଷମତା ତାଙ୍କର ଥିବାରୁ ତାହାର ସୁବିଧା ନେଇ ପ୍ରେସିଡେଣ୍ଟ ଲୁଇ ନେପୋଲିୟନ ନିଜର ଅନୁଚରମାନଙ୍କୁ ଅତି ଗୁରୁତ୍ୱପୂର୍ଣ୍ଣ ପଦ-ପଦବୀରେ ନିଯୁକ୍ତ କରିଥିଲେ ଏବଂ ସେମାନେ ବେଶ୍ ଜାଣିଥିଲେ ଯେ, ପ୍ରଚଳିତ ବ୍ୟବସ୍ଥାର ବିପର୍ଯ୍ୟୟ ଘଟିଲେ ସେମାନଙ୍କର କିଛି କ୍ଷତି ଘଟିବନାହିଁ; ବରଂ ଲାଭହେବ । ସେମାନଙ୍କ ମଧ୍ୟରେ ଥିଲେ ଯୁଦ୍ଧମନ୍ତ୍ରୀ ଯାହାଙ୍କ ଅଧୀନରେ ଥିଲା ସୈନ୍ୟବାହିନୀ, ଆଭ୍ୟନ୍ତରୀଣ ମନ୍ତ୍ରୀ ଯାହାଙ୍କ ନିୟନ୍ତ୍ରଣରେ ଥିଲେ ବିଭିନ୍ନ ଦପ୍ତରର ଅଧିକାରୀମାନେ ଏବଂ ପୁଲିସର ମୁଖ୍ୟାଧିକାରୀ ( Prefect-of Police ) ଯାହାଙ୍କ ଆୟତ୍ତାଧୀନରେ ଥିଲେ ପ୍ୟାରିସ୍‌ର ପୁଲିସ୍‌ମାନେ ।

ଏକଥା ଅସ୍ୱୀକାର କରିହେବ ନାହିଁ ଯେ, ଲୁଇ ନେପୋଲିୟନ୍ ପ୍ରେସିଡେଣ୍ଟ ନିଯୁକ୍ତ ହେଲା ଦିନରୁ ନେପୋଲିୟନ୍ ବୋନାପାର୍ଟଙ୍କ ପରି ଫ୍ରାନ୍ସର ସମ୍ରାଟ ହେବାପାଇଁ ଆଶାପୋଷଣ କରିଥିଲେ ଏବଂ ସେଥିପାଇଁ ରାସ୍ତା ପ୍ରସ୍ତୁତ କରୁଥିଲେ । ଫ୍ରାନ୍ସର ତାତ୍କାଳୀନ ଅବସ୍ଥା ତାଙ୍କ ପାଇଁ ଥିଲା ଏକ ସୁବର୍ଣ୍ଣ ସୁଯୋଗ । ଲୁଇ ନେପୋଲିୟନ୍ ପ୍ରେସିଡେଣ୍ଟ ହେଲପରେ ଦେଖିଲେ ଯେ, ଫରାସୀ ଲୋକମାନଙ୍କ ମନରେ ତଥାପି ଅସନ୍ତୋଷ ରହିଛି ଏବଂ ସେହିଯୋଗୁ ଉତ୍ତେଜନାପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଛି । ଅଧିକାଂଶ ଫରାସୀ ଲୋକେ ଶାନ୍ତି ଓ ଶୃଙ୍ଖଳା ଚାହୁଁଥିବାର ସେ ମଧ୍ୟ ଅନୁଭବ କରିଥିଲେ । ନେପୋଲିୟନୀୟ ଚିନ୍ତାଧାରା (Napoleonic idea) ଲୋକମାନଙ୍କୁ ଏପରି ମୁଗ୍ଧ କରିଥିଲା ଯେ, ତାର ପ୍ରତିନିଧିତ୍ୱ କରୁଥିବା ଲୁଇ ନେପୋଲିୟନ ଯେତେବେଳେ ପ୍ରଦେଶଗୁଡ଼ିକରେ ଗସ୍ତ କଲେ, ସେମାନେ ତାଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ସେ ଶ୍ରମିକଶ୍ରେଣୀ ସହିତ ମିତ୍ରତା ସ୍ଥାପନ କରିବେ ବୋଲି ଶ୍ରମିକମାନଙ୍କୁ ଭରସା ଦେଇ ସେମାନଙ୍କର ସ୍ନେହ ଓ ଶ୍ରଦ୍ଧା ଅର୍ଜନ କରିଥିଲେ । ସେ ପୋପଙ୍କୁ ରୋମରେ ପୁନଃସ୍ଥାପିତ କରି ଫ୍ରାନ୍ସର ଯାଜକ ସମ୍ପ୍ରଦାୟର ସମର୍ଥନ ଲାଭକରିଥିଲେ ।

ସାର୍ଡିନିୟା-ପିଡମଣ୍ଟର ରାଜା ଚାର୍ଲସ ଆଲବର୍ଟଙ୍କ ନେତୃତ୍ୱରେ ୧୮୪୮ ମସିହାରେ ଚାଲିଥିବା ଇଟାଲୀର ସ୍ୱାଧୀନତା ସଂଗ୍ରାମରେ ଯେତେବେଳେ ଅଷ୍ଟ୍ରିୟା ଚାର୍ଲସ୍ ଆଲବର୍ଟଙ୍କୁ କଷ୍ଟୋଜା ଯୁଦ୍ଧରେ ପରାସ୍ତ କଲା ଏବଂ ଜାତୀୟ ସଂଗ୍ରାମରୁ ଅପସରିଯିବାକୁ ବାଧ୍ୟକଲା, ସେତେବେଳେ ଇଟାଲୀର ସାଧାରଣତନ୍ତ୍ରବାଦୀମାନେ ରାଜତନ୍ତ୍ରବାଦୀ ଦଳର ପରାଜୟର ସୁଯୋଗ ନେଇ ମ୍ୟାଜିନି ଓ ତାଙ୍କର ଶିଷ୍ୟ ଗାରିବାଲଡିଙ୍କ ନେତୃତ୍ୱରେ ପୋପଙ୍କ ବିରୁଦ୍ଧରେ ରୋମ୍‌ରେ ଆନ୍ଦୋଳନ ଚଳାଇ ତାଙ୍କୁ ତଡ଼ିଦେଲେ ଏବଂ ରୋମରେ ସାଧାରଣତନ୍ତ୍ର ସରକାର ପ୍ରତିଷ୍ଠା କଲେ । ପୋପ ରାଜଧାନୀ ଛାଡ଼ି ଚାଲିଯିବା ସଙ୍ଗେ ସଙ୍ଗେ ଇଉରୋପୀୟ ଶକ୍ତିମାନଙ୍କୁ ସାହାଯ୍ୟ କରିବାପାଇଁ ଆବେଦନ କଲେ । ପୋପଙ୍କର

ରୋମରୁ ପଳାୟନ ବାର୍ତ୍ତା ସେମାନ କ୍ୟାଥଲିକ୍ ଜଗତରେ ଉତ୍ତେଜନା ସୃଷ୍ଟି କରିଥିଲା । ଫ୍ରାନ୍ସର ପ୍ରେସିଡେଣ୍ଟ ଲୁଇ ନେପୋଲିୟନ୍ ଫ୍ରାନ୍ସର ଶକ୍ତିଶାଳୀ କ୍ୟାଥଲିକ୍ ଦଳର ସମର୍ଥନ ଲାଭକରିବା ଉଦ୍ଦେଶ୍ୟରେ ଏକ ଅଭିଯାନକାରୀ ସେନା ମ୍ୟାଜିନିଙ୍କ ସାଧାରଣତନ୍ତ୍ର ବିରୁଦ୍ଧରେ ପଠାଇଥିଲେ । ଗାରିବାଲ୍ଡି ଦୁଇମାସରୁ ଅଧିକ କାଳ ରୋମର ପ୍ରତିରକ୍ଷା କାର୍ଯ୍ୟ ଚମତ୍କାର ଭାବରେ ପରିଚାଳନା କରିବା ପରେ ରୋମ ଫ୍ରାନ୍ସର ଅଭିଯାନକାରୀ ସେନା ନିକଟରେ ଆତ୍ମସମର୍ପଣ କରିଥିଲା । ତେଣୁ ଲୁଇ ନେପୋଲିୟନ୍ ରୋମରେ ପୋପ୍‌ଙ୍କର ଆଧିପତ୍ୟ ପୁନଃ ପ୍ରତିଷ୍ଠିତ କରି ଫ୍ରାନ୍ସର ଯାଜକ ସମ୍ପ୍ରଦାୟର ସମର୍ଥନ ଲାଭକରିବା ସଙ୍ଗେ ସଙ୍ଗେ ଦେଶ-ବିଦେଶରେ ବିଶେଷ ସମ୍ମାନ ମଧ୍ୟ ଅର୍ଜନ କରିଥିଲେ । ପୋପ୍ ନବମ ପାୟସ୍ ରୋମ୍‌କୁ ପ୍ରତ୍ୟାବର୍ତ୍ତନ କଲାପରେ ତାଙ୍କର ନିରାପତ୍ତା ପାଇଁ ଫ୍ରାନ୍ସର ଏକ ସୈନ୍ୟଦଳକୁ ସେଠାରେ ଅବସ୍ଥାପିତ କରାଗଲା । ତା'ଛଡ଼ା ଇଟାଲୀର ସ୍ୱାଧୀନତା ସଂଗ୍ରାମ ବିଫଳ ହେବା ପରେ ଯେତେବେଳେ ଅଷ୍ଟ୍ରିୟା ସରକାର କ୍ରୁଦ୍ଧ ହୋଇ ସେ ସଂଗ୍ରାମରେ ମୁଖ୍ୟ ଭୂମିକା ନେଇଥିବା ସାର୍ଡିନିୟା-ପିଡ଼ମଣ୍ଟକୁ ଅଷ୍ଟ୍ରିୟା ସହିତ ମିଶାଇଦେଇ ତାର ଅସ୍ତିତ୍ୱ ଲୋପ କରିଦେବାକୁ ଚାହିଁଲା, ସେତେବେଳେ ଲୁଇ ନେପୋଲିୟନ୍ ସାର୍ଡିନିୟା-ପିଡ୍‌ମଣ୍ଟ ସପକ୍ଷରେ ହସ୍ତକ୍ଷେପ କରିବେ ବୋଲି ଧମକ ଦେଇ ଅଷ୍ଟ୍ରିୟାକୁ ସେଥିରୁ ନିବୃତ୍ତ କରିଥିଲେ । ତାଙ୍କର ଜୀବନୀ ଲେଖକ ଏ. ଏଫ. ସିମ୍ପସନ ଏହି ପ୍ରସଙ୍ଗରେ ମନ୍ତବ୍ୟ ଦେବାକୁ ଯାଇ କହିଛନ୍ତି, "ଯଦି ସେ ୧୮୪୯ ମସିହାରେ ପିଡମଣ୍ଟର ଢାଲ ନ ହୋଇଥାନ୍ତେ ତାହାହେଲେ ୧୮୫୯ ମସିହାରେ ତାର ତରବାରି ହୋଇପାରି ନଥାନ୍ତେ ।" (A. F. Simpson the Biographer of Louis Napoleon in this conection remarked, "Had he not been Piedmont's shield in 1849 he could not in 1859 have been her sword.") ଅର୍ଥାତ୍ ଲୁଇ ନେପୋଲିୟନ୍ ଯଦି ୧୮୪୯ ମସିହାରେ ସାର୍ଡିନିୟା-ପିଡ଼ମଣ୍ଟକୁ ଅଷ୍ଟ୍ରିୟା ସହିତ ମିଶ୍ରଣରୁ ରକ୍ଷାକରି ନଥାନ୍ତେ, ତାହାହେଲେ ସାର୍ଡିନିୟା-ପିଡ୍‌ମଣ୍ଟ ୧୮୫୯ ମସିହାରେ ଇଟାଲୀର ମୁକ୍ତି ସଂଗ୍ରାମରେ ନେତୃତ୍ୱ ଦେବାକୁ ନଥାନ୍ତା କି ଲୁଇ ନେପୋଲିୟନ୍ ଉକ୍ତ ସଂଗ୍ରାମରେ ତାହା ସହିତ ଯୋଗଦେଇ ଅଷ୍ଟ୍ରିୟା ବିରୁଦ୍ଧରେ ଲଢ଼ାଇକରିବା ପ୍ରଶ୍ନ ଉଠିନଥାନ୍ତା । ଲୁଇ ନେପୋଲିୟନ୍‌ଙ୍କ ଇଟାଲୀୟ ନୀତିର ସାଫଲ୍ୟ ଫ୍ରାନ୍ସକୁ ଗୌରବାନ୍ୱିତ କରିବା ସଙ୍ଗେ ସଙ୍ଗେ ସେଠାରେ ତାଙ୍କ ଆସନ ସୁଦୃଢ଼ କରିବାରେ ମଧ୍ୟ ସାହାଯ୍ୟ କରିଥିଲା । ତାଙ୍କର ସମ୍ରାଟ ହେବାର ଆଶା ଉଜ୍ଜ୍ୱଳ ହୋଇ ଉଠିଥିଲା, ଯେତେବେଳେ ସେ ଦେଖିଲେ ଯେ ପ୍ୟାରିସ୍ କେବଳ ସାଧାରଣତନ୍ତ୍ରବାଦ ଉପରେ ଆସ୍ଥା ରଖିଛି; କିନ୍ତୁ ଦେଶର ଅବଶିଷ୍ଟ ଅଞ୍ଚଳଗୁଡ଼ିକ ରାଜତନ୍ତ୍ରବାଦ ପ୍ରତି ସହାନୁଭୂତିଶୀଳ ଅଟନ୍ତି ଏବଂ ତାଙ୍କୁ ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । ତେଣୁ ସେ ତାଙ୍କର ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ଉପରୋକ୍ତ ପଦକ୍ଷେପମାନ ନେଉଥିଲେ ।

ଲୁଇ ନେପୋଲିୟନ୍ ସମସ୍ତ ସତର୍କତାମୂଳକ ବ୍ୟବସ୍ଥା କଲା ପରେ ବଳପ୍ରୟୋଗ ଦ୍ୱାରା ହଠାତ୍ ଶାସନ ପରିବର୍ତ୍ତନ କରିବା ପାଇଁ ୧୮୫୧ ମସିହା ଡିସେମ୍ବର ୨ ତାରିଖ ଦିନଟିକୁ ବାଛିଥିଲେ; କାରଣ ଏହି ଦିନଟି ନେପୋଲିୟନ୍ ବୋନାପାର୍ଟଙ୍କ ଅଭିଷେକ ତଥା ଅଷ୍ଟରଲିଜ୍ ବିଜୟର ସ୍ମୃତି ବହନ କରିଥିଲା । ତାଙ୍କର ପରିକଳ୍ପନା ଅନୁଯାୟୀ ୧୮୫୧ ମସିହା ଡିସେମ୍ବର ୨ ତାରିଖ ଦିନ ପ୍ରତ୍ୟୁଷରୁ ବହୁ ସାମରିକ ବେସାମରିକ ନେତା, ସାଧାରଣତନ୍ତ୍ରବାଦୀ ଓ ରାଜତନ୍ତ୍ରବାଦୀଙ୍କୁ ବିଛଣାରେ ଶୋଇଥିବା-ବେଳେ ଗିରଫ କରାଯାଇ ଜେଲଖାନାକୁ ନିଆଯାଇଥିଲା । ବ୍ୟବସ୍ଥାପକ ସଭାର ପ୍ରକୋଷ୍ଠକୁ ଦଖଲ କରିନେବା ପାଇଁ ଏକ ପଦାତିକ ବାହିନୀକୁ ପଠାଯାଇଥିଲା ଏବଂ ବ୍ୟବସ୍ଥାପକ ସଭା ଭାଙ୍ଗି ଦିଆଗଲା ବୋଲି ଘୋଷଣା କରାଯାଇଥିଲା । ଶ୍ରମିକ-ଶ୍ରେଣୀକୁ ସନ୍ତୁଷ୍ଟ କରିବାପାଇଁ ଲୁଇ ନେପୋଲିୟନ୍ ସର୍ବସାଧାରଣ ଭୋଟାଧିକାର ପୁନଃ ପ୍ରତିଷ୍ଠା କରାଗଲା ବୋଲି ସାଧାରଣରେ ପ୍ରକାଶ କରିଥିଲେ । ସେ ଏପରି କାର୍ଯ୍ୟାନୁଷ୍ଠାନ କାହିଁକି କଲେ, ତାର କୈଫିୟତ୍ ଦେବାକୁ ଯାଇ ସେ କହିଥିଲେ ଯେ ସେ ସାଧାରଣତନ୍ତ୍ରକୁ ତାର ଶତ୍ରୁ, ରାଜତନ୍ତ୍ରବାଦୀ ଓ ସନ୍ତ୍ରାସବାଦୀମାନଙ୍କ ଆକ୍ରମଣରୁ ରକ୍ଷା କରିବା ଉଦ୍ଦେଶ୍ୟରେ ତାହା କଲେ । ସେ ତାଙ୍କର କାର୍ଯ୍ୟାନୁଷ୍ଠାନ ଯୁକ୍ତିଯୁକ୍ତ ବୋଲି ଦର୍ଶାଇଲେ ମଧ୍ୟ ଫରାସୀ ସୈନ୍ୟବାହିନୀ ସହିତ ଲୁଇ ନେପୋଲିୟନଙ୍କର ବିରୋଧୀମାନେ ପ୍ୟାରିସ୍‌ରେ କିଛି ସମୟ ଲଢ଼ାଇ କରିଥିଲେ । ସେ ଯାହାହେଉ, ଅବିଳମ୍ବେ ସେମାନଙ୍କୁ ଦମନ କରାଯାଇଥିଲା; ଲୁଇ ନେପୋଲିୟନ୍ ୧୮୫୧ ମସିହା ଡିସେମ୍ବର ୨ ତାରିଖ ଦିନ ହଠାତ୍ ବଳପ୍ରୟୋଗ ଦ୍ୱାରା ଶାସନ ପରିବର୍ତ୍ତନ କରି ନିରଙ୍କୁଶ ଶାସକର ଭୂମିକା ଗ୍ରହଣ କରିଥିଲେ । ତା'ପରେ ଲୁଇ ନେପୋଲିୟନ୍‌ଙ୍କ ଉପରେ ସାଂବିଧାନିକ କ୍ଷମତା ନ୍ୟସ୍ତ କରାଯିବା ବିଷୟ ଗଣଭୋଟ ମାଧ୍ୟମରେ ନିଷ୍ପତ୍ତି କରିବାକୁ ଫରାସୀ ଜାତିକୁ ଆହ୍ୱାନ କରାଯାଇଥିଲା । ଅତ୍ୟଧିକ ଭୋଟରେ ଫରାସୀ ଜାତି ନେପୋଲିୟନଙ୍କ ଉପରେ ତାହା ନ୍ୟସ୍ତ କଲା । ପ୍ରଦେଶଗୁଡ଼ିକର ଏହି ନିଷ୍ପତ୍ତି ପ୍ୟାରିସ୍‌କୁ ଠିକଣା ଜବାବ ହୋଇଥିଲା । ଅର୍ଥାତ୍ ସାଧାରଣତନ୍ତ୍ରରେ ବିଶ୍ୱାସ କରୁଥିବା ପ୍ୟାରିସ୍ ପକ୍ଷରେ ଏହି ନିଷ୍ପତ୍ତି ଏକ ପରାଜୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦ୍ୱିତୀୟ ସାଧାରଣତନ୍ତ୍ର ଏକଚ୍ଛତ୍ରବାଦର ମୁଖା ପିନ୍ଧି ପ୍ରାୟ ବର୍ଷେ ଯାଏଁ କୌଣସି ପ୍ରକାରେ ତିଷ୍ଠି ରହିଥିଲା । ଅବଶେଷରେ ୧୮୫୨ ମସିହାରେ ଲୁଇ ନେପୋଲିୟନ୍ ଫରାସୀ ସମ୍ରାଟ ଆଖ୍ୟା ଗ୍ରହଣ କରିଥିଲେ । ପୂର୍ବଥର ପରି ଗଣଭୋଟ ଦ୍ୱାରା ଏହାକୁ ସ୍ୱୀକୃତି ଦିଆଯାଇଥିଲା । ଯେଉଁ ସାଧାରଣତନ୍ତ୍ରକୁ ତାର ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଲୁଇ ନେପୋଲିୟନ୍ ବଳପ୍ରୟୋଗ କରି ଶାସନ ପରିବର୍ତ୍ତନ କରିଛନ୍ତି ବୋଲି ଯାହା ସେ ପୂର୍ବରୁ କହିଥିଲେ, ତାହା ମିଥ୍ୟା ବୋଲି ସାବ୍ୟସ୍ତ ହେଲା ।

# ତୃତୀୟ ନେପୋଲିୟନ୍ : ଦ୍ୱିତୀୟ ସାମ୍ରାଜ୍ୟ
# ( Napoleon III : The Second Empire )

## ତାଙ୍କର ପ୍ରାରମ୍ଭିକ ଜୀବନ (His Early Career)

ହଲାଣ୍ଡର ପୂର୍ବତନ ରାଜା ଲୁଇ ବୋନାପାର୍ଟଙ୍କ ପୁତ୍ର ଲୁଇ ନେପୋଲିୟନ ୧୮୦୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ୧୮୧୫ ମସିହାରେ ସମ୍ରାଟ ନେପୋଲିୟନ୍ ବୋନାପାର୍ଟଙ୍କର ପତନ ପରେ ବୋନାପାର୍ଟ ପରିବାର ନିର୍ବାସିତ ହେବାରୁ ସେ ସେହି ପରିବାର ସହିତ ଦେଶ ତ୍ୟାଗ କରିଥିଲେ । ସେ ତାଙ୍କର କୈଶୋରାବସ୍ଥା ମୁଖ୍ୟତଃ ସୁଇଜରଲ୍ୟାଣ୍ଡରେ ଅତିବାହିତ କରିଥିଲେ । ୧୮୩୧ ମସିହାରେ ସେ ଇଟାଲୀକୁ ଯାଇଥିଲେ ଏବଂ ପୋପ୍‌ଙ୍କ ବିରୁଦ୍ଧରେ କାରବୋନାରି ବିଦ୍ରୋହରେ ଭାଗ ନେଇଥିଲେ । ଠିକ୍ ପ୍ରାୟ ସେହି ସମୟରେ ଫ୍ରାନ୍‌ସରେ ବୋନାପାର୍ଟ-ମନୋଭାବକୁ ପୁନରୁଜ୍ଜୀବିତ କରାଯାଇଥିଲା ଏବଂ ନେପୋଲିୟନ୍ ବୋନାପାର୍ଟ ବୀରତ୍ୱବ୍ୟଞ୍ଜକ ରୋମାଞ୍ଚକର କାହାଣୀର ନାୟକ ରୂପେ ପୂଜା ପାଇଲେ । ୧୮୩୨ ମସିହାରେ ଲୁଇ ନେପୋଲିୟନ ୨୪ ବର୍ଷ ବୟସରେ ବୋନାପାର୍ଟ ପରିବାରର ମୁଖ୍ୟ ହୋଇଥିଲେ । ନିର୍ବାସିତର ଜୀବନ ଯାପନ କରୁଥିବା ସମୟରେ ସେ ଅନୁଭବ କରିଥିଲେ ଯେ ଫ୍ରାନ୍‌ସକୁ ଶାସନ କରିବାର ତାଙ୍କର ଅଧିକାର ଅଛି ଏବଂ ଏପରି ଦିନ ଆସିବ ଯେତେବେଳେ ସେ ଫ୍ରାନ୍‌ସର ଶାସନଭାର ଗ୍ରହଣ କରିବେ । ସେ ଷୋଳ ବର୍ଷ ପର୍ଯ୍ୟନ୍ତ ଏହି ଧାରଣା ଦୃଢ଼ଭାବରେ ପୋଷଣ କରିଥିଲେ; କିନ୍ତୁ ଏହି ଦୀର୍ଘ ଷୋଳ ବର୍ଷ ମଧ୍ୟରେ ତାଙ୍କର ଅଭିଳାଷ ପୂର୍ଣ୍ଣ ହେବାର ସେ କୌଣସି ସୂଚନା ପାଇ ନଥିଲେ; ବରଂ ତାଙ୍କର ଭାଗ୍ୟ-ବିପର୍ଯ୍ୟୟ ଘଟିଥିଲା । ସେ କେତେକ ସାହସିକ ସୈନ୍ୟ ସାଂଗ୍ରହ କରି ପ୍ରଥମେ ୧୮୩୬ ମସିହାରେ ଷ୍ଟ୍ରାସବର୍ଗରେ ଏବଂ ଦ୍ୱିତୀୟଥର ୧୮୪୦ ମସିହାରେ ବୋଲନରେ ବଳପୂର୍ବକ କ୍ଷମତା ଅଧିକାର କରିନେବା ପାଇଁ ପ୍ରବଳ ଉଦ୍ୟମ କରିଥିଲେ ସତ; କିନ୍ତୁ ତାଙ୍କର ଉଭୟ ଉଦ୍ୟମ ବ୍ୟର୍ଥ ହୋଇଥିଲା । ପ୍ରଥମ ନିଷ୍ଫଳ ଉଦ୍ୟମ ପରେ ତାଙ୍କୁ ଆମେରିକାରେ ନିର୍ବାସିତ କରାଯାଇଥିଲା । ସେଠାରୁ ସେ କିଛି ଦିନ ପରେ ଫ୍ରାନ୍‌ସକୁ ଫେରିଆସିଥିଲେ । ତାଙ୍କର ଦ୍ୱିତୀୟ ଉଦ୍ୟମ ବିଫଳ ହେବାରୁ ତାଙ୍କୁ କାରାଦଣ୍ଡ ଦିଆଯାଇଥିଲା ଏବଂ ଉତ୍ତର ଫ୍ରାନ୍‌ସର ହାମର ବନ୍ଦୀଶାଳାରେ ରଖାଯାଇଥିଲା । ସେଠାରୁ ସେ ରାଜମିସ୍ତ୍ରୀର ଛଦ୍ମବେଶରେ ଇଂଲଣ୍ଡକୁ ପଳାଇଯାଇଥିଲେ । ସେଠାରେ ତାଙ୍କୁ ୧୮୪୮ ମସିହା ଚାର୍ଟିଷ୍ଟ ଆନ୍ଦୋଳନ ସମୟରେ ସ୍ୱତନ୍ତ୍ର କନଷ୍ଟେବଲ ହିସାବରେ ଟ୍ରାଫାଲ୍‌ଗାର ସ୍କୋୟାରରେ ଅବସ୍ଥାପିତ କରାଯାଇଥିଲା । ସେଠାରେ ସେ କୌଣସି ମହତ୍ତ୍ୱ କାର୍ଯ୍ୟ ସାଧନ କରିଥିବାର ପ୍ରମାଣ ନାହିଁ ।

ସେ ଯାହାହେଉ, ଫ୍ରାନ୍‌ସର ୧୭୮୯ ବିପ୍ଳବ ଯେପରି ପ୍ରଥମ ନେପୋଲିୟନଙ୍କ ପାଇଁ ସୁଯୋଗ ସୃଷ୍ଟି କରିଥିଲା, ସେହିପରି ଫ୍ରାନ୍‌ସର ୧୮୪୮ ମସିହା ବିପ୍ଳବ ଲୁଇ

ନେପୋଲିୟନଙ୍କ ପାଇଁ ସୁଯୋଗ ସୃଷ୍ଟି କରିଥିଲା । ସେ ଫ୍ରାନ୍ସରେ ନବ ଗଠିତ ସାଧାରଣତନ୍ତ୍ର ଅଧୀନରେ କାର୍ଯ୍ୟ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ତାଙ୍କୁ ସାଂବିଧାନିକ ସଭାର ସଭ୍ୟ ନିର୍ବାଚିତ କରାଯାଇଥିଲା; କିନ୍ତୁ ସେଠାରେ ସେ ତାଙ୍କ ବ୍ୟକ୍ତିତ୍ୱର କୌଣସି ପରିଚୟ ଦେବାକୁ ସକ୍ଷମ ହୋଇ ନଥିଲେ । ମାତ୍ର ତାଙ୍କ ନାମ ନେପୋଲିୟନ୍ ହୋଇ-ଥିବାରୁ ସେ ବିଶେଷ ଜନପ୍ରିୟ ହୋଇଥିଲେ । ୧୮୪୮ ମସିହାରେ ଫରାସୀ ସାଧାରଣତନ୍ତ୍ରର ପ୍ରେସିଡେଣ୍ଟ ନିର୍ବାଚନରେ ସେ ପ୍ରତିଦ୍ୱନ୍ଦ୍ୱିତା କରି ବିପୁଳ ସଂଖ୍ୟକ ଭୋଟରେ ଜୟଲାଭ କରିଥିଲେ । ଲୁଇ ନେପୋଲିୟନ୍ ପ୍ରେସିଡେଣ୍ଟ ହେଲା ପରେ ୧୮୫୧ ମସିହା ଡିସେମ୍ବର ୨ ତାରିଖରେ ବଳପ୍ରୟୋଗ ଦ୍ୱାରା ହଠାତ୍ ଶାସନ ପରିବର୍ତ୍ତନ କରି ସମସ୍ତ କ୍ଷମତା ନିଜ ହାତକୁ ନେଇଥିଲେ । ୧୮୫୨ ମସିହା ଡିସେମ୍ବର ୨ ତାରିଖରେ ସେ ଗଣଭୋଟ ଗ୍ରହଣ କଲେ ଏବଂ ତାହା ଫଳରେ ସେ ସମ୍ରାଟ ଉପାଧି ଧାରଣ କଲେ ଓ ତୃତୀୟ ନେପୋଲିୟନ୍ ନାମରେ ପରିଚିତ ହେଲେ ।

ଉଭୟ ଇତିହାସ ଏବଂ ଐତିହାସିକମାନେ ତାଙ୍କ ପ୍ରତି ପ୍ରକୃତ ନ୍ୟାୟ ବିଚାର କରି-ନଥିଲେ । ଯେତେବେଳେ ତୃତୀୟ ନେପୋଲିୟନ୍‌ଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଥିଲା ଏବଂ ଫ୍ରାନ୍ସରେ ତାଙ୍କ ସ୍ଥିତି ଦୋହଲିଯାଇଥିଲା, ସେତେବେଳେ ଇତିହାସ ତାଙ୍କୁ ବିରାଟ କୂଟନୀତିଜ୍ଞ ଏବଂ ଯୋଦ୍ଧା ବିସମାର୍କଙ୍କ ସହିତ ତୁଳନା କରି ତାଙ୍କ ପ୍ରତି ହେୟଜ୍ଞାନ କରିଅଛି । ଐତିହାସିକ-ମାନେ ତୃତୀୟ ନେପୋଲିୟନ୍‌ଙ୍କ କାର୍ଯ୍ୟକଳାପର ପ୍ରକୃତ ବିଶ୍ଳେଷଣ ନ କରି କେତେକ ସମସାମୟିକ ବ୍ୟକ୍ତିଙ୍କ ମନ୍ତବ୍ୟ ଦ୍ୱାରା ପ୍ରଭାବିତ ହୋଇଥିଲେ । ତାଙ୍କ ବିଷୟରେ କୁହାଯାଇଛି ଯେ "ତାଙ୍କର ମାତ୍ର ଗୋଟିଏ ପରିକଳ୍ପନା ଥିଲା ଏବଂ ଯେତେବେଳେ ଏହି ପରିକଳ୍ପନା କାର୍ଯ୍ୟରେ ପରିଣତ ହୋଇଗଲା, ତାଙ୍କର ଆଉ କୌଣସି ପରିକଳ୍ପନା ନଥିଲା ।" (It is stated that "he was a man of one idea, and that when this was accomplished, he was without one." ) ଏହି ଉକ୍ତିଟି ଉକ୍ତି ରୁଚିକର ହୋଇପାରେ; କିନ୍ତୁ ସତ୍ୟ ନୁହେଁ । ଅବଶ୍ୟ ନେପୋଲିୟନ୍‌ଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା ଯେ ସେ ଦିନେ ଫରାସୀ ସମ୍ରାଟ ହେବେ ଏବଂ ସେହିପରି କଳ୍ପନା କାର୍ଯ୍ୟରେ ପରିଣତ କରିବାପାଇଁ ସେ ତତ୍ପର ହୋଇଥିଲେ; କିନ୍ତୁ ସମ୍ରାଟ ହିସାବରେ ତାଙ୍କୁ ଅନେକଗୁଡ଼ିଏ ପରିକଳ୍ପନା କାର୍ଯ୍ୟରେ ପରିଣତ କରିବାକୁ ପଡ଼ିଥିଲା । ସାଧାରଣତଃ ଲୋକେ ବିଶ୍ୱାସ କରନ୍ତି ଯେ ନେପୋଲିୟନ୍‌ଙ୍କ ରାଜତ୍ୱକାଳରେ ଯେଉଁସବୁ କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ହୋଇଥିଲା, ସେଥିରେ ତାଙ୍କ ମନ୍ତ୍ରୀମାନଙ୍କର ବିଶେଷ କିଛି ଅବଦାନ ନାହିଁ । ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଥିଲା ଏବଂ ତାଙ୍କ ରାଜତ୍ୱକାଳରେ ଯେଉଁସବୁ ଭଲକାମ ହୋଇଥିଲା ସେଥିପାଇଁ ତାଙ୍କୁ ପ୍ରଶଂସା କରିବାକୁ ପଡ଼ିବ ଓ ଯେଉଁସବୁ ଭୁଲ୍‌ଭଟକା ହୋଇଥିଲା ସେଥିପାଇଁ ତାଙ୍କୁ ଦାୟୀ କରିବାକୁ ହେବ; କାରଣ ସେ ମନ୍ତ୍ରୀମାନଙ୍କ ଉପରେ ଆସ୍ଥା ସ୍ଥାପନକରି କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିବାକୁ ଦେଉନଥିଲେ ।

ତୃତୀୟ ନେପୋଲିୟନ୍ ଜଣେ ଦୁଃସାହସିକ ବ୍ୟକ୍ତି ଏବଂ ତାଙ୍କଦ୍ୱାରା ଦ୍ୱିତୀୟ ସାମ୍ରାଜ୍ୟ ପ୍ରତିଷ୍ଠା ଏକ ଦୁଃସାହସିକ ଉଦ୍ୟମ । ନେପୋଲିୟନ୍ ବୋନାପାର୍ଟଙ୍କ ଆଦର୍ଶରେ ପ୍ରବୃଦ୍ଧ ଶାସନ ପୁନଃ ପ୍ରବର୍ତ୍ତନ କରିବା ଏବଂ ସମଗ୍ର ବିଶ୍ୱ—ବିଶେଷତଃ ଫ୍ରାନ୍ସକୁ ନେପୋଲିୟନ୍ ବୋନାପାର୍ଟଙ୍କ ବିଜୟଗୁଡ଼ିକ ବିଷୟରେ ଦୃଢ଼ଧାରଣା ଜନ୍ମାଇବାପାଇଁ ଏହି ଉଦ୍ୟମ ହୋଇଥିଲା । ଦ୍ୱିତୀୟ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇପାରି ନଥାନ୍ତା ଯଦି ଫରାସୀଜାତି



ତୃତୀୟ ନେପୋଲିୟନ
( ଫାର୍ମବର୍ଗେ ହଲ୍‌ଷ୍ଟିତ ଚିତ୍ରକୃତିରୁ ଉଦ୍ଧୃତ )

ଇତିହାସର ପୁନରାବୃତ୍ତି ଚାହିଁନଥାନ୍ତା । ଫରାସୀମାନେ ଦୁଇ ପ୍ରକାର ରାଜତନ୍ତ୍ର ପରୀକ୍ଷା କରି ବିଫଳ ହୋଇଥିଲେ । ସେମାନେ ମଧ୍ୟ ଏକ ସାଧାରଣତନ୍ତ୍ର ପ୍ରତିଷ୍ଠା କରିଥିଲେ; କିନ୍ତୁ ଦେଖିଲେ ଯେ ସେହି ସାଧାରଣତନ୍ତ୍ର ସାମାନ୍ୟ ବିଷୟରେ କଳହ କରୁଛି ଏବଂ

ଦୋଦୋପାନ୍ଥିଆ ନୀତି ଅନୁସରଣ କରୁଛ । ତେଣୁ ସେମାନେ ଜାତୀୟ ସମ୍ମାନ ପୁନରୁଦ୍ଧାର କରିବାପାଇଁ ବିଶେଷ ଆଗ୍ରହୀ ଥିଲେ । ସେମାନେ ଲୁଇ ଫିଲିପଙ୍କ ରାଜତ୍ୱକାଳରେ ଯେଉଁ ଗୌରବରୁ ବଞ୍ଚିତ ହୋଇଥିଲେ ସେହି ଜାତୀୟ ଗୌରବର ଅଧିକାରୀ ହେବାକୁ ଚାହିଁଥିଲେ । ସମ୍ରାଟ ତୃତୀୟ ନେପୋଲିୟନ ଥରେ ବ୍ରିଟେନର ରାଜଦୂତଙ୍କୁ କହିଥିଲେ ଯେ, ସେ ଫ୍ରାନ୍ସର ସାମରିକ ଏବଂ ଉଦ୍ଧତ ପ୍ରବୃତ୍ତି ବିଷୟ ସଚେତନ । ତେଣୁ ସେ ତାହାକୁ ତୃପ୍ତକରିବାକୁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ।

ନେପୋଲିୟନ୍ ସମ୍ରାଟ ହେବା ପୂର୍ବରୁ ୧୮୪୯ ମସିହାରେ ସେ ଜାତୀୟ ଗୌରବ ପୁନରୁଦ୍ଧାର ବିଷୟରେ ଯେଉଁ ସୂଚନା ଦେଇଥିଲେ, ତାହା କାଳେ ଫରାସୀ ଜାତି ମନରେ ଧାରଣା ଦେଇଥିବ ଯେ ସେ ବହୁତଗୁଡ଼ିଏ ଯୁଦ୍ଧ ଚଲାଇବାପାଇଁ ମନସ୍ଥ କରିଛନ୍ତି । ତେଣୁ ସମ୍ରାଟ ହେବାମାତ୍ରେ ସେ ଘୋଷଣା କଲେ ଯେ, ସାମ୍ରାଜ୍ୟ ଅର୍ଥ ଯୁଦ୍ଧ ନୁହେଁ । 'ସାମ୍ରାଜ୍ୟ ହେଉଛି ଶାନ୍ତି ।' ଅର୍ଥନୈତିକ ବିଜୟ ହାସଲ କରିବାକୁ ହେବ ଏବଂ ସେହି ଲକ୍ଷ୍ୟସାଧନ ପାଇଁ ଫରାସୀମାନେ ସୈନିକମାନଙ୍କପରି କାର୍ଯ୍ୟ କରିବେ । ପ୍ରକୃତରେ ସେ ଜଣେ ଶାନ୍ତିପ୍ରିୟ ଲୋକ । ତାଙ୍କ ବିଖ୍ୟାତ ପିତୃବ୍ୟଙ୍କ ପରି ଯୁଦ୍ଧପ୍ରିୟ ନଥିଲେ । ଏହା ସତ୍ତ୍ୱେ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଥିଲା ।

ଦ୍ୱିତୀୟ ସାମ୍ରାଜ୍ୟ ଅନେକାଂଶରେ ପ୍ରଥମ ସାମ୍ରାଜ୍ୟର ଅବିକଳ ନକଲ ଥିଲା । ତେଣୁ ପ୍ରଥମ ସାମ୍ରାଜ୍ୟର ଯେଉଁସବୁ ଶକ୍ତି ଓ ଯେଉଁସବୁ ଦୁର୍ବଳତା ଥିଲା ତାହା ଦ୍ୱିତୀୟ ସାମ୍ରାଜ୍ୟରେ ରହିବା ସ୍ୱାଭାବିକ । ତୃତୀୟ ନେପୋଲିୟନ୍ ସର୍ବପ୍ରଥମେ ପ୍ରଚାର କଲେ ଯେ, ଫ୍ରାନ୍ସର ତାତ୍କାଳୀନ ପରିସ୍ଥିତିରେ ଜନହିତୈଷୀ ସ୍ୱେଚ୍ଛାଚାରୀ ଶାସନ ପ୍ରତିଷ୍ଠାର ଆବଶ୍ୟକତା ରହିଛି । ଦେଶରେ ସ୍ୱାଭାବିକ ଅବସ୍ଥା ଫେରିଆସିଲେ ଗଣତାନ୍ତ୍ରିକ ଶାସନପଦ୍ଧତି ପ୍ରବର୍ତ୍ତନ କରାଯିବ । ଫ୍ରାନ୍ସର ଦ୍ୱିତୀୟ ସାମ୍ରାଜ୍ୟର ଇତିହାସକୁ ଦୁଇଭାଗରେ ବିଭକ୍ତ କରିବା ଯୁକ୍ତିସଙ୍ଗତ ହେବ । ୧୮୫୨ ମସିହାରୁ ୧୮୬୦ ମସିହା ପର୍ଯ୍ୟନ୍ତ ସ୍ୱେଚ୍ଛାଚାରୀଶାସନକୁ ପ୍ରଥମ ପର୍ଯ୍ୟାୟଭୁକ୍ତ ଏବଂ ୧୮୬୦ ମସିହାରୁ ୧୮୭୦ ମସିହା ପର୍ଯ୍ୟନ୍ତ ଗଣତନ୍ତ୍ରର ସମ୍ପ୍ରସାରଣ ସମୟକୁ ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

## ତୃତୀୟ ନେପୋଲିୟନଙ୍କର ଆଭ୍ୟନ୍ତରୀଣ ନୀତି
## (The Internal Policy of Napoleon III)

ଦ୍ୱିତୀୟ ସାମ୍ରାଜ୍ୟର ଶାସନ ବ୍ୟବସ୍ଥା ନେପୋଲିୟନ୍ ବୋନାପାର୍ଟଙ୍କ ଅମଳର କନ୍ସୁଲେଟ ଶାସନ ବ୍ୟବସ୍ଥା ଆଦର୍ଶରେ ଗଢ଼ାଯାଇଥିଲା । ମନ୍ତ୍ରୀମାନେ ସମ୍ରାଟଙ୍କଦ୍ୱାରା ନିଯୁକ୍ତ ହେଉଥିଲେ ଏବଂ ସେମାନେ ତାଙ୍କ ନିକଟରେ ଦାୟୀ ରହୁଥିଲେ । ଆଇନଗୁଡ଼ିକ ରାଜ୍ୟପରିଷଦ (Council of State) ଦ୍ୱାରା ପ୍ରସ୍ତୁତ କରାଯାଉଥିଲା; କିନ୍ତୁ

ସର୍ବଶ୍ରେଣୀଭୋଟାଧିକାର ଭିତ୍ତିରେ ଗଢ଼ାଯାଇଥିବା ବ୍ୟବସ୍ଥାପକ ସଭାର ସେ ଆଇନଗୁଡ଼ିକ ଅନୁମୋଦନ କିମ୍ବା ପ୍ରତ୍ୟାଖ୍ୟାନ କରିବାର କ୍ଷମତା ଥିଲା । ସରକାରଙ୍କ ସପକ୍ଷରେ ବହୁମତ ପାଇବା ଉଦ୍ଦେଶ୍ୟରେ ଭୋଟଦାତାମାନଙ୍କୁ ଅତି କୌଶଳରେ ପ୍ରଭାବିତ କରାଯାଉଥିବାରୁ, ଆଇନଗୁଡ଼ିକ କେବଳ ବ୍ୟବସ୍ଥାପକ ସଭାଦ୍ୱାରା ମଞ୍ଜୁର କିମ୍ବା ନାମଞ୍ଜୁର କରାଯାଇଥିବାରୁ ସମ୍ପୂର୍ଣ୍ଣ ବଜେଟ ଉପରେ ଭୋଟଦେବା ବ୍ୟବସ୍ଥା ଥିବାରୁ ଏବଂ ବ୍ୟବସ୍ଥାପକ ସଭାର ଆଲୋଚନା ପ୍ରକାଶ କରିବାକୁ ଅନୁମତି ଦିଆଯାଉନଥିବାରୁ, ଏହିପ୍ରକାର ବ୍ୟବସ୍ଥାପକ ସଭା ଶକ୍ତିଶାଳୀ ହେବାର କିମ୍ବା ଜନମତର କେନ୍ଦ୍ର ହେବାର ସମ୍ଭାବନା ନଥିଲା । ବ୍ୟବସ୍ଥାପକ ସଭା ଛଡ଼ା ଗୋଟିଏ ସିନେଟ୍ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ସିନେଟ୍‌ର ସଭ୍ୟମାନେ ସମ୍ରାଟଙ୍କ ଦ୍ୱାରା ଆଜୀବନ ନିଯୁକ୍ତ ହେବାର ବ୍ୟବସ୍ଥା ଥିଲା ଏବଂ ସେମାନଙ୍କର ବହିଷ୍କାରପାଇଁ କୌଣସି ଆଇନ ନଥିଲା । ସିନେଟ୍‌ର ଆଇନ ପ୍ରଣୟନ କ୍ଷମତା ନଥିଲା କି କାର୍ଯ୍ୟନିର୍ବାହିକା କ୍ଷମତା ନଥିଲା କି ବିଚାରବିଭାଗୀୟ କ୍ଷମତା ନଥିଲା । ଏହାକୁ ମୌଳିକ ଆଇନର ଅଭିଭାବକ ଘୋଷଣା କରାଯାଇଥିଲା । ଅର୍ଥାତ୍ ଏହା ସଂବିଧାନର ରକ୍ଷକ ଥିଲା । ସମସ୍ତ ଆଇନ ସିନେଟ୍ ନିକଟରେ ଉପସ୍ଥାପିତ କରିବାକୁ ପଡ଼ିବ ବୋଲି ସ୍ଥିର କରାଯାଇଥିଲା । ଯଦି କୌଣସି ଆଇନ ସଂବିଧାନର ବିରୋଧ କରୁଥିବ, ତାହାହେଲେ ସିନେଟ ସେ ଆଇନ ଘୋଷଣା କରିବାକୁ ମନା କରିଦେଉଥିଲା । ସଂବିଧାନର ଅସ୍ପଷ୍ଟ ଓ ସନ୍ଦେହାତ୍ମକ ପଦାବଳୀର ବ୍ୟାଖ୍ୟା ଏହା ଉପରେ ନ୍ୟସ୍ତ କରାଯାଇଥିଲା । ଏହାର ମଧ୍ୟ ସଂବିଧାନ-ସଂଶୋଧନ ପ୍ରସ୍ତାବ ଦେବାର କ୍ଷମତା ଥିଲା; କିନ୍ତୁ ସମ୍ରାଟ ମଞ୍ଜୁର କଲେ ଯାଇଁ ତାହା ଚୂଡ଼ାନ୍ତ ହେବାପାଇଁ ବ୍ୟବସ୍ଥା ଥିଲା । ପ୍ରକୃତରେ ସିନେଟ୍ କେବଳ ସମ୍ରାଟଙ୍କର ଏକ ହତିଆର ଥିଲା । ସେହିପରି ରାଜ୍ୟପରିଷଦ (Council of State) ର ସଭ୍ୟମାନେ ସମ୍ରାଟଙ୍କଦ୍ୱାରା ନିଯୁକ୍ତ ହେଉଥିଲେ; କିନ୍ତୁ ସେମାନେ ସମ୍ରାଟଙ୍କଦ୍ୱାରା ବିତାଡ଼ିତ ମଧ୍ୟ ହୋଇପାରିବେ ବୋଲି ବ୍ୟବସ୍ଥା ଥିଲା । ଏହାର ଆଇନ ଆଗତ କରିବାର ଅଧିକାର ଥିଲା । କିନ୍ତୁ ପ୍ରଣୟନ କରିବାର ଅଧିକାର ନଥିଲା । ତା'ଛଡ଼ା ତୃତୀୟ ନେପୋଲିୟନଙ୍କ ରାଜତ୍ୱକାଳରେ ଛାପାଖାନା ଉପରେ କଡ଼ାନଜର ରଖାଯାଇଥିଲା ଏବଂ ସର୍ବସାଧାରଣସଭା ଉପରେ ସାବଧାନତା ସହିତ କଟକଣା ଜାରି କରାଯାଇଥିଲା । ତା'ଛଡ଼ା ସଚିବସ୍ତ୍ର ଗୁପ୍ତପୁଲିସ ଉଦାରମତ ଯେପରି ପ୍ରକାଶ ବିରୁଦ୍ଧରେ ଏକ ଅସ୍ୱସ୍ତିକର ବାତାବରଣ ସୃଷ୍ଟିକରିଥିଲେ । ଶିକ୍ଷାର ନିୟନ୍ତ୍ରଣ ଭାର ଧର୍ମଯାଜକ ସମ୍ପ୍ରଦାୟ ଉପରେ ନ୍ୟସ୍ତ କରାଯାଇଥିଲା । ଜଣେ ଲେଖକ ଯଥାର୍ଥରେ କହିଥିଲେ ଯେ, "ଯେଉଁସବୁ ସକ୍ରିୟ ଜାତୀୟ ସଂସ୍ଥା ଲୋକମାନଙ୍କ ମଧ୍ୟରେ ପ୍ରକାଶ୍ୟ ନାଗରିକତା ସୃଷ୍ଟିକରିବାରେ ସମର୍ଥ ଥିଲା, ସେହି ସବୁକୁ ନେପୋଲିୟନ ଅଚଳ କରିଦେଇଥିଲେ । ସେହିସବୁ ହେଲେ—ପାର୍ଲାମେଣ୍ଟ, ସର୍ବଶ୍ରେଣୀଭୋଟାଧିକାର, ଛାପାଖାନା, ଶିକ୍ଷା ଏବଂ ସମ୍ମିଳନୀ ।" (A writer said that "he (Napoleon) paralysed all those active national forces which tend to create the public spirit of a people, such as parliament,

**universal suffrage, the press, education and association.")** ତୃତୀୟ ନେପୋଲିୟନଙ୍କ ସ୍ଥିତି ଜନମତ ଉପରେ ନିର୍ଭର କରିଥିଲା ସତ; କିନ୍ତୁ ସେ ଜନସାଧାରଣ ପ୍ରଗଲ୍ଭ ହେବା ଚାହୁଁ ନଥିଲେ ।

ଫ୍ରାନ୍ସର ସୈନ୍ୟବାହିନୀ ଏବଂ ନୌବାହିନୀ ସମ୍ରାଟଙ୍କର କର୍ତ୍ତୃତ୍ୱାଧୀନରେ ଥିଲା । ସେ ଯୁଦ୍ଧ ଓ ଶାନ୍ତିପ୍ରସ୍ତାବ ବିଷୟରେ ନିଷ୍ପତ୍ତି କରୁଥିଲେ । ସେ କେବଳ ଶାନ୍ତି ଚୁକ୍ତି ଏବଂ ରାଜନୈତିକ ମୈତ୍ରୀ ଏବଂ ବାଣିଜ୍ୟିକ ଚୁକ୍ତି ସମ୍ପାଦନ କରୁଥିଲେ । ସେ ନ୍ୟାୟ ବିଚାରର ଆଧାର ଥିଲେ ଏବଂ ଦୋଷୀକୁ କ୍ଷମା ଦେବାର ତାଙ୍କର ପୂର୍ଣ୍ଣ ଅଧିକାର ଥିଲା । ମନ୍ତ୍ରୀମାନେ ତାଙ୍କ ଉପରେ ପୂରାପୂରି ନିର୍ଭର କରୁଥିଲେ । ସେ ସିନେଟ୍ ଓ ରାଜପରିଷଦର ସଭ୍ୟମାନଙ୍କୁ ନିଯୁକ୍ତ କରିବା ଛଡ଼ା ସର୍ବୋଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶମାନଙ୍କୁ ମଧ୍ୟ ନିଯୁକ୍ତ କରୁଥିଲେ । ସେ କେବଳ ବ୍ୟବସ୍ଥାପକ ସଭା ଆହ୍ୱାନ କରୁଥିଲେ ଏବଂ ତାକୁ ସ୍ଥଗିତ କରିବା ଓ ଭାଙ୍ଗିଦେବାର କ୍ଷମତା ମଧ୍ୟ ତାଙ୍କର ଥିଲା । ସେ ବ୍ୟବସ୍ଥାପକ ସଭା ଭାଙ୍ଗିଦେଲା ପରେ ଚାହିଁଲେ ଛଅମାସ ପର୍ଯ୍ୟନ୍ତ ଅନ୍ୟ ଏକ ବ୍ୟବସ୍ଥାପକ ସଭା ନ ଡାକିପାରନ୍ତି । ସଂକ୍ଷେପରେ କହିଲେ ସମ୍ରାଟ ଥିଲେ ରାଷ୍ଟ୍ର । ସଂସଦୀୟ ସଂସ୍ଥାଗୁଡ଼ିକ ସମ୍ରାଟଙ୍କ ଇଙ୍ଗିତରେ ପରିଚାଳିତ ହେଉଥିଲା । ସମ୍ବାଦପତ୍ରଗୁଡ଼ିକର ସ୍ୱାଧୀନତା ନଥିଲା । ଯେଉଁ ସମ୍ବାଦପତ୍ର ଓ ପତ୍ରିକାଗୁଡ଼ିକ ସରକାରଙ୍କୁ ସମର୍ଥନ କରୁଥିଲେ ସେଗୁଡ଼ିକ ଲାଭବାନ ହେଉଥିଲେ । ସରକାର ବିରୋଧୀ ପତ୍ରପତ୍ରିକା ଉପରେ କଟକଣା ଜାରି କରାଯାଇଥିଲା । ଏପରି ବ୍ୟବସ୍ଥା ଫଳରେ ରାଜନୀତିକ ଜୀବନ ପ୍ରାୟ ଲୋପପାଇଯାଇଥିଲା ଏବଂ ବୌଦ୍ଧିକ ଜୀବନ ପ୍ରାୟ ନିଷ୍ପ୍ରଭ ହୋଇଯାଇଥିଲା । ଦମନଲୀଳା ବ୍ୟାପକ ହୋଇଥିଲା । ସୁତରାଂ ଫ୍ରାନ୍ସକୁ ସ୍ୱାଧୀନତାର ଭୂମି ବୋଲି କହିବା ସମୀଚୀନ ହେବନାହିଁ ।

ତୃତୀୟ ନେପୋଲିୟନଙ୍କ ଶାସନ ବ୍ୟବସ୍ଥା ନେପୋଲିୟନ୍ ବୋନାପାର୍ଟଙ୍କ ଶାସନ ପଦ୍ଧତିର ନାମାନ୍ତର ବୋଲି କୁହାଗଲେ ମଧ୍ୟ ତାହା ଏପରି ଭାବରେ ନିରୂପଣ କରାଯାଇଥିଲା ଯେ, ଫରାସୀମାନେ ମନେକରୁଥିଲେ ସେମାନେ ସ୍ୱାୟତ୍ତଶାସନ ଉପଭୋଗ କରୁଅଛନ୍ତି; କିନ୍ତୁ ବାସ୍ତବରେ ତୃତୀୟ ନେପୋଲିୟନଙ୍କ ଶାସନ ବ୍ୟବସ୍ଥା ସ୍ୱେଚ୍ଛାତନ୍ତ୍ର ଛଡ଼ା ଆଉ କିଛି ନଥିଲା । ରାଜନୈତିକ କ୍ଷେତ୍ରରେ ସ୍ୱେଚ୍ଛାତନ୍ତ୍ରୀ ଶାସନରେ ସେ ବିଶ୍ୱାସୀ ହେଲେ ମଧ୍ୟ ସେ ଅନ୍ୟ ସବୁଦିଗରେ ପ୍ରଗତିବାଦୀ ଥିଲେ । ସେ ପ୍ରଜାହିତକାରୀ ନିରଙ୍କୁଶ ଶାସନ ପ୍ରତିଷ୍ଠା କରିଥିଲେ । ଫ୍ରାନ୍ସରେ ୧୮୧୪ ମସିହାରୁ ଯେତେ ରାଜା ତାଙ୍କ ପୂର୍ବରୁ ଶାସନ କରିଥିଲେ ସେମାନଙ୍କ ପରି ସେ କୌଣସି ରାଜନୈତିକ ଦଳର ମୁଖ୍ୟ ନଥିଲେ । ସେ ସବୁ ଶ୍ରେଣୀର ଭୌତିକ ମଙ୍ଗଳ ଚାହୁଁଥିଲେ । ସେହି ଉଦ୍ଦେଶ୍ୟରେ ସେ ରାଷ୍ଟ୍ରକୁ ଜାତିର ଅର୍ଥନୈତିକ ଜୀବନର ନିୟାମକ ହେବାକୁ ନଦେଇ ତାର ପୃଷ୍ଠପୋଷକ ହେବାକୁ ଦେଇଥିଲେ । ତାଙ୍କ ଅମଳରେ ଫ୍ରାନ୍ସର ଅଭୂତପୂର୍ବ ସମୃଦ୍ଧି ଘଟିଥିଲା । ଏହି କ୍ଷେତ୍ରରେ ତାଙ୍କର ନୀତି ମଧ୍ୟବିତ୍ତଶ୍ରେଣୀକୁ ସନ୍ତୁଷ୍ଟ କରିବାପାଇଁ ଉଦ୍ଦିଷ୍ଟ ଥିଲା । ରେଲରାସ୍ତା ପାଇଁଗୁଡ଼ିକୁ

ବୃଦ୍ଧି ପାଇଥିଲା । ବାଷ୍ପୀୟ ପୋତର ଗତିପଥକୁ ପୃଥିବୀର ବିଭିନ୍ନ ସ୍ଥାନକୁ ପ୍ରସାରିତ କରାଯାଇଥିଲା । ଉପନିବେଶମାନଙ୍କର ଉତ୍ପନ୍ନ ଦ୍ରବ୍ୟକୁ ବିଦେଶୀ ଜାହାଜଗୁଡ଼ିକରେ ଆମଦାନୀ କରିବାପାଇଁ ଅନୁମତି ଦିଆଯାଇ ବାଣିଜ୍ୟର ଅଧିକ ବିକାଶ କରାଯାଇଥିଲା । ଦ୍ୱିତୀୟ ସାମ୍ରାଜ୍ୟର ଏକ ବଡ଼ ଅବଦାନ ହେଲା ଜାତୀୟ ବନ୍ଧକ ବ୍ୟାଙ୍କ୍ (Credit foncier) ପ୍ରତିଷ୍ଠା । ପ୍ରଥମେ ଏହି ବ୍ୟାଙ୍କ୍ ସରକାରୀ ଅର୍ଥ ସାହାଯ୍ୟ ପାଉଥିଲା ଏବଂ କୃଷକମାନଙ୍କଠାରୁ ଜମି ବନ୍ଧକରଖି ସେମାନଙ୍କୁ ଟଙ୍କା ଋଣ ଦେଉଥିଲା । ଏହା ଫଳରେ କୃଷିର ଉନ୍ନତିପାଇଁ ବହୁ ପରିମାଣରେ ପୁଞ୍ଜି ଲଗାଇବା ସହଜ ହୋଇଥିଲା । ଫ୍ରାନ୍ସ ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ କୃଷିର ବିକାଶପାଇଁ ସେଠାରେ ବହୁପରିମାଣର ପୁଞ୍ଜି ଖଟାଯିବାର ବିଶେଷ ଗୁରୁତ୍ୱ ରହିଛି । ମଜଦୁରମାନଙ୍କ ପ୍ରତି ପ୍ରକୃତ ସହାନୁଭୂତି ମୂଳରୁ ଦେଖାଇ ଆସୁଥିବାରୁ ତୃତୀୟ ନେପୋଲିୟନ୍ ସମ୍ରାଟ ହେଲା ପରେ ସେମାନଙ୍କ ଉନ୍ନତି ବିଷୟରେ ଚିନ୍ତାକରିଥିଲେ; କିନ୍ତୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସେ ରାଷ୍ଟ୍ରାୟତ୍ତ ଅର୍ଥନୈତିକ ବ୍ୟବସ୍ଥା (Social State) ଅପେକ୍ଷା ଅବାଧ ଅର୍ଥନୈତିକ ବ୍ୟବସ୍ଥା (Laissez-faire) ଉପରେ ଅଧିକ ବିଶ୍ୱାସ କରୁଥିଲେ । ସେ ଯାହାହେଉ, ଶ୍ରମିକଶ୍ରେଣୀ ଯେପରି ଅବସ୍ଥାରେ ବସବାସ କରି ରହୁଥିଲେ ସେହି ଅବସ୍ଥାର ଉନ୍ନତି କରିବାପାଇଁ ସେ ତତ୍ପର ହୋଇଥିଲେ । ସେ ପକ୍କା ଚଟାଣ, ରାସ୍ତା ଓ କୋଠାବାଡ଼ି ନିର୍ମାଣକରିବା ନୀତି ଗ୍ରହଣକରି ବହୁସଂଖ୍ୟକ ଲୋକଙ୍କୁ ସେ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ସେ ରାଜ୍ୟର ଅର୍ଥନୈତିକ ଅବସ୍ଥା ଉନ୍ନତିକରିବା ଉଦ୍ଦେଶ୍ୟରେ କଳକାରଖାନା ବସାଇଥିଲେ ଓ ବ୍ୟବସାୟ ବାଣିଜ୍ୟ ଯେପରି ବୃଦ୍ଧି ପାଇବ ସେଥିପାଇଁ ଅକ୍ଳାନ୍ତ ଉଦ୍ୟମ କରିଥିଲେ । ସେ ହାସପାତାଳ ଓ ଆଶ୍ରମମାନ ସ୍ଥାପନ କରିଥିଲେ ଏବଂ ଦୁଃଖୀ ଓ ଦରିଦ୍ରଲୋକମାନଙ୍କର ଉପକାରପାଇଁ ବିଭିନ୍ନପ୍ରକାର ସହାୟକ ସମିତିମାନ ପ୍ରତିଷ୍ଠା କରିଥିଲେ । ଔଷଧପତ୍ର ମାଗଣାରେ ବଣ୍ଟାଯିବାର ବ୍ୟବସ୍ଥା କରାଯାଇଥିଲା । ତୃତୀୟ ନେପୋଲିୟନ୍ ଅବାଧ-ବାଣିଜ୍ୟନୀତିରେ ବିଶ୍ୱାସ କରୁଥିଲେ । ତେଣୁ ସେ ୧୮୬୦ ମସିହାରେ ଇଂଲଣ୍ଡ ସହିତ କବ୍‌ଡେନ୍‌ଚୁକ୍ତି (Cobden Treaty) ସ୍ୱାକ୍ଷର କରି ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଅବାଧ-ବାଣିଜ୍ୟ ଚଳାଚଳର ବ୍ୟବସ୍ଥା କରିଥିଲେ । ଏହା ଇଂଲଣ୍ଡରେ ପ୍ରସ୍ତୁତ ସାମଗ୍ରୀକୁ ଫ୍ରାନ୍ସରେ ପ୍ରସ୍ତୁତ ସାମଗ୍ରୀ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଅନୁମତି ଦେବାରୁ ଯଦିଓ ସ୍ଥୂଳତଃ ମନେ ହେଲା ଯେ, ଏହା ଫ୍ରାନ୍ସରେ ପ୍ରସ୍ତୁତ ସାମଗ୍ରୀର କ୍ଷତି କରିବ । ପ୍ରକୃତରେ ଦେଖାଗଲା ଯେ, ଏହି ଚୁକ୍ତି ଫଳରେ ଫ୍ରାନ୍ସକୁ କଞ୍ଚାମାଲ ଆସିବା ଅତି ସହଜ ହୋଇଗଲା ଏବଂ ଖାଉଟି-ମାନଙ୍କର ଜୀବନଧାରଣର ଖର୍ଚ୍ଚ କମିଗଲା । ଅନ୍ୟାନ୍ୟ ଦେଶମାନଙ୍କ ସହିତ ଫ୍ରାନ୍ସର ଯେଉଁସବୁ ରାଜିନାମା ହୋଇଥିଲା, ତାହା କବ୍‌ଡେନ ଚୁକ୍ତିର ଆଦର୍ଶ ଅନୁଯାୟୀ କରାଯାଇଥିଲା । ବ୍ୟବସାୟ ଓ ବାଣିଜ୍ୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ତାଙ୍କ ରାଜତ୍ୱକାଳରେ ସୁଏଜ କେନାଲ ଖୋଳାଯାଇଥିଲା । ତୃତୀୟ ନେପୋଲିୟନ ଶ୍ରମିକଶ୍ରେଣୀର ଦୁଃଖ ଲାଘବ କରିବାପାଇଁ ଆବଶ୍ୟକ ପଦକ୍ଷେପ ନେଇଥିଲେ । ସେ ସମବାୟ ସମିତିମାନ ଗଠନ

କରିବାକୁ ଅନୁମତି ଦେଇଥିଲେ । ଶ୍ରମିକ ସଂଘ ଓ ଧର୍ମଘଟକୁ ଆଇନସଙ୍ଗତ କରିଥିଲେ । ଦରିଦ୍ର ଲୋକମାନଙ୍କ ପାଇଁ ଚିକିତ୍ସା ଏବଂ ଅର୍ଥନୈତିକ ସୁବିଧାମାନ କରିଦେଇଥିଲେ । ଶ୍ରମିକମାନଙ୍କର ସ୍ୱେଚ୍ଛାକୃତ ଶିଳ୍ପ ଦୁର୍ଘଟଣା ବୀମା ଓ ମୃତ୍ୟୁ ବୀମାପାଇଁ ରାଷ୍ଟ୍ର ଜାମିନ ହୋଇଥିଲା । ଏହିସବୁ ପଦକ୍ଷେପ ନେବାଦ୍ୱାରା ଶ୍ରମିକମାନଙ୍କର ଅସନ୍ତୋଷ କମିଯାଇଥିଲା ଏବଂ ନେପୋଲିୟନଙ୍କ ଶାସନକୁ ସେମାନେ ଆଦରିନେଇଥିଲେ । ତୃତୀୟ ନେପୋଲିୟନଙ୍କ ରାଜତ୍ୱକାଳରେ ପ୍ୟାରିସ୍ ନଗରୀ ପୁନର୍ବାର ସୁନ୍ଦରଭାବରେ ନିର୍ମାଣ କରାଯାଇଥିଲା । ସେ ରାଜଦରବାରର ଶୋଭା ପୁନଃପ୍ରବର୍ତ୍ତନ କରିଥିଲେ ଏବଂ ଚମତ୍କାର ପ୍ରଦର୍ଶନୀମାନ କରାଇ ଫ୍ରାନ୍ସରେ ପ୍ରସ୍ତୁତ ବିଭିନ୍ନ ଶିଳ୍ପଜାତ ଦ୍ରବ୍ୟର ଚାହିଦା ବଢ଼ାଇଥିଲେ ।

୧୮୬୦ ମସିହାଠାରୁ ସ୍ୱେଚ୍ଛାଚାରୀ ଶାସନ ପରିବର୍ତ୍ତେ ଉଦାରନୈତିକ ଶାସନ-ପଦ୍ଧତି କ୍ରମେ କ୍ରମେ ପ୍ରବର୍ତ୍ତିତ କରାଯାଇଥିଲା । ଏହି ପରିବର୍ତ୍ତନର ମୂଳରେ ଦୁଇଟି କାରଣ ଥିଲା । ପ୍ରଥମତଃ ତୃତୀୟ ନେପୋଲିୟନ ଅନ୍ତଃକରଣରେ ଥିଲେ ଉଦାରପନ୍ଥୀ । ଦ୍ୱିତୀୟତଃ ତାଙ୍କ ବୈଦେଶିକ ନୀତିର ବିଫଳତା ହେତୁ ଫ୍ରାନ୍ସରେ ବିକ୍ଷୋଭ ହେବାର ସମ୍ଭାବନାକୁ ଏଡ଼ାଇଦେବା ପାଇଁ ଏହି ପଦକ୍ଷେପ ନେଇଥିଲେ । ୧୮୬୦ ମସିହାରେ ତୃତୀୟ ନେପୋଲିୟନ୍ ବ୍ୟବସ୍ଥାପକ ସଭାକୁ ଯେକୌଣସି ବିଷୟରେ ବିତର୍କ ବା ଆଲୋଚନା କରିବାକୁ, ସରକାରଙ୍କ ନୀତିର ସମାଲୋଚନା କରିବାକୁ ଏବଂ ଆଇନ ପ୍ରଣୟନ କରିବାକୁ କ୍ଷମତା ପ୍ରଦାନ କରିଥିଲେ । ୧୮୬୧ ମସିହାରେ ସେ ସିନେଟର ବିଭିନ୍ନ ଦଫାଗୁଡ଼ିକ ପରୀକ୍ଷା କରିବାକୁ ଏହାକୁ ଅନୁମତି ଦେଇଥିଲେ । ୧୮୬୭ ମସିହାରେ ବ୍ୟବସ୍ଥାପକ ସଭାର ସଭ୍ୟମାନଙ୍କୁ ମନ୍ତ୍ରୀମାନଙ୍କୁ ପ୍ରଶ୍ନକରିବାର ଅଧିକାର ଦିଆଯାଇଥିଲା । ୧୮୬୮ ମସିହାରେ ଫରାସୀ ନାଗରିକମାନଙ୍କୁ ସଭା-ସମିତିରେ ମିଳିତ ହେବାକୁ ଅବାଧ ଅଧିକାର ଦିଆଯାଇଥିଲା ଏବଂ ସମ୍ବାଦପତ୍ରଗୁଡ଼ିକୁ କେତେକ ପରିମାଣରେ ସ୍ୱାଧୀନତା ଦିଆଯାଇଥିଲା । ଶେଷରେ ୧୮୭୦ ମସିହାରେ ତୃତୀୟ ନେପୋଲିୟନ୍ ଏକ ଦାୟିତ୍ୱପୂର୍ଣ୍ଣ ମନ୍ତ୍ରିମଣ୍ଡଳ ମଞ୍ଜୁର କଲେ । ଅର୍ଥାତ୍ ଏହି ସମୟରୁ ମନ୍ତ୍ରୀମାନେ ବ୍ୟବସ୍ଥାପକ ସଭା ନିକଟରେ ସେମାନଙ୍କର କାର୍ଯ୍ୟ ପାଇଁ ଦାୟୀ ରହିଲେ । ଏହିସବୁ ଉଦାର ନୈତିକ ବ୍ୟବସ୍ଥା ଫଳରେ ଫରାସୀ ଶାସନ ବ୍ୟବସ୍ଥା ଦାୟିତ୍ୱମୂଳକ ସ୍ୱୟଂଶାସନ ଆଡ଼କୁ ବହୁ ପରିମାଣରେ ଅଗ୍ରସର ହୋଇଥିଲା; କିନ୍ତୁ ଏହି ଅଧିକାରଗୁଡ଼ିକ କ୍ରମଶଃ ଦିଆଯାଉଥିବାରୁ ଲୋକମାନେ ତାହାର ମୂଲ୍ୟ ଯଥୋଚିତ ଭାବେ ଉପଲବ୍ଧି କରିପାରିଲେ ନାହିଁ । ଇତିମଧ୍ୟରେ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ ଦେଖା-ଦେବାରୁ ସାଧାରଣତନ୍ତ୍ରବାଦୀ ଏବଂ କେତେକ କ୍ଷେତ୍ରରେ ସମାଜବାଦୀମାନେ ଉତ୍ସାହ ପାଇଥିଲେ । ଏହି ସମୟରେ ନେପୋଲିୟନ ଶ୍ରମିକମାନଙ୍କୁ ଅନୁଗତ କରିବା ଉଦ୍ଦେଶ୍ୟରେ ଶ୍ରମିକ ସଙ୍ଘକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ । ଫରାସୀମାନଙ୍କର ମେକ୍ସିକୋରେ ପରାଜୟ ଏବଂ ପ୍ରୁସିଆର ଡେନମାର୍କ ଏବଂ ଅଷ୍ଟ୍ରିଆ ବିରୁଦ୍ଧରେ ବିଜୟ ଫଳରେ ତୃତୀୟ ନେପୋଲିୟନ୍ ଜନପ୍ରିୟତା ହରାଇଥିଲେ । ସେ ନିଜର ଶାସନ ବ୍ୟବସ୍ଥାକୁ ରକ୍ଷାକରିବା

ଉଦ୍ଦେଶ୍ୟରେ ଉଦାରପନ୍ଥା ଅବଲମ୍ବନ କଲେ ମଧ୍ୟ ତାହା ସାଧାରଣଙ୍କ ବିରାଗଭାଜନ ହେବାକୁ ଲାଗିଲା । ୧୮୭୦ ମସିହାରେ ତାଙ୍କର ଏବଂ ତାଙ୍କ ସାମ୍ରାଜ୍ୟର ପତନ ଘଟିଥିଲା ।

## ତୃତୀୟ ନେପୋଲିୟନଙ୍କ ବୈଦେଶିକ ନୀତି
## (The Foreign Policy of Napoleon III)

ତୃତୀୟ ନେପୋଲିୟନ୍ ବେଶ ଉପଲବ୍ଧି କରିପାରିଥିଲେ ଯେ, ଫ୍ରାନ୍ସର ଲୋକମାନେ କେବଳ ଅର୍ଥନୈତିକ ବିକାଶରେ ସନ୍ତୁଷ୍ଟ ହେବେ ନାହିଁ ଏବଂ ସେମାନଙ୍କର ସମର୍ଥନ ଲାଭ କରିବାକୁ ହେଲେ ସେମାନଙ୍କର ସାମରିକ ଓ ଉଚ୍ଚ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ପଡ଼ିବ । ତାଙ୍କୁ ଜଣାଥିଲା ଯେ, ଲୁଇ ଫିଲିପ୍ ଶାନ୍ତିପୂର୍ଣ୍ଣ ନୀତି ଅନୁସରଣ କରିବା ଫଳରେ ରାଜସିଂହାସନ ହରାଇଥିଲେ । ସେ ମଧ୍ୟ ଅନୁଭବ କରିଥିଲେ ଯେ, ସେ ଜୀବନରେ ଯାହାକିଛି ପାଇଛନ୍ତି ତାହା ତାଙ୍କର ନାମ ନେପୋଲିୟନ୍ ହୋଇଥିବା ଯୋଗୁ ସମ୍ଭବ ହୋଇଛି । ତେଣୁ ସେହି ନାମ ଧାରଣ କରିବାକୁ ସେ ଯୋଗ୍ୟ ବୋଲି ତାଙ୍କୁ ପ୍ରମାଣ କରିବାକୁ ହେବ । ସେ ୧୮୪୯ ମସିହାରେ ଫ୍ରାନ୍ସର ପ୍ରେସିଡେଣ୍ଟ ଥିଲାବେଳେ ତାଙ୍କର ବୈଦେଶିକ ନୀତି ଜାତୀୟଗୌରବ ପୁନଃ ପ୍ରତିଷ୍ଠା ଦିଗରେ ପରିଚାଳିତ ହେବ ବୋଲି ସୂଚନା ଦେଇଥିଲେ । ସେ ପ୍ରଥମ ନେପୋଲିୟନ୍ଙ୍କର ଉତ୍ତରାଧିକାରୀ ହିସାବରେ ତାଙ୍କର ଆଦର୍ଶ ଅନୁସରଣ କରିବା ପାଇଁ ବ୍ୟଗ୍ର ହୋଇଥିଲେ । ବୈଦେଶିକ ବ୍ୟାପାରରେ ସେ ପ୍ରଥମ ନେପୋଲିୟନଙ୍କ ନୀତିର ପୁନଃ ପ୍ରବର୍ତ୍ତନ କରିଥିଲେ ମଧ୍ୟ ପ୍ରଥମ ନେପୋଲିୟନଙ୍କ ଭୁଲ୍‌ଗୁଡ଼ିକର ଯେପରି ପୁନରାବୃତ୍ତି ନ ହୁଏ ସେଥିପାଇଁ ଉଦ୍ୟମ କରିଥିଲେ । ପ୍ରଥମ ନେପୋଲିୟନ୍‌ଙ୍କର ପତନ ପ୍ରଧାନତଃ ତାଙ୍କ ବିରୁଦ୍ଧରେ ଜାତୀୟ ଜାଗରଣ ଯୋଗୁ ଘଟିଥିଲା ବୋଲି ତୃତୀୟ ନେପୋଲିୟନ୍ ଜାଣିଥିଲେ । ତେଣୁ ସେ ଇଉରୋପର ବିଭିନ୍ନ ଦେଶରେ ଜାତୀୟ ଆନ୍ଦୋଳନକୁ ସମର୍ଥନ କରିଥିଲେ । ସେ ହେଉଛନ୍ତି ତାଙ୍କ ସମୟର ପ୍ରଥମ ଦୂରଦର୍ଶୀ ରାଜନୀତିଜ୍ଞ ଯେ କି ମୋଟାମୋଟି ଜାତୀୟତା ନୀତିକୁ ବିଶ୍ୱାସ କରୁଥିଲେ । ସେ ୧୮୫୭ ମସିହାରେ କହିଥିଲେ, "ଭିଏନା କଂଗ୍ରେସର ମସ୍ତବଡ଼ ଭୁଲ୍ ହୋଇଥିଲା ଯେ, ରାଜାମାନଙ୍କର ସ୍ୱାର୍ଥଗୁଡ଼ିକୁ ବିଚାର କରାଗଲାବେଳେ ପ୍ରଜାମାନଙ୍କର ସ୍ୱାର୍ଥଗୁଡ଼ିକ ଅବହେଳା କରାଯାଇଥିଲା ।" ପ୍ରଥମ ନେପୋଲିୟନ୍‌ଙ୍କ ଉତ୍ତରାଧିକାରୀ ହିସାବରେ ଭିଏନା ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ଭାଙ୍ଗିପଡ଼ିବା ସେ ଚାହିଁଥିଲେ । ପ୍ରକୃତରେ ସେ ଫରାସୀ ରାଜସିଂହାସନ ଆରୋହଣ କରିବା ଦ୍ୱାରା ୧୮୧୫ ବ୍ୟବସ୍ଥାକୁ ଅବଜ୍ଞା କରିଥିଲେ । ଇଉରୋପ ଜାତୀୟତା ଭିତ୍ତିରେ କେତେଗୁଡ଼ିଏ ରାଷ୍ଟ୍ରରେ ବିଭକ୍ତ ହେବା ବିଷୟ ସେ କଳ୍ପନା କରିଥିଲେ । ସେ ୧୮୫୨ ମସିହାରୁ ୧୮୬୩ ମସିହା ପର୍ଯ୍ୟନ୍ତ ଇଟାଲୀ, ଜର୍ମାନୀ, ପୋଲାଣ୍ଡ ଏବଂ ବଲ୍‌କାନ ଉପଦ୍ୱୀପରେ ଅତ୍ୟାଚାରିତ ଜାତିଗୁଡ଼ିକର ସମର୍ଥକ ଥିଲେ । ପ୍ରଥମ

ନେପୋଲିୟନ୍ ଇଂଲଣ୍ଡ ସହିତ ସାଗ୍ରାଜ୍ୟବାଦ ଶତ୍ରୁତା କରି ବିପତ୍ତିକୁ ଡାକି ଆଣିଥିଲେ; କିନ୍ତୁ ତୃତୀୟ ନେପୋଲିୟନ୍ ଇଂଲଣ୍ଡ ସହିତ ବନ୍ଧୁତାକୁ ତାଙ୍କ ବୈଦେଶିକ ନୀତିର ପ୍ରଧାନ ଅବଲମ୍ବନ କରିଥିଲେ । ଯାହାହେଉ, ନିକଟ ପ୍ରାଚ୍ୟରେ ରାଜନୈତିକ ସଙ୍କଟ ଉପୁଜିବା ଫଳରେ ତୃତୀୟ ନେପୋଲିୟନ୍ ତାଙ୍କର ଓ ତାଙ୍କ ରାଜବଂଶର ସମ୍ମାନ ଲାଭ ପାଇଁ ଫ୍ରାନ୍ସକୁ ପୁନଃ ପ୍ରତିଷ୍ଠିତ କରିବା ଏବଂ ଜାତୀୟ ଅଭିମାନକୁ ତୃଷ୍ଟ କରିବାପାଇଁ ସୁଯୋଗ ପାଇଥିଲେ ।

ଜେରୁଜେଲମରେ ଗ୍ରୀକ୍ ଏବଂ ଲାଟିନ୍ ସନ୍ନ୍ୟାସୀ (monk)ମାନଙ୍କ ମଧ୍ୟରେ କଳହ ଉପୁଜିବା ଫଳରେ ତୃତୀୟ ନେପୋଲିୟନ୍‌ଙ୍କୁ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ସୁଯୋଗ ମିଳିଲା । କ୍ୟାଥଲିକ୍ ଧର୍ମର ସ୍ୱାର୍ଥରକ୍ଷା ଓ ପୂର୍ବାଞ୍ଚଳରେ ଫରାସୀ ପ୍ରଭାବ ବିସ୍ତାର ଉଦ୍ଦେଶ୍ୟରେ ସେ ତାଙ୍କର ମିତ୍ର ଇଂଲଣ୍ଡ ସହିତ ରୁଷିଆ ବିରୁଦ୍ଧରେ ୧୮୫୪ ମସିହାରେ କ୍ରିମିଆ ଯୁଦ୍ଧରେ ଯୋଗଦେଲେ । ଫରାସୀମାନେ ସେହି ବର୍ଷ ଆଲମା ସଂଗ୍ରାମରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ଏବଂ ଗୋଟିଏ ବର୍ଷ ସେବାଷ୍ଟପୋଲ ଅବରୋଧ କଲାପରେ ୧୮୫୫ ମସିହାରେ ତାହା ଅଧିକାର କରିନେଇଥିଲେ । କ୍ରିମିଆ ଯୁଦ୍ଧରେ ନେପୋଲିୟନ୍ ଓ ତାଙ୍କ ମିତ୍ରମାନେ ବିଜୟୀ ହୋଇଥିଲେ । ତୃତୀୟ ନେପୋଲିୟନ୍ ରୁଷିଆକୁ ପରାସ୍ତକରି ପ୍ରଥମ ନେପୋଲିୟନ୍‌ଙ୍କ ମସ୍କୋ ପରାଭବର ପ୍ରତିଶୋଧ ନେଇଥିଲେ । ତାଙ୍କ ଅଧ୍ୟକ୍ଷତାରେ ରାଜଧାନୀ ପ୍ୟାରିସରେ ଏକ ଶାନ୍ତି ଚୁକ୍ତି ୧୮୫୬ ମସିହାରେ ସ୍ୱାକ୍ଷର ହେବାର ଗୌରବ ସେ ଅର୍ଜନ କରିଥିଲେ । କ୍ରିମିଆ ଯୁଦ୍ଧ ଫ୍ରାନ୍ସରେ ତାଙ୍କ ସ୍ଥିତିକୁ ସୁଦୃଢ଼ କରିଥିଲା । ସେ ରୁଷିଆକୁ ଅପମାନିତ କରିବା ସଙ୍ଗେ ସଙ୍ଗେ ଇଂଲଣ୍ଡର ସଦିଚ୍ଛା ଲାଭକରିଥିଲେ । ଏହି ଯୁଦ୍ଧ ଫ୍ରାନ୍ସପାଇଁ ଲାଭଜନକ ନ ହୋଇଥିଲେ ମଧ୍ୟ ଇଉରୋପରେ ତାହାର ସମ୍ମାନ ଅତିମାତ୍ରାରେ ବଢ଼ାଇ ଦେଇଥିଲା । ରୁଷିଆର ଜାର୍ ପ୍ରଥମ ନିକୋଲାସ୍‌ଙ୍କ ପରାଜୟ ଫଳରେ ସେ ଇଉରୋପ ମହାଦେଶରେ ଜଣେ ବିଶିଷ୍ଟ ଶାସକ ବୋଲି ସର୍ବତ୍ର ପରିଚିତ ହେଲେ ଏବଂ ପ୍ୟାରିସ୍ ପୁନର୍ବାର ଇଉରୋପୀୟ ରାଜନୀତିର କେନ୍ଦ୍ର ହେଲା । ଏହା ପରେ ସେ ନିଜକୁ ଜାତୀୟତାବାଦର ସମର୍ଥକ ବୋଲି ପ୍ରମାଣକରିବାକୁ ଚାହିଁଥିଲେ । ତେଣୁ ମୋଲଡାଭିଆ ଏବଂ ଓ୍ୱାଲାଚିଆ ରାଜ୍ୟ ଦୁଇଟିକୁ ମିଶାଇ ରୁମାନିଆ ନାମକ ଗୋଟିଏ ରାଜ୍ୟରେ ପରିଣତ କରିବା ଉଦ୍ୟମକୁ ସେ ଦୃଢ଼ ସମର୍ଥନ କରିଥିଲେ ଏବଂ ତାଙ୍କର କୂଟନୀତି ଫଳରେ ଏହି ଦୁଇଟି ମିଶି ଗୋଟିଏ ରାଜ୍ୟ (ରୁମାନିଆ) ହେଲା । ତୃତୀୟ ନେପୋଲିୟନ୍‌ଙ୍କ ଏଇ ଜାତୀୟତାବାଦରେ ବିଶ୍ୱାସ ଫଳରେ ସେ ଏକ ଭାଷାଭାଷୀ ଏବଂ ଏକଜାତୀୟ ଲୋକମାନଙ୍କର ଜାତୀୟ ଐକ୍ୟ ସାଧନର ମୌଳିକ ଅଧିକାରକୁ ସ୍ୱୀକାର କରୁଥିଲେ । ଏହି କାରଣରୁ ସେ ମୋଲଡାଭିଆ ଓ ଓ୍ୱାଲାଚିଆ ଲୋକମାନଙ୍କର ଆଶା ଆକାଙ୍‌କ୍ଷା ପୂରଣ ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ତା'ଛଡ଼ା ତାଙ୍କର ଇଟାଲୀୟମାନଙ୍କ ଜାତୀୟତାବାଦ ପ୍ରତି ବିଶେଷ ସହାନୁଭୂତି ଥିଲା । ନିର୍ବାସିତ ଜୀବନ ଯାପନ ସମୟରେ ତୃତୀୟ ନେପୋଲିୟନ୍ ଇଟାଲୀରେ କେତେ

ବର୍ଷ କଟାଉଥିଲେ । ସେଠାରେ ସେ ବିପ୍ଳବୀ ସମିତି କାର୍‌ବୋନାରି (Carbonari)ର ସଭ୍ୟ ହୋଇଥିଲେ । ଏହି ସବୁ କାରଣରୁ ଏବଂ କ୍ରିମିୟା ଯୁଦ୍ଧରେ ସାର୍ଡିନିଆର ସାହାଯ୍ୟର ପ୍ରତିଦାନ ସ୍ୱରୂପ ସେ ଇଟାଲୀର ମୁକ୍ତିସଂଗ୍ରାମରେ ସାହାଯ୍ୟ ଦେବେ ବୋଲି ପ୍ଲୋମବାୟାରେସ (Plombieres) ଚୁକ୍ତିରେ ପ୍ରତିଶ୍ରୁତି ଦେଇଥିଲେ । ସେ ଏହି ଚୁକ୍ତି ସାର୍ଡିନିଆର ପ୍ରଧାନ ମନ୍ତ୍ରୀ କାଭୁରଙ୍କ ସହିତ ୧୮୫୮ ମସିହାରେ ସ୍ୱାକ୍ଷର କରିଥିଲେ । ଏହି ପ୍ରତିଶ୍ରୁତି ପଛରେ ଫ୍ରାନ୍‌ସର ସ୍ୱାର୍ଥ ଜଡ଼ିତ ଥିଲା । ତୃତୀୟ ନେପୋଲିୟନ ବିଶ୍ୱାସ କରିଥିଲେ ଯେ, ସେ ଇଟାଲୀ ବ୍ୟାପାରରେ ନିଜକୁ ଜଡ଼ିତକରିବା ଫଳରେ ଫ୍ରାନ୍‌ସ ଓ ନେପୋଲିୟନ୍‌ ରାଜବଂଶ ପ୍ରତି ଅପମାନସୂଚକ ଭିଏନା ସନ୍ଧିଗୁଡ଼ିକ ବାତିଲ କରି-ଦେବାପାଇଁ ଏବଂ ଇଟାଲୀକୁ ନିଜ ଇଚ୍ଛାମୁତାବକ ପୁନର୍ଗଠନ କରି ସେଠାରେ ଅଷ୍ଟ୍ରିୟା ପରିବର୍ତ୍ତେ ଫ୍ରାନସର ପ୍ରାଧାନ୍ୟ ପ୍ରତିଷ୍ଠା କରିବାପାଇଁ ସୁଯୋଗ ପାଇବେ । ତେଣୁ ସେ ଫ୍ରାନ୍‌ସର ଏକ ସୈନ୍ୟଦଳ ନେଇ ୧୮୫୯ ମସିହାରେ ଇଟାଲୀର ମୁକ୍ତି ଏବଂ ଏକତ୍ରୀକରଣ ପାଇଁ ଯେଉଁ ସଂଗ୍ରାମ ସାର୍ଡିନିଆର ନେତୃତ୍ୱରେ ଆରମ୍ଭ ହୋଇଥିଲା, ସେଥିରେ ଯୋଗ ଦେଇଥିଲେ । ଅଷ୍ଟ୍ରିୟା କବଳରୁ ଲମ୍ବାର୍ଡ଼ିକୁ ମୁକ୍ତ ଦେଇ ଯେତେବେଳେ ଅଷ୍ଟ୍ରିୟାଠାରୁ ଭେନିସିଆକୁ ଉଦ୍ଧାର କରିବାପାଇଁ ଫ୍ରାନ୍‌ସ ଓ ସାର୍ଡିନିଆର ସୈନ୍ୟବାହିନୀ ବିଜୟ ଉଲ୍ଲାସରେ ଅଗ୍ରସର ହେଉଥିଲେ । ତୃତୀୟ ନେପୋଲିୟନ୍‌ ହଠାତ୍‌ ଯୁଦ୍ଧରୁ ବିରତ ହୋଇଥିଲେ ଏବଂ ଅଷ୍ଟ୍ରିୟା ସହିତ ଭିଲ୍ଲାଫ୍ରାଙ୍କା (Villafranca) ସନ୍ଧି ସ୍ୱାକ୍ଷରକରି ଯୁଦ୍ଧର ଅବସାନ ଘଟାଇଥିଲେ । ଏହି ସନ୍ଧିର ସର୍ତ୍ତ ଅନୁସାରେ ଅଷ୍ଟ୍ରିୟା ସାର୍ଡିନିଆକୁ ଲମ୍ବାର୍ଡି ହସ୍ତାନ୍ତରିତ କଲା ଏବଂ ନିଜେ ଭେନିସିଆ ରଖିଲା । ତୃତୀୟ ନେପୋଲିୟନ୍‌ଙ୍କର ଯୁଦ୍ଧ-ବିରତି ପଛରେ ଫ୍ରାନସର ନିରାପତ୍ତା ପ୍ରଶ୍ନ ଜଡ଼ିତ ଥିଲା । ସେ ଇଟାଲୀର ମୁକ୍ତି ପରେ ତାକୁ ପୋପ୍‌ଙ୍କ ଅଧୀନରେ ଏକ ରାଷ୍ଟ୍ରସଂଘ କରିବାପାଇଁ ପ୍ଲୋମବାୟାରେସ ଚୁକ୍ତିରେ କାଭୁରଙ୍କୁ କଥା ଦେଇଥିଲେ । ଇଟାଲୀର ମୁକ୍ତି-ସଂଗ୍ରାମବେଳେ, ଯେତେବେଳେ ମଧ୍ୟ-ଇଟାଲୀୟ ରାଜ୍ୟଗୁଡ଼ିକ ସେମାନଙ୍କର ଶାସକମାନଙ୍କୁ ତଡ଼ିଦେଇ ସାର୍ଡିନିଆ ସହିତ ସଂଯୁକ୍ତ ହେବାପାଇଁ ନିଷ୍ପତ୍ତି ନେଇଦେଲେ, ସେତେବେଳେ ତୃତୀୟ ନେପୋଲିୟନ୍‌ଙ୍କର ଆଶଙ୍କା ହେଲା ଯେ, ଇଟାଲୀ ଏକ ଦୁର୍ବଳ ରାଷ୍ଟ୍ରସଂଘ ହେବା ପରିବର୍ତ୍ତେ ଏକ ଶକ୍ତିଶାଳୀ ଐକ୍ୟବଦ୍ଧ ରାଷ୍ଟ୍ର ହେବାକୁ ଉଦ୍ୟମ କରୁଅଛି । ତାଙ୍କ ସାମ୍ରାଜ୍ୟର ସନ୍ନିକଟରେ ଏକ ଐକ୍ୟବଦ୍ଧ ଇଟାଲୀ ପ୍ରତିଷ୍ଠିତ ହେବା ନିରାପତ୍ତା ଦୃଷ୍ଟିରୁ ଆଦୌ ଗ୍ରହଣୀୟ ନୁହେଁ । ସେ ଏହି ସତ୍ୟ ଉପଲବ୍ଧି କରି ଅଷ୍ଟ୍ରିୟା ବିରୁଦ୍ଧରେ ଯୁଦ୍ଧ ଅଧିକ ନ କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ପରେ ସେ ସାଭୟ ଓ ନିସ ବିନିମୟରେ ସାର୍ଡିନିଆ ସହିତ ମଧ୍ୟ-ଇଟାଲୀୟ ରାଜ୍ୟଗୁଡ଼ିକୁ ସଂଯୁକ୍ତ କରିବା ପ୍ରସ୍ତାବରେ ରାଜି ହୋଇଥିଲେ । ଫଳରେ ସେ ଇଟାଲୀୟମାନଙ୍କର ସ୍ନେହ ଓ ଶ୍ରଦ୍ଧା ହରାଇଥିଲେ ଓ ଇଂଲଣ୍ଡର ବିରାଗଭାଜନ ହୋଇଥିଲେ । ତା'ଛଡ଼ା ତୃତୀୟ ନେପୋଲିୟନ୍‌ଙ୍କ ଇଟାଲୀୟ ନୀତି ପୋପଙ୍କ ସ୍ୱାର୍ଥ ବିରୋଧୀ ହୋଇଥିବାରୁ ତାହା ଫ୍ରାନ୍‌ସର କ୍ୟାଥଲିକ୍‌ମାନଙ୍କୁ କ୍ରୋଧାନ୍ୱିତ କରିଥିଲା । ସେ ଯାହାହେଉ, ସାଭୟ ଏବଂ ନିସ୍‌ ଲାଭକରିବା ଫଳରେ

ଫ୍ରାନ୍ସ ପୁନର୍ବାର ତାହାର ପ୍ରାକୃତିକ ସୀମା ଅଲ୍‌ପସ୍‌ ପର୍ବତଯାଏ ପ୍ରସାରିତ କରିଥିଲା ।

୧୮୬୧ ମସିହା ପର୍ଯ୍ୟନ୍ତ ତୃତୀୟ ନେପୋଲିୟନ୍‌ଙ୍କର ବୈଦେଶିକ ନୀତି ଅତି ସଫଳ ହୋଇଥିଲା । ସେ ଫ୍ରାନ୍‌ସକୁ ଇଉରୋପର ମୀମାଂସକ କରିପାରିଥିଲେ । ମୋଲ୍‌ଡାଭିଆ ଓ ଓ୍ୱାଲିଚିଆ ରାଜ୍ୟ ଦୁଇଟିକୁ ମିଶାଇ ରୁମାନିଆ ରାଜ୍ୟ ପ୍ରତିଷ୍ଠା କରିବାରେ ସେ ବିଶେଷ ସାହାଯ୍ୟ କରିଥିଲେ । ଇଟାଲୀର ମୁକ୍ତି ଏବଂ ଏକତ୍ରୀକରଣ ତାଙ୍କ ଯୋଗୁଁହିଁ ସମ୍ଭବ ହେଲା । ସେ ଫ୍ରାନ୍ସ ପାଇଁ ଦୁଇଟି ବାଞ୍ଛିତ ଅଞ୍ଚଳ ଲାଭ କରିଥିଲେ । ସେ ନିକଟ ଏବଂ ସୁଦୂର ପ୍ରାଚ୍ୟରେ ଜାତୀୟ ସମ୍ମାନ ବୃଦ୍ଧି କରିଥିଲେ । ତା'ଛଡ଼ା ସେ ଦେଶକୁ ସମୃଦ୍ଧିଶାଳୀ କରିଥିଲେ । ଏସବୁ କରିବା ସତ୍ତ୍ୱେ ୧୮୬୦ ମସିହା ପରେ ତୃତୀୟ ନେପୋଲିୟନଙ୍କର ବୈଦେଶିକ ନୀତି ବିଫଳତାରେ ପର୍ଯ୍ୟବସିତ ହେବାକୁ ଲାଗିଲା । ୧୮୬୩ ମସିହାରେ ସେ ବୃଥାରେ ପୋଲଣ୍ଡ ବ୍ୟାପାରରେ ହସ୍ତକ୍ଷେପ କଲେ । ତାଙ୍କ ମେକ୍‌ସିକୋ ଅଭିଯାନର ପରିଣତି ଅତି ଦୁଃଖଦାୟକ ହୋଇଥିଲା । ଜର୍ମାନୀର ଏକତ୍ରୀକରଣ ଉଦ୍ୟମ ପ୍ରତି ସେ ମଧ୍ୟ ଏକ ଭ୍ରମାତ୍ମକ ନୀତି ଅବଲମ୍ବନ କରିଥିଲେ । ଫଳରେ ୧୮୭୦ ମସିହାରେ ଫ୍ରାନ୍ସକୁ ଏକ ବିପଜ୍ଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ତୃତୀୟ ନେପୋଲିୟନ ପୋଲଣ୍ଡ ଅଧିବାସୀମାନଙ୍କ ଜାତୀୟତା ଆନ୍ଦୋଳନର ଜଣେ ବଡ଼ ସମର୍ଥକ ଥିଲେ । ୧୮୬୩ ମସିହାରେ ପୋଲଣ୍ଡ ଅଧିବାସୀମାନେ ଯେତେବେଳେ ରୁଷିଆର ଜାର୍‌ଙ୍କ ବିରୁଦ୍ଧରେ ବିପ୍ଲବ କଲେ, ସେତେବେଳେ ସେ ସେମାନଙ୍କୁ ସାହାଯ୍ୟ କରିବେ ବୋଲି ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇଥିଲେ । ଜାର୍‌ ଦ୍ୱିତୀୟ ଆଲେକ୍‌ଜାଣ୍ଡାରଙ୍କ ପୋଲଣ୍ଡ ନୀତି ବିରୁଦ୍ଧରେ ଦୃଢ଼ ପ୍ରତିବାଦ କରିଥିଲେ । ପୋଲଣ୍ଡରେ ତୃତୀୟ ନେପୋଲିୟନ୍‌ଙ୍କର ହସ୍ତକ୍ଷେପକୁ ଜାର୍‌ ଘୃଣାଚକ୍ଷୁରେ ଦେଖିଥିଲେ ଏବଂ ପୋଲଣ୍ଡ ଅଧିବାସୀମାନଙ୍କର ବିଦ୍ରୋହକୁ ଦୃଢ଼ହସ୍ତରେ ଦମନ କରିଥିଲେ । ତୃତୀୟ ନେପୋଲିୟନ ଦୃଢ଼ ପ୍ରତିବାଦ କରିଥିଲେ ମଧ୍ୟ ସେ ରୁଷିଆ ବିରୁଦ୍ଧରେ ଦୃଢ଼କାର୍ଯ୍ୟାନୁଷ୍ଠାନ କରି ନ ଥିଲେ । ସେ ପୋଲଣ୍ଡର ଅଧିବାସୀମାନଙ୍କୁ ସାହାଯ୍ୟ ନ ଦେଇ ସେମାନଙ୍କୁ ଅସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ପୋଲଣ୍ଡ ବ୍ୟାପାରରେ ଅଯଥା ହସ୍ତକ୍ଷେପ କରି ରୁଷିଆର ବିରାଗଭାଜନ ହୋଇଥିଲେ । ମେକ୍‌ସିକୋରେ ତୃତୀୟ ନେପୋଲିୟନ୍‌ଙ୍କ ବିରାଟ ପରିକଳ୍ପନାର ବିଫଳତା ତାଙ୍କ ପାଇଁ ଏବଂ ତାଙ୍କ ସାମ୍ରାଜ୍ୟ ପାଇଁ ଫ୍ରାନ୍‌ସରେ ଅତି ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରିଥିଲା । ସେ ମେକ୍‌ସିକୋରେ ଚାଲିଥିବା ଗୃହଯୁଦ୍ଧର ସୁଯୋଗ ନେଇ ଫ୍ରାନ୍‌ସଦ୍ୱାରା ମନୋନୀତ ଅଷ୍ଟ୍ରିଆର ଆର୍ଚ୍‌ଡ୍ୟୁକ୍‌ ମ୍ୟାକ୍‌ସମିଲିନଙ୍କୁ ମେକ୍‌ସିକୋର ସିଂହାସନରେ ବସାଇବା ପାଇଁ ଚାହିଁଥିଲେ । ସେହି ଉଦ୍ଦେଶ୍ୟରେ ତୃତୀୟ ନେପୋଲିୟନ୍‌ ମେକ୍‌ସିକୋକୁ ଏକ ସୈନ୍ୟବାହିନୀ ପ୍ରେରଣ କରିଥିଲେ । ସେହି ସମୟରେ ଆମେରିକାରେ ଅନ୍ତର୍ବିପ୍ଳବ ଚାଲିଥିଲା । ତାଙ୍କ ସୈନ୍ୟବାହିନୀ ସାହାଯ୍ୟରେ ସେ ମେକ୍‌ସିକୋ ସାଧାରଣତନ୍ତ୍ରର

ପତନ ଘଟାଇଥିଲେ ଏବଂ ୧୮୬୪ ମସିହାରେ ମ୍ୟାକ୍ସମିଲନଙ୍କ ଅଧୀନରେ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ; କିନ୍ତୁ ଆମେରିକାରେ ଅନ୍ତର୍ବିପ୍ଳବର ଅବସାନ ହେବା ସଙ୍ଗେ ସଙ୍ଗେ ଯୁକ୍ତରାଷ୍ଟ୍ର ଆମେରିକା ଫରାସୀ ସୈନ୍ୟବାହିନୀକୁ ମେକ୍ସିକୋ ଗ୍ରୁଡ଼ି ଚାଲିଯିବାପାଇଁ ବାଧ୍ୟ କରିଥିଲା । ଏହି ଅଭିଯାନର ବିଫଳତାରେ ଫ୍ରାନ୍ସର ମର୍ଯ୍ୟାଦା ଯେପରି କ୍ଷୁଣ୍ଣ ହୋଇଥିଲା, ସେହିପରି ଫରାସୀ ଜନସାଧାରଣଙ୍କ ନିକଟରେ ତୃତୀୟ ନେପୋଲିୟନ୍‌ଙ୍କର ସମ୍ମାନହାନି ହୋଇଥିଲା । କିନ୍ତୁ ତୃତୀୟ ନେପୋଲିୟନ୍‌ଙ୍କର ଅନ୍ୟ ସାଗରପାରି ଦୁଃସାହସିକ ଉଦ୍ୟମମାନ ସଫଳ ହୋଇଥିଲା । ସେ ଅବଶ୍ୟ ଫ୍ରାନ୍ସ ଓ କ୍ୟାଥଲିକମାନଙ୍କର ସ୍ୱାର୍ଥରକ୍ଷା-ପାଇଁ ସିରିୟାକୁ ଏକ ଅଭିଯାନ ପଠାଇ ନିଜର ଲକ୍ଷ୍ୟ ହାସଲ କରିଥିଲେ । ସେ ଇଂଲଣ୍ଡ ସହିତ ମିଶି ଚୀନଦେଶ ବିରୁଦ୍ଧରେ ଯୁଦ୍ଧ କରିଥିଲେ ଏବଂ ତାକୁ ପରାସ୍ତକରି ଫରାସୀ ବ୍ୟବସାୟୀମାନଙ୍କର ବାଣିଜ୍ୟ କାରବାର ପାଇଁ ସେଠାରେ ନାନାପ୍ରକାର ସୁଯୋଗ-ସୁବିଧା ହାସଲ କରିଥିଲେ । ସେ ୧୮୬୪ ମସିହାରେ କୋଚିନ ଚୀନ (Cochin China) ଅଧିକାରକରି ଫରାସୀ ଔପନିବେଶିକ ସାମ୍ରାଜ୍ୟ ପ୍ରସାରିତ କରିଥିଲେ; କିନ୍ତୁ ଏକଥା ଅସ୍ୱୀକାର କରିହେବନାହିଁ ଯେ, ମେକ୍ସିକୋ ଅଭିଯ.ନର ବିରାଟ ବିଫଳତା ଏହି ସମସ୍ତ ବିଜୟର ସ୍ମୃତିକୁ ନିଶ୍ଚିହ୍ନ କରିଦେଇଥିଲା ।

୧୮୬୬-୧୮୭୦ ମସିହା ମଧ୍ୟରେ ତୃତୀୟ ନେପୋଲିୟନଙ୍କ ବୈଦେଶିକ ନୀତି ପୂର୍ବାପେକ୍ଷା ଅଧିକ ବିଫଳ ହେବାର ଦେଖାଯାଇଥିଲା । ବିୟାରିଟ୍ଜ ( Biarritz ) ସାକ୍ଷାତ୍‌କାରରେ ବିସମାର୍କଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ତୃତୀୟ ନେପୋଲିୟନ୍ ଅଷ୍ଟ୍ରିୟା ଓ ପ୍ରୁସିୟା ମଧ୍ୟରେ ୧୮୬୬ ମସିହାରେ ହୋଇଥିବା ଯୁଦ୍ଧରେ ନିରପେକ୍ଷ ରହିଥିଲେ । ସେ ଭାବିଥିଲେ ଯେ, ଇଟାଲୀରେ ଯେପରି ସେ କ୍ଷତିପୂରଣ ପାଇଥିଲେ, ସେହିପରି କ୍ଷତିପୂରଣ ଜର୍ମାନୀରେ ପାଇବେ; କିନ୍ତୁ ତୃତୀୟ ନେପୋଲିୟନଙ୍କର ଉକ୍ତ ଯୁଦ୍ଧରେ ନିରପେକ୍ଷତା ଫଳରେ ଫରାସୀ ସ୍ୱାର୍ଥ ବ୍ୟାହତ ହୋଇଥିଲା । ସେ ମୋଟେ ଉପଲବ୍ଧି କରିପାରିନଥିଲେ ଯେ, ଅଷ୍ଟ୍ରିୟାକୁ ପରାଜିତ କରିବା ଫଳରେ ଏକ ଶକ୍ତିଶାଳୀ ପ୍ରୁସିୟା ସୃଷ୍ଟି ହେବ ଏବଂ ତାହା ଫ୍ରାନ୍ସର ନିରାପତ୍ତା ଦୃଷ୍ଟିରୁ ଆଦୌ କାମ୍ୟ ନୁହେଁ । ସ୍ୟାଡୋଓ୍ୱା ଯୁଦ୍ଧରେ ଅଷ୍ଟ୍ରିୟାର ପରାଜୟ ଫରାସୀ ସ୍ୱାର୍ଥର ପରିପନ୍ଥୀ ଥିଲା ଏବଂ ଏହି କାରଣରୁ ଫରାସୀ ଜାତି ଅଷ୍ଟ୍ରିୟାର ପରାଜୟକୁ ଫ୍ରାନ୍ସର ପରାଜୟ ବୋଲି ଗ୍ରହଣ କରିନେଇଥିଲେ । ଯଥାର୍ଥରେ ବିଖ୍ୟାତ ଐତିହାସିକ ହିୟରେନ୍‌ସା ମନ୍ତବ୍ୟ ଦେଇଥିଲେ, ସ୍ୟାଡୋଓ୍ୱା ସଂଗ୍ରାମ ଫ୍ରାନ୍ସିସ୍ ଯୋସେଫ୍ ( ଅଷ୍ଟ୍ରିୟାର ସମ୍ରାଟ )ଙ୍କ ଅପେକ୍ଷା ତୃତୀୟ ନେପୋଲିୟନଙ୍କ ପାଇଁ କିଛି କମ୍ ପରାଜୟ ନଥିଲା । ( The famous historian Hearanshaw remarked, "the battle of Sadowa was hardly a less defeat for Napoleon III, than it was for Francis Joseph ( the Austrian emperor )" ତୃତୀୟ ନେପୋଲିୟନଙ୍କ ଠାରେ

ଚତୁର କୂଟନୀତିର ଯେ ଅଭାବ ଥିଲା, ତାହା ଏହି ଯୁଦ୍ଧ ଦେଖାଇ ଦେଇଥିଲା । ଇଉରୋପରେ ତାଙ୍କ ପ୍ରାଧାନ୍ୟ ଲୋପର ସଙ୍କେତ ଦେବା ସଙ୍ଗେ ସଙ୍ଗେ ଏହି ଯୁଦ୍ଧ ଫ୍ରାନ୍ସରେ ତାଙ୍କ ସ୍ଥାୟିତ୍ୱ ଦୋହଲି ଯିବାର ସୂଚନା ମଧ୍ୟ ଦେଇଥିଲା । ବାସ୍ତବରେ ତୃତୀୟ ନେପୋଲିୟନଙ୍କର ଏହି ଯୁଦ୍ଧରେ ନିରପେକ୍ଷତା ତାଙ୍କ ଦୁର୍ବଳତାର ପରିଚୟ ଦେଇଥିଲା । ଗ୍ରାଣ୍ଟ ରବର୍ଟ୍ସନ ନିରପେକ୍ଷତା ବିଷୟରେ ମନ୍ତବ୍ୟ ଦେଇ କହିଥିଲେ ଯେ, ତୃତୀୟ ନେପୋଲିୟନ୍ ଏହି ସମୟରେ ରୋଗ ଭୋଗୁଥିଲେ ଏବଂ ସେହି ରୋଗ ଶେଷରେ ତାଙ୍କର ମୃତ୍ୟୁ ଘଟାଇଥିଲା । ତେଣୁ ବିୟାରିଟଜର ନେପୋଲିୟନ୍ ପ୍ଲୋମବାୟାରେସ୍‌ର ନେପୋଲିୟନ ନଥିଲେ (Napoleon of Biarritz was not the Napoleon of Plombieres) ଅର୍ଥାତ୍ କାଭୁରଙ୍କ ସହିତ ପ୍ଲୋମବାୟାରେସ୍ ଚୁକ୍ତି ସ୍ୱାକ୍ଷର କରିବା ସମୟରେ ତୃତୀୟ ନେପୋଲିୟନ ଏକ ଶକ୍ତିଶାଳୀ ସମ୍ରାଟ ପରି ଆଚରଣ କରିଥିଲେ; କିନ୍ତୁ ବିସମାର୍କଙ୍କ ସହିତ ବିୟାରିଟ୍‌ଜ ସାକ୍ଷାତକାରରେ ସେ ଏକ ଶକ୍ତିଶାଳୀ ସମ୍ରାଟ ପରି ଆଚରଣ କରିନଥିଲେ ଏବଂ ବିସମାର୍କଙ୍କ କୂଟନୀତିଦ୍ୱାରା ପ୍ରତାରିତ ହୋଇ ଅଷ୍ଟ୍ରିୟା-ପ୍ରୁସିୟା ଯୁଦ୍ଧରେ ନିରପେକ୍ଷ ରହିବା ପାଇଁ ରାଜିହୋଇଗଲେ । ଅବଶ୍ୟ ତୃତୀୟ ନେପୋଲିୟନ ଭାବିଥିଲେ ଯେ, ଏହି ଯୁଦ୍ଧରେ ଅଷ୍ଟ୍ରିୟା ଜୟଯୁକ୍ତ ହେବ ଏବଂ ଫ୍ରାନ୍ସର ସମ୍ପ୍ରସାରଣ ପାଇଁ ରାଇନ ଅଞ୍ଚଳରୁ କିଛି ପାଇବା ଉଦ୍ଦେଶ୍ୟରେ ଅଷ୍ଟ୍ରିୟା ସହିତ ବ୍ୟବସ୍ଥା କରିବେ । ଅଷ୍ଟ୍ରିୟାର ପରାଜୟ ଫଳରେ ତାଙ୍କର ସେ ଆଶା ଧୂଳିସାତ୍ ହୋଇଗଲା । ସେ ପ୍ରୁସିୟାର ବିଜୟ ପରେ ତାଙ୍କ ନିରପେକ୍ଷତାର ପୁରସ୍କାର ସ୍ୱରୂପ ବିସମାର୍କଙ୍କଠାରୁ କିଛି ଅଞ୍ଚଳ ଚାହିଁଲେ । ବିସମାର୍କ ତାହା ଦେବାକୁ ସେକଟୋକ୍ ମନା କରିଦେଇଥିଲେ । ସ୍ୟାଡୋୱା ଯୁଦ୍ଧ ପରେ ଫ୍ରାନ୍ସକୁ ଯେପରିଭାବରେ ଅବଜ୍ଞା କରାଗଲା, ସେଥିରେ ଫରାସୀବାସୀ ମର୍ମାହତ ହୋଇଥିଲେ । ସମଗ୍ର ଫ୍ରାନ୍ସରେ ସ୍ୟାଡୋୱା ଯୁଦ୍ଧର ପ୍ରତିଶୋଧ ପାଇଁ ଏକ ବିରାଟ ଜନମତ ସୃଷ୍ଟି ହୋଇଥିଲା । କ୍ଷତିପୂରଣସ୍ୱରୂପ ସେମାନେ ଅନ୍ତତଃ କିଛି ଚାହୁଁଥିଲେ । ୧୮୬୭ ମସିହାରେ ନେପୋଲିୟନ ପ୍ରାୟ ଲକ୍‌ସମ୍‌ବର୍ଗ ପାଇଯାଇଥିଲେ । କାରଣ ହଲଣ୍ଡ ତାହା ଫ୍ରାନ୍ସକୁ ବିକ୍ରି କରିଦେବାପାଇଁ ରାଜି ଥିଲା; କିନ୍ତୁ ଜର୍ମାନୀର ଜନମତ ତାହାର ବିରୋଧ କରିଥିଲା ଏବଂ ନେପୋଲିୟନ ଏହି ଘଟଣାନେଇ ଯୁଦ୍ଧକରିବାକୁ ଚାହୁଁ ନଥିବାରୁ ସେ ନିର୍ଲଜ୍ଜ ଭାବରେ ପଛଘୁଞ୍ଚା ଦେଇଥିଲେ ।

୧୮୬୬ ଏବଂ ୧୮୭୦ ମସିହା ମଧ୍ୟରେ ଲୋକମାନଙ୍କ ମନରେ ଧାରଣା ଜନ୍ମିଥିଲା ଯେ, ଫ୍ରାନ୍ସ ଓ ପ୍ରୁସିୟା ମଧ୍ୟରେ ଶେଷରେ ଯୁଦ୍ଧ ଅବଶ୍ୟମ୍ଭାବୀ । ସ୍ୟାଡୋୱା ଯୁଦ୍ଧପରେ ନେପୋଲିୟନ ପ୍ରୁସିୟା ବିରୁଦ୍ଧରେ ବୈଦେଶିକ ସାହାଯ୍ୟ ସଂଗ୍ରହ କରିବାର ଉଦ୍ୟମ କରି-ନଥିଲେ । ତାଙ୍କର ନିର୍ବୋଧତା ଓ ବିସମାର୍କଙ୍କର କୂଟନୀତି ଫଳରେ ଫ୍ରାନ୍ସ ଇଉରୋପରେ ବନ୍ଧୁଶୂନ୍ୟ ହୋଇପଡ଼ିଥିଲା । ତୃତୀୟ ନେପୋଲିୟନ ରୁଷିଆ ବିରୁଦ୍ଧରେ କ୍ରିମିୟା ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଏବଂ ପୋଲଣ୍ଡର ଅଧିବାସୀମାନଙ୍କ ବ୍ୟାପାରରେ ହସ୍ତକ୍ଷେପ କରି ରୁଷିଆର ଶତ୍ରୁତା ଅର୍ଜନ କରିଥିଲେ । ଅଷ୍ଟ୍ରିୟା ଓ ସାର୍ଡିନିୟା ମଧ୍ୟରେ ଯୁଦ୍ଧ ( ୧୮୫୯-୬୦ )

ଲଢ଼ିଥିଲାବେଳେ ସେ ସାର୍ଡିନିଆକୁ ସାହାଯ୍ୟ କରି ଅଷ୍ଟ୍ରିଆକୁ ଫ୍ରାନ୍ସ ଠାରୁ ବିଚ୍ଛିନ୍ନ କରି ଦେଇଥିଲେ । ସେ ଇଟାଲୀଠାରୁ ସ୍ୟାଭୟ ଏବଂ ନିସ୍ ନେଇ ଇଟାଲୀର ମିତ୍ରତା ହରାଇଥିଲେ । ସେ ମେକ୍ସିକୋକୁ ଏକ ଅଭିଯାନ ପଠାଇ ମନରୋ ନୀତି ( Monroe Doctrine )କୁ ଅବଜ୍ଞା କରିବା ଫଳରେ ଯୁକ୍ତରାଷ୍ଟ୍ର ଆମେରିକାର ଶତ୍ରୁତା ଆଚରଣ କରିଥିଲେ । ତୃତୀୟ ନେପୋଲିୟନ ଇଣ୍ଡୋଚୀନରେ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କରିବାପାଇଁ ଯେଉଁ ଉଚ୍ଚାକାଙ୍କ୍ଷା ପୋଷଣ କରିଥିଲେ, ତାହା ଭାରତରେ ଇଂଲଣ୍ଡର ସ୍ୱାର୍ଥ ପ୍ରତି ବିପଦ ସୃଷ୍ଟି କରିବାର ଆଶଙ୍କା ଥିବାରୁ ଇଂଲଣ୍ଡ ତାଙ୍କ ପ୍ରତି ଶତ୍ରୁଭାବାପନ୍ନ ହୋଇଥିଲା । ତେଣୁ ୧୮୬୭ ମସିହା ପରେ ଫ୍ରାନ୍ସକୁ ଇଉରୋପରେ ଏକୁଟିଆ କରିଦିଆଯାଇଥିଲା । ସ୍ପେନ୍‌ରେ ଖାଲିପଡ଼ିଥିବା ରାଜପଦ ପ୍ରୁସିଆର ହୋହେନଜୋଲର୍ଣ୍ଣ ରାଜବଂଶର ଜଣେ ପ୍ରାର୍ଥୀଙ୍କୁ ଅର୍ପଣ କରିବାପାଇଁ ସ୍ପେନ ପ୍ରସ୍ତାବ ଦେବା ଫଳରେ ଫ୍ରାନ୍ସ ଓ ପ୍ରୁସିଆ ମଧ୍ୟରେ ମତଭେଦ ଦେଖାଦେଇଥିଲା । ଏହି ମତଭେଦ ଦିନକୁ ଦିନ ବୃଦ୍ଧି ପାଇ ପରିଶେଷରେ ଫ୍ରାନ୍ସ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ (୧୮୭୦ ) ଲାଗିଯାଇଥିଲା । ଫ୍ରାନ୍ସ ଯୁଦ୍ଧପାଇଁ ଭଲ ଭାବରେ ପ୍ରସ୍ତୁତ ହୋଇ ନ ଥିବାରୁ ପ୍ରୁସିଆ ଅତି ସହଜରେ ତାକୁ ସେଡାନ ଯୁଦ୍ଧରେ ପରାଜିତ କରିଥିଲା ଏବଂ ତୃତୀୟ ନେପୋଲିୟନ ତାଙ୍କର ୮୦,୦୦୦ ଲୋକଙ୍କ ସହିତ ପ୍ରୁସିଆ ହାତରେ ବନ୍ଦୀ ହୋଇଥିଲେ । ଫ୍ରାନ୍ସ ସେଡାନ ଯୁଦ୍ଧରେ ପରାସ୍ତ ହେବା ସଙ୍ଗେ ସଙ୍ଗେ ଦ୍ୱିତୀୟ ସାମ୍ରାଜ୍ୟ ଓ ସମ୍ରାଟ ତୃତୀୟ ନେପୋଲିୟନଙ୍କର ପତନ ଘଟିଲା ।

ତୃତୀୟ ନେପୋଲିୟନଙ୍କର ଚରିତ୍ରରେ ବିଭିନ୍ନ ଓ ପରସ୍ପର ବିରୋଧୀ ଗୁଣାବଳୀର ସମ୍ମିଶ୍ରଣ ଦେଖିବାକୁ ମିଳେ । ଫ୍ରାନ୍ସ ଓ ଇଉରୋପ ନିକଟରେ ସେ ଥିଲେ ଏକ ପ୍ରହେଳିକା ଏବଂ ତାଙ୍କ ଚରିତ୍ର ଥିଲା ରହସ୍ୟମୟ । ତାଙ୍କ ଚରିତ୍ରରେ ଅସାମଞ୍ଜସ୍ୟ ଲକ୍ଷ୍ୟକରି ବହୁ ଲୋକ ତାଙ୍କ ବିଷୟରେ ବହୁମତ ଦେଇଅଛନ୍ତି । ତାଙ୍କୁ ଏକାଧାରରେ ଜଣେ ନିର୍ବୋଧ, ଦୁର୍ଜନ ଏବଂ ଦୂରଦର୍ଶୀ ରାଜନୀତିଜ୍ଞ ବୋଲି ଅଭିହିତ କରାଯାଇଛି । ସେ ଫ୍ରାନ୍ସକୁ ନିଜ କାର୍ଯ୍ୟଦ୍ୱାରା ମୁଗ୍ଧ ଓ ବିସ୍ମିତ କରିବାବେଳେ ଇଉରୋପକୁ କିଂକର୍ତ୍ତବ୍ୟବିମୂଢ଼ କରି-ଦେଇଥିଲେ; କିନ୍ତୁ ଶେଷରେ ତାଙ୍କୁ କେହି ବିଶ୍ୱାସ କରିନଥିଲେ କି ବୁଝିପାରିନଥିଲେ । ତୃତୀୟ ନେପୋଲିୟନ କେତେକକ୍ଷେତ୍ରରେ ମ୍ୟାକିୟାଭେଲିଙ୍କର ଚତୁର ରାଜନୀତିକୁ ଅନୁସରଣ କରୁଥିଲେ ମଧ୍ୟ ଅନ୍ୟ କେତେକ କ୍ଷେତ୍ରରେ ଡନ୍ କ୍ୱିକ୍‌ଜୋଟଙ୍କ ପରି ଅସମ୍ଭବ ପରିକଳ୍ପନାକୁ କାର୍ଯ୍ୟକାରୀ କରିବାକୁ ଯାଇ ବିକୃତ ମସ୍ତିଷ୍କର ପରିଚୟ ଦେଇଥିଲେ । ଅବଶ୍ୟ ଏକଥା ଅସ୍ୱୀକାର କରିହେବ ନାହିଁ ଯେ ତାଙ୍କର ଚରିତ୍ର ଫ୍ରାନ୍ସ ଏବଂ ଇଉରୋପରେ ଉପୁଜିଥିବା ସେ ସମୟର ପରିସ୍ଥିତିର ପ୍ରଭାବରେ ବିଶେଷଭାବରେ ପ୍ରଭାବିତ ହୋଇଥିଲା । ସେ ପ୍ରଥମ ନେପୋଲିୟନଙ୍କୁ ସବୁକ୍ଷେତ୍ରରେ ଅନୁକରଣ କରିବାପାଇଁ ଉଦ୍ୟମ କରିଥିଲେ; କିନ୍ତୁ ସେଥିରେ ସେ ସଫଳ ହୋଇନଥିଲେ । ସେଥିପାଇଁ ତାଙ୍କୁ 'କ୍ଷୁଦ୍ର ନେପୋଲିୟନ' ( Little Napoleon ) ଆଖ୍ୟା ଦିଆହୋଇଥିଲା । ସେ ପ୍ରଥମ

ନେପୋଲିୟନଙ୍କ ବୈଦେଶିକ ନୀତିର ପୁନଃପ୍ରବର୍ତ୍ତନ କରିବାକୁ ଯାଇ ସର୍ବପ୍ରଥମେ କ୍ରିମିୟା ଯୁଦ୍ଧ ସୃଷ୍ଟି କରିଥିଲେ । ତାଙ୍କ ନୀତି ଫଳରେ ଅଷ୍ଟ୍ରିୟା ଓ ସାର୍ଡିନିୟା ମଧ୍ୟରେ ଯୁଦ୍ଧ ଲାଗି ଯାଇଥିଲା । ତାଙ୍କର ଅଦୂରଦର୍ଶିତା ଓ କୂଟନୈତିକ ଜ୍ଞାନର ଅଭାବଯୋଗୁ ଅଷ୍ଟ୍ରିୟା ଏବଂ ପ୍ରୁସିୟା ମଧ୍ୟରେ ଏବଂ ଫ୍ରାନ୍ସ ଓ ପ୍ରୁସିୟା ମଧ୍ୟରେ ଯୁଦ୍ଧର ସୂଚନା ମିଳିଥିଲା ।

ତୃତୀୟ ନେପୋଲିୟନ ଏକ ଅସୁବିଧାଜନକ ଅବସ୍ଥାରେ ପଡ଼ିଥିଲେ । ସେ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାପାଇଁ ଫ୍ରାନ୍ସର ରାଜଗାଦି ଅଧିକାର କରିଥିଲେ; କିନ୍ତୁ ତାଙ୍କର ସେ ସାମର୍ଥ୍ୟ ନଥିଲା । ନେପୋଲିୟନଙ୍କ ଭାବସମୂହ ( Napoleonic ideas )ର ବ୍ୟାଖ୍ୟାକାର ହିସାବରେ ସେ ପ୍ରମାଣ କରିବାକୁ ଚାହିଁଥିଲେ ଯେ, ଫରାସୀ-ବିପ୍ଳବ ( ୧୭୮୯ ) ଯେଉଁସବୁ ମୌଳିକନୀତି ( ସ୍ୱାତନ୍ତ୍ର୍ୟ, ଜାତୀୟତାବାଦ ଓ ଲୋକ ସାର୍ବଭୌମତ୍ୱ ) ଉପରେ ଆଧାରିତ ଥିଲା, ପ୍ରଥମ ନେପୋଲିୟନଙ୍କର ସାମ୍ରାଜ୍ୟ ହେଉଛି ସବୁ ନୀତିର ସମ୍ପୂର୍ଣ୍ଣ ସମାଧାନ । ସେହିସବୁ ନୀତି ସହିତ ସେ ଅନ୍ୟ କେତେକ ନୀତି-ଗୌରବ, ଦକ୍ଷତା, ଶୃଙ୍ଖଳା ଏବଂ କ୍ଷମତା ଯୋଗ କରିଥିଲେ । ସେ ଫ୍ରାନ୍ସରେ ପ୍ରଥମ ନେପୋଲିୟନଙ୍କ ଆଦର୍ଶ ଅନୁସରଣ କରି ଦ୍ୱିତୀୟ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ସେ ପ୍ରଥମ ନେପୋଲିୟନଙ୍କ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ତାଙ୍କପରି ସଫଳ ଅଭିନୟ କରିପାରିନଥିଲେ । ସେ ବାସ୍ତବରେ ଶାନ୍ତିପ୍ରିୟ ସମ୍ରାଟ ଥିଲେ । ଫରାସୀ ଜାତିକୁ ସମ୍ମାନ ଦେବାପାଇଁ ସେ ପ୍ରତିଶ୍ରୁତି ଦେଇଥିବାରୁ ସେ ଦୃଢ଼ ବୈଦେଶିକ ନୀତି ଗ୍ରହଣ କରିଥିଲେ । ଦକ୍ଷତା ଅଭାବରୁ ସେ ତାହା ପୂରାପୂରି କାର୍ଯ୍ୟରେ ପରିଣତ କରିପାରିନଥିଲେ । ପୋଲାଣ୍ଡ ଅଧିବାସୀମାନେ ରୁଷିଆର ଜାରଙ୍କ ବିରୁଦ୍ଧରେ ୧୮୬୩ ମସିହାରେ ବିଦ୍ରୋହ କଲାବେଳେ ସେ ସେମାନଙ୍କୁ ସାହାଯ୍ୟକରିବାକୁ କଥା ଦେଇ ତାହା ରକ୍ଷା କରିନଥିଲେ । ମେକ୍ସିକୋ ଅଭିଯାନ ତାଙ୍କର ଉଦ୍ଭଟ ପରିକଳ୍ପନା ଏବଂ ଅଦୂରଦର୍ଶିତାର ପ୍ରକୃଷ୍ଟ ପ୍ରମାଣ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଅଭିଯାନ ଫଳରେ ସେ ଏକପକ୍ଷରେ ଯେପରି ଲୋକପ୍ରିୟତା ହରାଇଥିଲେ, ଅନ୍ୟ ପକ୍ଷରେ ତାଙ୍କର ପରିକଳ୍ପନାର ଅବାସ୍ତବତା ଏବଂ ଅକାର୍ଯ୍ୟକାରିତା ସମ୍ପର୍କରେ କାହାର ଅଛି ସନ୍ଦେହ ରହିଲାନାହିଁ । ତୃତୀୟ ନେପୋଲିୟନଙ୍କ ବୈଦେଶିକ ନୀତିର କ୍ରମ ବିଫଳତା ତାଙ୍କର ଆଭ୍ୟନ୍ତରୀଣ କ୍ରମ-ଉଦାରତା ଦ୍ୱାରା ପୂରଣ କରିବା ସମ୍ଭବପର ହୋଇନଥିଲା ।

ତୃତୀୟ ନେପୋଲିୟନ ଫ୍ରାନ୍ସରେ ଥିବା ବିଭିନ୍ନ ରାଜନୈତିକ ଦଳମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଦଳକୁ ନିଜପକ୍ଷକୁ ଆଣିବାକୁ ସମର୍ଥ ହୋଇନଥିଲେ । ସେ ପରସ୍ପର ବିରୋଧୀ ରାଜନୈତିକ ଦଳମାନଙ୍କ ମଧ୍ୟରେ ମଧ୍ୟସ୍ଥତାର କାର୍ଯ୍ୟ କରିଥିଲେ । ନିରଙ୍କୁଶ ଶାସନ କ୍ଷମତା ପ୍ରୟୋଗ କରିବାପାଇଁ ସକ୍ଷମ ହୋଇନଥିଲେ । ପ୍ରକୃତରେ ତାଙ୍କ ସମ୍ରାଟ ପଦର ଦୁର୍ବଳତା ପଦେ ପଦେ ପ୍ରକାଶ ପାଇବାକୁ ଲାଗିଲା । ତାଙ୍କର ଆଭ୍ୟନ୍ତରୀଣ ବା ବୈଦେଶିକ ନୀତି ଉଦାରପନ୍ଥୀମାନଙ୍କୁ ସନ୍ତୁଷ୍ଟ କରିପାରିଲାନାହିଁ କି ରକ୍ଷଣଶୀଳମାନଙ୍କୁ

ସନ୍ତୁଷ୍ଟ କରିପାରିଲା ନାହିଁ । ତୃତୀୟ ନେପୋଲିୟନଙ୍କର ଇଟାଲୀୟ ନୀତି ଫରାସୀ ଯାଜକ-ଶ୍ରେଣୀର ଶତ୍ରୁତା ଅର୍ଜନ କରିଥିଲା । ତାଙ୍କର ସ୍ୱେଚ୍ଛାଚାରୀ ଶାସନ ବ୍ୟବସ୍ଥା ସାଧାରଣତନ୍ତ୍ରବାଦୀ ଦଳକୁ ବିରୋଧାନ୍ୱିତ କରିଥିଲା । ଶିଳ୍ପୋତ୍ପାଦକ ଓ ବ୍ୟବସାୟୀ ଗୋଷ୍ଠୀ ତାଙ୍କର ଅବାଧ-ବାଣିଜ୍ୟ ନୀତିର ବିରୋଧ କରିଥିଲେ ଓ ତୃତୀୟ ନେପୋଲିୟନଙ୍କୁ ଶତ୍ରୁ ମନେକରିଥିଲେ । ତେଣୁ ସେ ସବୁଶ୍ରେଣୀର ଲୋକମାନଙ୍କୁ ତାଙ୍କ ବିରୁଦ୍ଧରେ ଏକଜୁଟ ହେବାପାଇଁ ସୁଯୋଗ ଦେଇଥିଲେ । ଯେ ଯାହାହେଉ, ସେଡାନ ଯୁଦ୍ଧରେ ଫ୍ରାନ୍ସର ପରାଜୟ ସଙ୍ଗେ ସଙ୍ଗେ ତୃତୀୟ ନେପୋଲିୟନଙ୍କର ପତନ ଘଟିଲା ଏବଂ ଦ୍ୱିତୀୟ ଫରାସୀ ସାମ୍ରାଜ୍ୟର ଅବସାନ ହେଲା ।

---

# ପଞ୍ଚଦଶ ଅଧ୍ୟାୟ

## ଇଟାଲୀର ମୁକ୍ତି ଓ ଏକତ୍ରୀକରଣ ଏବଂ ତାର ନିର୍ମାତାଗଣ
## (The Liberation and Unification of Italy and its Builders)

୧୭୮୯ ମସିହା ଫରାସୀ ବିପ୍ଲବର କେତେକ ଶତାବ୍ଦୀ ପୂର୍ବରୁ ଇଟାଲୀ ବିଦେଶୀ ଶାସନାଧୀନରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ ପରସ୍ପର କଳହରେ ବ୍ୟାପୃତ ରହିଥିଲା । ଜାତୀୟତାବୋଧ ବା ସ୍ୱାଧୀନତା ଲାଭ କରିବାର ଆଗ୍ରହ ସେମାନଙ୍କ ମଧ୍ୟରେ ନଥିଲା । ଫରାସୀବିପ୍ଲବ ଯୁଗରେ ଇଟାଲୀ ଜାତୀୟତାବାଦର ପ୍ରଭାବରେ ପ୍ରଭାବିତ ହୋଇଥିଲା ସତ; କିନ୍ତୁ ନେପୋଲିୟନ୍ ବୋନାପାର୍ଟ ଇଟାଲୀକୁ ନିଜ ସାମ୍ରାଜ୍ୟଭୁକ୍ତ କରିନେବାରୁ ଇଟାଲୀୟମାନଙ୍କର ଜାତୀୟସରକାର ଗଢ଼ିବା ଏବଂ ବିଦେଶୀ ଶାସକମାନଙ୍କୁ ବିତାଡ଼ିତ କରିବାର ଆଶା-ଆକାଙ୍‌କ୍ଷା ଆଉ ସଫଳ ହୋଇ ପାରିଲାନାହିଁ; କିନ୍ତୁ ନେପୋଲିୟନ ଇଟାଲୀ ଅଧିକାର କରିନେଲାପରେ ସେଠାକାର ଆଭ୍ୟନ୍ତରୀଣ ବିଭେଦ ଦୂରକରି ଇଟାଲୀବାସୀଙ୍କ ମଧ୍ୟରେ ଏକ ଜାତୀୟଚେତନା ଆଣିଥିଲେ । ନେପୋଲିୟନଙ୍କ ଅଧୀନରେ ଇଟାଲୀର ସବୁଆଡ଼େ ଏକରୂପ ସାମାଜିକ ଏବଂ ରାଜନୈତିକ ବ୍ୟବସ୍ଥା ପ୍ରତିଷ୍ଠା କରାଯିବା ଫଳରେ ଇଟାଲୀବାସୀଙ୍କ ମନରେ ଜାତୀୟ ଐକ୍ୟ ସାଧନକରିବାର ଆକାଙ୍‌କ୍ଷା ସୃଷ୍ଟି ହୋଇଥିଲା । ନେପୋଲିୟନଙ୍କର ପତନ ପରେ ଭିଏନା କଂଗ୍ରେସ 'ନ୍ୟାଯ୍ୟ-ଅଧିକାର' ନୀତି ପ୍ରୟୋଗକରି ଇଟାଲୀର ଉତ୍ତରାଂଶ ଅଷ୍ଟ୍ରିୟା ଅଧୀନରେ ଏବଂ ଦକ୍ଷିଣାଂଶକୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ପରିଣତ କରିଥିଲା । ସାର୍ଡିନିୟା ରାଜ୍ୟକୁ ଛାଡ଼ିଦେଲେ ଇଟାଲୀର ଅନ୍ୟ ସମସ୍ତ ଅଞ୍ଚଳକୁ ବିଦେଶୀ ଶାସନାଧୀନରେ ରଖାଯାଇଥିଲା । 'ଇଟାଲୀ' କହିଲେ ସେତେବେଳେ ସମଗ୍ର ଇଟାଲୀକୁ ବୁଝାଉ ନଥିଲା । ବାସ୍ତବରେ 'ଇଟାଲୀ' ନାମଟି ଏକ ଭୌଗୋଳିକ ସଂଜ୍ଞାରେ ପରିଣତ ହେଲା । ପୁନର୍ବାର ଇଟାଲୀ ପ୍ରତିକ୍ରିୟାଶୀଳ ଶାସକମାନଙ୍କ ଅଧୀନକୁ ଆସିଥିଲା । ଅଷ୍ଟ୍ରିୟାର ମନ୍ତ୍ରୀ ମେଟାରନିକଙ୍କ ସାହାଯ୍ୟ ଏବଂ ପ୍ରରୋଚନାରେ ଏହି ଶାସକମାନେ ଇଟାଲୀର ବିଭିନ୍ନସ୍ଥାନରେ ଜାତୀୟତାବାଦୀ ଓ ଗଣତନ୍ତ୍ରୀଙ୍କ ଆନ୍ଦୋଳନ ଓ ଭାବଧାରାକୁ ଦୃଢ଼ଭାବରେ ଦମନ କରିବାରେ ଲାଗିପଡ଼ିଲେ । ଏହି ପ୍ରତିକ୍ରିୟାଶୀଳ ଶାସନବ୍ୟବସ୍ଥାର ଅବସାନ ଘଟାଇବାପାଇଁ ଇଟାଲୀର ନାନା ସ୍ଥାନରେ ଗୁପ୍ତ ସମିତିମାନ ଗଢ଼ା ଯାଇଥିଲା । ଏହି ସମିତିମାନଙ୍କ ମଧ୍ୟରେ କାରବୋନାରି (Carbonari) ଥିଲା ସର୍ବବୃହତ୍ତ ଓ ସର୍ବଶ୍ରେଷ୍ଠ ।

# ମ୍ୟାଜିନଙ୍କ ଚରିତ୍ର ଓ ଜୀବନୀ
## ( Character and Career of Mazzini )

ଏହିପରି ରାଜନୈତିକ ପରିସ୍ଥିତିରେ ଇଟାଲୀୟମାନେ ହତାଶ ହୋଇ ପଡ଼ିଥିଲାବେଳେ ଦେଶବତ୍ସଲ ଯୋସେଫ୍ ମ୍ୟାଜିନ ସେମାନଙ୍କ ମନରେ ଆଶା ଏବଂ ଉଦ୍ଦୀପନା ସଞ୍ଚାର କରିଥିଲେ । ଇଟାଲୀର ପୁନରୁଜ୍ଜୀବନ ( Risorgimento )ର ସେ ଥିଲେ ପ୍ରଧାନ ନେତା । ସେ ଇଟାଲୀୟମାନଙ୍କ ମନରେ ଏକ ସ୍ୱାଧୀନ ଏବଂ ଏକତାବଦ୍ଧ ଇଟାଲୀର ଛବି ଆଙ୍କି ଦେଇଥିଲେ । ଏହି ସ୍ୱାଧୀନ ଓ ଏକତାବଦ୍ଧ ଇଟାଲୀ ଯେପରି ସତ୍ୟରେ ପରିଣତ ହେବ, ସେଥିପାଇଁ ସେ ଯଥେଷ୍ଟ ପ୍ରେରଣା ଯୋଗାଇବାରେ ଲାଗିଲେ । ଏକ ସ୍ୱାଧୀନ ଓ ଏକତାବଦ୍ଧ ଇଟାଲୀ ଗଠନକରିବାର ପବିତ୍ର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କରାଯାଇଛି ବୋଲି ସେ ଯୌବନକାଳରୁ ଅନୁଭବ କରିଆସୁଥିଲେ । ମ୍ୟାଜିନ ୧୮୦୫ ମସିହାରେ ଜେନୋଆରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଥିଲେ ଡାକ୍ତର ଏବଂ ଜେନୋଆ ବିଶ୍ୱବିଦ୍ୟାଳୟର ପ୍ରଫେସର । ଅଳ୍ପ ବୟସରେ ସେ ଦେଶବାସୀଙ୍କର ଦୁଃଖ-ଦୁର୍ଦ୍ଦଶାର କଥା ଭାବି ଅତିଶୟ ବ୍ୟାକୁଳ ହୋଇପଡ଼ୁଥିଲେ । ତାଙ୍କ ସ୍କୁଲପାଠୀ ଛାତ୍ରମାନଙ୍କର କୋଳାହଳମୟ ଜୀବନ ମଧ୍ୟରେ ସେ ଗମ୍ଭୀର ଓ ଚିନ୍ତାମଗ୍ନ ରହୁଥିଲେ ଏବଂ ହଠାତ୍ ବୁଢ଼ା ହୋଇଗଲେଣି ବୋଲି ମନେକରୁଥିଲେ । ସେ ବାଳକସୁଲଭ ମନୋଭାବ ନେଇ ପ୍ରତିଜ୍ଞା କରିଥିଲେ ଯେ, ନିଜ ଦେଶପାଇଁ ଶୋକ ପ୍ରକାଶ କରିବା ଉଦ୍ଦେଶ୍ୟରେ ସେ ସର୍ବଦା କଳାପୋଷାକ ପରିଧାନ କରିବେ । ମ୍ୟାଜିନଙ୍କର ଅସୀମ ଦେଶପ୍ରେମ ତାଙ୍କୁ ଦେଶ ପାଇଁ ଜୀବନ ଉତ୍ସର୍ଗ କରିବାକୁ ଅନୁପ୍ରାଣିତ କରିଥିଲା ।

ପ୍ରଥମ ଜୀବନରେ ତାଙ୍କର ସାହିତ୍ୟ ପ୍ରତି ବିଶେଷ ଝୁଙ୍କ ଥିଲା । ସେ ଥରେ କହିଥିଲେ, "ଐତିହାସିକ ନାଟକ ଓ ରୋମାଞ୍ଚକର କାହାଣୀଗୁଡ଼ିକର ସହସ୍ର ଦୃଶ୍ୟ ମୋର ମାନସ-ପଟରେ ଭାସିଉଠୁଛି ।" କିନ୍ତୁ ତାଙ୍କୁ ଏହି ସ୍ୱପ୍ନ ଏକାବେଳେ ତ୍ୟାଗକରିବାକୁ ପଡ଼ିଲା । ରାଜନୈତିକ ଆନ୍ଦୋଳନ ଉଦ୍ଦେଶ୍ୟରେ 'ମୋର ପ୍ରଥମ ମହତ୍ତ୍ୱ ଦାନ' ବୋଲି ସେ ଏହି ତ୍ୟାଗ ବିଷୟରେ କହିଥିଲେ । ମ୍ୟାଜିନ ଅବଶ୍ୟ ସର୍ବପ୍ରଥମେ କାର୍ବୋନାରି କୁହାଯାଉଥିବା ଏକ ବିପ୍ଳବୀସଙ୍ଘରେ ଯୋଗଦାନ କରିଥିଲେ । ୧୮୨୦-୧୮୨୧ ମସିହାରେ ସ୍ପେନୀୟ ବିପ୍ଳବର ଆଦର୍ଶରେ କାର୍ବୋନାରି ଦୁଇଟି ବିପ୍ଳବ ସୃଷ୍ଟି କରିଥିଲା; କିନ୍ତୁ ଉଭୟ ବିପ୍ଳବ ବିଫଳ ହୋଇଥିଲା । ସେ ଏହି ବିପ୍ଳବୀ-ସଙ୍ଘର କାର୍ଯ୍ୟପ୍ରଣାଳୀକୁ ଅନୁମୋଦନ କରୁନଥିଲେ ମଧ୍ୟ ଏହା ଏକ ବୈପ୍ଳବିକ ସଙ୍ଘ ହୋଇଥିବାରୁ ସେ ଏହାର ସଭ୍ୟ ହୋଇଥିଲେ । ଏହି ସଙ୍ଘର ସଭ୍ୟ ହୋଇଥିବାରୁ ତାଙ୍କୁ ୧୮୩୦ ମସିହାରେ ଗିରଫ କରାଯାଇ ସାଭୋନା ଦୁର୍ଗରେ ବନ୍ଦୀ କରାଯାଇଥିଲା । ସେ ଛଅମାସ କାଳ ବନ୍ଦୀ ଜୀବନ ଯାପନ କଲାପରେ ତାଙ୍କୁ ୧୮୩୧ ମସିହାରେ ମୁକ୍ତ ଦିଆଯାଇଥିଲା; କିନ୍ତୁ

କତୁବଦନ ପରେ ତାଙ୍କୁ ସ୍ୱଦେଶ ଛାଡ଼ି ପଳାଇବାପାଇଁ ବାଧ୍ୟ କରାଯାଇଥିଲା । ସେ ପ୍ରାୟ ଚାଳିଶ ବର୍ଷ କାଳ ଫ୍ରାନ୍ସ, ସ୍ୱିଜରଲ୍ୟାଣ୍ଡ ଏବଂ ବିଶେଷତଃ ଇଂଲଣ୍ଡରେ ନିର୍ବାସିତ ଜୀବନ ଅତିବାହିତ କରିଥିଲେ । ଇଂଲଣ୍ଡ ପ୍ରକୃତରେ ତାଙ୍କର ଦ୍ୱିତୀୟ ଗୃହ ହୋଇଥିଲା ।



( ଯୋସେଫ୍ ମ୍ୟାଜିନି )

ମ୍ୟାଜିନି ୧୮୩୧ ମସିହାରେ ମୁକ୍ତି ପାଇଲା ପରେ ସେ 'ୟଙ୍ଗ୍ ଇଟାଲୀ' ନାମକ ଏକ ସଙ୍ଗଠନ ସ୍ଥାପନ କରିଥିଲେ । ଏହି ସଙ୍ଗଠନ ଇଟାଲୀୟମାନଙ୍କ ମଧ୍ୟରେ ଏକ ନବ ଜାଗରଣ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନୂତନ ଇଟାଲୀ ଗଢ଼ିବାରେ ମଧ୍ୟ ସାହାଯ୍ୟ କରିଥିଲା । ସେ କାର୍ବୋନାରିର ଧ୍ୱଂସମୂଳକ କାର୍ଯ୍ୟପଦ୍ଧତିରେ ବିଶ୍ୱାସୀ ନ ଥିଲେ । ଇତିମଧ୍ୟରେ

କାର୍‌ବୋନାରି ପରିଚାଳିତ ଦୁଇଟି ଆନ୍ଦୋଳନ ବିଫଳ ହୋଇଯାଇଥିଲା । ତା'ଛଡ଼ା କାର୍‌ବୋନାରି ସଙ୍ଗଠନର ଲକ୍ଷ୍ୟ ଧ୍ୱଂସମୂଳକ ହୋଇଥିବାରୁ ଏବଂ ପୁନର୍ଗଠନ ପାଇଁ ତାର କୌଣସି ନିର୍ଦ୍ଦିଷ୍ଟ ଯୋଜନା ନଥିବାରୁ ମ୍ୟାଜିନିଙ୍କର ତା' ଉପରେ ଆଉ ଆସ୍ଥା ରହିଲାନାହିଁ । ତେଣୁ ସେ କାର୍‌ବୋନାରି ସହିତ ସମସ୍ତ ସମ୍ପର୍କ ଛିନ୍ନ କରିଦେଇଥିଲେ । ବିପ୍ଳବ ସମ୍ବନ୍ଧରେ ତାଙ୍କର ଧାରଣା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ସେ କହୁଥିଲେ, "ବିପ୍ଳବମାନ ଜନସାଧାରଣଙ୍କର ସମବେତ ଶକ୍ତିଦ୍ୱାରା ଏବଂ ଜନସାଧାରଣଙ୍କର ମଙ୍ଗଳପାଇଁ ସୃଷ୍ଟି ହେବା ଉଚିତ ।" ତାଙ୍କର 'ୟଙ୍ଗ୍ ଇଟାଲି' ସଙ୍ଗଠନ କିଛି ଏକ ଗୁପ୍ତ ସଙ୍ଗଠନ ହେବ, ନଚେତ୍ ତାକୁ ଧ୍ୱଂସ କରିଦେବାର ସମ୍ଭାବନା ରହିଛି । ଏହି ସମିତି କେବଳ ଷଡ଼ଯନ୍ତ୍ରକାରୀମାନଙ୍କର ଏକ ସଙ୍ଗଠନ ନ ଥିଲା । ଏହାର ଆଦର୍ଶ ଥିଲା ମହାନ୍ । ଜନସାଧାରଣଙ୍କର ମାନସିକ ଓ ନୈତିକ ଉନ୍ନତି ସାଧନାକରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିଜ ମତରେ ଦୀକ୍ଷିତ କରିବା ଏହି ସଙ୍ଗଠନର ଉଦ୍ଦେଶ୍ୟ ଥିଲା । ତା'ଛଡ଼ା ଏ ମଧ୍ୟ ସ୍ୱାର୍ଥ ତ୍ୟାଗ, ନୈତିକ ଆଦର୍ଶ ଓ ସ୍ୱଦେଶ ପ୍ରତି କର୍ତ୍ତବ୍ୟଜ୍ଞାନଦ୍ୱାରା ଇଟାଲୀୟମାନଙ୍କ ହୃଦୟ ଜୟକରିବାକୁ ଉଦ୍ୟମ କରିଥିଲା । ମ୍ୟାଜିନିଙ୍କର ଇଟାଲୀର ଯୁବଶକ୍ତି ଉପରେ ବିଶେଷ ଆସ୍ଥା ଥିଲା । ତେଣୁ କେବଳ ଚାଳିଶ ବର୍ଷ ବୟସରୁ କମ୍ ବୟସ୍କ ବ୍ୟକ୍ତିର 'ୟଙ୍ଗ୍ ଇଟାଲି' ସଙ୍ଗଠନର ସଭ୍ୟ ହେବାର ନିୟମ କରାଯାଇଥିଲା ।

ଇଟାଲୀର ମୁକ୍ତି ଏବଂ ଐକ୍ୟସାଧନ ବାସ୍ତବିକ ମ୍ୟାଜିନିଙ୍କ ନିକଟରେ ଏକ ନୂତନ ଧର୍ମରୂପେ ଦେଖାଦେଇଥିଲା । ଆତ୍ମୋତ୍ସର୍ଗଦ୍ୱାରା ଏହି ଆଦର୍ଶକୁ ସଫଳକରିବା ଥିଲା ତାଙ୍କର ଲକ୍ଷ୍ୟ । ଇଟାଲୀର ଯୁବସମାଜ ସାହାଯ୍ୟରେ ସେ ତାଙ୍କର ଲକ୍ଷ୍ୟ ହାସଲକରିବା-ପାଇଁ ଉଦ୍ୟମ କରିଥିଲେ । ସେ ଇଟାଲୀର ଯୁବସମାଜକୁ ଇଟାଲୀର ମୁକ୍ତି ଓ ଐକ୍ୟସାଧନ-ପାଇଁ ପ୍ରଚାରକ ରୂପେ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଇଥିଲେ । ସେ ଇଟାଲୀର ଯୁବକମାନଙ୍କୁ ସ୍ୱାଧୀନତାର ମଶାଲ ଧରି ଦେଶ ଦେଶ ଓ ଗାଁ ଗାଁ ବୁଲି ସ୍ୱାଧୀନତାର ଅର୍ଥ ଓ ସୁବିଧାଗୁଡ଼ିକ ଲୋକମାନଙ୍କୁ ପ୍ରାଞ୍ଜଳଭାବରେ ବୁଝାଇ ଦେବାପାଇଁ ପରାମର୍ଶ ଦେଇଥିଲେ । ସେ ମଧ୍ୟ ସେମାନଙ୍କୁ ପର୍ବତ ଆରୋହଣ କରି ଶ୍ରମିକମାନଙ୍କ ସହିତ ଏକାଠି ବସି ସେମାନଙ୍କର ନଗଣ୍ୟ ଖାଦ୍ୟ ଖାଇବାକୁ କହୁଥିଲେ । ତା'ଛଡ଼ା କଳକାରଖାନାମାନଙ୍କୁ ଯାଇ ସେଠାରେ କାରିଗରମାନଙ୍କୁ ଭେଟି ସେମାନଙ୍କୁ ସେମାନଙ୍କର ଅଧିକାର, ଅତୀତ ଗୌରବ, ପ୍ରାଚୀନ ବାଣିଜ୍ୟ ବିଷୟ ଚେତେଇଦେବା ସଙ୍ଗେ ସଙ୍ଗେ ସେମାନେ କିପରି ସେମାନଙ୍କର ଅଜ୍ଞାତରେ ଅତ୍ୟାଚାରିତ ହେଉଥିଲେ, ତାହା ସ୍ପଷ୍ଟଭାବରେ ବୁଝାଇଦେବା ସକାଶେ ମଧ୍ୟ ଉପଦେଶ ଦେଇଥିଲେ । ଇଟାଲୀର ଯୁବସମାଜ ତାଙ୍କ ଆହ୍ୱାନ ଶୁଣିଥିଲା ଏବଂ ମ୍ୟାଜିନିଙ୍କ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାପାଇଁ ନିର୍ଭୀକ ଚିତ୍ତରେ ଅତ୍ୟାଚାର, କାରାଦଣ୍ଡ ଇତ୍ୟାଦି ସବୁକିଛି ଶାସ୍ତିକୁ ଉପେକ୍ଷାକରି 'ୟଙ୍ଗ୍ ଇଟାଲି' ଆନ୍ଦୋଳନରେ ଯୋଗ ଦେଇଥିଲା । ଅଳ୍ପକାଳ ମଧ୍ୟରେ ଏହି 'ୟଙ୍ଗ୍ ଇଟାଲି' ସଙ୍ଗଠନର ଶାଖା ଇଟାଲୀର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା କରାଯାଇଥିଲା ।

ଏହି ସଙ୍ଗଠନର କାର୍ଯ୍ୟକ୍ରମ ଯେପରି ସୁସ୍ପଷ୍ଟ ଥିଲା, ସେହିପରି ଗୁରୁତ୍ୱପୂର୍ଣ୍ଣ ଥିଲା । କାର୍ଯ୍ୟକ୍ରମ ଅନୁଯାୟୀ ସର୍ବପ୍ରଥମେ ଅଷ୍ଟ୍ରିୟାକୁ ବିତାଡ଼ିତ କରିବାପାଇଁ ସ୍ଥିର କରାଯାଇଥିଲା । ସେମାନଙ୍କୁ ବହିଷ୍କାର କରିବାକୁ ହେଲେ ଅଷ୍ଟ୍ରିୟା ସହିତ ଯୁଦ୍ଧ ଅନିବାର୍ଯ୍ୟ ବୋଲି ଧରିନିଆ ହୋଇଥିଲା । ଯେତେ ଶୀଘ୍ର ଏହି ଯୁଦ୍ଧ ହେବ ଇଟାଲୀ ପାଇଁ ସେତେ ବେଶି ମଙ୍ଗଳ ହେବ । ବିଦେଶୀ ସାହାଯ୍ୟ ବା କୂଟନୈତିକ ଚାଲ୍ ଉପରେ ନିର୍ଭର ନ କରି ଇଟାଲୀକୁ ନିଜର ଶକ୍ତି ଉପରେ ଆସ୍ଥା ରଖି ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଡ଼ିବ । ଏହି ସଙ୍ଗଠନ ଅନୁଭବ କରିଥିଲା ଯେ, ଇଟାଲୀର ଦୁଇକୋଟି ଲୋକ ସେମାନଙ୍କର ନ୍ୟାଯ୍ୟ ଅଧିକାର ସାବ୍ୟସ୍ତକରିବା-ପାଇଁ ସଂଗ୍ରାମ ଚଳାଇଲେ ଅଷ୍ଟ୍ରିୟା ସେମାନଙ୍କୁ ଦବେଇ ଦେଇ ପାରିବନାହିଁ । ତା'ଛଡ଼ା ଇଟାଲୀୟମାନଙ୍କୁ ଏହି କଥା ମନେରଖିବାକୁ ହେବ ଯେ ଆତ୍ମବିଶ୍ୱାସଦ୍ୱାରା ହିଁ ସଫଳତା ଲାଭକରିବା ସମ୍ଭବ, କେବଳ ଶକ୍ତିଦ୍ୱାରା ନୁହେଁ । ମ୍ୟାଜିନି କହୁଥିଲେ ଯେ, କେବଳ ଏକନିଷ୍ଠ ଭାବରେ ନିଜ ଆଦର୍ଶଆଡ଼କୁ ଅଗ୍ରସର ହେଲେ ଅଷ୍ଟ୍ରିୟାକୁ ଇଟାଲୀରୁ ତଡ଼ିଦେବା ସମ୍ଭବପର ହେବ, କେବଳ ଶକ୍ତି ସାହାଯ୍ୟରେ ତାହା ସମ୍ଭବ ନୁହେଁ ।

ଏକଥା ଅସ୍ୱୀକାର କରିହେବନାହିଁ ଯେ ପ୍ରତ୍ୟେକ ବିପ୍ଳବ ପୂର୍ବରୁ ଏକ ଜନଜାଗରଣର ପ୍ରୟୋଜନ ରହିଛି । ଫ୍ରାନ୍ସରେ ଫରାସୀ ଦାର୍ଶନିକମାନେ ସେମାନଙ୍କର ଲେଖନୀ ସାହାଯ୍ୟରେ ଏଇ ଜନଜାଗରଣ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ । ଇଟାଲୀରେ ମ୍ୟାଜିନି ତାଙ୍କ ବକ୍ତୃତା ଓ ଲେଖନୀ ସାହାଯ୍ୟରେ ସେହି ଜନଜାଗରଣ ସୃଷ୍ଟି କରିଥିଲେ । ସେ ବେଶ୍ ବୁଝିପାରିଥିଲେ ଯେ, ସ୍ୱାର୍ଥାନ୍ୱେଷୀ ଏବଂ ଧ୍ୱଂସାତ୍ମକ ନୀତି ଅବଲମ୍ବନ କରି କାର ବୋନାରି ଦେଶକୁ ପ୍ରକୃତ ବାଟ ଦେଖାଇ ପାରିନଥିଲା । ତେଣୁ ଉଦାରନୈତିକ ଓ ଉଦ୍ଦୀପନାମୟ ଆଦର୍ଶର ଆବଶ୍ୟକତା ରହିଛି ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା । ଗଠନମୂଳକ କାର୍ଯ୍ୟକ୍ରମ ସାହାଯ୍ୟରେ ସେହି ଆଦର୍ଶରେ ପହଞ୍ଚିବା ସମ୍ଭବ ହେବ ବୋଲି ସେ ମଧ୍ୟ କହିଥିଲେ । ସ୍ୱଦେଶବତ୍ସଳ, ଦୂରଦର୍ଶୀ ମ୍ୟାଜିନି ତାଙ୍କ ଦେଶବାସୀଙ୍କ ମଧ୍ୟରେ ଏକ ଅଭୂତପୂର୍ବ ଉଦ୍ଦୀପନା ସୃଷ୍ଟି କରିଥିଲେ । ତାଙ୍କର 'ୟଙ୍ଗ୍ ଇଟାଲୀ' ସମିତି ମଧ୍ୟ ଇଟାଲୀୟମାନଙ୍କ ମଧ୍ୟରେ ଦେଶାତ୍ମବୋଧ ଜାଗ୍ରତକରିବା ସଙ୍ଗେ ସଙ୍ଗେ ଇଟାଲୀର ସ୍ୱାଧୀନତା ଓ ଜାତୀୟତା ପ୍ରତି ଆଗ୍ରହ ସୃଷ୍ଟି କରିପାରିଥିଲା । ଇଟାଲୀର ସ୍ୱାଧୀନତା ଅର୍ଜନ ଓ ଏକତ୍ରୀକରଣ ଇଟାଲୀୟମାନଙ୍କ ନିକଟରେ ଏକ ନୂତନ ଧର୍ମସ୍ୱରୂପ ହୋଇଥିଲା । ମ୍ୟାଜିନିଙ୍କ ମତରେ 'ୟଙ୍ଗ୍ ଇଟାଲୀ' ଏକ ସମ୍ପ୍ରଦାୟ କିମ୍ବା ଏକ ଦଳ ନୁହେଁ; କିନ୍ତୁ ଏହା ଏକ ଅବଲମ୍ବନ ଏବଂ ନେତୃତ୍ୱ । ସେ ଦୃଢ଼ଭାବରେ କହିଥିଲେ ଯେ, ଇଟାଲୀ ଐକ୍ୟବଦ୍ଧ ହେଲାପରେ ଏହା ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହେବା ଉଚିତ୍; କାରଣ ଏହି-ରୂପ ରାଷ୍ଟ୍ରରେ ସାର୍ବଭୌମ କ୍ଷମତା ଲୋକମାନଙ୍କ ଉପରେ ପ୍ରକୃତ ନ୍ୟସ୍ତ ହୁଏ । ଇଟାଲୀର ବିଭିନ୍ନ ରାଜ୍ୟଗୁଡ଼ିକୁ ମିଶାଇ ଏକ ଯୁକ୍ତରାଷ୍ଟ୍ର ପ୍ରତିଷ୍ଠା କଲେ ଇଟାଲୀର ସମସ୍ୟା ସମାଧାନ ହୋଇଯିବ ବୋଲି ସେ ଆଦୌ ବିଶ୍ୱାସ କରୁନଥିଲେ । ଯଦିଓ ମ୍ୟାଜିନିଙ୍କ ଉଚ୍ଚ

ଆଦର୍ଶବାଦ ଇଟାଲୀରେ ସମ୍ପୂର୍ଣ୍ଣ ଭାବରେ କାର୍ଯ୍ୟକାରୀ ହୋଇପାରି ନ ଥିଲା, ତଥାପି ଇଟାଲୀର କର୍ମୀମାନଙ୍କ ମଧ୍ୟରେ ତାଙ୍କୁ ଉଚ୍ଚ ସ୍ଥାନ ଦିଆଯାଏ । ସେ ଏବଂ ତାଙ୍କର 'ୟଙ୍ଗ୍ ଇଟାଲୀ' ସଙ୍ଗଠନ ଇଟାଲୀୟମାନଙ୍କ ମଧ୍ୟରେ ଏକ ବିରାଟ ଜାତୀୟଚେତନା ସୃଷ୍ଟି କରିପାରିଥିଲା । ତାଙ୍କ କାର୍ଯ୍ୟଗୁଡ଼ିକ ଫଳରେ ଇଟାଲୀୟମାନଙ୍କ ମନରେ ଏକ ଗଭୀର ଦେଶାତ୍ମବୋଧ ଓ ଜାତୀୟତାବୋଧ ସୃଷ୍ଟି ହୋଇପାରିଥିଲା ।

ମ୍ୟାଜିନିଙ୍କଠାରୁ ପ୍ରେରଣା ପାଇ ଇଟାଲୀୟମାନେ ଦେଶକୁ ସ୍ୱାଧୀନ ଓ ଐକ୍ୟବଦ୍ଧ କରିବାପାଇଁ ୧୮୩୧ ମସିହାରୁ ୧୮୪୮ ମସିହା ପର୍ଯ୍ୟନ୍ତ ନିଜକୁ ପ୍ରସ୍ତୁତ କରିବାରେ ଲାଗି-ପଡ଼ିଲେ । ଅବଶ୍ୟ ଫ୍ରାନ୍ସର ୧୮୩୦ ମସିହା ଜୁଲାଇ-ବିପ୍ଳବ ଇଟାଲୀକୁ କେତେକାଂଶରେ ପ୍ରଭାବିତ କରିଥିଲା । ସେତେବେଳେ 'ୟଙ୍ଗ ଇଟାଲୀ' ସଙ୍ଗଠନ ଗଢ଼ାଯାଇ ନଥିଲେ ମଧ୍ୟ ଅନ୍ୟ ଗୁପ୍ତ-ସଙ୍ଗଠନଗୁଡ଼ିକ ସକ୍ରିୟ ହୋଇ ଉଠିଥିଲେ । ପାରମା, ମୋଡେନା ଓ ପୋପଙ୍କ ରାଜ୍ୟରେ ବିଦ୍ରୋହମାନ ଦେଖାଦେଇଥିଲା; କିନ୍ତୁ ଅଷ୍ଟ୍ରିୟାର ହସ୍ତକ୍ଷେପ ଫଳରେ ସେସବୁ ବିଦ୍ରୋହକୁ ଦୃଢ଼ଭାବରେ ଦମନ କରାଯାଇଥିଲା । ଇଟାଲୀରେ ବିପ୍ଳବ ବିଫଳ ହେଲେ ମଧ୍ୟ ଅଷ୍ଟ୍ରିୟା ପ୍ରତି ଇଟାଲୀୟମାନଙ୍କର ଘୃଣାଭାବ ବୃଦ୍ଧି ପାଇବାକୁ ଲାଗିଲା । ୧୮୪୮ ମସିହା ଫେବୃୟାରୀ ମାସରେ ପୁଣି ଥରେ ଫ୍ରାନ୍ସରେ ବିପ୍ଳବ ସୃଷ୍ଟି ହୋଇଥିଲା ଏବଂ ତାହା ଇଟାଲୀକୁ ବିଶେଷଭାବରେ ପ୍ରଭାବିତ କରିଥିଲା । ଫଳରେ ଇଟାଲୀର ନାନାସ୍ଥାନରେ ବ୍ୟାପକ ବିଦ୍ରୋହାତ୍ମକ ଆନ୍ଦୋଳନ ଦେଖାଦେଇଥିଲା । ସାର୍ଡିନିୟାର * ରାଜା ଚାର୍ଲସ ଏଲବର୍ଟ ଇଟାଲୀ ବିଦ୍ରୋହର ନେତୃତ୍ୱ ଗ୍ରହଣ କରିଥିଲେ; କିନ୍ତୁ ଅଷ୍ଟ୍ରିୟାଦ୍ୱାରା କଷ୍ଟୋଜା ଯୁଦ୍ଧରେ ୧୮୪୮ ମସିହାରେ ପରାସ୍ତ ହେବା ପରେ ସାମୟିକ ଯୁଦ୍ଧବିରତି ଚୁକ୍ତି ସ୍ୱାକ୍ଷର କରିଥିଲେ ଏବଂ ଜାତୀୟ ସଂଗ୍ରାମରୁ ଓହରି ଯାଇଥିଲେ । ଚାର୍ଲସ ଏଲବର୍ଟଙ୍କ ପରାଜୟ ଫଳରେ ରାଜକୀୟ ଦଳ ବଦନାମ ହୋଇଥିଲେ ଏବଂ ସାଧାରଣତନ୍ତ୍ରବାଦୀମାନଙ୍କର ଆନ୍ଦୋଳନ ବିଶେଷ ଉତ୍ସାହ ପାଇଥିଲା । ଲୋକମାନେ ମ୍ୟାଜିନିଙ୍କ ନେତୃତ୍ୱକୁ ଗ୍ରହଣ କରିଥିଲେ । କେତେକଙ୍କ ମତରେ ରାଜାମାନଙ୍କର ସଂଗ୍ରାମ ଶେଷ ହୋଇଥିଲା ଏବଂ ଲୋକମାନଙ୍କର ସଗ୍ରାମ ଆରମ୍ଭ ହୋଇଗଲା । ଲୋକମାନେ ରୋମ୍‌ରେ ପୋପଙ୍କୁ ଅବରୋଧ କରିଥିଲେ; କାରଣ ପୋପ ସଂସ୍କାରମାନ ପ୍ରବର୍ତ୍ତନ କରିବାକୁ ରାଜି ହେଲେ ମଧ୍ୟ ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାକୁ ମନାକରି ଦେଇଥିଲେ । ଲୋକମାନେ ପୋପଙ୍କର ଅସଙ୍ଗତ ମନୋଭାବ ଏବଂ ନେପଲ୍‌ସ୍‌ର ରାଜା ଫର୍ଡିନାଣ୍ଡ ନିରଙ୍କୁଶ ଶାସନ ପୁନଃପ୍ରତିଷ୍ଠା କରିବା ଦେଖି ଅତିଶୟ କ୍ରୁଦ୍ଧ ହୋଇଥିଲେ । ପ୍ରତିକ୍ରିୟାଶୀଳ ନୀତିର ସଫଳ୍ୟ ରୋମ୍‌ବାସୀଙ୍କୁ ଏପରି ଉତ୍ତେଜିତ କରିଥିଲା ଯେ, ସେମାନେ ପୋପଙ୍କ ଶାସନର ଅବସାନ ଘଟାଇବାପାଇଁ ଦୃଢ଼-ପ୍ରତିଜ୍ଞ ହୋଇଥିଲେ । ମ୍ୟାଜିନିଙ୍କ ନେତୃତ୍ୱାଧୀନରେ ଓ ତାଙ୍କର ଶିଷ୍ୟ ଗ୍ୟାରିବାଲଡିଙ୍କ

* ସାର୍ଡିନିୟା ରାଜ୍ୟକୁ ପିଡ୍‌ମଣ୍ଟ-ସାର୍ଡିନିୟା ବା ପିଡ୍‌ମଣ୍ଟ ରାଜ୍ୟ ବୋଲି କୁହାଯାଏ ।

ସାହାଯ୍ୟରେ ସେମାନେ ରୋମ୍‌ରେ ଏକ ସାଧାରଣତନ୍ତ୍ର ପ୍ରତିଷ୍ଠା କରାଗଲା ବୋଲି ଘୋଷଣା କରିଥିଲେ । ପୋପ ରାଜଧାନୀରୁ ପଳାଇଯାଇ ଇଉରୋପୀୟ ଶକ୍ତିମାନଙ୍କର ସାହାଯ୍ୟ ଲୋଡ଼ିଥିଲେ । ଟସ୍କାନି ରୋମ୍‌କୁ ଅନୁକରଣ କରି ଏକ ସାଧାରଣତନ୍ତ୍ର ପ୍ରତିଷ୍ଠା କରିଥିଲେ ।

ଇଟାଲୀର ଭାଗ୍ୟ ରଜା ଚାର୍ଲସ ଆଲବର୍ଟଙ୍କ ମନୋଭାବ ଉପରେ ନିର୍ଭର କରୁଥିଲା । ଲୋକଙ୍କ ଚାପରେ ସେ ପୁନର୍ବାର ଇଟାଲୀର ମୁକ୍ତିପାଇଁ ବାହାରିପଡ଼ିଥିଲେ । ସେ ଅଷ୍ଟ୍ରିଆ ସହିତ ଯୁଦ୍ଧ ବିରତିଚୁକ୍ତିକୁ ବାତିଲ କରିଦେଇଥିଲେ ଏବଂ ତାଙ୍କ ରାଜ୍ୟ ସୀମା ଅତିକ୍ରମ କରି ମିଲାନ ଆକ୍ରମଣ ପାଇଁ ଅତିବେଗରେ ଧାଇଁଥିଲେ; କିନ୍ତୁ ନୋଭାରାଠାରେ ୧୮୪୯ ମସିହାରେ ଅଷ୍ଟ୍ରିଆଦ୍ୱାରା ସମ୍ପୂର୍ଣ୍ଣଭାବେ ପରାଜିତ ହୋଇଥିଲେ । ଏହି ଯୁଦ୍ଧ ପରେ ଆଲବର୍ଟଙ୍କୁ ରାଜସିଂହାସନ ତ୍ୟାଗକରିବାକୁ ପଡ଼ିଥିଲା ଏବଂ ତାଙ୍କର ପୁତ୍ର ଭିକ୍ଟର ଇମାନୁୟେଲ ରାଜସିଂହାସନ ଲାଭକରିଥିଲେ । ଆଲବର୍ଟଙ୍କ ପରାଜୟ ଫଳରେ ଇଟାଲୀୟମାନଙ୍କର ମୁକ୍ତିର ଆଶା ଧୂଳିସାତ୍ ହୋଇଥିଲା ଏବଂ ପ୍ରତିକ୍ରିୟା ଆରମ୍ଭ ହୋଇ-ଯାଇଥିଲା ।

ଇତ୍ୟବସରରେ ପୋପଙ୍କର ରୋମ୍‌ରୁ ପଳାୟନ ଫଳରେ କ୍ୟାଥଲିକ୍ ଜଗତରେ ଚହଳ ପଡ଼ିଯାଇଥିଲା । ଅଳ୍ପଦିନ ତଳେ ନିର୍ବାଚିତ ହୋଇଥିବା ଫରାସୀ ସାଧାରଣତନ୍ତ୍ରର ପ୍ରେସିଡେଣ୍ଟ ଲୁଇ ନେପୋଲିୟନ୍ ଫ୍ରାନ୍ସର ଶକ୍ତିଶାଳୀ କ୍ୟାଥଲିକ୍‌ଦଳର ସମର୍ଥନ ଲାଭକରିବା ଉଦ୍ଦେଶ୍ୟରେ ମ୍ୟାଜିନିଙ୍କ ନେତୃତ୍ୱରେ ରୋମ୍‌ରେ ପ୍ରତିଷ୍ଠିତ ସାଧାରଣତନ୍ତ୍ର ରାଷ୍ଟ୍ର ବିରୁଦ୍ଧରେ ଏକ ସୈନ୍ୟବାହିନୀ ପ୍ରେରଣ କରିଥିଲେ । ଗ୍ୟାରିବାଲ୍‌ଡି ଚମତ୍କାର ଭାବରେ ଦୁଇମାସରୁ ଅଧିକ ସମୟ ଫରାସୀ ସୈନ୍ୟବାହିନୀର ପ୍ରତିରୋଧ କରିବା ପରେ ରୋମ୍ ଆତ୍ମସମର୍ପଣ କରିଥିଲା । ସୁତରାଂ ରୋମ୍‌ରେ ପୋପଙ୍କର ଆଧିପତ୍ୟ ପୁନଃପ୍ରତିଷ୍ଠା କରି ଲୁଇ ନେପୋଲିୟନ୍ ବିଶେଷ ସମ୍ମାନ ଅର୍ଜନ କରିଥିଲେ । ତା'ଛଡ଼ା ପୋପଙ୍କର ନିରାପତ୍ତା ପାଇଁ ତାଙ୍କର ଏକ ସୈନ୍ୟବାହିନୀକୁ ରୋମ୍‌ରେ ଅବସ୍ଥାପିତ କରିଥିଲେ ।

ଇଟାଲୀର ସ୍ୱାଧୀନତା ସଂଗ୍ରାମ ଅଳ୍ପଦିନ ପରେ ବ୍ୟର୍ଥ ହୋଇଗଲା । ଅଷ୍ଟ୍ରିଆ ତାହାର ସ୍ଥିତି ଲମ୍ବାର୍ଡି ଓ ଭେନେସିଆରେ ପୁଣି ଫେରିପାଇଲା । ପିଡ଼ମଣ୍ଟ ବ୍ୟତୀତ ଇଟାଲୀର ଅନ୍ୟ ସବୁ ରାଜ୍ୟରେ ସ୍ୱେଚ୍ଛାଚାରୀ ଶାସନ ପୁନଃ ପ୍ରତିଷ୍ଠିତ ହୋଇଥିଲା । ପିଡ଼ମଣ୍ଟର ରାଜା ଦ୍ୱିତୀୟ ଭିକ୍ଟର ଇମାନୁୟେଲ ତାଙ୍କ ପିତାଙ୍କଦ୍ୱାରା ପ୍ରଦତ୍ତ ସଂବିଧାନ ପ୍ରତି ଅନୁରକ୍ତ ରହିଥିଲେ । ଅଷ୍ଟ୍ରିଆ ଇମାନୁୟେଲଙ୍କୁ ଜଣାଇଦେଇଥିଲା ଯେ, ଯଦି ସେ ଦେଶର ଉଦାରନୈତିକ ସଂବିଧାନକୁ ବାତିଲ କରିଦେବାପାଇଁ ରାଜି ହେବେ, ତାହାହେଲେ ଅଷ୍ଟ୍ରିଆ ତାଙ୍କୁ ଅତି ସହଜ ସର୍ତ୍ତରେ ସନ୍ଧି କରିବାପାଇଁ ସୁଯୋଗ ଦେବ; କିନ୍ତୁ ଇମାନୁୟେଲ ତାହା କରିବାକୁ ସ୍ପଷ୍ଟଭାବରେ ମନା କରିଦେଇଥିଲେ । ତେଣୁ ଏହି ଦିନଠାରୁ ପିଡ଼ମଣ୍ଟ

ସାର୍ଡିନିଆ ଉଦାରପନ୍ଥୀମାନଙ୍କର ଏକ ଭରସାସ୍ଥଳୀ ହୋଇପାରିଥିଲା । ଇମାନୁଏଲ ୧୮୫୨ ମସିହାରେ କାଭୁରଙ୍କୁ ତାଙ୍କର ପ୍ରଧାନମନ୍ତ୍ରୀପଦରେ ନିଯୁକ୍ତ କଲେ ।

ଯେ ଯାହାହେଉ, ଏକଥା ସ୍ୱୀକାର କରିବାକୁପଡ଼ିବ ଯେ, ଇଟାଲୀର ଦେଶପ୍ରେମୀମାନଙ୍କର ଇଟାଲୀର ସ୍ୱାଧୀନତାପାଇଁ ୧୮୪୮-୪୯ ମସିହାର ସଂଗ୍ରାମ ବିଫଳ ହୋଇଯାଇଥିଲା । ଇଟାଲୀର ସମସ୍ତ ଦେଶପ୍ରେମୀ ଇଟାଲୀର ସ୍ୱାଧୀନତା ଓ ସେଠାରୁ ଅଷ୍ଟ୍ରିଆର ବହିଷ୍କାର ଚାହୁଁଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ ଇଟାଲୀୟମାନେ ସେମାନଙ୍କର ନିଜ ଉଦ୍ୟମ ଫଳରେ ଇଟାଲୀର ସ୍ୱାଧୀନତାହାସଲ କରିପାରିବେ । ପିଡମଣ୍ଟ-ସାର୍ଡିନିଆର ରାଜା ଚାର୍ଲସ ଆଲବର୍ଟ ପ୍ରଥମେ ଇଟାଲୀୟମାନଙ୍କୁ ଏହି ମନ୍ତ୍ରରେ ଦୀକ୍ଷିତ କରିଥିଲେ । ସେ କହିଥିଲେ, "ଇଟାଲୀ ଏକାକୀ ଏ ମହତ୍ କାର୍ଯ୍ୟ ସମ୍ପନ୍ନ କରିବ ।" (When asked how this great work (attainment of independence) could be accomplished, Charles Albert, King of Piedmont said, "Italia fara da sa." Italy will do it alone.) ୧୮୧୫ ମସିହା ଭିଏନା କଂଗ୍ରେସ ପରଠାରୁ ୧୮୪୮-୪୯ ମସିହାର ବିପ୍ଳବର ବିଫଳତା-ଯାଏଁ ଇଟାଲୀର ଦେଶପ୍ରେମୀମାନେ ଇଟାଲୀକୁ ଅଷ୍ଟ୍ରିଆର କବଳରୁ ମୁକ୍ତ କରିବାପାଇଁ ଏକାକୀ ଅଷ୍ଟ୍ରିଆ ବିରୁଦ୍ଧରେ ସଂଗ୍ରାମ ଚଳାଇଥିଲେ । ଇଟାଲୀର ସମସ୍ତ ଦେଶପ୍ରେମୀ ଇଟାଲୀର ସ୍ୱାଧୀନତା ଚାହୁଁଥିଲେ ମଧ୍ୟ ସ୍ୱାଧୀନତା ଲାଭ ପରେ ସେଠାରେ କି ପ୍ରକାର ଶାସନ ପ୍ରବର୍ତ୍ତିତ କରାଯିବ ସେ ବିଷୟ ନେଇ ସେମାନଙ୍କ ମଧ୍ୟରେ ମତଭେଦ ଦେଖାଦେଇଥିଲା । ଇଟାଲୀର ଶାସନବ୍ୟବସ୍ଥା ସମ୍ପର୍କରେ ତିନୋଟି ସହଯୋଗୀ ପରିକଳ୍ପନା ଉପସ୍ଥାପିତ କରାଯାଇଥିଲା । ମ୍ୟାଜିନି ଓ ତାଙ୍କର ସମର୍ଥକମାନେ ଇଟାଲୀକୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ କରିବାପାଇଁ ପରିକଳ୍ପନା କରିଥିଲେ । ଧର୍ମପରାୟଣ ଗିବର୍ଟି (Giberti) ଅନ୍ୟ ଏକ ପରିକଳ୍ପନାର ପ୍ରସ୍ତାବ ଦେଇ କହିଥିଲେ ଯେ, ପୋପଙ୍କ ଅଧ୍ୟକ୍ଷତାରେ ଇଟାଲୀକୁ ଏକ ଯୁକ୍ତରାଷ୍ଟ୍ରରେ ପରିଣତ କଲେ ଇଟାଲୀର ସମସ୍ୟା ସମାଧାନ ହୋଇପାରିବ । ସାର୍ଡିନିଆର ରାଜସମର୍ଥକମାନେ ଇଟାଲୀକୁ ଏକ ସାଂବିଧାନିକ ରାଜତନ୍ତ୍ର ରାଷ୍ଟ୍ର ହିସାବରେ ପ୍ରତିଷ୍ଠା କରିବାପାଇଁ ମଧ୍ୟ ପରିକଳ୍ପନା କରିଥିଲେ । ଯେ ଯାହାହେଉ, ୧୮୪୮-୪୯ ମସିହାର ବିପ୍ଳବ ପ୍ରମାଣ କରିଦେଇଥିଲା ଯେ, ଇଟାଲୀୟମାନେ ନିଜ ଶକ୍ତି ଉପରେ କେବଳ ନିର୍ଭର କରି କୌଣସି ଗୋଟିଏ ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିପାରିଲେ ନାହିଁ କି ଅଷ୍ଟ୍ରିଆକୁ ଇଟାଲୀରୁ ବିତାଡ଼ିତ କରିପାରିଲେ ନାହିଁ । ଇଟାଲୀ ପୁନର୍ବାର ଅଷ୍ଟ୍ରିଆର ସ୍ୱେଚ୍ଛାଚାରୀ ଶାସନାଧୀନକୁ ଆସିଲା; କିନ୍ତୁ ଏହି ବିପ୍ଳବ ଫଳରେ ଇଟାଲୀବାସୀ ଉପଲବ୍ଧି କରିପାରିଥିଲେ ଯେ, ବୈଦେଶିକ ସାହାଯ୍ୟ ବିନା ଇଟାଲୀକୁ ଅଷ୍ଟ୍ରିଆ କବଳରୁ ମୁକ୍ତକରିବା ସମ୍ଭବପର ନୁହେଁ । ଏହି ସତ୍ୟଟି ସର୍ବପ୍ରଥମେ ଉପଲବ୍ଧି କଲେ ପିଡ୍‌ମଣ୍ଟ-ସାର୍ଡିନିଆର ରାଜା ଭିକ୍ଟର ଇମାନୁଏଲଙ୍କର ପ୍ରଧାନମନ୍ତ୍ରୀ କାଉଣ୍ଟ କାଭୁର ।

## କାଭୁରଙ୍କ ଚରିତ୍ର ଏବଂ ଜୀବନୀ

## ( Character and Career of Cavour )

ଦୂରଦର୍ଶୀ କାଉଣ୍ଟ କାଭୁର ୧୮୧୦ ମସିହାରେ ପିଡମଣ୍ଟର ଏକ ଅଭିଜାତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ସାମରିକ ଶିକ୍ଷାଲାଭ କଲା ଉତ୍ତାରୁ ଇଞ୍ଜିନିୟରରୂପେ ପିଡମଣ୍ଟର ସୈନ୍ୟବାହିନୀରେ ଯୋଗଦେଇଥିଲେ । ଉଦାରନୈତିକ ମତବାଦ ପ୍ରତି ସେ ବିଶେଷ ଆଗ୍ରହ ପ୍ରକାଶ କରୁଥିବାରୁ ଅଳ୍ପକାଳ ମଧ୍ୟରେ ତାଙ୍କର ଉପରିସ୍ଥ ପଦାଧିକାରୀମାନଙ୍କର ବିରାଗଭାଜନ ହୋଇଥିଲେ । ତେଣୁ ତାଙ୍କୁ କେତେଦିନଯାଏ କାରାନଜରରେ ରଖାଯାଇଥିଲା । ସେ ସେଥିରେ ଅସନ୍ତୁଷ୍ଟ ହୋଇ ୧୮୩୧ ମସିହାରେ ସାମରିକ ଚାକିରିରୁ ଇସ୍ତଫା ଦେଇଥିଲେ ଏବଂ ପରବର୍ତ୍ତୀ ୧୫ବର୍ଷ କାଳ ନିଜ ଇଲାକାର ଉନ୍ନତିପାଇଁ କୃଷିକାର୍ଯ୍ୟରେ ମନୋନିବେଶ କରିଥିଲେ । ସେ କୃଷିର ବିକାଶପାଇଁ ବୈଜ୍ଞାନିକ ପ୍ରଣାଳୀ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ଅନ୍ୟ କୃଷକମାନଙ୍କୁ ସେହି ପ୍ରଣାଳୀ ପ୍ରବର୍ତ୍ତନ କରିବାପାଇଁ ପ୍ରବର୍ତ୍ତାଇଥିଲେ । ସେ କେନାଲ ସାହାଯ୍ୟରେ କୃଷିକ୍ଷେତ୍ରରେ ଜଳସେଚନର ବ୍ୟବସ୍ଥା କରିଥିଲେ ଏବଂ ସେଠାରେ କୃତ୍ରିମ ସାର ପ୍ରୟୋଗ ମଧ୍ୟ କରିଥିଲେ । କାଭୁର କୃଷିର ବିକାଶପାଇଁ ଏହିପରି ଆଧୁନିକ ପ୍ରଣାଳୀମାନ ପ୍ରବର୍ତ୍ତନ କରି ପିଡମଣ୍ଟ କୃଷକମାନଙ୍କର ପଥପ୍ରଦର୍ଶକ ହେବା ସଙ୍ଗେ ସଙ୍ଗେ କୃଷିକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ମଧ୍ୟ ଅଗ୍ରଣୀ ହୋଇଥିଲେ । ଏହି ୧୫ବର୍ଷ ମଧ୍ୟରେ ସେ ତାଙ୍କର ଜୀବନଯାପନ ପ୍ରଣାଳୀର ନୀରସତାକୁ ଦୂରକରିବା ଉଦ୍ଦେଶ୍ୟରେ ଘନ ଘନ ଇଂଲଣ୍ଡ ଓ ଫ୍ରାନ୍ସକୁ ଯିବାକୁ ଲାଗିଲେ ଏବଂ ସେଠାକାର ବିଶେଷତଃ ଇଂଲଣ୍ଡର ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରିବାକୁ ଚେଷ୍ଟା କଲେ । ସେ ରାଜନୀତିରେ ସକ୍ରିୟ ଭାଗନେବାକୁ ଆଗ୍ରହୀ ଥିଲେ ମଧ୍ୟ ପିଡମଣ୍ଟରେ ସେ ପର୍ଯ୍ୟନ୍ତ କୌଣସି ପ୍ରତିନିଧିମୂଳକ ସଂସ୍ଥା ନ ଥିବାରୁ ସେ ତାଙ୍କର ଆଶା ପୂରଣ କରିବାପାଇଁ ସେଠାରେ ସୁଯୋଗ ପାଇନଥିଲେ । ଇତ୍ୟବସରରେ ଯେଉଁସବୁ ସଂସ୍ଥା ପିଡମଣ୍ଟରେ ସେ ପ୍ରବର୍ତ୍ତନ କରିବାକୁ ଚାହୁଁଥିଲେ ସେ-ସବୁ ସଂସ୍ଥା ବିଦେଶୀ ରାଷ୍ଟ୍ରମାନଙ୍କରେ କିପରି କାର୍ଯ୍ୟ କରୁଛି ତାହା ତନ୍ନ ତନ୍ନ କରି ପରୀକ୍ଷା କରିଥିଲେ, ବିଶେଷତଃ ଇଂଲଣ୍ଡର ସଂସଦୀୟ ବ୍ୟବସ୍ଥା ତାଙ୍କୁ ସବୁଠାରୁ ଅଧିକ ଆକର୍ଷଣ କରିଥିଲା । ଇଂଲଣ୍ଡରେ ସେ ରାତି ପରେ ରାତି ପାର୍ଲିମେଣ୍ଟର ନିମ୍ନ ପ୍ରକୋଷ୍ଠ ( The House of Commons )ର ଦର୍ଶକ ମଞ୍ଚରେ ବସି ସେଠାକାର କାର୍ଯ୍ୟପ୍ରଣାଳୀ ସମ୍ପର୍କରେ ପରିଷ୍କାର ଧାରଣା ପାଇ ପାରିଥିଲେ । ପ୍ରକୃତରେ ଇଂରେଜ ଶାସନପଦ୍ଧତି ସମ୍ବନ୍ଧରେ ତାଙ୍କର ଉଚ୍ଚଧାରଣା ଜନ୍ମିଥିଲା ଏବଂ ସେ ମନେ ମନେ ଏହିରୂପ ଶାସନ-ବ୍ୟବସ୍ଥା ନିଜ ଦେଶରେ ପ୍ରବର୍ତ୍ତନ କରିବାର କଳ୍ପନା ମଧ୍ୟ କରିଥିଲେ । କାଭୁରଙ୍କର ମତବାଦ ଏବଂ ନୀତି ମ୍ୟାଜିନିଙ୍କର ମତବାଦ ଓ ନୀତିଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ସେ ଥିଲେ ଅତ୍ୟନ୍ତ ବାସ୍ତବବାଦୀ ଓ ସ୍ୱାଧୀନଚେତା । ସେ ମ୍ୟାଜିନିଙ୍କ ଅବାସ୍ତବ ଆଦର୍ଶବାଦରେ ବିଶ୍ୱାସ

କରୁନଥିଲେ । ସେ ସାମାଜିକ ଓ ଅର୍ଥନୈତିକ ପ୍ରଶ୍ନଗୁଡ଼ିକ ବିଷୟରେ ଲେଖୁଥିଲେ । ସେ ଅନୁଭବ କରିଥିଲେ ଯେ, ରାଜନୈତିକ ଐକ୍ୟ ପ୍ରତିଷ୍ଠାକରିବା ପୂର୍ବରୁ ନୈତିକ ଐକ୍ୟ ପ୍ରତିଷ୍ଠା ଏକାନ୍ତ ପ୍ରୟୋଜନ । ସେ ଇଟାଲୀରେ ରେଲପଥମାନ ନିର୍ମାଣ କରିବାପାଇଁ ପ୍ରସ୍ତାବ ଦେଇଥିଲେ; କାରଣ ଏହିସବୁ ରେଲପଥ ଇଟାଲୀୟମାନଙ୍କୁ ନୈତିକ ଐକ୍ୟ ଦିଗରେ ଅଗ୍ରସର କରାଇବ । ତା'ଛଡ଼ା ସେ ସବୁ ସ୍ଥାନୀୟ ପଚଣ୍ଡୀକାଭଟରତା ଦୂରକରିବା ସଙ୍ଗେ ସଙ୍ଗେ ଇଟାଲୀର ବିଭିନ୍ନଗୋଷ୍ଠୀଙ୍କୁ ବାଣିଜ୍ୟକ୍ଷେତ୍ରରେ ଐକ୍ୟବଦ୍ଧ କରିପାରିବ । ତାଙ୍କ ମତରେ ରୋମ୍ ଏହି ରେଲପଥ ବ୍ୟବସ୍ଥାର କେନ୍ଦ୍ର ହେବ ଏବଂ ସମଗ୍ର ଉପଦ୍ୱୀପକୁ ଏକୀକରଣ କରିବାରେ ସାହାଯ୍ୟ କରିବ । ପିଡ଼ମଣ୍ଟ ଏବଂ ଇଟାଲୀର ଭୌତିକ ସମୃଦ୍ଧି ପାଇଁ ସେ ଯେଉଁସବୁ ପରିକଳ୍ପନା କରିଥିଲେ ତାହା ତାଙ୍କର ସ୍ୱଦେଶପ୍ରେମର ନିଦର୍ଶନ ଥିଲା; କାରଣ ସେ ବିଶ୍ୱାସ କରୁଥିଲେ ଯେ, ତାଙ୍କର ପରିକଳ୍ପନାଗୁଡ଼ିକ ଇଟାଲୀର ସ୍ୱାଧୀନତା ଅର୍ଜନ ଏବଂ ଐକ୍ୟସାଧନ ଦିଗରେ ବିଶେଷ ସାହାଯ୍ୟ କରିବ । ଯେତେବେଳେ ୧୮୪୭ ମସିହାରେ ସମ୍ବାଦପତ୍ର ଉପରୁ କଟକଣା ପିଡ଼ମଣ୍ଟରେ ଉଠାଇ ନିଆଗଲା, ସେତେବେଳେ କାଭୁରଙ୍କୁ ତାଙ୍କ ଇଚ୍ଛା ପୂରଣ କରିବାପାଇଁ ସୁଯୋଗ ମିଳିଲା । ସେ ଅବସର ଜୀବନ ପରିତ୍ୟାଗ କରି ରିସର୍ଜିମେଣ୍ଟୋ (Risorgimento) ନାମକ ଉଦାର ମତପୋଷଣ କରୁଥିବା ଏକ ସମ୍ବାଦପତ୍ର ପ୍ରତିଷ୍ଠା କରିଥିଲେ । ଏହାର ଲକ୍ଷ୍ୟଗୁଡ଼ିକ ହେଲା—ସ୍ୱାଧୀନତା, ରାଜା-ପ୍ରଜାମାନଙ୍କ ମଧ୍ୟରେ ଏକତା ଓ ସଂସ୍କାର ପ୍ରବର୍ତ୍ତନ । ୧୮୪୮ ମସିହାରେ ପିଡ଼ମଣ୍ଟ ପାଇଁ ଏକ ପାର୍ଲାମେଣ୍ଟ ଏବଂ ସଂବିଧାନ ସୃଷ୍ଟି ହେଲା ମାନେ କାଭୁର ସେସବୁକୁ ଅତି ଆଗ୍ରହର ସହିତ ସ୍ୱାଗତ ଜଣାଇଥିଲେ । ଅବଶ୍ୟ ପୂର୍ବରୁ କାଭୁର ଅତି ନିର୍ଭୀକ ଭାବରେ ଏହି ଦୁଇଟି ଦାବି ଉଠାଇଥିଲେ । ସେ କହିଲେ, "ଇଟାଲୀ (ବ୍ୟକ୍ତି) ସ୍ୱାଧୀନତା ଆନ୍ଦୋଳନ ସାହାଯ୍ୟରେ ନିଜକୁ ଗଢ଼ି ପାରିବ ନଚେତ୍ ତାକୁ ଗଢ଼ିବାପାଇଁ ଆମ୍ଭେମାନେ କୌଣସି ଚେଷ୍ଟା କରିବା ନାହିଁ ।" (He said, "Italy must make herself by means of freedom or we must give up trying to make her.") ସଂସଦୀୟ ସଂସ୍ଥାଗୁଡ଼ିକ ସାଧାରଣ ଜୀବନ ସହିତ କେତେକ ସମୟରେ ତାଙ୍କର ନୀତିଗୁଡ଼ିକ କାର୍ଯ୍ୟକାରୀ କରିବା ଦିଗରେ ବାଧା ସୃଷ୍ଟି କରୁଥିବାର ମନେକରାଯାଉଥିଲା, ତଥାପି କାଭୁର ସାଧାରଣ-ଜୀବନ ସେଗୁଡ଼ିକ ଉପରେ ତାଙ୍କର ଏହି ବିଶ୍ୱାସରେ ଅଟଳ ରହିଥିଲେ । ସେ ମଧ୍ୟ ବିଶ୍ୱାସ କରିଥିଲେ ଯେ, ଶେଷରେ ଲୋକମାନେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ଏହି ଘଟଣାର ସତ୍ୟତା ଉପଲବ୍ଧି କରିପାରିବେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, କାଭୁର ସାମ୍ବାଦିକତା ମାଧ୍ୟମରେ ରାଜନୀତିରେ ପ୍ରବେଶ କରିଥିଲେ । ସେ ପିଡ଼ମଣ୍ଟର ପ୍ରଥମ ପାର୍ଲାମେଣ୍ଟକୁ ସଭ୍ୟରୂପେ ନିର୍ବାଚିତ ହୋଇଥିଲେ ଏବଂ ୧୮୫୦ ମସିହାରେ ମନ୍ତ୍ରିମଣ୍ଡଳ (Cabinet)ରେ ସ୍ଥାନ ପାଇଥିଲେ । ସେ ୧୮୫୨ ମସିହାରେ ପ୍ରଧାନମନ୍ତ୍ରୀ ହୋଇଥିଲେ ଏବଂ ଅଳ୍ପ କେତେମାସ ବାଦଦେଲେ ତାଙ୍କ ଜୀବନର ଅବଶିଷ୍ଟାଂଶ ସେ ଏହି ପଦରେ

ରହିଥିଲେ । ସେ ଏହି ସମୟ ମଧ୍ୟରେ ନିଜକୁ ଜଣେ ମହାନ୍ ଦୂରଦର୍ଶୀ ରାଜନୀତିଜ୍ଞ ଏବଂ ଅଦ୍ୱିତୀୟ କୂଟନୀତିଜ୍ଞ ବୋଲି ପ୍ରମାଣ କରିପାରିଥିଲେ ।



( କାଉଣ୍ଟ କାଭୁର )

କାଭୁର କଷ୍ଟୋଜା ଓ ନୋଭାରାର ପରାଜୟଦ୍ୱାରା ହତୋତ୍ସାହ ନ ହୋଇ ନିଜକୁ ଜଣେ ଆଶାବାଦୀ ବୋଲି ପରିଚୟ ଦେଇ ନିର୍ଭୀକ ଭାବରେ ୧୮୫୦ ମସିହାରେ କହିଥିଲେ ଯେ "ପିଡ୍‌ମଣ୍ଟ ଯଦି ଇଟାଲୀର ସମସ୍ତ ଜୀବନ୍ତ ଶକ୍ତିଗୁଡ଼ିକୁ ସଂଗ୍ରହ କରିପାରିବ, ତାହାହେଲେ ସେ ଆମର ମାତୃଭୂମିକୁ ତାହାର ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇବା ପାଇଁ ସମର୍ଥ ହେବ ।" ସେହି ଲକ୍ଷ୍ୟ ହାସଲ କରିବାକୁ ହେଲେ ପ୍ରଥମେ ପିଡ୍‌ମଣ୍ଟ ନିଜକୁ ଉନ୍ନତ କରିବାକୁ ଉଦ୍ୟମ କରିବା

ସଙ୍ଗେ ସଙ୍ଗେ ଇଉରୋପ ଏବଂ ଇଟାଲୀରେ ତାହାର ସ୍ଥିତି ଓ ଗୌରବକୁ ଉଚ୍ଚାଭିଳାଷର ସମତୁଲ କରି ପୁନଃ ପ୍ରତିଷ୍ଠିତ କରିବାକୁ ପଡ଼ିବ । କାଭୁରଙ୍କ କାର୍ଯ୍ୟାବଳୀକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ଭାଗରେ ସେ ପିଡ୍‌ମଣ୍ଟ୍‌କୁ ଉଭୟ ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ଏକ ଶକ୍ତିଶାଳୀ ରାଷ୍ଟ୍ର ରୂପେ ଗଢ଼ିବାପାଇଁ ଉଦ୍ୟମୀ ହୋଇଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ସାଭୟ ରାଜବଂଶର ନେତୃତ୍ୱରେ ଇଟାଲୀର ସ୍ୱାଧୀନତା ଅର୍ଜନ ଏବଂ ଐକ୍ୟ ସାଧନ ସମ୍ଭବ ହୋଇପାରିବ । ତେଣୁ ପିଡ୍‌ମଣ୍ଟକୁ ଏକ ଆଦର୍ଶ ରାଷ୍ଟ୍ରରେ ପରିଣତ କରିବାପାଇଁ ଯଥାସାଧ୍ୟ ଚେଷ୍ଟା କରିଥିଲେ । ତାଙ୍କର ଦୃଢ଼ ଧାରଣା ଜନ୍ମିଥିଲା ଯେ ପିଡ୍‌ମଣ୍ଟ ଯଦି ଏକ ଶକ୍ତିସମ୍ପନ୍ନ ଏବଂ ଉଦାରଭାବାପନ୍ନ ରାଷ୍ଟ୍ର ହିସାବରେ ପ୍ରତିଷ୍ଠିତ ହୋଇପାରିବ, ତାହାହେଲେ ସେ ଇଟାଲୀର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କୁ ତାହାର ନେତୃତ୍ୱ ସ୍ୱୀକାର କରିବାପାଇଁ ପ୍ରବର୍ତ୍ତାଇ ପାରିବ । ତାଙ୍କ ମତରେ ପୁନର୍ଗଠିତ ଏବଂ ପୁନରୁଜ୍ଜୀବିତ ପିଡ୍‌ମଣ୍ଟ ନିଶ୍ଚିତ ଭାବରେ ଇଟାଲୀର ବିଭିନ୍ନ ସ୍ଥାନରେ ଥିବା ସ୍ୱଦେଶ ଭକ୍ତମାନଙ୍କର ଦୃଷ୍ଟି ଆକର୍ଷଣ କରିବ; କାରଣ ସେତେବେଳେ ଅଷ୍ଟ୍ରିୟାର ଦୃଢ଼ ସମର୍ଥନ ଲାଭ କରି କ୍ଷୁଦ୍ର କ୍ଷୁଦ୍ର ରାଜାମାନେ ଇଟାଲୀର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କରେ ଅତ୍ୟାଚାର ଚଳାଇଥିଲେ । ତେଣୁ କାଭୁର ପିଡ୍‌ମଣ୍ଟର ଅର୍ଥନୈତିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ଏହାର ସଂସଦୀୟ ଶାସନତନ୍ତ୍ରର ବିକାଶ ମଧ୍ୟ ଘଟାଇଥିଲେ । ପିଡ୍‌ମଣ୍ଟ-ସାର୍ଡିନିଆର ଅର୍ଥମନ୍ତ୍ରୀ ହିସାବରେ ସେ ସେଠାରେ ଶିଳ୍ପବିପ୍ଳବକୁ ତ୍ୱରାନ୍ୱିତ କରିଥିଲେ, ରେଳପଥ ନିର୍ମାଣ କରିଥିଲେ ଏବଂ ଅବାଧ ବାଣିଜ୍ୟ ଭିତ୍ତିରେ କେତେଗୁଡ଼ିଏ ବାଣିଜ୍ୟିକ ଚୁକ୍ତି ସ୍ୱାକ୍ଷର କରିଥିଲେ । ସେ କୃଷିର ବିକାଶ ପାଇଁ ପଦକ୍ଷେପ ନେଇଥିଲେ । ତା'ଛଡ଼ା ସେ କେତେକ ରାସ୍ତା ଏବଂ କେନାଲ ନିର୍ମାଣ କରିଥିଲେ । ଯଦିଓ ପିଡ୍‌ମଣ୍ଟ ଅତ୍ୟଧିକ ଋଣଗ୍ରସ୍ତ ହୋଇଥିବାର ସେ ଅନୁଭବ କରିଥିଲେ, ତଥାପି ସେ ବିପୁଳ ଅର୍ଥବ୍ୟୟର ବ୍ୟବସ୍ଥା କରିଥିଲେ; କାରଣ ସେ ଜାଣିଥିଲେ, ଉତ୍ପାଦନ ବୃଦ୍ଧି ହେଲେ ଋଣ ପରିଶୋଧ କରିବା ସହଜ ହେବ । ତା'ଛଡ଼ା ସେ ପିଡ୍‌ମଣ୍ଟର ସୈନ୍ୟବାହିନୀକୁ ପୁନଃ ସଙ୍ଗଠିତ କରି ଶକ୍ତିଶାଳୀ କରିବାକୁ ଚାହିଁଥିଲେ । ସେଥିପାଇଁ ମଧ୍ୟ ତାଙ୍କୁ ବହୁ ଅର୍ଥ ବରାଦ କରିବାକୁ ପଡ଼ିବ । ଏହିସବୁ କାରଣରୁ ସେ ଲୋକମାନଙ୍କ ଉପରେ କରଭାର ବୃଦ୍ଧି କରିବାକୁ ଦ୍ୱିଧା କରି ନଥିଲେ । ପିଡ୍‌ମଣ୍ଟ ସରକାର ବିଭିନ୍ନ ସୂତ୍ରରୁ ଯେଉଁସବୁ ଆୟ କଲେ ତାହା ଆଭ୍ୟନ୍ତରୀଣ ସଂସ୍କାର, ବିକାଶମୂଳକ କାର୍ଯ୍ୟ ଏବଂ ସୈନ୍ୟବାହିନୀ ପୁନର୍ଗଠନ, ନୌବାହିନୀ ଗଠନ ଓ କଲ୍ଲାବନ୍ଦୀ ନିର୍ମାଣରେ ବ୍ୟୟ କରାଯାଇଥିଲା । ସେ ବିଶ୍ୱାସ କରୁଥିଲେ ଯେ ଉନ୍ନୟନ କାର୍ଯ୍ୟରେ ଅର୍ଥ ଅବାଧରେ ବ୍ୟୟ କରିବା ଉଚିତ; କାରଣ ସେସବୁର ଆବଶ୍ୟକତା ରହିଛି ଏବଂ ଶେଷରେ ସେଥିରୁ ଅଧିକ ରାଜସ୍ୱ ଆଦାୟ ହୋଇପାରିବ । କାଭୁର ପିଡ୍‌ମଣ୍ଟକୁ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ନବେ ହଜାର ସାମରିକଙ୍କୁ ନେଇ ଏକ ବିଶାଳ ସୈନ୍ୟବାହିନୀ ଗଢ଼ିଥିଲେ ଏବଂ ତାକୁ ଆବଶ୍ୟକତା ଯୁକ୍ତ ସରଞ୍ଜାମରେ ସୁସଜ୍ଜିତ କରିଥିଲେ । ପିଡ୍‌ମଣ୍ଟର ଲୋକସଂଖ୍ୟା ପାଞ୍ଚ ନିୟୁତ ହୋଇଥିବା ସତ୍ତ୍ୱେ ସେ ଏପରି ଏକ ବିରାଟ ସୈନ୍ୟବାହିନୀ ଗଢ଼ି ଏକ ଅସାଧାରଣ-

କାର୍ଯ୍ୟ ସମ୍ପନ୍ନ କରିଥିଲେ । ପ୍ରକୃତରେ କାଭୁର ସୈନ୍ୟବାହିନୀର ପୁନର୍ଗଠନ ଭାର ଜେନେରାଲ ଲା ମାରମୋରାଙ୍କ ଉପରେ ନ୍ୟସ୍ତ କରିଥିଲେ ଏବଂ ଜେନେରାଲ୍ ଲା ମାରମୋରା ସୈନ୍ୟବାହିନୀକୁ ଯେଉଁ ଭୂମିକା ଗ୍ରହଣ କରିବାକୁ ପଡ଼ିବ, ସେହି ଭୂମିକା ପାଇଁ ପ୍ରସ୍ତୁତ କରିବାକୁ ଲାଗିଲେ । କାଭୁର ଗୀର୍ଜାର ଅତ୍ୟଧିକ କ୍ଷମତାକୁ କମାଇ ଦେଇଥିଲେ ଏବଂ ଅନେକଗୁଡ଼ିଏ ମଠକୁ ବନ୍ଦ କରିଦେଇଥିଲେ । ତାଙ୍କର ଲକ୍ଷ୍ୟ ଥିଲା ରାଜନୀତିରୁ ଧର୍ମକୁ ବିଚ୍ଛିନ୍ନ କରିଦେବା; କାରଣ ଧର୍ମଯାଜକ ସମ୍ପ୍ରଦାୟର ଲୋକେ ପିଡ଼ମଣ୍ଟ-ସାର୍ଡିନିଆର ନେତୃତ୍ୱରେ ଇଟାଲୀର ଐକ୍ୟସାଧନକୁ ଦୃଢ଼ ଭାବରେ ବିରୋଧ କରୁଥିଲେ । କାଭୁରଙ୍କ ନୀତି ଥିଲା, 'ସ୍ୱାଧୀନ ରାଷ୍ଟ୍ରରେ ସ୍ୱାଧୀନ ଧର୍ମ ମନ୍ଦିର' ('A free church in a free state') କାଭୁର ପିଡ଼ମଣ୍ଟ-ସାର୍ଡିନିଆକୁ ଏକ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ କରିବାପାଇଁ ଯେଉଁସବୁ ପଦକ୍ଷେପ ନେଇଥିଲେ; ତାହା ପାର୍ଲାମେଣ୍ଟଦ୍ୱାରା ମଞ୍ଜୁର କରାଯାଇଥିଲା । ସେ ପିଡ଼ମଣ୍ଟ-ସାର୍ଡିନିଆରେ ଗଣତାନ୍ତ୍ରିକ ଶାସନ ପଦ୍ଧତି ସ୍ଥାପନ କରି ଇଟାଲୀବାସୀଙ୍କୁ ସ୍ୱାୟତ୍ତ ଶାସନ ସମ୍ପର୍କରେ ବାସ୍ତବ ଜ୍ଞାନ ଦେଇଥିଲେ ଏବଂ ପିଡ଼ମଣ୍ଟ-ସାର୍ଡିନିଆକୁ ଇଟାଲୀର ଜାତୀୟତା ଆନ୍ଦୋଳନରେ ପ୍ରକୃତ ନେତୃତ୍ୱ ଦେବାପାଇଁ ସମର୍ଥ କରାଇପାରିଥିଲେ । କାଭୁର ପିଡ଼ମଣ୍ଟ-ସାର୍ଡିନିଆକୁ ନୈତିକ ନେତୃତ୍ୱ ଦେଇ ତାକୁ ଉଦାର ମତବାଦର ଏକ ପ୍ରତୀକ କରି ତୋଳିପାରିଥିଲେ । ସେ ବୁଝିଥିଲେ ଯେ ପିଡ଼ମଣ୍ଟ-ସାର୍ଡିନିଆ କେବଳ ଇଟାଲୀୟମାନଙ୍କ ପାଇଁ ଏକ ଦୃଷ୍ଟାନ୍ତ ହେବ, ସେ ମଧ୍ୟ ବୁଝିଥିଲେ ଯେ ଇଉରୋପକୁ ପ୍ରଭାବିତ କରିବାପାଇଁ ପିଡ଼ମଣ୍ଟ-ସାର୍ଡିନିଆକୁ ସମ୍ବଳ ରୂପେ ବ୍ୟବହାର କରାଯାଇପାରିବ । ତେଣୁ ପିଡ଼ମଣ୍ଟ-ସାର୍ଡିନିଆରେ ଯେକୌଣସି ସଂସ୍କାର ବ୍ୟବସ୍ଥା କରାଯାଉଥିଲା ତାହା ସାରା-ବିଶ୍ୱରେ ପ୍ରଚାର କରାଯାଉଥିଲା । କାଭୁର ଜଣେ ଅଭିଜ୍ଞ ସାମ୍ବାଦିକ ହୋଇଥିବାରୁ ପ୍ରଚାର ବିଷୟରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ଏକଥା ସତ୍ୟ ଯେ ପିଡ଼ମଣ୍ଟ ସାର୍ଡିନିଆର ଉଦାରବାଦ ଦୁଇ ସିସିଲି ରାଜ୍ୟ ଓ ପୋପଙ୍କ ରାଜ୍ୟର ଜଣାଶୁଣା କୁଶାସନକୁ ବିଶ୍ୱରେ ଅଧିକ ପ୍ରକଟ କରିଦେଇଥିଲା । କ୍ୟାଥଲିକ୍ ଗୀର୍ଜାକୁ ଓ ଯାଜକ ସମ୍ପ୍ରଦାୟକୁ କେତେକ ବିଶେଷ ଅଧିକାରରୁ ବଞ୍ଚିତ କରିବା ଏବଂ ସନ୍ନ୍ୟାସୀ ସମ୍ପ୍ରଦାୟର ସମ୍ପତ୍ତି ବାଜ୍ୟାପ୍ତ କରିବା ଫଳରେ କାଭୁରଙ୍କୁ ରୋମ୍ ସହିତ ସଂଗ୍ରାମରେ ବ୍ୟାପୃତ ହେବାକୁ ପଡ଼ିଥିଲେ ମଧ୍ୟ ପଶ୍ଚିମ ଇଉରୋପର ସହାନୁଭୂତି ତାଙ୍କ ସପକ୍ଷରେ ଥିଲା । ଅଷ୍ଟ୍ରିଆ ପକ୍ଷରୁ ତାଙ୍କୁ ବିଶେଷ ଉତ୍ତେଜିତ କରାଯାଇଥିଲେ ମଧ୍ୟ ଅଷ୍ଟ୍ରିଆ ସହିତ କଳହ ସୃଷ୍ଟି ନ କରିବାପାଇଁ ସାବଧାନତାର ସହିତ କାର୍ଯ୍ୟ କରିଥିଲେ ।

କାଭୁର ଯେଉଁ ଅଭ୍ୟନ୍ତରୀଣ ସଂସ୍କାରମାନ ଆରମ୍ଭ କରିଥିଲେ, ତାହା ତାଙ୍କ ଦ୍ୱିତୀୟ ଭାଗ କାର୍ଯ୍ୟକ୍ରମର; ଅର୍ଥାତ୍ ସ୍ୟାଭୟ ରାଜବଂଶ ନେତୃତ୍ୱାଧୀନରେ ଇଟାଲୀର ସ୍ୱାଧୀନତା ଅର୍ଜନ ଏବଂ ଐକ୍ୟ ସାଧନର ପୂର୍ବାଭାସ ମାତ୍ର । ତାଙ୍କର ହୃଦବୋଧ ହୋଇଥିଲା ଯେ କେବଳ ବହିଃଶକ୍ତିର ସାହାଯ୍ୟରେ ଇଟାଲୀର ସ୍ୱାଧୀନତା ଏବଂ ଏକତା ଅର୍ଜନ କରାଯାଇପାରିବ ।

ସେ ମଧ୍ୟ ବୁଝିପାରିଥିଲେ ଯେ, କେବଳ ବିଦ୍ରୋହ ଦ୍ୱାରା ଏ ଦିଗରେ କୌଣସି ଫଳ ଲାଭ କରିବା ସମ୍ଭବ ହେବ ନାହିଁ । ମ୍ୟାଜିନିଙ୍କ ପରି ଅଷ୍ଟ୍ରିୟାର ଶକ୍ତିକୁ ସେ ତୁଚ୍ଛଜ୍ଞାନ କରୁନଥିଲେ । ଅଷ୍ଟ୍ରିୟାର ଶକ୍ତି ସହିତ ସମକକ୍ଷ ହେବା ପାଇଁ ଏକ ଅତି ବିଶାଳ ଓ ସୁସଜ୍ଜିତ ସୈନ୍ୟବାହିନୀର ଆବଶ୍ୟକତା ରହିଛି ବୋଲି ସେ ଅନୁଭବ କରିଥିଲେ । ତାଙ୍କ ମତରେ ପିଡ୍‌ମଣ୍ଟ-ସାର୍ଡିନିଆର ସୈନ୍ୟବାହିନୀ ଅତି ଚମତ୍କାର ତାଲିମ ପାଇଥିଲେ ମଧ୍ୟ ତାହା ବାସ୍ତବିକ ଯଥେଷ୍ଟ ନୁହେଁ । ତେଣୁ ଫ୍ରାନ୍ସ କିମ୍ବା ଇଂଲଣ୍ଡର ସକ୍ରିୟ ସମର୍ଥନ ଲାଭକରିବା ପାଇଁ କାଭୁର ଉଦ୍ୟମ କରିଥିଲେ । ସେ ଉଭୟ ପ୍ୟାରିସ୍ ଓ ଲଣ୍ଡନକୁ ଏକାଧିକବାର ଯାଇଥିଲେ ଏବଂ ଉଭୟ ରାଜଧାନୀରେ ସୁପରିଚିତ ଥିଲେ; କିନ୍ତୁ ଇଂଲଣ୍ଡ ତାଙ୍କୁ ବିଶେଷ ଆକର୍ଷଣ କରିଥିଲା; କାରଣ ତାହାର ସମ୍ବିଧାନକୁ ସେ ଅତିରିକ୍ତଭାବେ ପ୍ରଶଂସା କରୁଥିଲେ । ସେ ମଧ୍ୟ ନେପୋଲିୟନଙ୍କୁ ଭେଟିଥିଲେ ଏବଂ ତାଙ୍କୁ ନିର୍ଭର ଜବାବ ଦେଇଥିଲେ ଯେ ସେ ମ୍ୟାଜିନିଙ୍କ ପରି ବିପ୍ଳବୀ ନୁହନ୍ତି । ଇଂଲଣ୍ଡର ଉଦାରବାଦ ପ୍ରତି ସ୍ୱାଭାବିକ ସହାନୁଭୂତି ଥିବାରୁ ସେ ତାହାର ସାହାଯ୍ୟ ସହାନୁଭୂତି ପାଇବାପାଇଁ ଆଶା ପୋଷଣ କରିଥିଲେ; କିନ୍ତୁ ସେ ବୁଝିପାରିଥିଲେ ଯେ ଯଦି ଇଂଲଣ୍ଡ ତାହାର ନିଃସଙ୍ଗତା ନୀତି ପରିତ୍ୟାଗ କରେ, ତାହା-ହେଲେ ଯାଇଁ ତାଙ୍କ ଆଶା ପୂରଣ ପାଇଁ ସୁଯୋଗ ମିଳିପାରିବ । ନେପୋଲିୟନ୍ ଜାତୀୟତା-ବାଦର ପୃଷ୍ଠପୋଷକ ଓ ପ୍ରଧାନ ସମର୍ଥକ ହୋଇଥିବାରୁ ଏବଂ ସେହି କାରଣରୁ କିଶୋର ବୟସରେ ଇଟାଲୀୟ ବିଦ୍ରୋହରେ ଭାଗ ନେଇଥିବାରୁ କାଭୁର ଫ୍ରାନ୍ସର ସାହାଯ୍ୟ ସହାନୁଭୂତି ଲାଭକରିବାକୁ ଆଶା ମଧ୍ୟ କରିଥିଲେ । ଉଭୟ ଇଂଲଣ୍ଡ ଏବଂ ଫ୍ରାନ୍ସ ଇଟାଲୀର ରାଷ୍ଟ୍ରମାନଙ୍କରେ ଅତ୍ୟାଚାର ଚାଲିଥିବାର ଜାଣିଥିଲେ ଏବଂ ଏହି ଦୁଇ ବୃହତ୍ ଶକ୍ତି ଇଟାଲୀୟ ଉପଦ୍ୱୀପରେ ଅଷ୍ଟ୍ରିୟାର କ୍ଷତିକାରକ ପ୍ରଭାବ ବିଷୟ ମଧ୍ୟ ଜାଣିଥିଲେ; କିନ୍ତୁ କାଭୁର ଅନୁଭବ କରିଥିଲେ ଯେ ଏହି ଦୁଇ ବୃହତ୍‌ଶକ୍ତି ମଧ୍ୟରୁ ଯେକୌଣସି ଗୋଟିକର ସାହାଯ୍ୟ ଓ ସହଯୋଗ ପାଇବା ଏକ ସାମାନ୍ୟ କଥା ନୁହେଁ; କାରଣ ଗୋଟିଏ ବୃହତ୍ ଶକ୍ତି ଇଟାଲୀୟମାନଙ୍କୁ ସହାନୁଭୂତି ଦେଖାଇବା ପାଇଁ ଅନ୍ୟ ଗୋଟିଏ ବୃହତ୍ ଶକ୍ତି ସହିତ ସମ୍ପର୍କ ଛିନ୍ନ କରିବାକୁ ଏବଂ ଇଟାଲୀୟମାନଙ୍କ ସପକ୍ଷରେ ଯୁଦ୍ଧ କରିବାକୁ ସହଜରେ ରାଜି ହେବନାହିଁ । କାଭୁର କିପରି ତାହାହେଲେ ଇଟାଲୀୟମାନଙ୍କର ମୁକ୍ତି ପାଇଁ ଫ୍ରାନ୍ସ ପରି ଏକ ବୃହତ୍ ଶକ୍ତିକୁ ପିଡ୍‌ମଣ୍ଟ-ସାର୍ଡିନିଆ ପରି ଗୋଟିଏ ଅତି କ୍ଷୁଦ୍ର ରାଜ୍ୟ ଆଡ଼କୁ ଆକର୍ଷଣ କରିବାକୁ ଆଶା କରିବେ, ଯେତେବେଳେ ସେ ଦେଖୁଛନ୍ତି ଯେ ଇଟାଲୀୟମାନେ ସେମାନଙ୍କର ମୁକ୍ତି ବିନିମୟରେ ଫ୍ରାନ୍ସ ନିକଟରେ କେବଳ କୃତଜ୍ଞତା ପ୍ରକାଶ କରିବେ ।

ଏହି ସମସ୍ୟାର ସମାଧାନ ହଠାତ୍ ହୋଇଗଲା । ଇଉରୋପରେ କ୍ରିମିଆ ଯୁଦ୍ଧ ଆରମ୍ଭ ହୋଇଗଲା ମାତ୍ରେ କାଭୁର ସ୍ଥିରକଲେ ଯେ ପିଡ୍‌ମଣ୍ଟ-ସାର୍ଡିନିଆ ସେଥିରେ ଯୋଗଦେବ । ସେ ଯୁକ୍ତି ବାଢ଼ିଥିଲେ ଯେ ଇଂଲଣ୍ଡ ଏବଂ ଫ୍ରାନ୍ସର ସପକ୍ଷରେ ଯୁଦ୍ଧକରି

ପିଡ୍‌ମଣ୍ଟ-ସାର୍ଡିନିଆ ଏହି ଦେଶ ଦୁଇଟି ସହିତ ତାହାର ସମ୍ପର୍କ ବନ୍ଧନକୁ ସୁଦୃଢ଼କରିବା ସଙ୍ଗେ ସଙ୍ଗେ ଏକ ଶକ୍ତି ହିସାବରେ ଇଉରୋପରେ ତାହାର ପଦମର୍ଯ୍ୟାଦା ବୃଦ୍ଧି କରିପାରିବ । ତା'ଛଡ଼ା କ୍ଷୁଦ୍ର ପିଡ୍‌ମଣ୍ଟ-ସାର୍ଡିନିଆ ଯଦି ବୃହତ୍ତ ଶକ୍ତିମାନଙ୍କ ସହିତ ମିଶି ଅଭିଯାନ ଚଳାଏ, ତାହାହେଲେ ତାହାର ଦାବି ଅଧିକ ଦୃଷ୍ଟି ଆକର୍ଷଣ କରିପାରିବ । ଅନେକେ ମନେକଲେ ଯେ ଜଣେ ଜୁଆଡ଼ୀ ଯେପରି ଲାଭ ଆଶାରେ ଜୁଆ ଖେଳ ବିପଦ ବରଣ କରେ, ସେହିପରି କାଭୁର ଲାଭ ଆଶାରେ କ୍ରିମିଆ ଯୁଦ୍ଧରେ ଯୋଗଦେବା ପାଇଁ ସ୍ଥିରକରି ବିପଦବରଣ କରିବାକୁ ଯାଉଅଛନ୍ତି । ସାଧାରଣତଃ ପ୍ରଶ୍ନ ଉଠିଲା, କାଭୁର କାହିଁକି ଇଟାଲୀୟମାନଙ୍କୁ ମରିବାପାଇଁ ଦୂରଜାଗାରେ ରହିଥିବା କ୍ରିମିଆକୁ ପଠାଉଛନ୍ତି ? ଏକଥା ମଧ୍ୟ ସୂଚିତ ଦିଆଯାଇଥିଲା ଯେ, ପିଡ୍‌ମଣ୍ଟ-ସାର୍ଡିନିଆ ତାହାର ସ୍ୱାର୍ଥଜଡ଼ିତ ନଥିବା ବ୍ୟାପାରରେ ଧନଜନ ଅପବ୍ୟୟ କରିବା ପରିବର୍ତ୍ତେ ସେହି ସବୁ ସମ୍ପଦକୁ ଅଷ୍ଟ୍ରିଆ ସହିତ ଆଗାମୀ ଯୁଦ୍ଧପାଇଁ ସଞ୍ଚୟ କରିରଖିବା ଉଚିତ । କେତେକଙ୍କ ମତରେ ପିଡ୍‌ମଣ୍ଟ-ସାର୍ଡିନିଆ ବୃହତ୍ ଶକ୍ତିମାନଙ୍କ କଳହରେ ଯୋଗଦେବା ଉଚିତ ନୁହେଁ କି ତା'ର ସୈନ୍ୟବାହିନୀକୁ କ୍ରିମିଆ ଯୁଦ୍ଧରେ ଭାଗନେବାପାଇଁ ପଠାଇ ନିଜ ସୀମାନ୍ତକୁ ଶତ୍ରୁ ଆକ୍ରମଣ ନିମନ୍ତେ ଖୋଲାରଖିବା ଉଚିତ ନୁହେଁ । ତେଣୁ କାଭୁରଙ୍କ ପରିକଳ୍ପନାର ପ୍ରବଳ ପ୍ରତିରୋଧ କରାଯାଇଥିଲା । କାଭୁର ଇଟାଲୀର ମୁକ୍ତିପାଇଁ ଇଂଲଣ୍ଡ ବିଶେଷତଃ ଫ୍ରାନ୍ସର ସାହାଯ୍ୟ ଓ ସମର୍ଥନ ଲାଭକରିବା ଉଦ୍ଦେଶ୍ୟରେ ପିଡ୍‌ମଣ୍ଟ-ସାର୍ଡିନିଆକୁ କ୍ରିମିଆ ଯୁଦ୍ଧରେ ଯୋଗଦେବାପାଇଁ ପ୍ରବର୍ତ୍ତାଇଥିଲେ ମଧ୍ୟ, ତାହା ସେ ପ୍ରକାଶ୍ୟରେ ଘୋଷଣାକରିବା ସ୍ପୃହା ନଥିଲେ । ତେଣୁ କାଭୁର ତାଙ୍କ ନୀତିକୁ ବିରୋଧ କରୁଥିବା ଲୋକମାନଙ୍କର ପ୍ରଶ୍ନ ଓ ପରାମର୍ଶକୁ ଏଡ଼ାଇଦେଇ ଖାଲି ଏତିକି କହିଥିଲେ ଯେ ସେ ଇଉରୋପକୁ ଦେଖାଇ ଦେବାପାଇଁ ଚାହାଁନ୍ତି ଯେ "ଇଟାଲୀର ସନ୍ତାନମାନେ ଜାଣନ୍ତି କିପରି ଯୁଦ୍ଧ କରିବାକୁ ହୁଏ ।" ପିଡ୍‌ମଣ୍ଟ-ସାର୍ଡିନିଆ କ୍ରିମିଆ ଯୁଦ୍ଧରେ ଯୋଗଦେବାପାଇଁ ଇଂଲଣ୍ଡ ଓ ଫ୍ରାନ୍ସ ସହିତ ଚୁକ୍ତିବଦ୍ଧ ହେବା ପୂର୍ବରୁ କାଭୁର ଜିଦ୍‌କରିଥିଲେ ଯେ ପିଡ୍‌ମଣ୍ଟ-ସାର୍ଡିନିଆର ସୈନ୍ୟବାହିନୀ ଭଡ଼ାଟିଆ ସୈନ୍ୟମାନଙ୍କ ପରି ମିତ୍ରଶକ୍ତି ସପକ୍ଷରେ ଯୁଦ୍ଧ ନକରି ସ୍ୱାଧୀନ ଭାବରେ ସଂଗଠିତ ହୋଇ ମିତ୍ରଶକ୍ତି ସହିତ ମିଳି ଯୁଦ୍ଧ କରିବ । ଇଂଲଣ୍ଡ ଓ ଫ୍ରାନ୍ସ ଏଥିରେ ରାଜିହେବାରୁ ପିଡ୍‌ମଣ୍ଟ-ସାର୍ଡିନିଆ ସେମାନଙ୍କ ସହିତ ଚୁକ୍ତିରେ ସ୍ୱାକ୍ଷର କରିଥିଲା ଏବଂ କ୍ରିମିଆ ଯୁଦ୍ଧରେ ଭାଗ ନେଇଥିଲା । ୧୭୦୦୦ ସାମରିକଙ୍କୁ ନେଇ ଗଢ଼ାଯାଇଥିବା ପିଡ୍‌ମଣ୍ଟ-ସାର୍ଡିନିଆର ସୈନ୍ୟବାହିନୀକୁ କ୍ରିମିଆକୁ ପଠାଯାଇଥିଲା ଏବଂ ସେମାନେ ବିରତ୍ୱର ସହିତ ଯୁଦ୍ଧକରି ଗୌରବ ଅର୍ଜନ କରିଥିଲେ । ଏହି ସୈନ୍ୟବାହିନୀର ନୈତିକ ବଳ କିପରି ଉନ୍ନତ ଥିଲା; ତାହା ସେବାଷ୍ଟପୋଲ ସାମନାରେ ଥିବା କର୍ଦ୍ଦମପୂର୍ଣ୍ଣ ଖାଇରୁଡ଼ିକରେ ସଂଗ୍ରାମ ଚଳାଉଥିବା ସୈନ୍ୟମାନଙ୍କ ମଧ୍ୟରୁ ଜଣେ ସାର୍ଡିନିଆର ସୈନ୍ୟର ମନ୍ତବ୍ୟରୁ ବିଚାର କରାଯାଇପାରେ । ସେ କହିଥିଲେ, "ଆଦୌ କିଛି ମନେକର ନାହିଁ, ଏହି କର୍ଦ୍ଦମରୁ ଇଟାଲୀ ଗଢ଼ାଯିବ ।" (He said, "Never mind, of this mud Italy will be made.")

କ୍ରିମିଆ ଯୁଦ୍ଧରେ ରୁଷିଆର ପରାଜୟ ହେଲା ଏବଂ ଇଂଲଣ୍ଡ, ଫ୍ରାନ୍ସ ଓ ପିଡମଣ୍ଟ-ସାର୍ଡିନିଆ ଏହି ଯୁଦ୍ଧରେ ଜୟୀ ହେଲେ । ପିଡ୍‌ମଣ୍ଟ-ସାର୍ଡିନିଆ ଓ ଇଟାଲୀର ସ୍ୱାର୍ଥସିଦ୍ଧି ପାଇଁ କାଭୁର ଇଂଲଣ୍ଡ ଓ ଫ୍ରାନ୍ସ ପକ୍ଷରେ କ୍ରିମିଆ ଯୁଦ୍ଧରେ ଯୋଗଦେଇଥିଲେ । ସେ ଆଶା କରିଥିଲେ ଯେ, କ୍ରିମିଆ ଯୁଦ୍ଧରେ ଯୋଗଦେବାଦ୍ୱାରା ସେ ଇଂଲଣ୍ଡ ଓ ଫ୍ରାନ୍ସର ସଦିଚ୍ଛା ଲାଭକରିପାରିବେ ଓ ପିଡ୍‌ମଣ୍ଟ-ସାର୍ଡିନିଆ ଶକ୍ତିଶାଳୀ ଇଉରୋପୀୟ ଦେଶମାନଙ୍କ ସହିତ ଶାନ୍ତିସମ୍ମିଳନୀରେ ସମାନ ଭାବରେ ଅଂଶ ଗ୍ରହଣ କରିବାର ଅଧିକାର ଲାଭ କରିପାରିବ । ତାଙ୍କର ସେ ଆଶା ପୂରଣ ହେଲା । ପିଡ୍‌ମଣ୍ଟ-ସାର୍ଡିନିଆ ୧୮୫୬ ମସିହାରେ ପ୍ୟାରିସ୍ ଶାନ୍ତି ସମ୍ମିଳନୀ (Congress of Paris)ରେ ଯୋଗଦେବାପାଇଁ ସୁଯୋଗ ପାଇଲା ଏବଂ ତା' ପକ୍ଷରୁ କାଭୁର ସମ୍ମିଳନୀରେ ଯୋଗଦେଲେ । ପ୍ୟାରିସ୍ ଶାନ୍ତି ସମ୍ମିଳନୀ କରିବା ପୂର୍ବରୁ ୧୮୫୫ ମସିହାରେ ତୃତୀୟ ନେପୋଲିୟନ୍ କାଭୁରଙ୍କୁ ପଚାରିଥିଲେ, "ଇଟାଲୀପାଇଁ କ'ଣ କରାଯାଇପାରେ ।" କାଭୁର ତା'ର ଉତ୍ତରରେ ନେପୋଲିୟନ୍‌ଙ୍କୁ ଏକ ସ୍ମାରକପତ୍ର ଦେଇଥିଲେ । ସେହିଦିନଠାରୁ କାଭୁରଙ୍କର ଆଶା ଉଜ୍ଜ୍ୱଳ ହୋଇଉଠିଲା ଏବଂ ସେ ଯେଉଁ ମିତ୍ରକୁ ଦରକାର କରୁଥିଲେ ତାଙ୍କୁ ସେ ପାଇପାରିଛନ୍ତି ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା । ଅର୍ଥାତ୍ ସେ ତୃତୀୟ ନେପୋଲିୟନ୍‌ଙ୍କୁ ମିତ୍ରରୂପେ ପାଇବାପାଇଁ ଯେଉଁ ଆଶା ପୋଷଣ କରିଥିଲେ ତାହା ପୂରଣ ହୋଇଛି ବୋଲି ସେ ପୂରାପୂରି ବିଶ୍ୱାସ କରିଥିଲେ । ସେ ଯାହାହେଉ, ପ୍ୟାରିସ୍ ଶାନ୍ତି ସମ୍ମିଳନୀରେ ଯେତେବେଳେ ଦୁଇଟି କ୍ଷୁଦ୍ର ରାଜ୍ୟ-ମଲଡାଭିଆ ଏବଂ ଓ୍ୱାଲାଚିଆକୁ ମିଶାଇ ଗୋଟିଏ ରାଜ୍ୟରେ ପରିଣତ କରିବା ପ୍ରଶ୍ନ ଉଠିଲା, ସେତେବେଳେ କାଭୁର ତାକୁ ସମର୍ଥନ କରିଥିଲେ । ଭଗିନୀ ତୁଲ୍ୟ ଏହି ଦୁଇ କ୍ଷୁଦ୍ର ରାଜ୍ୟର ମିଶ୍ରଣକୁ ସମର୍ଥନ କରିବା ଫଳରେ ସେ ଇଟାଲୀର ଐକ୍ୟପାଇଁ ସମ୍ମିଳନୀରେ ସମର୍ଥନ ଲାଭ କରିପାରିବେ ବୋଲି ଆଶା ବାନ୍ଧିଥିଲେ । ତା'ଛଡ଼ା ତୃତୀୟ ନେପୋଲିୟନ୍ ଏହି ଦୁଇଟି କ୍ଷୁଦ୍ରରାଜ୍ୟର ମିଶ୍ରଣ ସପକ୍ଷରେ ଥିବାରୁ, କାଭୁର ତାଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ମଧ୍ୟ ବ୍ୟଗ୍ର ଥିଲେ । ପ୍ରକୃତରେ ନେପୋଲିୟନ୍ ଏଥିରେ ବିଶେଷ ସନ୍ତୁଷ୍ଟ ହୋଇଥିଲେ ଏବଂ କାଭୁରଙ୍କୁ ଇଟାଲୀ-ପ୍ରଶ୍ନ ସମ୍ମିଳନୀରେ ଉଠାଇବାପାଇଁ ସାହାଯ୍ୟ କରିଥିଲେ । ଅଷ୍ଟ୍ରିଆର ପ୍ରତିରୋଧ ସତ୍ତ୍ୱେ କାଭୁର ଇଟାଲୀ-ପ୍ରଶ୍ନ ଉଠାଇଥିଲେ । ସେ ଇଟାଲୀର ସ୍ୱାଧୀନତା ସମସ୍ୟାକୁ ଏକ ଆନ୍ତର୍ଜାତିକ ପ୍ରଶ୍ନରେ ପରିଣତ କରିବାକୁ ସକ୍ଷମ ହୋଇଥିଲେ । ସେ ପରିଷ୍କାର କହିଥିଲେ ଯେ ଅଷ୍ଟ୍ରିଆ ଇଟାଲୀୟ ସ୍ୱାଧୀନତାର ପରମ ଶତ୍ରୁ ଏବଂ ଇଟାଲୀର ଏକମାତ୍ର ସ୍ୱାଧୀନ ରାଜ୍ୟ ପିଡମଣ୍ଟ-ସାର୍ଡିନିଆପାଇଁ ଏକ ସ୍ଥାୟୀ ବିପଦ । ସେ ଦୃଢ଼ଭାବରେ କହିଥିଲେ ଯେ, ଯେତେଦିନ ପର୍ଯ୍ୟନ୍ତ ଇଟାଲୀ ପରାଧୀନ ହୋଇ ରହିଥିବ, ସେତେଦିନ ପର୍ଯ୍ୟନ୍ତ ଇଉରୋପରେ ଶାନ୍ତି ପ୍ରତିଷ୍ଠା ହୋଇପାରିବ ନାହିଁ ।

କାଭୁର ପ୍ୟାରିସ୍‌ରୁ କୌଣସି ଭୌତିକ ସୁଯୋଗ ଲାଭ ନକରି ଫେରିଥିଲେ ମଧ୍ୟ ତାଙ୍କର ଯେ ସମ୍ପୂର୍ଣ୍ଣ ନୈତିକ ବିଜୟ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ପିଡ୍‌ମଣ୍ଟ

ସାର୍ଡିନିଆ ବୃହତ୍ତ ଶକ୍ତିମାନଙ୍କ ସମ୍ମିଳନୀରେ ଅଂଶ ଗ୍ରହଣ କରିଥିଲା । ଅଷ୍ଟ୍ରିୟାକୁ ପ୍ରକାଶ୍ୟ ଭାବରେ ଅଭିଯୁକ୍ତ କରାଯାଇଥିଲା । ତା'ଛଡ଼ା ପ୍ୟାରିସ୍ ସମ୍ମିଳନୀରେ ପୋପ୍ ଏବଂ ନେପଲସର ରାଜାଙ୍କ ଉପରେ ମଧ୍ୟ ଦୋଷାରୋପ କରାଯାଇଥିଲା । ପିଡ୍‌ମଣ୍ଟ-ସାର୍ଡିନିଆ ପୁଣି ଥରେ ପ୍ରମାଣ କରିଥିଲା ଯେ ସମଗ୍ର ଇଟାଲୀକୁ ନେତୃତ୍ୱ ଦେବାପାଇଁ ହକ୍‌ଦାର । ମ୍ୟାଜିନିଙ୍କଦ୍ୱାରା ପ୍ରଭାବିତ ହୋଇ ଯେଉଁମାନେ ଇଟାଲୀକୁ ସେଯାଏ ଏକ ସାଧାରଣତନ୍ତ୍ର ରାଜ୍ୟରେ ପରିଣତ କରିବାକୁ ଚାହୁଁଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ମତ ପରିବର୍ତ୍ତନ କରିବାକୁ ଆରମ୍ଭ କରିଥିଲେ ଏବଂ ପିଡ୍‌ମଣ୍ଟ-ସାର୍ଡିନିଆ ରାଜତନ୍ତ୍ରର ଦେଶପ୍ରେମ, ଦୂରଦୃଷ୍ଟି ଏବଂ ସାମରିକ ଶକ୍ତି ଉପରେ ଅଧିକ ଆସ୍ଥା ସ୍ଥାପନ କରିଥିଲେ । କାଭୁର ମଧ୍ୟ ଜଣେ କୂଟନୀତିଜ୍ଞ ହିସାବରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଅବସର ଗ୍ରହଣ କରିଥିବା ଅଭିଜ୍ଞ ପ୍ରିନ୍‌ସ ମ୍ୟାଟରନିକ୍ କାଭୁରଙ୍କ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ କହିଥିଲେ, "ଇଉରୋପରେ ଜଣେ ମାତ୍ର କୂଟନୀତିଜ୍ଞ ଅଛନ୍ତି; କିନ୍ତୁ ଦୁର୍ଭାଗ୍ୟକ୍ରମେ ସେ ଆମ ବିରୁଦ୍ଧରେ : ସେ ହେଉଛନ୍ତି ଏମ୍. ଡି. କାଭୁର ।" କାଭୁର ପ୍ରକୃତରେ ଇଉରୋପର ଦୃଷ୍ଟି ଆକର୍ଷଣୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ତାଙ୍କ ଦେଶରେ ତାଙ୍କ ସ୍ଥିତି ପୂର୍ବାପେକ୍ଷା ଅଧିକ ଦୃଢ଼ ହୋଇଥିଲା ।

ପ୍ୟାରିସ୍ ଶାନ୍ତି ସମ୍ମିଳନୀ ପରେ ପିଡ୍‌ମଣ୍ଟ-ସାର୍ଡିନିଆ ନିଜକୁ ଇଟାଲୀର ଆଦର୍ଶ ରାଜ୍ୟରୂପେ ଗଢ଼ିବା ପାଇଁ ଅଧିକ ଅଗ୍ରସର ହୋଇଥିଲା । ଆଇନ ବଳରେ ସୈନ୍ୟବାହିନୀକୁ ଶକ୍ତିଶାଳୀ କରାଯାଇଥିଲା ଓ ଶିଳ୍ପର ଦ୍ରୁତ ବିକାଶ ହୋଇଥିଲା । ଶିକ୍ଷାକୁ ଉତ୍ସାହିତ କରାଯାଇଥିଲା । ଇଟାଲୀର ଅନ୍ୟ ରାଜ୍ୟମାନଙ୍କରେ ପିଡ୍‌ମଣ୍ଟ-ସାର୍ଡିନିଆ ସପକ୍ଷରେ ମନୋଭାବ ଅଧିକ ଦୃଢ଼କରିବା ଉଦ୍ଦେଶ୍ୟରେ ସେଠାରେ ଜାତୀୟ ସମାଜ ( The National Society ) ସଂଗଠନ କରାଯାଇଥିଲା । ସେହି ସମାଜର ଆଦର୍ଶ ବାକ୍ୟ (Motto) ହେଲା, "ସ୍ୱାଧୀନତା ଏବଂ ଐକ୍ୟ, ଅଷ୍ଟ୍ରିୟମାନଙ୍କର ଏବଂ ପୋପ୍‌ଙ୍କର ବିତାଡ଼ନ ।" ତା'ଛଡ଼ା ଇଟାଲୀର ଅନ୍ୟାନ୍ୟ ରାଜ୍ୟଗୁଡ଼ିକର ପ୍ରଜାମାନେ ଯେପରି ସେମାନଙ୍କ ରାଜାମାନଙ୍କ ପ୍ରତି ଆନୁଗତ୍ୟ ଆଉ ପ୍ରଦର୍ଶନ ନକରି ପିଡ୍‌ମଣ୍ଟ-ସାର୍ଡିନିଆ ପ୍ରତି ଆନୁଗତ୍ୟ ପ୍ରକାଶ କରିବେ, ସେଥିପାଇଁ ଜାତୀୟ ସମାଜ ଉଦ୍ୟମ କରିବାକୁ ସ୍ଥିର କରିଥିଲା । ଏହି ଜାତୀୟ ସମାଜର ସଭ୍ୟମାନେ ବିଶ୍ୱାସ କରୁଥିଲେ ଯେ ରାଜନୈତିକ ବିପ୍ଳବକୁ ସହଜସାଧ୍ୟ କରିବାକୁ ହେଲେ ପ୍ରଥମେ ଲୋକମାନଙ୍କ ଅଭିମତ ଓ ମନୋଭାବର ବୈପ୍ଳବିକ ପରିବର୍ତ୍ତନ ଆବଶ୍ୟକ । ପ୍ରକୃତରେ ଏହି ସମାଜ ସଫଳ ହୋଇଥିଲା । ମ୍ୟାଜିନିଙ୍କ ପରି ବହୁଲୋକ ଯେଉଁମାନେ କି ସେ ପର୍ଯ୍ୟନ୍ତ ସାଧାରଣତନ୍ତ୍ରବାଦୀ ଥିଲେ ସେମାନେ ସାଧାରଣତନ୍ତ୍ରବାଦ ପରିତ୍ୟାଗ କରି କେତେକ ସର୍ତ୍ତରେ ପିଡ୍‌ମଣ୍ଟ-ସାର୍ଡିନିଆକୁ ଅନୁସରଣ କରିବେ ବୋଲି ଘୋଷଣା କରିଥିଲେ । ମ୍ୟାଜିନି ଲେଖିଥିଲେ, "ଇଟାଲୀ ଗଠନ କର, ଆମ୍ଭେମାନେ ତମ ସହିତ ଅଛୁ । ଯଦି ନକରିବାକୁ ଚାହଁ, ନକର ।" (Make Italy and we are with you if not; not.") ଜାତୀୟ ସମାଜ ଦ୍ରୁତବେଗରେ ଇଟାଲୀର ଅନ୍ୟାନ୍ୟ ରାଜ୍ୟମାନଙ୍କରେ

ପ୍ରସାରଲାଭ କରିଥିଲା । ସବୁଠି ଉଦାରପନ୍ଥୀମାନେ ସ୍ୟାଭୟ ରାଜବଂଶର ନେତୃତ୍ୱକୁ ସ୍ୱୀକାର କରିଥିଲେ । ସମଗ୍ର ଇଟାଲୀରେ କ୍ଷୁଦ୍ର କ୍ଷୁଦ୍ର ରାଜାମାନଙ୍କର ପତନ ଘଟାଇବା ଓ ପିଡ୍‌ମଣ୍ଟ-ସାର୍ଡିନିଆକୁ ଉଚ୍ଚପଦରେ ପ୍ରତିଷ୍ଠିତ କରିବାପାଇଁ ବାତାବରଣ ସୃଷ୍ଟି ହୋଇଥିଲା ।

କାଭୁର ପ୍ୟାରିସ୍‌ରୁ ଏହି ଆଶା ନେଇ ଫେରିଥିଲେ ଯେ ପିଡ୍‌ମଣ୍ଟ-ସାର୍ଡିନିଆକୁ ସାହାଯ୍ୟ କରିବାପାଇଁ ଫ୍ରାନ୍‌ସକୁ ଅବିଲମ୍ବେ ପ୍ରବର୍ତ୍ତିତ କରାଯାଇପାରିବ । କେତେଜଣ ଇଟାଲୀୟ ଓରସିନିଙ୍କ ନେତୃତ୍ୱରେ ପରିଚାଳିତ ହୋଇ ୧୮୫୮ ମସିହା ଜାନୁୟାରୀ ୧୪ ତାରିଖ ଦିନ ନେପୋଲିୟନ୍‌ଙ୍କୁ ହତ୍ୟା କରିବାପାଇଁ ଉଦ୍ୟମ କରିବା ଫଳରେ କାଭୁରଙ୍କର ସେ ଆଶା ବ୍ୟର୍ଥ ହେଲାପରି ମନେହେଲା । ନେପୋଲିୟନ୍ କିନ୍ତୁ ଏଥିରେ ବିଚଳିତ ନ ହୋଇ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହେବା ପାଇଁ ଅଗ୍ରସର ହୋଇଥିଲେ । ଓରସିନିଙ୍କର ନେପୋଲିୟନ୍‌ଙ୍କୁ ମୃତ୍ୟୁକାଳୀନ ଆକୁଳ ପ୍ରାର୍ଥନା—'ଇଟାଲୀକୁ ମୁକ୍ତ କରନ୍ତୁ' ତାଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ଓରସିନିଙ୍କର ହତ୍ୟା ଉଦ୍ୟମ ଛ'ମାସ ନ ପୂରୁଣୁ ନେପୋଲିୟନ୍ କାଭୁରଙ୍କୁ ପ୍ଲୋମବାୟାରେସ୍‌ରେ ତାଙ୍କ ସହିତ ସାକ୍ଷାତ କରିବାପାଇଁ ନିମନ୍ତ୍ରଣ କରିଥିଲେ । କାଭୁର ଏ ନିମନ୍ତ୍ରଣ ପାଇ ଏତେ ଦୂର ଭାବବିହ୍ୱଳ ହୋଇ ପଡ଼ିଥିଲେ ଯେ ସେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ଲେଖିଥିଲେ, "ନାଟକ ଶେଷ ହେବାକୁ ଯାଉଛି, ଈଶ୍ୱରଙ୍କୁ ପ୍ରାର୍ଥନା କର ଯେପରିକି ସେହି ପରମ ମୁହୂର୍ତ୍ତରେ ମୁଁ କୌଣସି ମସ୍ତବଡ଼ ଭୁଲ ନ କରେ ।" ନେପୋଲିୟନ୍‌ଙ୍କ ସହିତ କାଭୁରଙ୍କର ଭେଟ ୧୮୫୮ ମସିହା ଜୁଲାଇ ୨୧ ତାରିଖ ଦିନ ପ୍ଲୋମବାୟାରେସ୍‌ଠାରେ ହୋଇଥିଲା ଏବଂ ତାହା ରହସ୍ୟାବୃତ ଥିଲା । ରାଜା ଭିକ୍ଟର ଇମାନୁୟେଲ ଏବଂ ଲା ମାରମୋରାଙ୍କ ସମେତ ପିଡମଣ୍ଟ-ସାର୍ଡିନିଆର କେବଳ ସ୍ୱଳ୍ପଜଣ ଲୋକ ଏହି ସାକ୍ଷାତ ବିଷୟରେ ଅବଗତ ଥିଲେ । ନେପୋଲିୟନ୍‌ଙ୍କ ମନ୍ତ୍ରୀମାନଙ୍କୁ ମଧ୍ୟ ଏହି ବିଷୟରେ କିଛି ଜଣାଯାଇନଥିଲା । ପ୍ଲୋମବାୟାରେସ୍‌ରେ ଏହି ସାକ୍ଷାତକାର ଊନବିଂଶ ଶତାବ୍ଦୀର ଇତିହାସରେ ଏକ ପ୍ରସିଦ୍ଧ ଘଟଣା । କାଭୁର ଓ ନେପୋଲିୟନ୍ ପ୍ଲୋମବାୟାରେସ୍‌ରେ ଯେଉଁ ଭୂମିକା ଗ୍ରହଣ କରିଥିଲେ, ତାହା ସମଗ୍ର ବିଶ୍ୱ ନିକଟରେ ଷଡ଼ଯନ୍ତ୍ରକାରୀର ଭୂମିକା ସଦୃଶ ଥିଲା । ବାସ୍ତବିକ ସେ ଦୁଇଜଣ ଇଉରୋପରେ ଶାନ୍ତି ପ୍ରତିଷ୍ଠା ବିରୁଦ୍ଧରେ ଷଡ଼ଯନ୍ତ୍ରକାରୀ ଥିଲେ । ସେମାନଙ୍କ ମଧ୍ୟରେ ବିସ୍ତୃତ ଆଲୋଚନା ପରେ କାଭୁର ନେପୋଲିୟନ୍‌ଙ୍କ ସହିତ ପ୍ଲୋମବାୟାରେସ୍ ଚୁକ୍ତି (Pact of Plombieres) ୧୮୫୮ ମସିହାରେ ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତି ଅନୁସାରେ ନେପୋଲିୟନ୍ କେତେକ ସର୍ତ୍ତରେ ଅଷ୍ଟ୍ରିଆ ବିରୁଦ୍ଧରେ ପିଡ୍‌ମଣ୍ଟ-ସାର୍ଡିନିଆକୁ ସାହାଯ୍ୟ କରିବାକୁ ଏବଂ "ଆଲପ୍‌ସ ପର୍ବତଠାରୁ ଆଡ୍ରିୟାଟିକ୍ ସାଗର ପର୍ଯ୍ୟନ୍ତ ଇଟାଲୀକୁ ସ୍ୱାଧୀନ କରିବାକୁ" ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଏଥିରେ ସର୍ତ୍ତ ଥିଲା ଯେ ଯଦି ଅଷ୍ଟ୍ରିଆ ପ୍ରଥମେ ପିଡ୍‌ମଣ୍ଟ-ସାର୍ଡିନିଆ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରେ; ତାହାହେଲେ ଯାଇ ନେପୋଲିୟନ୍ ପିଡ୍‌ମଣ୍ଟ-ସାର୍ଡିନିଆକୁ ସେହି ଯୁଦ୍ଧରେ ସାହାଯ୍ୟ କରିବେ ଏବଂ ଯଦି ମିତ୍ର ଶକ୍ତିଦ୍ୱୟ ଯୁଦ୍ଧରେ ଜୟଯୁକ୍ତ ହୁଅନ୍ତି

ତାହାହେଲେ ଇଟାଲୀ ନମ୍ନଲିଖିତ ଭିତ୍ତିରେ ପୁନର୍ଗଠିତ ହେବ । ଲେମ୍ବାର୍ଡ଼, ଭେନିସିଆ ଏବଂ ପୋପ୍‌ଙ୍କ ରାଜ୍ୟର କେତେକାଂଶ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ କରାଯାଇ ତାକୁ ଏକ ବଡ଼ ରାଜ୍ୟରେ ପରିଣତ କରାଯିବ, ଭିକ୍ଟର ଇମାନୁୟେଲ ଏହି ଉତ୍ତର-ଇଟାଲୀ ରାଜ୍ୟର ରାଜା ହେବେ । ରୋମ୍ ବ୍ୟତୀତ ଅବଶିଷ୍ଟ ପୋପ୍‌ଙ୍କ ରାଜ୍ୟ ଏବଂ ତାର ନିକଟବର୍ତ୍ତୀ ଅଞ୍ଚଳ ଟସ୍‌କାନି ସହିତ ମିଶାଇ ଦିଆଯାଇ କେନ୍ଦ୍ର-ଇଟାଲୀ ରାଜ୍ୟ ଗଠନ କରାଯିବ । ଏହି ଦୁଇ ରାଜ୍ୟ ସହିତ ନେପଲସ୍ ରାଜ୍ୟ ଓ ପୋପ୍‌ଙ୍କର ରାଜ୍ୟ ମିଳିତ ହୋଇ ପୋପ୍‌ଙ୍କ ଅଧ୍ୟକ୍ଷତାରେ ଏକ ଇଟାଲୀୟ ରାଷ୍ଟ୍ରସଙ୍ଘ (An Italian Confederation) ଗଢ଼ାଯିବ । ଏହା ଦ୍ୱାରାଲେ ପୋପ୍ ଅନୁଭବ କରିବେ ଯେ ସେ ତାଙ୍କର ଅଧିକାଂଶ ଅଞ୍ଚଳ ହରାଇଥିବା ଯୋଗୁ କ୍ଷତିପୂରଣ ପାଇଲେ । ପିଡ୍‌ମଣ୍ଟ-ସାର୍ଡିନିଆକୁ ଯୁଦ୍ଧରେ ସାହାଯ୍ୟ କରିବା ଫଳରେ ପୁରସ୍କାର ସ୍ୱରୂପ ଫ୍ରାନସ, ସ୍ୟାଭୟ ଏବଂ ସମ୍ଭବ ହେଲେ ନାଇସ୍ ଲାଭ କରିବ । ଏହି ସବୁ ରାଜିନାମା ହେଲା ପରେ ତୃତୀୟ ନେପୋଲିୟନ୍ ଫ୍ରାନସ ଏବଂ ପିଡ୍‌ମଣ୍ଟ-ସାର୍ଡିନିଆର ମିତ୍ରତାକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ତାଙ୍କର ସମ୍ପର୍କୀୟ ଭାଇ (Cousin) ପ୍ରିନ୍‌ସ ନେପୋଲିୟନ୍‌ଙ୍କ ସହିତ ଭିକ୍ଟର ଇମାନୁୟେଲଙ୍କ ଝିଅର ବିବାହ ପାଇଁ ପିଡ୍‌ମଣ୍ଟ-ସାର୍ଡିନିଆ ଉପରେ ଚାପ ପକାଇଥିଲେ । ସେତେବେଳେ ପ୍ରିନସ ନେପୋଲିୟନ୍‌ଙ୍କୁ ୪୩ ବର୍ଷ ବୟସ ହୋଇଥିଲା ଏବଂ ସେ ପ୍ରକୃତରେ ଜଣେ ଚରିତ୍ରହୀନ ବ୍ୟକ୍ତି ଥିଲେ । କିନ୍ତୁ ରାଜକୁମାରୀ କ୍ଲୋଟିଲ୍‌ଡେ (Princess Clotilde)ଙ୍କୁ ମାତ୍ର ୧୬ ବର୍ଷ ବୟସ ହୋଇଥିଲା । ଏହି ପ୍ରସ୍ତାବ ଭିକ୍ଟର ଇମାନୁୟେଲ୍ ଓ ପିଡ୍‌ମଣ୍ଟ ସାର୍ଡିନିଆର ଅଧିବାସୀମାନଙ୍କ ପାଇଁ ବିରକ୍ତିକର ହେଲେ ମଧ୍ୟ ଶେଷରେ ଏହି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥିଲା ଏବଂ ବିବାହ ସମ୍ପନ୍ନ ହୋଇଥିଲା ।

## ଅଷ୍ଟ୍ରିୟା-ସାର୍ଡିନିଆ ଯୁଦ୍ଧ (୧୮୫୯)
## (Austro-Sardinian War : 1859)

କାଭୁର୍‌ଙ୍କର ଏକ ବୃହତ୍ତର ସାମରିକ ଶକ୍ତି ସହିତ ଚୁକ୍ତିରେ ଆବଦ୍ଧ ହେବାର ସ୍ୱପ୍ନ ଯଦିଓ ସଫଳ ହୋଇଥିଲା, ତଥାପି ପ୍ଲୋମବାୟାରେସ୍‌ର ସାକ୍ଷାତକାରଠାରୁ ଚୂଡ଼ାନ୍ତ ଯୁଦ୍ଧ ଘୋଷଣା ପର୍ଯ୍ୟନ୍ତ ସେ ନେଇ ନଅମାସ ସମୟ ଅତିବାହିତ କରିଥିଲେ; ତାହା ତାଙ୍କପାଇଁ ଅତି ଅସୁବିଧାଜନକ ଓ ଦୁଃଖଦାୟକ ହୋଇଥିଲା; କାରଣ ନେପୋଲିୟନ୍‌ଙ୍କ ଚୁକ୍ତିର ସର୍ତ୍ତ ଥିଲା ଯେ ଯଦି ଅଷ୍ଟ୍ରିୟା ପ୍ରଥମ ଆକ୍ରମଣକାରୀ ବୋଲି ଲୋକଦୃଷ୍ଟିକୁ ଆସେ, ତାହା-ହେଲେ ସେ ଅଷ୍ଟ୍ରିୟା ସହିତ ଯୁଦ୍ଧରେ ପିଡ୍‌ମଣ୍ଟ-ସାର୍ଡିନିଆକୁ ସମର୍ଥନ ଓ ସାହାଯ୍ୟ ମଧ୍ୟ କରିବେ । ତେଣୁ କାଭୁର ପ୍ଲୋମବାୟାରେସ୍ ସାକ୍ଷାତକାର ପରେ ନିଜ ଦେଶକୁ ଫେରିଆସି ପରବର୍ତ୍ତୀ କେତେ ମାସ ଅଷ୍ଟ୍ରିୟାକୁ ପ୍ରଥମ ଆକ୍ରମଣକାରୀର ଭୂମିକା ଗ୍ରହଣକରିବାକୁ ବାଧ୍ୟକରିବା ଉଦ୍ଦେଶ୍ୟରେ ତାକୁ ଉତ୍ତେଜିତ କରିବା ନୀତି ଗ୍ରହଣ କରିଥିଲେ । କାଳେ

ନେପୋଲିୟନ୍ ତାଙ୍କ ମତ ପରିବର୍ତ୍ତନ କରିବେ ବା ଅନ୍ୟ ଅସୁବିଧା ଉପୁଜିବ, ସେଥିପାଇଁ କାଭୁର ଯୁଦ୍ଧକୁ ତ୍ୱରାନ୍ୱିତ କରିବାପାଇଁ ଚାହିଁଥିଲେ । କାଭୁର କାଳକ୍ଷେପ ନକରି ଆସନ୍ନ ଯୁଦ୍ଧପାଇଁ ଜୋର୍‌ସୋର୍‌ରେ ସମରସଜ୍ଜା ଆରମ୍ଭ କରିଦେଇଥିଲେ । ତା'ଛଡ଼ା ସେ ପ୍ରତିକୂଳ ବାଣିଜ୍ୟଶୁଳ୍କ ବସାଇ ସମ୍ବାଦପତ୍ର ଜରିଆରେ ଆକ୍ରମଣ ଚଳାଇ ଏବଂ ଲୋମ୍ବାର୍ଡ଼ି ଓ ଭେନିସିୟାରେ ଅସନ୍ତୋଷକୁ ଉତ୍ସାହିତ କରି, ଅଷ୍ଟ୍ରିୟାକୁ ଅତିଶୟ ଉତ୍ତେଜିତ କରିଥିଲେ । ଭିକ୍ଟର ଇମାନୁୟେଲ୍ ମଧ୍ୟ ପିଡ୍‌ମଣ୍ଟ-ସାର୍ଡିନିୟାର ପାର୍ଲାମେଣ୍ଟ ଉଦ୍‌ଘାଟନ କରି କହିଥିଲେ, "ଇଟାଲୀର ବିଭିନ୍ନ ଅଂଶରୁ ଯେଉଁ ଗଭୀର ଦୁଃଖର ଚିତ୍କାର ଆମ୍ଭମାନଙ୍କ ନିକଟରେ ଆସି ପହଞ୍ଚୁଛି, ତାହା ପ୍ରତି ଆମ୍ଭେମାନେ ଧ୍ୟାନ ଦେଉଛୁ ।" ନେପୋଲିୟନ୍ ମଧ୍ୟ ଘୋଷଣାକରି ସାରିଥିଲେ ଯେ ଅଷ୍ଟ୍ରିୟା ସହିତ ପୂର୍ବରୁ ଯେପରି ସୁସମ୍ପର୍କ ଥିଲା ସେପରି ସୁସମ୍ପର୍କ ଆଉନାହିଁ । ଏହିସବୁ ଘୋଷଣା ଅଷ୍ଟ୍ରିୟା ଓ ଇଉରୋପ ପ୍ରତି ଯଥେଷ୍ଟ ଚେତାବନୀ ଥିଲା ଏବଂ ଇଉରୋପରେ କ'ଣ ଘଟିବାକୁ ଯାଉଛି ତାହାର ମଧ୍ୟ ସୂଚନା ଦେଇଥିଲା । ଇଂଲଣ୍ଡ ତୃତୀୟ ନେପୋଲିୟନ୍‌ଙ୍କର ନୂତନ କାର୍ଯ୍ୟଧାରାର ପରିସର ବିଷୟରେ ଭୟାଭିଭୂତ ହୋଇ ଯୁଦ୍ଧ ଏଡ଼ିବା ଉଦ୍ଦେଶ୍ୟରେ ଏକ ଇଉରୋପୀୟ ସମ୍ମିଳନୀ ଆହ୍ୱାନ କରିବାପାଇଁ ପ୍ରସ୍ତାବ କରିଥିଲେ । ନେପୋଲିୟନ୍ ପ୍ରଥମେ ଇତସ୍ତତଃ ହୋଇଥିଲେ ମଧ୍ୟ ତାଙ୍କ ଲୋକମାନେ ଯୁଦ୍ଧ ଚାହୁଁନଥିବାରୁ ସମ୍ପୃକ୍ତ ତିନି ଶକ୍ତିର ବ୍ୟାପକ ନିରସ୍ତ୍ରୀକରଣପାଇଁ ଇଂଲଣ୍ଡ ଦେଇଥିବା ପ୍ରସ୍ତାବକୁ ସେ ବାଧ୍ୟ ହୋଇ ଗ୍ରହଣ କରିଥିଲେ । ଏଥିରେ କାଭୁର ହତୋତ୍ସାହ ହୋଇ ଆତ୍ମହତ୍ୟା କରିବାପାଇଁ ମନେ ମନେ ଭାବିଥିଲେ । ପରେ ସେହି ଭାବନା ସେ ତ୍ୟାଗ କରିଥିଲେ ସତ; କିନ୍ତୁ ବାଧ୍ୟ ହୋଇ ପିଡ୍‌ମଣ୍ଟ-ସାର୍ଡିନିୟାର ଯୁଦ୍ଧପାଇଁ ପ୍ରସ୍ତୁତ ରହିଥିବା ସୈନ୍ୟଦଳକୁ ଭାଙ୍ଗିଦେବା ପାଇଁ ରାଜି ହୋଇଥିଲେ । ନେପାଲିୟନ୍ ନିର୍ବୋଧଙ୍କ ପରି ଯେଉଁ ପଦକ୍ଷେପ ନେଇଥିଲେ, ତାହା କାଭୁରଙ୍କୁ ଏକ ବିଷମ ପରିସ୍ଥିତିରୁ ରକ୍ଷା ପାଇବାପାଇଁ ବାଟ କରିଦେଇଥିଲା । କାଭୁରଙ୍କର ସୌଭାଗ୍ୟକୁ ଅଷ୍ଟ୍ରିୟା ନିରସ୍ତ୍ରୀକରଣ ବିଷୟରେ ପିଡ୍‌ମଣ୍ଟ-ସାର୍ଡିନିୟା ସହିତ ସମାନ ସ୍ତରକୁ ଖସିଆସିବାକୁ ମନାକରିଦେବା ସଙ୍ଗେ ସଙ୍ଗେ ଇଂଲଣ୍ଡର ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଇଥିଲା ଏବଂ କାଭୁରଙ୍କ ଆଚରଣରେ ଉତ୍ତେଜିତ ହୋଇ ବିପଜ୍ଜନକ ପଦକ୍ଷେପ ନେଇଥିଲା । ସେ ପିଡ୍‌ମଣ୍ଟ-ସାର୍ଡିନିୟାକୁ ଏକ ଚରମପତ୍ର ( ultimatum ) ପଠାଇ ସେଥିରେ ଦାବି କରିଥିଲା ଯେ ପିଡ୍‌ମଣ୍ଟ-ସାର୍ଡିନିୟା ତିନିଦିନ ଭିତରେ ଯଦି ତାହାର ସୈନ୍ୟବଳ ନ କମାଇ-ଦିଏ, ତାହାହେଲେ ତା' ବିରୁଦ୍ଧରେ ଯୁଦ୍ଧ ଘୋଷଣା କରାଯିବ । ପ୍ରକୃତରେ କାଭୁର ଯୁଦ୍ଧ ଚାହୁଁଥିଲେ ଏବଂ ସେହି ଯୁଦ୍ଧ ଘଟାଇବା ପାଇଁ ସେ କେତେମାସ ଧରି ନିରବଚ୍ଛିନ୍ନ ଭାବରେ ଉଦ୍ୟମ ଚଳାଇଥିଲେ । ଅଷ୍ଟ୍ରିୟା କିପରି ପ୍ରଥମ ଆକ୍ରମଣକାରୀ ବୋଲି ବିବେଚିତ ହେବ, ସେଥିପାଇଁ ସେ ମଧ୍ୟ ଷଡ଼ଯନ୍ତ୍ର କରିଥିଲେ । ତୃତୀୟ ନେପୋଲିୟନ୍ ଯେଉଁ ପରିସ୍ଥିତିରେ ପିଡ୍‌ମଣ୍ଟ-ସାର୍ଡିନିୟାକୁ ସାହାଯ୍ୟ କରିବ ବୋଲି ପ୍ରତିଶ୍ରୁତି ଦେଇଥିଲେ,

ଯେଉଁ ପରିସ୍ଥିତି ସୃଷ୍ଟି କରିବାପାଇଁ ଅଷ୍ଟ୍ରିୟାର ଚରମପତ୍ର ସାହାଯ୍ୟ କରିଥିଲା । ପିଡ୍‌ମଣ୍ଟ ସାର୍ଡିନିୟା ଅଷ୍ଟ୍ରିୟାର ଚରମପତ୍ରକୁ ଅଗ୍ରାହ୍ୟ କରିଦେଇଥିଲା ।

ଇଟାଲୀର ସ୍ୱାଧୀନତା ସଂଗ୍ରାମ ଅପ୍ରେଲ ମାସର ଶେଷଭାଗରେ ୧୮୫୯ ମସିହାରେ ଆରମ୍ଭ ହୋଇଥିଲା । ନେପୋଲିୟନ୍ ତାଙ୍କ ପ୍ରତିଶ୍ରୁତି ରକ୍ଷାକରିଥିଲେ ଏବଂ ତାଙ୍କ ନେତୃତ୍ୱରେ ଏକ ଫରାସୀ ସୈନ୍ୟଦଳ ଇଟାଲୀରେ ପହଞ୍ଚି ପିଡ୍‌ମଣ୍ଟ-ସାର୍ଡିନିୟା ପକ୍ଷରେ ଯୋଗଦେଇଥିଲା । ଉଭୟ ଫରାସୀ ଏବଂ ପିଡ୍‌ମଣ୍ଟ-ସାର୍ଡିନିୟା ସୈନ୍ୟଦଳ ମିଶି ଅଷ୍ଟ୍ରିୟାକୁ ମେଜେଣ୍ଟା ( Magenta ) ଏବଂ ସୋଲ୍‌ଫେରିନୋ ( Solferino ) ନାମକ ଦୁଇଟି ଯୁଦ୍ଧରେ ସମ୍ପୂର୍ଣ୍ଣଭାବେ ପରାଜିତ କରିଥିଲେ ଏବଂ ଅଷ୍ଟ୍ରିୟମାନଙ୍କୁ ଲୋମ୍ବାର୍ଡିରୁ ତଡ଼ିଦେଇଥିଲେ । ସମଗ୍ର ଲୋମ୍ବାର୍ଡି ଓ ମିଲାନ୍ ସେମାନଙ୍କଦ୍ୱାରା ଅଧିକୃତ ହୋଇଥିଲା । ଉଭୟ ସୈନ୍ୟଦଳ ବିଜୟ ଉଲ୍ଲାସରେ ଯେପରି ଅଗ୍ରଗତି କରୁଥିଲେ, ସେଥିରୁ ମନେହେଲା ଯେ ଭେନିସିୟା ଅଚିରସ୍ଥାୟୀକରେ ସେମାନଙ୍କର ଦଖଲକୁ ଆସିଯିବ, ଇଟାଲୀରେ ଅଷ୍ଟ୍ରିୟା ଶାସନର ଅବସାନ ଘଟିବ ଏବଂ ନେପୋଲିୟନ୍ ଇଟାଲୀକୁ ଆଲ୍‌ପସ୍ ପର୍ବତଠାରୁ ଆଡ୍ରିୟାଟିକ ସାଗର ପର୍ଯ୍ୟନ୍ତ ସ୍ୱାଧୀନ କରିବାପାଇଁ ଯେଉଁ ଘୋଷଣା କରିଥିଲେ, ତାହା କାର୍ଯ୍ୟରେ ପରିଣତ ହେବ । ଏସବୁ ଆଶା କରାଯାଉଥିଲା ବେଳେ ହଠାତ୍ ନେପୋଲିୟନ୍ ଯୁଦ୍ଧ ବନ୍ଦପାଇଁ ଆହ୍ୱାନ ଦେଇଥିଲେ ଏବଂ ତାଙ୍କ ମିତ୍ର ସହିତ ପରାମର୍ଶ ନକରି ଅଷ୍ଟ୍ରିୟା ସହିତ ୧୮୫୯ ମସିହାରେ ଭିଲ୍ଲାଫ୍ରାଙ୍କା ନାମକ ଯୁଦ୍ଧବିରତି ସନ୍ଧି ସ୍ୱାକ୍ଷର କରିଥିଲେ । ଏହି ସନ୍ଧି ଅନୁସାରେ ପୋପଙ୍କର ଅଧ୍ୟକ୍ଷତାରେ ଏକ ଇଟାଲୀୟ ରାଷ୍ଟ୍ରସଂଘ ଗଠନ କରାଯିବ । ଅଷ୍ଟ୍ରିୟା ନେପୋଲିୟନ୍‌ଙ୍କୁ ଲୋମ୍ବାର୍ଡି ସମର୍ପଣ କରିବ ଏବଂ ନେପୋଲିୟନ୍ ପିଡ୍‌ମଣ୍ଟ ସାର୍ଡିନିୟାକୁ ତାହା ହସ୍ତାନ୍ତରିତ କରିବ । ଭେନିସିୟା ଅଷ୍ଟ୍ରିୟା ଅଧୀନରେ ରହିବ; କିନ୍ତୁ ଇଟାଲୀୟ ରାଷ୍ଟ୍ରସଙ୍ଘରେ ସାମିଲ ହେବ । ଜନସାଧାରଣଙ୍କର ବିଦ୍ରୋହ ଫଳରେ ରାଜ୍ୟରୁ ବିତାଡ଼ିତ ହୋଇଥିବା ଟସ୍କାନିର ଗ୍ରାଣ୍ଡ୍ୟୁକ୍ ଏବଂ ମୋଡେନାର ଡ୍ୟୁକ୍‌ଙ୍କୁ ସ୍ୱ-ସ୍ୱ ରାଜ୍ୟରେ ପୁନଃ ପ୍ରତିଷ୍ଠିତ କରାଯିବ ।

ଅଷ୍ଟ୍ରିୟା ସହିତ ଦୁଇ ମିତ୍ରଶକ୍ତି ( ଫ୍ରାନ୍ସ ଓ ପିଡ୍‌ମଣ୍ଟ-ସାର୍ଡିନିୟା )ଙ୍କର ଯୁଦ୍ଧ ଚାଲିଥିଲାବେଳେ ଅଷ୍ଟ୍ରିୟାର ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ପରାଜୟ ସମ୍ବାଦ କେନ୍ଦ୍ର ଇଟାଲୀର ରାଜ୍ୟମାନଙ୍କରେ ପହଞ୍ଚିଲା ମାତ୍ରେ ସେଠାରେ ଅତି ଉତ୍ତେଜନାପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା । ରୋମାନାର ଲୋକେ ପୋପଙ୍କ ପ୍ରତି ସେମାନଙ୍କର ଆନୁଗତ୍ୟ ପରିହାର କରିଥିଲେ । ପାର୍ମା ଓ ମୋଡେନାର ଲୋକମାନେ ସେମାନଙ୍କର ଅତ୍ୟାଚାରୀ ଶାସକମାନଙ୍କ ବିରୁଦ୍ଧରେ ବିଦ୍ରୋହକରି ସେମାନଙ୍କୁ ସେମାନଙ୍କ ରାଜ୍ୟରୁ ତଡ଼ି ଦେଇଥିଲେ । ଟସ୍କାନିର ଲୋକମାନେ ପ୍ରଥମେ ସେମାନଙ୍କ ଶାସକ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ଇତସ୍ତତଃ ହୋଇଥିଲେ ସତ; କିନ୍ତୁ ଦେଶପ୍ରେମୀ ଓ ଦୂରଦର୍ଶୀ ରାଜନୀତିଜ୍ଞ ରିକାସଲି ସେମାନଙ୍କୁ କେନ୍ଦ୍ର-ଇଟାଲୀରେ ଥିବା ଅନ୍ୟାନ୍ୟ ରାଜ୍ୟର ଲୋକମାନଙ୍କ ସହିତ ଏକମତ କରାଇ

ପାରିଥିଲେ । ଫଳରେ ଟସ୍କାନିର ଜନସାଧାରଣ ସେମାନଙ୍କର ଶାସକଙ୍କ ବିରୁଦ୍ଧରେ ବିଦ୍ରୋହକରି ତାଙ୍କୁ ରାଜ୍ୟରୁ ବିତାଡ଼ିତ କରିଥିଲେ । ଏହି ସବୁ ସ୍ଥାନର ଜନଗଣ ଅତ୍ୟାଚାରୀ ଶାସକଗଣଙ୍କୁ ବିତାଡ଼ିତ କରିବା ସଙ୍ଗେ ସଙ୍ଗେ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ଆଗ୍ରହ ପ୍ରକାଶ କରିଥିଲେ । ଯଦି ଯୁଦ୍ଧ ଚାଲୁ ରହିଥାନ୍ତା, ଅନ୍ୟ ଇଟାଲୀୟମାନେ ପ୍ରାୟ ଏହିପ୍ରକାର ଦୃଢ଼ତା ଦେଖାଇଥାନ୍ତେ ଏବଂ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ମିଶିବାପାଇଁ ଚାହିଁଥାନ୍ତେ, ତେବେ ନେପୋଲିୟନ୍ ବୃହତ ପିଡ୍‌ମଣ୍ଟ-ସାର୍ଡିନିଆ ରାଜ୍ୟ ପରିବର୍ତ୍ତେ ଏକ ଇଟାଲୀୟ ରାଜ୍ୟ ସୃଷ୍ଟି ହେବାର ଦେଖିଥାନ୍ତେ । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସେ ଇଟାଲୀର ସ୍ୱାଧୀନତା ସହିତ ସମ୍ପୃକ୍ତ ଥିଲେ ମଧ୍ୟ ତାହାର ଏକତ୍ରୀକରଣ ସହିତ ସମ୍ପୃକ୍ତ ନଥିଲେ । ଫରାସୀ ନେତୃତ୍ୱାଧୀନରେ ଏକ ବିଭାଜିତ ଓ ଦୁର୍ବଳ ଇଟାଲୀ ବଦଳରେ, ଏକ ଐକ୍ୟବଦ୍ଧ ଇଟାଲୀ ଫ୍ରାନ୍‌ସ ପ୍ରତି ବିପଜ୍ଜନକ ହେବ ବୋଲି ସେ ମନେକରିଥିଲେ । ତା'ଛଡ଼ା ଫ୍ରାନ୍‌ସର ମୁଷ୍ଟିମେୟ ଲୋକମାନେ ଫ୍ରାନ୍‌ସର ଦକ୍ଷିଣ-ପୂର୍ବ ସୀମାରେ ଏକ ଶକ୍ତିଶାଳୀ ରାଜ୍ୟ ଗଢ଼ିଉଠିବାର ସମ୍ଭାବନାକୁ ଫ୍ରାନ୍‌ସର ନିରାପତ୍ତା ପ୍ରତି ବିପଜ୍ଜନକ ଭାବି, ପ୍ରକାଶ୍ୟ ଭାବେ ତାକୁ ନିନ୍ଦା କରୁଥିଲେ । ପୋପଙ୍କ ସ୍ଥିତିପ୍ରତି ବିପଦର ଆଶଙ୍କା ଥିବାରୁ ଫ୍ରାନ୍‌ସର କ୍ୟାଥଲିକ୍‌ମାନେ ମଧ୍ୟ କ୍ରମାଗତ ଯୁଦ୍ଧ ଚାଲିବାର ବିରୋଧ କରିଥିଲେ । ନେପୋଲିୟନ୍ ହଠାତ୍ ଯୁଦ୍ଧ ବନ୍ଦ କରିବାର ଅନ୍ୟାନ୍ୟ କାରଣ ଥିଲେ ମଧ୍ୟ ଉପରୋକ୍ତ କାରଣଗୁଡ଼ିକ ଯେ ତାଙ୍କୁ ଯୁଦ୍ଧ ବନ୍ଦକରିବାକୁ ବିଶେଷଭାବରେ ପ୍ରଭାବିତ କରିଥିଲା ତାହା ଅସ୍ୱୀକାର କରିହେବ ନାହିଁ ।

ଇଟାଲୀୟମାନଙ୍କର କଳ୍ପନା କାର୍ଯ୍ୟରେ ପରିଣତ ହେବାକୁ ଯାଉଥିଲାବେଳେ ଯୁଦ୍ଧ-ବିରତି ସନ୍ଧି ସମ୍ବାଦ ସେମାନଙ୍କପାଇଁ ନୈରାଶ୍ୟଜନକ ହୋଇଥିଲା । ଭିକ୍ଟର ଇମାନ୍ୟୁଏଲଙ୍କ ସରକାରଙ୍କୁ ଏ ବିଷୟରେ ପରାମର୍ଶ କରାଯାଇ ନଥିବାରୁ କାଭୁର ନେପୋଲିୟନ୍‌ଙ୍କର ଏହି ବିଶ୍ୱାସଘାତକତାରେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ନିଜର ଆତ୍ମସଂଯମ ହରାଇଥିଲେ ଏବଂ ପିଡ୍‌ମଣ୍ଟ-ସାର୍ଡିନିଆର ରାଜାଙ୍କୁ ଯୁଦ୍ଧବିରତି ସନ୍ଧି ଅଗ୍ରାହ୍ୟ କରିଦେବାକୁ ପ୍ରବର୍ତ୍ତାଇଥିଲେ; କିନ୍ତୁ ରାଜା ତାହା କରିବାକୁ ମନାକରିଦେବାରୁ ସେ ରାଗରେ ପ୍ରଧାନମନ୍ତ୍ରୀତ୍ୱ ପଦ ତ୍ୟାଗକରିଥିଲେ । ଭିକ୍ଟର ଇମାନ୍ୟୁଏଲ କାଭୁରଙ୍କର ପ୍ରସ୍ତାବକୁ ଅଗ୍ରାହ୍ୟକରିଦେଇ ପ୍ରମାଣ କରିଦେଇଥିଲେ ଯେ, ସେହି ସଙ୍କଟ ମୁହୂର୍ତ୍ତରେ ତାଙ୍କର ବିଚାର-ବୁଦ୍ଧି ତାଙ୍କ ପ୍ରତିଭାବାନ୍ ପ୍ରଧାନମନ୍ତ୍ରୀ ଅପେକ୍ଷା ଅଧିକ ଯୁକ୍ତିସଙ୍ଗତ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ଅବିବେକୀ କାର୍ଯ୍ୟପନ୍ଥା ଅବଲମ୍ବନ କରି ସମସ୍ତ ବିପନ୍ନକରିବା ଅପେକ୍ଷା ଜଣକୁ ଯାହା ମିଳୁଛି, ତାହା ଗ୍ରହଣ କରିବା ଏବଂ ଭବିଷ୍ୟତ ସୁଯୋଗକୁ ଅପେକ୍ଷାକରିବା ଅଧିକ ବୁଦ୍ଧିମାନର କାର୍ଯ୍ୟ ହେବ । ତା'ଛଡ଼ା ସେ ବୁଝିପାରିଥିଲେ ଯେ, ଇଟାଲୀର ଭବିଷ୍ୟତ ନିର୍ଦ୍ଧାରଣ କୂଟନୀତିଜ୍ଞମାନଙ୍କ ହାତରୁ ସାଧାରଣ ଲୋକମାନଙ୍କ ହାତକୁ ଚାଲିଯାଇଛି । ଯେଉଁସବୁ ଘଟଣା ପରେ ପରେ ଘଟିଥିଲା ତାହା ପ୍ରକୃତରେ ଭିକ୍ଟର ଇମାନ୍ୟୁଏଲଙ୍କର

ମାନସିକ ସମତାର ପରିଚୟ ଦେଇଥିଲା । ତାଙ୍କର ସ୍ୱାଧୀନ ବିଚାରବୁଦ୍ଧି ଓ ଉତ୍ତମ ଅଭିପ୍ରାୟ ଇଟାଲୀର ସ୍ୱାଧୀନତା ଓ ଏକତ୍ରୀକରଣ ପ୍ରତି ତାଙ୍କର ସ୍ଥାୟୀ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଲୋମ୍ବାର୍ଡ଼ି ଲାଭକରିବା ଫଳରେ ପିଡମଣ୍ଟ-ସାର୍ଡିନିଆ ରାଜ୍ୟ ବୃଦ୍ଧି ପାଇଲା ଏବଂ ଇଟାଲୀର ସ୍ୱାଧୀନତା ଓ ଐକ୍ୟସାଧନ ଦିଗରେ ପ୍ରଥମ ପଦକ୍ଷେପ ନିଆଗଲା ।

ନେପୋଲିୟନ୍ ଇଟାଲୀ ପାଇଁ ଯାହାସବୁ ପରିକଳ୍ପନା କରିଥିଲେ ତାହା କାର୍ଯ୍ୟରେ ପରିଣତ କରିପାରିନଥିଲେ, ତଥାପି ପିଡ୍‌ମଣ୍ଟ-ସାର୍ଡିନିଆକୁ ଲୋମ୍ବାର୍ଡ଼ି ହସ୍ତାନ୍ତର କରିବା ଫଳରେ ସେ ଇଟାଲୀର ଅତ୍ୟାବଶ୍ୟକୀୟ ସେବା କରିପାରିଥିଲେ । ସେ ନିଜେ ସ୍ୱୀକାର କରିଥିଲେ ଯେ, ଇଟାଲୀପାଇଁ ତାଙ୍କ କାର୍ଯ୍ୟକ୍ରମ ସେ ପୂର୍ଣ୍ଣପରି ପାଳନ କରିନଥିବାରୁ ଫ୍ରାନ୍ସ ସହିତ ସ୍ୟାଭୟ ଓ ନାଇସ୍‌ର ମିଶ୍ରଣବାର୍ତ୍ତା ରଦ୍ଦ ହୋଇଯାଇଛି ।

ଅବଶ୍ୟ ଭିଲ୍ଲାଫ୍ରାଙ୍କା ଯୁଦ୍ଧବିରତି ଚୁକ୍ତିର ସର୍ତ୍ତଗୁଡ଼ିକ ୧୮୫୯ ମସିହା ନଭେମ୍ବର ୧୦ ତାରିଖ ଦିନ ଜୁରିଚ୍ ଚୁକ୍ତି (Treaty of Zurich)ରେ ସନ୍ନିବିଷ୍ଟ କରାଯାଇଥିଲା । ଇଟାଲୀର ସ୍ୱାଧୀନତା ଏବଂ ଐକ୍ୟସାଧନ ଦିଗରେ କର୍ମିକଗତି ଆରମ୍ଭ ହେବାର ଅଳ୍ପ କେତେ ଦିନ ମଧ୍ୟରେ ତାହା ଫରାସୀ ସମ୍ରାଟ ଓ ଅଷ୍ଟ୍ରିୟାର ସମ୍ରାଟଙ୍କ ଦ୍ୱାରା ସମ୍ପୂର୍ଣ୍ଣରୂପେ ବନ୍ଦ କରିଦିଆଯାଇଥିଲା । ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ଲୋମ୍ବାର୍ଡିର ମିଶ୍ରଣ ସର୍ତ୍ତଟିକୁ ବାଦ ଦେଲେ, ଜୁରିଚ୍ ଚୁକ୍ତିର ଅନ୍ୟ ସର୍ତ୍ତଗୁଡ଼ିକ ଯେ କଦାପି କାର୍ଯ୍ୟରେ ପରିଣତ ହୋଇପାରିବ ନାହିଁ ତାହା ବିଧି ନିର୍ଦ୍ଧାରିତ ଥିଲା । କାଭୁର ଯାହା ଦେଖିବାକୁ ସକ୍ଷମ ହୋଇ ନ ଥିଲେ ଭିକ୍ଟର ଇମାନ୍ୟୁଏଲ ତାହା ଦେଖିପାରିଥିଲେ । ସେ ଦେଖିପାରିଥିଲେ ଯେ, ଇଟାଲୀର ସ୍ୱାଧୀନତା ଓ ଏକତ୍ରୀକରଣ ଅଧ୍ୟାୟର ସମାପ୍ତି ଘଟିନାହିଁ । ତେଣୁ ତାହାର ଅଧିକ ଅଗ୍ରଗତି କରାଯାଇ ପାରେ । କେନ୍ଦ୍ର-ଇଟାଲୀକୁ ବୃଦ୍ଧିପ୍ରାପ୍ତ ପିଡ୍‌ମଣ୍ଟ-ସାର୍ଡିନିଆ ରାଜ୍ୟ ସହିତ ସଂଯୁକ୍ତ ହେବା ପାଇଁ ତାକୁ ମଧ୍ୟ ପ୍ରଲୁବ୍ଧ କରାଯାଇପାରେ ।

ଇଟାଲୀର ସ୍ୱାଧୀନତା ଓ ଐକ୍ୟର ପରବର୍ତ୍ତୀ ପର୍ଯ୍ୟାୟ ହେଲା, ପାର୍ମା, ମୋଡେନା, ଟସ୍‌କାନି, ରୋମାନା ପ୍ରଭୃତି କେନ୍ଦ୍ର-ଇଟାଲୀସ୍ଥ ରାଜ୍ୟଗୁଡ଼ିକ ସ୍ୱେଚ୍ଛାରେ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ଚାହିଁଥିଲେ । ଏହିସବୁ ରାଜ୍ୟର ଜନଗଣ ସେମାନଙ୍କର ଅତ୍ୟାଚାରୀ ଶାସକମାନଙ୍କୁ ବିତାଡ଼ିତ କରି ଅସ୍ଥାୟୀ ସରକାରମାନ ଗଢ଼ିଥିଲେ । ତା'ଛଡ଼ା ବିପ୍ଳବୀ ନେତାମାନଙ୍କର ଆହ୍ୱାନରେ ସଭାମାନ ବସିଥିଲା ଏବଂ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତି ହେବାପାଇଁ ୧୮୫୯ ମସିହା ଅଗଷ୍ଟ ମାସରେ ଅତ୍ୟଧିକ ଭୋଟରେ ସେଥିରେ ନିଷ୍ପତ୍ତି ନିଆଯାଇଥିଲା । ତେଣୁ ଏହି କେନ୍ଦ୍ର-ଇଟାଲୀସ୍ଥ ରାଜ୍ୟଗୁଡ଼ିକ ଭିଲ୍ଲାଫ୍ରାଙ୍କାରେ ଦୁଇ ସମ୍ରାଟଙ୍କ ଦ୍ୱାରା ଗୃହୀତ ନିଷ୍ପତ୍ତି ପ୍ରତି ଅବଜ୍ଞା ପ୍ରଦର୍ଶନ କରିଥିଲେ । ଏହି ନିଷ୍ପତ୍ତି ଅନୁସାରେ କେନ୍ଦ୍ର-ଇଟାଲୀସ୍ଥ ରାଜ୍ୟମାନଙ୍କର ଶାସକମାନଙ୍କୁ ପୁନଃ ସ୍ଥାପିତ କରାଯିବାର ସ୍ଥିର କରା-ଯାଇଥିଲା । ପିଡ୍‌ମଣ୍ଟ-ସାର୍ଡିନିଆ କିନ୍ତୁ ନେପୋଲିୟନ୍ ଏ ନିଷ୍ପତ୍ତିର ବିରୋଧ କରୁଥିବା ଜାଣି ଏବଂ ତାଙ୍କୁ ଅପମାନ ଦେବାକୁ ଭୟକରି କେନ୍ଦ୍ର-ଇଟାଲୀସ୍ଥ ରାଜ୍ୟମାନଙ୍କର ତାହା

ସହିତ ମିଶ୍ରଣ ପ୍ରସ୍ତାବକୁ ସେତେବେଳେ ପ୍ରତ୍ୟାଖ୍ୟାନ କରିଦେବାକୁ ବାଧ୍ୟ ହୋଇଥିଲି । ତାର ଆଶଙ୍କା ହେଲା ଯେ, ଯଦି ଏ ପ୍ରସ୍ତାବ ଗ୍ରହଣ କରିନିଆଯାଏ, ତାହାହେଲେ ନେପୋଲିୟନ୍ କ୍ଷୁବ୍ଧ ହୋଇ କାଲେ ପିଡ୍‌ମଣ୍ଟ-ସାର୍ଡିନିୟାକୁ ଅଷ୍ଟ୍ରିୟା ଆକ୍ରମଣର ଏକଲି ମୁକାବିଲା କରିବାକୁ ଛାଡ଼ିଦେଇ ଇଟାଲୀରୁ ପୁରାପୁରି ଅପସରି ଯିବେ । କିନ୍ତୁ ପିଡ୍‌ମଣ୍ଟ-ସାର୍ଡିନିୟା କେନ୍ଦ୍ର-ଇଟାଲୀୟ ରାଜ୍ୟମାନଙ୍କୁ ତା' ସହିତ ସଂଯୁକ୍ତ ହେବା ବିଷୟରେ ଦୃଢ଼ ରହିବା ପାଇଁ ସେମାନଙ୍କୁ ବେସରକାରୀ ଭାବରେ ଉତ୍ସାହିତ କରିଥିଲି ।

ପ୍ରକୃତରେ କେନ୍ଦ୍ର-ଇଟାଲୀୟ ରାଜ୍ୟଗୁଡ଼ିକ ସେମାନଙ୍କର ନିଷ୍ପତ୍ତିରେ ଅଟଳ ରହିଥିଲେ । ଏକଥା ସ୍ପଷ୍ଟ ହୋଇଗଲା ଯେ ପୂର୍ବ ଶାସକମାନଙ୍କୁ କେବଳ ବଳ ପ୍ରୟୋଗ ଦ୍ୱାରା ନିଜ ନିଜ ରାଜ୍ୟରେ ପୁନଃ ସ୍ଥାପିତ କରାଯାଇ ପାରିବ; କିନ୍ତୁ ନେପୋଲିୟନ୍ ପ୍ରତିଶ୍ରୁତି ଦେଇଥିଲେ ଯେ, ଫ୍ରାନ୍ସ କିମ୍ବା ଅଷ୍ଟ୍ରିୟା କେହି ସେମାନଙ୍କର ପୁନଃ ସ୍ଥାପନ ଉଦ୍ଦେଶ୍ୟରେ ବଳ ପ୍ରୟୋଗ କରିବେନାହିଁ । କେତେ ମାସ ଧରି ଏହି ଅସ୍ୱାଭାବିକ ପରିସ୍ଥିତି ବଳାୟ ରହିଲା ଏବଂ ପ୍ରାୟ ସମସ୍ତଙ୍କୁ ହଇରାଣ କରିଦେଲା । ଧୀରେ ଧୀରେ ଏହି ଗୋଳମାଳିଆ ପରିସ୍ଥିତି ସ୍ପଷ୍ଟ ହୋଇଗଲା । ନେପୋଲିୟନ୍ ଦେଖିଲେ ଯେ, କେନ୍ଦ୍ର-ଇଟାଲୀୟ ରାଜ୍ୟଗୁଡ଼ିକର ଲୋକମାନଙ୍କ ଉପରେ ସେମାନଙ୍କ ଶାସକମାନଙ୍କର ପୁନଃ ସ୍ଥାପନ ଭାର ଛାଡ଼ିଦିଆଗଲେ ସେମାନେ କଦାପି ସେମାନଙ୍କୁ ପୁନଃସ୍ଥାପିତ କରିବେ ନାହିଁ, ବରଂ ସେମାନେ ପିଡ୍‌ମଣ୍ଟ ସାର୍ଡିନିୟା ସହିତ ସଂଯୁକ୍ତ ହେବାପାଇଁ ଜିଦ୍‌ଧରି ବସିବେ । ଅଧିକନ୍ତୁ ନେପୋଲିୟନ୍ ହୃଦୟଙ୍ଗମ କରି ପାରିଥିଲେ ଯେ, ବଳ ପ୍ରୟୋଗ ବିନା ପୋପଙ୍କ ଅଧ୍ୟକ୍ଷତାରେ ଇଟାଲୀୟ ରାଷ୍ଟ୍ରସଙ୍ଘ ପ୍ରତିଷ୍ଠା କରାଯାଇ ପାରିବନାହିଁ ଏବଂ ଶାସକମାନଙ୍କର ସ୍ୱ-ସ୍ୱ ରାଜ୍ୟରେ ପୁନଃ ସ୍ଥାପନ ଅଷ୍ଟ୍ରିୟା ପାଇଁ ସୁବିଧାଜନକ ହେଲେ ମଧ୍ୟ ଫ୍ରାନ୍ସ ପାଇଁ ଆଦୌ ସୁବିଧାଜନକ ହେବନାହିଁ । ସେ ଚାହୁଁ ନଥିଲେ ଯେ, ଅଷ୍ଟ୍ରିୟା ପୁନର୍ବାର ଇଟାଲୀୟ ଉପଦ୍ୱୀପରେ ପ୍ରାଧାନ୍ୟ ବିସ୍ତାର କରୁ । ଯାହାହେଉ, ଅନ୍ୟ କେତେଗୁଡ଼ିଏ ଘଟଣା ଘଟିବା ଫଳରେ ସମସ୍ୟାର ସମାଧାନର ବାଟ ଫିଟିଲା । ଇଂଲଣ୍ଡରେ ୧୮୫୯ ମସିହା ଜୁନ୍ ମାସର ନିର୍ବାଚନ ଫଳରେ ଯେଉଁ ମନ୍ତ୍ରିମଣ୍ଡଳ ଦେଶର କାର୍ଯ୍ୟଭାର ଗ୍ରହଣ କଲେ ତାହା ଇଟାଲୀର ଐକ୍ୟ ପ୍ରତି ବନ୍ଧୁଭାବାପନ୍ନ ହେଲେ । ଇଂରେଜ ସରକାର କେନ୍ଦ୍ର-ଇଟାଲୀର ଲୋକମାନଙ୍କ ଅଭିଳାଷକୁ ଦବେଇଦେବା ଏବଂ ସେଠାକାର ଶାସକମାନଙ୍କୁ ପୁନଃ ସ୍ଥାପିତ କରିବା ପାଇଁ ଫରାସୀ ବା ଅଷ୍ଟ୍ରିୟା ସୈନ୍ୟଦଳ ବ୍ୟବହାର କରିବା ବିରୁଦ୍ଧରେ ଦୃଢ଼ ପ୍ରତିବାଦ କରିଥିଲେ । ଇଟାଲୀୟମାନଙ୍କର ସ୍ୱାଧୀନତା ଏବଂ ଏକତ୍ରୀକରଣ ଆନ୍ଦୋଳନ ପ୍ରତି ଏହା ଥିଲା ଇଂଲଣ୍ଡର ମହାନ ଅବଦାନ । ବାସ୍ତବରେ ଇଂରେଜ ସରକାର କେନ୍ଦ୍ର-ଇଟାଲୀ ବ୍ୟାପାରରେ ଫ୍ରାନ୍ସ ବା ଅଷ୍ଟ୍ରିୟାର ହସ୍ତକ୍ଷେପ ଚାହୁଁ ନଥିଲେ । ଏହି ସମ୍ପର୍କରେ ଇଂଲଣ୍ଡର ମନ୍ତ୍ରୀ ପାମରଷ୍ଟୋନ କହିଥିଲେ, "ଇଂରେଜମାନଙ୍କର, ଫରାସୀମାନଙ୍କର, ବେଲଜିଆନ୍‌ମାନଙ୍କର ବା ସ୍ୱିଡୀସ୍‌ମାନଙ୍କର ଯେପରି ସେମାନଙ୍କର ଶାସକମାନଙ୍କୁ ବଦଳାଇବାର ଅଧିକାର ଅଛି, ତତଗୁଡ଼ିକ (ଛୋଟ ଛୋଟ ରାଜ୍ୟଗୁଡ଼ିକ)ର ଶାସକମାନଙ୍କୁ ସେଠାକାର ଲୋକମାନଙ୍କର

ବଦଳାଇବାର ସେହିପରି ଅଧିକାର ଅଛି । (ପିଡ୍‌ମଣ୍ଟ-ସାର୍ଡିନିଆ) ସହିତ ଡଚିଗୁଡ଼ିକର ମିଶ୍ରଣ ଇଟାଲୀର ଅପରିମେୟ ହିତସାଧନ କରିବ ।" (Lord Palmerstone said, "The people of the Duchies have as much right to change their sovereigns as the English people or the French or the Belgian or the Swedish. The annexation of the Duchies to Piedmont will be an unfathomable good to Italy." )

ଇଟାଲୀୟ ସମସ୍ୟାର ସମାଧାନ ପାଇଁ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା, ଛ'ମାସ ଅନୁପସ୍ଥିତି ପରେ କାଭୁରଙ୍କର ୧୮୬୦ ମସିହା ଜାନୁୟାରୀରେ ପିଡ୍‌ମଣ୍ଟ-ସାର୍ଡିନିଆ ଶାସନକୁ ପ୍ରତ୍ୟାବର୍ତ୍ତନ । କାଭୁର ଦେଖିଲେ ଯେ, ପିଡ୍‌ମଣ୍ଟ-ସାର୍ଡିନିଆ ସହିତ କେନ୍ଦ୍ର-ଇଟାଲୀର ସମ୍ମିଶ୍ରଣ ନେପୋଲିୟନ୍‌ଙ୍କ ସମ୍ମତି ମିଳିଲେ ଯାଇ କାର୍ଯ୍ୟରେ ପରିଣତ କରାଯାଇ ପାରିବ । ସେହି ସମ୍ମତି ପାଇବାପାଇଁ ତାଙ୍କ ସହିତ ଏକ ଚୁକ୍ତି କରିବାକୁ ପଡ଼ିବ । ସେ ଅନୁଭବ କରିଥିଲେ ଯେ, ପିଡ୍‌ମଣ୍ଟ-ସାର୍ଡିନିଆ ସହିତ କେନ୍ଦ୍ର ଇଟାଲୀୟ ରାଜ୍ୟମାନଙ୍କର ମିଶ୍ରଣ ପାଇଁ ନେପୋଲିୟନ୍‌ଙ୍କୁ କିଛି ପୁରସ୍କାର ଦେବାକୁ ପଡ଼ିବ ଏବଂ ସେହି ପୁରସ୍କାର ହେଲା, ସ୍ୟାଭୟ ଓ ନାଇସ୍ ତାଙ୍କୁ ହସ୍ତାନ୍ତର କରିବା । ନେପୋଲିୟନ୍ ପ୍ଲୋମବାୟାରେସ୍ ଚୁକ୍ତି ପୁରାପୁରି ପାଳନ କରିନଥିବାରୁ ସେ ସ୍ୟାଭୟ ଓ ନାଇସ୍ ପାଇବାପାଇଁ ଆଉ ଦାବି ଉପସ୍ଥାପିତ କରିନଥିଲେ । ଫ୍ରାନ୍ସର ଦକ୍ଷିଣ-ପୂର୍ବ ସୀମାରେ ଏକ ଶକ୍ତିଶାଳୀ ରାଜ୍ୟ ସୃଷ୍ଟିର କ୍ଷତିପୂରଣ ସ୍ୱରୂପ ସେ ବର୍ତ୍ତମାନ ସେ ଦାବି ଉପସ୍ଥାପିତ କରିଥିଲେ; କାରଣ ସେ ବିଚାରିଥିଲେ ଯେ ତାଙ୍କ ରାଜ୍ୟର ସୀମା ବିସ୍ତାର କରିବା ଫଳରେ ତାଙ୍କ ରାଜ୍ୟରେ ତାଙ୍କ ଇଟାଲୀୟ ନୀତି ବିରୁଦ୍ଧରେ ହେଉଥିବା ସମାଲୋଚନାର ତୀବ୍ରତାକୁ ବହୁପରିମାଣରେ ହ୍ରାସ କରାଯାଇ ପାରିବ । ଶେଷରେ ଉଭୟ ଫ୍ରାନ୍ସ ଓ ପିଡ୍‌ମଣ୍ଟ-ସାର୍ଡିନିଆ ରାଜି ହୋଇଥିଲେ ଯେ କେନ୍ଦ୍ର-ଇଟାଲୀର ରାଜ୍ୟଗୁଡ଼ିକ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ଚାହାଁନ୍ତି କି ନାହିଁ ତାହା ଜାଣିବାପାଇଁ ସେହି ରାଜ୍ୟଗୁଡ଼ିକରେ ଗଣଭୋଟ୍ ନିଆଯିବ । ସେହିପରି ସ୍ୟାଭୟ ନାଇସ୍ ଫ୍ରାନ୍ସ ସହିତ ସଂଯୁକ୍ତ ହେବାକୁ ଚାହାଁନ୍ତି କି ନାହିଁ ଜାଣିବା ଉଦ୍ଦେଶ୍ୟରେ ସେହି ଦୁଇସ୍ଥାନରେ ମଧ୍ୟ ଗଣଭୋଟ ନିଆଯିବ । ତେଣୁ ଲୋକମାନଙ୍କର ଭାଗ୍ୟ ନିୟନ୍ତ୍ରଣ କରିବାର ଅଧିକାର ଅଛି—ଏହି ନୀତିକୁ ନିୟମାନୁଯାୟୀ ସମର୍ଥନ କରାଯାଇଥିଲା । ଗଣଭୋଟ ମାଧ୍ୟମରେ ଯେଉଁ ନିଷ୍ପତ୍ତି ଆଶା କରାଯାଉଥିଲା ତାହା ହିଁ ହେଲା । ମିଶ୍ରଣ ସପକ୍ଷରେ ଭୋଟ ପ୍ରାୟ ସର୍ବସମ୍ମତ ହୋଇଥିଲା ।

ପାର୍ମା, ମୋଡେନା, ଟସ୍‌କାନି ଏବଂ ରୋମାନା ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହୋଇଥିଲେ ଏବଂ ତା' ପୂର୍ବରୁ ପିଡ୍‌ମଣ୍ଟ-ସାର୍ଡିନିଆ ଲୋମ୍ବାର୍ଡି ଲାଭକରି ସାରିଥିଲା । ଏହା ହେଲା ଇଟାଲୀର ସ୍ୱାଧୀନତା ଏବଂ ଐକ୍ୟ ସାଧନ ଦିଗରେ ଦ୍ୱିତୀୟ ବୃହତ୍ ପଦକ୍ଷେପ ।

ଭିନିସିଆକୁ ଗ୍ରହଣ କରି ଇଟାଲୀ ଉତ୍ତରାଞ୍ଚଳର ଏକତ୍ରୀକରଣ କରାଯାଇଥିଲା ଏବଂ ତାକୁ ବିଦେଶୀ ନିୟନ୍ତ୍ରଣରୁ ମୁକ୍ତ କରାଯାଇଥିଲା ।

ପିଡ୍‌ମଣ୍ଟ-ସାର୍ଡିନିଆକୁ ତାର ବିଜୟପାଇଁ ମୂଲ୍ୟ ଦେବାକୁ ପଡ଼ିଥିଲା । ସେହି ମୂଲ୍ୟ ହେଲା, ଫ୍ରାନ୍‌ସକୁ ସାତଲକ୍ଷ ଲୋକ ବସବାସ କରୁଥିବା ସାଭୟ ଓ ନାଇସର ହସ୍ତାନ୍ତର-କରଣ । ସାଭୟ ଥିଲା, ପିଡ୍‌ମଣ୍ଟ-ସାର୍ଡିନିଆରେ ରାଜତ୍ୱକରୁଥିବା ରାଜବଂଶର ଉତ୍ପତ୍ତିସ୍ଥଳ । ତେଣୁ ଏହାକୁ ପରିତ୍ୟାଗ କରିବା ବଡ଼ ଅପମାନଜନକ ଓ କ୍ଷୋଭର ବିଷୟ ହୋଇଥିଲା; କିନ୍ତୁ କାଭୁରଙ୍କ ମତରେ ଏହା ଥିଲା ଅବଶ୍ୟମ୍ଭାବୀ । ନେପୋଲିୟନ୍‌ଙ୍କୁ ନାଇସ୍ ଦିଆଯାଇ-ଥିବାରୁ ନାଇସ୍‌ର ନାଗରିକ ଗ୍ୟାରିବାଲ୍‌ଡି କାଭୁରଙ୍କୁ ପାର୍ଲାମେଣ୍ଟରେ ତୀବ୍ର ଆକ୍ରମଣ କରିଥିଲେ । ସେ କହିଥିଲେ, "ଆପଣ ମୋତେ ମୋର ଜନ୍ମଭୂମିରେ ବିଦେଶୀ କରିଦେଇଛନ୍ତି ।" କାଭୁର ଏହାର ଉତ୍ତରଦେବାକୁ ଯାଇ କହିଥିଲେ, "ଯେଉଁ ଘଟଣା ଆମ୍ଭ ଦୁହିଁଙ୍କ ମଧ୍ୟରେ ଏହି ମତଭେଦ ସୃଷ୍ଟି କରିଛୁ, ତାହା ମୋ ଜୀବନର ସବୁଠାରୁ ଅଧିକ ଯନ୍ତ୍ରଣାଦାୟକ କର୍ତ୍ତବ୍ୟ ଥିଲା···ଗ୍ୟାରିବାଲ୍‌ଡି ଯଦି ମୋତେ କ୍ଷମାକରିବାକୁ ମନାକରି ଦିଅନ୍ତି ମୁଁ ତାଙ୍କୁ ସେଥିପାଇଁ ଆଦୌ ଭର୍ତ୍ସନା କରିବିନାହିଁ ।" କିନ୍ତୁ ପାର୍ଲାମେଣ୍ଟ କାଭୁରଙ୍କ କାର୍ଯ୍ୟକୁ ପୂର୍ଣ୍ଣଭାବରେ ସମର୍ଥନ କରିଥିଲା ଏବଂ ସାଭୟ ଓ ନାଇସର ହସ୍ତାନ୍ତର-କରଣ ଅତ୍ୟଧିକ ଭୋଟରେ ଅନୁମୋଦିତ ହୋଇଥିଲା । କିଛିଦିନ ପରେ ସାଭୟ ଓ ନାଇସରେ ଗଣଭୋଟ ନିଆଯାଇଥିଲା ଏବଂ ଉଭୟ ସ୍ଥାନରେ ଫ୍ରାନ୍‌ସ ସହିତ ସଂଯୁକ୍ତ ହେବାପାଇଁ ପ୍ରାୟ ସର୍ବସମ୍ମତ ଭୋଟ ମିଳିଥିଲା । ଏହି ସଂଯୋଜନ ଫଳରେ ନେପୋଲିୟନଙ୍କଠାରୁ ଇଂଲଣ୍ଡ ସମ୍ପୂର୍ଣ୍ଣଭାବେ ବିଚ୍ଛିନ୍ନ ହୋଇଯାଇଥିଲା । ଇଂଲଣ୍ଡ ତାହାର ଶକ୍ତିଶାଳୀ ପ୍ରତିବେଶୀ ଅଧିକ ଶକ୍ତିଶାଳୀ ହେବା ଇଚ୍ଛା କରିନଥିଲା । କାଭୁର କପରି ପରିସ୍ଥିତିର ସୁବିଧାଗ୍ରହଣ କରିଥିଲେ ତାହା ଫରାସୀ ରାଷ୍ଟ୍ରଦୂତ କହିଥିବା ତାଙ୍କ ମନ୍ତବ୍ୟରେ ପ୍ରକାଶ କରାଯାଇଛି—"ବର୍ତ୍ତମାନ ଆପଣମାନେ ଆମ୍ଭମାନଙ୍କର ଅପରାଧ-ସଙ୍ଗୀ ।" ("Now you are our accomplices.") କାଭୁର ଏହି ଉକ୍ତିର ବ୍ୟାଖ୍ୟା କରି-ନଥିଲେ ମଧ୍ୟ ପ୍ରତ୍ୟେକ ଲୋକ ଜାଣିଥିଲେ ଯେ, ସେ ତାଙ୍କ ଲକ୍ଷ୍ୟ ପୁରାପୁରି ହାସଲ କରିନାହାନ୍ତି ଏବଂ ତୃତୀୟ ନେପୋଲିୟନ୍‌ଙ୍କ ସାହାଯ୍ୟର ଆବଶ୍ୟକତା ରହିଛି ।

ଉକ୍ତ ଘଟଣାବହୁଳ ବର୍ଷରେ ଅନେକ କିଛି କରାଯାଇଥିଲେ ମଧ୍ୟ ଇଟାଲୀର ଏକତ୍ରୀକରଣ ସମ୍ପନ୍ନ କରିବାପାଇଁ ଅନେକ କିଛି ବାକୀ ରହିଛି । ଭିନିସିଆ, ରୋମ୍ ସହିତ ପୋପ୍‌ଙ୍କ ରାଜ୍ୟର ଏକ ବଡ଼ ଅଂଶ, ନେପଲସ୍ ରାଜ୍ୟ (ଦୁଇ ସିସିଲି ରାଜ୍ୟ) ଅର୍ଥାତ୍ ଇଟାଲୀୟ ଉପଦ୍ୱୀପର ଅର୍ଦ୍ଧେକ ଅଞ୍ଚଳ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଯୁକ୍ତ ନ ହୋଇ ବାହାରେ ରହିଥିଲା । ଯାହାହେଉ, ନେପଲ୍‌ସ୍ ରାଜ୍ୟରେ ଯେଉଁ ଘଟଣାସବୁ ଘଟିଲା, ତାହା ଇଟାଲୀର ସ୍ୱାଧୀନତା ଓ ଏକତ୍ରୀକରଣ ଆନ୍ଦୋଳନକୁ ଆହୁରି କେତେଦୂର ଆଗେଇ ନେଇଥିଲା । ୧୮୬୦ ସାଲ ଆରମ୍ଭରେ ସିସିଲୀୟମାନେ ସେମାନଙ୍କର ନୂତନ ରାଜା ଦ୍ୱିତୀୟ ଫ୍ରାନ୍‌ସିସ୍‌ଙ୍କ

ନିରଙ୍କୁଶ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଏହି ବିଦ୍ରୋହ ଇଟାଲୀର ଜନପ୍ରିୟ ସାମରିକ ନେତା ଗିଉସେପ୍ ଗ୍ୟାରିବାଲଡିଙ୍କୁ ଦେଶର ହିତଦୃଷ୍ଟିରୁ ଅଦ୍ଭୁତ ସାହସିକ କାର୍ଯ୍ୟ ଏବଂ ସ୍ମରଣୀୟ ସେବା କରିବାକୁ ସୁଯୋଗ ଦେଇଥିଲା ।

## ଗିଉସେପ୍ ଗ୍ୟାରିବାଲ୍ଡିଙ୍କ ଚରିତ୍ର ଓ ଜୀବନୀ

ସେହି ସୁନାମଧନ୍ୟ ଜନପ୍ରିୟ ସାମରିକ ନେତା ଗ୍ୟାରିବାଲଡି ୧୮୦୭ ମସିହାରେ ଇଟାଲୀର ନାଇସ୍ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ତେଣୁ ସେ ବୟସରେ ମ୍ୟାଜିନିଙ୍କଠାରୁ ଦୁଇବର୍ଷ ସାନ ଓ କାଭୁରଙ୍କଠାରୁ ତିନିବର୍ଷ ବଡ଼ ଥିଲେ । ତାଙ୍କର ପିତାମାତା ତାଙ୍କୁ ଧର୍ମଯାଜକ ହେବାପାଇଁ ପୂର୍ବରୁ ଠିକ୍ କରିଥିଲେ ମଧ୍ୟ ସେ ସମୁଦ୍ରକୁ ଅଧିକ ପସନ୍ଦ କରିଥିଲେ ଏବଂ କେତେବର୍ଷ ଯାଏ ଭ୍ରମଣକାରୀ ଓ ଦୁଃସାହସୀ ନାବିକର ଜୀବନ ଯାପନ କରିଥିଲେ । ସେ ଅଚିରେ ତରୁଣ ଇଟାଲୀ (Young Italy) ଦଳରେ ଯୋଗଦେଇଥିଲେ । ତାଙ୍କର ସାମରିକ ଅନୁଭୂତି ମୁଖ୍ୟତଃ ଅନିୟମିତ ଗରିଲାଯୁଦ୍ଧରେ ଥିଲା । ସେ ମ୍ୟାଜିନିଙ୍କଦ୍ୱାରା ୧୮୩୪ ମସିହାରେ ସ୍ୟାଭୟରେ ସଂଗଠିତ ହୋଇଥିବା ବିଦ୍ରୋହରେ ଯୋଗଦେଇଥିଲେ; କିନ୍ତୁ ଏ ବିଦ୍ରୋହ ବିଫଳ ହୋଇଥିଲା । ଫଳରେ ଗ୍ୟାରିବାଲ୍ଡିଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଯାହାହେଉ, ସେ ଦକ୍ଷିଣ ଆମେରିକାକୁ ଖସି ପଳାଇଥିଲେ ଏବଂ ସେଠାରେ ୧୪ ବର୍ଷକାଳ ନିର୍ବାସିତର ଜୀବନଯାପନ କରିଥିଲେ । ସେ ଦକ୍ଷିଣ ଆମେରିକାରେ ପହଞ୍ଚି ଦେଖିଲେ ଯେ, ସେଠାରେ ଇଟାଲୀୟମାନେ ବହୁସଂଖ୍ୟାରେ ବସବାସ କରି ରହିଛନ୍ତି । ପ୍ରଥମେ ତାଙ୍କର ଜେନୋଆରୁ ପଳାଇଯାଇ ସେଠାରେ ନିର୍ବାସିତ ଜୀବନଯାପନ କରୁଥିବା ରେସେଟିଙ୍କ ସହିତ ମିତ୍ରତା ହେଲା । ରେସେଟି ତାଙ୍କୁ ଖଣ୍ଡେ ଜାହାଜ କିଣି ବ୍ୟବସାୟ କରିବାକୁ ପରାମର୍ଶ ଦେଇଥିଲେ ଏବଂ ନିଜେ ଗ୍ୟାରିବାଲ୍ଡିଙ୍କୁ ଜାହାଜ କିଣିବାପାଇଁ ସାହାଯ୍ୟ ଆକାରରେ କିଛି ଅର୍ଥ ଦେଇଥିଲେ । ଜାହାଜ କିଣିବାପାଇଁ ଅବଶିଷ୍ଟ ଅର୍ଥ ସେଠାରେ ବସବାସ କରୁଥିବା ଇଟାଲୀୟମାନେ ଦାନ କରିଥିଲେ । ଅବଶ୍ୟ ସେ ଖଣ୍ଡେ ଜାହାଜ କିଣି ବ୍ୟବସାୟ ଆରମ୍ଭକଲେ ଏବଂ ବ୍ୟବସାୟରୁ ଅର୍ଥଉପାର୍ଜନ କରି ଜୀବିକା ନିର୍ବାହ କଲେ; କିନ୍ତୁ ବ୍ୟବସାୟରେ ତାଙ୍କ ମନ ସନ୍ତୁଷ୍ଟ ହେଲନାହିଁ । କୌଣସି ଦୁଃସାହସିକ କାର୍ଯ୍ୟ କରି ସମ୍ମାନ ଅର୍ଜନକରିବାକୁ ସେ ମନ ବଳାଇ-ଥିଲେ । ଶେଷରେ ବ୍ୟବସାୟ ଛାଡ଼ି ରିଓଗ୍ରାଣ୍ଡି ସାଧାରଣତନ୍ତ୍ର ରାଷ୍ଟ୍ର ସୈନ୍ୟବାହିନୀରେ ସାଧାରଣ ସୈନିକ ହିସାବରେ ଯୋଗଦେଇଥିଲେ । ସେହି ସମୟରେ ସେହି ରାଷ୍ଟ୍ର, ବ୍ରାଜିଲ ସହିତ ଯୁଦ୍ଧରେ ବ୍ୟାପୃତ ଥିଲା । ରିଓଗ୍ରାଣ୍ଡି ଏକ କ୍ଷୁଦ୍ର ରାଷ୍ଟ୍ର ଏବଂ ତାହାର ନୌବାହିନୀ ନଥିଲା । ଗ୍ୟାରିବାଲ୍ଡି ବ୍ରାଜିଲ ଆକ୍ରମଣପାଇଁ ଯୁଦ୍ଧଜାହାଜ ପ୍ରସ୍ତୁତ କରିଥିଲେ ଏବଂ ଜାହାଜ ନେଇ ବ୍ରାଜିଲ ଉପରେ ଆକ୍ରମଣ କରିଥିଲେ । ସେ ଅଳ୍ପଦିନ ମଧ୍ୟରେ ଜଳଯୁଦ୍ଧରେ ଦକ୍ଷତା ହାସଲ କରିଥିଲେ । ତା'ଛଡ଼ା ସେ ଗରିଲାଯୁଦ୍ଧରେ ମଧ୍ୟ ଖୁବ୍ ନିପୁଣ ଥିଲେ ।

ଆର୍ଜେଣ୍ଟାଇନା ଓ ଉରୁଗୁଏ ମଧ୍ୟରେ ବହୁଦିନଧରି କଳହ ଲାଗିରହିଥିଲା । ହଠାତ୍ ଆର୍ଜେଣ୍ଟାଇନା ଉରୁଗୁଏ ଉପରେ ଆକ୍ରମଣ ଆରମ୍ଭ କରିଦେବାରୁ, ଉରୁଗୁଏ ସରକାର ଗ୍ରିଭସନ୍ତ୍ର ହୋଇ ଗ୍ୟାରିବାଲ୍ଡିଙ୍କ ସାହାଯ୍ୟ ମାଗିଥିଲେ । ଗ୍ୟାରିବାଲ୍ଡି ସେଥିରେ ରାଜି



( ଗଇସେପ୍ ଗ୍ୟାରିବାଲ୍ଡି )
ଲର୍ଡ଼ ରେଡେସଡେଲ ଛବିର ଆନୁକୂଲ୍ୟ

ହୋଇଥିଲେ । ସେ ଉରୁଗୁଏରେ ଏକ ନୌବହର ଗଠନ କରିବା ସଙ୍ଗେ ସଙ୍ଗେ ତାହାର ସୈନ୍ୟମାନଙ୍କୁ ମଧ୍ୟ ତାଲିମ ଦେଇଥିଲେ । ଉରୁଗୁଏର ରାଜଧାନୀ ମଣ୍ଟିଭିଡିଓରେ ଅନେକ

ଇଟାଲୀସ୍ଥ ଘରଦ୍ୱାର କରି ରହୁଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ରାଜନୈତିକ କାରଣରୁ ସ୍ୱଦେଶ ତ୍ୟାଗକରି ବିଦେଶରେ ବାସକରୁଥିଲେ । ଉରୁଗୁଏ ସରକାର ସେମାନଙ୍କୁ ଆଶ୍ରୟ ଦେଇଥିବାରୁ ସେମାନେ ତାହା ପ୍ରତି କୃତଜ୍ଞତାର ନିଦର୍ଶନ ସ୍ୱରୂପ ତାହାର ସୈନ୍ୟବାହିନୀରେ ଯୋଗଦେବାକୁ ଇଚ୍ଛାପ୍ରକାଶ କରିଥିଲେ । ତେଣୁ ଗ୍ୟାରିବାଲ୍ଡି ଅନାୟାସରେ ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ନେଇ ଏକ ଇଟାଲୀସ୍ଥ ସୈନ୍ୟଦଳ ଗଢ଼ିଥିଲେ । ଏମାନଙ୍କ ସାହାଯ୍ୟରେ ୧୮୪୩ ମସିହାରେ ସେ ମଣ୍ଟିଭିଡିଓକୁ ଶତ୍ରୁ ଆକ୍ରମଣରୁ ରକ୍ଷାକରିଥିଲେ । ପୁନର୍ବାର ୧୮୪୬ ମସିହାରେ ଶତ୍ରୁମାନେ ମଣ୍ଟିଭିଡିଓ ଆକ୍ରମଣ କରିବାରୁ, ଗ୍ୟାରିବାଲ୍ଡି ଇଟାଲୀୟ ସୈନ୍ୟଦଳର ନେତୃତ୍ୱ ନେଇ ସେମାନଙ୍କୁ ସେଠାରୁ ତଡ଼ିଦେଇଥିଲେ । ତେଣୁ ଗ୍ୟାରିବାଲ୍ଡି ଦକ୍ଷିଣ-ଆମେରିକାରେ ୧୪ ବର୍ଷକାଳ ନିର୍ବାସିତ ବ୍ୟକ୍ତିରୂପେ ବାସକରୁଥିଲାବେଳେ ସେ ଦକ୍ଷିଣ ଆମେରିକାସ୍ଥ ରାଜ୍ୟଗୁଡ଼ିକର ବହୁ ଯୁଦ୍ଧରେ ଭାଗନେଇ ନିଜ ବୀରତ୍ୱର ପରିଚୟ ଦେଇଥିଲେ । ତା'ଛଡ଼ା ସେ ଦକ୍ଷିଣ ଆମେରିକାର ରିଓଗ୍ରାଣ୍ଡିଠାରେ ରହୁଥିଲାବେଳେ ଅନିତାନାମ୍ନୀ ଏକ ସୁନ୍ଦରୀ ବିବାହିତା ଯୁବତୀଟିକୁ ଦେଖି ତାହା ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଅନିତା ମଧ୍ୟ ଗ୍ୟାରିବାଲ୍ଡିଙ୍କ ବୀରତ୍ୱର ପରିଚୟ ପାଇ ତାଙ୍କୁ ଭଲପାଇ ବସିଲେ । ସେହି ଦିନଠାରୁ ଅନିତା ତାଙ୍କର ଦୁଃଖ ସୁଖର ସାଥୀ ହୋଇଥିଲେ । ଅବଶ୍ୟ ଦୁଇବର୍ଷ ପରେ ମଣ୍ଟିଭିଡିଓଠାରେ ଗ୍ୟାରିବାଲ୍ଡି ଓ ଅନିତାଙ୍କ ମଧ୍ୟରେ ଆଇନ ଅନୁସାରେ ବିବାହ ସମ୍ପନ୍ନ ହୋଇଥିଲା । ଅନିତା ବଞ୍ଚିଥିବା ପର୍ଯ୍ୟନ୍ତ ସ୍ୱାମୀଙ୍କ ପାଖେ ପାଖେ ରହି ତାଙ୍କ ସହିତ ମିଶି ଶତ୍ରୁ ବିରୁଦ୍ଧରେ ଯୁଦ୍ଧକରିବା ବ୍ୟତୀତ ସ୍ୱାମୀଙ୍କୁ ବିପଦ ସମୟରେ ଦମ୍ଭ ଓ ସାହସ ଦେଉଥିଲେ ।

ମଣ୍ଟିଭିଡିଓ ଯୁଦ୍ଧ ଶେଷହେବାକ୍ଷଣି ଗ୍ୟାରିବାଲ୍ଡି ଇଟାଲୀକୁ ଫେରିଯିବାକୁ ଇଚ୍ଛା କରିଥିଲେ । ସେ ଦକ୍ଷିଣ ଆମେରିକାରେ ରହୁଥିବାବେଳେ ତରୁଣ ଇଟାଲୀ (Young Italy) ସଂଗଠନ ସହିତ ସମ୍ପର୍କ ରଖିଥିଲେ ଏବଂ ସେହି ସଂଗଠନ ଜରିଆରେ ଇଟାଲୀର ପରିସ୍ଥିତି ବିଷୟରେ ସବୁ ଖବର ପାଉଥିଲେ । ୧୮୪୮ ମସିହାରେ ଇଟାଲୀରେ ଜାତୀୟ ଆନ୍ଦୋଳନ ଆରମ୍ଭ ହୋଇଯିବାର ସମ୍ବାଦ ପାଇ ସେ କାଳବିଳମ୍ବ ନ କରି ମଣ୍ଟିଭିଡ଼ିଓ ଛାଡ଼ି ଇଟାଲୀ ଅଭିମୁଖେ ଯାତ୍ରା କରିଥିଲେ । ଏଥିମଧ୍ୟରେ 'ମଣ୍ଟିଭିଡିଓର ବୀର' (Hero of Montevideo) ହିସାବରେ ତାଙ୍କର ଯଶ ସାରା ଇଟାଲୀରେ ବ୍ୟାପିଯାଇଥିଲା । ସେ ଇଟାଲୀରେ ପହଞ୍ଚିଲାମାତ୍ରେ ହଜାର ହଜାର ଲୋକ ତାଙ୍କ ନେତୃତ୍ୱରେ ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାପାଇଁ ରୁଣ୍ଡ ହୋଇଥିଲେ । ଅଷ୍ଟ୍ରିୟା ବିରୁଦ୍ଧରେ ତାଙ୍କର ଅଭିଯାନ ବିଫଳ ହୋଇଥିଲା । ଗ୍ୟାରିବାଲ୍ଡି ୧୮୪୮ ମସିହା ଡିସେମ୍ବର ମାସରେ ରୋମ୍ ଯାଇଥିଲେ । ସେତେବେଳେ ରୋମ୍‌ରେ ବିଦ୍ରୋହ ଲାଗିରହିଥାଏ । ପୋପ୍ ନବମ ପିଅସ୍ ଦୋ-ଦୋପାଞ୍ଚ ନୀତି ଅବଲମ୍ବନ କରିଥିଲେ । ସେ ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ରୋମ୍‌ର ଜନସାଧାରଣଙ୍କର ସଂସ୍କାର ପ୍ରବର୍ତ୍ତନ ଦାବିକୁ ଗ୍ରହଣ କରିଥିଲେ ମଧ୍ୟ ସେ ଅଷ୍ଟ୍ରିୟା ବିରୁଦ୍ଧରେ ଯୁଦ୍ଧ କରିବାକୁ

ମନା କରିଦେଇଥିଲେ । ତାଙ୍କର ଏହି ପରସ୍ପର ବିରୋଧୀ ମନୋଭାବ ଯୋଗୁ ସେ ରୋମ୍ ଜନସାଧାରଣଙ୍କର ଆସ୍ଥା ହରାଇଥିଲେ । ରୋମ୍‌ର ଜନସାଧାରଣ ପୋପ୍ ପିଅସ୍‌ଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ୧୮୪୯ ମସିହା ଫେବୃୟାରୀ ମାସରେ ରୋମ୍‌ର ବିଧାନ-ପରିଷଦର ବୈଠକ ବସିଥିଲା ଏବଂ ସେଠାରେ ଗ୍ୟାରିବାଲ୍‌ଡି ରୋମ୍ ଏକ ସାଧାରଣତନ୍ତ୍ର ରାଷ୍ଟ୍ର ହେଉ ବୋଲି ପ୍ରସ୍ତାବ ଅଗତ କରିଥିଲେ । ଏହି ପ୍ରସ୍ତାବ ଗୃହୀତ ହୋଇଥିଲା । ରୋମରେ ସାଧାରଣତନ୍ତ୍ର ରାଷ୍ଟ୍ର ଗଢ଼ାଯିବା ପରେ ମ୍ୟାଜିନି କ୍ଷମତାକୁ ଆସିଲେ । ପୋପ୍ ରୋମରୁ ପଳାୟନ କରି ଇଉରୋପୀୟ ଶକ୍ତିମାନଙ୍କର ସାହାଯ୍ୟଭିକ୍ଷା କରିଥିଲେ । ମ୍ୟାଜିନି ସାଧାରଣତନ୍ତ୍ର ରାଷ୍ଟ୍ରର ଶାସନ ଦାୟିତ୍ୱ ଗ୍ରହଣ କରିଥିଲାବେଳେ ଗ୍ୟାରିବାଲ୍‌ଡି ସାମରିକ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ନୂତନ ସାଧାରଣତନ୍ତ୍ର ରାଷ୍ଟ୍ର ବହୁ ବାଧାବିଘ୍ନ ସତ୍ତ୍ୱେ ଅନେକ ଲୋକହିତକର କାର୍ଯ୍ୟ କରିଥିଲା, ଫଳରେ ଦିନକୁ ଦିନ ସାଧାରଣତନ୍ତ୍ର ରାଷ୍ଟ୍ରର ଶକ୍ତି ବଢ଼ିବାକୁ ଲାଗିଲା ଓ ତାକୁ ଜନସାଧାରଣଙ୍କର ସମର୍ଥନ ମିଳିଲା । ଇଉରୋପର କ୍ୟାଥିଲିକ୍ ରାଷ୍ଟ୍ରମାନେ ପୋପ୍‌ଙ୍କୁ ସମର୍ଥନ କଲେ ଓ ସାଧାରଣତନ୍ତ୍ର ରାଷ୍ଟ୍ରର ପତନ ଘଟାଇବାପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ଫ୍ରାନ୍‌ସର ଜଣେ ସେନାପତିଙ୍କ ନେତୃତ୍ୱରେ ଦଶହଜାର ସୈନ୍ୟଙ୍କୁ ରୋମ୍ ସାଧାରଣତନ୍ତ୍ରକୁ ଭାଙ୍ଗିଦେବା ପାଇଁ ଓ ପୋପ୍‌ଙ୍କୁ ପୁନଃ ପ୍ରତିଷ୍ଠିତ କରିବା ପାଇଁ ପଠାଗଲା । ଗ୍ୟାରିବାଲ୍‌ଡି ରୋମ୍ ନଗରୀକୁ ଫରାସୀ ସୈନ୍ୟମାନଙ୍କ ଆକ୍ରମଣରୁ ଦୁଇମାସରୁ ଅଧିକ ସମୟ ବୀରତ୍ୱର ସହିତ ରକ୍ଷାକଲାପରେ ରୋମ୍ ନଗରୀ ଫରାସୀ ସୈନ୍ୟମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲା; କିନ୍ତୁ ଗ୍ୟାରିବାଲ୍‌ଡି ଯେତେବେଳେ ଦେଖିଲେ ଯେ ଆଉ ରୋମକୁ ରକ୍ଷାକରିହେବନାହିଁ ଏବଂ ତାହାର ପତନ ଅନିବାର୍ଯ୍ୟ, ସେତେବେଳେ ସେ ଅଷ୍ଟ୍ରିୟାକୁ ଭେନିସିୟାରେ ଆକ୍ରମଣ କରିବା ଉଦ୍ଦେଶ୍ୟରେ ଚାରିହଜାର ସୈନ୍ୟଙ୍କୁ ନେଇ ଖସିପଳାଇଲେ । ଉଭୟ ଫରାସୀ ଓ ଅଷ୍ଟ୍ରିୟାର ସୈନ୍ୟବାହିନୀ ତାଙ୍କର ଅନୁଧାବନ କଲେ । ସେ ଅବଶ୍ୟ ସେମାନଙ୍କର ଉଦ୍ୟମକୁ ବ୍ୟର୍ଥକରି ଦେଇଥିଲେ; କିନ୍ତୁ ତାଙ୍କ ନିଜର ସୈନ୍ୟସଂଖ୍ୟା ଦ୍ରୁତବେଗରେ କମିବାକୁ ଲାଗିଲା । ତାଙ୍କର ଅନୁଧାବନ-କାରୀମାନେ ଏତେ ପ୍ରଚଣ୍ଡ ବେଗରେ ତାଙ୍କ ପଛେ ପଛେ ଧାଇଁଲେ ଯେ, ସେ ଅଗତ୍ୟା ବାଧ୍ୟହୋଇ ଏଡ୍ରିଆଟିକ ସାଗରକୁ ଖସିପଳାଇଲେ । ପରେ ସେ ସ୍ଥଳଭାଗରେ ଅବତରଣ କରିବାର ସମ୍ବାଦ ତାଙ୍କର ଶତ୍ରୁମାନେ ପାଇବା ମାତ୍ରେ ସେମାନେ ଚିତ୍କାର କରିଉଠିଲେ ଏବଂ ତାଙ୍କୁ ଧରିବା ଉଦ୍ଦେଶ୍ୟରେ ବଣ ଓ ପର୍ବତଗୁମ୍ଫାକୁ ତନ୍ନ ତନ୍ନ କରି ଖୋଜିଥିଲେ । ଗ୍ୟାରିବାଲ୍‌ଡି ଏଥର ମଧ୍ୟ ତାଙ୍କର ସମସ୍ତ ଉଦ୍ୟମକୁ ବ୍ୟର୍ଥକରି ଦେଇଥିଲେ । ପ୍ରିୟତମା ପତ୍ନୀ ଅନିତାଙ୍କର ରାଭେନା ନିକଟରେ ଥିବା ଏକ କୁଡ଼ିଆଘରେ ମୃତ୍ୟୁ ହେବା ଫଳରେ ଗ୍ୟାରିବାଲ୍‌ଡିଙ୍କ ଜୀବନ ବିଷାଦମୟ ହୋଇଗଲା । ଶେଷରେ ଉତ୍ତର-ଆମେରିକାକୁ ସେ ଚାଲି-ଯାଇଥିଲେ । ସେ ଲିଭରପୁଲ ବାଟେ ନ୍ୟୁୟର୍କ ଗଲା ସମୟରେ ବାଟରେ ଗୁରୁତର ଭାବରେ ଅସୁସ୍ଥ ହୋଇପଡ଼ିଲେ । ସେ ନ୍ୟୁୟର୍କଠାରେ ଖଣ୍ଡିଏ ଜାହାଜ ପାଇବାକୁ ଉଦ୍ୟମ କରି ଅକୃତକାର୍ଯ୍ୟ ହୋଇଥିଲେ । ସେଠାରେ ଏକ ମହମବତି କାରଖାନାରେ କିଛୁଦିନ କାମ

କରିଥିଲେ । ସେ କାମରେ ଗ୍ୟାରିବାଲ୍‌ଡି ସନ୍ତୁଷ୍ଟ ନଥିଲେ । ତେଣୁ ସେ କାମ ଛାଡ଼ିଦେଇ ତାଙ୍କ ବନ୍ଧୁଙ୍କର ସାହାଯ୍ୟରେ ମଧ୍ୟ-ଆମେରିକା ଯାଇଥିଲେ । ସେଠାରେ ସେ ମଧ୍ୟ ଭୀଷଣ ଭାବରେ ଅସୁସ୍ଥ ହୋଇପଡ଼ିଲେ । ସେ ଆରୋଗ୍ୟ ଲାଭ କଲାପରେ ଲିମା ଯାଇଥିଲେ ଏବଂ ସେଠାରେ ଏକ ପୁରୁଣା ଜାହାଜରେ କପ୍ତାନ ନିଯୁକ୍ତ ହୋଇଥିଲେ । ଗ୍ୟାରିବାଲ୍‌ଡି କେତେ ବର୍ଷଯାଏଁ ଭ୍ରମଣକାରୀରୂପେ ଜାହାଜରେ ଚାଲଯାତ୍ରା କରି ହଂକଂ, କ୍ୟାଣ୍ଟନ ପ୍ରଭୃତି ବନ୍ଦରଗୁଡ଼ିକ ସହିତ ବାଣିଜ୍ୟ କାରବାର କରିଥିଲେ । ସେ ୧୮୫୪ ମସିହା ଜାନୁଆରୀ ମାସରେ କମନ୍‌ୱେଲ୍‌ଥ ନାମକ ଜାହାଜର କପ୍ତାନ ହୋଇଥିଲେ ଏବଂ ସେ କପ୍ତାନ ହିସାବରେ ନ୍ୟୁକାସଲ୍ ଯାଇଥିଲେ ଓ ସେଠାରେ ସାଦର ଅଭ୍ୟର୍ଥନା ପାଇଥିଲେ । ସେ ସେହିବର୍ଷ ଫେବୃଆରୀ ମାସରେ ଲଣ୍ଡନ ଯାଇଥିଲେ ଏବଂ ମ୍ୟାଜିନିଙ୍କୁ ସେଠାରେ ଭେଟିଥିଲେ । ମ୍ୟାଜିନି ଗ୍ୟାରିବାଲଡିଙ୍କୁ ସିସିଲି ଯାଇ ସେଠାରେ ଇଟାଲୀର ସ୍ୱାଧୀନତା ପାଇଁ ବିଦ୍ରୋହ ଆରମ୍ଭ କରିଦେବାକୁ ପରାମର୍ଶ ଦେଇଥିଲେ; କିନ୍ତୁ ଗ୍ୟାରିବାଲ୍‌ଡି ତାଙ୍କୁ ସ୍ପଷ୍ଟ କହିଥିଲେ ଯେ, ଯଦି ସିସିଲୀୟମାନେ ପ୍ରଥମେ ତାଙ୍କ ଅତ୍ୟାଚାରୀ ଶାସନ ବିରୁଦ୍ଧରେ ବିଦ୍ରୋହ କରନ୍ତି ଏବଂ ତାଙ୍କୁ ନେତୃତ୍ୱ ଦେବାପାଇଁ ଆହ୍ୱାନ କରନ୍ତି, ତାହାହେଲେ ସେ ସିସିଲି ଯାଇ ବିଦ୍ରୋହ ପରିଚାଳନା କରିବାକୁ ପଶ୍ଚାତ୍‌ପଦ ହେବେନାହିଁ । ସେ ଲଣ୍ଡନରେ ଏକମାସ କଟାଇଥିଲେ । ସେଠାରେ ରହିଥିଲାବେଳେ ତାଙ୍କର କେତେକ ଲୋକଙ୍କ ସହିତ ବନ୍ଧୁତା ହୋଇଥିଲା ।

ଗ୍ୟାରିବାଲଡି ଆଉ ବିଦେଶରେ ନ ରହି ତାଙ୍କର ମାତୃଭୂମିକୁ ଫେରିଯିବା ପାଇଁ ସ୍ଥିର କଲେ । ସେ ୧୮୫୪ ମସିହା ବସନ୍ତ ଋତୁରେ ଇଟାଲୀକୁ ପ୍ରତ୍ୟାବର୍ତ୍ତନ କଲେ ଓ ତାଙ୍କର ଜନ୍ମସ୍ଥାନ ନାଇସ୍ ସହରରେ ବାସକଲେ ଏବଂ ଗୃହକାର୍ଯ୍ୟରେ ବ୍ୟସ୍ତ ରହିଲେ । ନିଜର ପିଲାମାନଙ୍କର ସେ ବିଶେଷ ଯତ୍ନ ନେଉଥିଲେ । ୧୮୫୫ ମସିହାରେ ତାଙ୍କ ଭାଇଙ୍କର ମୃତ୍ୟୁ ହେଲା ଏବଂ ସେ ଉତ୍ତରାଧିକାରୀ ସୂତ୍ରରେ ୩୫୦୦୦ ଲୀର ଲାଭକରିଥିଲେ । ସେ ଏହି ଅର୍ଥ ପାଇଲା ପରେ ଖଣ୍ଡିଏ ଘର ତିଆରି କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ ।

ଗ୍ୟାରିବାଲଡି ସେ ଅର୍ଥ ସହିତ ନିଜର ସ୍ୱୋପାର୍ଜିତ ଅର୍ଥ ମିଶାଇ ନିରାପତ୍ତା ଦୃଷ୍ଟିରୁ କାପ୍ରେରା ଦ୍ୱୀପରେ ଜାଗା କିଣିଥିଲେ ଏବଂ ଖଣ୍ଡିଏ ଘର କରି ସେଠାରେ ୧୮୫୭ ମସିହାରେ ରହିଲେ । ସେ ସେଠାରେ ଜଣେ ଆଦର୍ଶ କୃଷକ ହେବାପାଇଁ କଠୋର ପରିଶ୍ରମ କରିଥିଲେ । ସେ ନିଜ୍ କୋର୍‌ରେ ଚାଷବାସ ଆରମ୍ଭ କରିଦେଇଥିଲେ । ସେଠାକାର ଜମି ସେତେ ଉର୍ବର ନଥିବାରୁ ଓ ଅଙ୍ଗୁରଚାଷ ପାଇଁ ଉପଯୋଗୀ ଥିବାରୁ ସେ ବଡ଼ ଧରଣର ଅଙ୍ଗୁର ଚାଷ କରିଥିଲେ । ସେ ଗୋରୁ, ଗାଈ, ଛେଳି ପ୍ରଭୃତି ଜୀବଜନ୍ତୁ ପୋଷିଥିଲେ । ଚାଷବାସ କରି ବଡ଼ ଧନୀ ହୋଇ ନଥିଲେ ମଧ୍ୟ ସେ ଭଲଭାବରେ ଚଳୁଥିଲେ । ତାଙ୍କ ଘରକୁ ତାଙ୍କର ବନ୍ଧୁମାନେ ଆସି ରହୁଥିଲେ ଓ ତାଙ୍କୁ ସବୁ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ୧୮୫୯

ମସିହାରେ ଇଟାଲୀର ସ୍ୱାଧୀନତା ସଂଗ୍ରାମ ଆରମ୍ଭହୋଇଗଲା । ପିଡ୍‌ମଣ୍ଟ-ସାର୍ଡିନିଆ ଫ୍ରାନ୍ସ ସହିତ ମିଶି ଅଷ୍ଟ୍ରିଆ ବିରୁଦ୍ଧରେ ଯୁଦ୍ଧ କଲା । ଗ୍ୟାରିବାଲ୍ଡି କାପ୍ରିରା ଗ୍ରାମ ଛାଡ଼ି ନିଜର ସୈନ୍ୟବାହିନୀ ନେଇ ଅଷ୍ଟ୍ରିଆ ସଙ୍ଗରେ ଯୁଦ୍ଧରେ ବ୍ୟାପୃତ ହେଲେ । ସେ ପିଡ୍‌ମଣ୍ଟ ସାର୍ଡିନିଆ ଓ ଫ୍ରାନ୍ସର ସୈନ୍ୟବାହିନୀକୁ ଅଷ୍ଟ୍ରିଆ ବିରୁଦ୍ଧରେ ସାହାଯ୍ୟ କରିଥିଲେ । ଲେମ୍ବାର୍ଡି ବିଜୟ ପରେ ଫ୍ରାନ୍ସ ଅଷ୍ଟ୍ରିଆ ସହିତ ଯୁଦ୍ଧ ବନ୍ଦ କରିଦେଲା ଓ ଭିଲାଫ୍ରାଙ୍କା ସନ୍ଧି ସ୍ୱାକ୍ଷର କଲା । ଭିକ୍ଟର ଇମାନୁ୍ୟେଲ ଏ ସନ୍ଧି ଗ୍ରହଣ କରିବାରୁ କାଭୁର ପିଡ୍‌ମଣ୍ଟ ସାର୍ଡିନିଆର ପ୍ରଧାନ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ଗ୍ୟାରିବାଲ୍ଡି କିନ୍ତୁ ଭିକ୍ଟର ଇମାନୁ୍ୟେଲଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ । ଗ୍ୟାରିବାଲ୍ଡି ଏହି ସନ୍ଧି ପରେ ଜେନୋଆକୁ ଫେରିଯାଇଥିଲେ । ଫେରିଯିବା ପୂର୍ବରୁ ସେ ଯେତେବେଳେ ରାଜା ଭିକ୍ଟର ଇମାନୁ୍ୟେଲଙ୍କଠାରୁ ବିଦାୟ ନେଲେ ସେତେବେଳେ ସେ ଗ୍ୟାରିବାଲ୍ଡିଙ୍କୁ ତାଙ୍କର ବନ୍ଧୁକ ଓ ପିଡ୍‌ମଣ୍ଟ-ସାର୍ଡିନିଆର ସୈନ୍ୟବାହିନୀର ସେନାପତି ପଦ ଗ୍ରହଣକରିବାକୁ କହିଥିଲେ । ଗ୍ୟାରିବାଲ୍ଡି ବନ୍ଧୁକଟିକୁ ବନ୍ଧୁତାର ପ୍ରତୀକ ହିସାବରେ ଗ୍ରହଣ କରିଥିଲେ ମଧ୍ୟ ସେନାପତି ପଦ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶକରି ସେଥିପାଇଁ କ୍ଷମା ମାଗିଥିଲେ । ଅଷ୍ଟ୍ରିଆ ସହିତ ଯୁଦ୍ଧ ପରେ ଗ୍ୟାରିବାଲ୍ଡିଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ସେ ସୈନ୍ୟମାନଙ୍କର ଅତି ଆଦରଣୀୟ ଥିଲେ । ତାଙ୍କର ନାମରେ ଏପରି କୁହୁକ ଥିଲା ଯେ, ହଜାର ହଜାର ଲୋକ ଅନ୍ଧବିଶ୍ୱାସରେ ତାଙ୍କୁ ଅନୁସରଣ କରିବାକୁ ଏବଂ ସେ ଯେଉଁସ୍ଥାନକୁ ସେମାନଙ୍କୁ ପରିଚାଳିତ କରିନେବେ ସେଠାକୁ ଯିବାକୁ ପ୍ରସ୍ତୁତ ଥିଲେ ।

ଗ୍ୟାରିବାଲ୍ଡିଙ୍କ ଜୀବନର ଅତି ଗୌରବମୟ ଓ କୌତୁକପ୍ରଦ ଘଟଣା ହେଲା, ସିସିଲୀୟ ଅଭିଯାନ ଏବଂ ନେପଲ୍‌ସ ରାଜ୍ୟ ଉପରେ ଆକ୍ରମଣ । ସିସିଲୀୟମାନେ ତାଙ୍କୁ ୧୮୫୯ ମସିହା ସେପ୍ଟେମ୍ବର ମାସରେ ସିସିଲି ଯିବାପାଇଁ ଅନୁରୋଧ କରିଥିଲେ । ସେ ତାହାର ଉତ୍ତରରେ କହିଥିଲେ ଯେ, ଯଦି ସିସିଲୀୟମାନେ ପ୍ରକାଶ୍ୟ ଭାବରେ ବିଦ୍ରୋହ କରନ୍ତି, ତାହାହେଲେ ସେ ସିସିଲିଯାଇ ବିଦ୍ରୋହରେ ଯୋଗଦେବେ । ଗ୍ୟାରିବାଲ୍ଡି କାପ୍ରିରାକୁ ଫେରି ସେଠାରେ ପୁଣି କୃଷିକାର୍ଯ୍ୟରେ ଲାଗିପଡ଼ିଲେ । ସେଠାରେ ରହିଥିଲାବେଳେ ଦକ୍ଷିଣ ଇଟାଲୀକୁ ଅତ୍ୟାଚାରୀ ଶାସକଙ୍କ କବଳରୁ ମୁକ୍ତ କରିବାପାଇଁ ତାଙ୍କୁ ବାରମ୍ବାର ଆହ୍ୱାନ କରାଯାଇଥିଲା । ସିସିଲୀୟମାନେ ସେମାନଙ୍କର ରାଜା ଦ୍ୱିତୀୟ ଫ୍ରାନ୍‌ସିସ୍‌ଙ୍କ ସ୍ୱୈରାଚାରୀ ଶାସନ ବିରୁଦ୍ଧରେ ବିଦ୍ରୋହକରିବା ସମ୍ବାଦ ପାଇ ଗ୍ୟାରିବାଲ୍ଡି ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କୁ ସାହାଯ୍ୟ କରିବାକୁ ନିଷ୍ପତ୍ତି କଲେ ।

ସିସିଲି ଅଭିଯାନ ପୂର୍ବରୁ ଜେନୋଆରେ ତିନି ସପ୍ତାହକାଳ ସମସ୍ତ ଆୟୋଜନ କରାଯାଇଥିଲା । ୧୮୬୦ ମସିହା ମେ ମାସ ୫ ତାରିଖ ଦିନ ଗ୍ୟାରିବାଲ୍ଡି ତାଙ୍କର 'ସହସ୍ର ଲାଲକୁର୍ତ୍ତା' (Red shirts)ଙ୍କ ସହ ସିସିଲି ଅଭିମୁଖେ ଅଭିଯାନ ଆରମ୍ଭ କରିଥିଲେ । ପ୍ରକୃତରେ ସେହି ଅଭିଯାନରେ ୧୧୫୦ ଜଣ ସ୍ୱେଚ୍ଛାସେବୀ ଭାଗ ନେଇଥିଲେ

ଏବଂ ସେମାନେ ପିଡ୍‌ମଣ୍ଟ ଓ ଲୋମ୍ବାର୍ଡୋ ନାମକ ଦୁଇଟି ଜାହାଜରେ ଚଢ଼ି ଜେନୋଆରୁ ବାହାରିଥିଲେ । ଏହି ଅଭିଯାନ କାଭୁରଙ୍କ ପାଇଁ ଏକ ଗୁରୁତର ସମସ୍ୟା ସୃଷ୍ଟି କରିଥିଲା । ନେପଲ୍‌ସ ରାଜ୍ୟ ସହିତ ସୁସମ୍ପର୍କ ଥିବାରୁ ପିଡ୍‌ମଣ୍ଟ-ସାର୍ଡିନିଆର ସରକାର ଗ୍ୟାରିବାଲ୍‌ଡିଙ୍କର ନେପଲ୍‌ସ ବିରୁଦ୍ଧରେ ଅଭିଯାନକୁ ଅନୁମୋଦନ କରିନଥିଲେ । ତା'ଛଡ଼ା ଏକ ନିର୍ଦ୍ଦୋଷୀ ପଡ଼ୋଶୀ ରାଜ୍ୟ ଉପରେ ଯଦି କୌଣସି ନିର୍ଦ୍ଦୟ ଆକ୍ରମଣକୁ ପିଡ୍‌ମଣ୍ଟ-ସାର୍ଡିନିଆ ସରକାର ଉତ୍ସାହିତ କରନ୍ତି, ତାହାହେଲେ ଇଉରୋପୀୟ ଶକ୍ତିମାନେ ଉକ୍ତ ସରକାରଙ୍କୁ ନିନ୍ଦାକରିବା ଓ ତାହା ବ୍ୟାପାରରେ ହସ୍ତକ୍ଷେପ କରିବାର ବିଶେଷ ସମ୍ଭାବନା ମଧ୍ୟ ଥିଲା । କାଭୁରଙ୍କର ମତରେ ଇଟାଲୀର ନୂତନ ବୃଦ୍ଧିପ୍ରାପ୍ତ ପିଡ୍‌ମଣ୍ଟ-ସାର୍ଡିନିଆ ରାଜ୍ୟ ଅଧିକ ଦାୟିତ୍ୱନେବା ପୂର୍ବରୁ ନିଜର ଦୃଢ଼ୀକରଣ ପାଇଁ ସମୟ ଗୃହୁଁଥିଲା । ଅନ୍ୟ ଦିଗରେ କାଭୁର ଭାବିଲେ ଯେ, ଗ୍ୟାରିବାଲ୍‌ଡି ଯେତେବେଳେ ଏ ଅଭିଯାନ ଚଳାଇବା ପାଇଁ ଦୃଢ଼ପ୍ରତିଜ୍ଞ ତାଙ୍କୁ ଏଥିରେ ବାଧା ଦେବାକୁ ଚେଷ୍ଟାକରିବା ବିପଜ୍ଜନକ ହେବ; କିନ୍ତୁ ଗ୍ୟାରିବାଲ୍‌ଡିଙ୍କର ଅଭିଯାନ ଯଦି ସଫଳ ହୁଏ, ତାହାହେଲେ ସେ କାଭୁରଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇ ପାରନ୍ତି ଓ ପିଡ୍‌ମଣ୍ଟ ସାର୍ଡିନିଆକୁ ଡିଦେଇଦେବାପାଇଁ ସୁଯୋଗ ମଧ୍ୟ ପାଇପାରନ୍ତି । କାଭୁର ବିଶ୍ୱାସ କରୁଥିଲେ ଯେ ପିଡ୍‌ମଣ୍ଟ-ସାର୍ଡିନିଆ ତଥାପି ଇଟାଲୀର କ୍ରମବିକାଶକୁ ଠିକ୍‌ବାଟରେ ଚଳାଇ ତାହାର ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେବ । କାଭୁର ଗ୍ୟାରିବାଲ୍‌ଡିଙ୍କ ଅଭିଯାନକୁ ସ୍ୱୀକୃତି ଦେଇପାରିଲେନାହିଁ କି ଅନ୍ୟାୟ ବୋଲି କହିବାକୁ ପ୍ରସ୍ତୁତ ନ ଥିଲେ । ତେଣୁ ସେ ଗୋପନରେ ଗ୍ୟାରିବାଲ୍‌ଡିଙ୍କ ଅଭିଯାନପାଇଁ ପ୍ରସ୍ତୁତିକୁ ସହାନୁଭୂତି ଦେଖେଇବା ସଙ୍ଗେ ସଙ୍ଗେ ସରକାରୀ ଭାବରେ ପିଡ୍‌ମଣ୍ଟ-ସାର୍ଡିନିଆ ଏହା ସହିତ କୌଣସି ସମ୍ପର୍କ ନ ରଖି ଦୂରରେ ରହିବାକୁ ଏକ ପରିକଳ୍ପନା କରିଥିଲେ । ସେ ଇଉରୋପୀୟ ଶକ୍ତିମାନଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ଯେ, ତାଙ୍କର ଏ ଅଭିଯାନ ସହିତ କୌଣସି ସମ୍ପର୍କ ନାହିଁ । ସୁତରାଂ ଏହି ଅଭିଯାନ ଯଦି ବିଫଳ ହୁଏ, ତାଙ୍କୁ କେହି ନିନ୍ଦା କରିବେନାହିଁ, ଅନ୍ୟ ଦିଗରେ ଏହି ଅଭିଯାନ ଯଦି ସଫଳ ହୁଏ, ସେ ସେଥିରୁ କିଛି ଲାଭ ଉଠାଇପାରିବେ ।

ଯେ ଯାହାହେଉ, ଗ୍ୟାରିବାଲ୍‌ଡିଙ୍କ ଜାହାଜ ଦୁଇଟି ମାର୍ଶାଲା ଯିବାପାଇଁ ସ୍ଥିର ହେଲା । ସେ ମାର୍ଶାଲା ନିକଟରେ ପହଞ୍ଚିଲା ମାତ୍ରେ ବ୍ରିଟେନର ଦୁଇଟି ଯୁଦ୍ଧ ଜାହାଜର କପ୍ତାନ ତାଙ୍କୁ ଖବର ଦେଇଥିଲେ ଯେ, ମାର୍ଶାଲା ବନ୍ଦରରେ ନେପଲ୍‌ସ ସରକାରଙ୍କର କୌଣସି ଯୁଦ୍ଧ ଜାହାଜ ନାହିଁ । ଏ ଖବର ପାଇବା କ୍ଷଣି ଗ୍ୟାରିବାଲ୍‌ଡିଙ୍କର ଯୁଦ୍ଧଜାହାଜ ଦ୍ରୁତବେଗରେ ମାର୍ଶାଲା ବନ୍ଦରଆଡ଼କୁ ଅଗ୍ରସର ହୋଇଥିଲା । ସେ ସମୟରେ ଇଂଲଣ୍ଡର ନୌସେନା ପ୍ରକୃତ ପକ୍ଷରେ ମାର୍ଶାଲାର ସଂରକ୍ଷଣ ଭାର ନେଇଥିଲେ । ଗ୍ୟାରିବାଲ୍‌ଡି ତାଙ୍କର ସ୍ୱେଚ୍ଛାସେବୀମାନଙ୍କ ସହିତ ନିରାପଦରେ ମାର୍ଶାଲାରେ ପହଞ୍ଚିଲେ । ଗ୍ୟାରିବାଲ୍‌ଡିଙ୍କ ଦୁଇଟି ଜାହାଜ ଇଂଲଣ୍ଡର ଜାହାଜ ପାଖାପାଖି ଲଙ୍ଗର ପକାଇଥିଲେ । ଗ୍ୟାରିବାଲ୍‌ଡି ଓ ତାଙ୍କର ସ୍ୱେଚ୍ଛାସେବୀମାନେ ଜାହାଜରୁ ଓହ୍ଲାଇ ଛୋଟ ଛୋଟ ଡଙ୍ଗା ସାହାଯ୍ୟରେ

କୂଳରେ ପହଞ୍ଚ ଥିଲେ । ଇତିମଧ୍ୟରେ ନେପ୍‌ଲ୍‌ସର ଜାହାଜ ଗ୍ୟାରିବାଲ୍‌ଡିଙ୍କ ମାର୍ଶାଲାରେ ପହଞ୍ଚିବା ସମ୍ବାଦ ପାଇ ମାର୍ଶାଲାଆଡ଼କୁ ଅଗ୍ରସର ହୋଇଥିଲା । ଗ୍ୟାରିବାଲ୍‌ଡିଙ୍କ ଜାହାଜ ଇଂଲଣ୍ଡ ଜାହାଜର ପାଖାପାଖି ଥିବାରୁ ନେପଲସ୍ ଜାହାଜର କପ୍ତାନ ଗ୍ୟାରିବାଲଡିଙ୍କ ସୈନ୍ୟମାନଙ୍କ ଉପରେ ଆକ୍ରମଣ କରିବାକୁ ଭୟ କରିଥିଲେ । ବ୍ରିଟିଶ ଜାହାଜଗୁଡ଼ିକ ଗ୍ୟାରିବାଲ୍‌ଡିଙ୍କ ଜାହାଜ ସହିତ ଏକସଙ୍ଗରେ ବନ୍ଧାଥିବା ଦେଖି ସେ ବିଶ୍ୱାସିଥିଲେ ଯେ ସେ ସବୁ ଜାହାଜ ଗ୍ୟାରିବାଲ୍‌ଡିଙ୍କ ସହିତ ଆସିଛି । ତା'ଛଡ଼ା ବ୍ରିଟିଶ ଯୁଦ୍ଧ ଜାହାଜଗୁଡ଼ିକ ସେଠାରେ ପରିଭ୍ରମଣ ମାରୁଥିବାର ଦେଖି ଓ ଇଂଲଣ୍ଡର ନେପ୍‌ଲସ ପ୍ରତି ପ୍ରତିକୂଳ ମନୋଭାବ ଥିବାର ଜାଣି ନେପ୍‌ଲସ ଜାହାଜର କପ୍ତାନ୍ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଥିଲେ । ସେ ଶେଷରେ ବ୍ରିଟିଶ୍ କପ୍ତାନଙ୍କୁ ଭେଟି ଗ୍ୟାରିବାଲ୍‌ଡିଙ୍କ ଜାହାଜ ଦୁଇଟି ଉପରେ ଗୁଳିଚଳାଇବା ପାଇଁ ଅନୁମତି ମାଗିଥିଲେ । ବ୍ରିଟିଶ କପ୍ତାନଙ୍କ ପକ୍ଷରୁ କୁହାଯାଇଥିଲା ଯେ ସେ ଗ୍ୟାରିବାଲ୍‌ଡିଙ୍କ ଜାହାଜ ଦୁଇଟି ଉପରେ ଗୁଳିଚଳାଇପାରନ୍ତି; କିନ୍ତୁ ବ୍ରିଟିଶ ଜାହାଜଗୁଡ଼ିକର ଯେପରି କ୍ଷତି ନ ହୁଏ ତାହା ତାଙ୍କୁ ଦୃଷ୍ଟି ଦେବାକୁ ପଡ଼ିବ । ଏହି ଅନୁମତି ପାଇଲାପରେ ନେପ୍‌ଲସ ଜାହାଜର କପ୍ତାନ ସାବଧାନତାର ସହିତ ଗୁଳି ଚଳାଇ ଲକ୍ଷ୍ୟଭ୍ରଷ୍ଟ ହୋଇଥିଲେ । ତେଣୁ ଗ୍ୟାରିବାଲ୍‌ଡିଙ୍କ ସୈନ୍ୟମାନଙ୍କର କମ୍ପା ଜାହାଜ ଦୁଇଟିର କିଛି କ୍ଷତି କରିପାରିନଥିଲେ । ଇଂଲଣ୍ଡର ଏହି ଉଦାର ଓ ଏକପ୍ରକାର କୂଟନୈତିକ ହସ୍ତକ୍ଷେପ ଫଳରେ ଗ୍ୟାରିବାଲ୍‌ଡିଙ୍କର ଅଭିଯାନ ବିପଦରୁ ରକ୍ଷା ପାଇ-ଯାଇଥିଲା । ଇଂଲଣ୍ଡର ଏହା ହେଲା ଇଟାଲୀର ଦେଶବତ୍ସଳମାନଙ୍କର ସ୍ୱାଧୀନତାସଂଗ୍ରାମ ପ୍ରତି ଆଂଶିକ ଅବଦାନ ।

ଗ୍ୟାରିବାଲ୍‌ଡିଙ୍କର ମାର୍ଶାଲାରେ ପହଞ୍ଚିବା ସମ୍ବାଦ ସାରା ସିସିଲିରେ ପ୍ରଚାର ହୋଇଗଲା । ନେପ୍‌ଲସ ରାଜାଙ୍କର ୨୪୦୦୦ ଲୋକବିଶିଷ୍ଟ ଏକ ସୈନ୍ୟଦଳ ସେତେବେଳେ ସିସିଲିରେ ଅବସ୍ଥାପିତ ହୋଇଥିଲେ ଏବଂ ଏକଲକ୍ଷ ଲୋକବିଶିଷ୍ଟ ଅନ୍ୟ ଏକ ସୈନ୍ୟଦଳ ପ୍ରଧାନ ଭୂଖଣ୍ଡ (ନେପ୍‌ଲ୍‌ସ)ରେ ଅବସ୍ଥାପିତ ହୋଇଥିଲେ । ଏହି ସୈନ୍ୟମାନଙ୍କ ତୁଳନାରେ ଗ୍ୟାରିବାଲ୍‌ଡିଙ୍କର ସୈନ୍ୟସଂଖ୍ୟା ଅତି କମ୍ ଥିଲା; କିନ୍ତୁ ଭାଗ୍ୟଦେବୀ ସ୍ୱନାମଧନ୍ୟ ବୀର ଗ୍ୟାରିବାଲ୍‌ଡିଙ୍କ ଉପରେ ପ୍ରସନ୍ନ ଥିଲେ । ଗ୍ୟାରିବାଲ୍‌ଡି ମାର୍ଶାଲା ଛାଡ଼ି ସାଲେମିଠାରେ ପହଞ୍ଚିଥିଲେ । ସେଠାରେ ତାଙ୍କର ସୈନ୍ୟମାନେ ବିଶ୍ରାମ ଗ୍ରହଣ କରିଥିଲେ । ସେ ମଧ୍ୟ ଆଗାମୀ ଯୁଦ୍ଧପାଇଁ ଯୁଦ୍ଧ ସରଞ୍ଜାମ ଯୋଗାଡ଼ କରିଥିଲେ । ତା'ପରେ କାଲାଟିଫିମିଠାରେ ନେପଲ୍‌ସର ସୈନ୍ୟବାହିନୀକୁ ଯୁଦ୍ଧରେ ପରାସ୍ତ କରିଥିଲେ । କାଲାଟିଫିମିଠାରୁ ଗ୍ୟାରିବାଲ୍‌ଡି ତାଙ୍କ ସୈନ୍ୟମାନଙ୍କୁ ନେଇ ପାଲେରମୋକୁ ଯାତ୍ରା କରିଥିଲେ । ସେଠାରେ ମଧ୍ୟ ସେ ନେପ୍‌ଲ୍‌ସର ସୈନ୍ୟମାନଙ୍କୁ ଯୁଦ୍ଧରେ ହରାଇ-ଦେଇଥିଲେ । ଅବଶ୍ୟ ସିସିଲୀୟ ବିଦ୍ରୋହୀମାନେ ଏବଂ ଇଟାଲୀର ପ୍ରଧାନ ଭୂଖଣ୍ଡରୁ ଆସିଥିବା ସ୍ୱେଚ୍ଛାସେବୀମାନେ ତାଙ୍କ ସୈନ୍ୟମାନଙ୍କ ସହିତ ମିଶି ନେପ୍‌ଲ୍‌ସର ସୈନ୍ୟମାନଙ୍କ

ବିରୁଦ୍ଧରେ ଯୁଦ୍ଧ କରିଥିଲେ । ସେ ଯୁଦ୍ଧ କରି ମାତ୍ର ତିନିମାସ ମଧ୍ୟରେ ସିସିଲି ଦ୍ୱୀପକୁ ଅଧିକାର କରି ନେଇଥିଲେ ଏବଂ ୧୮୬୦ ମସିହା ଅଗଷ୍ଟ ୫ ତାରିଖ ଦିନ ଭିକ୍ଟର ଇମାନ୍ୟୁଏଲଙ୍କ ତରଫରୁ ନିଜକୁ ଏକଛତ୍ର ଶାସକ ବୋଲି ଘୋଷଣା କରିଥିଲେ ।

ସିସିଲି ଜୟକରି ଗ୍ୟାରିବାଲ୍ଡି ସମଗ୍ର ନେପଲ୍ସ ରାଜ୍ୟ ଅଧିକାର କରିବାକୁ ଦୃଢ଼ସଙ୍କଳ୍ପ ହୋଇ ମେସିନା ପ୍ରଣାଳୀ ପାର ହୋଇ ୧୮୬୦ ମସିହା ଅଗଷ୍ଟ ୧୯ ତାରିଖ ଦିନ ଇଟାଲୀର ପ୍ରଧାନ ଭୂଖଣ୍ଡରେ ପହଞ୍ଚିଥିଲେ । ନେପଲ୍ସ ରାଜାଙ୍କର ଏକଲକ୍ଷବିଶିଷ୍ଟ ସୈନ୍ୟବାହିନୀ ନେପଲ୍ସରେ ଥିଲେ ମଧ୍ୟ ତାହା ଅତି ଦୁର୍ବଳ ଥିଲା । ପ୍ରକୃତପକ୍ଷେ ନେପଲ୍ସରେ ରକ୍ତପାତ ହୋଇନଥିଲା କି ନେପଲ୍ସ ରାଜ୍ୟକୁ ଧ୍ୱଂସ କରିଦିଆଯାଇ-ନଥିଲା, ତାହା ଆପେ ଆପେ ଭୂଶାୟୀ ପଡ଼ିଥିଲା । ବିଶ୍ୱାସଘାତକତା, ଦୁର୍ନୀତି ଓ ନେପଲ୍ସ ସୈନ୍ୟବାହିନୀର ଯୁଦ୍ଧବର୍ଜନ ଏଥିପାଇଁ ଦାୟୀ । ୧୮୬୦ ମସିହା ସେପ୍ଟେମ୍ବର ୬ ତାରିଖ ଦିନ ରାଜା ଦ୍ୱିତୀୟ ଫ୍ରାନ୍ସିସ୍ ନେପଲ୍ସ ଛାଡ଼ି ଗେଇଟାକୁ ପଳାଇଯାଇଥିଲେ ଏବଂ ତା' ପରଦିନ ଗ୍ୟାରିବାଲ୍ଡି କେତେଜଣ ଅନୁଚରଙ୍କ ସହିତ ରେଳଗାଡ଼ି ଯୋଗେ ନେପଲ୍ସରେ ପ୍ରବେଶ କଲେ ଏବଂ ମଟରଗାଡ଼ିରେ ଚଢ଼ି ନେପଲ୍ସର ରାସ୍ତାରେ ଯିବାବେଳେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏକପ୍ରକାର ବିନା ଯୁଦ୍ଧରେ ସେ ନେପଲ୍ସ ଜୟ କରିଥିଲେ । ୧୧ ନିୟୁତ ଲୋକ ବାସକରୁଥିବା ନେପଲ୍ସ ରାଜ୍ୟ ପାଞ୍ଚମାସରୁ କମ୍ ସମୟ ମଧ୍ୟରେ ଗ୍ୟାରିବାଲ୍ଡିଙ୍କଦ୍ୱାରା ଅଧିକୃତ ହୋଇଥିଲା । ଏହା ଆଧୁନିକ ଇତିହାସରେ ଏକ ଅସାଧାରଣ କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ।

ନେପଲ୍ସ ଜୟକଲା ପରେ ଗ୍ୟାରିବାଲ୍ଡି ତାର ଶାସନ ଦାୟିତ୍ୱ ଗ୍ରହଣକରିବା ସଙ୍ଗେ ସଙ୍ଗେ ଭିକ୍ଟର ଇମାନ୍ୟୁଏଲଙ୍କ ପ୍ରତି ସେ ଆନୁଗତ୍ୟ ପ୍ରକାଶ କରିଥିଲେ । ପୁଣି ସେ ରୋମ୍ ଅଧିକାର କରିନେବାପାଇଁ ରୋମ୍ ଆକ୍ରମଣ କରିବେ ବୋଲି ପ୍ରକାଶ୍ୟଭାବେ ଘୋଷଣା କରିଥିଲେ । କାଭୁର, ଗ୍ୟାରିବାଲ୍ଡିଙ୍କର ଏହି ଘୋଷଣା ବିଷୟରେ ଖବର ପାଇଲା-ମାତ୍ରେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ । ଏହି ଆକ୍ରମଣ ହେଲେ ଫ୍ରାନ୍ସ ସହିତ ସଂଘର୍ଷ ଲାଗିଯିବାର ବିଶେଷ ସମ୍ଭାବନା ରହିଛି ବୋଲି ସେ ଅନୁଭବ କରିଥିଲେ; କାରଣ ପୋପ୍‌ଙ୍କର ସୁରକ୍ଷା ନିମନ୍ତେ ରୋମ୍‌ରେ ଏକ ଫରାସୀ ସୈନ୍ୟଦଳ ମୁତୟନ କରାଯାଇଥିଲା । ତେଣୁ ରୋମ୍‌କୁ ଗ୍ୟାରିବାଲ୍ଡି ଆକ୍ରମଣ କଲେ, ସେହି ଫରାସୀ ସୈନ୍ୟଦଳ ନୀରବ ଦ୍ରଷ୍ଟା ହୋଇ ରହିବେନାହିଁ । ତା'ଛଡ଼ା ଫରାସୀମାନେ ପୋପ୍‌ଙ୍କର ସମର୍ଥକ ଥିବାରୁ ସେମାନେ ଗ୍ୟାରିବାଲ୍ଡିଙ୍କ ରୋମ୍ ଉପରେ ଆକ୍ରମଣର ପ୍ରତିରୋଧ କରିବାପାଇଁ ଫରାସୀ ସରକାରଙ୍କ ଉପରେ ଚାପ ଦେବାର ସମ୍ଭାବନାକୁ ଏଡ଼ି ଦିଆଯାଇ ନପାରେ । ଫ୍ରାନ୍ସ ସହିତ କିଛି ଯୁଦ୍ଧ ହେଲେ ଇଟାଲୀର ସ୍ୱାଧୀନତା ଓ ଏକତ୍ରୀକରଣ ବିପନ୍ନ ହେବ । ତା'ଛଡ଼ା କାଭୁର ଗ୍ୟାରିବାଲ୍ଡିଙ୍କର କାର୍ଯ୍ୟକଳାପକୁ ସନ୍ଦେହ ଚକ୍ଷୁରେ ଦେଖିଥିଲେ; କାରଣ ଗ୍ୟାରିବାଲ୍ଡି ନେପଲ୍ସ ରାଜ୍ୟ ପିଡ଼ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ଦେଇନଥିଲେ ।

କାଭୁରଙ୍କର ଆଶଙ୍କା ହୋଇଥିଲା ଯେ ଗ୍ୟାରିବାଲ୍‌ଡି ଇଟାଲୀକୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ଗଢ଼ିବାକୁ ଚାହାଁନ୍ତି ।

ସୁତରାଂ ଗ୍ୟାରିବାଲ୍‌ଡିଙ୍କୁ ରୋମ୍ ଆକ୍ରମଣ କରିବାପାଇଁ ସୁଯୋଗ ନ ଦେବାକୁ କାଭୁର୍ ମନସ୍ଥ କରିଥିଲେ । ଫ୍ରାନ୍‌ସ ରୋମ୍‌ର ପ୍ରତିରକ୍ଷାଭାର ନେଇଥିଲାବେଳେ ଅଷ୍ଟ୍ରିୟା ମାର୍ଚ୍ଚେସ୍ ଓ ଉମ୍ବ୍ରିଆରେ ଶାନ୍ତି ଏବଂ ଶୃଙ୍ଖଳା ଦାୟିତ୍ୱରେ ଥିଲା । କାଭୁରଙ୍କ ମତରେ ଗ୍ୟାରିବାଲ୍‌ଡିଙ୍କର ରୋମ୍ ଉପରେ ଆକ୍ରମଣ କଲେ ଫ୍ରାନ୍‌ସ ଉପରେ ଆକ୍ରମଣ ବୋଲି ବୁଝାଯିବ । ଗ୍ୟାରିବାଲ୍‌ଡି ରୋମ୍ ଉପରେ ଆକ୍ରମଣ କରିବା ମାତ୍ରେ ଫ୍ରାନ୍‌ସ ସହିତ ଯୁଦ୍ଧ ଲାଗିଯିବା ଅନିବାର୍ଯ୍ୟ । ତେଣୁ କାଭୁର ରୋମ୍ ଉପରେ ଆକ୍ରମଣକୁ ରୋକିବାକୁ ଚାହିଁଥିଲେ । ଯଦିଓ କାଭୁର ରୋମ୍ ଓ ତାହାର ସଂଲଗ୍ନ ଅଞ୍ଚଳର ପବିତ୍ରତାକୁ ପୋପ୍‌ଙ୍କ ପାଇଁ ଅକ୍ଷୁଣ୍ଣ ରଖିବାକୁ ପଡ଼ିବ ବୋଲି କହୁଥିଲେ, ସେ କଦାପି ପୋପ୍‌ଙ୍କ ରାଜ୍ୟର ଦୁଇଟି ପୂର୍ବାଭିମୁଖୀନ ପ୍ରଦେଶ—ମାର୍ଚ୍ଚେସ ଓ ଉମ୍ବ୍ରିଆର ପବିତ୍ରତାକୁ ସେହିପରି ପୋପ୍‌ଙ୍କପାଇଁ ରଖିବା ଚାହୁଁ-ନଥିଲେ । ଏହି ଦୁଇଟି ପ୍ରଦେଶ ପୋପ୍‌ଙ୍କ ଶାସନରୁ ମୁକ୍ତ ହୋଇ ପିଡ଼ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ଆଗ୍ରହ ପ୍ରକାଶ କରିଥିଲେ ମଧ୍ୟ ସେମାନଙ୍କୁ ଭଡ଼ାଟିଆ ସୈନ୍ୟମାନଙ୍କ-ଦ୍ୱାରା ଦବେଇ ଦିଆଯାଇଥିଲା । ତେଣୁ କାଭୁର ଦେଖିଲେ ଯେ, ପ୍ରକୃତ ସମୟ ଆସିଛି ଯେତେବେଳେ କି ପିଡ଼ମଣ୍ଟ-ସାର୍ଡିନିଆ ସରକାର ଗ୍ୟାରିବାଲ୍‌ଡିଙ୍କ ହାତରୁ ଇଟାଲୀୟ ବ୍ୟାପାରଗୁଡ଼ିକର ପରିଚାଳନା ଦାୟିତ୍ୱ କାଢ଼ିନେଇ ନିଜେ ଜାତୀୟ ଆନ୍ଦୋଳନର ସମସ୍ତ ପରିଚାଳନା ଭାର ଗ୍ରହଣକରିବେ । ସେ ଘୋଷଣା କରିଥିଲେ ଯେ, "ଇଟାଲୀକୁ ବିଦେଶୀ-ମାନଙ୍କଠାରୁ, ଅନିଷ୍ଟକର ନୀତିଗୁଡ଼ିକଠାରୁ ଏବଂ ପାଗଳମାନଙ୍କଠାରୁ ରକ୍ଷାକରିବାକୁ ପଡ଼ିବ ।" ("Italy must be saved from foreigners evil principles and madmen.") ଅର୍ଥାତ୍ କାଭୁରଙ୍କ ମତରେ ଏପରି କୌଣସି ପନ୍ଥା ଗ୍ରହଣକରିବା ଉଚିତ ନୁହେଁ ଯାହାଦ୍ୱାରା କି ବିଦେଶୀ (ଫ୍ରାନ୍‌ସ ଓ ଅନ୍ୟ ବାହାରରାଷ୍ଟ୍ର) ହସ୍ତକ୍ଷେପକୁ ଉତ୍ତେଜିତ କରାଯାଇ ଜାତୀୟ ଆନ୍ଦୋଳନକୁ ବିପନ୍ନ କରିଦିଆଯିବ ବା ପ୍ରତିଦ୍ୱନ୍ଦ୍ୱୀ ନୀତି (ସାଂବିଧାନିକ ରାଜତନ୍ତ୍ରକୁ ବିରୋଧ କରୁଥିବା ସାଧାରଣତନ୍ତ୍ରବାଦ) ପ୍ରତିଷ୍ଠା କରାଯିବ । ତା'ଛଡ଼ା ଗ୍ୟାରିବାଲ୍‌ଡି ଓ ତାଙ୍କର ଅନୁଚରମାନଙ୍କ ପରି ବିପଥଗାମୀ ଓ ଅତି ଉତ୍ସାହୀ ବ୍ୟକ୍ତିମାନଙ୍କର (ପାଗଳମାନଙ୍କର) କ୍ରିୟାକଳାପରୁ ଇଟାଲୀକୁ ଉଦ୍ଧାର କରିବାକୁ ପଡ଼ିବ । ତେଣୁ କାଭୁର ସାହସିକ ପଦକ୍ଷେପ ନେବାକୁ ବଦ୍ଧପରିକର ହୋଇଥିଲେ । ସେ ଅନୁଭବ କଲେ ଯେ, ଏପରି ପରିସ୍ଥିତିରେ ଭିକ୍ଟର ଇମାନୁଏଲ୍ ନୀରବ ନ ରହି ତତ୍ପରତାର ସହିତ କାର୍ଯ୍ୟକରିବା ଉଚିତ । ଗ୍ୟାରିବାଲ୍‌ଡିଙ୍କୁ ତାଙ୍କ ଇଚ୍ଛାମୁତାବକ କାର୍ଯ୍ୟ କରିବାକୁ ସୁବିଧା ଦିଆଯିବା ଉଚିତ୍ ନୁହେଁ । ସୁବିଧା ଦିଆଗଲେ, ସେ ରୋମ୍ ଉପରେ ଏବଂ ସମ୍ଭବତଃ ଭିନିସିଆ ଉପରେ ଆକ୍ରମଣ କରିବେ । ଫଳରେ ଇଟାଲୀକୁ ଦୁଇଟି ବୃହତ୍ ସାମ୍ରାଜ୍ୟ—ଫ୍ରାନ୍‌ସ ଓ ଅଷ୍ଟ୍ରିୟାର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ଇଟାଲୀର ମୁକ୍ତ ଓ

ଏକତ୍ରୀକରଣ ଦିଗରେ ଯାହା ସବୁ ସମ୍ପାଦନ କରାଯାଇଛି ତାହା ବିପନ୍ନ ହେବାର ଆଶଙ୍କା ରହିଛି ।

କାଭୁରଙ୍କର ହୃଦ୍‌ବୋଧ ହେଲା ଯେ ଗ୍ୟାରିବାଲ୍‌ଡିଙ୍କର ଅଗ୍ରଗତିକୁ ରୋକିବା ସମ୍ଭବପର ନୁହେଁ; ତେଣୁ ଭିକ୍ଟର ଇମାନୁ୍ୟଏଲ୍‌ଙ୍କୁ ଦକ୍ଷିଣ-ଇଟାଲୀ ବିପ୍ଳବର ଦାୟିତ୍ୱ ନେବାକୁ ପରାମର୍ଶ ଦେଲେ । ତା'ଛଡ଼ା ଭିକ୍ଟର ଇମାନୁ୍ୟଏଲ ରୋମ୍ ଓ ତାର ସଂଲଗ୍ନ ଅଞ୍ଚଳକୁ ଛାଡ଼ିଦେଇ ପୋପ୍‌ଙ୍କ ରାଜ୍ୟର ଅବଶିଷ୍ଟ ଅଞ୍ଚଳକୁ ଅଧିକାର କରି ଇଟାଲୀର ନୂତନ ରାଜ୍ୟରେ ସାମିଲ କରିବା କାଭୁର ଚାହୁଁଥିଲେ । କାଭୁରଙ୍କର ବିଶ୍ୱାସ ଜନ୍ମିଥିଲା ଯେ ଭିକ୍ଟର ଇମାନୁ୍ୟଏଲ ଯଦି ପୋପ୍‌ଙ୍କୁ ରୋମ୍‌ରେ କୌଣସି ବାଧା ନ ଦିଅନ୍ତି, ତାହାହେଲେ ପୋପ୍‌ଙ୍କ ରାଜ୍ୟର ଅବଶିଷ୍ଟ ଅଞ୍ଚଳକୁ ସେଠାକାର ଲୋକେ ଇଟାଲୀର ନୂତନ ରାଜ୍ୟରେ ସାମିଲ କରିବାକୁ ଚାହିଁଲେ ତୃତୀୟ ନେପୋଲିୟନ୍ ସେଥିରେ କୌଣସି ଆପତ୍ତି ଉଠାଇବେନାହିଁ । କାଭୁର ଏ ବିଷୟରେ ଠିକ୍ ଅନୁମାନ କରିଥିଲେ । ଶେଷରେ ଯେତେବେଳେ ଜଣାପଡ଼ିଲା ଯେ କାର୍ଯ୍ୟଟା ଯଦି ଶୀଘ୍ର କରାଯାଏ, ନେପୋଲିୟନ୍ ତାକୁ ଅନୁମୋଦନ କରିବେ, ଭିକ୍ଟର ଇମାନୁ୍ୟଏଲ ତାଙ୍କ ସେନାବାହିନୀ ସହିତ ପୋପ୍‌ଙ୍କ ଅଞ୍ଚଳମାନଙ୍କରେ ପ୍ରବେଶ କରିଥିଲେ ଏବଂ ପୋପ୍‌ଙ୍କ ସୈନ୍ୟଦଳଗୁଡ଼ିକ ଉପରେ ଆକ୍ରମଣ ଚଳାଇ ସେମାନଙ୍କୁ ୧୮୬୦ ମସିହା ସେପ୍‌ଟେମ୍ବର ୧୮ ତାରିଖ ଦିନ କାସେଲଫିଡ଼ାର୍‌ଡୋଠାରେ ପରାସ୍ତ କରିଥିଲେ ଏବଂ ଓମ୍ବ୍ରିୟା ଓ ମାର୍ଚ୍ଚେସ୍ ଅଧିକାର କରିନେଇଥିଲେ ।

ପୋପ୍‌ଙ୍କ ସୈନ୍ୟଦଳଗୁଡ଼ିକ ଉପରେ ବିଜୟ ହାସଲକରିବା ପରେ ଭିକ୍ଟର ଇମାନୁ୍ୟଏଲ ତାଙ୍କ ସେନାବାହିନୀ ସହିତ ଦୁଇଟି ଲକ୍ଷ୍ୟ ପୂରଣ କରିବାପାଇଁ ନେପଲ୍‌ସ ରାଜ୍ୟ ଅଭିମୁଖେ ଅଗ୍ରସର ହୋଇଥିଲେ । ତାଙ୍କର ଗୋଟିଏ ଲକ୍ଷ୍ୟ ହେଲା ଦ୍ୱିତୀୟ ଫ୍ରାନ୍‌ସିସ୍‌ଙ୍କ ଅଧୀନରେ ସେ ପର୍ଯ୍ୟନ୍ତ କାପୁଆ ଓ ଗେଇଟାରେ ରହିଥିବା ସୈନ୍ୟବାହିନୀକୁ ପରାସ୍ତକରିବା ଓ ଗ୍ୟାରିବାଲ୍‌ଡି ସେଯାଏଁ ଅଧିକାର କରି ନ ପାରିଥିବା କାପୁଆ ଓ ଗେଇଟାକୁ ଅଧିକାର କରିନେବା । ତାଙ୍କର ଅନ୍ୟ ଲକ୍ଷ୍ୟଟି ହେଲା ଗ୍ୟାରିବାଲ୍‌ଡିଙ୍କ ହାତରୁ ନେପଲ୍‌ସ ରାଜ୍ୟର ପରିଚାଳନା ଭାର କାଢ଼ିନେବା । ଇଟାଲୀରେ ଘଟଣାଗୁଡ଼ିକର କ୍ରମ-ବିକାଶକୁ ନିୟନ୍ତ୍ରଣ କରିବାପାଇଁ ଭିକ୍ଟର ଇମାନୁ୍ୟଏଲ ନେପଲ୍‌ସରେ ସର୍ବୋଚ୍ଚ କ୍ଷମତା ଲାଭକରିବା ଅତ୍ୟାବଶ୍ୟକ ଥିଲା । ବାସ୍ତବରେ ତାଙ୍କର ଦୁଇଟିଯାକ ଲକ୍ଷ୍ୟ ହାସଲ ହୋଇଥିଲା । ସେ ଦ୍ୱିତୀୟ ଫ୍ରାନ୍‌ସିସ୍‌ଙ୍କ ସୈନ୍ୟଦଳଗୁଡ଼ିକୁ କାପୁଆଠାରେ ୧୮୬୦ ମସିହା ନଭେମ୍ବର ଏକ ଓ ଦୁଇ ତାରିଖ ଦିନ ପରାସ୍ତ କରିଥିଲେ ଏବଂ ଗେଇଟା ଅବରୋଧ କରିଥିଲେ ।

ଗ୍ୟାରିବାଲ୍‌ଡି ଭିକ୍ଟର ଇମାନୁ୍ୟଏଲ୍‌ଙ୍କଠାରୁ କାଭୁରଙ୍କ ପଦଚ୍ୟୁତି ଦାବି କରିଥିଲେ ଏବଂ ତାଙ୍କୁ କେତେକ ସର୍ତ୍ତରେ ପରାଜିତ ରାଜ୍ୟକୁ ହସ୍ତାନ୍ତର କରିବାପାଇଁ ଜିଦ୍

ଧରିଥିଲେ; କିନ୍ତୁ ରାଜାଙ୍କର ମନୋଭାବ ଦୃଢ଼ ଥିଲା । ସେ କାଭୁରଙ୍କ ବରଖାସ୍ତ ବିଷୟ ବିଚାର କରିବାକୁ ରୋକ୍‌ଠୋକ୍ ମନା କରିଦେଲେ । ଅଧିକନ୍ତୁ ରାଜା ନିଜେ ତାଙ୍କର ବିରାଟ ସୈନ୍ୟବାହିନୀ ସହିତ ନେପଲ୍‌ସରେ ଉପସ୍ଥିତ ଥିବାରୁ ଏବଂ ସିସିଲି, ନେପଲ୍‌ସ, ଉମ୍ବ୍ରିଆ ଓ ମାର୍ଚ୍ଚେସ୍‌ର ଅଧିକାଂଶ ଲୋକେ ଗଣଭୋଟ ମାଧ୍ୟମରେ ପିଡ୍‌ମଣ୍ଟ-ସାର୍ଡିନିଆ ସହିତ ସଂଯୁକ୍ତ ହେବାକୁ ମତ ପ୍ରକାଶ କରିଥିବାରୁ ଗ୍ୟାରିବାଲ୍‌ଡି ଭିକ୍ଟର ଇମାନୁ୍ୟେଲ୍‌ଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ଶେଷରେ ବାଧ୍ୟ ହୋଇଥିଲେ । ୧୮୬୦ ମସିହା ନଭେମ୍ବର ୭ ତାରିଖ ଦିନ ଭିକ୍ଟର ଇମାନୁ୍ୟେଲ ଓ ଗ୍ୟାରିବାଲ୍‌ଡି ଏକାଠି ନେପ୍‌ଲସର ରାସ୍ତା-ଗୁଡ଼ିକ ଦେଇ ଗାଡ଼ିରେ ବୁଲିଥିଲେ । ଗ୍ୟାରିବାଲ୍‌ଡି କୌଣସି ପୁରସ୍କାର ଓ ସମ୍ମାନ ଗ୍ରହଣ କରିବାକୁ ରାଜି ହୋଇନଥିଲେ । ସେ ମାତ୍ର ସାମାନ୍ୟ ଅର୍ଥ ଏବଂ ତାଙ୍କର କୃଷିକ୍ଷେତ୍ର ପାଇଁ ଏକ ବ୍ୟାଗ ବିନ୍ ମଞ୍ଜି ନେଇ କାପ୍ରିରାକୁ ନୌପଥରେ ଯାତ୍ରା କରିଥିଲେ ।

୧୮୬୧ ମସିହା ଫେବୃୟାରୀ ୧୩ ତାରିଖ ଦିନ ଗେଇଟାର ପତନ ହେଲା ଏବଂ ରାଜା ଦ୍ୱିତୀୟ ଫ୍ରାନ୍‌ସିସ୍ ରୋମ୍‌କୁ ପଳାୟନ କରିଥିଲେ । ଗେଇଟାର ପତନ ପରେ ଭିକ୍ଟର ଇମାନୁ୍ୟେଲଙ୍କ ସାମରିକ କାର୍ଯ୍ୟାନୁଷ୍ଠାନର ଅବସାନ ଘଟିଲା । ୧୮୬୧ ମସିହା ଫେବୃୟାରୀ ୧୮ ତାରିଖ ଦିନ ଭେନିସିଆ ଓ ରୋମ୍‌କୁ ଛାଡ଼ି ସମଗ୍ର ଇଟାଲୀର ପ୍ରତିନିଧିତ୍ୱ କରୁଥିବା ପ୍ରଥମ ଇଟାଲୀୟ ପାର୍ଲାମେଣ୍ଟ ଟୁରିନ୍‌ଠାରେ ବସିଥିଲା । କ୍ଷୁଦ୍ର ପିଡ୍‌ମଣ୍ଟ-ସାର୍ଡିନିଆ ରାଜ୍ୟ ଇଟାଲୀର ସ୍ୱାଧୀନତା ଏବଂ ଏକତ୍ରୀକରଣ ପାଇଁ କାର୍ଯ୍ୟ କଲା ଏବଂ ଇଟାଲୀ ରାଜ୍ୟରେ ସମ୍ପୂର୍ଣ୍ଣ ଭାବେ ମିଶିଗଲା । ପିଡ୍‌ମଣ୍ଟ-ସାର୍ଡିନିଆର ରାଜା ଦ୍ୱିତୀୟ ଭିକ୍ଟର ଇମାନୁ୍ୟେଲଙ୍କୁ ୧୮୬୧ ମସିହା ମାର୍ଚ୍ଚ ୧୭ ତାରିଖ ଦିନ ଇଟାଲୀର ରାଜା ବୋଲି ଘୋଷଣା କରାଯାଇଥିଲା । କାଭୁରଙ୍କ କାର୍ଯ୍ୟ ପ୍ରାୟ ଶେଷ ହୋଇଆସିଥିଲା । ତାଙ୍କର ସର୍ବଶେଷ କାର୍ଯ୍ୟ ହେଲା ଟୁରିନ୍‌ଠାରେ ଇଟାଲୀୟ ପାର୍ଲାମେଣ୍ଟର ଅଧିବେଶନ ବସାଇବା । ତାଙ୍କ ମତରେ ରୋମ୍ ଇଟାଲୀର ଭାବୀ ରାଜଧାନୀ । ଏହା ଇଟାଲୀର ଭୌଗୋଳିକ କେନ୍ଦ୍ର ଓ ଅତି ମହାନ୍ ପରମ୍ପରାର ବାସସ୍ଥଳୀ । ତେଣୁ ଇଟାଲୀର ରାଜଧାନୀ ହେବାପାଇଁ ଏକମାତ୍ର ଉପଯୁକ୍ତ ସ୍ଥାନ । ରୋମ୍‌କୁ ଇଟାଲୀର ରାଜଧାନୀ କରିବାର କଳ୍ପନା କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ସେ ୧୮୬୧ ମସିହା ଜୁନ୍‌ମାସ ୬ ତାରିଖ ଦିନ ଇହଲୀଳା ସାଙ୍ଗ କରିଥିଲେ ।

ଇଟାଲୀ ରାଜ୍ୟ ଅସମ୍ପୂର୍ଣ୍ଣ ରହିଗଲା । ତାହାର ସମ୍ପୂର୍ଣ୍ଣ ଏକତ୍ରୀକରଣ ପାଇଁ ଭେନିସିଆ ଓ ରୋମ୍ ରାଜ୍ୟ ଦୁଇଟି ତାହା ସହିତ ସଂଯୁକ୍ତ ହେବାର ଆବଶ୍ୟକତା ଥିଲା । ଭେନିସିଆ ଅଷ୍ଟ୍ରିଆ ଅଧୀନରେ ଥିଲା ଓ ରୋମ୍ ଫରାସୀ ସୈନ୍ୟବାହିନୀର ସହାୟତାରେ ପୋପ୍‌ଙ୍କଦ୍ୱାରା ଶାସିତ ହେଉଥିଲା । ଭିକ୍ଟର ଇମାନୁ୍ୟେଲ ପ୍ରତୀକ୍ଷା ନୀତି ଗ୍ରହଣ କରିଥିଲେ । ୧୮୬୬ ମସିହାରେ ଅଷ୍ଟ୍ରିଆ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲାରୁ ଭିକ୍ଟର ଇମାନୁ୍ୟେଲ ପ୍ରୁସିଆର ପକ୍ଷ ଅବଲମ୍ବନ କରିଥିଲେ । ଏହାର କାରଣ ହେଲା ପ୍ରୁସିଆର ପ୍ରଧାନମନ୍ତ୍ରୀ ବିସମାର୍କ ଭିକ୍ଟର ଇମାନୁ୍ୟେଲଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ

ସେ ଅଷ୍ଟ୍ରିୟା କବଳରୁ ଭେନିସିଆକୁ ମୁକ୍ତକରି ଅଷ୍ଟ୍ରିୟା ସହିତ ସଂଯୁକ୍ତ ହେବାପାଇଁ ସାହାଯ୍ୟ କରିବେ । ସାଡୋଓ୍ୱା (Sadowa) ଯୁଦ୍ଧରେ ଅଷ୍ଟ୍ରିୟା ପରାଜିତ ହେବାରୁ ପିଡ୍‌ମଣ୍ଟ-ସାର୍ଡିନିଆକୁ ଭେନିସିଆ ଛାଡ଼ିଦିଆଯାଇଥିଲା । ଫଳରେ ଭିକ୍ଟର ଇମାନ୍ୟୁଏଲ ଇଟାଲୀ ରାଜ୍ୟ ସହିତ ଭେନେସିଆକୁ ସଂଯୁକ୍ତ କରିଥିଲେ । ଇଟାଲୀ ରାଜ୍ୟ ପକ୍ଷରେ ରୋମ୍ ଜୟକରିବା କେବଳ ବାକି ରହିଲା । ଫ୍ରାନ୍ସ ଏବଂ ପ୍ରୁସିୟା ମଧ୍ୟରେ ୧୮୭୦ ମସିହାରେ ଯୁଦ୍ଧ ଲାଗିଯାଇଥିଲା । ଫ୍ରାନ୍ସ ରୋମ୍ ନଗରୀରୁ ତାହାର ସେନାବାହିନୀକୁ ଅପସାରଣ କରିବାକୁ ବାଧ୍ୟ ହୋଇଥିଲା । ଫରାସୀ ସୈନ୍ୟ ଅପସାରଣ ସଙ୍ଗେ ସଙ୍ଗେ ଇଟାଲୀର ସେନାବାହିନୀ ରୋମ୍ ଦଖଲ କରିନେଲେ ଏବଂ ସେଠାରେ ସ୍ୱାଧୀନ ଓ ଐକ୍ୟବଦ୍ଧ ଇଟାଲୀର ରାଜଧାନୀ ସ୍ଥାପନ କରାଗଲା । ଇଟାଲୀର ସ୍ୱାଧୀନତା ଓ ଏକତ୍ରୀକରଣ ପାଇଁ ଚାଲିଥିବା ସଂଗ୍ରାମର ଅବସାନ ଘଟିଲା । ତେଣୁ ଇଟାଲୀ ଏକ ସ୍ୱାଧୀନ ଓ ଐକ୍ୟବଦ୍ଧ ରାଜ୍ୟରୂପେ ଇଉରୋପରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲା । ଏକଥା ଅସ୍ୱୀକାର କରିହେବନାହିଁ ଯେ ମ୍ୟାଜିନିଙ୍କ କଲମ, ଗ୍ୟାରିବାଲ୍‌ଡିଙ୍କ ଅସି, କାଭୁରଙ୍କର ବିଚକ୍ଷଣ ରାଜନୀତି ଏବଂ ଭିକ୍ଟର ଇମାନ୍ୟୁଏଲଙ୍କ ସଂଯମ ଓ ସାଧାରଣ ଜ୍ଞାନଦ୍ୱାରା ହିଁ ଇଟାଲୀ ସ୍ୱାଧୀନ ଓ ଐକ୍ୟବଦ୍ଧ ହୋଇପାରିଲା ।



# ଷୋଡ଼ଶ ଅଧ୍ୟାୟ

## ଜର୍ମାନୀ ଏକତ୍ରୀକରଣ ଏବଂ ବିସମାର୍କ

## (The Unification of Germany and Bismarck)

ଅଷ୍ଟାଦଶ ଶତାବ୍ଦୀରେ ଜର୍ମାନୀ ପ୍ରାୟ ୩୬୦ଟି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ନେପୋଲିୟନ୍ ବୋନାପାର୍ଟଙ୍କର ସାମ୍ରାଜ୍ୟ ବିସ୍ତାର ଫଳରେ ଜର୍ମାନୀରେ ନୂତନ ବ୍ୟବସ୍ଥା କରାଯାଇଥିଲା । ଏହି ବ୍ୟବସ୍ଥା ଅନୁସାରେ ଜର୍ମାନୀର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ୱତନ୍ତ୍ର ସହର ଓ ସ୍ୱାଧୀନ ଧର୍ମନଗରୀ ଗୁଡ଼ିକୁ ମିଶାଇ ୩୯ଟି ସ୍ୱାଧୀନ ରାଜ୍ୟରେ ପରିଣତ କରାଯାଇଥିଲା । ପବିତ୍ର ରୋମାନ୍ ସାମ୍ରାଜ୍ୟର ଅସ୍ତିତ୍ୱ ୧୮୦୬ ମସିହାରେ ଲୋପ କରିଦିଆଯାଇଥିଲା । ସାମ୍ରାଜ୍ୟବାଦ ଦୃଷ୍ଟିକୋଣରୁ ନେପୋଲିୟନ୍ ଜର୍ମାନୀର କେତେକ ରାଜ୍ୟକୁ ନେଇ ରାଇନ୍ ରାଜ୍ୟସଂଘ (Confederation of Rhine) ଗଠନ କରିଥିଲେ । ସେହି ରାଜ୍ୟ ସଂଘରେ ନେପୋଲିୟନ୍ଙ୍କର ଅଖଣ୍ଡ କ୍ଷମତା ପ୍ରତିଷ୍ଠିତ ହୋଇଥିଲା । ଅଷ୍ଟ୍ରିୟା ଓ ପ୍ରୁସିୟା ତାଙ୍କ ନିକଟରେ ପରାଜୟ ସ୍ୱୀକାର କରି ଫ୍ରାନ୍ସ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ । ଇତିହାସର ଏହା ଏକ ବିଡ଼ମ୍ବନା ଯେ ସ୍ୱେଚ୍ଛାଚାରୀ ନେପୋଲିୟନ୍ ଜର୍ମାନ ଜାତିକୁ ପ୍ରଥମେ ଐକ୍ୟବଦ୍ଧ ହେବା ଦିଗରେ ପ୍ରେରଣା ଯୋଗାଇଥିଲେ ।

ନେପୋଲିୟନ୍ଙ୍କର ଶାସନ ଓ ସାମ୍ରାଜ୍ୟ ବିରୁଦ୍ଧରେ ଇଉରୋପରେ ଯେଉଁ ଜାତୀୟତାବାଦୀ ଆନ୍ଦୋଳନର ସୂତ୍ରପାତ ହେଲା, ଜର୍ମାନୀର ବିଭିନ୍ନ ରାଜ୍ୟରେ ତା'ର ଏକ ନୂତନ ରୂପ ପରିଦୃଷ୍ଟ ହେଲା । ଏକ ସଂସ୍କୃତି, ଏକ ଭାଷା ଓ ସାହିତ୍ୟ, ଏକ ଜାତି ଓ ଏକ ପ୍ରକାର ଜୀବନଧାରା ମଧ୍ୟରେ ଅନ୍ତର୍ନିହିତ ଏକତ୍ୱ, ଯାହା ଜର୍ମାନମାନେ ସମ୍ଭବତଃ ଏ ପର୍ଯ୍ୟନ୍ତ ଅନୁଭବ କରିନଥିଲେ ତାହା ସାମ୍ରାଜ୍ୟବାଦର ନିଷ୍ପେଷଣ ଫଳରେ ସ୍ୱତଃସ୍ଫୂର୍ତ୍ତିରୂପେ ଆତ୍ମପ୍ରକାଶ କଲା । ବସ୍ତୁତଃ ନେପୋଲିୟନ୍ଙ୍କ ବିରୁଦ୍ଧରେ ଜାଗ୍ରତ ମୁକ୍ତି ଆନ୍ଦୋଳନ ହିଁ ଜର୍ମାନ ଜାତୀୟତାବାଦ ଆନ୍ଦୋଳନର ପ୍ରଥମ ଉଜ୍ଜ୍ୱଳ ସୋପାନ । ଜର୍ମାନବାସିଗଣ ତାଙ୍କ ବିରୁଦ୍ଧରେ ମୁକ୍ତି ସଂଗ୍ରାମରେ ବହୁକାଳ ଯୁଦ୍ଧକରି ସେମାନଙ୍କର ଜାତୀୟ ଐକ୍ୟର ପ୍ରୟୋଜନୀୟତା ଉପଲବ୍ଧି କରିଥିଲେ ।

୧୮୧୫ ମସିହାରେ ନେପୋଲିୟନ୍ଙ୍କର ପତନ ହେଲା । ଜର୍ମାନୀର ଏକତ୍ରୀକରଣ ପାଇଁ ଯେଉଁ ପରିବେଶ ସୃଷ୍ଟି ହୋଇଥିଲା, ଭିଏନା କଂଗ୍ରେସ (୧୮୧୫) ତାକୁ ଉପେକ୍ଷା କରି ଜର୍ମାନ ରାଷ୍ଟ୍ରଗୁଡ଼ିକର ଏକ ଅଂଶବଦ୍ଧ ରାଷ୍ଟ୍ରସଂଘ ଅଷ୍ଟ୍ରିୟାର ଅଧୀନରେ ସ୍ଥାପନ କରିଥିଲା । ଜାତୀୟ ସ୍ୱାଧୀନତାକାମୀ ଜର୍ମାନବାସିଗଣ ଯଦିଓ ଏହି ବ୍ୟବସ୍ଥା ଫଳରେ

ହତୋତ୍ସାହ ହୋଇପଡ଼ିଥିଲେ, ତଥାପି ଜାତୀୟ ଐକ୍ୟସାଧନ ପାଇଁ ସେମାନଙ୍କର ଆଗ୍ରହ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ଭିଏନା କଂଗ୍ରେସ ସେମାନଙ୍କର ଜାତୀୟ ଭାବଧାରାକୁ ପ୍ରତିରୋଧ କରିପାରି ନଥିଲା । ମେଟାରନିକଙ୍କ ଆଦର୍ଶରେ ଅନୁପ୍ରାଣିତ ଇଉରୋପରେ ଯେତେବେଳେ ସାମ୍ରାଜ୍ୟବାଦ ଓ ରାଜତନ୍ତ୍ରର ମହତ୍ତ୍ୱ ପୁନର୍ବାର ପ୍ରତିଷ୍ଠିତ ହେଉଥିଲା, ସେତେବେଳେ ଜର୍ମାନୀରେ ଜାତୀୟତାବାଦ ଆନ୍ଦୋଳନର ବିକାଶ ନ ହେବା ସ୍ୱାଭାବିକ । ଭିଏନା-ଚୁକ୍ତି ଫଳରେ ଗଠିତ ଜର୍ମାନ ଡାଏଟ (ପାର୍ଲାମେଣ୍ଟ) ର ପ୍ରେସିଡେଣ୍ଟ ଭାବରେ ଅଷ୍ଟ୍ରିୟା ରହିଲା । ଜର୍ମାନୀର ଏକତ୍ରୀକରଣ ଏହା ଫଳରେ ବହୁଦିନ ଘୁଞ୍ଚିଗଲା । ଜର୍ମାନୀର ଏକତ୍ରୀକରଣ ଆନ୍ଦୋଳନ ନିମିତ୍ତ ଆବଶ୍ୟକ ଗଣଚେତନା ଜର୍ମାନୀର ସବୁ ରାଜ୍ୟରେ ନଥିଲା । ଜର୍ମାନ-ଭାଷାଭାଷୀ ସମସ୍ତ ଲୋକଙ୍କୁ ନେଇ ଜର୍ମାନ ଜାତୀୟ ରାଷ୍ଟ୍ର (National State) ପରିକଳ୍ପନା ତାତ୍କାଳୀନ ସମାଜରେ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ମୁଖ୍ୟତଃ ଆବଦ୍ଧ ଥିଲା । ଜନସାଧାରଣଙ୍କ ସହଯୋଗ ବ୍ୟତିରେକ ଏକ ଗଣଆନ୍ଦୋଳନ ଚଳା କରାଯାଇ-ପାରେନାଁ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜର୍ମାନ ଜାତୀୟତାବାଦ ଆନ୍ଦୋଳନର ପ୍ରସାର ଉପଯୁକ୍ତ ନେତୃତ୍ୱର ଓ ଜନସାଧାରଣଙ୍କର ଉପଯୁକ୍ତ ରାଜନୈତିକ ଚେତନାର ଅଭାବଯୋଗୁ ସମ୍ଭବ ହେଲାନାହିଁ ବୋଲି ମନେକରାଯାଇପାରେ ।

ଦୀର୍ଘକାଳର ଯୁଦ୍ଧ ଓ ନେପୋଲିୟନଙ୍କର ବିରୁଦ୍ଧରେ ପରିଚାଳିତ ମୁକ୍ତି-ସଂଗ୍ରାମ ଯୋଗୁ ଜର୍ମାନ ରାଜ୍ୟଗୁଡ଼ିକର ବିଶେଷ କ୍ଷୟକ୍ଷତି ଘଟିଥିଲା । ତେଣୁ ସେମାନେ ୧୮୧୫ ମସିହା ପରେ ଆଭ୍ୟନ୍ତରୀଣ ପୁନର୍ଗଠନ, ସଂସ୍କାର ଏବଂ ପୁନଃ ନିର୍ମାଣ କାର୍ଯ୍ୟରେ ଏତେଦୂର ବ୍ୟାପୃତ ରହିଲେ ଯେ, ଜର୍ମାନୀର ଏକତ୍ରୀକରଣ ପାଇଁ ଆଉ ଧ୍ୟାନ ଦେଇପାରିଲେନାହିଁ । ଯୁଦ୍ଧୋତ୍ତର ପୁନର୍ଗଠନ କାର୍ଯ୍ୟ, ଆର୍ଥିକ ଅନଟନ ଓ ଜର୍ମାନୀର ବିଭିନ୍ନ ରାଷ୍ଟ୍ର ଓ ଦଳ ମଧ୍ୟରେ ଥିବା ଆଦର୍ଶଗତ ବୈଷମ୍ୟ ଓ ରାଜନୈତିକ ମତାନ୍ତର ମଧ୍ୟରେ ହୁଏତ ଜର୍ମାନୀର ଏକତ୍ରୀକରଣ ପାଇଁ ଆରମ୍ଭ ହୋଇଥିବା ଆନ୍ଦୋଳନ ଅବ୍ୟାହତ ରହିଥାନ୍ତା; କିନ୍ତୁ ମେଟାରନିକଙ୍କ କୂଟନୀତି ସମ୍ମୁଖରେ ତାହା ସମ୍ଭବ ନ ଥିଲା । ଅଷ୍ଟ୍ରିୟା ସାମ୍ରାଜ୍ୟର ପ୍ରଧାନମନ୍ତ୍ରୀ ମେଟାରନିକଙ୍କୁ ଏକଥା ସ୍ପଷ୍ଟ ଜଣାଯାଇଥିଲା ଯେ, ଜର୍ମାନୀର ଏକତ୍ରୀକରଣ ସଙ୍ଗେ ସଙ୍ଗେ ଅଷ୍ଟ୍ରିୟାର ଶକ୍ତି, ସାମର୍ଥ୍ୟ, ସମ୍ମାନ ଓ ସାମ୍ରାଜ୍ୟ ଲୋପପାଇଯିବ । ତେଣୁ ଚତୁର କୂଟନୀତିଦ୍ୱାରା ଜର୍ମାନୀର ଏକତ୍ରୀକରଣ ପାଇଁ ସେ ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ତାଙ୍କ ଦ୍ୱାରା ଘୋଷିତ କାର୍ଲସବାଦ ଖସଡ଼ା (Carlsbad Decree) ଦ୍ୱାରା ତିନି ଦଶନ୍ଧି ଧରି ଅତ୍ୟାଚାରୀ ଶାସନତନ୍ତ୍ର ଜର୍ମାନମାନଙ୍କ ଉପରେ ଲଦି ଦିଆଗଲା ।

ବିଖ୍ୟାତ ଜେନା ବିଶ୍ୱବିଦ୍ୟାଳୟର ଛାତ୍ରମାନେ ନେପୋଲିୟନଙ୍କ ବିରୁଦ୍ଧରେ ଯୁଦ୍ଧ ଚାଲିଥିଲା ବେଳେ ଜର୍ମାନୀର ବିଭିନ୍ନ ରାଷ୍ଟ୍ରର ଛାତ୍ରମାନଙ୍କୁ ନେଇ ଏକ ଜାତୀୟ ବିଦ୍ୟାର୍ଥୀ ସମାଜ (Burschenschaft) ଗଠନ କରିଥିଲେ । ଏହି ସମାଜର ଲକ୍ଷ୍ୟ ଥିଲା, ଜର୍ମାନବାସୀଙ୍କ ମନରେ ଜାତୀୟଭାବ ଓ ଦେଶପ୍ରେମ ଉଦ୍ରେକ କରିବା ସଙ୍ଗେ ସଙ୍ଗେ

ଅବିଭକ୍ତ ପିତୃଭୂମି ପ୍ରତିଷ୍ଠା କରିବାପାଇଁ ପ୍ରେରଣା ଯୋଗାଇବା । ଉତ୍କଳ ସ୍ୱଦେଶପ୍ରେମ ଏହି ନୂତନ ସଂଗଠନର ବୈଶିଷ୍ଟ୍ୟ ଥିଲା । ଅବିଳମ୍ବେ ଏହି ସଂଗଠନ ଜର୍ମାନୀର ଷୋଳଟି ବିଶ୍ୱବିଦ୍ୟାଳୟରେ ସମିତିମାନ ସ୍ଥାପନ କରିବାରେ କୃତକାର୍ଯ୍ୟ ହୋଇଥିଲା । ଉକ୍ତ ସମିତିଗୁଡ଼ିକର ପ୍ରତିନିଧିମାନଙ୍କୁ ନେଇ ଏକ ସଭା କରିବାକୁ ଏବଂ ତାକୁ ଦେଶହିତୈଷୀ ଉତ୍ସବ ରୂପଦେବାକୁ ନିଷ୍ପତ୍ତି କରାଗଲା । ଏହି ଉତ୍ସବ ୧୮୧୭ ମସିହା ଅକ୍ଟୋବର ୯ ତାରିଖ ପ୍ରସିଦ୍ଧ ଲିପ୍‌ଜିଗ (Leipzig) ଯୁଦ୍ଧର ଚତୁର୍ଥ ବାର୍ଷିକୀ ଦିନ ଓ୍ୱାର୍ଟବର୍ଗ (Wartburg) ଠାରେ ଅନୁଷ୍ଠିତ ହେବାର ମଧ୍ୟ ଆୟୋଜନ କରାଗଲା । ନିର୍ଦ୍ଦିଷ୍ଟ ଦିନ ସ୍ଥିରୀକୃତ ସ୍ଥାନରେ ଉତ୍ସବ ପାଳନ କରାଗଲା ଏବଂ ସେଠାରେ ରୂଢ଼ୀବାଦୀ ପରମ୍ପରାର ଧ୍ୱଂସକାମନା କରାଯିବା ସଙ୍ଗେ ସଙ୍ଗେ ରୋମ୍ ଓ ନେପୋଲିୟନ୍‌ଙ୍କ କବଳରୁ ଜର୍ମାନଜାତିର ମୁକ୍ତି ବିଷୟରେ ଉତ୍ତେଜନାପୂର୍ଣ୍ଣ ବକ୍ତୃତାମାନ ଦିଆଯାଇଥିଲା । ସେଦିନ ରାତିରେ ଏକ ଅଗ୍ନି ଉତ୍ସବ (Bon fire) କରାଯାଇ ଘୃଣ୍ୟ ପ୍ରତିକ୍ରିୟାର ବିଭିନ୍ନ ପ୍ରତୀକମାନ ଅଗ୍ନି ମଧ୍ୟକୁ ଫିଙ୍ଗି ଦିଆଯାଇଥିଲା । ଏକଥା ଅସ୍ୱୀକାର କରିହେବ ନାହିଁ ଯେ ପ୍ରତିଷ୍ଠିତ ଶାସନ ବ୍ୟବସ୍ଥା ବିରୁଦ୍ଧରେ ଛାତ୍ରମାନଙ୍କର ତୀବ୍ର ସମାଲୋଚନା ଶାସକଗୋଷ୍ଠୀକୁ ବିଚଳିତ କରିଥିଲା । ଉତ୍ସବ ଶେଷ ହେଲା ଏବଂ ଛାତ୍ରମାନେ ଯେଝା ଯେଝା ସ୍ଥାନକୁ ଫେରିଗଲେ । ଉତ୍ସବ ସମୟରେ ସେମାନଙ୍କର କାର୍ଯ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇ ନଥିଲେ ମଧ୍ୟ ତାହାର ଫଳ ଅପ୍ରତ୍ୟାଶିତ ହୋଇଥିଲା । ରକ୍ଷଣଶୀଳ ରାଜା ଓ ରାଜନୀତିଜ୍ଞମାନେ ଛାତ୍ରମାନଙ୍କ ସମାଲୋଚନାକୁ ବିପଦ-ସଙ୍କେତ ବୋଲି ମନେ କରିଥିଲେ । ମେଟାରନିକ୍ ଜର୍ମାନୀର ଶାସକମାନଙ୍କୁ ସତର୍କବାଣୀ ଶୁଣାଇ କହିଥିଲେ ଯେ ଓ୍ୱାର୍ଟବର୍ଗ ଉତ୍ସବ ନିଶ୍ଚିତଭାବେ ଆସୁଥିବା ଅତ୍ୟଧିକ ବିପଦର ପୂର୍ବାଭାସ ମାତ୍ର । କିଛୁଦିନ ପରେ ଏପରି ଏକ ଆତଙ୍କଜନକ ଘଟଣା ଘଟିଲା, ଯାହା ମେଟାରନିକ୍‌ଙ୍କ ସତର୍କବାଣୀର ସତ୍ୟତା ପ୍ରତିପାଦିତ କରିଥିଲା । ୧୮୧୯ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ସାମ୍ବାଦିକ ଓ ନାଟ୍ୟକାର କୋଜେବ୍ୟୁ (Kotzebue)ଙ୍କୁ ହତ୍ୟା କରାଯାଇଥିଲା । ସେ ରୁଷିଆର ଗୁପ୍ତଚରଭାବେ କାର୍ଯ୍ୟ କରୁଥିବାର ସନ୍ଦେହକରି ଛାତ୍ରମାନେ ତାଙ୍କୁ ଘୃଣାଚକ୍ଷୁରେ ଦେଖୁଥିଲେ । ଏହି ଘଟଣା ପରେ ମଧ୍ୟ ନାସାଉ (Nassau)ର ଜଣେ ସରକାରୀ କର୍ମଚାରୀଙ୍କୁ ହତ୍ୟା କରିବାର ଉଦ୍ୟମ ହୋଇଥିଲା । ଏହି ଦୁଇଟି ଘଟଣା ଏବଂ ଅନ୍ୟ କେତେକ ଘଟଣା ଯୋଗୁ ମେଟାରନିକ୍ ଜର୍ମାନୀରେ ପ୍ରତିକ୍ରିୟାଶୀଳ ନୀତି ପ୍ରବର୍ତ୍ତନ କରିବାପାଇଁ ସୁଯୋଗ ପାଇଲେ । ସେ କୋଜେବ୍ୟୁଙ୍କ ହତ୍ୟା ଘଟଣାକୁ ଏପରି ଭାବରେ ଚର୍ଚ୍ଚିତ କଲେ ଯେ ଜର୍ମାନ ରାଷ୍ଟ୍ରଗୁଡ଼ିକ ସେଥିରେ ଆତଙ୍କିତ ହୋଇପଡ଼ିଲେ । ଏପରି ପରିସ୍ଥିତିରେ ମେଟାରନିକ ନିଜର ଉଦ୍ଦେଶ୍ୟ ସାଧନ କରିଥିଲେ । ସେ ଜର୍ମାନ ଡାଏଟ୍‌ଦ୍ୱାରା କାର୍ଲ୍‌ସ୍‌ବାଦ ଖସଡ଼ା ଗ୍ରହଣ କରାଇ-ନେଇଥିଲେ । ଏହି ଖସଡ଼ା ଘୋଷଣା କରାଯିବା ଫଳରେ ଉଦାରଭାବାପନ୍ନ ଆନ୍ଦୋଳନକୁ ଦୃଢ଼ହସ୍ତରେ ଦମନ କରାଗଲା । ବିଶ୍ୱବିଦ୍ୟାଳୟଗୁଡ଼ିକୁ ଅତ୍ୟାବଶ୍ୟକ ସରକାରଙ୍କର ନିୟନ୍ତ୍ରଣାଧୀନରେ ରଖାଗଲା । ସମ୍ବାଦପତ୍ର ଓ ମୁଦ୍ରାଣାଳୟ ଉପରେ କଠୋର ଯାଞ୍ଚବ୍ୟବସ୍ଥା

ଲଦିଦିଆଗଲା । ଛାତ୍ର ସଂଗଠନ ସବୁ ଧ୍ୱଂସକରି ଦିଆଗଲା । ବିଶ୍ୱବିଦ୍ୟାଳୟର ଶିକ୍ଷକମାନଙ୍କର ଗତିବିଧି ଉପରେ ସତର୍କ ଦୃଷ୍ଟି ରଖାଗଲା । ପୁଲିସ୍‌ଙ୍କ ହାତରେ ଅଖଣ୍ଡ କ୍ଷମତା ଦିଆଗଲା । କାର୍ଲସ୍‌ବାଦ ଖସଡ଼ା ଏହିପରି ଭାବରେ ଜର୍ମାନୀର ରାଜନୈତିକ ଜୀବନକୁ ପଙ୍ଗୁ କରି ଦେଇଥିଲା । ଫଳରେ ଜର୍ମାନ ଜାତି ଏକ ବୌଦ୍ଧିକ ନିର୍ଯାତନାରେ ଶିହରି ଉଠିଥିଲା । ୧୮୩୦ ମସିହା ଜୁଲାଇ ବିପ୍ଳବର ଅସ୍ପଷ୍ଟ ପ୍ରତିଧ୍ୱନିକୁ ବାଦ ଦେଲେ, ୧୮୪୮ ମସିହା ପର୍ଯ୍ୟନ୍ତ ଜର୍ମାନୀର ରାଜନୈତିକ ନିସ୍ତବ୍‌ଧତା ଭଙ୍ଗ ହୋଇନଥିଲା ।

ଜର୍ମାନୀରେ ଯଦିଓ ରାଜନୈତିକ ସମ୍ଭାବନା ମେଟାରନିକଙ୍କଦ୍ୱାରା ପ୍ରତିରୋଧ କରାଯାଇଥିଲା, ତଥାପି ସେଠାରେ ଦୁଇଟି ଆନ୍ଦୋଳନ ସଂଘଟିତ ହୋଇ ଶେଷରେ ତାଙ୍କର ସମସ୍ତ ଗଣନାକୁ ବ୍ୟର୍ଥ କରିଥିଲା ଏବଂ ଜର୍ମାନ ଜାତିକୁ କ୍ରମେ ଐକ୍ୟର ପଥେ ଆଗେଇ ନେଇଯାଇଥିଲା । ପ୍ରୁସିଆ ତାହାର ବାଣିଜ୍ୟ ଶୁଳ୍କ ନୀତିର ସଂଶୋଧନ କରି ପ୍ରଥମ ଆନ୍ଦୋଳନର ସୂତ୍ରପାତ କରିଥିଲା । ୧୮୧୮ ମସିହାରେ ପ୍ରୁସିଆର ନେତୃତ୍ୱରେ 'ଜୋଲ୍‌ଭରେନ୍' (Zollverein) ବା ଏକ ଶୁଳ୍କ ସଂକ୍ରାନ୍ତ ସଙ୍ଘ ଗଢ଼ାଯାଇଥିଲା ଏବଂ ଏହାଦ୍ୱାରା ପ୍ରୁସିଆ ଓ ତାହାର ପଡ଼ୋଶୀ ରାଜ୍ୟମାନେ ଅବାଧ-ବାଣିଜ୍ୟନୀତି ଉପରେ ଭିତ୍ତିକରିଥିବା ଏକ ଅର୍ଥନୈତିକ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ହେଲେ । ପ୍ରକୃତରେ ଏହି ସଙ୍ଘର ସଭ୍ୟମାନେ ଶୁଳ୍କ-ପ୍ରାଚୀରଗୁଡ଼ିକ (Tariff walls) ଉଠାଇଦେଇ ନିଜ ନିଜ ମଧ୍ୟରେ ଅବାଧ ବାଣିଜ୍ୟ କାରବାର ପ୍ରଚଳନ କରିଥିଲେ । ତେଣୁ ସେମାନେ ସମାନ ରାଜସ୍ୱବିଷୟକ ନୀତି ଅବଲମ୍ବନ କରିଥିଲେ । ୧୮୫୦ ମସିହା ବେଳକୁ ଅଷ୍ଟ୍ରିୟା ବ୍ୟତୀତ ଜର୍ମାନୀର ଅନ୍ୟ ସବୁ ରାଜ୍ୟ 'ଜୋଲଭରେନ' (Zollverein) ରେ ଯୋଗଦେଇଥିଲେ ଏବଂ ପ୍ରୁସିଆ ଏକ ବ୍ୟାପକ ଅର୍ଥନୈତିକ ସଙ୍ଘର ମୁଖ୍ୟ ହୋଇ ରହିଲା । ଜର୍ମାନ ରାଜ୍ୟମାନଙ୍କ ଅର୍ଥନୈତିକ ସମସ୍ୱାର୍ଥତାର ରାଜନୈତିକ ଗୁରୁତ୍ୱ ଅତ୍ୟଧିକ ଥିଲା । ଏହା ଲୋକମାନଙ୍କ ଦୃଷ୍ଟି ଅଷ୍ଟ୍ରିୟା ଆଡ଼ୁ ପ୍ରୁସିଆ ଆଡ଼କୁ ଫେରାଇ ଆଣିଥିଲା ଏବଂ ପ୍ରୁସିଆର ନେତୃତ୍ୱାଧୀନରେ ଜର୍ମାନୀର ଐକ୍ୟପାଇଁ ଏହା ଥିଲା ବାସ୍ତବ ପ୍ରସ୍ତୁତିକ୍ଷେତ୍ର । ସୁତରାଂ ଏହି ଅର୍ଥନୈତିକ ସଙ୍ଘ ଥିଲା ରାଜନୈତିକ ସଙ୍ଘର ପୂର୍ବାଭାସ । ଅର୍ଥାତ୍ ପ୍ରୁସିଆର ଅଧୀନରେ ଜର୍ମାନ ରାଜ୍ୟଗୁଡ଼ିକ ଅର୍ଥନୈତିକ କ୍ଷେତ୍ରରେ ଐକ୍ୟବଦ୍ଧ ହେବା ଫଳରେ ଭବିଷ୍ୟତରେ ତାହାର ଅଧୀନରେ ଜର୍ମାନୀର ରାଜନୈତିକ ଐକ୍ୟର ପଥ ପ୍ରସ୍ତୁତ ହୋଇଥିଲା । ତା'ଛଡ଼ା ଭବିଷ୍ୟତରେ ଅଷ୍ଟ୍ରିଆ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ ସଙ୍ଘଟିତ ହେଲେ ପ୍ରୁସିଆକୁ କେତେକ ଜର୍ମାନରାଜ୍ୟ ସାହାଯ୍ୟ କରିବେ ବୋଲି ସୂଚନା ମିଳିଥିଲା । ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ଜୋଲଭରେନ୍ ଜର୍ମାନ ଜାତି ମଧ୍ୟରେ ଜାତୀୟତାବୋଧ ସୃଷ୍ଟି କରିଥିଲା ।

ଜର୍ମାନ କବି, ଦାର୍ଶନିକ ଓ ଐତିହାସିକମାନଙ୍କର ପ୍ରଭାବରେ ଉଦ୍‌ବୁଦ୍ଧ ହୋଇ ଜର୍ମାନ ଜାତିର ଲୋକମାନେ ଐକ୍ୟବଦ୍ଧ ହେବାପାଇଁ ଅନ୍ୟ ଏକ ଆନ୍ଦୋଳନ ସୃଷ୍ଟି କରିଥିଲେ । ଏହି ଆନ୍ଦୋଳନକୁ 'ପ୍ୟାନ-ଜର୍ମାନିଜମ୍' (Pan-Germanism)

କୁହାଯାଏ । ନେପୋଲିୟନ୍‌ଙ୍କ ସହିତ ଯୁଦ୍ଧ ପରେ ପରେ ଜର୍ମାନୀରେ ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ବିଶେଷ ଉନ୍ନତି ପ୍ରକାଶ ପାଇଥିଲା । କବି, ଦାର୍ଶନିକ ଓ ଐତିହାସିକମାନେ ଜର୍ମାନୀର ଐକ୍ୟ ଏବଂ ଟ୍ୟୁଟନ ଜାତିର ଐତିହାସିକ ଭୂମିକା ବିଷୟରେ ଉଚ୍ଚ ପ୍ରଶଂସାକରି ଲେଖାମାନ ଲେଖିଥିଲେ । ଜାତୀୟତାବାଦ ରାଜନୀତି କ୍ଷେତ୍ରରେ ବାଧାପ୍ରାପ୍ତ ହୋଇଥିଲେ ମଧ୍ୟ ଭାବରାଜ୍ୟରେ ଯଥେଷ୍ଟ ଅଗ୍ରଗତି କରିଥିଲା । ଜର୍ମାନୀରେ ବୌଦ୍ଧିକ ପୁନରଭ୍ୟୁଦୟର ଦୁଇଜଣ ନେତା ହେଲେ ଫିକ୍‌ଟି (Fichte) ଏବଂ ହେଗେଲ (Hegel) । ଏମାନଙ୍କ ବ୍ୟତୀତ ଡାହଲମ୍ୟାନ (Dahlman), ଷ୍ଟାଇନ (Stein), ବୋହମାର (Bohmer), ହାଉସାର (Housser) ପ୍ରଭୃତି ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କର ଏହି ବୌଦ୍ଧିକ ପୁନରଭ୍ୟୁଦୟ ପ୍ରତି ଅବଦାନ କିଛି ଊଣା ନଥିଲା । ଏହି କବି, ଦାର୍ଶନିକ ଓ ଐତିହାସିକମାନେ ଜର୍ମାନଜାତି ମଧ୍ୟରେ ଐକ୍ୟବଦ୍ଧ ହେବାର ସ୍ପୃହା ଜାଗ୍ରତ କରିବାରେ ସାହାଯ୍ୟ କରିଥିଲେ । ଏହିପରି ଜର୍ମାନୀରେ ଜାତୀୟତାବାଦର ପ୍ରସାର ହେଲା ।

୧୮୩୦ ମସିହାରେ ଜୁଲାଇ ବିପ୍ଳବ ଜର୍ମାନୀର ରାଜ୍ୟମାନଙ୍କରେ ଜାତୀୟ ଜାଗରଣ ସୃଷ୍ଟି କରିଥିଲା ସତ; କିନ୍ତୁ ମେଟାରନିକ୍‌ଙ୍କ ସାହାଯ୍ୟରେ ତାହା ଦୃଢ଼ ହସ୍ତରେ ଦମନ କରାଯାଇଥିଲା । ୧୮୪୮ ଏବଂ ୧୮୪୯ ମସିହାରେ ଜର୍ମାନବାସିଗଣ ଅଧିକ ଉତ୍ସାହ ସହିତ ଜାତୀୟ ଐକ୍ୟସାଧନ ପାଇଁ ଉଦ୍ୟମ କରିଥିଲେ । ଜର୍ମାନ ବିପ୍ଳବୀମାନେ ଫ୍ରାଙ୍କଫୋର୍ଟରେ ଏକ ଜାତୀୟ ସଭା ଆହ୍ୱାନ କରି ପ୍ରୁସିୟାର ରାଜାଙ୍କୁ ଜର୍ମାନୀର ସିଂହାସନ ଦେବାପାଇଁ ପ୍ରସ୍ତାବ କଲେ । କିନ୍ତୁ ପ୍ରୁସିୟାର ରାଜା ଚତୁର୍ଥ ଫ୍ରେଡରିକ୍ ଉଇଲିୟମ୍ ସିଂହାସନ ଗ୍ରହଣ କରିବାକୁ ମନାକରିଦେଲେ । ତେଣୁ ଫ୍ରାଙ୍କଫୋର୍ଟ୍ ପାର୍ଲାମେଣ୍ଟର କାର୍ଯ୍ୟାବଳୀ ଅର୍ଥହୀନ ହୋଇଯାଇଥିଲା ।

ପ୍ରୁସିୟା ରାଜା ଯଦିଓ ଫ୍ରାଙ୍କଫୋର୍ଟ୍ ପାର୍ଲାମେଣ୍ଟ ଅର୍ପଣ କରିଥିବା ଐକ୍ୟବଦ୍ଧ ଜର୍ମାନୀର ମୁଖ୍ୟ ଶାସକପଦ ଅଗ୍ରାହ୍ୟ କରିଦେଲେ, ସେ ଜର୍ମାନୀ ଐକ୍ୟ ନୀତିକୁ ଦୃଢ଼ଭାବେ ସମର୍ଥନ କରିଥିଲେ । ସେ ଖାଣ୍ଟି ଜର୍ମାନ ରାଜ୍ୟଗୁଡ଼ିକର ଏକ ସଙ୍ଘ ଗଢ଼ିବାପାଇଁ ପ୍ରସ୍ତାବ କରିଥିଲେ ଏବଂ ଏରଫର୍ଟ୍ (Erfurt) ଠାରେ ଏକ ସଙ୍ଘୀୟ ସମ୍ବିଦ ବା ଫେଡେରାଲ ପାର୍ଲାମେଣ୍ଟ ପ୍ରତିଷ୍ଠାକରି ତାର ସଭାପତି ହେବାକୁ ଚାହିଁଥିଲେ । ଏଥିରୁ ଅଷ୍ଟ୍ରିୟାର ଜର୍ମାନୀରୁ ବହିଷ୍କରଣ ସୂଚନା ମିଳିଥିଲା । ଜର୍ମାନୀର ଅଧିକାଂଶ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଏହି ପ୍ରୁସିୟା ସଙ୍ଘରେ ଯୋଗଦେଇଥିଲେ; କିନ୍ତୁ ଅଷ୍ଟ୍ରିୟା ଜର୍ମାନୀରୁ ବାହାରିଯିବା ପାଇଁ ମନାକରିଦେବା ସଙ୍ଗେ ସଙ୍ଗେ ୧୮୫୦ ମସିହାରେ ଓଲମଟଜ୍ କନ୍‌ଭେନସନ (Convention of Olmutz) ରେ ଗୃହୀତ ହୋଇଥିବା ନିଷ୍ପତ୍ତି ଅନୁଯାୟୀ ପ୍ରୁସିୟାକୁ ତାହାର ଏହି ପରିକଳ୍ପନାମାନ ପରିହାର କରିବାକୁ ବାଧ୍ୟ କରିଥିଲା । ଏହାକୁ ପ୍ରସିଦ୍ଧ 'ଓଲମଟଜ୍ ଅବମାନନା' ('Humiliation of Olmutz') ବୋଲି ଅଭିହିତ କରାଯାଇଅଛି । ଅଷ୍ଟ୍ରିୟା ମଧ୍ୟ ୧୮୪୮

ମସିହାରେ ସ୍ଥଗିତ ରଖାଯାଇଥିବା ଜଣାଶୁଣା ଜର୍ମାନ ରାଷ୍ଟ୍ରସଂଘର ପୁନଃସ୍ଥାପନ ଦାବି କରିଥିଲା । ୧୮୫୧ ମସିହାରେ ତାହା କରାଯାଇଥିଲା ।

ଚତୁର୍ଥ ଫ୍ରେଡରିକ୍ ୱିଇଲିୟମଙ୍କ ମୃତ୍ୟୁ ପରେ ୧୮୬୧ ମସିହାରେ ତାଙ୍କ ଭାଇ ପ୍ରଥମ ୱିଇଲିୟମ ପ୍ରୁସିଆର ସିଂହାସନ ଆରୋହଣ କଲେ । ତାଙ୍କର ସିଂହାସନ ଆରୋହଣ ସଙ୍ଗେ ସଙ୍ଗେ ପ୍ରୁସିଆର ଇତିହାସରେ ଏକ ନୂତନ ଯୁଗ ଆରମ୍ଭ ହେଲା । ପ୍ରୁସିଆର ରାଷ୍ଟ୍ର ବ୍ୟବସ୍ଥାରେ ଏକ ବିରାଟ ପରିବର୍ତ୍ତନ ଘଟିଲା । ପ୍ରଥମ ୱିଇଲିୟମଙ୍କର ନିରଙ୍କୁଶ ଶାସନ ପଦ୍ଧତିରେ ଦୃଢ଼ ବିଶ୍ୱାସ ଥିଲା ଓ ସେ ରାଜାଙ୍କର ବିଶେଷ କ୍ଷମତା (Prerogatives)ର ବଳିଷ୍ଠ ସମର୍ଥକ ଥିଲେ । ସେ ରାଜପଦ ଗ୍ରହଣ କଲା ପରେ ପରେ ଉଭୟ ଆଭ୍ୟନ୍ତରୀଣ ଓ ବୈଦେଶିକ ନୀତିରେ ନୂତନ ଶକ୍ତି ସଞ୍ଚାର ହୋଇଥିଲା । ପ୍ରଥମ ୱିଇଲିୟମ ପ୍ରକୃତରେ ଥିଲେ ଜଣେ ଖାଣ୍ଟି ପ୍ରୁସୀୟ ଏବଂ ସେ ତାଙ୍କ ଦେଶର ଭାଗ୍ୟ ଓ ଲକ୍ଷ୍ୟ ବିଷୟରେ ସଚେତନ ଥିଲେ । ତାଙ୍କ ରାଜ୍ୟ ସକାଶେ ଉତ୍ତମ କର୍ମଚାରୀମାନ ବାଛିବାରେ ସେ ଅସାଧାରଣ ପ୍ରତିଭା ପ୍ରଦର୍ଶନ କରିଥିଲେ ଏବଂ ସେମାନଙ୍କ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନକରି ବିଜ୍ଞତାର ପରିଚୟ ଦେଇଥିଲେ । ସେମାନଙ୍କ ସାହାଯ୍ୟରେ ସେ ମହାନ୍ ଫ୍ରେଡ୍ରିକଙ୍କ ଅପେକ୍ଷା ଅଧିକ ବିଜୟ ହାସଲ କରିବାପାଇଁ ଅଭିପ୍ରେତ ଥିଲେ ।

ପ୍ରଥମ ୱିଇଲିୟମ୍ ସାମରିକ ଶକ୍ତିରେ ବିଶ୍ୱାସୀ ଥିଲେ । ପ୍ରୁସିଆର ଭବିଷ୍ୟତ ତାହାର ସେନାବାହିନୀ ଉପରେ ନିର୍ଭରଶୀଳ ଥିବାରୁ ସେ ତାହାର ସାମରିକ ଶକ୍ତିକୁ ଶକ୍ତିଶାଳୀ କରିବାକୁ ଦୃଢ଼ ସଙ୍କଳ୍ପ କରିଥିଲେ । ଓଲ୍‌ମଟ୍‌ଜର ଅବମାନନା ତାଙ୍କ ମନରେ ପ୍ରୁସିଆର ସାମରିକ ପ୍ରସ୍ତୁତିର ଆବଶ୍ୟକତା ରହିଛି ବୋଲି ଦୃଢ଼ ଧାରଣା ଜନ୍ମାଇଥିଲା । ତା'ଛଡ଼ା ନେତୃତ୍ୱ ପାଇଁ ଅଷ୍ଟ୍ରିଆ ସହିତ ପ୍ରତିଦ୍ୱନ୍ଦ୍ୱିତାରେ ସଫଳତା ହାସଲ କରିବାକୁ ହେଲେ, ପ୍ରୁସିଆର ସାମରିକ ଶକ୍ତିର ସମ୍ପ୍ରସାରଣ ଏକାନ୍ତ ପ୍ରୟୋଜନ ଥିଲା । ପ୍ରଥମ ୱିଇଲିୟମ୍ ଫନ ମୋଲ୍‌ଟକେଙ୍କୁ ସେନାବାହିନୀର ମୁଖ୍ୟ ନିଯୁକ୍ତ କରିଥିଲେ ଏବଂ ସେହି ମୋଲ୍‌ଟକେ ପରେ ଅତି ଉଚ୍ଚକୋଟୀର ସମର କୌଶଳ ଦେଖାଇ ସେ କାଳର ସବୁଠାରୁ ବଡ଼ ସେନାନାୟକ ରୂପେ ଖ୍ୟାତିଲାଭ କରିଥିଲେ । ଫନ ମୋଲ୍‌ଟକେଙ୍କୁ ନିଯୁକ୍ତ କଲା ପରେ ପରେ ୱିଇଲିୟମ୍ ଫନରୁନ୍‌ଙ୍କୁ ତାଙ୍କର ଯୁଦ୍ଧମନ୍ତ୍ରୀ ରୂପେ ନିଯୁକ୍ତ କରିଥିଲେ ଓ ରୁନ୍ ମଧ୍ୟ ଜଣେ ଅସାଧାରଣ ସଙ୍ଗଠକ ରୂପେ ପରେ ବିଶେଷ ସୁନାମ ଅର୍ଜନ କରିଥିଲେ । ଏହି ଦୁଇ ଜଣ ରାଜନୀତି କ୍ଷେତ୍ରରେ ରକ୍ଷଣଶୀଳ ଥିଲେ ଏବଂ ୱିଇଲିୟମ୍‌ଙ୍କର ସ୍ୱଭାବସିଦ୍ଧ ପ୍ରବୃତ୍ତିକୁ ସ୍ୱେଚ୍ଛାଚାର ଓ ସାମରିକବାଦ ଦିଗରେ ବିଶେଷ ଉତ୍ସାହିତ କରିଥିଲେ । ଉଭୟେ ବିସମାର୍କଙ୍କ ସହିତ ମିଶି ଇଉରୋପରେ ପ୍ରୁସିଆକୁ ସବୁଠାରୁ ଅଧିକ ଶକ୍ତିଶାଳୀ ରାଜ୍ୟରୂପେ ଗଢ଼ିବାର ଗୌରବ ଅର୍ଜନ କରିଥିଲେ ।

ପ୍ରୁସିଆର ସେନାବାହିନୀକୁ ୧୮୦୮ ମସିହାରୁ ପୁନଃ ସଙ୍ଗଠନ କରାଯାଇ ନଥିଲା । ତାର ଲୋକ ସଂଖ୍ୟା ପ୍ରାୟ ଦ୍ୱିଗୁଣ ହୋଇଥିବା ସତ୍ତ୍ୱେ ବାର୍ଷିକ ତାଲିକାଭୁକ୍ତ ସୈନ୍ୟ ସଂଖ୍ୟା

ଅପରିବର୍ତ୍ତିତ ରହିଥିଲା । ଉଇଲିୟମ୍ ପ୍ରୁସିୟା ସୈନ୍ୟ ସଙ୍ଗଠନର ଆମୂଳ ପରିବର୍ତ୍ତନ ପାଇଁ ନିଷ୍ପତ୍ତି କରିଥିଲେ । ସେନାବାହିନୀକୁ ପ୍ରାୟ ଦୁଇଗୁଣ କରିବା ଉଦ୍ଦେଶ୍ୟରେ ସେ ତାଙ୍କର ଯୋଜନା ଗୁଡ଼ିକରେ ଅଧିକ ଟିକସ ଓ ବ୍ୟୟ ବ୍ୟବସ୍ଥା କରିଥିଲେ । ଉଦାରପନ୍ଥୀମାନେ ପ୍ରୁସିୟା ଡାଏଟ (ପ୍ରତିନିଧିସଭା)ରେ ପ୍ରାଧାନ୍ୟ ବିସ୍ତାର କରିଥିଲେ ଏବଂ ସେମାନେ ସାମରିକ ସଂସ୍କାର ପୂର୍ବରୁ ସାଂବିଧାନିକ ସଂସ୍କାର ପ୍ରବର୍ତ୍ତନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ରାଜାଙ୍କର ପ୍ରସ୍ତାବଗୁଡ଼ିକ ଅଗ୍ରାହ୍ୟ କରି ଦେଇଥିଲେ । ଡାଏଟ (Diet)ର ବିରୋଧ ସତ୍ତ୍ୱେ ଉଇଲିୟମ୍ ତାଙ୍କ ସାମରିକ ସଂସ୍କାର କାର୍ଯ୍ୟକ୍ରମରେ ଅଗ୍ରସର ହୋଇଥିଲେ । ଅବଶ୍ୟ ଏକ ଅଚଳ ଅବସ୍ଥା ସୃଷ୍ଟି ହୋଇଥିଲା ଏବଂ ଯେତେବେଳେ ୧୮୬୨ ମସିହାରେ ଡାଏଟ୍ ଅତି ଅଧିକ ସଂଖ୍ୟକ ଭୋଟରେ ସେନାବାହିନୀ ପାଇଁ ଆବଶ୍ୟକ ଅର୍ଥ ମଞ୍ଜୁର କରିବାକୁ ମନାକରିଦେଲା, ସେତେବେଳେ ଏକ ସଙ୍କଟଜନକ ପରିସ୍ଥିତି ଉପୁଜିଲା । ରାଜା ଏବଂ ଡାଏଟ୍ ମଧ୍ୟରେ ଭବ ଏକ ସାଂବିଧାନିକ କଳହରେ ପରିଣତ ହେଲା ଏବଂ ପ୍ରଶ୍ନ ହେଲା ଏହି ଦୁହିଙ୍କ ମଧ୍ୟରେ ବିବାଦ ରାଜ୍ୟର ଚୂଡ଼ାନ୍ତ କ୍ଷମତାଧିକାରୀ ?

ରାଜା ସିଦ୍ଧାନ୍ତ କଲେ ଯେ ସେ ସ୍ୱାଧୀନ ଭାବେ କାମ କରିବେ । ସେ ବରଂ ରାଜ ସିଂହାସନ ତ୍ୟାଗ କରିବେ, ମନରେ ପୋଷଣ କରିଥିବା ସଂସ୍କାରମାନ କଦାପି ତ୍ୟାଗ କରିବେନାହିଁ । କ୍ରମେ ଉଇଲିୟମ୍ ଓ ଡାଏଟ୍ ମଧ୍ୟରେ ବିବାଦ ଏପରି ଜଟିଳ ଆକାର ଧାରଣ କଲା ଯେ, ଉଇଲିୟମ୍ ସିଂହାସନ ତ୍ୟାଗ କରିବାକୁ ମନସ୍ଥ କଲେ ଏବଂ ସେହି ଉଦ୍ଦେଶ୍ୟରେ ସିଂହାସନ ତ୍ୟାଗପତ୍ର ସ୍ୱାକ୍ଷର କରି ନିଜ ମେଜ ଉପରେ ରଖିଥିଲେ । ଏହି ସମୟରେ ଶେଷ ଚେଷ୍ଟା ହିସାବରେ ସେ ରାଜଭକ୍ତ, ସାହସୀ ଓ ସ୍ୱାଧୀନଚେତା ବିସମାର୍କଙ୍କୁ ୧୮୬୨ ମସିହା ସେପ୍ଟେମ୍ବର ୨୩ ତାରିଖ ଦିନ ତାଙ୍କର ପ୍ରଧାନ ମନ୍ତ୍ରୀ ନିଯୁକ୍ତ କଲେ । ତାଙ୍କର ଏହି ପଦକ୍ଷେପ ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ପ୍ରମାଣିତ ହେଲା । ବିସମାର୍କ ପ୍ରୁସିୟାର ଶାସନ-ବ୍ୟବସ୍ଥାର ତଥା ସମଗ୍ର ପ୍ରୁସିୟାର ଇତିହାସର ସଙ୍କଟକାଳରେ ବିନାଦ୍ୱିଧାରେ ପ୍ରଧାନମନ୍ତ୍ରୀତ୍ୱ ଗ୍ରହଣ କରିଥିଲେ । ରାଷ୍ଟ୍ର ପରିଚାଳନା ବିଷୟରେ ତାଙ୍କର ଧାରଣା ଥିଲା ଅତି ସ୍ପଷ୍ଟ । ରାଜା ଉଇଲିୟମ୍‌ଙ୍କ ସହିତ ସାକ୍ଷାତ୍କାରରେ ବିସମାର୍କ ପରିଷ୍କାର କହିଥିଲେ ଯେ, ପାର୍ଲାମେଣ୍ଟ ରାଜି ହେଉ ବା ନ ହେଉ ସେ ତାଙ୍କ ରାଜାଙ୍କର ନୀତି କାର୍ଯ୍ୟରେ ପରିଣତ କରିବେ । ସେ କହିଥିଲେ, "ମୁଁ ବରଂ ରାଜାଙ୍କ ସହିତ ଏକ ସଙ୍ଗରେ ପତନ ବରଣ କରିବି; କିନ୍ତୁ ଆପଣଙ୍କୁ ସଂସଦୀୟ ସରକାର ସହିତ ବିବାଦବେଳେ ଛାଡ଼ି ଚାଲିଯିବି ନାହିଁ ।" (He said, "I will rather perish with the king, than for sake your Majesty in the contest with parliamentary Government.") ବିସମାର୍କଙ୍କର ନିର୍ଭୀକତା ଓ ଦୃଢ଼ ପ୍ରତିଶ୍ରୁତି ରାଜା ଉଇଲିୟମ୍‌ଙ୍କ ମନରେ ସାହସ ସଞ୍ଚାର କରିଥିଲା; ତେଣୁ ସେ ରାଜସିଂହାସନ ତ୍ୟାଗପତ୍ର ଛିଣ୍ଡାଇ-ପକାଇଥିଲେ ଏବଂ ପାର୍ଲାମେଣ୍ଟ ସହିତ ତାଙ୍କ ସଂଗ୍ରାମ ଅବ୍ୟାହତ ରଖିବାପାଇଁ ଦୃଢ଼ସଙ୍କଳ୍ପ କରିଥିଲେ ।

ପ୍ରୁସିୟାର ସଙ୍କଟ ମୁହୂର୍ତ୍ତରେ ଯେଉଁ ବିସମାର୍କ ପ୍ରଧାନ ମନ୍ତ୍ରୀରୂପେ ରାଷ୍ଟ୍ରର ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ, ସେ ବ୍ରାଣ୍ଡେନବର୍ଗର ଏକ ଅଭିଜାତ ପରିବାରରେ ୧୮୧୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ମନୋବୃତ୍ତି ମଧ୍ୟ ଅଭିଜାତସୁଲଭ ଥିଲା । ସେ



( ପ୍ରିନ୍ସ ବିସ୍‌ମାର୍କ )

ବିଶ୍ୱବିଦ୍ୟାଳୟ ଶିକ୍ଷା ଶେଷକରି ପ୍ରୁସିୟା ଜନସେବା (Prussian civil service) ରେ ଯୋଗଦେଇଥିଲେ; କିନ୍ତୁ ଅଳ୍ପକାଳ ମଧ୍ୟରେ ସେହି କାର୍ଯ୍ୟ ତାଙ୍କୁ ବୈଚିତ୍ର୍ୟହୀନ ବୋଲି ମନେ ହେବାରୁ ସେ ସେହି ସ୍ଥଳରେ ଛାଡ଼ି ତାଙ୍କ ପିତାଙ୍କ ଜମିଦାରୀର ରକ୍ଷଣାବେକ୍ଷଣ ଭାର ଗ୍ରହଣ କଲେ । ସେ ୧୮୪୭ ମସିହାରେ ଗ୍ରାମ୍ୟ-ଜୀବନ ପରିତ୍ୟାଗ କରି

ବର୍ଲିନଠାରେ ସଂଯୁକ୍ତ ପ୍ରତିନିଧି ସଭା (United Diet)ରେ ସେ ପ୍ରୁସିଆର ପ୍ରତିନିଧି ରୂପେ ନିଜର ରାଜନୈତିକ ଜୀବନଯାତ୍ରା ଆରମ୍ଭ କରିଦେଲେ । ସେ ସେଠାରେ ତାଙ୍କର ରାଜନୈତିକ ମତବାଦ ଦୃଢ଼ ଏବଂ ପ୍ରାଞ୍ଜଳ ଭାବରେ ବୁଝାଇଦେବାକୁ ସୁଯୋଗ ପାଇଲେ । ତାଙ୍କର ସଙ୍କେତ ବାକ୍ୟ ହେଲା, 'ବିପ୍ଳବ ସହିତ କୌଣସି ଆପୋଷ-ନିଷ୍ପତ୍ତି ହୋଇ ପାରେନା ।' ବିସମାର୍କ ରାଜତନ୍ତ୍ରର ଦୃଢ଼ ବିଶ୍ୱାସୀ ଥିଲେ ଏବଂ ଗଣତନ୍ତ୍ର ପ୍ରତି ତାଙ୍କର ଘୃଣାଭାବ ସେ ପ୍ରକାଶ୍ୟରେ ଘୋଷଣା କରିବାକୁ ତିଳେମାତ୍ର କୁଣ୍ଠାବୋଧ କରୁନଥିଲେ । ପ୍ରୁସିଆର ରାଜା ନିଜ ପ୍ରଜାମାନଙ୍କୁ ଏକ ସଂବିଧାନ ମଞ୍ଜୁର କରିବାରୁ, ବିସମାର୍କ ବିରକ୍ତି ପ୍ରକାଶ କଲେ ମଧ୍ୟ ତାହା ପରେ ରାଜାଙ୍କଦ୍ୱାରା ମଞ୍ଜୁର କରାଯାଇଥିବାରୁ ସେ ତାକୁ ଦୃଢ଼ ସମର୍ଥନ ଜଣାଇଥିଲେ । ତାଙ୍କର ଧାରଣା ନଥିଲା ଯେ ସଂବିଧାନ ପ୍ରୁସିଆର ରୂପକୁ ବଦଳେଇଦେଇ ଇଂଲଣ୍ଡ ଭଳି ଏକ ସାଂବିଧାନିକ ରାଷ୍ଟ୍ରରେ ପରିଣତ କରିବ । ସେ କହିଥିଲେ, "ଇଂଲଣ୍ଡକୁ ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖକରିବା ଆମର ଦୁର୍ଭାଗ୍ୟ । ଯଦି ପ୍ରୁସୀୟମାନେ ଇଂରେଜ ହୋଇଥାନ୍ତେ ଏବଂ ଇଂରେଜମାନଙ୍କର ଅନୁଷ୍ଠାନ ଏବଂ ଗୁଣର ଅଧିକାରୀ ହୋଇଥାନ୍ତେ, ତାହାହେଲେ ଇଂଲଣ୍ଡର ଆଦର୍ଶରେ ଆମ୍ଭମାନଙ୍କୁ ଶାସନ କରିପାରିଥାନ୍ତେ ।" ବିସମାର୍କଙ୍କର ଯେଉଁସବୁ ରାଜନୈତିକ ଧାରଣା ଥିଲା, ତାହା ତାଙ୍କର ପ୍ରୁସିଆର ରାଜତନ୍ତ୍ରରେ ଦୃଢ଼ ବିଶ୍ୱାସ ଉପରେ କେନ୍ଦ୍ରୀଭୂତ ହୋଇଥିଲା । ତାଙ୍କ ମତରେ ପ୍ରୁସିଆକୁ ପ୍ରୁସିଆର ରାଜାମାନେ ବଡ଼ କରିଅଛନ୍ତି, ପ୍ରୁସିଆର ଲୋକମାନେ କରି ନାହାନ୍ତି । ଏହି ବିରାଟ ଐତିହାସିକ ସତ୍ୟକୁ ସାଇତି ରଖିବାକୁ ପଡ଼ିବ । ପ୍ରୁସିଆର ରାଜାମାନେ ପୂର୍ବରୁ ଯାହା କରିଅଛନ୍ତି, ସେମାନେ ଆହୁରି ତାହା କରିବେ । ବିସମାର୍କଙ୍କର ରାଜନୈତିକ ମତବାଦ ଓ ନୀତି ପ୍ରୁସିଆର ରାଜତନ୍ତ୍ର ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ ଉପରେ ଭିତ୍ତିକରି ଗଢ଼ିଉଠିଥିଲା । ସେ ଜାଣିଥିଲେ ଯେ, ପ୍ରୁସିଆର ଉନ୍ନତି ରାଜତନ୍ତ୍ର ମଧ୍ୟଦେଇ ସାଧିତ ହୋଇଅଛି ଏବଂ ରାଜାର କ୍ଷମତା କ୍ଷୁଣ୍ଣ କରାଗଲେ ପ୍ରୁସିଆର ଅପୂରଣୀୟ କ୍ଷତି ହେବ ।

ଯେତେବେଳେ ଗଣତନ୍ତ୍ରବାଦୀମାନେ ଘୋଷଣା କଲେ ଯେ ଇଂଲଣ୍ଡ ଗଣତନ୍ତ୍ର ମାଧ୍ୟମରେ ବଡ଼ ହୋଇଛି, ସେତେବେଳେ ସେ ତାହାର ସତ୍ୟତା ଅସ୍ୱୀକାର କରିଥିଲେ । ସେ ମନ୍ତବ୍ୟ ଦେଇଥିଲେ ଯେ, ଇଂଲଣ୍ଡ ଅଭିଜାତସୁଲଭ ସଂବିଧାନ ମାଧ୍ୟମରେ କ୍ରମେ କ୍ରମେ ବଡ଼ ହୋଇଛି । ପୁଣି ଯେତେବେଳେ ପ୍ରୁସିଆର ସମ୍ଭ୍ରାନ୍ତଗୋଷ୍ଠୀକୁ ତୀବ୍ର ସମାଲୋଚନା କରାଯାଉଥିଲା, ସେ ତାକୁ ଦୃଢ଼ତାର ସହିତ ସମର୍ଥନ କରିଥିଲେ । ତାଙ୍କ ମତରେ ପ୍ରୁସିଆ ରାଜ୍ୟ ସେମାନଙ୍କଦ୍ୱାରା ଏବଂ ସେମାନଙ୍କ ରକ୍ତରେ ଗଢ଼ାଯାଇଛି । ଜର୍ମାନୀର ଐକ୍ୟସାଧନ ପାଇଁ ୧୮୪୮ ମସିହାରେ ଯେଉଁସବୁ ଉଦ୍ୟମ ହୋଇଥିଲା, ତାହାର ସେ ଜଣେ ବଡ଼ ଶତ୍ରୁ ଥିଲେ । ସେ ଜଣେ ଖାଣ୍ଟି ପ୍ରୁସୀୟ ହୋଇଥିବାରୁ, ସେ ବିଶ୍ୱାସ କରୁଥିଲେ ଯେ ଏହିସବୁ ଉଦ୍ୟମ ସଫଳ ହେଲେ ପ୍ରୁସିଆର ପ୍ରାଧାନ୍ୟ କମିଯିବ । ପ୍ରୁସିଆ

ରାଜାଙ୍କର ଫ୍ରାଙ୍କଫୋର୍ଟ ରାଜମୁକୁଟ ପ୍ରତ୍ୟାଖ୍ୟାନକୁ ସେ ସମର୍ଥନ କରିଥିଲେ । ଓଲମଟ୍ଜରେ ପ୍ରୁସିଆ ଯେପରି ଅପମାନ ପାଇଲା, ଇଉରୋପର କୌଣସି ରାଷ୍ଟ୍ର ସେପରି ଅପମାନ ପାଇ-ନଥିଲା; ତଥାପି ବିସମାର୍କ ସରକାରଙ୍କର କାର୍ଯ୍ୟକୁ ଦୃଢ଼ ସମର୍ଥନ କରିଥିଲେ । ବିସମାର୍କଙ୍କ ମତରେ ପ୍ରୁସିଆ ଅଷ୍ଟ୍ରିଆ ସହିତ ମିଶି ସେମାନଙ୍କର ସାଧାରଣ ଶତ୍ରୁ ବିପ୍ଳବକୁ ଦମନ କରିବା ଉଚିତ । ସେ କହିଥିଲେ ଯେ, ସେ ଅଷ୍ଟ୍ରିଆକୁ ଏକ ପ୍ରାଚୀନ ଜର୍ମାନ ଶକ୍ତିର ପ୍ରତିନିଧି ଓ ଉତ୍ତରାଧିକାରୀ ବୋଲି ମନେକରନ୍ତି । ପ୍ରୁସିଆର ନେତୃତ୍ୱରେ ଗଢ଼ିଉଠିଥିବା ଏରଫର୍ଟ ଐକ୍ୟ (Erfurt Union)ର ବିଫଳତାରେ ସେ ଆନନ୍ଦ ପ୍ରକାଶ କରିଥିଲେ । ସେ ଅଷ୍ଟ୍ରିଆର ଓଲମ୍ଟଜ ବିଜୟକୁ ମଧ୍ୟ ଅନୁମୋଦନ କରିଥିଲେ । ଗଣତାନ୍ତ୍ରିକ ପନ୍ଥା ଅବଲମ୍ବନ କରାଯାଇ ଜର୍ମାନୀର ଏକତ୍ରୀକରଣ ସେ ଚାହୁଁ ନଥିଲେ; କାରଣ ତାଦ୍ୱାରା ପ୍ରୁସିଆର ପ୍ରାଧାନ୍ୟ ରହିବନାହିଁ ଏବଂ ପ୍ରୁସିଆ ପୁରାପୁରି ଜର୍ମାନୀରେ ମିଶିଯିବ । ତେଣୁ ଗଣତନ୍ତ୍ରର ପ୍ରଭାବରୁ ପ୍ରୁସିଆକୁ ଦୂରରେ ରଖିବା ଥିଲା ତାଙ୍କର ପ୍ରଧାନ ନୀତି । ବିସ୍‌ମାର୍କଙ୍କର ପ୍ରୁସିଆର ରାଜତନ୍ତ୍ର ଓ ଅଭିଜାତ ସମ୍ପ୍ରଦାୟ ପ୍ରତି ଦୃଢ଼ ସମର୍ଥନ ଓ ଅନୁରକ୍ତି ପ୍ରୁସିଆ ରାଜାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଏବଂ ସେ ୧୮୫୧ ମସିହାରେ ବିସମାର୍କଙ୍କୁ ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟରେ ପ୍ରୁସିଆର ପ୍ରତିନିଧି ନିଯୁକ୍ତ କରିଥିଲେ ।

ବିସ୍‌ମାର୍କ ସେଠାରେ ଆଠବର୍ଷକାଳ ପ୍ରୁସିଆର ପ୍ରତିନିଧିରୂପେ ଅବସ୍ଥାପିତ ହୋଇଥିଲେ । ତାଙ୍କର ଅବସ୍ଥାନ ସମୟରେ ସେ କୂଟନୀତି ବିଷୟରେ ଶିକ୍ଷାଲାଭ କରିବା ସଙ୍ଗେ ସଙ୍ଗେ ତାକୁ ବ୍ୟବହାରରେ ମଧ୍ୟ ଲଗାଇଥିଲେ । ଏହି କୂଟନୀତି ବଳରେ ସେ ଭବିଷ୍ୟତରେ ଅତି ଗୁରୁତ୍ୱପୂର୍ଣ୍ଣ ବିଜୟମାନ ହାସଲ କରିଥିଲେ । ଫ୍ରାଙ୍କଫୋର୍ଟରେ ରହୁଥିଲା ବେଳେ ତାଙ୍କର ଜର୍ମାନୀର ପ୍ରଧାନ ପ୍ରଧାନ ରାଜନୀତିଜ୍ଞମାନଙ୍କ ସହିତ ପରିଚୟ ହୋଇଥିଲା ଏବଂ ସେମାନଙ୍କର ଚରିତ୍ର ଏବଂ ଉଚ୍ଚାଭିଳାଷ ସମ୍ବନ୍ଧରେ ସେ ଭିନ୍ନ ଭିନ୍ନ କରି ପରୀକ୍ଷା କରିଥିଲେ । ଫ୍ରାଙ୍କଫୋର୍ଟରେ ମାତ୍ର ଅଳ୍ପ କେତେଦିନ ରହିଲା ପରେ ଅଷ୍ଟ୍ରିଆ ବିଷୟରେ ତାଙ୍କ ଧାରଣା ପୁରାପୁରି ବଦଳି ଯାଇଥିଲା ଏବଂ ଅଷ୍ଟ୍ରିଆ ପ୍ରୁସିଆର ସ୍ଥାୟୀ ଓ ନିଶ୍ଚିତ ଶତ୍ରୁ ବୋଲି ସେ ବିଚାରିଥିଲେ । ବିସ୍‌ମାର୍କଙ୍କର ମନରେ ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ ପ୍ରୁସିଆକୁ ମାତ୍ର ଅନୁଗତର ସ୍ଥାନକୁ ଖସାଇଦେବା ଥିଲା ଅଷ୍ଟ୍ରିଆର ନୀତି । ବିସମାର୍କ ଆଦୌ ଧାରଣା କରିପାରିଲେ ନାହିଁ ଯେ ପ୍ରୁସିଆର ଲୋକସଂଖ୍ୟା ସତର ନିୟୁତ ହେବା ସତ୍ତ୍ୱେ ସେ ଅନୁଗତର ସ୍ଥାନ ଅଧିକାର କରିବ । ଅବିଳମ୍ବେ ଏହି କଥାହି ପ୍ରିୟ ପ୍ରୁସିଆ ବର୍ଲିନରେ ଥିବା ତାଙ୍କର ଉପରିସ୍ଥ ଅଧିକାରୀମାନଙ୍କୁ (ଅଫିସରମାନଙ୍କୁ) ଏ ବିଷୟରେ ହୃଦ୍‌ବୋଧ କରାଇବା ପାଇଁ ତାଙ୍କର ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ । ସେ ଅତି ଶୀଘ୍ର ଜାଣିପାରିଥିଲେ ଯେ ଯଦିଓ ଉଭୟ ଅଷ୍ଟ୍ରିଆ ଏବଂ ପ୍ରୁସିଆ ଏକ ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ, ତଥାପି ୧୮୪୮ ମସିହାର ଘଟଣାମାନ ସେ ଦୁହିଙ୍କର ବନ୍ଧୁତାକୁ ନଷ୍ଟ କରିଦେଇଛି । ୧୮୫୩ ମସିହା ବେଳକୁ ସେ ବର୍ଲିନକୁ ପଠାଇଥିବା ଏକ ରିପୋର୍ଟରେ କହିଥିଲେ ଯେ,

"ଜର୍ମାନୀରେ ଦୁଇଟି (ବଡ଼) ଶକ୍ତି ପାଇଁ ସ୍ଥାନ ନାହିଁ । ସେ ଦୁଇଟି ଶକ୍ତି ମଧ୍ୟରୁ ଯେକୌଣସି ଗୋଟିଏ ଶକ୍ତିକୁ ଅବନତ ହେବାକୁ ପଡ଼ିବ ।" ଚାରିବର୍ଷ ପରେ ସେ ତାଙ୍କର ଅଭିମତ ଅଧିକ ସ୍ପଷ୍ଟ ଭାବରେ ବ୍ୟକ୍ତ କରିଥିଲେ, "ମୁଁ କେବଳ ମୋର ଦୃଢ଼ଧାରଣାକୁ ପ୍ରକାଶ କରିବାକୁ ଚାହେଁ ଯେ ଆମ୍ଭମାନଙ୍କର ସ୍ଥିତିପାଇଁ ଶୀଘ୍ର ଆମ୍ଭମାନଙ୍କୁ ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାକୁ ପଡ଼ିବ । ସେହି ସମ୍ଭାବ୍ୟ ଘଟଣାକୁ ଏଡ଼ିବା ଆମ ଶକ୍ତିରେ ନାହିଁ, କାରଣ ଜର୍ମାନୀରେ ଘଟଣା ଗୁଡ଼ିକ ସେଇ ଯୁଦ୍ଧଆଡ଼କୁ ଗତି କରୁଅଛି ।"

ବିସମାର୍କ ଫ୍ରାଙ୍କଫୋର୍ଟଠାରେ ଅଷ୍ଟ୍ରିୟାବିରୋଧୀ ମନୋଭାବ ପୋଷଣ କରିଥିଲେ । ସେ ଅଷ୍ଟ୍ରିୟା ସହିତ ପ୍ରୁସିୟାର ସମାନତା ଉପରେ ଜୋର୍ ଦେଇଥିଲେ ଏବଂ ତାଙ୍କର ନୀତି ଅଷ୍ଟ୍ରିୟାକୁ ଆଗେଇ ଦେଇଥିଲା । ସେ ଜୋଲଭରେନ୍ (Zollverein)ରେ ଅଷ୍ଟ୍ରିୟାର ପ୍ରବେଶକୁ ବାଧା ଦେଇଥିଲେ । ତା'ଛଡ଼ା କ୍ରିମିୟା ଯୁଦ୍ଧ ଚାଲିଥିଲାବେଳେ ପ୍ରୁସିୟାର ରାଜା ଚତୁର୍ଥ ଫ୍ରେଡରିକ୍ ଉଇଲିୟମ୍‌ଙ୍କର ଅଷ୍ଟ୍ରିୟା-ସପକ୍ଷ ନୀତିର ବିରୋଧ କରିଥିଲେ । ରାଜା ଅଷ୍ଟ୍ରିୟା ସହିତ ସଦ୍‌ଭାବ ରକ୍ଷିବାପାଇଁ ଚାହୁଁଥିବାରୁ ବିସମାର୍କଙ୍କର ଅଷ୍ଟ୍ରିଆବିରୋଧୀ ମନୋଭାବକୁ ସେ ପସନ୍ଦ କରିନଥିଲେ । ତେଣୁ ରୁଷିଆରେ ପ୍ରୁସିୟାର ରାଜଦୂତରୂପେ ତାଙ୍କୁ ସେଣ୍ଟ ପିଟର୍‌ସ ବର୍ଗକୁ ବଦଳି କରିଦିଆଯାଇଥିଲା । ସେ ସେଠାରେ ଜାର୍‌ଙ୍କ ସଦିଚ୍ଛା ଲାଭକରିଥିଲେ ଏବଂ ଭବିଷ୍ୟତରେ ଏହି ସଦିଚ୍ଛା ପ୍ରୁସିୟାକୁ ବିଶେଷ ସାହାଯ୍ୟ କରିଥିଲା । ଏହାପରେ ସେ ଅଳ୍ପକାଳ ପାଇଁ ଫ୍ରାନ୍‌ସରେ ପ୍ରୁସିୟାର ରାଜଦୂତରୂପେ ଅବସ୍ଥାପିତ ହୋଇଥିଲେ । ସେଠାରେ ତୃତୀୟ ନେପୋଲିୟନ୍‌ଙ୍କର ଦୁର୍ବୋଧ ଚରିତ୍ର ବିଷୟରେ ତାଙ୍କର ସ୍ପଷ୍ଟ ଧାରଣା ହୋଇଥିଲା । ଏହି ଅନୁଭୂତି ମଧ୍ୟ ଭବିଷ୍ୟତରେ ତାଙ୍କୁ ସାହାଯ୍ୟ କରିଥିଲା । ଫ୍ରାନ୍‌ସରୁ ତାଙ୍କୁ ପ୍ରଧାନମନ୍ତ୍ରୀ ପଦ ଗ୍ରହଣକରିବାପାଇଁ ଡକାଯାଇଥିଲା ।

ପ୍ରଧାନମନ୍ତ୍ରୀପଦ ଗ୍ରହଣ କଲା ପରେ (ରାଜା ଉଇଲିୟମ୍ ଓ ପାର୍ଲାମେଣ୍ଟ ମଧ୍ୟରେ ବିବାଦ ଫଳରେ) ଶାସନକ୍ଷେତ୍ରରେ ଯେଉଁ ଅଚଳ ଅବସ୍ଥା ସୃଷ୍ଟି ହୋଇଥିଲା, ସେ ତାହାପ୍ରତି ବିଶେଷ ଧ୍ୟାନ ଦେଇଥିଲେ । ବିସ୍‌ମାର୍କଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ପ୍ରୁସିୟାର ନେତୃତ୍ୱରେ ସମଗ୍ର ଜର୍ମାନୀକୁ ଐକ୍ୟବଦ୍ଧ କରିବା । ୧୮୫୩ ମସିହାରୁ ସେ ଜର୍ମାନୀରୁ ଅଷ୍ଟ୍ରିୟାର ଅପସାରଣ ନିମନ୍ତେ ଦୃଢ଼ପ୍ରତିଜ୍ଞା କରିଥିଲେ । ସେ ପ୍ରଧାନମନ୍ତ୍ରୀ ହେଲାପରେ ତାଙ୍କର ସେହି ପ୍ରତିଜ୍ଞା ପାଳନ କରିବାପାଇଁ ମନୋଯୋଗୀ ହୋଇଥିଲେ । ଅଷ୍ଟ୍ରିୟାକୁ ଜର୍ମାନୀରୁ ବିତାଡ଼ିତ କରିବାକୁ ହେଲେ ଯୁଦ୍ଧ ଯେପରି ଅନିବାର୍ଯ୍ୟ ଥିଲା ସେହିପରି ପ୍ରୁସିୟାର ସାମରିକ ଶକ୍ତି ବୃଦ୍ଧି ଏବଂ ଯୁଦ୍ଧ ପରିଚାଳନାପାଇଁ ଅର୍ଥସଂଗ୍ରହର ମଧ୍ୟ ଆବଶ୍ୟକତା ଥିଲା । ତା'ଛଡ଼ା ସେ ବିଶ୍ୱାସ କରୁଥିଲେ ଯେ ଜର୍ମାନୀର ଐକ୍ୟସାଧନ କେବଳ ଯୁଦ୍ଧଦ୍ୱାରା ହିଁ ସମ୍ଭବ, ଅନ୍ୟ କୌଣସି ଉପାୟରେ ନୁହେଁ । ତେଣୁ ସେ ଉପଲବ୍ଧି କଲେ ଯେ ପ୍ରୁସିୟାର ସାମରିକ ଶକ୍ତି ବୃଦ୍ଧି ନ କରିବାଲେ ତାଙ୍କର ଇଚ୍ଛା ପୂରଣ ହୋଇପାରିବ ନାହିଁ । ପ୍ରୁସିୟା ପାର୍ଲାମେଣ୍ଟର ନିମ୍ନ ତର

ପ୍ରକୋଷ୍ଠ ସାମରିକ ଶକ୍ତିବୃଦ୍ଧିର ତୀବ୍ର ପ୍ରତିରୋଧ କରୁଥିଲା ଏବଂ ଆବଶ୍ୟକ ଅର୍ଥ ମଞ୍ଜୁର କରିବାକୁ ମନା କରୁଥିଲା; କିନ୍ତୁ ସେହି ପାର୍ଲାମେଣ୍ଟର ଉଚ୍ଚତର ପ୍ରକୋଷ୍ଠ ସାମରିକ ଶକ୍ତି ବୃଦ୍ଧିର ସମର୍ଥନ କରୁଥିଲା । ଏହି ଅଚଳ ପରିସ୍ଥିତିକୁ ସୁଧାରିବାପାଇଁ ବିସ୍‌ମାର୍କ ରାଜାଙ୍କୁ ଜରୁରୀ ପରିସ୍ଥିତି ଘୋଷଣା କରିବାପାଇଁ ପରାମର୍ଶ ଦେଇଥିଲେ ଏବଂ ତାହା କରାଗଲେ ଲୋକମାନଙ୍କଠାରୁ ଟିକସ ଆଦାୟ କରାଯାଇ ପାରିବ ବୋଲି କହିଥିଲେ । ରାଜା ତାଙ୍କ ପରାମର୍ଶ ଗ୍ରହଣ କରିଥିଲେ । ତା'ଛଡ଼ା ଉଚ୍ଚତର ପ୍ରକୋଷ୍ଠ (Upper House) ସାମରିକ ଶକ୍ତି ବୃଦ୍ଧି ମଞ୍ଜୁର କରିଥିବାରୁ ଏବଂ ଆବଶ୍ୟକ ଅର୍ଥ ସପକ୍ଷରେ ଭୋଟ ଦେଇଥିବାରୁ, ରାଜା ସାମରିକ ଶକ୍ତି ବୃଦ୍ଧିପାଇଁ ଟିକସ ଆଦାୟ କରିବା ମଧ୍ୟ ଆଇନସଙ୍ଗତ ବୋଲି ମନେ କରିଥିଲେ । ସେ ଯାହାହେଉ ରାଜା ଓ ପାର୍ଲାମେଣ୍ଟର ନିମ୍ନତର ପ୍ରକୋଷ୍ଠ ମଧ୍ୟରେ ଚାରିବର୍ଷକାଳ (୧୮୬୨ରୁ ୧୮୬୬) କ୍ରମାଗତ ଦ୍ୱନ୍ଦ୍ୱ ଚାଲିଥିଲା । ପାର୍ଲାମେଣ୍ଟକୁ ବାରମ୍ବାର ଡକାଗଲେ ମଧ୍ୟ ନିମ୍ନତର ପ୍ରକୋଷ୍ଠ (Lower House) ସାମରିକ ଶକ୍ତି ବୃଦ୍ଧିର ବିରୋଧ କରି ବର୍ଷକୁ ବର୍ଷ ବଜେଟ ବିରୁଦ୍ଧରେ ଭୋଟ ଦେଉଥିଲା ଏବଂ ଉଚ୍ଚତର ପ୍ରକୋଷ୍ଠ ବରାବର ବଜେଟ ସପକ୍ଷରେ ଭୋଟ ଦେଉଥିଲା । ଉଚ୍ଚତର ପ୍ରକୋଷ୍ଠଦ୍ୱାରା ବଜେଟ ମଞ୍ଜୁର ହୋଇଥିବାରୁ ରାଜା ଲୋକମାନଙ୍କ ଉପରେ ଟିକସ ବସାଇ ଆଇନସଙ୍ଗତ କାର୍ଯ୍ୟ କରିଛନ୍ତି ବୋଲି ବିଚାରୁଥିଲେ । ତେଣୁ ନିମ୍ନତର ପ୍ରକୋଷ୍ଠର ବିରୋଧ ସତ୍ତ୍ୱେ ରାଜା ଲୋକମାନଙ୍କଠାରୁ ନାନା ପ୍ରକାର ଟିକସ ବସାଇ ତାହା ଆଦାୟ କରିବାରେ ଲାଗିଲେ । ବିସ୍‌ମାର୍କ ଏହି ଅର୍ଥସାହାଯ୍ୟରେ ସାମରିକ ଶକ୍ତି ବୃଦ୍ଧି ଓ ସେନାବାହିନୀର ସଂଗଠନ କରିଥିଲେ ଏବଂ ଭବିଷ୍ୟତ ଯୁଦ୍ଧପାଇଁ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ଏହି ସମୟରେ ସମ୍ବିଧାନ ବାତିଲ କରିଦିଆଯାଇ ନଥିଲେ ମଧ୍ୟ ପ୍ରକୃତରେ ଏକଛତ୍ର ଶାସନ ଚାଲିଥିଲା ଏବଂ ସଂସଦୀୟ ବ୍ୟବସ୍ଥାକୁ ସ୍ଥଗିତ ରଖାଯାଇଥିଲା ।

ବିସ୍‌ମାର୍କ ୧୮୬୩ ମସିହାରେ ସ୍ପଷ୍ଟଭାବେ ତାଙ୍କର ନୀତି ଓ କାର୍ଯ୍ୟପନ୍ଥା ବିଶ୍ଳେଷଣ କରିଥିଲେ । ସେ କହିଥିଲେ, "ଜର୍ମାନୀ ପ୍ରୁସିଆର ଉଦାର ନୀତିକୁ ଚାହେଁନାହିଁ, କେବଳ ଚାହେଁଛି ତାହାର ସାମରିକ ଶକ୍ତିକୁ···ବକ୍ତୃତା ବା ସଂଖ୍ୟାଧିକ ଭୋଟଦ୍ୱାରା ସେ ସମୟର ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ନିଷ୍ପତ୍ତି କରାଯାଇ ପାରିବନାହିଁ (ସେଥିରେ ୧୮୪୮ ଏବଂ ୧୮୪୯ର ଗୁରୁତର ଭୁଲ ନିହିତ ଥିଲା) । କେବଳ ରକ୍ତ ଓ ଲୌହନୀତି (Blood and Iron Policy) ଅର୍ଥାତ୍ ସାମରିକ ଶକ୍ତି ଏବଂ ଦୃଢ଼ତାଦ୍ୱାରା ହିଁ ଏହା କରାଯାଇ ପାରିବ ।" ("Germany" said Bismarck, does not look to Prussia's liberalism but to her power···Not by speeches and majority votes are the great Questions of the day to be decided there in lay the blunder of 1848 and 1849, but by blood and iron.") ଏଥିରୁ ସ୍ପଷ୍ଟ ସୂଚନା ମିଳୁଛି ଯେ ବିସମାର୍କ 'ରକ୍ତପାତ ଏବଂ

ଲୌହନୀତି' ପ୍ରୟୋଗଦ୍ୱାରା ଜର୍ମାନୀର ଐକ୍ୟସାଧନ କରିବାକୁ ବଦ୍ଧପରିକର ଥିଲେ । ଅର୍ଥାତ୍ ଯୁଦ୍ଧ ମାଧ୍ୟମରେ ସେ ଜର୍ମାନୀର ଏକୀକରଣ କରିବାକୁ ଦୃଢ଼ ସଂକଳ୍ପ କରିଥିଲେ ।

ସାମରିକ ଶକ୍ତି ବୃଦ୍ଧି ଫଳରେ ବିସମାର୍କ ୧୮୬୩ ମସିହାରେ ତାଙ୍କ ଇଚ୍ଛା ଅନୁସାରେ ଏକ ଶକ୍ତିଶାଳୀ ସେନାବାହିନୀ ଗଢ଼ିଥିଲେ । ଜର୍ମାନୀର ଐକ୍ୟସାଧନ ପାଇଁ ଏହି ସେନାବାହିନୀ ତାଙ୍କର ପ୍ରଧାନ ହତିଆର ଥିଲା । ବିସମାର୍କ ପ୍ରୁସିୟାର ଶକ୍ତି ବୃଦ୍ଧି କଲାପରେ ସେ ଜର୍ମାନ ବ୍ୟାପାରରେ ପ୍ରୁସିୟାର ପାରମ୍ପରିକ ପ୍ରତିଦ୍ୱନ୍ଦ୍ୱୀ ଅଷ୍ଟ୍ରିୟା ଆଡ଼କୁ ଦୃଷ୍ଟି ନିକ୍ଷେପ କରିଥିଲେ । ସେ ଜାଣିଥିଲେ ଯେ ଜର୍ମାନୀର ଐକ୍ୟସାଧନ ପଥରେ ଯେଉଁସବୁ ଶତ୍ରୁଙ୍କୁ ସେ ଭେଟିବେ, ତନ୍ମଧ୍ୟରେ ଅଷ୍ଟ୍ରିୟାକୁ ନିଶ୍ଚିତ ଭାବରେ ସାମିଲ କରିବାକୁ ପଡ଼ିବ । ଜର୍ମାନୀରେ ତାହାର ନେତୃତ୍ୱକୁ ଅଷ୍ଟ୍ରିୟା କଦାପି ସ୍ୱେଚ୍ଛାରେ ପ୍ରୁସିୟା ନିକଟକୁ ଯିବାକୁ ଦେବ ନାହିଁ । ଅଷ୍ଟ୍ରିୟା ସ୍ଥିତାବସ୍ଥା( statusquo )ର ସମର୍ଥକ ଥିଲା ଏବଂ ୩୯ଟି ରାଷ୍ଟ୍ରକୁ ନେଇ ୧୮୧୫ରେ ଗଢ଼ାଯାଇଥିବା ଜର୍ମାନ ରାଷ୍ଟ୍ରସଂଘର ସ୍ଥିତି ବଜାୟ ରଖିବାକୁ ଯେ ଚାହୁଁଥିଲା । କାରଣ ସେହି ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ ଅଧିକାଂଶ ରାଷ୍ଟ୍ରର ସ୍ୱାର୍ଥ ତାହା ସହିତ ଜଡ଼ିତ ଥିଲା । ଏହିସବୁ ରାଷ୍ଟ୍ର ନିଜ ନିଜର ସ୍ୱାର୍ଥ ବଜାୟ ରଖିବାକୁ ଚାହୁଁଥିବାରୁ, ପ୍ରୁସିୟାର ପ୍ରଧାନ ଶତ୍ରୁ ଅଷ୍ଟ୍ରିୟା ସେହି ସ୍ଥିତିର ଦୃଢ଼ ସମର୍ଥକ ହୋଇଥିବାରୁ ବିସମାର୍କ ହୃଦୟଙ୍ଗମ କରିପାରିଲେ ଯେ ଅଷ୍ଟ୍ରିୟାକୁ ଜର୍ମାନୀରୁ ବିତାଡ଼ିତ ନକଲା ଯାଏଁ ପ୍ରୁସିୟାର ନେତୃତ୍ୱରେ ଜର୍ମାନୀର ଐକ୍ୟସାଧନ ସମ୍ଭବ ନୁହେଁ । ତେଣୁ ଏହି ଲକ୍ଷ୍ୟ ହାସଲକରିବାକୁ ହେଲେ, ଅଷ୍ଟ୍ରିୟା ସହିତ ପ୍ରୁସିୟାକୁ ଯୁଦ୍ଧ କରିବାକୁ ପଡ଼ିବ । ୧୮୬୩ ମସିହାବେଳକୁ ମଧ୍ୟ ସେ ଜାଣିପାରି ନଥିଲେ ଯେ ଏ ଯୁଦ୍ଧ କପରି ହେବ । ଏପରି ଯୁଦ୍ଧ ଅବଶ୍ୟମ୍ଭାବୀ ଥିଲା; କିନ୍ତୁ ଯୁଦ୍ଧ ହେଲେ କାଉରଙ୍କ ପରି ସେ ଶତ୍ରୁକୁ ଆକ୍ରମଣକାରୀ ରୂପେ ପ୍ରମାଣିତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ବିସମାର୍କ ଯେତେବେଳେ ଜଟିଳ ଆଭ୍ୟନ୍ତରୀଣ ପରିସ୍ଥିତିକୁ ନିର୍ଭୀକ ଭାବରେ ଆୟତ୍ତ କରୁଥିଲେ, ଠିକ୍ ସେହି ସମୟରେ ତାଙ୍କର ବିରାଟ କୂଟନୈତିକ ପରିକଳ୍ପନାମାନ ସେ ବୈଦେଶିକ ବ୍ୟାପାରରେ ଅନୁସରଣ କରିଥିଲେ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ଅଷ୍ଟ୍ରିୟାକୁ ଯଦି ତାଙ୍କ ପରିକଳ୍ପନା ଅନୁସାରେ ଜର୍ମାନ ରାଷ୍ଟ୍ରସଂଘରୁ ବହିଷ୍କାର କରିବା ଦିଗରେ ସେ କୃତକାର୍ଯ୍ୟ ହେବାକୁ ଚାହାନ୍ତି, ତାହା ହେଲେ ତାଙ୍କ ପ୍ରତିବେଶୀ ଶକ୍ତିମାନଙ୍କର ମିତ୍ରତା ଲାଭକରିବା ଏକାନ୍ତ ପ୍ରୟୋଜନ । ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାକୁ ହେଲେ ତାଙ୍କୁ କୂଟକୌଶଳଦ୍ୱାରା ଇଉରୋପର ଅନ୍ୟାନ୍ୟ ଶକ୍ତିମାନଙ୍କଠାରୁ ବିଚ୍ଛିନ୍ନ କରିଦେବା ଅତି ଆବଶ୍ୟକ ହୋଇଥିଲା । ସେହି ଉଦ୍ଦେଶ୍ୟରେ ସେ ପ୍ରଥମେ ଅଷ୍ଟ୍ରିୟାର ନୂତନ ଶତ୍ରୁ ଫ୍ରାନ୍‌ସର ସମ୍ରାଟ ତୃତୀୟ ନେପୋଲିୟନ୍‌ଙ୍କ ସହିତ ମିତ୍ରତା ସ୍ଥାପନ କରିବାକୁ ଉଦ୍ୟମ କଲେ । ବନ୍ଧୁତାର ନିଦର୍ଶନ ସ୍ୱରୂପ ସେ ଫ୍ରାନ୍‌ସକୁ କେତେକ ଅନୁକୂଳ ସର୍ତ୍ତ ଦେଇ ତା' ସହିତ ଏକ ବାଣିଜ୍ୟ ଚୁକ୍ତି ସମ୍ପାଦନ କରିଥିଲେ । ତା'ପରେ ୧୮୬୩ ମସିହାରେ ସେ ଜାର୍‌ଙ୍କର ସଦିଚ୍ଛା ଲାଭକରିବା ଉଦ୍ଦେଶ୍ୟରେ ରୁଷୀୟ ପୋଲାଣ୍ଡରେ ସଙ୍ଘଟିତ ହୋଇଥିବା

ଏକ ବିପ୍ଳବର ସୁଯୋଗ ନେଇଥିଲେ । ପୋଲାଣ୍ଡର ଅଧିବାସୀମାନେ ଜାର୍‌ଙ୍କ ଶାସନାଧୀନରୁ ମୁକ୍ତିଲାଭ ପାଇଁ ୧୮୬୩ ମସିହାରେ ଜାର୍‌ଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ଏବଂ ସ୍ୱାଧୀନତାପ୍ରେମୀ ପୋଲାଣ୍ଡର ଅଧିବାସୀମାନଙ୍କ ପ୍ରତି ଜର୍ମାନୀରେ ଦୃଢ଼ ସମର୍ଥନ ମିଳିଥିଲା । ଇଂଲଣ୍ଡ, ଫ୍ରାନ୍‌ସ, ଅଷ୍ଟ୍ରିୟା ପ୍ରଭୃତି ବୃହତ୍ ଶକ୍ତିମାନେ ସେମାନଙ୍କ ପ୍ରତି ସହାନୁଭୂତି ଦେଖାଇଥିଲେ ଏବଂ ରୁଷିୟାକୁ ପୋଲାଣ୍ଡ ଅଧିବାସୀମାନଙ୍କୁ ସେମାନଙ୍କର ଅଧିକାରରୁ ବଞ୍ଚିତ କରିବା ବିରୁଦ୍ଧରେ ସତର୍କ କରାଇ ଦେଇଥିଲେ; କିନ୍ତୁ ବିସ୍‌ମାର୍କ ଭିନ୍ନ ମନୋଭାବ ପୋଷଣ କରିଥିଲେ । ତାଙ୍କ ଦେଶବାସୀମାନେ ତାଙ୍କ ମନୋଭାବ ଦେଖି ଅତିଶୟ କ୍ଷୁବ୍ଧ ହେଲେ ମଧ୍ୟ ସେ ତାକୁ ଭ୍ରୂକ୍ଷେପ ନକରି ପୋଲାଣ୍ଡ ଅଧିବାସୀମାନଙ୍କର ବିଦ୍ରୋହ ଦମନକରିବା ଉଦ୍ଦେଶ୍ୟରେ ରୁଷିଆର ଜାର୍‌ଙ୍କୁ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ବିସ୍‌ମାର୍କଙ୍କର ଏହା ଥିଲା ବିଚକ୍ଷଣ କୂଟନୀତିର ପରିଚୟ; କାରଣ ଯେତେବେଳେ ଅଷ୍ଟ୍ରିୟା ପୋଲାଣ୍ଡ ଅଧିବାସୀମାନଙ୍କ ପ୍ରତି ଅନୁକୂଳ ମନୋଭାବ ଯୋଗୁ ରୁଷିଆର ସଦିଚ୍ଛା ହରାଇଥିଲା, ଠିକ୍ ସେତେବେଳେ ପ୍ରୁସିୟା ଜାର୍‌ଙ୍କୁ ସମର୍ଥନ କରି ତାଙ୍କର ସଦିଚ୍ଛା ଲାଭକରିଥିଲା ।

ବୈଦେଶିକ ବ୍ୟାପାରରେ ବ୍ୟାପୃତ ଥିଲାବେଳେ, ବିସମାର୍କ ଅଷ୍ଟ୍ରିୟା ସହିତ ବିବାଦ ପାଇଁ ପ୍ରସ୍ତୁତ ହେଉଥିଲେ । ଅଷ୍ଟ୍ରିୟା ଯେତେବେଳେ ଗଣତାନ୍ତ୍ରିକ ଶାସନ-ବ୍ୟବସ୍ଥାଦ୍ୱାରା ଜର୍ମାନ ରାଷ୍ଟ୍ରସଙ୍ଘର ପୁନର୍ଗଠନ ପ୍ରସ୍ତାବ ବିଚାର କରିବାପାଇଁ ଜର୍ମାନ ରାଜାମାନଙ୍କର ଏକ ସମ୍ମିଳନୀ ୧୮୬୩ ମସିହାରେ ଡାକିଲେ, ସେତେବେଳେ ବିସ୍‌ମାର୍କ ପ୍ରୁସିୟା ରାଜା ଉଇଲିୟମ୍‌ଙ୍କୁ ସେହି ସମ୍ମିଳନୀରେ ଯୋଗ ନଦେବାପାଇଁ ପ୍ରବର୍ତ୍ତାଇଥିଲେ । ବିସ୍‌ମାର୍କ ଭାବୁଥିଲେ ଯେ ଜର୍ମାନ ରାଷ୍ଟ୍ରସଙ୍ଘର ପୁନର୍ଗଠନ ପାଇଁ ଯେକୌଣସି ପରିକଳ୍ପନା ଅଷ୍ଟ୍ରିୟା ଦ୍ୱାରା ପ୍ରବର୍ତ୍ତିତ କରାଯିବ, ତାହା ଜର୍ମାନୀରେ ତାହାର ସ୍ଥିତିକୁ ଦୃଢ଼ୀଭୂତ କରିବ । ତେଣୁ ସେ ବହୁ କଷ୍ଟରେ ପ୍ରୁସିୟା ରାଜାଙ୍କୁ ସମ୍ମିଳନୀରେ ଯୋଗ ନଦେବାପାଇଁ ରାଜି କରାଇଥିଲେ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାଦ୍ୱାରା ଅଷ୍ଟ୍ରିୟା ଜର୍ମାନୀରେ ତାହାର ନେତୃତ୍ୱକୁ ସୁଦୃଢ଼କରିବା ପାଇଁ ଯେଉଁ ଆଶା ପୋଷଣ କରିଥିଲା, ବିସ୍‌ମାର୍କ ତାହା ବିଫଳ କରିଦେଲେ । ଅଷ୍ଟ୍ରିୟା ଅଧୀନରେ ଜର୍ମାନୀକୁ ସୁସଂଘବଦ୍ଧ ହେବାକୁ ଦେଇଥିଲେ ବିସ୍‌ମାର୍କଙ୍କର ଆଦର୍ଶ ରକ୍ଷାହୋଇ ପାରିନଥାନ୍ତା କି ତାଙ୍କର ଆକାଙ୍‌କ୍ଷା ପୂରଣ ହୋଇପାରି ନଥାନ୍ତା । ସେ ଯାହାହେଉ ଅଷ୍ଟ୍ରିୟାର ନେତୃତ୍ୱ ସୁଦୃଢ଼ କରିବାପାଇଁ ଏହା ଥିଲା ଶେଷ ଉଦ୍ୟମ ଏବଂ ସେହି ଉଦ୍ୟମ ବ୍ୟର୍ଥ ହେଲା; କିନ୍ତୁ ଅଷ୍ଟ୍ରିୟା ମଧ୍ୟ ସହିତ ଖୋଲାଖୋଲି ବିବାଦର ସମୟ ସେପର୍ଯ୍ୟନ୍ତ ଆସି ନ ଥିଲା । ବିସ୍‌ମାର୍କ ନିଜର ସ୍ୱାର୍ଥସିଦ୍ଧି ପାଇଁ ଅଷ୍ଟ୍ରିୟା ସହିତ ମିଶି ଯେକୌଣସି କାର୍ଯ୍ୟ କରିବାକୁ ରାଜିଥିଲେ; କାରଣ ମିଳିତ କାର୍ଯ୍ୟାନୁଷ୍ଠାନ ଫଳରେ କଳହ କରିବାପାଇଁ ତାଙ୍କୁ ଆଳ ମିଳିବ ।

ଜର୍ମାନୀରେ ଅଷ୍ଟ୍ରିୟାର ନେତୃତ୍ୱ ସୁଦୃଢ଼ କରିବା ଉଦ୍ୟମ ବିଫଳ କରିଦେଲା ପରେ, ବିସ୍‌ମାର୍କ ପ୍ରୁସିୟାର ରାଜାଙ୍କ ଅଧୀନରେ ସମଗ୍ର ଜର୍ମାନୀକୁ ଐକ୍ୟବଦ୍ଧ କରିବାପାଇଁ ନିଜର

ସେନାବାହିନୀକୁ ପ୍ରସ୍ତୁତ କରି ରଖିଥିଲେ । ନିଜ ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ବିସ୍‌ମାର୍କଙ୍କୁ ମାତ୍ର ଛ'ବର୍ଷ ମଧ୍ୟରେ ତିନୋଟି ଯୁଦ୍ଧ କରିବାକୁ ପଡ଼ିଥିଲା । ସେ ଡେନମାର୍କ ସହିତ ୧୮୬୪ ମସିହାରେ ପ୍ରଥମ ଯୁଦ୍ଧ, ଅଷ୍ଟ୍ରିୟା ସହିତ ୧୮୬୬ ମସିହାରେ ଦ୍ୱିତୀୟ ଯୁଦ୍ଧ ଏବଂ ଫ୍ରାନ୍‌ସ ସହିତ ୧୮୭୦ ମସିହାରେ ତୃତୀୟ ବା ଶେଷ ଯୁଦ୍ଧ କରିଥିଲେ ଏବଂ ଏହି ତିନୋଟିଯାକ ଯୁଦ୍ଧରେ ସେ ଜୟଲାଭ କରି ଜର୍ମାନୀର ଐକ୍ୟସାଧନ କରିବା ସଙ୍ଗେ ସଙ୍ଗେ ଜର୍ମାନ ସାମ୍ରାଜ୍ୟ ମଧ୍ୟ ପ୍ରତିଷ୍ଠା କରିଥିଲେ ।

## ଡେନ୍‌ମାର୍କ ସହିତ ଯୁଦ୍ଧ (୧୮୬୪)
## (The War with Denmark, 1864)

ପ୍ରଥମ ଯୁଦ୍ଧ ସ୍ଲେଜ୍‌ଭିଗ୍ ଏବଂ ହୋଲ୍‌ଷ୍ଟିନ୍ ସମ୍ପର୍କୀୟ ଜଟିଳ ସମସ୍ୟାରୁ ସୃଷ୍ଟି ହୋଇଥିଲା । ଏହି ଦୁଇଟି କ୍ଷୁଦ୍ର ରାଜ୍ୟ (duchies) ଡେନ୍‌ମାର୍କ ସହିତ ବ୍ୟକ୍ତିଗତ ବନ୍ଧନ-ଦ୍ୱାରା ବହୁକାଳରୁ ସଂଯୁକ୍ତ ହୋଇଥିଲେ । ଅର୍ଥାତ୍ ଡେନ୍‌ମାର୍କର ରାଜା ଏହି କ୍ଷୁଦ୍ରରାଜ୍ୟ ଦୁଇଟିର ଡ୍ୟୁକ୍ ମଧ୍ୟ ଥିଲେ । ଅବଶ୍ୟ ସ୍ଲେଜଭିଗ ଏବଂ ହୋଲ୍‌ଷ୍ଟିନ୍‌କୁ ଡେନ୍‌ମାର୍କର ଏକ ଅଂଶରୂପେ ଶାସନ କରାଯାଉନଥିଲା । ସେମାନଙ୍କର ଆଇନ୍ ଏବଂ ଶାସନ-ବ୍ୟବସ୍ଥା ଡେନ୍‌ମାର୍କଠାରୁ ଭିନ୍ନ ଥିଲା ଏବଂ ଡେନ୍‌ମାର୍କର ରାଜା ତାହା ପାଳନ କରିବାକୁ ବାଧ୍ୟଥିଲେ । ସ୍ଲେଜ୍‌ଭିଗର ଲୋକସଂଖ୍ୟାର ପ୍ରାୟ ଦୁଇ-ତୃତୀୟାଂଶ ଥିଲେ ଜର୍ମାନ୍ ଏବଂ ଏକ-ତୃତୀୟାଂଶ ଥିଲେ ଡେନ (Danes) । କିନ୍ତୁ ହୋଲ୍‌ଷ୍ଟିନ୍‌ରେ ସାମାନ୍ୟ କେତେକ ଡେନ୍‌ଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଥିଲେ ଜର୍ମାନ୍ । ଡେନ୍‌ମାନେ ଏହି ଦୁଇଟି କ୍ଷୁଦ୍ର ରାଜ୍ୟକୁ ଡେନ୍‌ମାର୍କ ସହିତ ପୂରାପୂରି ମିଶାଇଦେବାକୁ ଚାହୁଁଥିଲେ । ଅନ୍ୟ ଦିଗରେ ଜର୍ମାନମାନେ ଏହି ଦୁଇଟିକୁ ଜର୍ମାନ ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ କରିବା ଚାହୁଁଥିଲେ । ୧୮୪୮ ମସିହାରେ ଡେନ୍‌ମାର୍କର ରାଜା ଏହି ଦୁଇଟି କ୍ଷୁଦ୍ର ରାଜ୍ୟର ସ୍ଥାନୀୟ ସଂସ୍ଥାଗୁଡ଼ିକୁ ଡେନ୍‌ମାର୍କର ସ୍ଥାନୀୟ ସଂସ୍ଥାଗୁଡ଼ିକ ସହିତ ମିଶାଇ ଦେବାକୁ ଉଦ୍ୟମ କରିଥିଲେ । ଏହି ଉଦ୍ୟମ ବିରୁଦ୍ଧରେ ସମଗ୍ର ଜର୍ମାନୀରେ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏ ଦୁଇଟି କ୍ଷୁଦ୍ର ରାଜ୍ୟ ଉପରେ ଅଗଷ୍ଟେନବର୍ଗର ଡ୍ୟୁକ୍‌ଙ୍କର ଦୃଢ଼ଦାବୀ ଥିବାରୁ ସେ ମଧ୍ୟ ଡେନମାର୍କରାଜାଙ୍କର ଉଦ୍ୟମକୁ ପ୍ରତିରୋଧ କରିଥିଲେ । ପ୍ରୁସିଆ ଜର୍ମାନୀର ଜାତୀୟଭାବକୁ ସମର୍ଥନକରି ଡେନ୍‌ମାର୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କରିଥିଲା । ତେଣୁ ଡେନ୍‌ମାର୍କର ସ୍ଥିତି ଅତି ସଙ୍କଟପୂର୍ଣ୍ଣ ହୋଇଥିଲା; କିନ୍ତୁ ଇଉରୋପୀୟ ଶକ୍ତିମାନଙ୍କ ହସ୍ତକ୍ଷେପ ଫଳରେ ସେ ରକ୍ଷାପାଇ ଯାଇଥିଲା । ୧୮୫୨ ମସିହାରେ ସେମାନେ ଲଣ୍ଡନ ଚୁକ୍ତି ସ୍ୱାକ୍ଷର କରିଥିଲେ ଏବଂ ସେହି ଚୁକ୍ତିରେ ଆପୋଷ-ନିଷ୍ପତ୍ତିପାଇଁ ଉଦ୍ୟମ କରାଯାଇଥିଲା । ସେହି ଚୁକ୍ତି ଡେନ୍‌ମାର୍କର ଅଖଣ୍ଡତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଉପରୋକ୍ତ ଦୁଇଟି କ୍ଷୁଦ୍ରରାଜ୍ୟ ଉପରେ ତାହାର ଅଧିକାର ସ୍ଥାୟୀ କରିଥିଲା; କିନ୍ତୁ ଡେନ୍‌ମାର୍କ ରାଜ୍ୟରେ ସେ ଦୁଇଟିଙ୍କୁ ସମ୍ପୂର୍ଣ୍ଣ ମିଶାଇଦେବାକୁ ନିଷେଧ

କରିଥିଲା । ଅଗଷ୍ଟେନବର୍ଗର ଡ୍ୟୁକ୍‌ଙ୍କୁ ତାଙ୍କର ସ୍ୱତ୍ୱ ଡେନ୍‌ମାର୍କର ରାଜାଙ୍କୁ ବିକ୍ରି କରିଦେବା ପାଇଁ ମଧ୍ୟ ପ୍ରବର୍ତ୍ତାଯାଇଥିଲା ।

ଲଣ୍ଡନ-ଚୁକ୍ତି ଦଶବର୍ଷ ପାଇଁ ଶାନ୍ତିରକ୍ଷା କରିପାରିଥିଲା; କିନ୍ତୁ ୧୮୬୩ ମସିହା ନଭେମ୍ବର ୧୩ ତାରିଖ ଦିନ ଡେନ୍‌ମାର୍କର ପାର୍ଲାମେଣ୍ଟ ଏକ ନୂତନ ସମ୍ବିଧାନ ଗ୍ରହଣ କରିଥିଲା ଏବଂ ସେହି ସମ୍ବିଧାନ ଅନୁସାରେ ସ୍ଲେଜଭିଗ୍ ଡେନ୍‌ମାର୍କ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ସମ୍ବିଧାନ ଗ୍ରହଣ କରାଯିବାର ଦୁଇଦିନ ପରେ ଡେନ୍‌ମାର୍କର ରାଜା ସପ୍ତମ ଫ୍ରେଡରିକ୍‌ଙ୍କର ମୃତ୍ୟୁ ଘଟିଲା ଏବଂ ତାଙ୍କର ଉତ୍ତରାଧିକାରୀ ନବମ ଖ୍ରୀଷ୍ଟିଆନ୍ ସମ୍ବିଧାନ ସ୍ୱାକ୍ଷର କଲେ । ଜର୍ମାନ ରାଷ୍ଟ୍ରସଙ୍ଘର ପାର୍ଲାମେଣ୍ଟ, ଡେନ୍‌ମାର୍କ ସହିତ ସ୍ଲେଜଭିଗ୍ ସଂଯୋଜନର ତୀବ୍ର ପ୍ରତିବାଦ କରିବା ସଙ୍ଗେ ସଙ୍ଗେ ଅଗଷ୍ଟେନବର୍ଗର ଡ୍ୟୁକ୍‌ଙ୍କର ଦୁଇଟି କ୍ଷୁଦ୍ର ରାଜ୍ୟ ଉପରେ ଦାବୀକୁ ସମର୍ଥନ କରି ଉକ୍ତ ସଂଯୋଜନକୁ ବାଧାଦେବା ଉଦ୍ଦେଶ୍ୟରେ ତାର ଏକ ସେନାବାହିନୀକୁ ସେହି ଦୁଇଟି କ୍ଷୁଦ୍ର ରାଜ୍ୟକୁ ପଠାଇବାକୁ ଆଦେଶ ଦେଇଥିଲା । ଏହି କାର୍ଯ୍ୟ ପାଇଁ ପାର୍ଲାମେଣ୍ଟକୁ ସମଗ୍ର ଜର୍ମାନୀରେ ଜନସମର୍ଥନ ମିଳିଥିଲା । ରାଷ୍ଟ୍ରସଙ୍ଘର ସେନାବାହିନୀକୁ ଯୁଦ୍ଧପାଇଁ ପ୍ରସ୍ତୁତକରି ରଖାଗଲା ।

ବିସ୍‌ମାର୍କ ଗଣ୍ଡଗୋଳ ପରିସ୍ଥିତିରୁ ଫାଇଦା ଉଠାଇବାପାଇଁ—ଦୃଢ଼ପ୍ରତିଜ୍ଞା କରିଥିଲେ । ସେ ଚାହିଁନଥିଲେ ଯେ ଜର୍ମାନ ରାଷ୍ଟ୍ରସଙ୍ଘ ସ୍ଲେଜଭିଗ୍ ଓ ହଲଷ୍ଟିନ୍ ଅଧିକାର କରିବ ଏବଂ ଅଗଷ୍ଟେନବର୍ଗର ଡ୍ୟୁକ୍ ଅଧିକୃତ ରାଜ୍ୟ ଦୁଇଟି ଲାଭକରିବେ । ବିସ୍‌ମାର୍କ ସଙ୍କଳ୍ପ କରିଥିଲେ ଯେ ସେ ଦୁଇଟି ରାଜ୍ୟ ପ୍ରୁସିଆ ପାଇବ । ଉପସ୍ଥିତ ପରିସ୍ଥିତିରୁ ପ୍ରୁସିଆର ସମ୍ପ୍ରସାରଣ ପାଇଁ ଏବଂ ଅଷ୍ଟ୍ରିଆ ସହିତ ଭବିଷ୍ୟତରେ ବିବାଦ ପାଇଁ ତାଙ୍କୁ ସୁଯୋଗ ମିଳିବ ବୋଲି ସେ ଅନୁଭବ କରିଥିଲେ । ପ୍ରୁସିଆ ସ୍ୱାଧୀନ ପଥ ଅନୁସରଣ କରିବା ସେ ଚାହୁଁଥିଲେ । ଯାହାହେଉ ବିସ୍‌ମାର୍କ ଅଷ୍ଟ୍ରିଆ ସମେତ ସମୁଦାୟ ଜର୍ମାନ ରାଷ୍ଟ୍ରସଙ୍ଘକୁ ଅବଜ୍ଞା କରିବା ପରିବର୍ତ୍ତେ, ଅଷ୍ଟ୍ରିଆ ଓ ପ୍ରୁସିଆ ମିଳିତଭାବେ ହସ୍ତକ୍ଷେପ କରିବାପାଇଁ ପ୍ରସ୍ତାବ କରିଥିଲେ । ତାଙ୍କ ମତରେ ଅଷ୍ଟ୍ରିଆ ଏବଂ ପ୍ରୁସିଆ ୧୮୫୨ ମସିହା ଲଣ୍ଡନ-ଚୁକ୍ତିର ସ୍ୱାକ୍ଷରକାରୀ ହୋଇଥିବାରୁ ତାକୁ ରକ୍ଷାକରିବାର ଦାୟିତ୍ୱ ସେମାନଙ୍କର ରହିଛି । ବିସ୍‌ମାର୍କ ଅଷ୍ଟ୍ରିଆକୁ ତାଙ୍କ ସହିତ ଯୋଗଦେଇ ଲଣ୍ଡନ ଚୁକ୍ତିକୁ ସମର୍ଥନ କରିବାପାଇଁ ପ୍ରବର୍ତ୍ତାଇ ପାରିଥିଲେ । ସେ ଦାବୀ କରିଥିଲେ, ସେମାନେ କେବଳ ଆନ୍ତର୍ଜାତିକ ଚୁକ୍ତିର ପବିତ୍ରତାକୁ ସମର୍ଥନ କରୁଅଛନ୍ତି । ଉଭୟ ଅଷ୍ଟ୍ରିଆ ଏବଂ ପ୍ରୁସିଆ ସେହି ଚୁକ୍ତିକୁ ଦୃଢ଼ ଭାବରେ ସମର୍ଥନ କରୁଛନ୍ତି ବୋଲି ଘୋଷଣା କରିଥିଲେ ଏବଂ ସେମାନେ ମଧ୍ୟ ଘୋଷଣା କରିଥିଲେ ଯେ, ନୂତନ ସମ୍ବିଧାନ ଏହାକୁ ଅବଜ୍ଞା କରିଅଛି । ତେଣୁ ଡେନମାନେ ସେହି ସମ୍ବିଧାନକୁ ପ୍ରତ୍ୟାହାର କରିନେବାପାଇଁ ସେମାନେ ଦାବୀ କରିଥିଲେ । ଉଭୟ ଅଷ୍ଟ୍ରିଆ ଏବଂ ପ୍ରୁସିଆ ଡେନମାର୍କକୁ ଏକ ଚରମପତ୍ର ପଠାଇଥିଲେ ଏବଂ ସେଥିରେ ଦାବୀ କରିଥିଲେ ଯେ ୪୮ ଘଣ୍ଟା ମଧ୍ୟରେ ସ୍ଲେଜଭିଗ୍‌କୁ ଡେନମାର୍କ ସହିତ ମିଶାଇଥିବା ସମ୍ବିଧାନକୁ

ପ୍ରତ୍ୟାହାର କରି ନିଆଯାଉ । ଡେନମାନେ ସର୍ବସମ୍ମତିକ୍ରମେ ଗ୍ରହଣ କରିବାକୁ ଚାହିଁଥିଲେ ମଧ୍ୟ ପ୍ରକୃତରେ ଏହାକୁ ଗ୍ରହଣ କରିନେବା ସମ୍ଭବପର ହୋଇନଥାନ୍ତା । ରାଜା ମଧ୍ୟ ତାଙ୍କର ବିଶେଷ କ୍ଷମତାବଳରେ ଏହା କରିପାରି ନଥାନ୍ତେ; କାରଣ ପାର୍ଲାମେଣ୍ଟର ସମ୍ମତି ନେବା ଆବଶ୍ୟକ ଥିଲା । ପାର୍ଲାମେଣ୍ଟ ଭଙ୍ଗିଦିଆଯାଇଥିଲା ଏବଂ ନୂତନ ପାର୍ଲାମେଣ୍ଟ ନିର୍ବାଚିତ ହୋଇ ନଥିଲା । ବାସ୍ତବରେ ଦୁଇଦିନ ମଧ୍ୟରେ ଚରମପତ୍ର ଗ୍ରହଣ କରାଯାଇ ପାରିନଥିଲା । ନିର୍ଦ୍ଦିଷ୍ଟ ସମୟର ଅବସାନ ପରେ ୧୮୫୨ର ଲଣ୍ଡନଚୁକ୍ତିକୁ ସମର୍ଥନ କରି ଉଭୟ ଅଷ୍ଟ୍ରିୟା ଏବଂ ପ୍ରୁସିୟା ଡେନମାର୍କ ବିରୁଦ୍ଧରେ ଯୁଦ୍ଧ-ଘୋଷଣା କରିଥିଲେ । ଗୋଟିଏ କ୍ଷୁଦ୍ର ରାଜ୍ୟ ଏବଂ ଦୁଇଟି ବଡ଼ ରାଜ୍ୟ ମଧ୍ୟରେ ଯୁଦ୍ଧ ହେବା ସୁନିଶ୍ଚିତ ଥିଲା । ଷାଠିଏ ହଜାର ପ୍ରୁସୀୟ ଓ ଅଷ୍ଟ୍ରୀୟ ୧୮୬୪ ମସିହା ଫେବୃୟାରୀ ମାସରେ ଡେନ୍‌ମାର୍କ ଆକ୍ରମଣ କରିଥିଲେ ଏବଂ ଯଦିଓ ସେମାନଙ୍କର ଅଭିଯାନ ଚମକପ୍ରଦ ହୋଇନଥିଲା ତଥାପି ସେମାନେ ସହଜରେ ଜୟଲାଭ କରିଥିଲେ । ଇଉରୋପୀୟ ଶକ୍ତିମାନେ ଡେନ୍‌ମାର୍କ ବ୍ୟାପାରରେ ହସ୍ତକ୍ଷେପ କଲେ ମଧ୍ୟ କୌଣସି ସୁଫଳ ମିଳିନଥିଲା । କୂଟନୀତି ବଳରେ ଏକ ରାଜିନାମା କରିବା ଉଦ୍ଦେଶ୍ୟରେ ଲଣ୍ଡନଠାରେ ଏକ ସମ୍ମିଳନୀ ବସିଥିଲା ସତ; କିନ୍ତୁ କୌଣସି ରାଜିନାମା ହୋଇପାରିଲା ନାହିଁ । କାରଣ ଖୁବ୍ ନିକଟରେ ଘଟିଥିବା ପୋଲମାନଙ୍କ ବିଦ୍ରୋହ ବିରୁଦ୍ଧରେ ପ୍ରୁସିୟା ରୁଷିଆକୁ ସାହାଯ୍ୟ କରିଥିବାରୁ ରୁଷିଆ, ପ୍ରୁସିୟା ପ୍ରତି କୃତଜ୍ଞ ରହିଥିଲା । ଇଂଲଣ୍ଡ ଏବଂ ଫ୍ରାନ୍ସ ପରସ୍ପର ପ୍ରତି ଦୋଷାରୋପ କରିଥିଲେ । ତେଣୁ ସେହି ଦୁଇଶକ୍ତି ମଧ୍ୟରେ ମତଭେଦ ହେବା ସ୍ୱାଭାବିକ । ଏଭଳି ପରିସ୍ଥିତିରୁ ବିସ୍‌ମାର୍କ ବେଶ୍ ଫାଇଦା ଉଠାଇଥିଲେ । ସେ ପ୍ରସ୍ତାବିତ ହସ୍ତକ୍ଷେପ ରୋକିବାକୁ ସକ୍ଷମ ହୋଇଥିଲେ । ପ୍ରୁସିୟା ଓ ଅଷ୍ଟ୍ରିୟା ଯୁଦ୍ଧରେ ଜୟଲାଭ କରିଥିଲେ ଏବଂ ଡେନ୍‌ମାର୍କର ରାଜା ୧୮୬୪ ମସିହା ଅକ୍ଟୋବର ୩୦ ତାରିଖ ଦିନ ଭିଏନା-ସନ୍ଧି ସ୍ୱାକ୍ଷର କରିଥିଲେ । ସେହି ସନ୍ଧି ଅନୁସାରେ ଡେନ୍‌ମାର୍କର ରାଜା ଉଭୟ ଅଷ୍ଟ୍ରିୟା ଏବଂ ପ୍ରୁସିୟା ସପକ୍ଷରେ ସ୍ଲେଜଭିଗ୍ ଓ ହଲଷ୍ଟିନ ଉପରୁ ତାଙ୍କର ଅଧିକାର ପରିହାର କରିଥିଲେ ଏବଂ ଉକ୍ତ ରାଜ୍ୟ ଦୁଇଟି ସମ୍ପର୍କରେ ସେମାନେ ଯାହା କିଛି ନିଷ୍ପତ୍ତି କରିବେ ସେ ତାହା ସ୍ୱୀକାର କରିବାପାଇଁ ରାଜି ହୋଇଥିଲେ ।

ଡେନ୍‌ମାର୍କ ସହିତ ଯୁଦ୍ଧର ଫଳ, ଯାହା ବିସ୍‌ମାର୍କ ଆଶା କରିଥିଲେ ତାହାହିଁ ହେଲା । ଦୁଇ ବିଜେତାଙ୍କ ମଧ୍ୟରେ ସ୍ଲେଜଭିଗ୍ ଏବଂ ହଲଷ୍ଟିନର ପୁନର୍ବଣ୍ଟନ ପ୍ରଶ୍ନ ନେଇ ମତଭେଦ ଦେଖାଗଲା । ଏହି ଦୁଇଟି ରାଜ୍ୟର ଅଧିବାସୀମାନେ ଅଗଷ୍ଟେନବର୍ଗ ଡ୍ୟୁକ୍‌ଙ୍କ ଅଧୀନରେ ପୃଥକ୍ ଏକ ରାଷ୍ଟ୍ର ଗଠନ କରିବା ପାଇଁ ଏବଂ ପୃଥକ୍ ରାଷ୍ଟ୍ର ହିସାବରେ ଜର୍ମାନ ରାଷ୍ଟ୍ରସଙ୍ଘର ଅନ୍ତର୍ଭୁକ୍ତ ହେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଅଧିକାଂଶ ଜର୍ମାନ ଅଧିବାସୀ ଏହି ବ୍ୟବସ୍ଥାର ପକ୍ଷପାତୀ ଥିଲେ ଏବଂ ଅଷ୍ଟ୍ରିୟା ମଧ୍ୟ ଏହାକୁ ଉତ୍ସାହିତ କରିଥିଲା । ବିସ୍‌ମାର୍କ କିନ୍ତୁ ଭିନ୍ନ ମତ ପୋଷଣ କରିଥିଲେ । ଅନ୍ୟ ଏକ ଜର୍ମାନ ରାଷ୍ଟ୍ର ପ୍ରତିଷ୍ଠାପାଇଁ ସେ ଆଗ୍ରହ ପ୍ରକାଶ କରିନଥିଲେ । ଆଗରୁ ଅନେକଗୁଡ଼ିଏ ଜର୍ମାନ ରାଷ୍ଟ୍ର ଥିଲେ ଏବଂ ଏହି ନୂତନ

ରାଷ୍ଟ୍ର ପ୍ରତିଷ୍ଠିତ ହେଲେ, ପ୍ରୁସିଆର ଆଉ ଏକ ଶତ୍ରୁ ବଢ଼ିବ ଏବଂ ଅଷ୍ଟ୍ରିଆର ଆଉ ଏକ ମିତ୍ର ବଢ଼ିବ । ସେ ଉଭୟ ସ୍ଲେଜଭିଗ୍ ଏବଂ ହଲ୍‌ଷ୍ଟିନକୁ ପ୍ରୁସିଆ ସହିତ ମିଶାଇ ଦେବାକୁ ଚାହିଁଥିଲେ । ବିଶେଷତଃ ସେ ହଲ୍‌ଷ୍ଟିନ୍‌କୁ ମିଶାଇବାକୁ ଚାହୁଁଥିଲେ; କାରଣ ଏହା ଉତ୍ତର-ସାଗର ଓ ବଲଟିକ୍ ସାଗର ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା ଏବଂ କିଏଲ ନାମକ ଏହାର ଏକ ଉତ୍କୃଷ୍ଟ ବନ୍ଦର ଥିଲା । ତେଣୁ ସ୍ଲେଜଭିଗ୍ ଏବଂ ହଲ୍‌ଷ୍ଟିନ ପୁନର୍ବଣ୍ଟନ ନେଇ ଅଷ୍ଟ୍ରିଆ ଏବଂ ପ୍ରୁସିଆ ମଧ୍ୟରେ ମତଭେଦ ହୋଇଥିଲା । ବିସମାର୍କ ସିଧାସଳଖ ତାଙ୍କ ଲକ୍ଷ୍ୟ ହାସଲକରିବା ସମ୍ଭବ ନୁହେଁ ବୋଲି ବୁଝିପାରି ଅଗଷ୍ଟେନବର୍ଗ ଡ୍ୟୁକଙ୍କର ଅଧିକାର କେତେକ ସର୍ତ୍ତରେ ସ୍ୱୀକାର କରିବାକୁ ରାଜିହୋଇଥିଲେ । ସେ ମଧ୍ୟ ଜାଣିଥିଲେ ଯେ ଡ୍ୟୁକ୍ କଦାପି ସେ ସର୍ତ୍ତ ଗ୍ରହଣ କରିବେ ନାହିଁ । ସୁତରାଂ ଉଭୟ ଶକ୍ତି ଆରମ୍ଭରୁ ସ୍ଲେଜଭିଗ୍ ଏବଂ ହଲ୍‌ଷ୍ଟିନର ଭବିଷ୍ୟତ ସମ୍ବନ୍ଧରେ ଭିନ୍ନ ମତ ପୋଷଣ କରିଥିଲେ ଏବଂ ସେମାନଙ୍କ ମଧ୍ୟରେ ମତାନ୍ତରର ଅନେକ କାରଣ ଥିଲା । ଦୁଇଶକ୍ତି ମଧ୍ୟରେ ଉତ୍ତେଜନା ଏପରି ବୃଦ୍ଧି ପାଇଲା ଯେ, ୧୮୬୫ ମସିହାରେ ମନେହେଲା ଯେପରି ସେମାନଙ୍କ ମଧ୍ୟରେ ଅତିଶୀଘ୍ର ଯୁଦ୍ଧ ଲାଗିଯିବ । ଅଷ୍ଟ୍ରିଆ ଯୁଦ୍ଧ ପାଇଁ ପ୍ରସ୍ତୁତ ଅଛି ବୋଲି କେହି ଅନୁଭବ କରିନଥିଲା; କିନ୍ତୁ ବିସମାର୍କ ଅଷ୍ଟ୍ରିଆ ସହିତ ଯୁଦ୍ଧକୁ ପୂରାପୂରି ସମର୍ଥନ କରୁଥିଲାବେଳେ, ପ୍ରୁସିଆର ରାଜା ଉଇଲିୟମ୍ ଏକ ଜର୍ମାନଶକ୍ତି ସହିତ ଯୁଦ୍ଧରେ ବ୍ୟାପୃତ ହେବାକୁ ରାଜି ହୋଇନଥିଲେ । ଉଇଲିୟମ୍‌ଙ୍କର ଅସମ୍ମତି ଫଳରେ ଅଷ୍ଟ୍ରିଆ ସହିତ ଏହି ବ୍ୟାପାର ସମ୍ପର୍କରେ ଏକ ଆପୋଷ-ମୀମାଂସାରେ ପହଞ୍ଚିବାପାଇଁ ଉଦ୍ୟମ କରାଯାଇଥିଲା । ଗ୍ୟାଷ୍ଟିନ୍ (Gastein) ସମ୍ମିଳନୀରେ ଏକ ମିଳିତ ବୈଠକରେ ଉଭୟ ଅଷ୍ଟ୍ରିଆ ଏବଂ ପ୍ରୁସିଆ ୧୮୬୫ ମସିହା ଅଗଷ୍ଟ ୧୪ ତାରିଖ ଦିନ ଗ୍ୟାଷ୍ଟିନ କନ୍‌ଭେନସନ୍ ନାମକ ଏକ ସାମୟିକ ଚୁକ୍ତି ସ୍ୱାକ୍ଷର କରିଥିଲେ । ଏହି ବ୍ୟବସ୍ଥା ଅନୁସାରେ ସ୍ଲେଜଭିଗ ଓ ହଲ୍‌ଷ୍ଟିନରେ ମିଳିତ ଦୃଷ୍ଟିରୁ ମିଳିତ-ଶାସନ-ବ୍ୟବସ୍ଥା କରାଯାଇ ନଥିଲା । ଏହି ଦୁଇଟି ରାଜ୍ୟ ଉଭୟ ପ୍ରୁସିଆ ଓ ଅଷ୍ଟ୍ରିଆର ଅଧିକାରଭୁକ୍ତ ହେଲା ସତ; କିନ୍ତୁ ଯେ ପର୍ଯ୍ୟନ୍ତ ଏ ବିଷୟରେ ଚୂଡ଼ାନ୍ତ ରାଜିନାମା ନ ହୋଇଛି, ସେ ପର୍ଯ୍ୟନ୍ତ ଅଷ୍ଟ୍ରିଆ କେବଳ ହଲ୍‌ଷ୍ଟିନ ଶାସନ ଦାୟିତ୍ୱରେ ରହିବ ଏବଂ ପ୍ରୁସିଆ ସ୍ଲେଜଭିଗ ଶାସନଭାର ନେବ । ତା'ଛଡ଼ା ଉଭୟେ ରାଜି ହୋଇଥିଲେ ଯେ ସ୍ଲେଜଭିଗ୍-ହଲ୍‌ଷ୍ଟିନ୍ ପ୍ରଶ୍ନ ଜର୍ମାନ ରାଷ୍ଟ୍ରସଂଘର ପାର୍ଲାମେଣ୍ଟ ନିକଟରେ ବିଚାର ପାଇଁ ଅଣାଯିବ ନାହିଁ । ଗ୍ୟାଷ୍ଟିନ୍ କନ୍‌ଭେନସନ୍ ଅଗଷ୍ଟେନବର୍ଗର ଡ୍ୟୁକ୍‌ଙ୍କ ଦାବୀ ଅସ୍ୱୀକାର କରିଥିଲା ।

ବିସମାର୍କଙ୍କର ପ୍ରଥମରୁ ଗ୍ୟାଷ୍ଟିନ୍ ବ୍ୟବସ୍ଥା ଉପରେ ଆସ୍ଥା ନଥିଲେ ମଧ୍ୟ ସେ ତାକୁ ଅନୁମୋଦନ କରିଥିଲେ; କାରଣ ତାଙ୍କ ମତରେ ଏହି ବ୍ୟବସ୍ଥାଦ୍ୱାରା ସ୍ଲେଜଭିଗ୍-ହଲ୍‌ଷ୍ଟିନ ପ୍ରଶ୍ନର ଶେଷ ନିଷ୍ପତ୍ତି କରାଯାଇନଥିଲା । ସେହି ଗ୍ୟାଷ୍ଟିନ୍ କନ୍‌ଭେନସନ୍ ସମ୍ବନ୍ଧରେ ବିସ୍‌ମାର୍କ କହିଥିଲେ, "ଆମ୍ଭେମାନେ ଏହି ମାତ୍ର କାଗଜଦ୍ୱାରା ଫାଟ ବନ୍ଦ କରିଦେଇଛୁଁ ।" ("We have, said Bismarck just papered over the cracks") ।

ତେଣୁ ବିସମାର୍କ ଗ୍ୟାଷ୍ଟିନ୍ ବ୍ୟବସ୍ଥା ଅଳ୍ପକାଳସ୍ଥାୟୀ ବୋଲି ମନେ କରିଥିଲେ ଏବଂ ଇତିମଧ୍ୟରେ ଅଷ୍ଟ୍ରିୟା ସହିତ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ଗ୍ୟାଷ୍ଟିନ୍ କନ୍‌ଭେନ୍‌ସନ୍ ଥିଲା ବିସମାର୍କଙ୍କ ପାଇଁ ଏକ ବଡ଼ କୂଟନୀତିକ ବିଜୟ । ଅଗଷ୍ଟେନ୍‌ବର୍ଗର ଡ୍ୟୁକ୍‌ଙ୍କ ଦାବିକୁ ଅଷ୍ଟ୍ରିୟା ପୂର୍ବରୁ ସମର୍ଥନ କରିଥିଲେ ମଧ୍ୟ ଗ୍ୟାଷ୍ଟିନ୍ ବ୍ୟବସ୍ଥାଦ୍ୱାରା ତାଙ୍କୁ ଏକାବେଳକେ ପରିତ୍ୟାଗ କରାଯାଇଥିଲା । ଏତଦ୍‌ବ୍ୟତୀତ ପ୍ରୁସିୟାର ଅଞ୍ଚଳ ଦ୍ୱାରା ପରିବେଷ୍ଟିତ ହୋଲ୍‌ଷ୍ଟିନ ଅଷ୍ଟ୍ରିୟାକୁ ଦେବା ଫଳରେ, ବିସ୍‌ମାର୍କ ଅଷ୍ଟ୍ରିୟାର ଶାସନ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାକୁ ସୁଯୋଗ ପାଇଥିଲେ ।

## ଅଷ୍ଟ୍ରିୟା ଏବଂ ପ୍ରୁସିୟାର ଯୁଦ୍ଧ (୧୮୬୬)
## ( Austro-Prussian War : 1866 )

ଗ୍ୟାଷ୍ଟିନ କନଭେନ୍‌ସନ୍ ଅଷ୍ଟ୍ରିୟା ପାଇଁ ଅତି ଅସୁବିଧାଜନକ ହୋଇଥିଲା; ତେଣୁ ତାହା ବେଶିଦିନ ତିଷ୍ଠି ନ ପାରିବ ବୋଲି ମନେହେଉଥିଲା । ଅଷ୍ଟ୍ରିୟା ଏବଂ ପ୍ରୁସିୟା ମଧ୍ୟରେ ମତଭେଦର ବିଶିଷ୍ଟ କାରଣଗୁଡ଼ିକ କୌଣସି ସନ୍ତୋଷଜନକ ନିଷ୍ପତ୍ତି ଫଳରେ ସବୁଦିନପାଇଁ ଅପସାରଣ କରିବାକୁ ବିସ୍‌ମାର୍କ ଚାହୁଁ ନଥିଲେ । କାରଣ ସେ ଆଦୌ ଭୁଲିନଥିଲେ ଯେ ତାଙ୍କର ଉଦ୍ଦେଶ୍ୟ ସାଧନ ନିମନ୍ତେ ତାଙ୍କୁ ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାକୁ ପଡ଼ିବ । ତାଙ୍କର ଉଦ୍ଦେଶ୍ୟ ଥିଲା ପ୍ରୁସିୟାର ନେତୃତ୍ୱରେ ଜର୍ମାନୀର ଐକ୍ୟସାଧନ । ଗ୍ୟାଷ୍ଟିନ ବ୍ୟବସ୍ଥା ବିବାଦର ବୀଜମାନ ବହନ କରିଥିଲା । ବିସ୍‌ମାର୍କ ସେହି ବ୍ୟବସ୍ଥାର ସୁଯୋଗ ନେଇ ଅଷ୍ଟ୍ରିୟା ସହିତ ଯୁଦ୍ଧ ଲଗାଇବା ପାଇଁ ଆଶାକରିଥିଲେ । ଏହି ଯୁଦ୍ଧ ପ୍ରୁସିୟାକର୍ତ୍ତୃକ ଜର୍ମାନୀ ଏକତ୍ରୀକରଣର ଏକମାତ୍ର ଉପାୟ ହୋଇଥିବାରୁ ବିସ୍‌ମାର୍କ ଗତ ଦଶବର୍ଷ ହେଲା ଏହା ଚାହୁଁଥିଲେ । ଅଷ୍ଟ୍ରିୟା ସହିତ ଯୁଦ୍ଧରେ ବ୍ୟାପୃତ ହେବା ପୂର୍ବରୁ ସେ ପ୍ରୁସିୟାକୁ ବୈଦେଶିକ ହସ୍ତକ୍ଷେପର ବିପଦରୁ ରକ୍ଷାକରିବା ପାଇଁ ଯତ୍ନନେବା ସଙ୍ଗେ ସଙ୍ଗେ ଅଷ୍ଟ୍ରିୟାକୁ ଇଉରୋପର ଅନ୍ୟ ଶକ୍ତିମାନଙ୍କଠାରୁ ବିଚ୍ଛିନ୍ନ କରିଦେବାପାଇଁ ବିଶେଷ ଧ୍ୟାନ ଦେଇଥିଲେ । ତାଙ୍କର ଏହି ଉଦ୍ଦେଶ୍ୟ ସଫଳ କରିବା ନିମନ୍ତେ ସେ କୂଟନୀତିର ଆଶ୍ରୟ ନେଇଥିଲେ । ସେ କୂଟନୈତିକ ଚାଲିଦ୍ୱାରା ଇଉରୋପୀୟ ଶକ୍ତିମାନଙ୍କର ସମର୍ଥନ ଏବଂ ସଦିଚ୍ଛା ଲାଭକରିବା ପାଇଁ ଉଦ୍ୟମ କରିଥିଲେ । ଫଳରେ ତାଙ୍କର ଫ୍ରାନ୍‌ସରେ ସମ୍ରାଟ ତୃତୀୟ ନେପୋଲିୟନ୍‌ଙ୍କ ସହିତ ସାକ୍ଷାତ୍ ଓ ଇଟାଲୀ ସହିତ ମୈତ୍ରୀ ହୋଇଥିଲା । ଫ୍ରାନ୍‌ସର ମନୋଭାବ ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ତେଣୁ ସେ ୧୮୬୫ ମସିହାରେ ନେପୋଲିୟନ୍‌ଙ୍କ ସହିତ ସାକ୍ଷାତ କରିବାପାଇଁ ବିୟାରିଟ୍‌ଜ୍ ଯାଇଥିଲେ । ସେ ଦୁହିଁଙ୍କ ମଧ୍ୟରେ କ'ଣ କଥାବାର୍ତ୍ତା ହେଲା ତାହା ଅନ୍ୟ କେହି ପୁରାପୁରି ଜାଣିନଥିଲେ । ସେମାନଙ୍କ ମଧ୍ୟରେ କୌଣସି ଆନୁଷ୍ଠାନିକ ବା ଲିଖିତ ଚୁକ୍ତି ହୋଇ ନଥିଲା । ବିସମାର୍କ ଦୃଢ଼ଧାରଣା ନେଇ ଫେରିଥିଲେ ଯେ ଅଷ୍ଟ୍ରିୟା ଏବଂ ପ୍ରୁସିୟା ମଧ୍ୟରେ ଯୁଦ୍ଧ ହେଲେ, ନେପୋଲିୟନ୍ ନିରପେକ୍ଷ ରହିବେ ଏବଂ ପ୍ରୁସିୟା

ସହିତ ସ୍ଲେଜଭିଗ-ହଲଷ୍ଟିନ୍ ମିଶ୍ରଣରେ ବିରୋଧ କରିବେ ନାହିଁ । ତା'ଛଡ଼ା ବିସ୍‌ମାର୍କ ମଧ୍ୟ ନେପୋଲିୟନଙ୍କୁ କହିଥିଲେ ଯେ ଜର୍ମାନ ରାଷ୍ଟ୍ରସଙ୍ଘର ସମ୍ବିଧାନ ସମ୍ପୂର୍ଣ୍ଣରୂପେ ସଂସ୍କାର କରାଯିବା ଉଚିତ । ନେପୋଲିୟନ୍ ଏହି ପ୍ରସ୍ତାବରେ ବୋଧହୁଏ ଆପତ୍ତି ଉଠାଇନଥିଲେ । ବିସମାର୍କ ଅନୁଭବ କରିଥିଲେ ଯେ ଏହିସବୁ ପରିବର୍ତ୍ତନ କରିବାପାଇଁ ଅନୁମତି ପାଇବା ବିନିମୟରେ ଫ୍ରାନ୍‌ସକୁ କିଛି ପ୍ରତିଦାନ କରିବାକୁ ପଡ଼ିବ । ଯଦିଓ ଏ ବିଷୟରେ ବିସମାର୍କ ଓ ନେପୋଲିୟନଙ୍କ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ରାଜିନାମା ହୋଇନଥିଲା, ତଥାପି ବିସମାର୍କ ବନ୍ଧୁତାର ନିଦର୍ଶନ ସ୍ୱରୂପ ଫ୍ରାନ୍‌ସର ସୀମା ରାଇନ୍ ଅଞ୍ଚଳରେ ବା ବେଲଜିୟମ୍‌ରେ ବୃଦ୍ଧି ପାଇବ ବୋଲି ନେପୋଲିୟନ୍‌ଙ୍କୁ ଆଶା ଦେଇଥିଲେ ।

ଏହାପରେ ସେ ଇଟାଲୀ ସହିତ ୧୮୬୬ ମସିହା ଅପ୍ରେଲ ୮ ତାରିଖ ଦିନ ଏକ ସନ୍ଧି ସ୍ୱାକ୍ଷର କଲେ । ଏହି ସନ୍ଧିର ସର୍ତ୍ତ ଅନୁସାରେ ପ୍ରୁସିୟା ଜର୍ମାନ ରାଷ୍ଟ୍ରସଙ୍ଘରେ ସଂସ୍କାର ପ୍ରବର୍ତ୍ତନ ନିମନ୍ତେ ଯଦି ତିନିମାସ ମଧ୍ୟରେ ଅଷ୍ଟ୍ରିୟା ସହିତ ଯୁଦ୍ଧରେ ବ୍ୟାପୃତ ହୁଏ, ତାହାହେଲେ ଇଟାଲୀ ମଧ୍ୟ ଅଷ୍ଟ୍ରିୟା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବ ଏବଂ ଏହି ଦୁଇଶକ୍ତି ମଧ୍ୟରୁ କୌଣସିଟି ଅଷ୍ଟ୍ରିୟା ସହିତ ପୃଥକ୍ ସନ୍ଧି କରିପାରିବ ନାହିଁ । ତାହାଛଡ଼ା ମିତ୍ରଶକ୍ତିଦ୍ୱୟ ଯୁଦ୍ଧରେ ଜୟଲାଭ କଲେ ଇଟାଲୀ ତାହାର ପୁରସ୍କାର ସ୍ୱରୂପ ଅଷ୍ଟ୍ରିୟାଠାରୁ ଭେନିସିୟା ପାଇବ ଏବଂ ପ୍ରୁସିୟା ସମାନ ପରିମାଣରେ ଅଷ୍ଟ୍ରିୟାର ଅଞ୍ଚଳ ପାଇବ । ବିସମାର୍କ ପୂର୍ବରୁ ପୋଲ୍‌ମାନଙ୍କର ୧୮୬୩ ବିଦ୍ରୋହକୁ ଦମନ କରିବାପାଇଁ ରୁଷିଆକୁ ସାହାଯ୍ୟ କରିଥିବାରୁ ସେ ରୁଷିଆର ସଦିଚ୍ଛା ଲାଭ କରିପାରିଥିଲେ ।

ବିସମାର୍କଙ୍କର କୂଟନୀତିକ କୌଶଳ ହେଲା ଯେ, ସେ କୌଣସି ରାଷ୍ଟ୍ର ସହିତ ଯୁଦ୍ଧରେ ଅବତୀର୍ଣ୍ଣ ହେବା ପୂର୍ବରୁ ସେହି ରାଷ୍ଟ୍ରକୁ ଅନ୍ୟ ରାଷ୍ଟ୍ରମାନଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରିଦେବା ଏବଂ ସେହି ରାଷ୍ଟ୍ରକୁ ଆକ୍ରମଣକାରୀ ବୋଲି ସମସ୍ତଙ୍କ ସମ୍ମୁଖରେ ପ୍ରମାଣ କରିଦେବା । ବିସମାର୍କ ତାଙ୍କର କୂଟନୀତିକ କୌଶଳଦ୍ୱାରା ଅଷ୍ଟ୍ରିୟାକୁ ଅନ୍ୟ ଶକ୍ତିମାନଙ୍କଠାରୁ ବିଚ୍ଛିନ୍ନ କରିଦେଲାପରେ, ସେ ଅଷ୍ଟ୍ରିୟା ସହିତ ତିନିମାସ ମଧ୍ୟରେ ଯୁଦ୍ଧ ସୃଷ୍ଟି କରିବା ପାଇଁ ପ୍ରବଳ ଉଦ୍ୟମ ଚଳାଇଥିଲେ । ଗ୍ୟାଷ୍ଟିନ୍ କନ୍‌ଭେନ୍‌ସନ୍ ଏଥିରେ ତାଙ୍କୁ ସାହାଯ୍ୟ କରିଥିଲା । ହଲଷ୍ଟିନ୍‌ରେ ଅଷ୍ଟ୍ରିୟାର ଶାସନପଦ୍ଧତି ବିରୁଦ୍ଧରେ ପ୍ରୁସିୟା ତୀବ୍ର ପ୍ରତିବାଦ କରିଥିଲା । ଅଷ୍ଟ୍ରିୟା ଏହି ସମାଲୋଚନାର ବିରୋଧ କରିଥିଲା ଏବଂ ତାହାର ନିଜ ବ୍ୟାପାରରେ ଏହାକୁ ଅବାନ୍ତର ହସ୍ତକ୍ଷେପ ବୋଲି ମତପ୍ରକାଶ କରିଥିଲା । ଦୁଇଶକ୍ତି ମଧ୍ୟରେ ଯେଉଁ ସମ୍ପର୍କ ଥିଲା, ତାହା ପ୍ରାୟ ଛିନ୍ନ ହୋଇଯାଇଥିଲା । ଉଭୟ ଶକ୍ତି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇଥିଲେ । ଅବଶ୍ୟ ଯୁଦ୍ଧ ଆରମ୍ଭହେବା ପୂର୍ବରୁ କେତେ ସପ୍ତାହ କଟିଯାଇଥିଲା ।

ବିସମାର୍କଙ୍କର କାର୍ଯ୍ୟକଳାପର ପ୍ରକୃତ ଉଦ୍ଦେଶ୍ୟ ଥିଲା, ଜର୍ମାନୀର ନେତୃତ୍ୱ ଅଷ୍ଟ୍ରିୟା ପରିବର୍ତ୍ତେ ପ୍ରୁସିୟା ଗ୍ରହଣ କରିବା । ସେହି ଲକ୍ଷ୍ୟସାଧନ ନିମନ୍ତେ ବିସ୍‌ମାର୍କ ଜର୍ମାନୀରେ ଏକ

ଗୃହଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲେ । ସେ ସ୍ଲେଜ୍‌ଭିଗ୍-ହଲ୍‌ଷ୍ଟିନ୍ ପ୍ରଶ୍ନକୁ ଭିତ୍ତିକରି ଅଷ୍ଟ୍ରିୟା ସହିତ ଯୁଦ୍ଧ କରିବାକୁ ଚାହୁଁ ନଥିଲେ; କାରଣ ସେହି ଯୁଦ୍ଧ ନିଜର ସ୍ୱାର୍ଥସିଦ୍ଧିପାଇଁ କରାଗଲା ବୋଲି ବ୍ୟାଖ୍ୟା କରାଯିବ । ତେଣୁ ସମଗ୍ର ଜର୍ମାନ ପ୍ରଶ୍ନ ଉପରେ ଭିତ୍ତିକରି ସେ ଅଷ୍ଟ୍ରିୟା ସହିତ ଯୁଦ୍ଧକରିବାକୁ ଚାହୁଁଥିଲେ । ସେ ସ୍ଲେଜ୍‌ଭିଗ୍-ହଲଷ୍ଟିନ୍ ପାଇଁ ଯୁଦ୍ଧକରିବା ଅପେକ୍ଷା ଜର୍ମାନ ରାଷ୍ଟ୍ରସଂଘର ସଂସ୍କାରପାଇଁ ଯୁଦ୍ଧକରିବାକୁ ଅଧିକ ପସନ୍ଦ କରିଥିଲେ । ତାଙ୍କର ଉଦ୍ୟମରେ ଜର୍ମାନ ରାଷ୍ଟ୍ରସଂଘର ସଂସ୍କାର ନିମନ୍ତେ ପ୍ରୁସିଆ ଯେଉଁ ପରିକଳ୍ପନା କରିଥିଲା, ତାହା ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟରେ ଆଗତ କରାଯାଇଥିଲା । ଏହି ପରିକଳ୍ପନା ଅନୁସାରେ ଅଷ୍ଟ୍ରିୟାକୁ ଜର୍ମାନୀରୁ ବାଦ୍ ଦିଆଯାଇଥିଲା ଏବଂ ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟକୁ ଏକପ୍ରକୋଷ୍ଠ-ବିଶିଷ୍ଟ ପରିବର୍ତ୍ତେ ଦ୍ୱିପ୍ରକୋଷ୍ଠବିଶିଷ୍ଟ କରାଯିବା ପାଇଁ ସ୍ଥିର ହୋଇଗଲା । ଅର୍ଥାତ୍ ଡାଏଟ୍ ସାଙ୍ଗକୁ ସାର୍ବଜନୀନ ମତାଧିକାର (Universal Suffrage) ଭିତ୍ତିରେ ଏକ ଜନସାଧାରଣ ପ୍ରକୋଷ୍ଠ ନିର୍ବାଚିତ କରି ତାକୁ ସାଧାରଣ ବ୍ୟାପାର ପରିଚାଳନାରେ ଡାଏଟ୍ ସହିତ ଭାଗନେବାପାଇଁ ବ୍ୟବସ୍ଥା କରାଯାଇଥିଲା ।

ପ୍ରୁସିଆର ପରିକଳ୍ପନା ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟରେ ଆଗତ କରାଗଲା ପରେ ମଧ୍ୟ ପ୍ରୁସିଆ ଏବଂ ଅଷ୍ଟ୍ରିୟା ଭିତରେ ଯୁଦ୍ଧ ଲାଗିବାରେ ବିଳମ୍ବ ଘଟିଥିଲା । ବିସ୍‌ମାର୍କଙ୍କୁ ଅଷ୍ଟ୍ରିୟା ପକ୍ଷରୁ ଉତ୍ତେଜନାପୂର୍ଣ୍ଣ କାର୍ଯ୍ୟପାଇଁ ଅପେକ୍ଷାକରିବାକୁ ପଡ଼ିଥିଲା । ଅଷ୍ଟ୍ରିୟା ଗୃହଯୁଦ୍ଧ ଆରମ୍ଭ କରିଛି ବୋଲି ସେ ତାହା ଉପରେ ଦୋଷ ଲଦିଦେବାକୁ ଚାହିଁଥିଲେ । ଅବଶେଷରେ ସେହି ମୁହୂର୍ତ୍ତ ଆସିଥିଲା । ୧୮୬୬ ମସିହା ଜୁନ୍ ୧ ତାରିଖ ଦିନ ଅଷ୍ଟ୍ରିୟା ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟ (ଡାଏଟ୍)ରେ ସ୍ଲେଜ୍‌ଭିଗ୍-ହଲ୍‌ଷ୍ଟିନ୍ ପ୍ରଶ୍ନ ଉତ୍ଥାପନ କରିଥିଲା । ତତ୍‌କ୍ଷଣାତ୍ ବିସମାର୍କ ଘୋଷଣାକଲେ ଯେ, ଅଷ୍ଟ୍ରିୟା ଏହା କରିବାଦ୍ୱାରା ଗ୍ୟାଷ୍ଟିନ୍ କନ୍‌ଭେନ୍‌ସନ୍‌ର ସର୍ତ୍ତ ଭଙ୍ଗକରିଅଛି । ତେଣୁ ପ୍ରୁସିଆ ଏବଂ ଅଷ୍ଟ୍ରିୟା ମଧ୍ୟରେ ହୋଇଥିବା ଗ୍ୟାଷ୍ଟିନ୍ ରାଜିନାମା ରଦ୍ଦହେଲା ବୋଲି ବିସ୍‌ମାର୍କ ପ୍ରକାଶ କରିଥିଲେ ଏବଂ ଅଷ୍ଟ୍ରିୟାର କର୍ତ୍ତୃତ୍ୱାଧୀନରେ ଥିବା ହଲ୍‌ଷ୍ଟିନ୍‌କୁ ପ୍ରୁସିଆର ସୈନ୍ୟଦଳ ପଠାଯାଇଥିଲା । ଅଷ୍ଟ୍ରିୟା ଅବଶ୍ୟ ପ୍ରୁସିଆର ସଂସ୍କାର ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଲା ଏବଂ ହଲ୍‌ଷ୍ଟେନ୍ ଉପରେ ଅଷ୍ଟ୍ରିୟାର ଅଧିକାରକୁ ଅବଜ୍ଞାକରି ପ୍ରୁସିଆ ସେଠାକୁ ସୈନ୍ୟ ପଠାଇଥିବାରୁ ତାକୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ଅଷ୍ଟ୍ରିୟା ଜର୍ମାନ ରାଷ୍ଟ୍ରସଂଘର ସୈନ୍ୟମାନଙ୍କୁ ପ୍ରୁସିଆ ବିରୁଦ୍ଧରେ ପଠାଇବାପାଇଁ ଫ୍ରାଙ୍କଫୋର୍ଟ ପାର୍ଲାମେଣ୍ଟରେ ଏକ ପ୍ରସ୍ତାବ ଦେଇଥିଲା । ପ୍ରୁସିଆ ଜର୍ମାନ୍ ରାଷ୍ଟ୍ରସଂଘର ଅନ୍ତର୍ଭୁକ୍ତ ରାଷ୍ଟ୍ରମାନଙ୍କୁ ସତର୍କ କରିଦେବାକୁ ଯାଇ କହିଥିଲା ଯେ ଯେଉଁ ରାଷ୍ଟ୍ର ଅଷ୍ଟ୍ରିୟାର ପ୍ରସ୍ତାବ ସପକ୍ଷରେ ଭୋଟଦେବ ସେହି ରାଷ୍ଟ୍ର ପ୍ରୁସିଆ ବିରୁଦ୍ଧରେ ଯୁଦ୍ଧଘୋଷଣା କଲା ବୋଲି ଧରିନିଆଯିବ । ୧୮୬୬ ମସିହା ଜୁନ ୧୪ ତାରିଖ ଦିନ ଭୋଟ ନିଆଗଲା ଏବଂ ଅଷ୍ଟ୍ରିୟାର ପ୍ରସ୍ତାବ ଗୃହୀତ ହେଲା । ଜର୍ମାନ ରାଷ୍ଟ୍ରସଂଘ ତାହାର ଜଣେ ସଭ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିବାରୁ, ପ୍ରୁସିଆ ରାଷ୍ଟ୍ରସଂଘ ଭାଙ୍ଗିଗଲା ବୋଲି ଘୋଷଣା କରିଥିଲା ଏବଂ

ପୁନରାୟ ତାହାର ସଂସ୍କାର-ପରିକଳ୍ପନା ବିଷୟ ଉତ୍ଥାପନ କରିଥିଲା ଏବଂ ଆଶୁ କାର୍ଯ୍ୟାନୁଷ୍ଠାନ ପାଇଁ ପ୍ରସ୍ତୁତ ହେଲା ।

ଜର୍ମାନ ଗୃହଯୁଦ୍ଧ ଏହିପରି ଆରମ୍ଭହେଲା । ଏହି ଯୁଦ୍ଧ ଇତିହାସରେ ଏକ ଅଳ୍ପକାଳ ସ୍ଥାୟୀ ଯୁଦ୍ଧ ହେଲେ ମଧ୍ୟ ନିଷ୍ପତ୍ତିମୂଳକ ହୋଇଥିଲା । ଏହାର ଫଳାଫଳ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚିତ ହୋଇଥିଲା । ଏହି ଯୁଦ୍ଧକୁ ସପ୍ତସପ୍ତାହ ଯୁଦ୍ଧ (Seven Weeks' War) କୁହାଯାଏ । ପ୍ରୁସିୟାର କୌଣସି ନିର୍ଭରଯୋଗ୍ୟ ଜର୍ମାନ ରାଷ୍ଟ୍ର ମିତ୍ର ନଥିଲେ । କିଛି ଉତ୍ତର ଜର୍ମାନ ରାଷ୍ଟ୍ର ପ୍ରୁସିୟା ପକ୍ଷରେ ଥିଲେ; କିନ୍ତୁ ସେମାନେ ଆକାରରେ କ୍ଷୁଦ୍ର ଥିଲେ ଏବଂ ସେମାନଙ୍କର ସୈନ୍ୟବାହିନୀଗୁଡ଼ିକର ମଧ୍ୟ କିଛି ସମ୍ମାନ ନଥିଲା । ଅନ୍ୟ ପଟରେ ଅଷ୍ଟ୍ରିୟାକୁ ଚାରୋଟି ରାଜ୍ୟ—ବେଭେରିୟା, ଉଟେମ୍‌ବର୍ଗ, ସ୍ୟାକ୍‌ସନି ଏବଂ ହେନୋଭର ସାହାଯ୍ୟ କରିଥିଲେ । ସେମାନଙ୍କ ବ୍ୟତୀତ ହେସେ-କାସେଲ, ହେସେ-ଡାର୍ମଷ୍ଟାଡଟ୍, ନାସାଉ ଏବଂ ବାଡେନ୍ ମଧ୍ୟ ଅଷ୍ଟ୍ରିୟାର ସପକ୍ଷରେ ଯୁଦ୍ଧ କରିଥିଲେ । ଇଟାଲୀ ପ୍ରୁସିୟାର ଏକ ପ୍ରଧାନ ମିତ୍ରଥିଲା ଏବଂ ଏହି ମିତ୍ର ସାହାଯ୍ୟ ବିନା ପ୍ରୁସିୟା ହୁଏତ ଯୁଦ୍ଧରେ ବିଜୟ ଲାଭକରି-ନଥାନ୍ତା । ଯାହାହେଉ ପ୍ରୁସିୟାର ସେନାବାହିନୀ ଅଷ୍ଟ୍ରିୟାର ସେନାବାହିନୀ ଅପେକ୍ଷା ଅଧିକ ପ୍ରସ୍ତୁତ ଥିଲା । ତା'ଛଡ଼ା ପ୍ରୁସିୟାର ସେନାବାହିନୀ ଇଉରୋପର ଜଣେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତି ଜେନେରାଲ ମୋଲ୍‌ଟକେଙ୍କଦ୍ୱାରା ପରିଚାଳିତ ହୋଇଥିଲା । ଏହି ଯୁଦ୍ଧ ୧୮୬୬ ମସିହା ଜୁନ ୧୬ ତାରିଖ ଦିନ ଆରମ୍ଭହେଲା ଏବଂ ୩ ଦିନ ମଧ୍ୟରେ ପ୍ରୁସିୟାର ସୈନ୍ୟମାନେ ଉତ୍ତର ଜର୍ମାନୀରେ ଥିବା ତିନୋଟି ଶତ୍ରୁରାଜ୍ୟର ରାଜଧାନୀ—ହେନୋଭର, ଡ୍ରେସ୍‌ଡେନ୍ ଏବଂ କାସେଲ ଅଧିକାର କରିନେଲେ । ଏହିପରି ଦ୍ରୁତଗତିରେ ଅଗ୍ରସର ହୋଇ ପ୍ରୁସିୟାର ସେନାବାହିନୀ ସମଗ୍ର ଉତ୍ତର ଜର୍ମାନୀକୁ ପ୍ରୁସିୟାର ଅଧୀନ କରିଥିଲେ । ଅଷ୍ଟ୍ରିୟାର ସେନାବାହିନୀ ପ୍ରୁସିୟା ସେନାବାହିନୀର ସମକକ୍ଷ ହୋଇ ନଥିଲେ କି ତାହାର ସେନାପତି ବେନେଡେକ୍ ପ୍ରୁସିୟା ସେନାପତି ମୋଲ୍‌ଟକେଙ୍କ ପରି ଦକ୍ଷ ନଥିଲେ । ତା'ଛଡ଼ା ଅଷ୍ଟ୍ରିୟାକୁ ଦୁଇଟି ଶତ୍ରୁ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା—ପ୍ରୁସିୟା ସହିତ ସମ୍ମୁଖ ଭାଗରେ ଏବଂ ଇଟାଲୀ ସହିତ ପଶ୍ଚାତ୍‌ଭାଗରେ । ତେଣୁ ଅଷ୍ଟ୍ରିୟା ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ଅବଶ୍ୟ ଅଷ୍ଟ୍ରିୟା ଇଟାଲୀ ବିରୁଦ୍ଧରେ ସଫଳ ହୋଇଥିଲା; କିନ୍ତୁ ଅଷ୍ଟ୍ରିୟା ପ୍ରୁସିୟାଦ୍ୱାରା ୧୮୬୬ ମସିହା ଜୁଲାଇ ୩ ତାରିଖ ଦିନ କନିଗ୍ରାଜ୍ (Koniggratz) ବା ସ୍ୟାଡୋୟା (Sadowa) ଯୁଦ୍ଧରେ ପରାଜିତ ହୋଇଥିଲା । ଏହି ପରାଜୟ ନିଷ୍ପତ୍ତିମୂଳକ ଥିଲା ଏବଂ ସମଗ୍ର ଇଉରୋପର ଇତିହାସରେ ଏକ ନୂତନ ଅଧ୍ୟାୟର ସୂଚନା ଦେଇଥିଲା । ତଥାପି ପ୍ରୁସିୟାର ଆଉ କେତେକ ଶତ୍ରୁ ରହିଥିଲେ । ଜର୍ମାନ୍ ରାଷ୍ଟ୍ରସଂଘର ସେନାବାହିନୀ ଏବଂ ବେଭେରିୟା ସମେତ ଦକ୍ଷିଣ ଜର୍ମାନ ରାଜ୍ୟମାନଙ୍କର ସୈନ୍ୟଦଳଗୁଡ଼ିକୁ ତାହାର ପରାସ୍ତ କରିବା ବାକୀ ଥିଲା । ସେ ଏହିସବୁ ବାଧାବିଘ୍ନକୁ ସହଜରେ ଅତିକ୍ରମ କରିଥିଲା । ବେଭେରିୟାର ସେନାବାହିନୀ ୧୮୬୬ ମସିହା ଜୁଲାଇ ୧୦ ତାରିଖ ଦିନ ପରାସ୍ତ

ହୋଇଥିଲା । ଶେଷରେ ଜର୍ମାନ ରାଷ୍ଟ୍ରସଙ୍ଘର ମୁଖ୍ୟ କାର୍ଯ୍ୟାଳୟ ଫ୍ରାଙ୍କଫୋର୍ଟ୍‌ରେ ପ୍ରୁସିଆ ସେନାବାହିନୀ ୧୮୬୬ ମସିହା ଜୁଲାଇ ୧୬ ତାରିଖ ଦିନ ପ୍ରବେଶ କରିଥିଲା । ଦକ୍ଷିଣ ଜର୍ମାନ ରାଜ୍ୟମାନେ ପ୍ରୁସିଆ ସେନାବାହିନୀକୁ ପ୍ରତିରୋଧ କରିବାର ଆଉ ସମ୍ଭାବନା ନଦେଖି ଶାନ୍ତି ପ୍ରତିଷ୍ଠାପାଇଁ ଉଦ୍ୟମ କରିଥିଲେ । ତେଣୁ ଅଷ୍ଟ୍ରିୟା ପ୍ରୁସିଆକୁ ଶାନ୍ତି ପ୍ରସ୍ତାବ ଦେଇଥିଲା । ମୋଲ୍‌ଟକ୍‌ ତାଙ୍କର ବିଜୟୋଲ୍ଲସିତ ସେନାବାହିନୀକୁ ପରିଚାଳନା କରି ତାଙ୍କର ବିଜୟକୁ ଅଧିକ ସାଫଲ୍ୟମଣ୍ଡିତ କରିବା ଉଦ୍ଦେଶ୍ୟରେ ଅଷ୍ଟ୍ରିୟାର ରାଜଧାନୀ ଭିଏନା ଅଧିକାର କରିବାକୁ ଦୃଢ଼ ପ୍ରତିଜ୍ଞା କରିଥିଲେ; କିନ୍ତୁ ବିସମାର୍କ ଏଥିରେ ହସ୍ତକ୍ଷେପ କରିଥିଲେ । ସେନାବାହିନୀ ଏବଂ ରାଜାଙ୍କର ଇଚ୍ଛା ବିରୁଦ୍ଧରେ ବିସମାର୍କ ଅଷ୍ଟ୍ରିୟା ସହିତ ଯୁଦ୍ଧ ବନ୍ଦକରି ଶାନ୍ତି ପ୍ରତିଷ୍ଠାପାଇଁ ଜୋର ଦେଇଥିଲେ । ଏହା ନ କରାଗଲେ ସେ ଇସ୍ତଫା ଦେବାକୁ ଧମକ ମଧ୍ୟ ଦେଇଥିଲେ । ରାଜା ପ୍ରଥମେ ବିସମାର୍କଙ୍କ କଥାରେ ରାଜି ହୋଇନଥିଲେ । ଯାହାହେଉ ଶେଷରେ ରାଜା ବାଧ୍ୟ ହୋଇ ବିସମାର୍କଙ୍କୁ ସମର୍ଥନ କରିଥିଲେ । ତେଣୁ ବିସମାର୍କଙ୍କର କଥା ରହିଲା ଏବଂ ଅଷ୍ଟ୍ରିୟା ସହିତ ୧୮୬୬ ମସିହାରେ ପ୍ରାଗଠାରେ ସନ୍ଧି ସ୍ୱାକ୍ଷର କରାଗଲା । ବିସମାର୍କଙ୍କର ସଂଯମର ତିନୋଟି କାରଣ ଥିଲା । ପ୍ରଥମତଃ ସେ ଯୁଦ୍ଧର ମୂଳ ଉଦ୍ଦେଶ୍ୟ ସାଧନ କରିସାରିଥିଲେ । ଅର୍ଥାତ୍ ଅଷ୍ଟ୍ରିୟାକୁ ଜର୍ମାନୀରୁ ବାଦ୍‌ ଦେବା ବିଷୟରେ ଆଉ ଆପତ୍ତି ଉଠିବାର ପ୍ରଶ୍ନ ନଥିଲା । ସେ ମଧ୍ୟ ଅଷ୍ଟ୍ରିୟାକୁ ଚିର ଶତ୍ରୁ କରି ରଖିବାପାଇଁ ଚାହୁଁନଥିଲେ । ଦ୍ୱିତୀୟରେ ବିସମାର୍କ ଦକ୍ଷିଣ ଜର୍ମାନ ରାଜ୍ୟମାନଙ୍କୁ ଶତ୍ରୁଭାବାପନ୍ନ କରିବାକୁ ଚାହୁଁନଥିଲେ; କାରଣ ସେମାନଙ୍କୁ ମିଳିତ ଜର୍ମାନ ରାଷ୍ଟ୍ରର ଅନ୍ତର୍ଭୁକ୍ତ କରିବାର ଆବଶ୍ୟକତା ଥିଲା । ବିସମାର୍କଙ୍କର ନୀତିର ତୃତୀୟ କାରଣ ହେଲା ନେପୋଲିୟନ୍ । ନେପୋଲିୟନ୍ ଅଷ୍ଟ୍ରିୟା ଏବଂ ପ୍ରୁସିଆ ବିବାଦରେ ମଧ୍ୟସ୍ଥତା କରିବାକୁ ଚାହୁଁଥିଲେ ଏବଂ ବିସମାର୍କ ଭାବିଲେ ଯେ ତାଙ୍କ ସର୍ତ୍ତଗୁଡ଼ିକ ନମାନିନେଲେ ସେ ପ୍ରୁସିଆ ଆକ୍ରମଣ କରିବେ । ବିସମାର୍କ ଯେତେବେଳେ ନେପୋଲିୟନଙ୍କର ପ୍ରସ୍ତାବକୁ ଅଗ୍ରାହ୍ୟକରି ଫ୍ରାନ୍ସ ଆକ୍ରମଣ କରିବାକୁ ମିଥ୍ୟା ଧମକ ଦେଲେ ସେତେବେଳେ ନେପୋଲିୟନ୍ ସେହି ଧମକକୁ ସତ୍ୟ ବୋଲି ବିଶ୍ୱାସ କରିଥିଲେ । ପ୍ରକୃତରେ ପ୍ରୁସିଆ ଅଷ୍ଟ୍ରିୟାକୁ ଯୁଦ୍ଧରେ ପରାସ୍ତ କଲାପରେ ସେ ଅନ୍ୟ ଏକ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ କରିବା ଅବସ୍ଥାରେ ନଥିଲା । ବିସମାର୍କ ବୁଝିପାରିଥିଲେ ଯେ ସେ ଏପରି କରିବାଦ୍ୱାରା ବିପଜ୍ଜନକ ପଦକ୍ଷେପ ନେଇଛନ୍ତି । ତେଣୁ କାଳେ ନେପୋଲିୟନ୍ ସବୁକଥା ଜାଣିପାରି ପ୍ରୁସିଆ ବିରୁଦ୍ଧରେ ଅଭିଯାନ ଚଳାଇବେ, ସେହି ଭୟରେ ବିସମାର୍କ ଅଷ୍ଟ୍ରିୟା ସହିତ ଶୀଘ୍ର ଯୁଦ୍ଧ ବନ୍ଦକରିବାପାଇଁ ବିଶେଷ ତତ୍ପର ହୋଇଥିଲେ ।

ଯାହାହେଉ ପ୍ରାଗ୍‌ ସନ୍ଧିର ସର୍ତ୍ତଗୁଡ଼ିକ ବିସମାର୍କଙ୍କୁ ତାଙ୍କ ଲକ୍ଷ୍ୟ ହାସଲ କରିବାରେ ବିଶେଷ ସାହାଯ୍ୟ କରିଥିଲା । ଏହି ସନ୍ଧିର ସର୍ତ୍ତ ଅନୁସାରେ ଅଷ୍ଟ୍ରିୟା ଜର୍ମାନୀରୁ ତାହାର ସ୍ଥାୟୀ ବହିଷ୍କରଣପାଇଁ ରାଜିହୋଇଥିଲା । ଅଷ୍ଟ୍ରିୟାକୁ ତାହାର କୌଣସି ଅଞ୍ଚଳ ପ୍ରୁସିଆ

ପାଇଁ ଛାଡ଼ିଦେବାକୁ ପଡ଼ି ନଥିଲା; କିନ୍ତୁ ସେ ପ୍ରୁସିୟାକୁ ସାମାନ୍ୟ କ୍ଷତି ପୂରଣ ଦେବାକୁ ପ୍ରତିଶ୍ରୁତି ଦେଇଥିଲା । ଅଷ୍ଟ୍ରିୟା ଜର୍ମାନ ରାଷ୍ଟ୍ରସଙ୍ଘର ଅବସାନ ପାଇଁ ସମ୍ମତି ପ୍ରଦାନ କରିଥିଲା । ସେ ସ୍ଲେଜ୍‌ଭିଗ୍-ହଲଷ୍ଟିନରେ ତାହାର ଭାଗ ପ୍ରୁସିୟାକୁ ଛାଡ଼ିଦେଇଥିଲା । ସେ ପ୍ରୁସିୟାକୁ ଏକ ନୂତନ ଜର୍ମାନ ରାଷ୍ଟ୍ରସଙ୍ଘ ସଂଗଠନ କରି, ତାକୁ ପରିଚାଳନା କରିବାପାଇଁ ଅନୁମତି ଦେଇଥିଲା । ଦକ୍ଷିଣ ଜର୍ମାନ ରାଜ୍ୟମାନଙ୍କଠାରୁ ପ୍ରୁସିୟା ଅତି ସାମାନ୍ୟ କ୍ଷତିପୂରଣ ନେଇଥିଲା । ସେମାନଙ୍କୁ ଜଣାଇଦିଆଯାଇଥିଲା ଯେ ସେମାନେ ଯାହା କରିବାକୁ ଚାହାନ୍ତି ତାହା କରିବାକୁ ସେମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିଛି ଏବଂ ସେମାନେ ଚାହିଁଲେ ନିଜପାଇଁ ଏକ ରାଷ୍ଟ୍ରସଙ୍ଘ ଗଢ଼ିପାରିବେ । ଅଷ୍ଟ୍ରିୟା କେବଳ ଇଟାଲୀକୁ ଭେନେସିୟା ହସ୍ତାନ୍ତର କରିଥିଲା ଏବଂ ତା'ଛଡ଼ା ଅନ୍ୟ କୌଣସି ଅଞ୍ଚଳ ହରାଇନଥିଲା ।

ଏହି କାର୍ଯ୍ୟ ସମ୍ପାଦନ କରିଲା ପରେ ପ୍ରୁସିୟା ନିଜ ରାଜ୍ୟ ସହିତ ଆହୁ କେତେକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ମିଶାଇଦେଇଥିଲା । ହ୍ୟାନୋଭର, ନ୍ୟାସୋ, ହସେକ୍ୟାସେଲ, ସ୍ୱାଧୀନ ନଗରୀ ଫ୍ରାଙ୍କଫୋର୍ଟ୍ ଓ ସ୍ଲେଜଭିଗ୍-ହଲଷ୍ଟିନ ପ୍ରଭୃତି ସ୍ଥାନଗୁଡ଼ିକ ପ୍ରୁସିୟାର ଅନ୍ତର୍ଭୁକ୍ତ କରାଯାଇଥିଲା ।

ମୋଟ ଉପରେ କହିବାକୁ ଗଲେ ଅଷ୍ଟ୍ରିୟା-ପ୍ରୁସିୟା ଯୁଦ୍ଧର ଫଳାଫଳ ଅତି ଗୁରୁତ୍ୱ-ପୂର୍ଣ୍ଣ ଥିଲା । ପ୍ରୁସିୟା ତାହାର ରାଜ୍ୟର ସୀମା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ତାହାର ସମ୍ମାନ ମଧ୍ୟ ବୃଦ୍ଧି କରିଥିଲା । ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ଯେଉଁସବୁ ଅଞ୍ଚଳ ପ୍ରୁସିୟା ସହିତ ମିଶାଇ ଦିଆଯାଇଥିଲା, ସେହିସବୁ ଲୋକମାନଙ୍କର ମତ ଏ ବିଷୟରେ ନିଆଯାଇ-ନଥିଲା । ଅଷ୍ଟ୍ରିୟା ଜର୍ମାନୀରୁ ବହିଷ୍କୃତ ହେଲା ପରେ ଅଷ୍ଟ୍ରିୟାର ଗୋଟି ନୂତନ ରୂପ ଧାରଣକରିଥିଲା । ସେଠାରେ ଦ୍ୱୈତ ରାଜତନ୍ତ୍ର (Dual Monarch) ପ୍ରତିଷ୍ଠା କରାଯାଇଥିଲା । ପ୍ରୁସିୟା ସ୍ୱଚ୍ଛନ୍ଦରେ ମେନ୍ ନଦୀର ଉତ୍ତରରେ ଅବସ୍ଥିତ ଜର୍ମାନ ରାଜ୍ୟମାନଙ୍କୁ ନେଇ ଉତ୍ତର-ଜର୍ମାନ ରାଷ୍ଟ୍ରସଙ୍ଘ ଗଠନ କରିଥିଲା । ଏହି ସଙ୍ଗଠନର ସଂବିଧାନ ଦ୍ୱିପ୍ରକୋଷ୍ଠବିଶିଷ୍ଟ ବ୍ୟବସ୍ଥାପକ ସଭାପାଇଁ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ପ୍ରୁସିୟା ହାତରେ ନିୟନ୍ତ୍ରଣ କ୍ଷମତା ନ୍ୟସ୍ତ କରିଥିଲା । ଉତ୍ତର ଜର୍ମାନ ରାଷ୍ଟ୍ରସଙ୍ଘର ସଂବିଧାନ ଭବିଷ୍ୟତ ଜର୍ମାନ ସାମ୍ରାଜ୍ୟର ସଂବିଧାନ ପାଇଁ ଏକ ଆଦର୍ଶ ହୋଇଥିଲା । ଦକ୍ଷିଣ ଜର୍ମାନ ରାଜ୍ୟଗୁଡ଼ିକ ଯଦିଓ ସେ ସମୟରେ ଏହି ସଂବିଧାନରେ ଅନ୍ତର୍ଭୁକ୍ତ ନଥିଲେ, ସେମାନେ ଶୀଘ୍ର ଉତ୍ତର ଜର୍ମାନ ରାଷ୍ଟ୍ରସଙ୍ଘର ସାମରିକ ମିତ୍ର ହୋଇଥିଲେ । ଜର୍ମାନୀରେ ପ୍ରୁସିୟାର ନେତୃତ୍ୱ ପ୍ରତିଷ୍ଠା ସମ୍ପର୍କରେ ଆଉ କୌଣସି ପ୍ରଶ୍ନ ଉଠିନଥିଲା । ତେଣୁ ପ୍ରୁସିୟାର ନେତୃତ୍ୱରେ ଜର୍ମାନୀ ଆଂଶିକ ଭାବରେ ଐକ୍ୟବଦ୍ଧ ହୋଇଥିଲା । ଉପରୋକ୍ତ ଯୁଦ୍ଧ ଫଳରେ ଇଟାଲୀ ଭେନିସିୟା ଲାଭକରି ତାହାର ଐକ୍ୟ ସମ୍ପୂର୍ଣ୍ଣ କରିବା ପଥରେ ଆଉ ଏକ ପାଦ ଅଗ୍ରସର ହୋଇଥିଲା । ଅଷ୍ଟ୍ରିୟା ଜର୍ମାନୀରୁ ବହିଷ୍କୃତ ହେବା ପରେ ଯଦିଓ ସେ ଏକ ବୃହତ୍ ଶକ୍ତିରୂପେ ସମ୍ମାନ ପାଇଲା, ତଥାପି କେନ୍ଦ୍ର ଇଉରୋପରେ ରାଜନୈତିକ କାରବାର

ଭିଏନାରୁ ବର୍ଲିନକୁ ସ୍ଥାନାନ୍ତର ହୋଇଥିଲା । ଅଷ୍ଟ୍ରିୟା ପ୍ରୁସିଆ ଯୁଦ୍ଧର ସମ୍ଭବତଃ ଆଉ ଏକ ଫଳ ହେଲା ଫ୍ରାନ୍ସର କୂଟନୈତିକ ପରାଜୟ । ତୃତୀୟ ନେପୋଲିୟନ୍ ଉକ୍ତ ଯୁଦ୍ଧରେ ନିରପେକ୍ଷତା ଅବଲମ୍ବନ କରିବା ଫଳରେ ସେ ରାଇନ ଅଞ୍ଚଳର ଏକ ବଡ଼ ଅଂଶ ଯୁଦ୍ଧପରେ ଲାଭକରିବେ ବୋଲି ଆଶା ବାନ୍ଧିଥିଲେ; କିନ୍ତୁ ସେ ଯେତେବେଳେ ରାଇନ୍ ଅଞ୍ଚଳର ଏକ ବଡ଼ ଅଂଶ ତାଙ୍କ ନିରପେକ୍ଷତାର ପୁରସ୍କାର ସ୍ୱରୂପ ପାଇବା ପାଇଁ ବିସମାର୍କଙ୍କ ନିକଟରେ ତାଙ୍କ ଦାବୀ ଉପସ୍ଥାପିତ କଲେ, ବିସମାର୍କ ଏ ଦାବି ଉପରେ ମନ୍ତବ୍ୟ ଦେଇ କହିଥିଲେ ଯେ ନେପୋଲିୟନ୍ କଥାବାର୍ତ୍ତା କରୁଛନ୍ତି ଯେପରିକି ପ୍ରୁସିଆ ଯୁଦ୍ଧରେ ପରାସ୍ତ ହୋଇଛି । ଅଷ୍ଟ୍ରିୟା-ପ୍ରୁସିଆ ଯୁଦ୍ଧବିରତି ପରେ ନେପୋଲିୟନ୍ ତାଙ୍କର ଦାବୀ ବିଷୟ ପୁନର୍ବାର ଉତ୍ଥାପନ କଲେ । ଫ୍ରାନ୍ସର ରାଜଦୂତ ତାହା ଲିଖିତ ଆକାରରେ ବିସମାର୍କଙ୍କ ନିକଟରେ ଉପସ୍ଥାପିତ କରି ମସ୍ତବଡ଼ ଭୁଲ କରିବସିଲେ । ବିସମାର୍କ ତାହା ପ୍ରତ୍ୟାଖ୍ୟାନ କରିଦେଲେ ମଧ୍ୟ ରାଜଦୂତଙ୍କର ଲିଖିତ ନିଦର୍ଶନକୁ ନିଜ ପକେଟରେ ରଖିଦେଲେ । ତା'ପରେ ଫ୍ରାନ୍ସର ରାଜଦୂତ ଯେତେବେଳେ ବେଲ୍‌ଜିୟମ୍ ଚାହିଁଲେ, ସେତେବେଳେ ବିସମାର୍କ ସମାନ କାର୍ଯ୍ୟ-ପଦ୍ଧତି ଅନୁସରଣ କରିଥିଲେ ମଧ୍ୟ ସେ ବିଷୟରେ ନେପୋଲିୟନ୍‌ଙ୍କୁ ଅଧିକ ପ୍ରଲୁବ୍ଧ କରିବା ପାଇଁ ଛଳନାପୂର୍ଣ୍ଣ ଉତ୍ତର ଦେଉଥିଲେ । ବିସମାର୍କ ଫରାସୀ ରାଜଦୂତ ବେନେଡେଟିଙ୍କ ସହିତ ସାକ୍ଷାତ୍ ପରେ ତାଙ୍କ ଲିଖିତ ଦାବୀକୁ ରଦ୍ଦିକାଗଜ ଟୋକେଇରୁ ଖୋଜି ବାହାରକରିବା ଗଳ୍ପ ସତ୍ୟ ହେଉ ବା ନ ହେଉ, ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ବିସମାର୍କଙ୍କ ହାତରେ ନେପୋଲିୟନଙ୍କର ଅନିଷ୍ଟ କଳଭଳ କେତେକ ପ୍ରମାଣ ଥିଲା, ଯାହାକୁ ସେ ଉପଯୁକ୍ତ ସମୟରେ ବ୍ୟବହାର କରିଥିଲେ ।

## ଫ୍ରାନ୍ସ ଏବଂ ପ୍ରୁସିୟାର ଯୁଦ୍ଧ (୧୮୭୦-୭୧)
## France-Prussian War (1870-71)

ସ୍ୟାଡୋୱା ଯୁଦ୍ଧ ଫଳରେ ଜର୍ମାନୀର ଏକତ୍ରୀକରଣ ମାତ୍ର ଆଂଶିକ ଭାବରେ ସମ୍ପନ୍ନ ହୋଇଥିଲା । ଉତ୍ତର ଜର୍ମାନୀର ରାଷ୍ଟ୍ରଗୁଡ଼ିକ ପ୍ରୁସିୟାର ଅଧୀନରେ ଐକ୍ୟବଦ୍ଧ ହୋଇଥିଲେ; କିନ୍ତୁ ଦକ୍ଷିଣ ଜର୍ମାନୀର ରାଷ୍ଟ୍ରଗୁଡ଼ିକ ପ୍ରୁସିୟାର ଏହିରୂପ କ୍ଷମତା ବିସ୍ତାରରେ ଈର୍ଷାନ୍ୱିତ ହୋଇଥିଲେ । ସେମାନେ ପ୍ରୁସିୟାର ଅଧୀନକୁ ଆସିବାପାଇଁ ଆଦୌ ରାଜି ନଥିଲେ । ତେଣୁ ବିସମାର୍କଙ୍କର ପ୍ରଧାନ ଏବଂ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ହେଲା ଦକ୍ଷିଣ ଜର୍ମାନ ରାଷ୍ଟ୍ରମାନଙ୍କୁ ପ୍ରୁସିୟାର ଅଧୀନରେ ଜର୍ମାନ ସାମ୍ରାଜ୍ୟଭୁକ୍ତ କରିବାପାଇଁ ପଥ ପରିଷ୍କାର କରିବା । ବିସମାର୍କ ଅନୁଭବ କରିଥିଲେ ଯେ ଦକ୍ଷିଣ ଜର୍ମାନ ରାଷ୍ଟ୍ରଗୁଡ଼ିକ ସେମାନଙ୍କର ଐତିହାସିକ ରକ୍ଷକ ଫ୍ରାନ୍ସ ଆଡ଼କୁ ଚାଲିବାର ବିଶେଷ ସମ୍ଭାବନା ରହିଛି । ଯାହାହେଉ ତାଙ୍କ କପାଳକୁ ଫ୍ରାନ୍ସ ତାହାର କାର୍ଯ୍ୟଦ୍ୱାରା ପ୍ରତିଦ୍ୱନ୍ଦ୍ୱୀ ବିସମାର୍କଙ୍କୁ ସୁବିଧା ଦେଇଥିଲା । ବିସମାର୍କ ତେଣୁ ରାଇନ୍ ଅଞ୍ଚଳର ଏକ ବଡ଼ଅଂଶ (ଯେଉଁଥିରେ ବେଭେରିଆର ଏକ ପ୍ରଦେଶ ସାମିଲ

ହୋଇଥିଲା) ଉପରେ ଫ୍ରାନ୍ସର ଦାବି ବିଷୟ ପତ୍ରପତ୍ରିକାରେ ପ୍ରକାଶ କରିଦେଲେ । ଫଳରେ ଦକ୍ଷିଣଜର୍ମାନ ରାଷ୍ଟ୍ରଗୁଡ଼ିକ ବୁଝିପାରିଲେ ଯେ, ସେମାନଙ୍କର ଫରାସୀ ବନ୍ଧୁ ସେମାନଙ୍କ ପ୍ରତି ବିଶ୍ୱାସଘାତକତା କରିଛନ୍ତି । ତାହାପରେ ଉତ୍ତର-ଜର୍ମାନ ରାଷ୍ଟ୍ରସଙ୍ଘର ଦକ୍ଷିଣ ଜର୍ମାନ ରାଷ୍ଟ୍ରମାନଙ୍କ ସହିତ କେତେକ ବାଣିଜ୍ୟିକ ଏବଂ ସାମରିକ ଚୁକ୍ତି କରିବାରେ କୌଣସି ଅସୁବିଧା ହୋଇନଥିଲା । ଉଭୟେ ସେମାନଙ୍କର ସୈନ୍ୟବାହିନୀକୁ ପ୍ରୁସିଆର ସାମରିକ ନିୟନ୍ତ୍ରଣାଧୀନରେ ରଖିବାପାଇଁ ମଧ୍ୟ ଚୁକ୍ତିବଦ୍ଧ ହୋଇଥିଲେ । ଏକଥା ସ୍ପଷ୍ଟ ହୋଇଗଲା ଯେ ଯଦି ଫ୍ରାନ୍ସ ପ୍ରୁସିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ, ତାହାହେଲେ ତାକୁ ଏକ ଐକ୍ୟବଦ୍ଧ ଜର୍ମାନୀର ସମ୍ମୁଖୀନ ହେବାକୁ ପଡ଼ିବ । ଜର୍ମାନୀର ଏକତ୍ରୀକରଣ କାର୍ଯ୍ୟ ସମ୍ପନ୍ନ କରିବା ବିସମାର୍କଙ୍କ ପାଇଁ ଏକ ବଡ଼ ସମସ୍ୟା ହୋଇଥିଲା । ସେ ଯୁକ୍ତି ଦର୍ଶାଇଥିଲେ ଯେ ଯଦି ସବୁ ଜର୍ମାନୀବାସୀଙ୍କୁ ସୁଶୃଙ୍ଖଳ ଭାବରେ ଏକ ବାହ୍ୟଶକ୍ତି (ଫ୍ରାନ୍ସ) ବିରୁଦ୍ଧରେ ଯୁଦ୍ଧ କରିବାକୁ ଦିଆଯାଏ, ତାହା ହେଲେ ସେହି ସମସ୍ୟାର ସମାଧାନ ହୋଇ ପାରିବ । ତାଙ୍କ ମତରେ ଉଭୟ ଉତ୍ତର ଜର୍ମାନ ରାଷ୍ଟ୍ରସଙ୍ଘ ଏବଂ ଦକ୍ଷିଣ ଜର୍ମାନ ରାଷ୍ଟ୍ରଗୁଡ଼ିକ ଏକ ସାଧାରଣ ଶତ୍ରୁ ବିରୁଦ୍ଧରେ ଯୁଦ୍ଧକରିବା ପୂର୍ବରୁ ଯଦି ସେମାନଙ୍କ ମନରେ ଏକ ମନୋଭାବ ସୃଷ୍ଟି କରାଯାଇପାରେ, ତାହା ହେଲେ ଦକ୍ଷିଣ ଜର୍ମାନ ରାଷ୍ଟ୍ରଗୁଡ଼ିକ ସାଙ୍ଗଠନିକ ଐକ୍ୟ ପାଇଁ ପ୍ରସ୍ତୁତ ହୋଇ ରହିବେ । ଏହାଛଡ଼ା ସେ ଉପଲବ୍ଧି କରିଥିଲେ ଯେ, ଫ୍ରାନ୍ସ ସ୍ୱେଚ୍ଛାକୃତ ଭାବରେ ଦକ୍ଷିଣ ଜର୍ମାନ ରାଷ୍ଟ୍ରଗୁଡ଼ିକୁ ଜର୍ମାନ ସାମ୍ରାଜ୍ୟରେ ସାମିଲ ହେବାକୁ ଅନୁମତି ଦେବନାହିଁ । ମଧ୍ୟଇଉରୋପରେ ପ୍ରୁସିଆ ପରି ଏକ ଶକ୍ତିଶାଳୀ ଦେଶ ସୃଷ୍ଟି ହେବା ଫଳରେ ଫ୍ରାନ୍ସର ନିରାପତ୍ତା କ୍ଷୁଣ୍ଣ ହେବାର ଆଶଙ୍କା ବୃଦ୍ଧି ପାଇଥିଲା । ଏହି କାରଣରୁ ଫ୍ରାନ୍ସ ସମଗ୍ର ଜର୍ମାନୀ, ପ୍ରୁସିଆର ଅଧୀନରେ ଐକ୍ୟବଦ୍ଧ ହେବା ଚାହୁଁ ନଥିଲା । ଫ୍ରାନ୍ସର ହୃଦ୍‌ବୋଧ ହୋଇଥିଲା ଯେ ସେ ସ୍ୟାଡୋୱା ଯୁଦ୍ଧରେ ନିରପେକ୍ଷ ରହି ଏକ ମସ୍ତବଡ଼ ଭୁଲ କରିଥିଲା । ଉକ୍ତ ଯୁଦ୍ଧରେ ପ୍ରକୃତପକ୍ଷେ ଫ୍ରାନ୍ସର ପରାଜୟ ଘଟିଛି, ଏହିରୂପ ଜନମତ ଫ୍ରାନ୍ସରେ ପ୍ରକାଶପାଇଲା । ବିସମାର୍କଙ୍କ ବିରୁଦ୍ଧରେ ସ୍ୟାଡୋୱା ଯୁଦ୍ଧର ପ୍ରତିଶୋଧ ନେବାପାଇଁ ଫରାସୀବାସୀ ଉନ୍ମତ୍ତ ହୋଇଉଠିଥିଲେ । ଇଆଡ଼େ ବିସମାର୍କ ଫ୍ରାନ୍ସ ବିରୁଦ୍ଧରେ ପ୍ରୁସିଆ ଯୁଦ୍ଧ କରିବା ଆବଶ୍ୟକ ବୋଲି ଉପଲବ୍ଧି କରିଥିଲେ । ସେ ମଧ୍ୟ ଅନୁଭବ କରିଥିଲେ ଯେ ଜର୍ମାନୀର ଏକତ୍ରୀକରଣ ପଥରେ ଫ୍ରାନ୍ସ ହେଉଛି ସବୁଠାରୁ ବଡ଼ ପ୍ରତିବନ୍ଧକ । ଦୁଇଶତାବ୍ଦୀରୁ ଅଧିକ କାଳ ଫରାସୀ ରାଷ୍ଟ୍ରନୀତିଜ୍ଞମାନଙ୍କର ପ୍ରଧାନ ନୀତି ଥିଲା ବିଖଣ୍ଡିତ ଜର୍ମାନୀ ଏବଂ କୂଟନୀତିଦ୍ୱାରା ସେମାନେ ଜର୍ମାନୀକୁ ବିଚ୍ଛିନ୍ନ କରି ରଖିବାପାଇଁ ବରାବର ଉଦ୍ୟମ କରିଆସିଥିଲେ । ତେଣୁକରି ବିସମାର୍କ ତାଙ୍କର ଆତ୍ମଜୀବନୀରେ ଲେଖିଥିଲେ ଯେ "ଅଷ୍ଟ୍ରିୟା ସହିତ ଯୁଦ୍ଧପରେ ଫ୍ରାନ୍ସ ସହିତ ଯେ ଏକ ଯୁଦ୍ଧ ଘଟିବ ତାହା ଇତିହାସର ତର୍କଧାରାରେ ନିହିତ ଥିଲା ।" (Bismarck write in his Memoirs, "That a war with France would succeed the war with Austria lay in the logic of history") ସେ ମଧ୍ୟ ବିଶ୍ୱାସ

କରିଥିଲେ ଯେ ଐକ୍ୟବଦ୍ଧ ଜର୍ମାନୀ ଗଠନ ପୂର୍ବରୁ ଫ୍ରାନ୍ସ ଏବଂ ପ୍ରୁସିଆ ମଧ୍ୟରେ ଯୁଦ୍ଧ ନିଶ୍ଚୟ ସଙ୍ଘଟିତ ହେବ । ଫ୍ରାନ୍ସର ପରାଜୟ ଉପରେ ଜର୍ମାନୀର ଐକ୍ୟ ପ୍ରକୃତରେ ନିର୍ଭର କରୁଥିଲା; କାରଣ ଏହିରୂପ ଯୁଦ୍ଧ ଫଳରେ ଦକ୍ଷିଣ ଜର୍ମାନୀର ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଦେଶାତ୍ମବୋଧ ସୃଷ୍ଟି କରାଯାଇପାରିବ । ତା'ଛଡ଼ା ଫ୍ରାନ୍ସକୁ ପରାଜିତ କରିପାରିଲେ ଜର୍ମାନୀ ଐକ୍ୟର ଶେଷ ପ୍ରତିବନ୍ଧକ ମଧ୍ୟ ଦୂରହୋଇପାରିବ ।

ବିସମାର୍କଙ୍କର ସେତେବେଳେ ଦୃଢ଼ବୋଧ ହେଲା ଯେ ଫ୍ରାନ୍ସ ସହିତ ଯୁଦ୍ଧ ଅନିବାର୍ଯ୍ୟ । ସେ ତାଙ୍କର କୂଟନୀତି ପ୍ରୟୋଗ କରି ଫ୍ରାନ୍ସକୁ ଏପରି ବିଚ୍ଛିନ୍ନ କରି ରଖିବାକୁ ଯତ୍ନ କରିଥିଲେ ଯେ, ଯୁଦ୍ଧବେଳେ ସେ କୌଣସି ଇଉରୋପୀୟ ଶକ୍ତିଠାରୁ ସାହାଯ୍ୟ ଲାଭ କରିପାରିବ ନାହିଁ । ଆନ୍ତର୍ଜାତିକ ପରିସ୍ଥିତି ତାଙ୍କ ପରିକଳ୍ପନା ପାଇଁ ଅତି ଅନୁକୂଳ ଥିଲା ଏବଂ ବିସମାର୍କ ତାହାର ସୁଯୋଗ ନେବାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ରୁଷିଆ କ୍ରିମିୟା ଯୁଦ୍ଧରେ ତୃତୀୟ ନେପୋଲିୟନ୍‌ଙ୍କ ଭୂମିକା ବିଷୟରେ କିମ୍ବା ବିଦ୍ରୋହୀ ପୋଲମାନଙ୍କ ପାଇଁ ତାଙ୍କର ଉଦ୍ୟମ ବିଷୟ ଭୁଲି ନଥିଲା । ଅନ୍ୟପକ୍ଷରେ ପୋଲମାନଙ୍କର ବିଦ୍ରୋହ ସମୟରେ ରୁଷିଆକୁ ବିସମାର୍କଙ୍କର ସାହାଯ୍ୟଦେବା ପ୍ରସ୍ତାବ ରୁଷିଆ କୃତଜ୍ଞତାର ସହିତ ସ୍ମରଣ କରିଥିଲା । ତେଣୁ ରୁଷିଆ ଫ୍ରାନ୍ସ ପ୍ରତି ଶତ୍ରୁଭାବାପନ୍ନ ହୋଇଥିଲାବେଳେ ପ୍ରୁସିଆ ପ୍ରତି ବନ୍ଧୁଭାବାପନ୍ନ ହୋଇଥିଲା । ବିସମାର୍କ ତୁର୍କୀ ବିରୁଦ୍ଧରେ ରୁଷିଆର କଳ୍ପନାକୁ ଉତ୍ସାହିତ କରି ଏବଂ ରୁଷିଆଦ୍ୱାରା କୃଷ୍ଣସାଗର ସମ୍ପର୍କୀୟ ପ୍ୟାରିସ୍ ଚୁକ୍ତି (୧୮୫୬) ସର୍ତ୍ତଗୁଡ଼ିକର ପ୍ରତ୍ୟାଖ୍ୟାନକୁ ସମ୍ମତି ପ୍ରଦାନକରି ରୁଷିଆ ସହିତ ତାଙ୍କର ବନ୍ଧୁତା ବଢ଼ାଇଥିଲେ । ବିସମାର୍କ ସ୍ୟାଡୋୱା ଯୁଦ୍ଧପରେ, ଅଷ୍ଟ୍ରିଆ ପ୍ରତି କୋମଳ ଏବଂ ନରମଭାବ ଦେଖାଇ ତାହାର ସଦିଚ୍ଛା ଲାଭକରିବାପାଇଁ ଯତ୍ନବାନ୍ ହୋଇଥିଲେ । ବର୍ତ୍ତମାନର ଶତ୍ରୁ ଭବିଷ୍ୟତରେ ମିତ୍ର ହୋଇପାରେ—ଏହି ନୀତି ଅନୁଯାୟୀ ସେ କାର୍ଯ୍ୟ କରିଥିଲେ । ତେଣୁ ସେ ଅଷ୍ଟ୍ରିଆକୁ ତାହାର କୌଣସି ଅଞ୍ଚଳ ହରାଇବା ପାଇଁ ଦଣ୍ଡିତ କରିନଥିଲେ । ତା'ଛଡ଼ା ରାଜା ଏବଂ ତାଙ୍କର ସହକର୍ମୀମାନଙ୍କର ପ୍ରବର୍ତ୍ତନା ସତ୍ତ୍ୱେ ବିସମାର୍କ ଅଷ୍ଟ୍ରିଆର ରାଜଧାନୀ ଭିଏନାରେ ପ୍ରୁସିଆ ସେନାବାହିନୀର ବିଜୟସୂଚକ ପ୍ରବେଶକୁ ପ୍ରତିରୋଧ କରି ଅଷ୍ଟ୍ରିଆକୁ ଘୋର ଅପମାନରୁ ରକ୍ଷାକରିଥିଲେ । ସେ ଇଟାଲୀ ମନରେ ରୋମ ଲାଭକରିବା ଆଶା ସଞ୍ଚାର କରି ବିସମାର୍କ ତାହା ସହିତ ବନ୍ଧୁତ୍ୱ ବଜାୟ ରଖିଥିଲେ । ସେ ସମୟରେ ରୋମ୍‌ରେ ପୋପ୍‌ଙ୍କ ସ୍ଥିତି ଫରାସୀ ସୈନ୍ୟଦଳ ରକ୍ଷାକରୁଥିଲେ । ଫରାସୀମାନଙ୍କର ପରାଜୟ ହେଲେ ରୋମ୍‌ରୁ ଫରାସୀ ସୈନ୍ୟଦଳକୁ ପ୍ରତ୍ୟାହାର କରିନିଆଯିବ ଏବଂ ତା ଫଳରେ ଇଟାଲୀର ରାଜା ତାକୁ ଅଧିକାର କରିନେବେ ବୋଲି ସେ ପ୍ରକାଶ କରିଥିଲେ । ଏହିପରି ପ୍ରତିବେଶୀ ରାଜ୍ୟମାନଙ୍କର ସଦିଚ୍ଛା ଲାଭ କରିସାରି ବିସମାର୍କ ଫ୍ରାନ୍ସ ସହିତ ଯୁଦ୍ଧ କରିବା ପାଇଁ ଏକ ଆଳ ଖୋଜିଲେ । ଫ୍ରାନ୍ସର ମନୋଭାବ ତାଙ୍କୁ ସେ ଆଳ ଯୋଗାଇଥିଲା ।

ଫ୍ରାନ୍ସ ସ୍ୟାଡୋୱା ଯୁଦ୍ଧପରେ ବିସମାର୍କଙ୍କଠାରୁ ଅପମାନ ପାଇ ଅତିଶୟ ଲଜ୍ଜା ଏବଂ ବ୍ୟଥା ଅନୁଭବ କରୁଥିଲା । ସମଗ୍ର ଦେଶରେ ପ୍ରୁସିଆ ପ୍ରତି ଅତ୍ୟଧିକ ଘୃଣାଭାବ

ଦେଖାଦେଇଥିଲା । ଫ୍ରାନ୍ସର ପ୍ରାୟ ସବୁ ସ୍ଥାନରେ ଲୋକମାନେ ଫ୍ରାନ୍ସର ଭୁଲ ବିଷୟରେ ସଚେତନ ଥିଲେ ଏବଂ ସେ ସୁଯୋଗ ଆଉ କେବେ ଆସିବନାହିଁ ବୋଲି ମନେ କରିଥିଲେ । ସେମାନେ ଉଲ୍ଲେଖନୀୟ ପ୍ରତିଦ୍ୱନ୍ଦ୍ୱତା ପାଇଁ ବ୍ୟାକୁଳତା ପ୍ରକାଶ କରିଥିଲେ । ଅତି କମ୍‌ରେ ସେମାନେ ଅନ୍ତତଃ କିଛି କ୍ଷତିପୂରଣ ଆକାରରେ ପାଇବାକୁ ଆଶାକରିଥିଲେ । ୧୮୬୭ ମସିହାରେ ସେ ପ୍ରାୟ ଲକ୍‌ସେମ୍‌ବର୍ଗ ପାଇଯାଇଥିଲେ; କାରଣ ହଲାଣ୍ଡ ତାହା ଫ୍ରାନ୍ସକୁ ବିକି କରିଦେବା ପାଇଁ ରାଜି ହୋଇଯାଇଥିଲା; କିନ୍ତୁ ଜର୍ମାନମାନେ ଫ୍ରାନ୍ସ ଲକ୍‌ସେମ୍‌ବର୍ଗ ପାଇବା ବିରୁଦ୍ଧରେ ତୀବ୍ର ପ୍ରତିବାଦ କରିଥିଲେ । ତୃତୀୟ ନେପୋଲିୟନ୍ ଯୁଦ୍ଧ ଚାହୁଁ ନଥିବାରୁ ତରବରରେ ପଛଘୁଞ୍ଚା ଦେଇଥିଲେ । ତା'ପରେ ସେ ଅଷ୍ଟ୍ରିୟା ସହିତ ଏକ ମେଣ୍ଟକରିବା ବିଷୟରେ ତାହା ସହିତ କଥାବାର୍ତ୍ତା କରିଥିଲେ; କାରଣ ସେ ଭାବିଥିଲେ ଯେ ଏହି ମେଣ୍ଟ ଫଳରେ ସେ ଫ୍ରାନ୍ସ ପାଇଁ ରାଇନର ବାମ କୂଳ (Left Bank of the Rhine) ଲାଭ କରିପାରିବେ । ନୈତିକ ଶକ୍ତିହୀନ ଅବସ୍ଥା ବିଷୟରେ ସଚେତନଥାଇ ଫରାସୀ ସରକାର ସାମାନ୍ୟ ବସ୍ତୁକୁ ଧରିବାପାଇଁ ମଧ୍ୟ ଚେଷ୍ଟା କରିଥିଲେ । ସ୍ୟାଡୋୱା ଯୁଦ୍ଧ ପରେ ଫରାସୀ ଜାତୀୟ ମନୋଭାବ ଏହି ପ୍ରକାର ପ୍ରୁସିୟା ବିରୋଧୀ ଥିଲା ଏବଂ ବିସମାର୍କଙ୍କଠାରୁ ଆଉ ଏକ ପ୍ରକାଶ୍ୟ ଅପମାନ ନିଶ୍ଚିତଭାବରେ ଏକ ବିସ୍ଫୋରଣ ଘଟାଇବ ବୋଲି ଧରି ନିଆଯାଇଥିଲା ।

ବିସମାର୍କଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ ଫ୍ରାନ୍ସର ପରାଜୟ ଉପରେ ଜର୍ମାନୀର ଐକ୍ୟ ନିର୍ଭର କରୁଅଛି; କାରଣ ଏ ଯୁଦ୍ଧ ଫଳରେ ଦକ୍ଷିଣ-ଜର୍ମାନୀର ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଦେଶାତ୍ମବୋଧ ଭାବ ସୃଷ୍ଟି ହେବା ସ୍ୱାଭାବିକ ଥିଲା ଏବଂ ତା'ଛଡ଼ା ଫ୍ରାନ୍ସକୁ ପରାସ୍ତକରି ପାରିଥିଲେ ଜର୍ମାନୀ ଏକତ୍ରୀକରଣରେ ଶେଷ ପ୍ରତିବନ୍ଧକ ଦୂର ହେବ । ବିସମାର୍କ ଫ୍ରାନ୍ସକୁ ଉତ୍ତ୍ୟକ୍ତ କରି ଯୁଦ୍ଧକୁ ଟାଣିନେବାକୁ ଚାହିଁଥିଲେ । ହୋହେନଜଲର୍ଣ୍ଣର ପ୍ରାର୍ଥୀତ୍ୱ ତାଙ୍କୁ ସେହି ସୁଯୋଗ ଦେଇଥିଲା । ୧୮୬୮ ମସିହାରେ ସ୍ପେନରେ ଏକ ବିଦ୍ରୋହ ଘଟିବା ଫଳରେ ରାଣୀ ଦ୍ୱିତୀୟ ଇସାବେଲାଙ୍କର ପତନ ହେଲା ଏବଂ ତାଙ୍କୁ ମଧ୍ୟ ନିର୍ବାସିତ କରାଗଲା । ସ୍ପେନରେ ଅସ୍ଥାୟୀ ସରକାର, ସ୍ପେନର ରାଜମୁକୁଟ ହୋହେନଜଲର୍ଣ୍ଣ ରାଜବଂଶର ରାଜପୁତ୍ର ଏବଂ ପ୍ରୁସିଆ ରାଜାଙ୍କର ଆତ୍ମୀୟ ଲିଓପୋଲଡ଼ଙ୍କୁ ଅର୍ପଣ କରିଥିଲେ; କିନ୍ତୁ ପ୍ରଥମେ ସେ ତାହା ଗ୍ରହଣ କରିବାକୁ ମନା କରିଦେଲେ । ସ୍ପେନୀୟ ରାଜମୁକୁଟ ତାଙ୍କୁ ତିନିଥର ଅର୍ପଣ କରାଯାଇଥିଲା—ଦୁଇଥର ୧୮୬୯ ମସିହାରେ ଏବଂ ଥରେ ୧୮୭୦ ମସିହାରେ । ବିସମାର୍କଙ୍କ ସହିତ ୧୮୬୯ ମସିହା ମେ ମାସରେ ଯେତେବେଳେ ବର୍ଲିନ୍‌ରେ ଅବସ୍ଥାପିତ ଫ୍ରାନ୍ସର ରାଜଦୂତ ବେନେଡେଟି ସାକ୍ଷାତ କଲେ, ସେତେବେଳେ ସେ ବିସମାର୍କଙ୍କୁ ସ୍ପଷ୍ଟ କହିଦେଇଥିଲେ ଯେ ଲିଓପୋଲ୍‌ଡଙ୍କ ପ୍ରାର୍ଥୀତ୍ୱକୁ ଫ୍ରାନ୍ସ କଦାପି ବରଦାସ୍ତ କରିବ ନାହିଁ । ବେନେଡେଟି ଏପରି କହିବା ସତ୍ତ୍ୱେ ବିସମାର୍କ ସ୍ପେନ୍‌କୁ ଏପରି ପ୍ରଭାବିତ କରିଥିଲେ ଯେ ସ୍ପେନୀୟ ରାଜମୁକୁଟ ଲିଓପୋଲ୍‌ଡ଼ଙ୍କୁ ସେ ଚତୁର୍ଥଥର ପାଇଁ ଅର୍ପଣ କରିଥିଲେ ।

ବିସମାର୍କଙ୍କଦ୍ୱାରା ପ୍ରଭାବିତ ହୋଇ ଲିଓପୋଲ୍ଡ୍ ସେହି ମୁକୁଟ ଗ୍ରହଣ କରିଥିଲେ । ଲିଓପୋଲ୍ଡ୍ ସ୍ପେନ୍‌ର ରାଜମୁକୁଟ ଗ୍ରହଣ କରିଥିବା ସମ୍ବାଦ ପ୍ୟାରିସ୍‌ରେ ୧୮୭୦ ମସିହା ଜୁଲାଇ ୨ ତାରିଖରେ ପହଞ୍ଚିଲାମାତ୍ରେ ସମ୍ବାଦପତ୍ରମାନଙ୍କରେ ଏହା ବିରୁଦ୍ଧରେ ଅତ୍ୟଧିକ କ୍ରୋଧ ପ୍ରକାଶ ପାଇଲା । ପ୍ୟାରିସ୍‌ରେ ଉତ୍ତେଜନା ଦ୍ରୁତଗତିରେ ବୃଦ୍ଧି ପାଇବାକୁ ଲାଗିଲା । ଲିଓପୋଲ୍ଡ୍‌ଙ୍କୁ ସ୍ପେନ୍‌ର ରାଜାରୂପେ ନିର୍ବାଚିତ କରିବାଦ୍ୱାରା ଫ୍ରାନ୍ସର ସ୍ୱାର୍ଥ ଓ ସମ୍ମାନ ବିପନ୍ନ ହୋଇଛି ବୋଲି ଫରାସୀ ପାର୍ଲାମେଣ୍ଟରେ ବିବୃତି ଦିଆଯାଇଥିଲା । ଆହୁରି ମଧ୍ୟ ସେଠାରେ କୁହାଯାଇଥିଲା ଯେ ଫ୍ରାନ୍ସର କ୍ଷତି କରିବାପାଇଁ ଇଉରୋପର ଶକ୍ତିସାମ୍ୟକୁ ବିପର୍ଯ୍ୟସ୍ତ କରାଯାଇଅଛି । ଏହାର ପ୍ରତିରୋଧ ଉଦ୍ଦେଶ୍ୟରେ ଫରାସୀ ସରକାର ଫରାସୀ ରାଜଦୂତ ବେନେଡେଟିଙ୍କୁ ଶୀଘ୍ର ଏମ୍ସ ଯାଇ ରାଜା ପ୍ରଥମ ଉଇଲିୟମ୍‌ଙ୍କୁ ସାକ୍ଷାତ କରିବା ପାଇଁ ଏବଂ ତାଙ୍କ ନିକଟରେ ପ୍ରାର୍ଥିତ୍ୱ ପ୍ରତ୍ୟାହାର ଦାବୀ ଉଠାଇବା ପାଇଁ ଆଦେଶ ଦେଇଥିଲେ । ଫ୍ରାନ୍ସର ସମ୍ରାଟ ତୃତୀୟ ନେପୋଲିୟନ ଓ ତାଙ୍କର ପ୍ରଧାନମନ୍ତ୍ରୀ ଓଲିଭିୟର କୂଟନୈତିକ ବିଜୟ ଚାହୁଁଥିଲେ ସତ; କିନ୍ତୁ ସେମାନେ ଯୁଦ୍ଧ ଚାହୁଁନଥିଲେ । ପ୍ରୁସିୟାର ରାଜା ପ୍ରଥମ ଉଇଲିୟମ୍ ମଧ୍ୟ ଯୁଦ୍ଧ ଚାହୁଁନଥିଲେ । ତା'ଛଡ଼ା ବ୍ରିଟିଶ୍, ରୁଷୀୟ, ଅଷ୍ଟ୍ରୀୟ ଏବଂ ବେଲ୍‌ଜିୟ ସରକାରମାନେ ଶାନ୍ତିରକ୍ଷାପାଇଁ କଠିନ ପରିଶ୍ରମ କରିଥିଲେ । ୧୮୭୦ ମସିହା ଜୁଲାଇ ୧୨ ତାରିଖ ଦିନ ଲିଓପୋଲ୍ଡ୍‌ଙ୍କ ପିତା ତାଙ୍କ ପୁତ୍ରର ପ୍ରାର୍ଥିତ୍ୱ ପ୍ରତ୍ୟାହାର କରି ନିଆଗଲା ବୋଲି ଘୋଷଣା କରିଥିଲେ ।

ତେଣୁ ଫ୍ରାନ୍ସ ଓ ପ୍ରୁସିୟା ମଧ୍ୟରେ ଉତ୍ତେଜନା ହ୍ରାସ ପାଇଥିଲା ଏବଂ ଆସନ୍ନ ଯୁଦ୍ଧର ଭୟ ଦୂର ହୋଇଥିଲା । ଲିଓପୋଲ୍ଡ୍ ପ୍ରାର୍ଥିତ୍ୱ ପ୍ରତ୍ୟାହାର କରିନେବାରୁ ରାଜା ପ୍ରଥମ ଉଇଲିୟମ୍ ଆନନ୍ଦ ପ୍ରକାଶ କରିଥିଲେ, କାରଣ ସେ ଏ ବିଷୟ ନେଇ ଫ୍ରାନ୍ସ ସହିତ ଯୁଦ୍ଧରେ ବ୍ୟାପୃତ ହେବାକୁ ଚାହିଁନଥିଲେ; ଅବଶ୍ୟ ଏହା ଫ୍ରାନ୍ସ ପାଇଁ ଏକ କୂଟନୈତିକ ବିଜୟ ଥିଲା; କିନ୍ତୁ ବିସମାର୍କ ଫ୍ରାନ୍ସ ସହିତ ଯୁଦ୍ଧ କରିବାର ସୁଯୋଗ ହରାଇଥିବାରୁ ବଡ଼ ହତୋତ୍ସାହ ହୋଇ ପଡ଼ିଥିଲେ । ଲିଓପୋଲ୍ଡ୍‌ଙ୍କର ପ୍ରାର୍ଥିତ୍ୱ ପ୍ରତ୍ୟାହାର ଏକ ବିପର୍ଯ୍ୟୟ ବୋଲି ମନେ କରିଥିଲେ । ସେ ତାଙ୍କ ଆତ୍ମଜୀବନୀରେ ଲେଖିଥିଲେ, "ମୋର ପ୍ରଥମ ଭାବନା ହେଲା, ଚାକିରିରୁ ଅବସର ନେବା; କାରଣ ବଳପୂର୍ବକ ଏହି ଆତ୍ମସମର୍ପଣ କରାଇବା ଜର୍ମାନୀ ପ୍ରତି ଅପମାନଜନକ ବୋଲି ମୁଁ ଉପଲବ୍ଧି କରିଥିଲି ଏବଂ ତାହା ପାଇଁ ମୁଁ ଦାୟୀ ହେବାକୁ ଚାହିଁନଥିଲି ।" (Bismarck wrote in his memoirs, "My first idea was to retire from the service, because···I perceived in this extorted submission humiliation of Germany for which I did not desire to be responsible.") ସବୁ କଥା ଭଲରେ ଭଲରେ ତୁଟି ଯାଇଥାନ୍ତା, ଯଦି ଫରାସୀ ମନ୍ତ୍ରିମଣ୍ଡଳ ଅବିବେକୀ ପରି ସମସ୍ତ ଘଟଣା ପୁନର୍ବାର ଖୋଲିଖୋଲି ବିଚାର କରିନଥାନ୍ତେ

କ ଫରାସୀ ରାଷ୍ଟ୍ରଦୂତ ବେନେଡେଟିଙ୍କୁ ପ୍ରଥମ ଉଇଲିୟମ୍‌ଙ୍କ ନିକଟରେ ସେମାନଙ୍କର ଦାବି ଉପସ୍ଥାପିତ କରିବାକୁ ପଠାଇଥିଲେ। ବେନେଡେଟି ଏମ୍‌ସରେ ପହଞ୍ଚି ରାଜା ଉଇଲିୟମ୍‌ଙ୍କୁ ଭେଟିଥିଲେ ଏବଂ ତାଙ୍କଠାରୁ ଏକ ପ୍ରତିଶ୍ରୁତି ଚାହିଁଥିଲେ ଯେ ଉଇଲିୟମ୍ ଭବିଷ୍ୟତରେ କଦାପି ହୋହେନଜଲର୍ଣ୍ଣ ପ୍ରାର୍ଥୀଙ୍କୁ ସମର୍ଥନ କରିବେନାହିଁ। ପ୍ରଥମ ଉଇଲିୟମ୍ ବେନେଡେଟିଙ୍କର ଏହି ନିର୍ବୋଧ ଦାବିକୁ ଅଗ୍ରାହ୍ୟ କରିଦେଇଥିଲେ ମଧ୍ୟ, ସେ ବେନେଡେଟିଙ୍କୁ କହିଥିଲେ ଯେ ତାଙ୍କ ବିଚାରରେ ଘଟଣାର ଶାନ୍ତିପୂର୍ଣ୍ଣ ସମାଧାନ ହୋଇ ଯାଇଛି। ତା'ପରେ (ଆଉ ଏକ ସାକ୍ଷାତକାର ପାଇଁ ଅପେକ୍ଷା କରିଥିବା) ରାଷ୍ଟ୍ରଦୂତ ବେନେଡେଟିଙ୍କୁ କହିପଠାଇଲେ ଯେ ତାଙ୍କର ଆଉ ଅଧିକ କିଛି କହିବାର ନାହିଁ। ପ୍ରଥମ ଉଇଲିୟମ୍ ସମସ୍ତ ଘଟଣାର ସାରାଂଶ ତାର ଯୋଗେ ବିସମାର୍କଙ୍କୁ ଜଣାଇଥିଲେ ଏବଂ ତାଙ୍କୁ ଅଧିକାର ଦେଇଥିଲେ ଯେ ଯଦି ସେ ଉଚିତ ମନେକରନ୍ତି, ତା'ହେଲେ ଏହି ସମ୍ବାଦକୁ ପ୍ରକାଶ କରି ପାରିବେ। ଏହା 'ଏମ୍‌ସ ଟେଲିଗ୍ରାମ' ( Ems Telegram ) ନାମରେ ବିଖ୍ୟାତ। ଏହି ସମ୍ବାଦ ପହଞ୍ଚିଲାବେଳକୁ ମୋଲ୍‌ଟକ ଓ ରୁନ ବିସମାର୍କଙ୍କ ସହିତ ଭୋଜନ କରୁଥିଲେ। ସେମାନେ ସମସ୍ତେ ଅତି ବିଷର୍ଣ୍ଣ ଦେଖାଯାଉଥିଲେ ଏବଂ ଏହି ଟେଲିଗ୍ରାମ ସେମାନଙ୍କୁ ଅଧିକ ବିଷର୍ଣ୍ଣ କରିଥିଲା। ଏହି ଟେଲିଗ୍ରାମ୍‌ରୁ ବିସମାର୍କ ହଠାତ୍ ଫାଏଦା ଉଠାଇବା ପାଇଁ ସୁଯୋଗ ପାଇଲେ। ସେ ଟେଲିଗ୍ରାମ୍‌ର ପ୍ରକୃତ ଅର୍ଥକୁ ପରିବର୍ତ୍ତନ ନକରି ତାକୁ ଏପରି ଭାବରେ ସଂକ୍ଷିପ୍ତ କରିଦେଲେ ଯେ, ଯେପରି ମନେହେବ ପ୍ରୁସିଆ ରାଜା ପ୍ରଥମ ଉଇଲିୟମ ଫରାସୀ ରାଷ୍ଟ୍ରଦୂତଙ୍କୁ ଅପମାନ ଦେଇ ତଡ଼ିଦେଇଛନ୍ତି। ମୋଲ୍‌ଟକ ବିସମାର୍କଙ୍କ ଆଡ଼କୁ ଚାହିଁ ଆନନ୍ଦରେ ଚିତ୍କାର କରି ଉଠିଲେ, "ତମେ ପଶ୍ଚାଦପସରଣକୁ ପ୍ରଥମ ଆକ୍ରମଣରେ ପରିଣତ କରିପାରିଛ।" ("You have turned a retreat into an offensive." said Moltke in high glee.) ବିସମାର୍କ ତା'ପରେ ଏହି ସଂକ୍ଷିପ୍ତ ବିବରଣୀକୁ ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିବାପାଇଁ ପଠାଇଦେଇଥିଲେ। ଏହା ସମ୍ବାଦପତ୍ରରେ ପ୍ରକାଶ ପାଇଲା ମାତ୍ରେ ପ୍ୟାରିସ୍‌ରେ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ସୃଷ୍ଟି ହୋଇଥିଲା ଏବଂ ଫରାସୀମାନେ ପ୍ରୁସିଆ ବିରୁଦ୍ଧରେ ଯୁଦ୍ଧଘୋଷଣା କରିବାପାଇଁ ଲାଗିପଡ଼ିଥିଲେ; କିନ୍ତୁ ଫରାସୀ ସରକାର କିଛି ସମୟ ପାଇଁ ଇତସ୍ତତଃ ହୋଇଥିଲେ; କାରଣ ଜନମତ ସାଧାରଣତଃ ଯୁଦ୍ଧ ଚାହୁଁଥିବା କଥା ଉକ୍ତ ସରକାର କୌଣସି ପ୍ରକାରେ ସ୍ପଷ୍ଟ ଜାଣିପାରି ନଥିଲେ। ଫ୍ରାନ୍‌ସର ଉଗ୍ର ପ୍ରକୃତିର ଲୋକମାନେ ଶେଷରେ ସଫଳ ହେଲେ। ବିସମାର୍କଙ୍କ ଇଚ୍ଛା ମଧ୍ୟ ପୂର୍ଣ୍ଣହେଲା। ୧୮୭୦ ମସିହା ଜୁଲାଇ ୧୯ ତାରିଖ ଦିନ ଫ୍ରାନ୍‌ସ ପ୍ରୁସିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା।

ଫ୍ରାନ୍‌ସ-ପ୍ରୁସିଆ ଯୁଦ୍ଧ ଫ୍ରାନ୍‌ସ ପକ୍ଷରେ ଏକ ରାଜନୈତିକ ଆତ୍ମଘାତୀ କାର୍ଯ୍ୟ। ଫରାସୀ ସେନାବାହିନୀର ସପକ୍ଷରେ ଆଶାବାଦ ବ୍ୟତୀତ ଅନ୍ୟ କିଛି ନଥିଲା। ଏହାର ଯୁଦ୍ଧ ଉପକରଣ ତ୍ରୁଟିପୂର୍ଣ୍ଣ ଥିଲା। ଫ୍ରାନ୍‌ସର ଯୁଦ୍ଧମନ୍ତ୍ରୀ ଜୋର ଦେଇ କହିଥିଲେ ଯେ ତାଙ୍କର

ସେନାବାହିନୀ ଶେଷ ବୋତାମ ପାଇଁ ସଜ୍ଜିତ ହୋଇ ରହିଛନ୍ତି ।" ("His army was ready to the last button.") କିନ୍ତୁ ଏହାର କୌଣସି ବୋତାମ ନଥିଲା କହିଲେ ସତ୍ୟର ଅପଲାପ ହେବନାହିଁ । ଫ୍ରାନ୍ସ ସାମରିକ କ୍ଷେତ୍ରରେ ହେଉ ବା କୂଟନୀତି କ୍ଷେତ୍ରରେ ହେଉ ଯୁଦ୍ଧପାଇଁ ଆଦୌ ପ୍ରସ୍ତୁତ ନଥିଲା । ବିସମାର୍କ ରୁଷିଆକୁ ୧୮୫୬ ମସିହାରେ ପ୍ୟାରିସ୍ ଶାନ୍ତିଚୁକ୍ତି ପ୍ରତ୍ୟାଖ୍ୟାନ କରିବା ଦିଗରେ ସହାନୁଭୂତି ଦେଖାଇ ରୁଷିଆ ସହିତ ତାଙ୍କର ବନ୍ଧୁତା ସୁଦୃଢ଼ କରିଥିଲେ । ଅଷ୍ଟ୍ରିଆ ଫ୍ରାନ୍ସ ପ୍ରତି ବନ୍ଧୁଭାବାପନ୍ନ ହେଲେ ମଧ୍ୟ, ତାହା ସହିତ କୌଣସି ମେଣ୍ଟ ବାନ୍ଧିନଥିଲା । ଗ୍ୟାରିବାଲ୍ଡିଙ୍କ ରୋମ ଆକ୍ରମଣ ଫ୍ରାନ୍ସ ବିଫଳ କରିଦେବାଯୋଗୁ ଇଟାଲୀ ତୀବ୍ର ଯନ୍ତ୍ରଣା ଅନୁଭବ କରୁଥିଲା । ବିସମାର୍କ ଯେତେବେଳେ ଲଣ୍ଡନ ଟାଇମ୍ସ (London Times) ପତ୍ରିକାରେ ନେପୋଲିୟନଙ୍କର ବେଲ୍‌ଜିୟମ୍ ଅଧିକାର କରିବାର କଳ୍ପନା ବିଷୟ ପ୍ରକାଶ କରିଦେଲେ, ଇଂଲଣ୍ଡ ଆଉ ଉଦାର ନିରପେକ୍ଷତା ଅବଲମ୍ବନ କରିପାରିଲାନାହିଁ ।

ଫ୍ରାନ୍ସ ଦକ୍ଷିଣ-ଜର୍ମାନ ରାଷ୍ଟ୍ରଗୁଡ଼ିକର ସାହାଯ୍ୟ ଆଶାକରିଥିଲା; କିନ୍ତୁ ସେମାନେ ନେପୋଲିୟନ୍ ବେଭେରିଆ ଅଧିକାର କରିବା କଳ୍ପନା ବିଷୟ ଜାଣିପାରି ତାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ ଏବଂ ସେ ଯେତେବେଳେ ପ୍ରୁସିଆ ରାଜା ଉଇଲିୟମ୍‌ଙ୍କ ନିକଟରୁ ହୋହେନଜଲର୍ଣ୍ଣ ଦାବି ସମର୍ଥନ କରିବେ ନାହିଁ—ଏହି ପ୍ରତିଶ୍ରୁତି ପାଇବା ପାଇଁ ତାଙ୍କ ଉପରେ ଚାପ ପକାଇଲେ, ସେତେବେଳେ ଦକ୍ଷିଣ-ଜର୍ମାନ ରାଷ୍ଟ୍ରଗୁଡ଼ିକ ତାଙ୍କୁ ସମର୍ଥନ କରିବାକୁ ମନା କରିଦେଲେ । ସେମାନଙ୍କ ମନରେ ସ୍ୱଦେଶପ୍ରେମ ଓ ଜାତୀୟତାଭାବ ଜାଗ୍ରତ ହୋଇଥିଲା । ବେଭେରିଆ, ବ୍ୟାଡେନ, ଉର୍ଟେନ୍‌ବର୍ଗ ପ୍ରଭୃତି ଦକ୍ଷିଣ-ଜର୍ମାନ ରାଷ୍ଟ୍ରମାନେ ଫ୍ରାନ୍ସ ବିରୁଦ୍ଧରେ ପ୍ରୁସିଆର ସୈନ୍ୟଦଳ ସହିତ ଯୋଗଦେଇଥିଲେ; ଫଳରେ ଫ୍ରାନ୍ସକୁ ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ କରି ଦିଆଯାଇଥିଲା ।

ଫ୍ରାନ୍ସ-ପ୍ରୁସିଆ ଯୁଦ୍ଧକୁ ଇତିହାସରେ ଏକ ଏକତରଫା ସଂଘର୍ଷ ବୋଲି କୁହାଯାଏ । ସୈନ୍ୟସଂଖ୍ୟା, ସମରକୌଶଳ, ସାମରିକ ସଂଗଠନ ଏବଂ ସାଜସଜ୍ଜାରେ ପ୍ରୁସିଆ ଅତ୍ୟଧିକ ପ୍ରାଧାନ୍ୟ ବିସ୍ତାର କରିଥିଲା । ପ୍ରୁସିଆ ପ୍ରାୟ ଚାରିଲକ୍ଷ ପଚିଶ ହଜାର ଲୋକବିଶିଷ୍ଟ ଏକ ସେନାବାହିନୀକୁ ହୁକୁମ କରିବାବେଳେ, ଫ୍ରାନ୍ସ ତିନିଲକ୍ଷ ଲୋକ-ବିଶିଷ୍ଟ ଏକ ସେନାବାହିନୀକୁ ହୁକୁମ କରୁଥିଲା । ଫରାସୀ ସେନାବାହିନୀକୁ ଯେତେବେଳେ ଆକ୍ରମଣର ପ୍ରତିରୋଧ କରିବାକୁ ବାଧ୍ୟ କରାଗଲା, ସେତେବେଳେ ସେହି ସେନାବାହିନୀ ମଧ୍ୟରେ ଏତେଦୂର ବିଶୃଙ୍ଖଳା ଦେଖାଦେଲା ଯେ, ତାହା ଆଖିରେ ନ ଦେଖିଲେ ଆଦୌ ବିଶ୍ୱାସ କରିହେବନାହିଁ । ଆକ୍ରମଣକାରୀମାନେ ଏକ ଫରାସୀ ସୈନ୍ୟଦଳକୁ ମେଟ୍‌ଜରୁ ତଡ଼ିଦେଇଥିଲେ ଏବଂ ତାକୁ ସମ୍ପୂର୍ଣ୍ଣଭାବେ ଘେରିଦିଆଯାଇଥିଲା । ଅନ୍ୟ ଏକ ଫରାସୀ ସୈନ୍ୟଦଳ ସେଡ଼ାନ୍ ଯୁଦ୍ଧରେ ସମ୍ପୂର୍ଣ୍ଣ ଭାବେ ପରାଜିତ ହୋଇଥିଲା । ଯେତେବେଳେ ଏହି ସୈନ୍ୟଦଳ ଆତ୍ମସମର୍ପଣ କଲା, ସେତେବେଳେ ନେପୋଲିୟନଙ୍କ ସହିତ ତାଙ୍କର

ଅଶୀ ହଜାରରୁ ଅଧିକ ଅନୁଚରଙ୍କୁ ବନ୍ଦୀକରି ନିଆଯାଇଥିଲା । ସେଡାନ୍ ଯୁଦ୍ଧରେ ଫ୍ରାନ୍ସର ଘୋର ବିପତ୍ତି ଖବର ପାଇଲାମାତ୍ରେ ଫରାସୀମାନେ ୧୮୭୦ ମସିହା ସେପ୍ଟେମ୍ବର ୪ ତାରିଖ ଦିନ ଫ୍ରାନ୍ସକୁ ଏକ ସାଧାରଣତନ୍ତ୍ର ଦେଶ ଘୋଷଣା କଲେ । ଜାତୀୟ-ସଙ୍କଟ କାଳରେ ଦ୍ୱିତୀୟ ଫରାସୀ ସାମ୍ରାଜ୍ୟର ଅସମ୍ମାନଜନକ ପତନ ଘଟିଲା । ଫ୍ରାନ୍ସର ସାମ୍ରାଜ୍ଞୀ ପଳାୟନ କଲେ । ଜେନେରାଲ ଟ୍ରୋଚୁଙ୍କ ଅଧ୍ୟକ୍ଷତାରେ ଏକ ଜାତୀୟ ପ୍ରତିରକ୍ଷା ସରକାର ଗଢ଼ାଯାଇଥିଲା ଏବଂ ଯୁଦ୍ଧର ଶେଷରେ ତାହା ଫ୍ରାନ୍ସର ବାସ୍ତବ ସରକାର ଥିଲା ।

ଫ୍ରାନ୍ସ-ପ୍ରୁସିଆ ଯୁଦ୍ଧ ପ୍ରାୟ ଛ'ମାସ ଚାଲିଥିଲା । ଏହା ୧୮୭୦ ମସିହା ପ୍ରଥମ ଅଗଷ୍ଟରେ ଆରମ୍ଭ ହୋଇ ୧୮୭୧ ମସିହା ପ୍ରଥମ ଫେବୃୟାରୀରେ ଶେଷ ହୋଇଥିଲା । ଏହି ଯୁଦ୍ଧକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଅଛି । ପ୍ରଥମ ପର୍ଯ୍ୟାୟକୁ ସାମ୍ରାଜ୍ୟବାଦ ପର୍ଯ୍ୟାୟ ଏବଂ ଦ୍ୱିତୀୟ ପର୍ଯ୍ୟାୟକୁ ସାଧାରଣତନ୍ତ୍ରବାଦ ପର୍ଯ୍ୟାୟ କୁହାଯାଏ । ପ୍ରଥମ ପର୍ଯ୍ୟାୟ ଯୁଦ୍ଧ କେବଳ ଅଗଷ୍ଟ ମାସରେ ହୋଇଥିଲା ଏବଂ ଏହି ପର୍ଯ୍ୟାୟ ଯୁଦ୍ଧରେ ଫ୍ରାନ୍ସରେ ସ୍ଥାୟୀ ସୈନ୍ୟଦଳଗୁଡ଼ିକୁ ଧ୍ୱଂସ କରିଦିଆଯାଇଥିଲା ବା ସେମାନଙ୍କର ପ୍ରତିରୋଧ କରାଯାଇଥିଲା । ସମ୍ରାଟ ତୃତୀୟ ନେପୋଲିୟନ୍‌ଙ୍କୁ ବନ୍ଦୀକରି ନିଆଯିବା ସଙ୍ଗେ ସଙ୍ଗେ ଫରାସୀ ସାମ୍ରାଜ୍ୟର ପତନ ମଧ୍ୟ ଘଟିଥିଲା । ଦ୍ୱିତୀୟ ପର୍ଯ୍ୟାୟ ଯୁଦ୍ଧ ପାଞ୍ଚମାସ କାଳ ଚାଲିଥିଲା । ଏହି ସମୟରେ ଜାତୀୟ ପ୍ରତିରକ୍ଷା ସରକାର ଅଧୀନରେ ଏବଂ ସ୍ୱଦେଶପ୍ରେମୀ ଗ୍ୟାମ୍‌ବେଟାଙ୍କର ନେତୃତ୍ୱରେ ଫରାସୀମାନେ ନିରୁତ୍ସାହକର ପରିସ୍ଥିତିରେ ମଧ୍ୟ ସାହସର ସହିତ ଶତ୍ରୁର ପ୍ରତିରୋଧ କରିଥିଲେ । ଏହା ସତ୍ତ୍ୱେ ପ୍ରୁସିଆର ସୈନ୍ୟଦଳଗୁଡ଼ିକ ପ୍ୟାରିସ୍ ଅଭିମୁଖେ ଅଗ୍ରସର ହୋଇଥିଲେ । ସେମାନେ ସେପ୍ଟେମ୍ବର ୧୯ ତାରିଖ ଦିନ ପ୍ୟାରିସ ନଗରୀ ଅବରୋଧ କରିଥିଲେ । ଇତିହାସପ୍ରସିଦ୍ଧ ଏହି ଅବରୋଧ ଚାରିମାସ ଚାଲିଥିଲା ଏବଂ ଇଉରୋପରେ ଚମକ ସୃଷ୍ଟି କରିଥିଲା । ନୂତନ ଫରାସୀ ସୈନ୍ୟଦଳ ଏହି ଅବରୋଧ ଭାଙ୍ଗିବାପାଇଁ ଆପ୍ରାଣ ଉଦ୍ୟମ କରି ମଧ୍ୟ ବିଫଳ ହୋଇଥିଲେ । ପ୍ୟାରିସ୍ ଅବଶେଷରେ ଆତ୍ମସମର୍ପଣ କଲା । ବିସମାର୍କ ଯେଉଁ ଶାନ୍ତିସର୍ତ୍ତଗୁଡ଼ିକ ମଞ୍ଜୁରକଲେ, ତାହା ଅସାଧାରଣ ଭାବରେ କଠୋର ହୋଇଥିଲା । ଏହି ସର୍ତ୍ତଗୁଡ଼ିକ ୧୮୭୧ ମସିହା ଫେବୃୟାରୀ ୨୬ ତାରିଖ ଦିନ ଭର୍ସାଇଲ ଶାନ୍ତିଚୁକ୍ତିରେ ସ୍ଥାନ ପାଇଥିଲା । ବହୁ ବିତର୍କପରେ ଏହି ସର୍ତ୍ତଗୁଡ଼ିକ ଚୂଡ଼ାନ୍ତ କରାଯାଇ ଫ୍ରାଙ୍କଫୋର୍ଟ୍ ସନ୍ଧିରେ ସନ୍ନିବିଷ୍ଟ କରାଯାଇଥିଲା ଏବଂ ଏହି ସନ୍ଧି ୧୮୭୧ ମସିହା ମେ ମାସ ୧୦ ତାରିଖ ଦିନ ସ୍ୱାକ୍ଷର କରାଯାଇଥିଲା । ସନ୍ଧିର ସର୍ତ୍ତ ଅନୁସାରେ ଫ୍ରାନ୍ସ ତିନିବର୍ଷ ମଧ୍ୟରେ କ୍ଷତିପୂରଣ ସ୍ୱରୂପ ପାଞ୍ଚ ହଜାର ନିୟୁତ ଫ୍ରାଙ୍କମୁଦ୍ରା ଜର୍ମାନୀକୁ ଦେବ । ସେ ଆଲସେସ୍ ଏବଂ ଗୁରୁତ୍ୱପୂର୍ଣ୍ଣ ଦୁର୍ଗ ମେଟ୍‌ଜ ସମେତ ଲୋରେଇନର ଏକ ବୃହତ୍ ଅଂଶ ଜର୍ମାନୀକୁ ହସ୍ତାନ୍ତର କରିବ । ତା'ଛଡ଼ା କ୍ଷତିପୂରଣ ନ ଦେଲା ପର୍ଯ୍ୟନ୍ତ ଏକ ଜର୍ମାନ ସେନାବାହିନୀ ଫ୍ରାନ୍ସ ଅଧିକାର କରି ରହିବେ ଏବଂ ତାହାର ଭରଣପୋଷଣଭାର

ଫ୍ରାନ୍ସ ବହନ କରବ । ସମ୍ରାଟ ତୃତୀୟ ନେପୋଲିୟନ୍ ତାଙ୍କର ସାମ୍ରାଜ୍ଞୀଙ୍କ ସହିତ ଇଂଲଣ୍ଡରେ ନିର୍ବାସିତ ଜୀବନ ଯାପନକଲେ ଏବଂ ଦୁଇବର୍ଷପରେ ସେ ପ୍ରାଣତ୍ୟାଗ କରିଥିଲେ ।

ଇତ୍ୟବସରେ ଫ୍ରାନସ-ପ୍ରୁସିଆ ଯୁଦ୍ଧର ଫଳ ସ୍ୱରୂପ ଅନ୍ୟ କେତେକ ଘଟଣା ଘଟିଯାଇଥିଲା । ଇଟାଲୀ ରୋମ ଅଧିକାର କରି ପୋପଙ୍କ ଲୌକିକ ଶାସନ ଶେଷ କରିଦେବା ସଙ୍ଗେ ସଙ୍ଗେ ତାହାର ଏକତ୍ରୀକରଣ ସମ୍ପୂର୍ଣ୍ଣ କରିଥିଲା । ପୋପଙ୍କୁ ରକ୍ଷାକରିବାପାଇଁ ଏକ ଫରାସୀ ସୈନ୍ୟଦଳକୁ ରୋମ୍‌ରେ ଅବସ୍ଥାପିତ କରାଯାଇଥିଲା । ସେଡାନ୍ ଯୁଦ୍ଧର ଫଳସ୍ୱରୂପ ଏହି ସୈନ୍ୟଦଳକୁ ପ୍ରତ୍ୟାହାର କରି ନିଆଯାଇଥିଲା ଏବଂ ଭିକ୍ଟର ଇମାନୁଏଲ୍‌ଙ୍କ ସୈନ୍ୟଦଳଗୁଡ଼ିକ ପୋପ୍‌ଙ୍କର ନିଜ ସୈନ୍ୟଦଳଗୁଡ଼ିକ ଉପରେ ଆକ୍ରମଣ ଚଳାଇ ସାମାନ୍ୟ ପ୍ରତିରୋଧ ପରେ ସେମାନଙ୍କୁ ପରାସ୍ତ କରିଥିଲେ ଏବଂ ୧୮୭୦ ମସିହା ସେପ୍ଟେମ୍ବର ୨୦ ତାରିଖ ଦିନ ରୋମ୍‌ରେ ପ୍ରବେଶ କଲେ । ଏହିରୂପେ ଇଟାଲୀର ଐକ୍ୟ ସମ୍ପୂର୍ଣ୍ଣ କରାଯାଇଥିଲା ଏବଂ ରୋମ ଇଟାଲୀ ରାଜ୍ୟର ରାଜଧାନୀ ହୋଇଥିଲା ।

ଏହି ଯୁଦ୍ଧର ଅଧିକ ଗୁରୁତ୍ୱପୂର୍ଣ୍ଣ ଫଳାଫଳ ହେଲା ଜର୍ମାନୀର ଏକତ୍ରୀକରଣର ସମାପ୍ତି ଏବଂ ଜର୍ମାନ ସାମ୍ରାଜ୍ୟ ଗଠନ । ବିସମାର୍କ ଯେପରି ଯୁଦ୍ଧଦ୍ୱାରା ଜର୍ମାନୀର ଏକତ୍ରୀକରଣ ସ୍ଥିରିଥିଲେ, ସେହିପରି ଜର୍ମାନୀର ଏକତ୍ରୀକରଣ ସମ୍ପନ୍ନ କରାଗଲା । ଦକ୍ଷିଣ-ଜର୍ମାନୀର ରାଷ୍ଟ୍ରଗୁଡ଼ିକ ଫ୍ରାନ୍ସ ବିରୁଦ୍ଧରେ ପ୍ରୁସିଆ ସହିତ ଯୁଦ୍ଧରେ ଯୋଗଦେବା ଫଳରେ ଜର୍ମାନୀର ଐକ୍ୟ ପଥରେ ଆଉ କୌଣସି ବାଧା ନଥିଲା । ତେଣୁ ସେହି ଯୁଦ୍ଧର ଅବସାନ ସଙ୍ଗେ ସଙ୍ଗେ ଦକ୍ଷିଣ-ଜର୍ମାନୀର ରାଷ୍ଟ୍ରଗୁଡ଼ିକ ଉତ୍ତର-ଜର୍ମାନୀର ରାଷ୍ଟ୍ରସଙ୍ଘରେ ଯୋଗଦାନ କରିଥିଲେ । ପ୍ରୁସିଆର ଅଧୀନରେ ଜର୍ମାନୀର ଐକ୍ୟ ସଂପୂର୍ଣ୍ଣ ହେଲା । ଜର୍ମାନୀର ଐକ୍ୟ ସାଧନରେ ବିସମାର୍କଙ୍କ ନୀତି ଜୟଯୁକ୍ତ ହେଲା । ୧୮୭୧ ମସିହା ଜାନୁୟାରୀ ମାସ ୧୮ ତାରିଖ ଦିନ ପ୍ରସିଦ୍ଧ ଭର୍ସାଇଲ ପ୍ରାସାଦରେ ପ୍ରୁସିଆର ରାଜା ପ୍ରଥମ ଉଇଲିୟମ୍‌ଙ୍କୁ ଜର୍ମାନ ସମ୍ରାଟ ଘୋଷଣା କରାଗଲା । ପ୍ରବଳ ଜୟଧ୍ୱନି ମଧ୍ୟରେ ଜର୍ମାନମାନେ ପ୍ରୁସିଆର ନେତୃତ୍ୱ ଗ୍ରହଣ କରିନେଲେ । ଜର୍ମାନୀ କେବଳ ଯେ ଐକ୍ୟବଦ୍ଧ ହେଲା ତାହା ନୁହେଁ, ସେ ମଧ୍ୟ ପ୍ରୁସିଆର ସବୁ ବ୍ୟବସ୍ଥା ଗ୍ରହଣକରିଥିଲା । ତା'ଛଡ଼ା ଉତ୍ତର-ଜର୍ମାନୀ ରାଷ୍ଟ୍ରସଙ୍ଘର ସମ୍ବିଧାନ ସମଗ୍ର ଜର୍ମାନ ସାମ୍ରାଜ୍ୟରେ ପ୍ରବର୍ତ୍ତିତ କରାଗଲା । ବିସମାର୍କଙ୍କର ସ୍ୱପ୍ନ ସତ୍ୟରେ ପରିଣତ ହେଲା । ସେ ୧୮୭୧ରେ ଜର୍ମାନ ସାମ୍ରାଜ୍ୟର ପ୍ରଥମ ଚାନସେଲର (ପ୍ରଧାନମନ୍ତ୍ରୀ) ହେଲେ ।

---

# ସପ୍ତଦଶ ଅଧ୍ୟାୟ

## ଅଷ୍ଟ୍ରିୟା-ହଙ୍ଗେରୀ ସାମ୍ରାଜ୍ୟ ଗଠନ

## ( The Making of Austro-Hungarian Empire )

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଘଟିଲା, ତାହା ହ୍ୟାପସବର୍ଗ ରାଜତନ୍ତ୍ରର ଦୋଷ ଦୁର୍ବଳତା ସ୍ପଷ୍ଟଭାବରେ ପ୍ରକାଶ କରିଦେଇଥିଲା । ତା ସତ୍ତ୍ୱେ ଅଷ୍ଟ୍ରିୟା ଭ୍ରମାତ୍ମକ ଧାରଣାର ବଶବର୍ତ୍ତୀ ହୋଇ ନିରଙ୍କୁଶ ଶାସନ ବ୍ୟବସ୍ଥା ପୁନଃସ୍ଥାପନ କରିଥିଲା । ପ୍ରକୃତରେ କହିବାକୁ ଗଲେ ଏହି ବ୍ୟବସ୍ଥା ପୂର୍ବାପେକ୍ଷା ଅଧିକ କଠୋର ହୋଇଥିଲା । ୧୮୪୯ ମସିହାର ପରାଜୟ ପରେ ଦଶନ୍ଧିରୁ ଅଧିକ କାଳ ହଙ୍ଗେରୀ ଅଷ୍ଟ୍ରୀୟ ସାମ୍ରାଜ୍ୟର ଏକ ଅଂଶ ବ୍ୟତୀତ ଅଧିକ କିଛି ନଥିଲା ଏବଂ ଭିଏନାରୁ ତା ଉପରେ ସ୍ୱେଚ୍ଛାଚାରୀ ଶାସନ ଲଦି ଦିଆଯାଇଥିଲା ।

କିନ୍ତୁ ମ୍ୟାଗିୟାରମାନଙ୍କ ସୌଭାଗ୍ୟକୁ କୋସୁଥଙ୍କ ପରି ଉଗ୍ରପନ୍ଥୀମାନେ ହଙ୍ଗେରୀର ପରାଜୟ ଫଳରେ ଭାଙ୍ଗି ପଡ଼ିଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଜନ୍ମଭୂମିରୁ ବିତାଡ଼ିତ ହୋଇ ନିର୍ବାସିତର ଜୀବନ ଯାପନ କରୁଥିଲେ । ଉଗ୍ରପନ୍ଥୀମାନଙ୍କର ମେରୁଦଣ୍ଡ ଭାଙ୍ଗି ଦିଆଗଲା ପରେ, ଏକ ମାଡ଼ାଦଳ ଜାତୀୟ ଆଶା-ଆକାଙ୍କ୍ଷାକୁ ଉତ୍ସାହିତ କରିବାରେ ଲାଗିଲା । ଏହି ଦଳ ଶାନ୍ତିପୂର୍ଣ୍ଣ ଉପାୟରେ ଅଷ୍ଟ୍ରୀୟ ସରକାରଙ୍କଠାରୁ ବିଶେଷ ସୁବିଧା ଆଦାୟ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ଅଷ୍ଟ୍ରୀୟ ସାମ୍ରାଜ୍ୟର ଅଖଣ୍ଡତା ବଜାୟ ରଖିବାକୁ ଚାହୁଁଥିଲା । ଏହି ମାଡ଼ାଦଳର ଜନପ୍ରିୟ ନେତା ଥିଲେ ଫ୍ରାନ୍‌ସିସ୍ ଡିକ୍ । ସେ ମ୍ୟାଗିୟାର ସମ୍ଭ୍ରାନ୍ତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବ୍ୟବସାୟ ଥିଲା ଓକାଲତି ଏବଂ ପରିସ୍ଥିତିର ଚାପରେ ସେ ହେଲେ ଜଣେ ରାଜନୀତିଜ୍ଞ । ସେ ତର୍କବିତର୍କଦ୍ୱାରା ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିନଥିଲେ ସତ; କିନ୍ତୁ କଥାବାର୍ତ୍ତାଦ୍ୱାରା ଲୋକମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇପାରିଥିଲେ । ତାଙ୍କର ଅକପଟତା ଓ ସାଧାରଣଜୀବନ ଲୋକମାନଙ୍କୁ ବିଶେଷ ଆକୃଷ୍ଟ କରିଥିଲା । ପ୍ରକୃତରେ ସେ ନିଜକୁ ଷଡ଼ଯନ୍ତ୍ରରୁ ସମ୍ପୂର୍ଣ୍ଣ ମୁକ୍ତ ରଖିଥିଲେ । ତାଙ୍କର ଧୈର୍ଯ୍ୟ ଏବଂ ବୁଦ୍ଧି ତାଙ୍କୁ ଭିଏନାରେ ସମସ୍ତ କାର୍ଯ୍ୟ ନିର୍ବାହ କରୁଥିବା ଅମଲାତନ୍ତ୍ର ସହିତ ମ୍ୟାଗିୟାର ସମସ୍ୟା ଆଲୋଚନା କରିବାରେ ସହାୟକ ହୋଇଥିଲା । ଅଷ୍ଟ୍ରିୟାର ରାଜବଂଶ ଉପରେ ବିପତ୍ତି ପଡ଼ିବା ଫଳରେ ମ୍ୟାଗିୟାରମାନଙ୍କୁ ସେମାନଙ୍କର ଉଦ୍ଦେଶ୍ୟ ସିଦ୍ଧି ପାଇଁ ସୁଯୋଗ ମିଳିଗଲା । ଇଟାଲୀର ମୁକ୍ତି ସଂଗ୍ରାମରେ ଅଷ୍ଟ୍ରିୟାର ପରାଜୟ ସେମାନଙ୍କୁ ଦୁଇଟି ସୁବିଧା ଦେଇଥିଲା । ପ୍ରଥମତଃ ହ୍ୟାପସ୍‌ବର୍ଗ ରାଜବଂଶକୁ ତାହାର ସ୍ୱଶାସନାଧୀନ

ରାଜ୍ୟର କେନ୍ଦ୍ରଠାରୁ ଦୂରରେ ରହି କ୍ଷମତା ବଜାୟ ରଖିବା ଆଉ ଆବଶ୍ୟକ ହେଉନାହିଁ । ଦ୍ୱିତୀୟରେ ଏହା ଅଷ୍ଟ୍ରିୟାର ସମ୍ରାଟ ଫ୍ରାନ୍ସିସ୍ ଯୋସେଫଙ୍କ ନିକଟରେ ପ୍ରମାଣ କରିଦେଲା ଯେ, ଯେତେଦିନ ଯାଏ ଅଷ୍ଟ୍ରିୟା ଆଭ୍ୟନ୍ତରୀଣ କଳହର ଶିକାର ହୋଇଥିବ, ସେତେଦିନ ଯାଏ ଏକ ବୃହତ୍ ଶକ୍ତି ହିସାବରେ ତାର ସ୍ଥାନ ସେ ଆଉ ବଜାୟ ରଖିପାରିବ ନାହିଁ । ଏହି ସଙ୍କଟ ସମୟରେ ମ୍ୟାଗେୟାରମାନେ ଅଷ୍ଟ୍ରିୟା ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିନଥିଲେ । ଯଦି ଅଷ୍ଟ୍ରିୟାର କୌଣସି ଗୋଟିଏ ଯୁଦ୍ଧ ଅଧିକ କାଳ ଚାଲିଥାନ୍ତା, ତାହାହେଲେ ସମ୍ଭବତଃ ତାକୁ ଅନ୍ୟ ଏକ ବିପ୍ଳବର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା । ଫ୍ରାନ୍ସିସ୍ ଯୋସେଫଙ୍କର ଅସାମାନ୍ୟ ପ୍ରତିଭା ନଥିଲେ ମଧ୍ୟ ସୌଭାଗ୍ୟକ୍ରମେ ସେ ତାଙ୍କର ଅନୁଭୂତିରୁ କିଛିତ କିଛି ଶିକ୍ଷା କରିପାରିଥିଲେ । ବିଭିନ୍ନ ଜାତିଗତ ଭାବ ଓ ଜଟିଳ ସମସ୍ୟା ନିଜ ହାତକୁ ନେଇ ଧୀରସ୍ଥିର ଭାବରେ ବିଚାର କରିବାପାଇଁ ତାଙ୍କର ବେଶ୍ ଧୈର୍ଯ୍ୟ ଥିଲା । ଇଟାଲୀୟ ମୁକ୍ତିସଂଗ୍ରାମ ପରେ ସେ ସଙ୍କଳ୍ପ କରିଥିଲେ ଯେ, ଯେଉଁ ବ୍ୟବସ୍ଥା ତାଙ୍କ ରାଜବଂଶର ଓ ରାଜ୍ୟର କ୍ଷତି କରିଛି, ତାକୁ ସେ ନିଶ୍ଚୟ ପରିବର୍ତ୍ତନ କରିବେ ।

ପ୍ରଥମେ ମନେହେଲା ଯେ ଦୁଇଟି ବୈକଳ୍ପିକ ପରିକଳ୍ପନା ରହିଛି ଯାହା ଦ୍ୱାରା କି ହାପସ୍‌ବର୍ଗ ସାମ୍ରାଜ୍ୟ ପୁନର୍ଗଠିତ ହୋଇପାରିବ । ପ୍ରଥମଟି ହେଲା ସଙ୍ଘୀୟ ବ୍ୟବସ୍ଥା (System of Federalism) । ଏହି ସାମ୍ରାଜ୍ୟ ଏଗାରଟି ବିଭିନ୍ନ ଜାତିର ଲୋକମାନଙ୍କୁ ନେଇ ଗଠିତ ହୋଇଥିବାରୁ ଉକ୍ତ ବ୍ୟବସ୍ଥା ସହିତ ଖାପଖାଇବ । ଉକ୍ତ ବ୍ୟବସ୍ଥା ଅନୁସାରେ ପ୍ରତ୍ୟେକ ଜାତି ସ୍ୱାୟତ୍ତଶାସନ ଉପଭୋଗ କରିବେ; କିନ୍ତୁ ସାମ୍ରାଜ୍ୟ ସମ୍ବନ୍ଧୀୟ ବ୍ୟାପାରଗୁଡ଼ିକର ବିଚାର ଓ ନିଷ୍ପତ୍ତି ପାଇଁ ଏକ ସାଧାରଣ ପାର୍ଲାମେଣ୍ଟ ରହିବ । ଅନ୍ୟ ପରିକଳ୍ପନାଟି ହେଲା କେନ୍ଦ୍ରିକ (Centrist) ବା ଐକିକ (Unitary) ସରକାର ବଜାୟ ରଖିବା; କିନ୍ତୁ ସେଥିରେ ସର୍ତ୍ତ ରହିବ ଯେ ସାଧାରଣ ପାର୍ଲାମେଣ୍ଟରେ ପ୍ରତିନିଧିତ୍ୱ ଜାତିଭିତ୍ତିକ ନ ହୋଇ ଲୋକସଂଖ୍ୟାଭିତ୍ତିକ ହେବ । ଉଭୟ ପରିକଳ୍ପନାକୁ ପରୀକ୍ଷା କରାଯାଇଥିଲା; କିନ୍ତୁ ସେଥିରୁ କୌଣସିଟି ସଫଳ ହୋଇ ନଥିଲା । ପ୍ରକୃତରେ ଦୁଇଟିଯାକ ପରିକଳ୍ପନା କାର୍ଯ୍ୟକାରୀ କରିବାରେ କେତେକ ଦୋଷତ୍ରୁଟି ରହିଯାଇଥିବାରୁ ତାହା ଆଂଶିକ ଭାବରେ ବିଫଳ ହୋଇଥିଲା ସତ; କିନ୍ତୁ ମୁଖ୍ୟତଃ ତାହା ମ୍ୟାଗେୟାରମାନଙ୍କର ବିରୋଧ ଯୋଗୁ ବିଫଳ ହୋଇଥିଲା; ହଙ୍ଗେରୀ ଉଭୟ ପରୀକ୍ଷାକୁ ପ୍ରତ୍ୟାଖ୍ୟାନ କରିଦେଇଥିଲା । କାରଣ ଦୁଇଟି ପରୀକ୍ଷା ମଧ୍ୟରୁ କୌଣସି ଗୋଟିଏ ପରୀକ୍ଷା ତାର ନିୟନ୍ତ୍ରଣକାରୀ ମ୍ୟାଗେୟାରମାନଙ୍କୁ ଅନ୍ୟ ଜାତିମାନଙ୍କଠାରୁ ଅଧିକ କର୍ତ୍ତୃତ୍ୱ ଦେଇନଥିଲା । ମ୍ୟାଗେୟାରମାନେ ହଙ୍ଗେରୀରେ ବାସକରୁଥିବା କ୍ରୋଟ, ସ୍ଲୋଭାକ ଓ ରୁମାନ ଜାତିମାନଙ୍କୁ ନ୍ୟୂନତର ମନେକରୁଥିବାରୁ ଏବଂ ନିଜର କର୍ତ୍ତୃତ୍ୱ ବଜାୟ ରଖିବାପାଇଁ ଦୃଢ଼ପରିକର ହୋଇଥିବାରୁ ହଙ୍ଗେରୀ ଉଭୟ ପରିକଳ୍ପନାକୁ ଅଗ୍ରାହ୍ୟ କରିଦେବା ସ୍ୱାଭାବିକ । ତେଣୁ ଡିକ୍ ୧୮୬୫ ମସିହାରେ ତୃତୀୟ ପରିକଳ୍ପନା ପ୍ରକାଶ କରିଥିଲେ ଏବଂ ହଙ୍ଗେରୀ ତାହା ଗ୍ରହଣ କରିନେଉ ବୋଲି ପ୍ରସ୍ତାବ କରିଥିଲେ । ତାଙ୍କର ପରିକଳ୍ପନା ଦ୍ୱୈତବାଦ ନୀତି ନାମରେ

ପରିଚିତ । ଏହି ନୀତି ଅନୁସାରେ ପ୍ରାଚୀନ ହଙ୍ଗେରୀ ରାଜ୍ୟ ତାର ସ୍ୱତନ୍ତ୍ର ସ୍ଥିତି ଓ ବୈଶିଷ୍ଟ୍ୟ ପୁନରୁଦ୍ଧାର କରିବା ସଙ୍ଗେ ସଙ୍ଗେ ଅଧିକ ପ୍ରାଧାନ୍ୟ ଲାଭକରିବ । ତା ସତ୍ତ୍ୱେ ସେ ଅଷ୍ଟ୍ରିୟାଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ନ ହୋଇ ତାହା ସହିତ ମୈତ୍ରୀବନ୍ଧନରେ ଆବଦ୍ଧ ହେବ । ସେହି ବନ୍ଧନ ହେଲା ଉଭୟ ରାଜ୍ୟପାଇଁ ଜଣେ ଶାସକ ରହିବେ ( a common ruler ) ଏବଂ ସେହି ଶାସକ ବିଶ୍ୱ-ଦରବାରରେ ସଂଯୁକ୍ତ ରାଷ୍ଟ୍ରର ମୁଖ୍ୟ ରୂପେ ଗଣ୍ୟ ହେବେ । ଭିଏନା ଏବଂ ବୁଦାପେଷ୍ଟ ମଧ୍ୟରେ ଚାଲୁଥିବା ଆଲୋଚନାରେ ସପ୍ତ ସପ୍ତାହ ଯୁଦ୍ଧ (Seven Week's War) ଅନ୍ତରାୟ ସୃଷ୍ଟି କରିଥିଲା; କିନ୍ତୁ ସେହି ଯୁଦ୍ଧରେ ଅଷ୍ଟ୍ରିୟା ପ୍ରୁସିୟା ଦ୍ୱାରା ସ୍ୟାଡୋୟାଠାରେ ପରାଜିତ ହେଲା ଏବଂ ତା ସଙ୍ଗେ ସଙ୍ଗେ ଇଟାଲୀ ଭେନିସିୟା ଅଧିକାର କରିନେଲା । ଫଳରେ ଜର୍ମାନୀ ଏବଂ ଇଟାଲୀ ଉପରୁ ଅଷ୍ଟ୍ରିୟାର ଆଧିପତ୍ୟ ଲୋପ ପାଇଲା । ଏହିରୂପେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅଷ୍ଟ୍ରିୟା-ହଙ୍ଗେରୀ ସାମ୍ରାଜ୍ୟର ଏକ ବୃହତ୍ ଅଂଶ ବିଚ୍ଛିନ୍ନ ହୋଇଯାଇଥିଲା । ଇଟାଲୀ ଏବଂ ଜର୍ମାନୀରୁ ବିତାଡ଼ିତ ହୋଇ ଅଷ୍ଟ୍ରିୟା, ହଙ୍ଗେରୀ ସହିତ ଆପୋଷ ମୀମାଂସା କରିବାପାଇଁ ରାଜି ହୋଇଥିଲା । ପ୍ରକୃତରେ ଅଷ୍ଟ୍ରିୟା, ହଙ୍ଗେରୀର ଦାବି ନିକଟରେ ମୁଣ୍ଡ ନୁଆଁଇଲା । ଫଳରେ 'ଦ୍ୱୈତ ରାଜତନ୍ତ୍ର' (Dual Monarchy) ପ୍ରତିଷ୍ଠିତ ହେଲା ।

## 'ଦ୍ୱୈତ ରାଜତନ୍ତ୍ର'ର ସଂଗଠନ
## ( The Organisation of the Dual Monarchy )

ଅଷ୍ଟ୍ରିୟା ଓ ହଙ୍ଗେରୀ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷର ହେବା ଫଳରେ ଦ୍ୱୈତ-ରାଜତନ୍ତ୍ର ଶାସନ ପ୍ରବର୍ତ୍ତିତ କରାଯାଇଥିଲା । ଏହି ଚୁକ୍ତିକୁ 'ଅସ୍‌ଲିଚ' (Ausgleich) ବା ୧୮୬୭ର ସାଲିସ୍ (Compromise of 1867) ବୋଲି କୁହାଯାଏ । ଏହା ଏପରି ଏକ ଶାସନ-ବ୍ୟବସ୍ଥା ଉପସ୍ଥାପିତ କରିଥିଲା, ଯାହାକି ରାଜନୀତିର ଇତିହାସରେ ଅଦ୍ୱିତୀୟ । ପ୍ରକୃତରେ ଏହା ସମ୍ପୂର୍ଣ୍ଣ ଏକ ବ୍ୟକ୍ତିଗତ ସଙ୍ଘ (Personal union) ସୃଷ୍ଟି ନକରି ପ୍ରାୟ ତା'ପରି ଏକ ଶିଥିଳ (loose) ସଙ୍ଘ ସୃଷ୍ଟି କରିଥିଲା; କାରଣ ଏଥିରେ ଯେଉଁ ଶାସନକଳର ବ୍ୟବସ୍ଥା କରାଯାଇଥିଲା, ତାହାର ସଦର୍ଓ ଦୁଇଟି ଶକ୍ତ ଖମ୍ବ—ଅଷ୍ଟ୍ରିୟା ଏବଂ ହଙ୍ଗେରୀ ଦୁଇଟି ସ୍ୱାଧୀନ ରାଜ୍ୟରେ ପରିଣତ ହୋଇଥିଲେ, ତଥାପି ସେହି ଶାସନକଳ ପରସ୍ପର ସହଯୋଗ ବୃଦ୍ଧିପାଇଁ ଉଦ୍ଦିଷ୍ଟ ଥିଲା । ପ୍ରତ୍ୟେକ ରାଜ୍ୟର ନିଜର ସମ୍ବିଧାନ, ମନ୍ତ୍ରିମଣ୍ଡଳ, ପାର୍ଲାମେଣ୍ଟ, ପ୍ରଶାସନ-ବ୍ୟବସ୍ଥା, ଡାକ ଏବଂ ମୁଦ୍ରା ବ୍ୟବସ୍ଥା ଥିଲା । ତା'ଛଡ଼ା ପ୍ରତ୍ୟେକ ରାଜ୍ୟ ନିଜର ଆଭ୍ୟନ୍ତରୀଣ ବ୍ୟାପାରଗୁଡ଼ିକ ଉପରେ ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଜାହିର୍ କରିପାରିବେ ବୋଲି ସ୍ଥିର ହୋଇଥିଲା । ଉଭୟ ରାଜ୍ୟର ମୁଖ୍ୟ ରୂପେ କେବଳ ଜଣେ ଶାସକ ରହିବେ ଏବଂ ଅଷ୍ଟ୍ରିୟାରେ ସେ ସମ୍ରାଟ ଉପାଧି ଧାରଣ କରିବାବେଳେ, ହଙ୍ଗେରୀରେ ରାଜା ଉପାଧି ଧାରଣକରିବେ । ଭିଏନା ହେବ ଅଷ୍ଟ୍ରିୟାର ରାଜଧାନୀ ଏବଂ ବୁଦାପେଷ୍ଟ ହେବ ହଙ୍ଗେରୀର

ରାଜଧାନୀ । ଦେଶରକ୍ଷା, ବୈଦେଶିକ ନୀତି, ଅର୍ଥ ଏବଂ ଉଭୟ ରାଜ୍ୟର ଅନ୍ୟ ସାଧାରଣ ସ୍ୱାର୍ଥଗୁଡ଼ିକ ସମ୍ଭାଳିବା ପାଇଁ ଉକ୍ତ ଶାସକ ଅଧୀନରେ ଏକ ସାମ୍ରାଜ୍ୟ-ମନ୍ତ୍ରିମଣ୍ଡଳ ବା ଯୁଗ୍ମ-ମନ୍ତ୍ରିମଣ୍ଡଳ ଗଠନ କରାଯିବାର ସ୍ଥିର ହୋଇଥିଲା । ଦୁଇଟି ପ୍ରତିନିଧି ବର୍ଗ—ଗୋଟିଏ ଅଷ୍ଟ୍ରୀୟ ଏବଂ ଅନ୍ୟଟି ହଙ୍ଗେରୀୟ, ଏହି ମନ୍ତ୍ରିମଣ୍ଡଳର କାର୍ଯ୍ୟ ତଦାରଖ କରିବେ ବୋଲି ବ୍ୟବସ୍ଥା ହୋଇଥିଲା । ତା ଛଡ଼ା ସେମାନେ ପୃଥକ୍ ପୃଥକ୍ ଭାବରେ ମିଳିତ ହୋଇ, ଅନୁରୂପ ଜର୍ମାନ ଏବଂ ମ୍ୟାଗିୟାର ଭାଷାରେ ପରସ୍ପର ମଧ୍ୟରେ ଭାବବିନିମୟ କରି ସେମାନଙ୍କର ସମସ୍ୟା ସମାଧାନ କରିବାର ସ୍ଥିର ହୋଇଥିଲା । ଯଦ୍ୟପି ଏହିସବୁ ସମ୍ମିଳନୀ ସାହାଯ୍ୟରେ ସାଧାରଣ ନୀତି ବିଷୟରେ କେତେକ ରାଜିନାମା ହେବାର ସମ୍ଭାବନା ଥିଲା, ତଥାପି ବୈଦେଶିକ ମନ୍ତ୍ରୀ ଉପରେ ପ୍ରକୃତ ନେତୃତ୍ୱ ନ୍ୟସ୍ତ କରାଯାଇଥିଲା । ବୈଦେଶିକ ମନ୍ତ୍ରୀ ଯୁଗ୍ମ-ମନ୍ତ୍ରିମଣ୍ଡଳର ଜଣେ ପ୍ରଧାନ ସଭ୍ୟ । ସେ ସମ୍ରାଟ-ରାଜା (The Emperor-king)ଙ୍କ ଦ୍ୱାରା ନିଯୁକ୍ତ ହେବେ ଏବଂ ତାଙ୍କ ନିକଟରେ ଦାୟୀ ରହିବେ ବୋଲି ବ୍ୟବସ୍ଥା କରାଯାଇଥିଲା ।

ସେ ଯାହାହେଉ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟ ସାମ୍ରାଜ୍ୟ-କଳ ପରିସରର ବହିର୍ଭୂତ ଥିଲା । କେତେକ ଅର୍ଥନୈତିକ ପ୍ରଶ୍ନ ଯଥା—ବାଣିଜ୍ୟ-ଶୁଳ୍କ ପଦ୍ଧତି ଦୁଇ ରାଜ୍ୟ ମଧ୍ୟରେ ଦଶବର୍ଷ ବ୍ୟବଧାନରେ ପ୍ରତ୍ୟକ୍ଷ କଥାବାର୍ତ୍ତା ମାଧ୍ୟମରେ ସ୍ଥିର କରାଯିବ ବୋଲି କୁହାଯାଇଥିଲା । ଉଭୟ ରାଜ୍ୟର ପ୍ରତିରକ୍ଷା ବ୍ୟୟଭାର, ପ୍ରତି ଦଶବର୍ଷରେ ନିୟମାନୁଯାୟୀ ବ୍ୟବସ୍ଥା କରିବାକୁ ପଡ଼ିବ ବୋଲି ସ୍ଥିର ହୋଇଥିଲା । ତେଣୁ ପ୍ରତିରକ୍ଷା ବ୍ୟୟଭାର ଯେତେବେଳେ ପ୍ରତି ଦଶ ବର୍ଷରେ ଦୁଇରାଜ୍ୟ ମଧ୍ୟରେ କିଏ କେତେ ବହନ କରିବ ବୋଲି ସ୍ଥିର କରାଯାଉଥିଲା, ସେତେବେଳେ ଉଭୟ ରାଜ୍ୟ ମଧ୍ୟରେ ଅତ୍ୟଧିକ ମତାନ୍ତର ଦେଖାଯାଉଥିଲା । ତା'ଛଡ଼ା ଉଭୟ ରାଜ୍ୟର ସାଧାରଣ ସ୍ୱାର୍ଥରକ୍ଷା ପାଇଁ, ପ୍ରତ୍ୟେକ ରାଜ୍ୟର ପାର୍ଲାମେଣ୍ଟ ପ୍ରକୃତ କେତେ ଟଙ୍କା ମଞ୍ଜୁର କରିବେ ତାହା ସାଧାରଣତଃ ଦୁଇ ରାଜ୍ୟର ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ଆଲୋଚନାଦ୍ୱାରା ନିଷ୍ପତ୍ତି କରାଯାଉଥିଲା । ଅବଶ୍ୟ ଏହି କାର୍ଯ୍ୟ ପଦ୍ଧତି ସମ୍ପୂର୍ଣ୍ଣ ସାମ୍ରାଜ୍ୟ-ସମ୍ବିଧାନର ବହିର୍ଭୂତ ।

ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ୧୮୬୭ର ସାଲିସ୍‌ରେ କେତେକ ଦୋଷ ତ୍ରୁଟି ଯୋଗୁ ଦୁଇ ରାଜ୍ୟ ମଧ୍ୟରେ ପ୍ରକୃତ ସଙ୍ଗତି ଆସିପାରିଲା ନାହିଁ । ବାସ୍ତବରେ ଦୁଇରାଜ୍ୟ ମଧ୍ୟରେ ମୁଖ୍ୟ ଯୋଗସୂତ୍ର ହେଲେ ଜଣେ ଶାସକ—ଅଷ୍ଟ୍ରିୟାର ସମ୍ରାଟ ଏବଂ ହଙ୍ଗେରୀର ରାଜା । କେତେକ କ୍ଷେତ୍ରରେ ତାଙ୍କୁ ସଂଯତ କରାଯାଇଥିଲେ ମଧ୍ୟ ପ୍ରକୃତ ପକ୍ଷରେ ସେ ଜଣେ ସ୍ୱେଚ୍ଛାଚାରୀ ଶାସକ ପରି କ୍ଷମତା ପ୍ରୟୋଗ କରୁଥିଲେ । ସେ ଯାହାହେଉ, ମ୍ୟାଗିୟାର-ଅଧ୍ୟୁଷିତ ହଙ୍ଗେରୀ ରାଜ୍ୟକୁ କୌଣସିମତେ ଅଷ୍ଟ୍ରିୟା ସହିତ ସଂଯୁକ୍ତ କରି ରଖାଗଲା । ଏହି ବ୍ୟବସ୍ଥା (୧୮୬୭ର ସାଲିସ୍) ଅବଶ୍ୟ ପ୍ରଥମ ବିଶ୍ୱଯୁଦ୍ଧରେ ଅଷ୍ଟ୍ରିୟାର ସମ୍ପୂର୍ଣ୍ଣ ପତନ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା; କିନ୍ତୁ ଏ ବ୍ୟବସ୍ଥା ଫଳରେ ଅଷ୍ଟ୍ରିୟା ପୁରାପୁରି ବିପଦରୁ ମୁକ୍ତ ହୋଇପାରିଲା ନାହିଁ ।

ଏକଥା ସୁସ୍ପଷ୍ଟ ଯେ, ଏହି ବ୍ୟବସ୍ଥା ଜର୍ମାନ ଏବଂ ମ୍ୟାଗିୟାରମାନଙ୍କ ପ୍ରତି କେବଳ ଅନୁକୂଳ ହୋଇଥିଲା; କିନ୍ତୁ ଅନ୍ୟାନ୍ୟ ଜାତିମାନଙ୍କୁ ସ୍ୱତନ୍ତ୍ର ସ୍ୱୀକୃତି ଦେଇ ନଥିଲା । ଚୋଟମାନଙ୍କର ପ୍ରତିପତ୍ତି ଏତେ ବୃଦ୍ଧି ପାଇଥିଲା ଯେ ହଙ୍ଗେରୀ ବାଧ୍ୟ ହୋଇ ସେମାନଙ୍କ ସହିତ ଏକ ଆପୋଷ-ମୀମାଂସା କରିଥିଲା ଏବଂ ତାକୁ ୧୮୬୮ର ସାଲିସ (Compromise of 1868) ବୋଲି କୁହାଯାଏ । ଏହି ସାଲିସ ଫଳରେ ଚୋଟମାନଙ୍କୁ କେତେକ ପରିମାଣରେ ସ୍ୱାୟତ୍ତଶାସନ ଅଧିକାର ଦିଆଗଲା । ଚେକ୍‌ମାନେ ଅଷ୍ଟ୍ରିୟା ଏବଂ ହଙ୍ଗେରୀ ପରି ବୋହେମିୟାକୁ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିବା ପାଇଁ ଦାବିକରି ହତାଶ ହୋଇଥିଲେ । ଅବଶ୍ୟ ଅଷ୍ଟ୍ରିୟାର ସମ୍ରାଟ ଫ୍ରାନସିସ୍ ଯୋସେଫ୍ ସେମାନଙ୍କର ଦାବିକୁ ସ୍ୱୀକାର କରିଥିଲେ; କିନ୍ତୁ ମ୍ୟାଗିୟାରମାନେ ସେମାନଙ୍କର ଅଧୀନରେ ଥିବା ଜାତିମାନଙ୍କ ଉପରେ ଏହାର ପ୍ରଭାବ ପଡ଼ିବା ଭୟରେ ଏପରି ଗଣ୍ଡଗୋଳ ସୃଷ୍ଟି କଲେ ଯେ, ସମ୍ରାଟ ବାଧ୍ୟ ହୋଇ ତାଙ୍କର ପ୍ରତିଶ୍ରୁତି ପ୍ରତ୍ୟାହାର କରିନେଲେ ।

ଅଷ୍ଟ୍ରିୟାର ସମ୍ବିଧାନ ଜର୍ମାନମାନଙ୍କୁ ଯେତେ କ୍ଷମତା ଦେଇଥିଲା, ହଙ୍ଗେରୀର ସମ୍ବିଧାନ ମ୍ୟାଗିୟାରମାନଙ୍କୁ ତା'ଠାରୁ ଅତ୍ୟଧିକ କ୍ଷମତା ଦେଇଥିବାରୁ, ହଙ୍ଗେରୀ ଦ୍ୱୈତ ରାଜତନ୍ତ୍ରରେ ଏକ ଅଧିକ ଶକ୍ତିଶାଳୀ ଅଂଶୀଦାର ହେବାପାଇଁ ଝୁଙ୍କ ଧରିଥିଲା । ମ୍ୟାଗିୟାରମାନେ ଜର୍ମାନଶାସନରୁ ମୁକ୍ତିଲାଭ କରିବାପରେ ହ୍ୟାପସ୍‌ବର୍ଗ ରାଜ୍ୟରେ ଏକ ପ୍ରଭାବଶାଳୀ ଜାତି ରୂପେ ଗଣ୍ୟ ହୋଇଥିଲେ । ସେ ଯାହାହେଉ ଅଷ୍ଟ୍ରିୟାର ଅଧୀନରେ ଥିବା ବିଭିନ୍ନ ଜାତିର ଲୋକମାନେ ପରବର୍ତ୍ତୀ କାଳରେ ସ୍ୱାୟତ୍ତଶାସନ ଦାବି କରି ନାନା ପ୍ରକାର ଗଣ୍ଡଗୋଳ ସୃଷ୍ଟି କରିଥିଲେ ।

ଅଷ୍ଟ୍ରିୟା ଆକ୍ରମଣାତ୍ମକ ବୈଦେଶିକ ନୀତି ଅନୁସରଣ କରିଥିଲା । ସେ ପଶ୍ଚିମ ଇଉରୋପୀୟ ସାମ୍ରାଜ୍ୟ ହରାଇ, ବଲକାନ୍ ଅଞ୍ଚଳରେ ତାର ସାମ୍ରାଜ୍ୟ ବିସ୍ତାର କରିବାପାଇଁ ଉଦ୍ୟମ ଚଳାଇଥିଲା । ଜର୍ମାନୀ ନିଜର ସ୍ୱାର୍ଥ-ସିଦ୍ଧି ଉଦ୍ଦେଶ୍ୟରେ ଅଷ୍ଟ୍ରିୟାର ଏହି ସାମ୍ରାଜ୍ୟ-ସମ୍ପ୍ରସାରଣ ନୀତିକୁ ସମର୍ଥନ କରିବାରେ ଲାଗିଲା । ଜର୍ମାନୀ ଥିଲା ଅଷ୍ଟ୍ରିୟାର ମିତ୍ର । ବଲକାନ ଅଞ୍ଚଳରେ ଅଷ୍ଟ୍ରିୟାର ପ୍ରାଧାନ୍ୟ ବିସ୍ତାର ହେଲେ, ତାର ସୁଯୋଗ ନେଇ ଜର୍ମାନୀ ନିଜର ପରିକଳ୍ପିତ ବର୍ଲିନ-ବାଗଦାଦ ରେଲପଥ ନିର୍ମାଣ କରିପାରିବ ବୋଲି ଆଶା ପୋଷଣ କରିଥିଲା । ଏହି ଉଦ୍ଦେଶ୍ୟରେ ସେ ଅଷ୍ଟ୍ରିୟାକୁ ବଲ୍‌କାନ୍ ଅଞ୍ଚଳରେ ଆଧିପତ୍ୟ ବିସ୍ତାର କରିବାପାଇଁ ଉତ୍ସାହିତ କରିଥିଲା । ବଲ୍‌କାନ୍ ଅଞ୍ଚଳର ସର୍ବିୟା ନାମକ ଏକ କ୍ଷୁଦ୍ର ରାଜ୍ୟ ଅଷ୍ଟ୍ରିୟାର କେତେକ ଅଞ୍ଚଳ ତାର ନିଜ ରାଜ୍ୟରେ ସାମିଲ୍ କରିବାକୁ ଚାହୁଁଥିଲା । ତେଣୁ ଏହି ଅଞ୍ଚଳରେ ହସ୍ତକ୍ଷେପ କରିବାପାଇଁ ଅଷ୍ଟ୍ରିୟାକୁ ସୁଯୋଗ ମିଳିଗଲା । ପ୍ରକୃତପକ୍ଷେ ଅଷ୍ଟ୍ରିୟା ବଲ୍‌କାନ୍ ଅଞ୍ଚଳର କେତେକ ସ୍ଥାନରେ ନିଜର ଆଧିପତ୍ୟ ବିସ୍ତାର କଲା ।

ଏହି ଅଞ୍ଚଳରେ କ୍ରମେ କ୍ରମେ ଗଣ୍ଡଗୋଳ ବୃଦ୍ଧି ପାଇବାକୁ ଲାଗିଲା । ଅଷ୍ଟ୍ରିୟା ଓ ସର୍ବିୟା ମଧ୍ୟରେ ବିବାଦ ବଲ୍‌କାନ୍ ଅଞ୍ଚଳର ସମସ୍ୟାକୁ ଜଟିଳ କରିଦେଇଥିଲା । ଶେଷରେ ୧୯୧୪ ମସିହାରେ ବଲ୍‌କାନ୍ ଅଞ୍ଚଳର ସମସ୍ୟା ବିଶେଷତଃ ଅଷ୍ଟ୍ରିୟା-ସର୍ବିୟା ବିବାଦ ନେଇ ପ୍ରଥମ ବିଶ୍ୱଯୁଦ୍ଧର ସୂତ୍ରପାତ ହୋଇଥିଲା । ଏହି ଯୁଦ୍ଧରେ ଅଷ୍ଟ୍ରିୟାର ପତନ ଘଟିଲା ଏବଂ ଅଷ୍ଟ୍ରିୟା-ହଙ୍ଗେରୀ ସାମ୍ରାଜ୍ୟ ସମ୍ପୂର୍ଣ୍ଣ ଧ୍ୱଂସ ପାଇଗଲା ।

---

# ଅଷ୍ଟାଦଶ ଅଧ୍ୟାୟ

## ତୃତୀୟ ଫରାସୀ ସାଧାରଣତନ୍ତ୍ର
## ( Third French Republic )

ସେଡ଼ାନ ଯୁଦ୍ଧରେ ତୃତୀୟ ନେପୋଲିୟନ୍ ଜର୍ମାନୀ କର୍ତ୍ତୃକ ପରାଜିତ ଏବଂ ବନ୍ଦୀ ହେବା ପରେ ୧୮୭୦ ମସିହା ସେପ୍ଟେମ୍ବର ୪ ତାରିଖ ଦିନ ପ୍ୟାରିସ୍ ସହରରେ ଏକ ମଧ୍ୟବର୍ତ୍ତୀକାଳୀନ ଅସ୍ଥାୟୀ ସରକାର ଦ୍ୱାରା ଫ୍ରାନ୍ସକୁ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ଘୋଷିତ କରାଗଲା । ଏହି ଅସ୍ଥାୟୀ ସରକାରର ନେତୃତ୍ୱ ବହନ କରିଥିଲେ ପ୍ରଖ୍ୟାତ ବାଗ୍ମୀ ଓ ଦେଶଭକ୍ତ ଲିଓଁ ଗାମ୍ବେଟା (Leon Gambetta) । ପରାଜୟର ଗ୍ଲାନିକୁ ଦୂର କରି ଫ୍ରାନ୍ସରେ ଗଣତନ୍ତ୍ର ରାଷ୍ଟ୍ର ପ୍ରତିଷ୍ଠା ପାଇଁ ସେ ବିଶେଷ ଆଗ୍ରହୀ ଥିଲେ । ତାଙ୍କ ମତରେ ତୃତୀୟ ଫରାସୀ ସାଧାରଣତନ୍ତ୍ରକୁ ସୁଦୃଢ଼ କରିବାକୁ ହେଲେ, ଗଣତନ୍ତ୍ର ହିଁ ପ୍ରକୃତ ପନ୍ଥା ଥିଲା ।

୧୮୪୮ ମସିହାରୁ ଫ୍ରାନ୍ସରେ ଗାଣତାନ୍ତ୍ରିକ ପରମ୍ପରା କ୍ରମଶଃ ସୁପ୍ରତିଷ୍ଠିତ ହୋଇ-ଆସୁଥିବାରୁ ଲିଓଁ ଗାମ୍ବେଟାଙ୍କ ଲକ୍ଷ୍ୟ ସାଧନ ଦିଗରେ କୌଣସି ଅନ୍ତରାୟ ନଥିଲା; କିନ୍ତୁ ୧୮୭୦ ବେଳକୁ ଦେଶରେ ଗଣତନ୍ତ୍ର ସରକାରକୁ ସମର୍ଥନ କରୁଥିବା ନାଗରିକଙ୍କ ସହିତ ଅନେକ ରାଜଭକ୍ତ ମଧ୍ୟ ରହିଥିଲେ । ଏହି ରାଜଭକ୍ତମାନେ ରାଜତନ୍ତ୍ରକୁ ସମର୍ଥନ କରୁଥିଲେ । ଜର୍ମାନୀକୁ ଯୁଦ୍ଧରେ ପରାସ୍ତ କରିବା ପର୍ଯ୍ୟନ୍ତ ଏହି ଦୁଇଗୋଷ୍ଠୀ ପରସ୍ପର ମଧ୍ୟରେ କଳହ ସୃଷ୍ଟି ନକରି ଐକ୍ୟବଦ୍ଧ ହୋଇ ରହିଥିଲେ । ଗାମ୍ବେଟାଙ୍କ ନେତୃତ୍ୱରେ ସାଧାରଣତନ୍ତ୍ରବାଦୀ, ଫରାସୀ ନାଗରିକ ଜର୍ମାନୀଠାରୁ କୌଣସି ଅଦ୍ଭୁତ ଅଯୌକ୍ତିକ ସନ୍ଧି ଗ୍ରହଣ କରିବାକୁ ରାଜି ନଥିଲେ; କିନ୍ତୁ ରାଜତନ୍ତ୍ର ଗୋଷ୍ଠୀ କୌଣସି ପ୍ରକାର ସମାଧାନର ପନ୍ଥା ବାଛିନେବାକୁ ଚାହୁଁଥିଲେ ।

ଏହି ପରିପ୍ରେକ୍ଷୀରେ ୧୮୭୧ ଫେବୃୟାରୀ ମାସରେ ଫ୍ରାନ୍ସରେ ଏକ ସାଧାରଣ ନିର୍ବାଚନର ଆୟୋଜନ ହେଲା । ଏହି ନିର୍ବାଚନରେ ଯେଉଁ ୬୫୦ ଜଣ ପ୍ରତିନିଧି ଜାତୀୟ ଆସେମ୍ବ୍ଲି (National Assembly)କୁ ନିର୍ବାଚିତ ହେଲେ, ସେମାନଙ୍କ ମଧ୍ୟରେ ୪୦୦ ଜଣ ଥିଲେ ରାଜତନ୍ତ୍ରବାଦୀ ଏବଂ ୨୫୦ ଜଣ ଥିଲେ ସାଧାରଣତନ୍ତ୍ରବାଦୀ । ଫଳରେ ଜାତୀୟ ଆସେମ୍ବ୍ଲିର ପ୍ରଥମ ଅଧିବେଶନରେ ଅସ୍ଥାୟୀ ସରକାର ଦ୍ୱାରା ପ୍ରତିଷ୍ଠିତ ତୃତୀୟ ଫରାସୀ ସାଧାରଣତନ୍ତ୍ରର ଭବିଷ୍ୟତ ବିପନ୍ନ ହୋଇପଡ଼ିଲା; କାରଣ ଆସେମ୍ବ୍ଲି ଅଧିବେଶନରେ ସାଧାରଣତନ୍ତ୍ର ସରକାର ସଂଖ୍ୟାଗରିଷ୍ଠ ପ୍ରତିନିଧିଙ୍କ ସମର୍ଥନ ଲାଭକରିପାରିଲା

ନାହିଁ । ରାଜତନ୍ତ୍ରବାଦୀମାନେ ଆଡ଼ଲଫ୍ ଥିୟର୍ସ (Adlophe Thiers)ଙ୍କୁ ପ୍ରଶାସନିକ ମୁଖ୍ୟ ରୂପେ ଗ୍ରହଣ କରି ଭର୍ସାଇଲ ସହରକୁ ଆସେମ୍ବ୍ଲିର ସଦର ମହକୁମା କଲେ । ୧୮୭୧ ମଇ ମାସରେ ଫ୍ରାଙ୍କ୍‌ଫୋର୍ଟ ସନ୍ଧିବଳରେ ଜର୍ମାନୀ ଫ୍ରାନ୍ସଠାରୁ ଆଲ୍‌ସେସ ଏବଂ ଲୋରେଇନ୍ ଅଧିକାର କଲା ଏବଂ ଯୁଦ୍ଧ କ୍ଷତିପୂରଣ ବାବଦରେ ପାଞ୍ଚଶହକୋଟି ଫ୍ରାଙ୍କ୍ ଆଦାୟ କରିବା ସ୍ଥିର ହେଲା ।

ଇତିମଧ୍ୟରେ ପ୍ୟାରିସ୍ ସହରରେ ବିଶୃଙ୍ଖଳା ଓ ଅନ୍ତର୍ବିପ୍ଳବ ମୁଣ୍ଡ ଟେକିଉଠିଲା । ଜର୍ମାନ ସୈନ୍ୟଦ୍ୱାରା ପରିବେଷ୍ଟିତ ହେବାରୁ ପ୍ୟାରିସ୍ ସହର ଫ୍ରାନ୍ସର ଅବଶିଷ୍ଟାଂଶଠାରୁ ବିଚ୍ଛିନ୍ନ ହୋଇଗଲା । ତାର ଶାସନ ପାଇଁ ଉଗ୍ର ବାମପନ୍ଥୀମାନେ ଏକ କମ୍ୟୁନ (Commune) ଗଠନ କଲେ । କମ୍ୟୁନରେ ସାଧାରଣତନ୍ତ୍ରବାଦୀମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ସେମାନେ ରାଜତନ୍ତ୍ରବାଦୀମାନଙ୍କ ନିୟନ୍ତ୍ରିତ ଜାତୀୟ ସଭାକୁ ମାନିଲେ ନାହିଁ । ଅବଶ୍ୟ ସାଧାରଣତନ୍ତ୍ରବାଦୀମାନଙ୍କର ଆଶଙ୍କା ହେଲା ଯେ, ଜାତୀୟ ଆସେମ୍ବ୍ଲି ରାଜତନ୍ତ୍ରବାଦ ପୁନଃ ସ୍ଥାପନ କରିବ । ତେଣୁ ଭର୍ସାଇଲ୍ ସହରରେ ଥିବା ଜାତୀୟ ଆସେମ୍ବ୍ଲି ଏବଂ ପ୍ୟାରିସ୍‌ରେ ଥିବା କମ୍ୟୁନ ମଧ୍ୟରେ ସହଯୋଗ ବଦଳରେ ବିଭେଦ ବୃଦ୍ଧି ପାଇଲା । ଆସେମ୍ବ୍ଲି ବିରୁଦ୍ଧରେ କମ୍ୟୁନ ଏକ ବିଦ୍ରୋହର ସୂତ୍ରପାତ କଲା । ଏହାକୁ କମ୍ୟୁନର ସଂଗ୍ରାମ (War of the Commune) ବୋଲି ଅଭିହିତ କରାଯାଏ । ପ୍ୟାରିସ୍ ସହର ନିଜକୁ ସ୍ୱାଧୀନ ଘୋଷଣା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସହରର ଅଧିବାସୀମାନଙ୍କୁ ସ୍ୱାଧୀନ କମ୍ୟୁନ ଗଠନ କରି ସ୍ୱୟଂଶାସିତ ଅଞ୍ଚଳ ହେବାକୁ ଆହ୍ୱାନ କଲା । ଫଳରେ ଲିଓଁ, ମାର୍ସାଇଲ ଆଦି ସହରରେ କମ୍ୟୁନ ଗଠିତ ହେଲା । କେନ୍ଦ୍ର ସରକାର ବର୍ତ୍ତମାନ ଏକ ଅନ୍ତର୍ବିପ୍ଳବର ସମ୍ମୁଖୀନ ହେଲେ ।

ଫ୍ରାନ୍ସର ସାଧାରଣ ନାଗରିକମାନେ କିନ୍ତୁ ଏପରି ବିଦ୍ରୋହ ଓ ବିଶୃଙ୍ଖଳାର ପକ୍ଷପାତୀ ନଥିଲେ । ଅନ୍ତର୍ବିପ୍ଳବକୁ ସେମାନେ ବିଦେଶୀ ଶତ୍ରୁର ଆକ୍ରମଣଠାରୁ ଅଧିକ ମାରାତ୍ମକ ବୋଲି ମନେକରୁଥିବାରୁ ଦୃଢ଼ ହସ୍ତରେ ବିପ୍ଳବ ଦମନ ପାଇଁ ଥିୟର୍ସ ସରକାରଙ୍କୁ ପୂର୍ଣ୍ଣ ସମର୍ଥନ ଜଣାଇଲେ । ବିପ୍ଳବୀମାନଙ୍କ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନିଆଗଲା । ଅପ୍ରେଲ ଏବଂ ମଇ ମାସ ସାରା ପ୍ୟାରିସ୍ ସହର ଫରାସୀ ସେନାବାହିନୀ ଦ୍ୱାରା ଅବରୋଧ ହେଲା । ଉଗ୍ର ବାମପନ୍ଥୀମାନେ ହତାଶାରେ ବହୁ ଧନ ସମ୍ପତ୍ତି ନଷ୍ଟ କଲେ; କିନ୍ତୁ ସରକାର ସେମାନଙ୍କୁ ଦୃଢ଼ତାର ସହ ଦମନ କଲେ ।

ପ୍ୟାରିସ୍ କମ୍ୟୁନ ଧ୍ୱଂସ ହେବା ଫଳରେ ଫ୍ରାନ୍ସରେ ଉଗ୍ର ବାମପନ୍ଥୀମାନେ ଦୀର୍ଘ ସମୟ ପର୍ଯ୍ୟନ୍ତ ପ୍ରଭାବହୀନ ହୋଇପଡ଼ିଲେ । ସମାଜରେ କୃଷକ, ଶ୍ରମିକ, ନିମ୍ନ ମଧ୍ୟବିତ୍ତ ଏବଂ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ବାମପନ୍ଥୀମାନଙ୍କ କ୍ରିୟାକଳାପରେ ଅସନ୍ତୁଷ୍ଟ ହେବା ଏହାର କାରଣ ଥିଲା । ଅନ୍ତର୍ବିପ୍ଳବ ଓ ରାଜନୀତିକ ବିଶୃଙ୍ଖଳାକୁ ଦୃଢ଼ହସ୍ତରେ ନିୟନ୍ତ୍ରଣ କରିବା ଯୋଗୁ, ରାଜତନ୍ତ୍ରବାଦୀମାନଙ୍କ ପ୍ରତି ସମ୍ମାନ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ

ଦମନନୀତିର ଅମାନୁଷିକତା ପାଇଁ କେତେକ ପରିମାଣରେ ଅପ୍ରିୟ ହେବା ମଧ୍ୟ ପରିଲକ୍ଷିତ ହେଲା । ଅନ୍ୟ ପକ୍ଷରେ କିନ୍ତୁ ସାଧାରଣତନ୍ତ୍ର ମତବାଦ ଅଧିକ ଜନପ୍ରିୟ ହୋଇଉଠିଲା । ବିଦ୍ରୋହ ଏବଂ ବିଶୃଙ୍ଖଳାକୁ କେହି ପସନ୍ଦ କଲେ ନାହିଁ । ଉଗ୍ରପନ୍ଥୀ ରାଜନୀତିକ ମତବାଦ ଜନ-ସମର୍ଥନ ହରାଇଲା ।

୧୮୭୧ ମସିହା ମଇ ମାସ ବେଳକୁ ଥିୟର୍ସ ଜାତୀୟ ଆସେମ୍ବ୍ଲି ସହଯୋଗରେ ଜର୍ମାନୀ ସହିତ ଶାନ୍ତି ପ୍ରତିଷ୍ଠା କରିଥିଲେ । ତଦ୍ଦ୍ୱାରା ଆସେମ୍ବ୍ଲିର କର୍ତ୍ତବ୍ୟ ସମ୍ପାଦିତ ହେଲା ଏବଂ ସାଧାରଣତନ୍ତ୍ର ଫ୍ରାନ୍ସ ପାଇଁ ଏକ ନୂତନ ସମ୍ବିଧାନ ସଙ୍କଳନର ସମୟ ଆସିଛି ବୋଲି ଅଭିମତ ପ୍ରକାଶ ପାଇଲା । ହଠାତ୍ ସାଧାରଣ ନିର୍ବାଚନପାଇଁ ରାଜତନ୍ତ୍ରବାଦୀମାନେ ପ୍ରସ୍ତୁତ ନଥିବାରୁ, ରିଭେଟ୍ ଆଇନ (Rivet law) ବଳରେ ସେମାନେ ଥିୟର୍ସଙ୍କୁ ଫରାସୀ ସାଧାରଣତନ୍ତ୍ରର ପ୍ରେସିଡେଣ୍ଟ ରୂପେ ଗ୍ରହଣ କରି ଜାତୀୟ ଆସେମ୍ବ୍ଲିକୁ ନୂତନ ସମ୍ବିଧାନ ପ୍ରଣୟନର ଦାୟିତ୍ୱ ଦେଲେ ।

୧୮୭୧ ରୁ ୧୮୭୫ ମସିହା ପର୍ଯ୍ୟନ୍ତ ଜାତୀୟ ଆସେମ୍ବ୍ଲି ଫ୍ରାନ୍ସର ସର୍ବୋମୟ ଶାସନକର୍ତ୍ତା ହୋଇ ରହିଲା; କିନ୍ତୁ ଥିୟର୍ସ କେବଳ ୧୮୭୩ ମସିହା ପର୍ଯ୍ୟନ୍ତ ରାଷ୍ଟ୍ରମୁଖ୍ୟ ହୋଇ ରହିଲେ । ତାଙ୍କ ଶାସନକାଳରେ କେତେକ ସଂସ୍କାରମୂଳକ କାର୍ଯ୍ୟ ସମ୍ପାଦିତ ହୋଇଥିଲା । କମ୍ୟୁନକୁ ଦମନ କରିବା ପରେ ଥିୟର୍ସ ଜାତୀୟ ପୁନର୍ଗଠନ କାର୍ଯ୍ୟରେ ବ୍ୟାପୃତ ରହିଲେ । ତାଙ୍କର ଜରୁରୀ କାର୍ଯ୍ୟ ହେଲା ଜର୍ମାନୀକୁ ଯୁଦ୍ଧ କ୍ଷତିପୂରଣ ବାବଦ ସମସ୍ତ ଦେୟ ପରିଶୋଧ କରି, ଦେଶରୁ ଜର୍ମାନମାନଙ୍କର ଅପସାରଣ ପାଇଁ ପଥ ପରିଷ୍କାର କରିବା । ଆଶ୍ଚର୍ଯ୍ୟର କଥା ଏହି ଯେ, ସେ ଅତି ଅଳ୍ପଦିନ ମଧ୍ୟରେ ବିପୁଳ ପରିମାଣରେ ଋଣ ଉଠାଇଲେ ଏବଂ ମାତ୍ର ଦୁଇବର୍ଷ ମଧ୍ୟରେ ଅର୍ଥାତ୍ ୧୮୭୩ ମସିହା ସୁଦ୍ଧା ଜର୍ମାନୀକୁ କ୍ଷତିପୂରଣ ବାବଦ ସମସ୍ତ ଦେୟ ପରିଶୋଧ କଲେ । ଥିୟର୍ସଙ୍କ ତତ୍ପରତା ଯୋଗୁ ଫ୍ରାନ୍ସ ନିର୍ଦ୍ଧାରିତ ସମୟର ବହୁପୂର୍ବରୁ ଦଖଲକାରୀ ଜର୍ମାନୀ ସେନାଠାରୁ ମୁକ୍ତି ପାଇପାରିଲା । ଥିୟର୍ସଙ୍କର ଏହି ଦେଶସେବା ପାଇଁ ତାଙ୍କୁ 'ଜନ୍ମଭୂମିର ମୁକ୍ତିଦାତା' ରୂପେ ଅଭିନନ୍ଦିତ କରାଯାଇଥିଲା । ସାମରିକ କ୍ଷେତ୍ରରେ ମଧ୍ୟ କେତେକ ସଂସ୍କାର ପ୍ରବର୍ତ୍ତିତ କରାଯାଇଥିଲା । ଫରାସୀ ସୈନ୍ୟବାହିନୀ ପ୍ରୁସିଆର ଆଦର୍ଶରେ ପୁନର୍ଗଠିତ ହୋଇଥିଲା । ଫ୍ରାନ୍ସ-ଜର୍ମାନୀ ସୀମାନ୍ତରେ ନିରାପତ୍ତା ରକ୍ଷାପାଇଁ ଅନେକଗୁଡ଼ିଏ ଦୁର୍ଗ ନିର୍ମାଣ କରାଗଲା । ବାଧ୍ୟତାମୂଳକ ସାମରିକ ସେବାର ପ୍ରବର୍ତ୍ତନ କରିବା ଉଦ୍ଦେଶ୍ୟରେ ୧୮୭୨ ରେ ଏକ ଆଇନ୍ ମଞ୍ଜୁର କରାହୋଇଥିଲା । ତା'ପରେ ସମ୍ବିଧାନ କି ରୂପ ନେବ—ଏହି ପ୍ରଶ୍ନ ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ।

ପ୍ରକୃତରେ ଜାତୀୟ ସଭାରେ ରାଜତନ୍ତ୍ରବାଦୀମାନେ ଅଧିକ ସଂଖ୍ୟାରେ ଥିଲେ ଏବଂ ଦେଶରେ ରାଜତନ୍ତ୍ରୀ ମନୋଭାବ ଅତି ଦୃଢ଼ ଥିଲା । ଥିୟର୍ସ ନିଜେ ଜଣେ ରାଜତନ୍ତ୍ରବାଦୀ ଥିଲେ ଏବଂ ସେ ଅରଲିୟନ୍ସ ରାଜବଂଶର ସମର୍ଥକ ଥିଲେ । ରାଜତନ୍ତ୍ରବାଦୀମାନେ ଏକ ଦଳ

ହିସାବରେ ଭାଗ ଭାଗ ହୋଇଯାଇଥିଲେ । ଥିୟର୍ସ ଯଥାର୍ଥରେ କହିଥିଲେ, 'ତିନୋଟି ମୁଣ୍ଡ ଥିଲାବେଳେ, ମାତ୍ର ଗୋଟିଏ ମୁକୁଟ ଥିଲା ।' ଅର୍ଥାତ୍ ଗୋଟିଏ ରାଜମୁକୁଟ ପାଇଁ ତିନୋଟି ରାଜବଂଶ (ବୁରବନ୍, ଅରଲିୟନ୍ ଏବଂ ବୋନାପାର୍ଟ) ର ତିନିଜଣ ପ୍ରାର୍ଥୀ ଥିଲେ । ତେଣୁ ରାଜତନ୍ତ୍ରବାଦୀମାନେ ତିନୋଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲେ ଏବଂ ପ୍ରତି ଗୋଷ୍ଠୀର ରାଜତନ୍ତ୍ରବାଦୀମାନେ ସେମାନେ ସମର୍ଥନ କରୁଥିବା ରାଜବଂଶର ପ୍ରାର୍ଥୀଙ୍କୁ ସମର୍ଥନ କରୁଥିଲେ । ରାଜତନ୍ତ୍ରବାଦୀମାନଙ୍କ ମଧ୍ୟରେ ଗୋଷ୍ଠୀ ବିବାଦ ଓ ମତଭେଦ ଫଳରେ ସାଧାରଣତନ୍ତ୍ରବାଦୀମାନେ ନିଜର ଆସନ ଦୃଢ଼ କରିବା ପାଇଁ ସୁଯୋଗ ପାଇଲେ । ପ୍ରକୃତରେ ପରିସ୍ଥିତି ଏବଂ ସମସ୍ତ ସାଧାରଣତନ୍ତ୍ରବାଦୀମାନଙ୍କ ସପକ୍ଷରେ ଥିଲା । ରାଜତନ୍ତ୍ର-ବାଦୀମାନଙ୍କ ମଧ୍ୟରେ ଗୋଷ୍ଠୀବିବାଦ ଏବଂ ମତଭେଦ ବିଷୟ ବିଚାର କରି ଥିୟର୍ସ ଘୋଷଣା କରିଥିଲେ ଯେ, 'ସାଧାରଣତନ୍ତ୍ର ହେଉଛି ଗୋଟିଏ ପ୍ରକାର ସରକାର, ଯେ କି ଆମ୍ଭମାନଙ୍କୁ ସବୁଠାରୁ କମ୍ ଭାଗ ଭାଗ କରିଦେବ ।' (Thiers declared that 'a republic was the form of Government that divides us least.') ଏହି ମତ ଦେବା ଫଳରେ ରାଜତନ୍ତ୍ରବାଦୀମାନେ କିଛି ସମୟ ପାଇଁ ସେମାନଙ୍କର କଳହ ଭୁଲି ଯାଇ ମିଳିତ ଭାବରେ ଥିୟର୍ସଙ୍କୁ ଇସ୍ତଫା ଦେବା ନିମନ୍ତେ ବାଧ୍ୟ କରିଥିଲେ । ତା'ପରେ ସେମାନେ ରାଜତନ୍ତ୍ରର ପୁନଃ ପ୍ରତିଷ୍ଠା ପାଇଁ ପଥ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ମାର୍ଶାଲ ମ୍ୟାକମେହନଙ୍କୁ (Marshal Macmahon) ଫ୍ରାନ୍ସର ପ୍ରେସିଡେଣ୍ଟ ରୂପେ ନିର୍ବାଚିତ କରିଥିଲେ । ଏଥର ମଧ୍ୟ ରାଜତନ୍ତ୍ରବାଦୀମାନଙ୍କ ମଧ୍ୟରେ ମତଭେଦ ଯୋଗୁ ରାଜତନ୍ତ୍ରର ପୁନଃ ପ୍ରତିଷ୍ଠା ହୋଇପାରିଲା ନାହିଁ ।

ତୃତୀୟ ଫରାସୀ ସାଧାରଣତନ୍ତ୍ର ସୁପ୍ରତିଷ୍ଠା ଦିଗରେ ପ୍ରଧାନ କାରଣ ହୋଇଥିଲା ବଳିଷ୍ଠ ଗଣତାନ୍ତ୍ରିକ ନେତୃତ୍ୱ । ସେ ଦିଗରେ ଥିୟର୍ସଙ୍କ ଉଦ୍ୟମ ବିଶେଷ ପ୍ରଶଂସନୀୟ ଥିଲା । ସେ ରାଜତନ୍ତ୍ରବାଦୀ ଥିଲେ ହେଁ ସାଧାରଣତନ୍ତ୍ରର ବିରୋଧୀ ନ ଥିଲେ । ତାଙ୍କ ମତରେ ଫ୍ରାନ୍ସର ଐକ୍ୟ ଓ ସଂହତି ରକ୍ଷା ପାଇଁ ସାଧାରଣତନ୍ତ୍ର ଉତ୍କୃଷ୍ଟ ମାର୍ଗ ଥିଲା । ସେ ଦକ୍ଷତାର ସହ ଶାସନକାର୍ଯ୍ୟ ପରିଚାଳନା କରିବାରୁ, ଫ୍ରାନ୍ସବାସୀ ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କଲେ । ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀକୁ ସମର୍ଥନ ଜଣାଇ, ସେ ଏକପ୍ରକାର ମଧ୍ୟମପନ୍ଥୀ ଉଦାର ନୀତି ଅବଲମ୍ବନ କରିଥିଲେ ।

ବାସ୍ତବିକ ୧୮୭୩ ମସିହାରେ ଥିୟର୍ସଙ୍କ ପତନ ପରେ ପରେ ନୈତିକ ନେତୃତ୍ୱ ଏକ ବିରାଟ ସ୍ୱଦେଶପ୍ରେମୀ ଏବଂ ଉତ୍ସାହୀ ସାଧାରଣତନ୍ତ୍ରବାଦୀ ଲିୟନ୍ ଗାମ୍ବେଟାଙ୍କ ହାତକୁ ଯାଇଥିଲା । ସେ ମୁକ୍ତକଣ୍ଠରେ ସାଧାରଣତନ୍ତ୍ର ଶାସନର ପରାକାଷ୍ଠା ପ୍ରଚାର କରିଥିଲେ ଏବଂ ତାଙ୍କ ଲେଖନୀ ସାହାଯ୍ୟରେ ସାଧାରଣତନ୍ତ୍ର ସପକ୍ଷରେ ପ୍ରବଳ ଜନମତ ସୃଷ୍ଟି କରିଥିଲେ । ଯେତେବେଳେ ଜାତୀୟ ଆସେମ୍ବ୍ଲିର କେତେକ ସ୍ଥାନ ପାଇଁ ଉପନିର୍ବାଚନ ହେଲା ସେତେବେଳେ ଦେଖାଗଲା ଯେ ସାଧାରଣତନ୍ତ୍ରବାଦୀ ପ୍ରାର୍ଥୀମାନଙ୍କ ସହିତ କେତେ ଜଣ

ସ୍ୱୀକୃତ ବୋନାପାର୍ଟବାଦୀ ନିଯୁକ୍ତ ହେଲେ । ବୋନାପାର୍ଟବାଦୀଙ୍କର ବିଜୟରେ ଆତଙ୍କିତ ହୋଇ ଜାତୀୟ ଆସେମ୍ବ୍ଲି ତଥାକଥିତ 'ସାମ୍ବିଧାନିକ ଆଇନମାନ' (Constitutional Laws) ପାସ୍ କରିଦେଲେ । ଏହି ଆଇନ୍ ବଳରେ ସାଧାରଣତନ୍ତ୍ର ସରକାର ନିଶ୍ଚିତ ଭାବରେ ପ୍ରତିଷ୍ଠିତ ହେଲା । ପାଞ୍ଚବର୍ଷକାଳ ଫ୍ରାନ୍ସ କେବଳ ନାମମାତ୍ର ସାଧାରଣତନ୍ତ୍ର ରାଷ୍ଟ୍ର ଥିଲା; କିନ୍ତୁ ଏହି ଆଇନ୍ ପାସ୍ ହେଲା ପରେ ସେ ବିଧିସମ୍ମତ ସାଧାରଣତନ୍ତ୍ର ହେଲା । ଗାମ୍ବେଟାଙ୍କର ଆପ୍ରାଣ ଚେଷ୍ଟା ଫଳରେ ରାଜତନ୍ତ୍ରବାଦୀ ପ୍ରେସିଡେଣ୍ଟଙ୍କ ଅଧୀନରେ ଏବଂ ରାଜତନ୍ତ୍ରବାଦୀ ଆସେମ୍ବ୍ଲି ଦ୍ୱାରା ୧୮୭୫ ମସିହାରେ ମାତ୍ର ଗୋଟିଏ ଅଧିକା ଭୋଟରେ ଫ୍ରାନ୍ସରେ ଏକ ସାଧାରଣତନ୍ତ୍ର ସରକାର ପ୍ରତିଷ୍ଠିତ ହେଲା ।

ଆନୁଷ୍ଠାନିକ ଭାବରେ ୧୮୭୫ରେ ସମ୍ବିଧାନ ଗଢ଼ାଗଲା । ସମ୍ବିଧାନର ସର୍ତ୍ତ ଅନୁସାରେ ଫ୍ରାନ୍ସର ପାର୍ଲାମେଣ୍ଟ ଦୁଇ ପ୍ରକୋଷ୍ଠବିଶିଷ୍ଟ ହୋଇ ଜାତୀୟ ଆସେମ୍ବ୍ଲି ନାମରେ ଅଭିହିତ ହେଲା । ଫ୍ରାନ୍ସର ରାଷ୍ଟ୍ରମୁଖ୍ୟଙ୍କୁ ପ୍ରେସିଡେଣ୍ଟ କୁହାଯିବ ଏବଂ ସେ ଜାତୀୟ ଆସେଂବ୍ଲିର ଉଭୟ ପ୍ରକୋଷ୍ଠର ମିଳିତ ଅଧିବେଶନରେ ସାତବର୍ଷପାଇଁ ନିର୍ବାଚିତ ହେବା ସ୍ଥିର ହୋଇଥିଲା । ଉଚ୍ଚତର ପ୍ରକୋଷ୍ଠକୁ ସିନେଟ୍ (Senate) ଏବଂ ନିମ୍ନତର ପ୍ରକୋଷ୍ଠକୁ ଚ୍ୟାମ୍ବର-ଅଫ-ଡେପୁଟିଜ୍ (Chamber of Deputies) କୁହାଯିବ । ପ୍ରେସିଡେଣ୍ଟଙ୍କ ନାମରେ ମନ୍ତ୍ରୀମାନେ କାର୍ଯ୍ୟନିର୍ବାହିକା କ୍ଷମତା (Executive powers) ପ୍ରୟୋଗ କରିବେ । ସେମାନେ ମିଳିତ ଭାବରେ ଏବଂ ବ୍ୟକ୍ତିଗତ ଭାବରେ ଜାତୀୟ ଆସେଂବ୍ଲି ନିକଟରେ ଦାୟୀ ରହିବେ ବୋଲି ଘୋଷଣା କରାଯାଇଥିଲା । ସିନେଟ୍‌ର ସଭ୍ୟମାନେ ପରୋକ୍ଷଭାବରେ ନିର୍ବାଚିତ ହେବେ । ସେମାନଙ୍କ ମଧ୍ୟରୁ କେତେକ ଆଜୀବନ ଏବଂ କେତେକ ପାଞ୍ଚ ବର୍ଷ ପାଇଁ ନିର୍ବାଚିତ ହେବାର ସ୍ଥିର ହେଲା । ଚ୍ୟାମ୍ବର-ଅଫ-ଡେପୁଟିଜ୍‌ର ସଭ୍ୟମାନେ ସାର୍ବଜନୀନ ଭୋଟାଧିକାର ଭିତ୍ତିରେ ପ୍ରତି ପାଞ୍ଚ ବର୍ଷରେ ଥରେ ନିର୍ବାଚିତ ହେବାର ନିୟମ ହେଲା । ପ୍ରେସିଡେଣ୍ଟଙ୍କୁ ରାଷ୍ଟ୍ରମୁଖ୍ୟ ହିସାବରେ ଚ୍ୟାମ୍ବର-ଅଫ-ଡେପୁଟିଜ୍‌ରେ ଥିବା ରାଜନୈତିକ ଦଳଗୁଡ଼ିକ ମଧ୍ୟରୁ ସଂଖ୍ୟାଗରିଷ୍ଠ ଦଳର ନେତାଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ମନୋନୀତ କରିବାର କ୍ଷମତା ଦିଆଗଲା । ସମ୍ବିଧାନରେ ବ୍ୟକ୍ତିଗତ ସ୍ୱାଧୀନତା ଘୋଷଣା କରାଯାଇ ନଥିଲା । ପ୍ରେସିଡେଣ୍ଟଙ୍କୁ କେବଳ ରାଷ୍ଟ୍ରର ଆନୁଷ୍ଠାନିକ ମୁଖ୍ୟ ବୋଲି କୁହାଯାଇପାରେ; କାରଣ ତାଙ୍କର କ୍ଷମତାକୁ ସୀମିତ କରାଯାଇଥିଲା । ରାଷ୍ଟ୍ରରେ ପ୍ରକୃତ ଶାସନକ୍ଷମତା ପ୍ରଧାନମନ୍ତ୍ରୀ ଏବଂ ମନ୍ତ୍ରିମଣ୍ଡଳ ଉପରେ ନ୍ୟସ୍ତ କରାଯାଇଥିଲା । ପ୍ରେସିଡେଣ୍ଟଙ୍କ ପ୍ରାଧାନ୍ୟ କେବଳ ଅନୁଭବ କରାଯାଉଥିଲା । ଯେତେବେଳେ ସେ ବସୁଥିଲେ, ଚ୍ୟାମ୍ବର-ଅଫ-ଡେପୁଟିଜ୍‌ରେ ଥିବା ଦଳମାନଙ୍କ ମଧ୍ୟରୁ ସେ କେଉଁ ଦଳର ନେତାଙ୍କୁ ବାଛିବେ ଯେ କି ମନ୍ତ୍ରିମଣ୍ଡଳ ଗଠନ କରିପାରିବେ ଏବଂ ସେହି ମନ୍ତ୍ରିମଣ୍ଡଳ ଚ୍ୟାମ୍ବର-ଅଫ-ଡେପୁଟିଜ୍‌ର ସମର୍ଥନ ଲାଭ କରିପାରିବ । ଯେ ଯାହା ହେଉ, ତୃତୀୟ ସାଧାରଣତନ୍ତ୍ର ସରକାର ବିଧିବଦ୍ଧ ଭାବରେ ଫ୍ରାନ୍ସରେ ପ୍ରତିଷ୍ଠା କରାଗଲା ।

ପ୍ରେସିଡେଣ୍ଟ ନିର୍ବାଚନରେ ଲୁଇ ନେପୋଲିୟନ୍‌ଙ୍କ ସମୟରେ ହୋଇଥିବା ଭୁଲର ପୁନରାବୃତ୍ତି କରିବାକୁ କେହି ଚାହିଁ ନଥିଲେ । ଏହି ସମ୍ବିଧାନରେ ଇଂଲଣ୍ଡର ସଂସଦୀୟ ଗଣତନ୍ତ୍ର ବ୍ୟବସ୍ଥାକୁ ଅନୁକରଣ କରାଯାଇଥିଲା ।

ଏହି ନୂତନ ସମ୍ବିଧାନ ଅନୁସାରେ ମାର୍ସାଲ ମ୍ୟାକ୍‌ମେହନ ୧୮୭୫ ମସିହାରେ ଫ୍ରାନ୍‌ସର ପ୍ରେସିଡେଣ୍ଟ ନିଯୁକ୍ତ ହେଲେ ଏବଂ ସେ ୧୮୭୯ ପର୍ଯ୍ୟନ୍ତ କ୍ଷମତାରେ ରହିଲେ । ସେ ରାଜତନ୍ତ୍ରର ସମର୍ଥକ ଥିଲେ । ସେହି ୧୮୭୫ ମସିହାରେ ପ୍ରଥମ ଥର ପାଇଁ ବହୁସଂଖ୍ୟକ ସାଧାରଣତନ୍ତ୍ରବାଦୀ ପ୍ରତିନିଧି ଚ୍ୟାମ୍ବରକୁ ନିର୍ବାଚିତ ହେଲେ ଏବଂ ସେଠାରେ ସଂଖ୍ୟା-ଗରିଷ୍ଠତା ହାସଲ କଲେ; କିନ୍ତୁ ସିନେଟ୍‌ରେ ରାଜତନ୍ତ୍ରବାଦୀମାନେ ସଂଖ୍ୟାଗରିଷ୍ଠତା ବଜାୟ ରଖିଥିଲେ । ୧୮୭୭ ମସିହାରେ ସାଧାରଣତନ୍ତ୍ର ସରକାର ଆଉ ଏକ ପରୀକ୍ଷାର ସମ୍ମୁଖୀନ ହୋଇଥିଲା; କାରଣ ଏହି ମସିହାରେ ପ୍ରେସିଡେଣ୍ଟ ମ୍ୟାକ୍‌ମେହନ ଏପରି ଏକ ପଦକ୍ଷେପ ନେଲେ, ଯାହା କି ସମ୍ବିଧାନର ନିର୍ଦ୍ଦିଷ୍ଟତା ଅଭାବରୁ ସମ୍ଭବ ହୋଇପାରିଲା । ସେ ରାଜତନ୍ତ୍ରର ସମର୍ଥକ ହୋଇଥିବାରୁ ସାଧାରଣତନ୍ତ୍ରବାଦୀ ଚ୍ୟାମ୍ବର ସହ ତାଙ୍କର ମନୋମାଳିନ୍ୟ ହେଲା । ସାଧାରଣତନ୍ତ୍ରବାଦୀ ମନ୍ତ୍ରିମଣ୍ଡଳ ଉପରେ ଚ୍ୟାମ୍ବରର ପୂର୍ଣ୍ଣ ଆସ୍ଥା ଥିବା ସତ୍ତ୍ୱେ, ସେ ସେହି ମନ୍ତ୍ରିମଣ୍ଡଳକୁ ସହ୍ୟ କରିପାରିନଥିଲେ ଏବଂ ସମ୍ବିଧାନ ବ୍ୟବସ୍ଥାନୁଯାୟୀ ସିନେଟ୍‌ର ସମ୍ମତି ନେଇ ପାର୍ଲାମେଣ୍ଟକୁ ଭାଙ୍ଗିଦେଲେ ଏବଂ ସାଧାରଣ ନିର୍ବାଚନ ପାଇଁ ଆହ୍ୱାନ ଦେଲେ । ପ୍ରେସିଡେଣ୍ଟ ଯଦି ଚ୍ୟାମ୍ବରକୁ ଏପରିଭାବରେ ଅବଜ୍ଞା କରନ୍ତି, ତାହାହେଲେ ମନ୍ତ୍ରିମଣ୍ଡଳୀୟ ଦାୟିତ୍ୱ ନୀତି ନିରର୍ଥକ ହୋଇଯିବ । ତେଣୁ ବହୁତ କିଛି ଫରାସୀ ନାଗରିକମାନଙ୍କର ନିଷ୍ପତ୍ତି ଉପରେ ନିର୍ଭର କରୁଅଛି । ତା'ଛଡ଼ା ପ୍ରେସିଡେଣ୍ଟ ନା ମନ୍ତ୍ରିମଣ୍ଡଳ କିଏ କାର୍ଯ୍ୟ-ନିର୍ବାହକ ନେତୃତ୍ୱ (Executive leadership) ନେବ—ଏହି ପ୍ରଶ୍ନ ସମାଧାନର ଆବଶ୍ୟକତା ଅନୁଭବ କରାଯାଇଥିଲା । ପ୍ରକୃତରେ ସାଧାରଣ ନିର୍ବାଚନ ଏ ସବୁ ପ୍ରଶ୍ନ ସମାଧାନ ପାଇଁ ବାଟ ଫିଟାଇବ ବୋଲି ଆଶାକରାଯାଉଥିଲା । ସାଧାରଣତନ୍ତ୍ରବାଦୀମାନେ ସେମାନଙ୍କ ପ୍ରାର୍ଥୀମାନଙ୍କ ସପକ୍ଷରେ ବଳିଷ୍ଠ ପ୍ରଚାର ଫଳରେ ୧୮୭୯ର ନିର୍ବାଚନରେ ନିଷ୍ପତ୍ତିମୂଳକ ବିଜୟ ହାସଲ କଲେ । ରାଜତନ୍ତ୍ରବାଦୀମାନଙ୍କର ଶାସନକ୍ଷମତା ଅଧିକାର ଆଶା ଲୋପପାଇଲା । ମ୍ୟାକ୍‌ମେହନ ବାଧ୍ୟ ହୋଇ ପ୍ରେସିଡେଣ୍ଟ ପଦରୁ ଇସ୍ତଫା ଦେଲେ ଏବଂ ତାଙ୍କ ସ୍ଥାନରେ ଗାମ୍ବେଟାଙ୍କ ମନୋନୀତ ପ୍ରାର୍ଥୀ ଜୁଲସ୍ ଗ୍ରେଭି (Jules Grevy) ପ୍ରେସିଡେଣ୍ଟ ନିର୍ବାଚିତ ହେଲେ । ସେହି ବର୍ଷ ସିନେଟ୍‌ରେ ମଧ୍ୟ ସାଧାରଣତନ୍ତ୍ରବାଦୀମାନେ ସଂଖ୍ୟାଗରିଷ୍ଠତା ଲାଭକଲେ । ପ୍ରେସିଡେଣ୍ଟ ଜଣେ ବିଶିଷ୍ଟ ସାଧାରଣତନ୍ତ୍ରବାଦୀ ହୋଇଥିବାରୁ, ଏବଂ ଜାତୀୟ ଆସେମ୍ବ୍ଲିର ଉଭୟ ପ୍ରକୋଷ୍ଠରେ ସାଧାରଣତନ୍ତ୍ରବାଦୀମାନେ ସଂଖ୍ୟାଗରିଷ୍ଠତା ଲାଭ କରିଥିବାରୁ ସାଧାରଣତନ୍ତ୍ର ସରକାରରେ ସୃଷ୍ଟି ହେଉଥିବା ସବୁ ମତଭେଦ ଦୂର ହେଲା ।

ସେ ଯାହାହେଉ, ମ୍ୟାକ୍‌ମେହନ ପ୍ରେସିଡେଣ୍ଟ ପଦରୁ ବିଦାୟ ନେଲା ପରେ ପରେ ତୃତୀୟ ଫରାସୀ ସାଧାରଣତନ୍ତ୍ର ଅଧିକ ସୁଦୃଢ଼ ହେବାର ଲକ୍ଷ୍ୟ କରାଯାଇଥିଲା । ଗଣତାନ୍ତ୍ରିକ

ପଙ୍କଠାର ହିତଦୃଷ୍ଟିରୁ ସମ୍ବାଦପତ୍ର ଅନୁଷ୍ଠାନ ଏବଂ ସଭା ଓ ସମିତିଗୁଡ଼ିକୁ ବହୁପରିମାଣରେ ସ୍ୱାଧୀନତା ଦିଆଯାଇଥିଲା । ୧୮୮୪ରେ ସିନେଟ୍‌ରେ ଆଉ ଆଜୀବନ ସଭ୍ୟ ଗ୍ରହଣ ନ କରିବା ପାଇଁ ସ୍ଥିର ହେଲା । ଦେଶରେ ଏକ ସୁଚିନ୍ତିତ ଜାତୀୟ ଶିକ୍ଷା-ବ୍ୟବସ୍ଥା ପ୍ରଚଳିତ ହେଲା ଏବଂ ତହିଁରେ ସ୍ୱାଧୀନ ଚିନ୍ତାଧାରାର ବିକାଶ ପାଇଁ ଦୃଷ୍ଟି ଦିଆଗଲା । ଛ'ରୁ ୧୩ ବର୍ଷ ବୟସ୍କ ବାଳକବାଳିକାଙ୍କ ପାଇଁ ଅବୈତନିକ, ଦୀର୍ଘକାଳୀନ ଏବଂ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତିତ କରାଯାଇଥିଲା । ଏହି ଜାତୀୟ ଶିକ୍ଷା-ବ୍ୟବସ୍ଥାର ପ୍ରବର୍ତ୍ତକ ଥିଲେ ଜୁଲସ୍ ଫେରି (Jules Ferry) । ଓ୍ୱାଲ୍‌ଡେକ ରୁସୋ (Waldeck-Rousseau) ନାମକ ଜଣେ ରାଜନୀତିଜ୍ଞଙ୍କ ପ୍ରଚେଷ୍ଟା ଫଳରେ ୧୮୮୪ରେ ଶ୍ରମିକ ସଙ୍ଗଠନଗୁଡ଼ିକୁ ସରକାର ସ୍ୱୀକୃତି ଦେଲେ । ତଦ୍ୱାରା ଶିଳ୍ପକ୍ଷେତ୍ରରେ ଶ୍ରମିକମାନଙ୍କର କଲ୍ୟାଣ ପାଇଁ ସାଙ୍ଗଠନିକ ବ୍ୟବସ୍ଥାର ମୂଳଭିତ୍ତି ସ୍ଥାପିତ ହେଲା । ତା'ଛଡ଼ା କୃଷକମାନଙ୍କ କଲ୍ୟାଣ ପାଇଁ ମଧ୍ୟ ଅନେକ କିଛି କରାଯାଇଥିଲା । ସୁତରାଂ ୧୮୮୫ ବେଳକୁ ପ୍ରାୟ ଅଧିକାଂଶ ଫରାସୀବାସୀ ସାଧାରଣତନ୍ତ୍ରବାଦ ଉପରେ ଦୃଢ଼ ଆସ୍ଥା ସ୍ଥାପନ କରିଥିଲେ ।

ତଥାପି ତୃତୀୟ ସାଧାରଣତନ୍ତ୍ର ସରକାର କେତେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ । କ୍ୟାପ୍‌ଟେନ୍ ବୋଲାଞ୍ଜାର (Captain Boulanger) ୧୮୮୬ରେ ଫ୍ରାନ୍ସର ଯୁଦ୍ଧ-ମନ୍ତ୍ରୀ ହେଲେ । ସେ ଜଣେ ରାଜତନ୍ତ୍ରବାଦୀ ଥିଲେ ଏବଂ ସାଧାରଣତନ୍ତ୍ର ସରକାରର ପତନ ଘଟାଇ ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ସେତେବେଳେ ମଧ୍ୟ ଫ୍ରାନ୍ସର ବିଭିନ୍ନ ଦଳ ମଧ୍ୟରେ ଉତ୍ତେଜନା ଲାଗିରହିଥିଲା । ଫ୍ରାନ୍ସରେ ଅନେକ ଲୋକ ଥିଲେ, ଯେଉଁମାନେ କି ସାଧାରଣତନ୍ତ୍ରକୁ ଘୃଣା କରୁଥିଲେ ଏବଂ ସେମାନଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ, ତୃତୀୟ ସାଧାରଣତନ୍ତ୍ର ସରକାର ତା'ର ପୂର୍ବବର୍ତ୍ତୀ ସାଧାରଣତନ୍ତ୍ର ସରକାରମାନଙ୍କ ସଦୃଶ ସମଦଶା ଭୋଗ କରିବ । ଏହି ଅସନ୍ତୁଷ୍ଟ ଲୋକେ କ୍ୟାପ୍‌ଟେନ୍ ବୋଲାଞ୍ଜାରଙ୍କୁ ସେମାନଙ୍କର ନେତା ରୂପେ ବାଛିଥିଲେ । ବୋଲାଞ୍ଜାରଙ୍କର ଏକଚ୍ଛତ୍ରବାଦ ଶାସନ ପ୍ରତିଷ୍ଠା କରିବା ଆଶା ଉଜ୍ଜ୍ୱଳ ହୋଇଉଠିଲା । ସେ ସରକାର ବିରୋଧୀ କୁତ୍ସା ପ୍ରଚାର ଏବଂ ଉଚ୍ଚ ପଦାଧିକାରୀମାନଙ୍କ ମଧ୍ୟରେ କଳହର ସୁଯୋଗ ନେଇ ସରକାରଙ୍କ ଅକ୍ଷମ ବିଚ୍ୟୁତିକୁ ସମାଲୋଚନା କରିଥିଲେ ଏବଂ ରାଜତନ୍ତ୍ରବାଦୀମାନଙ୍କ ସାହାଯ୍ୟ ଓ ସମର୍ଥନ ଲାଭକରି ଏକଚ୍ଛତ୍ରବାଦ ଶାସନ ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ସେ ମଧ୍ୟ ଚାହୁଁଥିଲେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧର ଆୟୋଜନ; କିନ୍ତୁ ତାଙ୍କର ଦୃଢ଼ତା ଏବଂ ସାହସ ଅଭାବରୁ ସେ ତାଙ୍କର ଉଦ୍ଦେଶ୍ୟ ସାଧନ କରିପାରି ନଥିଲେ ଏବଂ ଅନ୍ୟ ଦିଗରେ ସାଧାରଣତନ୍ତ୍ରବାଦୀମାନେ ଏହି ଧମକ ବିରୁଦ୍ଧରେ ମିଳିତ ଉଦ୍ୟମ ପାଇଁ ସରକାରଙ୍କ ପଛରେ ଏକଜୁଟ ହୋଇଥିଲେ । ତେଣୁ ଅତି ସହଜରେ ସରକାର ବିରୋଧୀ ଆନ୍ଦୋଳନକୁ ଦୃଢ଼ହସ୍ତରେ ଦମନ କରାଗଲା । ବୋଲାଞ୍ଜାର ୧୮୮୭ରେ ମନ୍ତ୍ରୀପଦରୁ ଇସ୍ତଫା ଦେବାକୁ ବାଧ୍ୟ ହୋଇଥିଲେ । ତାଙ୍କୁ ଗିରଫ କରିବାପାଇଁ ଆଦେଶ ଦିଆଯାଇଥିଲା; କିନ୍ତୁ ସେ ଗୋପନରେ ବେଲଜିୟମକୁ ପଳାଇ-ଯାଇଥିଲେ ଏବଂ ୧୮୯୧ରେ ବ୍ରୁସେଲ୍‌ସ୍ ନଗରୀରେ ଆତ୍ମହତ୍ୟା କରିଥିଲେ ।

ବୋଲାଞ୍ଜାର ସଙ୍କଟ ଦୂର ହେଲା ପରେ ସାଧାରଣତନ୍ତ୍ର ସରକାର ଆଉ ଏକ ସଙ୍କଟର ସମ୍ମୁଖୀନ ହେଲେ । ଏଡୁଆର୍ଡ୍ ଡ୍ରୁମଣ୍ଟ (Edward Drumont) ନାମକ ଜଣେ ଫରାସୀ ୧୮୯୨ରେ ଲା ଲିବ୍ରେ ପାରୋଲ (La Libre Parole) ନାମକ ସମ୍ବାଦ-ପତ୍ର ଜରିଆରେ ଇହୁଦୀ (Jews)ମାନଙ୍କ ବିପକ୍ଷରେ କେତେକ ଲେଖା ପ୍ରକାଶ କରିଥିଲେ । ଇହୁଦୀ ପୁଞ୍ଜିପତିମାନଙ୍କ ଶୋଷଣ ବିରୁଦ୍ଧରେ ଶ୍ରମିକମାନଙ୍କୁ ଉତ୍ତେଜିତ କରିବା ପାଇଁ ଏହି ଲେଖାମାନ ପ୍ରକାଶିତ ହୋଇଥିଲା । ଫଳରେ ଫ୍ରାନ୍ସରେ ପ୍ରବଳ ଇହୁଦୀ-ବିରୋଧୀ ଆନ୍ଦୋଳନର ସୂତ୍ରପାତ ହେଲା । ଏହାର ପରିଣାମ ସ୍ୱରୂପ କ୍ୟାପ୍ଟେନ୍ ଆଲଫ୍ରେଡ ଡ୍ରେଫସ୍ (Captain Alfred Drefus) ଜଣେ ଇହୁଦୀ ସାମରିକ ଅଫିସର ଜର୍ମାନମାନଙ୍କୁ ଗୁପ୍ତ ସାମରିକ ତଥ୍ୟ ଯୋଗାଉଥିବା ଅପରାଧରେ ଅଭିଯୁକ୍ତ ହେଲେ । ଏହି ଘଟଣା ୧୮୯୪ରେ ଘଟିଥିଲା । ରାଜଦ୍ରୋହ ଅପରାଧରେ ତାଙ୍କୁ ଗିନି ଉପକୂଳସ୍ଥ ଡେଭିଲ୍ ଦ୍ୱୀପକୁ ଦ୍ୱୀପାନ୍ତରିତ କରାଯାଇଥିଲା । ସେହି ବର୍ଷ ପ୍ରେସିଡେଣ୍ଟ ସାଦି କାର୍ଣ୍ଣୋଟ୍ (Sadi Carnot) କୌଣସି ଅଜଣା ଆତତାୟୀ ଦ୍ୱାରା ନିହତ ହେଲେ । ଏହି ଦୁଇ ଘଟଣା ନେଇ ତୃତୀୟ ସାଧାରଣତନ୍ତ୍ରର ସ୍ଥାୟିତ୍ୱ ସଙ୍କଟମୟ ହୋଇଥିଲା; କିନ୍ତୁ ଡ୍ରେଫସଙ୍କୁ ମିଥ୍ୟାରେ ଅଭିଯୋଗ କରାଯାଇ ଏପରି କଠିନ ଦଣ୍ଡ ଦିଆଯାଇଛି ବୋଲି ଯେତେବେଳେ ୧୮୯୬ରେ ପ୍ରକାଶ ପାଇଲା ସେତେବେଳେ ଫ୍ରାନ୍ସରେ ଡ୍ରେଫସଙ୍କ ଦଣ୍ଡ ବିରୁଦ୍ଧରେ ତୀବ୍ର ପ୍ରତିବାଦ ହୋଇଥିଲା । ଡ୍ରେଫସ-ବ୍ୟାପାର ଦେଶରେ ଏକ ବଡ଼ ଆନ୍ଦୋଳନ ସୃଷ୍ଟି କରିଥିଲା ।

୧୮୯୬ ମସିହାରେ କର୍ଣ୍ଣେଲ ପିକ୍ୱାର୍ଟ (Colonel Picquart) ଗୁପ୍ତଚର ବିଭାଗର ମୁଖ୍ୟ ନିଯୁକ୍ତ ହେଲେ । ସେ ସନ୍ଧାନ ପାଇଲେ ଯେ ଯେଉଁ ଦଲିଲ୍ ବଳରେ ଡ୍ରେଫସଙ୍କୁ ଅଭିଯୁକ୍ତ କରାଯାଇ ଶାସ୍ତି ବିଧାନ କରାଯାଇଛି, ତାହା ଏକ ଜାଲ୍ ଦଲିଲ ଏବଂ ସେହି ଦଲିଲକୁ ଜାଲ୍ କରିଥିଲେ ଜଣେ ଲମ୍ପଟ ସାମରିକ ଅଫିସର ମେଜର ଏଷ୍ଟେରହ୍ୟାଜି (Major Esterhazy) । ଫରାସୀ ସରକାର ଏବଂ ଯୁଦ୍ଧ ଦପ୍ତର ଏହି ଘଟଣା ଲୁଚାଇ ଦେବାକୁ ଚାହିଁଥିଲେ । ପିକ୍ୱାର୍ଟଙ୍କୁ ଅନ୍ୟତ୍ର ବଦଳି କରିଦିଆଗଲା ଏବଂ ତାଙ୍କ ସ୍ଥାନରେ କର୍ଣ୍ଣେଲ ହେନେରି (Colonel Henry)ଙ୍କୁ ନିଯୁକ୍ତ କରାଯାଇଥିଲା । ଅବିଳମ୍ବେ ଏକ ବଡ଼ ଧରଣର ବିକ୍ଷୋଭ ଫ୍ରାନ୍ସକୁ ଦୋହଲାଇ ଦେଇଥିଲା ଏବଂ ଫରାସୀବାସୀଙ୍କୁ ଦୁଇ ବିରୋଧୀ ଗୋଷ୍ଠୀରେ ବିଭକ୍ତ କରିଦେଇଥିଲା । ସୈନ୍ୟବାହିନୀ, କ୍ୟାଥଲିକ ଧର୍ମଯାଜକ ସମ୍ପ୍ରଦାୟ ଏବଂ ରାଜତନ୍ତ୍ରବାଦୀମାନେ ଡ୍ରେଫସଙ୍କ ଥିଲେ ବିରୋଧୀ ଗୋଷ୍ଠୀ ଏବଂ ସମାଜବାଦୀ, ଇହୁଦୀ, ଚରମପନ୍ଥୀ ଓ ପ୍ରୋଟେଷ୍ଟାଣ୍ଟ ସମ୍ପ୍ରଦାୟ ଥିଲେ ତାଙ୍କର ସମର୍ଥକ ଗୋଷ୍ଠୀ । ଏହା ପ୍ରକୃତରେ ଥିଲା ରକ୍ଷଣଶୀଳ ଦଳ ଓ ପ୍ରଗତି ଦଳ ମଧ୍ୟରେ, ପ୍ରଭୁତ୍ୱ ଓ ସ୍ୱାତନ୍ତ୍ର୍ୟ ମଧ୍ୟରେ ଏବଂ ରାଷ୍ଟ୍ର-ନିୟନ୍ତ୍ରଣ ପାଇଁ ବେସାମରିକ କର୍ତ୍ତୃପକ୍ଷ ଓ ସାମରିକ କର୍ତ୍ତୃପକ୍ଷ ମଧ୍ୟରେ ସଂଗ୍ରାମ ।

ଡ୍ରେଫସ୍‌ଙ୍କର ସମର୍ଥକମାନେ ତାଙ୍କର ପୁନର୍ବିଚାର ପାଇଁ ଦାବିକରି ପ୍ରବଳ ବିକ୍ଷୋଭ କଲାବେଳେ, ଡ୍ରେଫସ୍‌ଙ୍କର ବିରୋଧୀମାନେ ତା'ର ତୀବ୍ର ପ୍ରତିରୋଧ କରିଥିଲେ । ୧୮୯୮ରେ

କର୍ଣ୍ଣେଲ ହେନେରୀ ଯେତେବେଳେ ସ୍ୱୀକାର କଲେ ଯେ ସେଇସବୁ ଦଲିଲ ଜାଲ୍ ହୋଇଥିଲା ତନ୍ମଧ୍ୟରୁ ସେ ଖଣ୍ଡିଏ ଦଲିଲ ଜାଲ୍ କରିଥିଲେ ଏବଂ ଏହା ପ୍ରକାଶ କଲାପରେ ସେ ଆତ୍ମହତ୍ୟା କରିଥିଲେ । ତେଣୁ ଫରାସୀ ସରକାର ବାଧ୍ୟ ହୋଇ ଡ୍ରେଫସ୍‌ଙ୍କ ମକଦ୍ଦମା ପୁନର୍ବିଚାର କରିଥିଲେ । ମକଦ୍ଦମାରେ ଡ୍ରେଫସ୍‌ଙ୍କୁ ଦ୍ୱିତୀୟ ବାର ମଧ୍ୟ ଦୋଷୀ ସାବ୍ୟସ୍ତ କରାଯାଇଥିଲା; କିନ୍ତୁ ଦୋଷ ନ୍ୟୂନ କରିବାପାଇଁ କେତେକ ପ୍ରମାଣ ମିଳିବାରୁ ତାଙ୍କ ଦଣ୍ଡକୁ କମାଇ ଦଶବର୍ଷ କରାଯାଇଥିଲା । ଅବଶ୍ୟ ଫ୍ରାନ୍ସର ପ୍ରେସିଡେଣ୍ଟ ଲୌବେଟ୍ (Loubet) ତାଙ୍କର କ୍ଷମା ଦେବା ଅଧିକାର ଡ୍ରେଫସ୍‌ଙ୍କ ସପକ୍ଷରେ ପ୍ରୟୋଗ କରି ତାଙ୍କୁ ଦଣ୍ଡରୁ ମୁକ୍ତ ଦେଇଥିଲେ । ଡ୍ରେଫସ୍ ଦଣ୍ଡରୁ ମୁକ୍ତ ପାଇଲେ ମଧ୍ୟ ତାଙ୍କର ସମର୍ଥକମାନେ ଏଥିରେ ସନ୍ତୁଷ୍ଟ ହେଲେନାହିଁ । ସେମାନେ ଡ୍ରେଫସ୍ ସମ୍ପୂର୍ଣ୍ଣ ନିର୍ଦୋଷ ବୋଲି ପ୍ରମାଣ କରିବା ଉଦ୍ଦେଶ୍ୟରେ ପୁନର୍ବାର ତାଙ୍କର ବିଚାର ଦାବି କରିଥିଲେ । ଏହି ଦାବି ଫଳରେ ୧୯୦୬ ମସିହାରେ ତାଙ୍କ ବିଚାରର ପୁନଃ ପରୀକ୍ଷଣ କରାଗଲା ଏବଂ ଏଥର ତାଙ୍କୁ ଦୋଷରୁ ସମ୍ପୂର୍ଣ୍ଣ ମୁକ୍ତ କରି ଦିଆଗଲା । ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ସୈନ୍ୟବାହିନୀରେ ତାଙ୍କୁ ପୁନର୍ବାର ନିଯୁକ୍ତ ଦିଆଯିବା ସଙ୍ଗେ ସଙ୍ଗେ ତାଙ୍କର ପଦୋନ୍ନତି କରାଗଲା ।

ବାସ୍ତବରେ ଡ୍ରେଫସ୍‌ଙ୍କ ବିରୋଧୀମାନେ ସାଧାରଣତନ୍ତ୍ରର ବିରୋଧୀ ଥିଲେ ଏବଂ ତାଙ୍କର ସମର୍ଥକମାନେ ତା'ର ସମର୍ଥକ ଥିଲେ । ଡ୍ରେଫସ୍‌ଙ୍କ ନିର୍ଦୋଷତା ପ୍ରତିପାଦିତ ହେବା ଫଳରେ ସାଧାରଣତନ୍ତ୍ରର ବିରୋଧୀମାନଙ୍କର ପରାଜୟ ହେଲା ଏବଂ ସାମରିକ କର୍ତ୍ତୃପକ୍ଷଙ୍କ ଉପରେ ବେସାମରିକ କର୍ତ୍ତୃପକ୍ଷଙ୍କ ବିଜୟ ହେଲା । ସୁତରାଂ ଉଭୟ ସାମରିକବାଦ ଓ ଧର୍ମଯାଜକବାଦର ବିପର୍ଯ୍ୟୟ ଘଟିଲା ।

ରାଜତନ୍ତ୍ରବାଦୀମାନଙ୍କ ମଧ୍ୟରେ ସାଧାରଣତନ୍ତ୍ର ସରକାରଙ୍କ ଉପରେ ଆକ୍ରମଣ କରିବାରେ ସବୁଠାରୁ ସକ୍ରିୟ ଥିଲେ ଧର୍ମଯାଜକମାନେ । ଅବଶ୍ୟ ରାଜତନ୍ତ୍ର ସରକାର ସବୁ ସମୟରେ ଧର୍ମଯାଜକମାନଙ୍କର ପୃଷ୍ଠପୋଷକତା କରୁଥିଲେ ଏବଂ ଶିକ୍ଷାକ୍ଷେତ୍ରରେ ସେମାନଙ୍କୁ ବିଶେଷ ସୁବିଧା ଦେଇଥିଲେ । ଗାମ୍ବେଟା ହଠାତ୍ ଥରେ ଚିତ୍କାର କରି ଉଠିଲେ, "ଧର୍ମଯାଜକବାଦ—ସେଇ ହେଉଛି ଶତ୍ରୁ ।" ( "Clericalism—there is the enemy." burst out Gambetta) ୧୮୭୭ର ସଙ୍କଟ ସମୟରେ ସାଧାରଣତନ୍ତ୍ରବାଦୀମାନଙ୍କର ଏହି ଥିଲା ସ୍ଲୋଗାନ । ଶେଷରେ ୧୮୯୯ ରେ ଡ୍ରେଫସ୍-ବ୍ୟାପାର ଫ୍ରାନ୍ସରେ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ସୃଷ୍ଟି କରିଥିଲାବେଳେ ଅଧିକାଂଶ ସାଧାରଣତନ୍ତ୍ରବାଦୀ ମିଳିତ ହୋଇ ତଥାକଥିତ 'ସାଧାରଣତନ୍ତ୍ରବାଦୀ ଗୋଷ୍ଠୀ' (Republican Block) ଗଠନ କରିଥିଲେ ଏବଂ ଧର୍ମଯାଜକ ସମ୍ପ୍ରଦାୟ ବିରୁଦ୍ଧରେ ସଂଗ୍ରାମ ଚଳାଇବେ ବୋଲି ପ୍ରତିଜ୍ଞାବଦ୍ଧ ହୋଇଥିଲେ । ତା'ଛଡ଼ା ଫ୍ରାନ୍ସର ରାଜନୈତିକ ଜୀବନରୁ ଧର୍ମର ପ୍ରଭାବ ଓ ପ୍ରତିପତ୍ତି ଲୋପ କରିବା, ତୃତୀୟ ସାଧାରଣତନ୍ତ୍ରର ଏକ ଉଲ୍ଲେଖଯୋଗ୍ୟ କୃତିତ୍ୱ ଥିଲା । ୧୮୦୧ ମସିହାରେ ନେପୋଲିୟନ୍ ବୋନାପାର୍ଟ ଏବଂ ପୋପ୍‌ଙ୍କ ମଧ୍ୟରେ ହୋଇଥିବା ରାଜିନାମା

କନ୍‌କରଡାଟ୍ (Concordat)ର କେତେକ ଅହେତୁକ ପ୍ରଭାବରୁ ସମାଜ ଓ ରାଜନୀତିକୁ ମୁକ୍ତ ରଖିବା ଉଚିତ ମନେହେଲା । ସରକାର ଏବଂ ଖ୍ରୀଷ୍ଟଧର୍ମର ନୀତି ଓ ଅନୁଷ୍ଠାନ ମଧ୍ୟରେ ଗଢ଼ି ଉଠୁଥିବା ଉଦ୍ରେକତାର ସମାଧାନ ପାଇଁ ସମସ୍ତେ ଚିନ୍ତା କଲେ । କୃଷକ ଏବଂ ମହିଳାମାନଙ୍କୁ ଧର୍ମ ପ୍ରଭାବରୁ ମୁକ୍ତ ନ କଲେ, ପ୍ରକୃତ ଗଣତନ୍ତ୍ରର ବିକାଶ ସାଧିତ ହୋଇ ପାରିବ ନାହିଁ ବୋଲି ଚିନ୍ତାଶୀଳ ରାଜନୀତିଜ୍ଞମାନଙ୍କର ହୃଦ୍‌ବୋଧ ହେଲା । ତେଣୁ ୧୯୦୭ ମସିହାରେ ସରକାର ୧୮୦୧ ମସିହାର 'କନ୍‌କରଡାଟ୍'କୁ ରଦ୍ଦ କରିଦେଲେ । ରାଜନୀତି ଏବଂ ଧର୍ମ ପରସ୍ପରଠାରୁ ପୃଥକ୍ ହୋଇଗଲେ ।

ବହୁ ରାଜନୀତିକ ଦଳର ସମନ୍ୱୟ ଓ ସହଯୋଗ ଉପରେ ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠା ତୃତୀୟ ସାଧାରଣତନ୍ତ୍ରର ଏକ ବିଶେଷତ୍ୱ । ବହୁମତ ଓ ଗୋଷ୍ଠୀକୁ ନେଇ ବହୁଦଳର ସୃଷ୍ଟି ଓ ଅଭିବୃଦ୍ଧି । ତଦ୍ୱାରା ଫରାସୀ ନାଗରିକର ରାଜନୀତିକ ଜୀବନରେ ଅଧିକ ସ୍ୱାଧୀନତା ଏବଂ ସ୍ୱାଧୀନ ଚିନ୍ତାଧାରାର ପ୍ରତିଫଳନ ସୁସ୍ପଷ୍ଟ । ମନ୍ତ୍ରିମଣ୍ଡଳର ସ୍ଥାୟିତ୍ୱ ଅନେକ ସମୟରେ ବିପନ୍ନ ହେଲେ ହେଁ, ଗଣତାନ୍ତ୍ରିକ ପଦ୍ଧତିର ପୂର୍ଣ୍ଣ ବିକାଶ ପାଇଁ ମନ୍ତ୍ରିମଣ୍ଡଳର ସ୍ଥାୟିତ୍ୱ ନାମରେ ନାଗରିକ ସ୍ୱାଧୀନତାକୁ ସୀମିତ କରାଯାଇପାରେନା । ଫ୍ରାନ୍‌ସର ଅମଲାତନ୍ତ୍ର ଅତି ଅଭିଜ୍ଞ ଓ ଦକ୍ଷ ଥିବାରୁ ସରକାର ଘନ ଘନ ପରିବର୍ତ୍ତିତ ହେଲେ ମଧ୍ୟ ଦେଶରେ ବିଶେଷ କିଛି ଆଲୋଡ଼ନ ଦେଖାଯାଏନା । ଗଣତନ୍ତ୍ର ଏବଂ ଅମଲାତନ୍ତ୍ରର ସହଯୋଗ ଫଳରେ ଫ୍ରାନ୍‌ସର ସଂହତି ଏ ପର୍ଯ୍ୟନ୍ତ ଅତୁଟ ରହିପାରିଛି ।

---

# ଊନବିଂଶ ଅଧ୍ୟାୟ

## ଜର୍ମାନ ସାମ୍ରାଜ୍ୟ ୧୮୭୧-୧୮୯୦

## ( The German Empire 1871-1890 )

ପୃଥିବୀ ଇତିହାସରେ ଊନବିଂଶ ଶତାବ୍ଦୀ ଏକ ଘଟଣାବହୁଳ ଶତକ । ନେପୋଲିୟନ୍ ବୋନାପାର୍ଟଙ୍କ ପରାଜୟ, ଭିଏନା କଂଗ୍ରେସ, ଶିଳ୍ପବିପ୍ଳବ, କାର୍ଲ ମାର୍କସଙ୍କ ନୂତନ ଭାବଧାରା, ଇଟାଲୀ ଓ ଜର୍ମାନୀର ରାଜନୀତିକ ଏକତ୍ରୀକରଣ ଏହି ଶତାବ୍ଦୀର ବଶିଷ୍ଟ ଘଟଣା । ତା'ଛଡ଼ା ଜାତୀୟତାବାଦର ବିକାଶ ଏବଂ ଆଫ୍ରିକାରେ ଔପନିବେଶିକବାଦର ପ୍ରସାର ଏହି ଶତାବ୍ଦୀର ସମୟ-ସୂଚୀରେ ୧୮୭୧ ମସିହା ଏକ ବିଭାଜକ ରେଖା ରୂପେ ଗୃହୀତ ହୁଏ; କାରଣ ଉକ୍ତ ବର୍ଷ ଜର୍ମାନ ସାମ୍ରାଜ୍ୟର ଜନ୍ମ ଗ୍ରହଣ ଫଳରେ ପରବର୍ତ୍ତୀ ପରିସ୍ଥିତି ଏବଂ ଘଟଣାମାନ ବହୁପରିମାଣରେ ପ୍ରଭାବିତ ହୋଇଥିଲା ।

୧୮୭୧ ମସିହାରେ ରାଷ୍ଟ୍ର ହିସାବରେ ଜର୍ମାନୀର ଆବିର୍ଭାବ ଯେ କେବଳ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ତା' ନୁହେଁ; ବିସମାର୍କଙ୍କ କୂଟନୀତି ବଳରେ ତାହା ଅପୂର୍ବ ଶକ୍ତିସମ୍ପନ୍ନ ହୋଇ ଆଗାମୀ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଇଉରୋପକୁ କୂଟନୀତି କ୍ଷେତ୍ରରେ ନିୟନ୍ତ୍ରଣ କଲା । ଏହି ଦୀର୍ଘକାଳ ଧରି ଇଉରୋପୀୟ ରାଜନୀତି ତଥା କୂଟନୀତିକୁ ପ୍ରଭାବିତ କଲା ବର୍ଲିନ ନଗରୀ । ସେଡାନ ରଣକ୍ଷେତ୍ରରେ ଫ୍ରାନ୍ସର ପରାଜୟ ଓ ଇଂଲଣ୍ଡର ଉଦାସୀନ ମନୋଭାବ ପାଇଁ ମହାଦେଶର ରାଜନୈତିକ ଭାରସାମ୍ୟ ନଷ୍ଟ ହୋଇଗଲା । ଜର୍ମାନୀକୁ ଏକତ୍ର କରିବା ପରେ 'ରକ୍ତପାତ ଓ ଲୌହନୀତି' ବିସମାର୍କ ପରିହାର କଲେ ସତ; କିନ୍ତୁ ଦୀର୍ଘ ୨୦ ବର୍ଷ କାଳ ତା'ର ଭାଗ୍ୟ-ବିଧାତା ହୋଇ ରହିଲେ । ରାଜତନ୍ତ୍ର ସରକାରର ସୁପ୍ରତିଷ୍ଠା, ଆଭ୍ୟନ୍ତରୀଣ କେତେକ ସମସ୍ୟାର ସମାଧାନ ଓ ମାତୃଭୂମିର ନିରାପତ୍ତା ପାଇଁ ନାନା ବ୍ୟବସ୍ଥା ତାଙ୍କୁ କରିବାକୁ ପଡ଼ିଥିଲା ।

## ଜର୍ମାନ ସାମ୍ରାଜ୍ୟର ସଙ୍ଗଠନ

## ( The Organisation of German Empire )

ଜର୍ମାନ ସାମ୍ରାଜ୍ୟର ସମ୍ବିଧାନ ଥିଲା ମୁଖ୍ୟତଃ ବିସମାର୍କଙ୍କର ସୃଷ୍ଟି ଏବଂ ସେ ଜଣେ ବିଚକ୍ଷଣ ରାଜନୀତିଜ୍ଞ, ତାହା ଏଥିରୁ ପ୍ରମାଣ ମିଳିଥିଲା । ଜର୍ମାନୀର ଏକତ୍ରୀକରଣ ସମୟରେ ଯେଉଁ ଶକ୍ତିଗୁଡ଼ିକ ସେଥିରେ ବାଧାଦେଇଥିଲେ, ସେମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ସେ ଜର୍ମାନୀକୁ ସ୍ୱଶାସିତ ରାଷ୍ଟ୍ରମାନଙ୍କର ଏକ ସଙ୍ଘରେ ପରିଣତ କଲେ

ସେମାନଙ୍କର ସ୍ୱାତନ୍ତ୍ର୍ୟକୁ କେତେକ ପରିମାଣରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସେ ସର୍ବଭୋଟାଧିକାର ଭିତ୍ତିରେ ନିର୍ବାଚିତ ନିମ୍ନତର (ଜନପ୍ରିୟ) ପ୍ରକୋଷ୍ଠ, ରିସ୍‌ଟାଗର ବ୍ୟବସ୍ଥା କରି ଉଦାରବାଦ ଓ ଗଣତନ୍ତ୍ରକୁ ମଧ୍ୟ କେତେକ ପରିମାଣରେ ସ୍ୱୀକାର କରିଥିଲେ; କିନ୍ତୁ ସାମ୍ରାଜ୍ୟ-ସରକାରଙ୍କର ଶକ୍ତିକୁ ଦୁର୍ବଳ କଲାଭଳି ସେ କୌଣସି ପଦକ୍ଷେପ ନେଇ ନ ଥିଲେ ।

ଛବିଶିଟି ରାଜ୍ୟକୁ ନେଇ ଜର୍ମାନ ସାମ୍ରାଜ୍ୟ ଗଠିତ ହୋଇଥିଲା । ପ୍ରତ୍ୟେକ ରାଜ୍ୟକୁ ଆଭ୍ୟନ୍ତରୀଣ ବ୍ୟାପାରରେ ସମ୍ପୂର୍ଣ୍ଣ ସ୍ୱାଧିକାର ମିଳିଥିଲା । କେନ୍ଦ୍ର ସରକାରଙ୍କ ପାଇଁ ସେମାନେ ମୁଖ୍ୟ କ୍ଷମତା ଛାଡ଼ିଦେଇଥିଲେ । କେନ୍ଦ୍ରରେ ଏକ ଦୁଇ ପ୍ରକୋଷ୍ଠବିଶିଷ୍ଟ ପାର୍ଲାମେଣ୍ଟ ଥିଲା । ନିମ୍ନତର ପ୍ରକୋଷ୍ଠକୁ ରିସ୍‌ଟାଗ ଏବଂ ଉଚ୍ଚତର ପ୍ରକୋଷ୍ଠକୁ ବୁନ୍ଦେସ୍‌ରାଥ୍ କୁହାଯାଉଥିଲା । ରିସ୍‌ଟାଗ ପାଇଁ ଜନସଂଖ୍ୟା ଭିତ୍ତିରେ ପ୍ରତିନିଧି ନିର୍ବାଚିତ ହେଉଥିଲେ । ସାର୍ବଜନୀନ ଭୋଟ ପ୍ରଥା ସାବାଳକ ଭିତ୍ତିରେ ପ୍ରଚଳିତ ଥିଲା । ବୁନ୍ଦେସ୍‌ରାଥ୍ ଥିଲା ଉଚ୍ଚତର ବା ଦ୍ୱିତୀୟ ପ୍ରକୋଷ୍ଠ । ସେଥିପାଇଁ ରାଜ୍ୟମାନଙ୍କରୁ ମୋଟ ୫୮ ଜଣ ପ୍ରତିନିଧି ନିର୍ବାଚିତ ହେଉଥିଲେ । ପ୍ରତ୍ୟେକ ରାଜ୍ୟର ପ୍ରତିନିଧିସଂଖ୍ୟା ଭିନ୍ନ; କିନ୍ତୁ ନିର୍ଦ୍ଦିଷ୍ଟ ଥିଲା । ପ୍ରୁସିଆରୁ ସତର, ବେଭେରିଆରୁ ସାତ, ସ୍ୟାକ୍‌ସେନି ଓ ଉଟେନ୍‌ବର୍ଗ ପ୍ରତ୍ୟେକରୁ ଚାରିଜଣ ଓ ଅବଶିଷ୍ଟ ରାଜ୍ୟମାନଙ୍କରୁ ଜଣେ ଲେଖାଏଁ ପ୍ରତିନିଧି ବୁନ୍ଦେସ୍‌ରାଥ୍‌କୁ ନିର୍ବାଚିତ ହେଉଥିଲେ । କେନ୍ଦ୍ର ସରକାରର ମୁଖ୍ୟ ଥିଲେ କାଇଜର (ସମ୍ରାଟ) । ତାଙ୍କ ଦ୍ୱାରା ଚାନ୍‌ସେଲର (ପ୍ରଧାନମନ୍ତ୍ରୀ) ନିଯୁକ୍ତ ହେଉଥିଲେ । ଚାନ୍‌ସେଲରଙ୍କ ଦସ୍ତଖତ ବିନା କୌଣସି ଆଇନ ବଳବତ୍ତର ହୋଇ ପାରୁ ନଥିଲା; କାରଣ ତଦ୍ୱାରା ଚାନ୍‌ସେଲର ପ୍ରତ୍ୟେକ ଆଇନ ପାଇଁ ଦାୟୀ ରହୁଥିଲେ । ତେବେ ଜର୍ମାନୀରେ ଗାଣତାନ୍ତ୍ରିକ ଦାୟିତ୍ୱବୋଧ ନେଇ ମନ୍ତ୍ରିପରିଷଦ ଭଳି କୌଣସି ବ୍ୟବସ୍ଥା ନଥିଲା । ଏହି ସଂବିଧାନ ବିସମାର୍କ ନିଜେ କରିଥିବାରୁ ସେ ନିଜକୁ ପ୍ରତିପତ୍ତିଶାଳୀ କରି ରଖିବା ସଙ୍ଗେ ସଙ୍ଗେ ପ୍ରୁସିଆର ପ୍ରାଧାନ୍ୟ ବଜାୟ ରଖିଥିଲେ । ସେ କହୁଥିଲେ, "ଆମ୍ଭେମାନେ ପ୍ରୁସୀୟ ଏବଂ ଆମ୍ଭେମାନେ ପ୍ରୁସୀୟ ହୋଇ ରହିବୁ ।" ସଂବିଧାନରେ ବିଚାର ବିଭାଗ ପାଇଁ ସୁପ୍ରିମ୍ କୋର୍ଟର ବ୍ୟବସ୍ଥା ଥିଲା ।

ଜର୍ମାନ ସାମ୍ରାଜ୍ୟରେ ପ୍ରୁସିଆର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା । ତାହାର ରାଜା ଜର୍ମାନୀର କାଇଜର (ସମ୍ରାଟ) ଥିଲେ । ତା'ର ଜନସଂଖ୍ୟା ଏତେ ଅଧିକ ଥିଲା ଯେ, ସେ ରିସ୍‌ଟାଗରେ ପ୍ରାଧାନ୍ୟ ବିସ୍ତାର କରିପାରିଥିଲା । ବୁନ୍ଦେସ୍‌ରାଥ୍‌ରେ ତା'ର ମୋଟେ ସତର ଜଣ ପ୍ରତିନିଧି ଥିଲେ ମଧ୍ୟ, କେତେକ ପଡ଼ୋଶୀ ଉତ୍ତର ଜର୍ମାନ ରାଜ୍ୟମାନଙ୍କରେ ତା'ର ପ୍ରଭାବ ଥିବାରୁ ଏବଂ ସଂବିଧାନ ସଂଶୋଧନ ବିରୁଦ୍ଧରେ ସେଥିରେ ଚଉଦଟି ଭୋଟ ପଡ଼ିଗଲେ, ଜର୍ମାନ ସଂବିଧାନ ସଂଶୋଧନ ହୋଇପାରିବ ନାହିଁ ବୋଲି ବ୍ୟବସ୍ଥା ଥିବାରୁ ପ୍ରୁସିଆ ତାକୁ ନିୟନ୍ତ୍ରଣ କରିବାକୁ ସକ୍ଷମ ହୋଇଥିଲା । ତା'ଛଡ଼ା ଏହି ବ୍ୟବସ୍ଥା ଫଳରେ ପ୍ରୁସିଆ ଜର୍ମାନୀରେ କୌଣସି ଆନ୍ଦୋଳନକୁ ଉଦାରନୀତିବାଦ ଦିଗରେ ଅଗ୍ରସର କରାଇ ନଦେବା ପାଇଁ ସୁଯୋଗ ପାଇଥିଲା ।

ବିସମାର୍କଙ୍କ ଦ୍ୱାରା ଯେଉଁ ଜର୍ମାନ ସାମ୍ରାଜ୍ୟ ଗଠିତ ହୋଇଥିଲା, ତାହା ଥିଲା ଏକ ଅର୍ଦ୍ଧ-ସ୍ୱୈରତନ୍ତ୍ର ( Semi-autocracy ) । ଜର୍ମାନ କାଇଜର ଅବାଧରେ ତାଙ୍କ ଚାନ୍ସେଲରଙ୍କୁ ନିଯୁକ୍ତ କରୁଥିଲେ ଏବଂ ଯେତେଦିନ ଯାଏ ତାଙ୍କୁ ରଖିବାକୁ ଚାହୁଁଥିଲେ, ସେ ରଖିପାରୁଥିଲେ । ରାଇସ୍‌ଷ୍ଟାଗର କୌଣସି କର୍ତ୍ତୃତ୍ୱ ଚାନ୍ସେଲରଙ୍କ ଉପରେ ନ ଥିଲା । କେବଳ କାଇଜର ତାଙ୍କୁ ପଦଚ୍ୟୁତ କରିବା କ୍ଷମତା ପାଇଥିଲେ । ଜର୍ମାନ ପାର୍ଲାମେଣ୍ଟର ଅତ୍ୟଧିକ କ୍ଷମତାଶାଳୀ ପ୍ରକୋଷ୍ଠ ଥିଲା ବୁନ୍ଦେସ୍‌ରାଥ୍ । ଏହି ପ୍ରକୋଷ୍ଠ ଜର୍ମାନୀର ବିଭିନ୍ନ ରାଜ୍ୟ ସରକାରମାନଙ୍କ ପ୍ରତିନିଧିବର୍ଗଙ୍କ ଦ୍ୱାରା ଗଠିତ ହୋଇଥିଲା ଏବଂ ଜର୍ମାନୀର ବିଭିନ୍ନ ରାଜ୍ୟଗୁଡ଼ିକୁ ନେଇ ଜର୍ମାନ ରାଷ୍ଟ୍ରସଂଘ ଗଢ଼ିଉଠିଥିଲା । ତିନୋଟି ସରକାର (ହ୍ୟାମ୍‌ବର୍ଗ, ବ୍ରେମେନ ଓ ଲ୍ୟୁବେକ୍)ଙ୍କ ବ୍ୟତୀତ ଅନ୍ୟ ସବୁ ସରକାର ରାଜତନ୍ତ୍ର ସରକାର ଥିଲେ । ଏହି ରାଜତନ୍ତ୍ର ସରକାରଗୁଡ଼ିକ ଉଦାରପନ୍ଥୀ ହୋଇ ନଥିବାରୁ, ବୁନ୍ଦେସରାଥ୍ ରକ୍ଷଣଶୀଳ ହେବା ଅତି ସ୍ୱାଭାବିକ ମନେହେଉଥିଲା ଏବଂ ଜାତୀୟ ପ୍ରଶ୍ନଗୁଡ଼ିକ ଉପରେ ପ୍ରୁସିଆକୁ ବିରୋଧ କରିବାର ସମ୍ଭାବନା ମଧ୍ୟ ନଥିଲା; କିନ୍ତୁ ରାଇସ୍‌ଷ୍ଟାଗ୍ ଦୁର୍ବଳ ବୋଲି ପ୍ରତ୍ୟକ୍ଷ ପ୍ରମାଣ ମିଳିଥିଲା । ପ୍ରଥମତଃ ସମସ୍ତ ଆଇନ ଆରମ୍ଭ ହେଉଥିଲା ବୁନ୍ଦେସ୍‌ରାଥ୍‌ରେ । ଦ୍ୱିତୀୟରେ ପୂର୍ବପ୍ରଚଳିତ କରଗୁଡ଼ିକ ରାଇଷ୍ଟାଗ୍‌ର ବିନା ମଞ୍ଜୁରିରେ ଆଦାୟ କରାଯାଉଥିବାରୁ ଏବଂ ସେନାବାହିନୀ ଓ ଅନ୍ୟ କେତେକଙ୍କ ପାଇଁ ବିନିଯୋଗ କରାଯାଉଥିବା ଅର୍ଥ ନିର୍ଦ୍ଦିଷ୍ଟ କାଳପାଇଁ ଭୋଟଦ୍ୱାରା ସ୍ୱୀକୃତ ଦିଆଯାଉଥିବାରୁ କରବସାଣ ଉପରେ ଏହାର ସମ୍ପୂର୍ଣ୍ଣ ଅଧିକାର ନଥିଲା । ତୃତୀୟରେ ସଂବିଧାନରେ ଦାୟିତ୍ୱସମ୍ପନ୍ନ ମନ୍ତ୍ରିମଣ୍ଡଳ ପାଇଁ ବ୍ୟବସ୍ଥା ନଥିବାରୁ ରାଇସ୍‌ଷ୍ଟାଗ ମନ୍ତ୍ରୀମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିପାରୁ ନଥିଲା । କିନ୍ତୁ ରାଇସ୍‌ଷ୍ଟାଗ୍‌ର ବୁନ୍ଦେସ୍‌ରାଥ୍‌ଦ୍ୱାରା ଉପସ୍ଥାପିତ ଯୋଜନାକୁ ଅଗ୍ରାହ୍ୟ କରିଦେବାର ଏବଂ ନୂତନ ଅର୍ଥ ବିନିଯୋଗ ବ୍ୟବସ୍ଥାକୁ ସମ୍ମତି ନ ଦେବାର କ୍ଷମତା ଥିଲା । ତେଣୁ ରାଇସ୍‌ଷ୍ଟାଗ୍‌ର କ୍ଷମତା ସୀମିତ କରାଯାଇଥିଲା । ଯଦି ରାଇସ୍‌ଷ୍ଟାଗ୍ ପ୍ରତିରୋଧକାରୀ ପ୍ରମାଣିତ ହୁଏ, ତାହାହେଲେ କାଇଜର ବୁନ୍ଦେସ୍‌ରାଥ୍‌ର ସମ୍ମତି ନେଇ ତାକୁ ଭାଙ୍ଗିଦେଇ ପାରିବେ ବୋଲି ବ୍ୟବସ୍ଥା ଥିଲା । ପାର୍ଲାମେଣ୍ଟକୁ ଭାଙ୍ଗିଦିଆଗଲା ପରେ ଏବଂ ନୂତନ ପାର୍ଲାମେଣ୍ଟ ଆହ୍ୱାନ କରିବା ପୂର୍ବରୁ ସରକାର ଏକ ସହଯୋଗୀ ପାର୍ଲାମେଣ୍ଟ ପାଇବା ଉଦ୍ଦେଶ୍ୟରେ ନିର୍ବାଚନମଣ୍ଡଳୀକୁ ପ୍ରଭାବିତ କରିବାପାଇଁ ତା'ର ପ୍ରତିନିଧିମାନଙ୍କୁ ନିଯୁକ୍ତ କରୁଥିଲା । ସୁତରାଂ କାଇଜର୍ ଚାନ୍ସେଲରଙ୍କୁ ଆମନ୍ତ୍ରଣ କରୁଥିଲାବେଳେ ଚାନ୍ସେଲର ବୁନ୍ଦେସ୍‌ରାଥ୍ (ଯାହାର ସେ ସଭାପତି)କୁ ଆମନ୍ତ୍ରଣ କରୁଥିଲେ ଏବଂ ବୁନ୍ଦେସ୍‌ରାଥ୍ କିନ୍ତୁ ରାଇସ୍‌ଷ୍ଟାଗ୍‌କୁ ସମ୍ପୂର୍ଣ୍ଣ ନିଷ୍ପ୍ରଭ କରିଦେଇଥିଲା ।

ପ୍ରକୃତରେ କହିବାକୁ ଗଲେ ଜର୍ମାନ ସରକାର ରାଜତନ୍ତ୍ର ଉପରେ ପ୍ରତିଷ୍ଠିତ ଥିଲା । ଅନେକଗୁଡ଼ିଏ ରାଜତନ୍ତ୍ରଶାସିତ ରାଜ୍ୟକୁ ନେଇ ଏହା ଗଠିତ ହୋଇଥିବାରୁ ସଂବିଧାନରେ ରାଜତନ୍ତ୍ରର ଛାପ ସୁସ୍ପଷ୍ଟ ଥିଲା । ପ୍ରତ୍ୟେକ ରାଜ୍ୟରେ (ତିନୋଟି ରାଜ୍ୟକୁ ବାଦ୍ ଦେଇ) ରାଜା

ଥିଲେ ଶାସନମୁଖ୍ୟ । ନିର୍ବାଚନ ଦ୍ୱାରା ପ୍ରତିନିଧି ସଭା ଗଠିତ ହେଉଥିଲେ ହେଁ ପ୍ରତିନିଧି-ମୂଳକ ଶାସନ ବ୍ୟବସ୍ଥା ବା ଦାୟିତ୍ୱଶୀଳ ସରକାର ଜର୍ମାନୀରେ ପ୍ରତିଷ୍ଠିତ ହୋଇପାରି ନଥିଲା । ବୈଦେଶିକ ବ୍ୟାପାର, ସ୍ଥଳସେନା, ନୌସେନା, ଡାକ ବିଭାଗ କେନ୍ଦ୍ର ସରକାରଙ୍କ ଅଧୀନରେ ଥିଲା । ରାଜ୍ୟମାନେ ନ୍ୟାୟ ଓ ମୁଦ୍ରା ପ୍ରଚଳନ ବ୍ୟବସ୍ଥା ଉପରେ କ୍ଷମତା ଲାଭ କରିଥିଲେ । ସାମରିକ ବ୍ୟାପାରରେ କାଇଜରଙ୍କ କ୍ଷମତା ଅସୀମ ଥିଲା । ସେ ସାମରିକ ଅଫିସରମାନଙ୍କୁ ନିଯୁକ୍ତ ଦେଉଥିଲେ । ତାଙ୍କ ଆଦେଶ ଅନୁସାରେ ସେନା-ବାହିନୀରେ ପ୍ରଶିକ୍ଷଣ ବ୍ୟବସ୍ଥା ଚାଲୁରହୁଥିଲା । ସୈନ୍ୟ ଓ ସାମରିକ ଅଫିସରମାନେ କାଇଜରଙ୍କ ପ୍ରତି ଅନୁରକ୍ତ ରହିବେ ବୋଲି ପ୍ରତିଜ୍ଞାବଦ୍ଧ ହେଉଥିଲେ । କାଇଜର ପ୍ରକୃତରେ ଥିଲେ ଅଖଣ୍ଡ କ୍ଷମତା ଓ ସମ୍ମାନର ଅଧିକାରୀ ।

ଜର୍ମାନୀରେ ରାଜତନ୍ତ୍ର ଓ ଗଣତନ୍ତ୍ରର ଏକ ଅପୂର୍ବ ସମ୍ମିଶ୍ରଣ ହୋଇଥିଲେ ମଧ୍ୟ ଦେଶ ଶାସନରେ ଜନମତର ପ୍ରଭାବ କିଛି ନଥିଲା; କାରଣ ଦେଶରେ ବ୍ୟକ୍ତିଗତ ସ୍ୱାଧୀନତା, ସଂବାଦପତ୍ର ସ୍ୱାଧୀନତା ବା ନାଗରିକମାନଙ୍କର ସାଂବିଧାନିକ ଅଧିକାର ବୋଲି କିଛି ନ ଥିଲା । ସେମାନେ କେବଳ ଆଜ୍ଞାବହ, ବିଶ୍ୱସ୍ତ, ଶୃଙ୍ଖଳିତ ନାଗରିକ ଥିଲେ । ଦେଶ ସକାଶେ ଆତ୍ମବଳୀ ଦେବା ପରମ କର୍ତ୍ତବ୍ୟ ରୂପେ ସ୍ୱୀକୃତ ହୋଇଥିଲା । ଶିକ୍ଷାନୁଷ୍ଠାନ, ଗୀର୍ଜା ଏବଂ ସମ୍ବାଦପତ୍ର ମାଧ୍ୟମରେ ଏହି ଶୃଙ୍ଖଳାଜ୍ଞାନ ପ୍ରଚାରିତ ହେଉଥିଲା ।

## ବିସ୍‌ମାର୍କଙ୍କ ଗୃହନୀତି ( The Home Policy of Bismarck )

ବିସ୍‌ମାର୍କ ୧୮୭୧ ମସିହାରୁ ୧୮୯୦ ମସିହା ପର୍ଯ୍ୟନ୍ତ ଜର୍ମାନ ସାମ୍ରାଜ୍ୟର ଚାନ୍‌ସେଲର ରୂପେ କାର୍ଯ୍ୟ ତୁଲାଇଥିଲେ । ଏହି ଦୀର୍ଘ ସମୟରେ ତାଙ୍କର ଗୃହ ଓ ବୈଦେଶିକ ନୀତିର ପୃଥକ୍ ପର୍ଯ୍ୟାଲୋଚନା ନିମ୍ନରେ ପ୍ରଦତ୍ତ ହେଲା ।

ଇଉରୋପରେ ଶକ୍ତିଶାଳୀ ରାଷ୍ଟ୍ରରୂପେ ଗଢ଼ିଉଠିବା ପାଇଁ ଜର୍ମାନୀକୁ ବିସମାର୍କଙ୍କ ନେତୃତ୍ୱ ବିଶେଷ ସାହାଯ୍ୟ କରିଥିଲା । ସେହିପରି ଭୌତିକ ସମୃଦ୍ଧି ମଧ୍ୟ ଅତୀବ ସହାୟକ ହୋଇଥିଲା । ଦେଶରେ ପ୍ରଚୁର ଖଣିଜ ପଦାର୍ଥ ଥିବାରୁ ଶିଳ୍ପବିକାଶ ସହଜ ହେଲା । ବୈଜ୍ଞାନିକମାନେ ଗବେଷଣାଲବ୍ଧ ଜ୍ଞାନକୁ ଶିଳ୍ପବିକାଶ ଦିଗରେ ବିନିଯୋଗ କରିଥିଲେ । ଶିଳ୍ପ-କାରଖାନା ସଂଖ୍ୟା ବଢ଼ିବାରୁ ଉତ୍ପାଦନ ବଢ଼ିଥିଲା ଏବଂ ତାହା ସହିତ ବାଣିଜ୍ୟର ଅପୂର୍ବ ପ୍ରସାର ମଧ୍ୟ ହୋଇଥିଲା । ରାସାୟନିକ ଓ ବୈଦ୍ୟୁତିକ ସାମଗ୍ରୀ ଉତ୍ପାଦନରେ ଜର୍ମାନୀର ସମକକ୍ଷ କେହି ନଥିଲେ । ଖେଳନା ଉତ୍ପାଦନ କ୍ଷେତ୍ରରେ ସେ ବିଶ୍ୱରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ବସ୍ତ୍ରୋତ୍ପାଦନରେ ସେ ଇଂଲଣ୍ଡ ସହିତ ସମାନ ହୋଇ ନ ପାରିଥିଲେ ମଧ୍ୟ ତା'ର ଇସ୍ପାତ୍ ଉତ୍ପାଦନ ଇଂଲଣ୍ଡର ପ୍ରାୟ ଦୁଇଗୁଣ ଥିଲା । ଜର୍ମାନୀର ହ୍ୟାମ୍‌ବର୍ଗ ବନ୍ଦରରେ ଏତେ କାରବାର ହେଲା ଯେ, ସେ ଇଉରୋପ ମହାଦେଶର ସବୁଠାରୁ ଅଧିକ

ସମୃଦ୍ଧିଶାଳୀ ବନ୍ଦର ରୂପେ ପରିଗଣିତ ହେଲା । ଜର୍ମାନୀ ପ୍ରକୃତରେ ଥିଲା ଇଉରୋପର କାରଖାନା । ସେଠାରେ ଶ୍ରମିକ-ସମସ୍ୟା ଆଦୌ ନଥିଲା; କାରଣ ଜର୍ମାନ ଶ୍ରମିକମାନଙ୍କର ଶୃଙ୍ଖଳାଜ୍ଞାନ ଥିବାରୁ ସେମାନଙ୍କୁ ସହଜରେ ଆୟତ୍ତ କରାଯାଇପାରୁଥିଲା । ଜର୍ମାନୀ-ନିର୍ମିତ ଦ୍ରବ୍ୟର ଆଦର ଓ ଚାହିଦା ସାରା ପୃଥିବୀରେ ବ୍ୟାପିଯାଇଥିଲା । ତା'ର ଏହି ଭୌତିକ ସମୃଦ୍ଧି ଫଳରେ ତା'ର ସୀମାରେଖା ମଧ୍ୟରେ ଦାରିଦ୍ର୍ୟ ପ୍ରାୟ ଲୋପପାଇ-ଯାଇଥିଲା ।

ଭୌତିକ ସମୃଦ୍ଧି ପ୍ରତି ବିସମାର୍କ ବିଶେଷ ଧ୍ୟାନ ଦେଇଥିଲେ । ସରକାର ଜାତିର ଅର୍ଥନୈତିକ ବିକାଶକୁ ତ୍ୱରାନ୍ୱିତ କରିଥିଲେ । ଜର୍ମାନୀର ରେଳପଥର ଉନ୍ନତି କରିବା ଉଦ୍ଦେଶ୍ୟରେ ସରକାର ତାକୁ ନିଜ ଅଧୀନରେ ରଖିଥିଲେ । ଏକ ଚମତ୍କାର ପଣ୍ୟବାହୀ ଜାହାଜ ନିର୍ମାଣ କରାଯାଇଥିଲା । ସରକାରୀ ଅର୍ଥ ସାହାଯ୍ୟରେ ଜର୍ମାନୀକୁ ପୃଥିବୀର ବିଭିନ୍ନ ଅଞ୍ଚଳ ସହିତ ନୌପଥ ଯୋଗେ ସଂଯୁକ୍ତ କରାଯାଇଥିଲା । ବ୍ୟାଙ୍କଗୁଡ଼ିକ ସରକାରଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା । ପ୍ରକୃତରେ ବିସ୍‌ମାର୍କ ବ୍ୟବସାୟ ବାଣିଜ୍ୟ, ବ୍ୟାଙ୍କ ପ୍ରଭୃତିର ସୁବ୍ୟବସ୍ଥା, ଦେଓୟାନୀ ଏବଂ ଫୌଜଦାରୀ ଆଇନ ପ୍ରବର୍ତ୍ତନ ପ୍ରଭୃତି ବହୁ ଉନ୍ନତି-ମୂଳକ କାର୍ଯ୍ୟ କରିଥିଲେ । ସେ ଅର୍ଥନୈତିକ ପରିଚାଳନା ବୁନ୍ଦେସ୍‌ରାଥ୍ ଉପରେ ନ୍ୟସ୍ତ କରିଥିଲେ । ସାମରିକ ଶକ୍ତିର ପୁନର୍ଗଠନ କରିଥିଲେ ।

ବିସ୍‌ମାର୍କ ମଧ୍ୟ ଶିକ୍ଷାର ଉନ୍ନତି ଓ ପ୍ରସାର ପ୍ରତି ଦୃଷ୍ଟି ଦେଇଥିଲେ । ପିଲାମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା କରିବା ସରକାରଙ୍କର ଲକ୍ଷ୍ୟ ଥିଲା ଏବଂ ପ୍ରତ୍ୟେକ ଛାତ୍ରର ସ୍ୱାସ୍ଥ୍ୟ ଏବଂ ମନ ପ୍ରତି ବିଶେଷ ଧ୍ୟାନ ଦିଆଯାଉଥିଲା । ଦେଶର ପ୍ରତ୍ୟେକ ଶିଶୁ ପାଇଁ ଅବୈତନିକ ଶିକ୍ଷା-ବ୍ୟବସ୍ଥା ଥିଲା । ଛ'ବର୍ଷରୁ ଚୌଦ ବର୍ଷ ବୟସ୍କ ବାଳକବାଳିକାଙ୍କ ପାଇଁ ମାଧ୍ୟମିକ ଶିକ୍ଷା ବାଧ୍ୟତାମୂଳକ ଥିଲା । ଛାତ୍ରମାନେ ଉତ୍ତମ ଏବଂ ସୁଚରିତ୍ର ନାଗରିକ ହେବା ପାଇଁ ସାମରିକ ଶିକ୍ଷା ମଧ୍ୟ ପାଉଥିଲେ । ଯୁବଗୋଷ୍ଠୀ ମଧ୍ୟରେ ଦେଶାତ୍ମବୋଧ, ଆତ୍ମନିର୍ଭର-ଶୀଳତା ଏବଂ ସାଧୁତା ଆଦି ଗୁଣର ବିକାଶ କରାଯାଇଥିଲା । ମହିଳାମାନେ କିପରି ସୁଗୃହିଣୀ ଓ ଆଦର୍ଶ ଜନନୀ ହେବେ, ସେ ଦିଗରେ ସରକାର ବ୍ୟବସ୍ଥା କରିଥିଲେ । ଜଣେ ଆମେରିକୀୟ ବିଦ୍ୟାର୍ଥୀ ଜର୍ମାନୀର ଶିକ୍ଷା ବିଷୟରେ ଯଥାର୍ଥରେ ଲେଖିଥିଲେ, "ଶିକ୍ଷାର ଚରମ ଲକ୍ଷ୍ୟ ହେଲା ଯେ ପ୍ରତ୍ୟେକ ବାଳକକୁ ଉତ୍ତମ ସୈନିକ ଏବଂ ଆତ୍ମନିର୍ଭରଶୀଳ ଓ କାମିକା ନାଗରିକ କରି ଗଢ଼ିବା ଏବଂ ପ୍ରତ୍ୟେକ ବାଳିକା ଆଦର୍ଶ ଗୃହିଣୀ ଓ ଜନନୀ ହେବା ।" ("The ultimate aim (of education) is that the boy shall be made a good soldier and a self-supporting and useful citizen and the girl shall become a model hausfrau and mother.") ବାଳକ ଓ ବାଳିକାମାନଙ୍କୁ ଶିକ୍ଷା ଦେବାପାଇଁ ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ମଧ୍ୟରୁ ସାବଧାନତାର ସହିତ ଶିକ୍ଷକମାନଙ୍କୁ ବଚ୍ଛାଯାଉଥିଲା । କାଇଜର୍‌ଙ୍କ ପ୍ରତି ଅନୁରକ୍ତ

ରହିବା ପାଇଁ ପିଲାମାନଙ୍କୁ ପ୍ରଥମରୁ ଶିକ୍ଷାଦେବାକୁ ପଡ଼ୁଥିଲା । ଜର୍ମାନ ଶାସନ-ବ୍ୟବସ୍ଥାର ବିଶେଷତ୍ୱ ହେଲା ଅତ୍ୟଧିକ ଶୃଙ୍ଖଳା ଏବଂ ନିୟମାନୁବର୍ତ୍ତିତା । ସେ ଯାହାହେଉ, ପରନ୍ତୁ ରାଷ୍ଟ୍ର ପ୍ରତି ସମ୍ମାନ ପ୍ରଦର୍ଶନ ଓ କର୍ତ୍ତବ୍ୟବୋଧରେ ଜର୍ମାନମାନଙ୍କ ପରି କେହି ନଥିଲେ । ବଳିଷ୍ଠ ନେତୃତ୍ୱ ଓ ରାଜନୀତିକ ସ୍ଥିରତା ଦେଇ ବିସ୍‌ମାର୍କ ଏକ ମହାନ୍ ଜର୍ମାନ ଜାତି ଗଢ଼ିପାରିଥିଲେ ।

ତେବେ ଜର୍ମାନୀର ଆଭ୍ୟନ୍ତରୀଣ ବ୍ୟାପାରରେ ବିସ୍‌ମାର୍କ କେତେକ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ସେହି ସମସ୍ୟାମାନଙ୍କ ମଧ୍ୟରୁ ଅଣଜର୍ମାନ ଜାତିଗୁଡ଼ିକ ମଧ୍ୟରେ ଜାତୀୟ ଜାଗରଣ, କ୍ୟାଥଲିକ ଏବଂ ସମାଜବାଦୀମାନଙ୍କ ସରକାରବିରୋଧୀ ମନୋଭାବ ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ବିସ୍‌ମାର୍କ ଜର୍ମାନୀରେ ବସବାସ କରି ରହିଥିବା ଅଣଜର୍ମାନ ଜାତିଗୁଡ଼ିକୁ ଜର୍ମାନ ଜାତିରେ ସାମିଲ୍ କରିଦେଇ ସେମାନଙ୍କର ଜାତୀୟତା ନଷ୍ଟ କରିଦେବା ପାଇଁ ଉଦ୍ୟମ କରିଥିଲେ; କିନ୍ତୁ ସେମାନେ ତାହାର ପ୍ରବଳ ପ୍ରତିରୋଧ କରିଥିଲେ । ଫଳରେ ତାଙ୍କର ଉଦ୍ୟମ ବିଫଳ ହୋଇଥିଲା । କ୍ୟାଥଲିକ୍ ଏବଂ ସମାଜବାଦୀମାନଙ୍କ ପ୍ରତି ବିସ୍‌ମାର୍କ ଶତ୍ରୁଭାବାପନ୍ନ ଥିଲେ । ସେ ଉଭୟଙ୍କୁ ଜର୍ମାନ ରାଷ୍ଟ୍ରର ବୈରୀ ବୋଲି ବିଚାରିଥିଲେ । ସେମାନଙ୍କୁ ଦମନ କରିବାପାଇଁ କଠୋର ଆଇନ୍‌ମାନ ପ୍ରବର୍ତ୍ତନ କରିଥିଲେ; କିନ୍ତୁ ବିଫଳ-ମନୋରଥ ହୋଇଥିଲେ । ତାଙ୍କର ପୁଣି ହୃଦ୍‌ବୋଧ ହେଲା ଯେ, ଜର୍ମାନ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ନିରାପତ୍ତା ପ୍ରତି କ୍ୟାଥ୍‌ଲିକମାନଙ୍କ ଅପେକ୍ଷା ସମାଜବାଦୀମାନେ ଅଧିକ ବିପଜ୍ଜନକ । ତେଣୁ ସେ ସମାଜବାଦୀମାନଙ୍କୁ ନିର୍ମୂଳ କରିଦେବାକୁ ମନସ୍ଥ କରି କ୍ୟାଥ୍‌ଲିକମାନଙ୍କ ସହିତ ଆପୋଷ-ମୀମାଂସା କରିଥିଲେ; କିନ୍ତୁ ସେଥିରେ ମଧ୍ୟ ସେ ସମ୍ପୂର୍ଣ୍ଣ ସାଫଲ୍ୟ ଅର୍ଜନ କରିପାରି ନଥିଲେ ।

ଜର୍ମାନ ସାମ୍ରାଜ୍ୟର ପ୍ରାନ୍ତଭାଗମାନଙ୍କରେ ବିଭିନ୍ନ ବିଜାତି ଜାତିଗୁଡ଼ିକ ବସବାସ କରି ରହିଥିଲେ । ସେମାନଙ୍କ ପ୍ରତି ବିସ୍‌ମାର୍କ ବୈମାତୃକଭାବ ପ୍ରଦର୍ଶନ କରିଥିଲେ । ସେମାନଙ୍କ ପ୍ରତି ଦୁର୍ବ୍ୟବହାର କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଜାତୀୟତା ନଷ୍ଟ କରିଦେବାପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ଅଣଜର୍ମାନ ଜାତିଗୁଡ଼ିକ ଜର୍ମାନ ସାମ୍ରାଜ୍ୟରେ ସେମାନଙ୍କର ସ୍ଥାନ ଅତି ନ୍ୟୂନ ବୋଲି ଉପଲବ୍ଧି କରି ଜର୍ମାନ ସରକାରଙ୍କ ପ୍ରତି ଘୃଣାଭାବ ପୋଷଣ କରିଥିଲେ । ଏହି ଅଣଜର୍ମାନ ଜାତିଗୁଡ଼ିକ ହେଲେ ସ୍ଲେସ୍‌ଭିଗ୍‌ର ଡେନ୍‌ମାନେ, ପୂର୍ବ ପ୍ରୁସିଆର ପୋଲ୍‌ମାନେ ଏବଂ ଆଲ୍‌ସେସ୍-ଲୋରେଇନ୍‌ର ଫରାସୀମାନେ । ଡେନ୍‌ମାନେ ସ୍ଲେସ୍‌ଭିଗ୍ ଡେନ୍‌ମାର୍କକୁ ଫେରେଇଦେବା ପାଇଁ ଦାବି କରିଥିଲେ; କିନ୍ତୁ ସେମାନଙ୍କର ସଂଖ୍ୟା ଏତେ ଅଳ୍ପ ଯେ, ସେମାନେ ଜର୍ମାନ ସରକାରଙ୍କ ଉପରେ ବିଶେଷ କିଛି ପ୍ରଭାବ ପକାଇପାରି ନଥିଲେ । ଆଲ୍‌ସେସ୍-ଲୋରେନ୍‌ର ଫରାସୀ ଭାଷାଭାଷୀ ଲୋକମାନେ ଜର୍ମାନୀ ସହିତ ସେମାନଙ୍କର ପ୍ରଦେଶ, ଆଲ୍‌ସେସ୍-ଲୋରେଇନ୍‌ର ମିଶ୍ରଣକୁ ଚୂଡ଼ାନ୍ତ ବୋଲି ଗ୍ରହଣ କରିବାକୁ ରାଜି ନଥିଲେ ଏବଂ ସେମାନଙ୍କୁ ଜର୍ମାନ

ଜାତି ସହିତ ଜବରଦସ୍ତ ସାମିଲ୍ କରିଦେବା ଉଦ୍ୟମର ତୀବ୍ର ପ୍ରତିରୋଧ କରିଥିଲେ । ପୋଲ୍‌ମାନଙ୍କୁ ଅସ୍ୱତ୍ୱାଧୀନ କରିବା ସବୁଠାରୁ କଠିନ ଥିଲା । ବିସମାର୍କ ପୋଲ୍‌ମାନଙ୍କର ସାର୍ବଜନୀକ ବିଦ୍ୟାଳୟ (Public Schools)ମାନଙ୍କରେ ଜର୍ମାନ୍ ଭାଷା ଜୋର୍‌କରି ପ୍ରଚଳନ କରାଇ ଏବଂ ପୋଲ୍ ଇଲାକାଗୁଡ଼ିକୁ ଜର୍ମାନ ଉପନିବେଶରେ ପରିଣତ କରିବା ଉଦ୍ଦେଶ୍ୟରେ ଜର୍ମାନ କୃଷକମାନଙ୍କୁ ସେଗୁଡ଼ିକରେ ବସବାସ କରି ରହିବାପାଇଁ ପଠାଇ, ପୋଲ୍ ଜାତି ଓ ଭାଷାକୁ ଲୋପ କରିଦେବାକୁ ଉଦ୍ୟମ କରିଥିଲେ । କିନ୍ତୁ ପୋଲ୍‌ମାନେ ଏଥିରେ ଦବି ନଯାଇ, ସେମାନଙ୍କର ଅଞ୍ଚଳ ଓ ଭାଷାକୁ ରକ୍ଷାକରିବା ପାଇଁ ଜର୍ମାନ ସରକାର ବିରୁଦ୍ଧରେ ଦୃଢ଼ ସଂଗ୍ରାମ ଚଳାଇଥିଲେ । ଫଳରେ ବିସମାର୍କଙ୍କର ଉଦ୍ୟମ ବିଫଳ ହୋଇଥିଲା ।

ତେଣୁ ବିସମାର୍କ ଅଣଜର୍ମାନ ଜାତିଗୁଡ଼ିକର ଜାତୀୟତାକୁ ନଷ୍ଟକରିଦେବା ପାଇଁ ଯେଉଁ ଉଦ୍ୟମ କରିଥିଲେ, ତାହାର ଫଳ ବିପରୀତ ହେଲା । ସେମାନଙ୍କର ଜାତୀୟତା ନଷ୍ଟହେବା ପରିବର୍ତ୍ତେ ସେମାନଙ୍କ ମଧ୍ୟରେ ଜାତୀୟ ଚେତନା ବୃଦ୍ଧି ପାଇଲା ଏବଂ ସେମାନେ ବିସମାର୍କଙ୍କର ଉଦ୍ୟମର ତୀବ୍ର ପ୍ରତିରୋଧ କଲେ । ଫଳରେ ତାଙ୍କର ସମସ୍ତ ଉଦ୍ୟମ ପଣ୍ଡ ହୋଇଗଲା ।

୧୮୭୧ ମସିହା ପରେ ପରେ ଜର୍ମାନ ରାଷ୍ଟ୍ର ଆଉ ଏକ ସଙ୍କଟର ସମ୍ମୁଖୀନ ହୋଇଥିଲା । ଜର୍ମାନୀର ରୋମାନ୍ କ୍ୟାଥଲିକ୍‌ମାନେ ପ୍ରୋଟେଷ୍ଟାଣ୍ଟ-ପ୍ରୁସିଆ ଆଧିପତ୍ୟ କରୁଥିବା ଜର୍ମାନ ରାଷ୍ଟ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ଜର୍ମାନ ରାଷ୍ଟ୍ର ଓ ରୋମାନ୍ କ୍ୟାଥଲିକ୍‌ମାନଙ୍କ ମଧ୍ୟରେ ବିରାଟ କଳହ ଉପୁଜିଥିଲା । କ୍ୟାଥଲିକ୍‌ମାନେ ଜର୍ମାନ ସାମ୍ରାଜ୍ୟର ଦୃଢ଼ୀକରଣ ବାଟରେ ଅନ୍ତରାୟ ସୃଷ୍ଟି କରୁଥିବାରୁ, ସେମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ବିସମାର୍କଙ୍କୁ ଦୀର୍ଘଦିନ ଧରି ସେମାନଙ୍କ ସହିତ ସଂଗ୍ରାମ ଚଳାଇବାକୁ ପଡ଼ିଥିଲା । ଜର୍ମାନ ରାଷ୍ଟ୍ର ଏବଂ କ୍ୟାଥଲିକଙ୍କ ମଧ୍ୟରେ ଯେଉଁ ସଂଗ୍ରାମ ଚାଲିଥିଲା, ତାକୁ କୁଲଟୁର କାମ୍ପ୍ (Kultur Kampf) ବା ସଂସ୍କୃତି ସୁରକ୍ଷା ପାଇଁ ସଂଗ୍ରାମ (Struggle for Civilisation) କୁହାଯାଏ । ଏହି ସଂଗ୍ରାମ ବିସମାର୍କଙ୍କୁ ବହୁ ଅସୁବିଧାର ସମ୍ମୁଖୀନ କରାଇଥିଲା । ୧୮୬୬ ମସିହା ଓ ୧୮୭୦ ମସିହାରେ ଯଥାକ୍ରମେ ଅଷ୍ଟ୍ରିୟା ଓ ଫ୍ରାନ୍ସ ଜର୍ମାନୀ ଦ୍ୱାରା ଯୁଦ୍ଧରେ ପରାସ୍ତ ହେବା ଦ୍ୱାରା କ୍ୟାଥଲିକ୍‌ମାନଙ୍କୁ ଘୋର ଅପମାନ ହୋଇଥିଲା; କାରଣ ଅଷ୍ଟ୍ରିୟା ଏବଂ ଫ୍ରାନ୍ସ ଉଭୟେ କ୍ୟାଥଲିକ୍ ଶକ୍ତି ହୋଇଥିବାରୁ ସେମାନଙ୍କର ପରାଜୟ କ୍ୟାଥଲିକ୍‌ମାନଙ୍କର ପରାଜୟ ରୂପେ ସ୍ୱୀକୃତ ହୋଇଥିଲା । ତା'ଛଡ଼ା ୧୮୭୦ରେ ରୋମ୍ ନଗରୀରୁ ପୋପ୍‌ଙ୍କ ରାଜନୀତିକ କର୍ତ୍ତୃତ୍ୱ ଲୋପ ପାଇବା ସଙ୍ଗେ ସଙ୍ଗେ ତାଙ୍କର ପ୍ରତିପତ୍ତି କ୍ଷୁଣ୍ଣ ହେବାରୁ କ୍ୟାଥଲିକ୍‌ମାନେ ବିଶେଷ ଦୁଃଖିତ ହୋଇଥିଲେ । ଜର୍ମାନରେ ରହିଥିବା କ୍ୟାଥଲିକ୍‌ମାନେ 'କେନ୍ଦ୍ର' (Centre) ନାମକ ଏକ ରାଜନୀତିକ ଦଳ ଗଠନ କରିଥିଲେ । ପୋପ୍‌ଙ୍କ ରାଜନୀତିକ କ୍ଷମତାର ପୁନରୁଦ୍ଧାର ଓ କ୍ୟାଥଲିକ୍ ଗୀର୍ଜା

(Church)ର ସ୍ୱାର୍ଥରକ୍ଷା ଏହି ଦଳର ଲକ୍ଷ୍ୟ ଥିଲା । ପ୍ରଥମ ନିର୍ବାଚନରେ 'କେନ୍ଦ୍ର' ଦଳ ରିସ୍ଷ୍ଟାଗ୍ ପାଇଁ ୬୩ଟି ପ୍ରତିନିଧି ଆସନ ଲାଭ କରିଥିଲା । ଏପରି ଏକ ଧର୍ମସଂସ୍ଥା ରାଜନୀତିରେ ଭାଗନେବା, ବିଶେଷତଃ ଜର୍ମାନ ପାର୍ଲାମେଣ୍ଟରେ ପ୍ରଭାବଶାଳୀ ଗୋଷ୍ଠୀରୂପେ ବଢ଼ିବା ବିସମାର୍କଙ୍କୁ ପସନ୍ଦ ହେଲା ନାହିଁ । ତାଙ୍କ ମତରେ ଧର୍ମ, ରାଜନୀତିଠାରୁ ଦୂରରେ ରହିବା ଉଚିତ । ତା'ଛଡ଼ା ସରକାରୀ କ୍ଷେତ୍ରରେ ଧର୍ମର ଅଯଥା ହସ୍ତକ୍ଷେପକୁ ସେ ବରଦାସ୍ତ କରିପାରୁ ନଥିଲେ ।

'କେନ୍ଦ୍ର' ଦଳ କ୍ରମଶଃ ରିସ୍ଷ୍ଟାଗରେ ସଂଖ୍ୟା ବୃଦ୍ଧି କରିବାରୁ ବିସମାର୍କ ଘୋର ଅସନ୍ତୁଷ୍ଟ ହୋଇଥିଲେ । ତିନିବର୍ଷ ଭିତରେ ଉକ୍ତ ଦଳର ପ୍ରତିନିଧିସଂଖ୍ୟା ୧୦୦କୁ ବୃଦ୍ଧି ପାଇଥିଲା । ସେମାନେ ଅଷ୍ଟ୍ରିୟାର ଅଶି ଲକ୍ଷ କ୍ୟାଥଲିକଙ୍କୁ ଜର୍ମାନୀର ନାଗରିକ ରୂପେ ସ୍ୱୀକାର କରିବାକୁ ଓ ଜର୍ମାନୀର ପ୍ରୋଟେଷ୍ଟାଣ୍ଟ ରାଜବଂଶ ପରିବର୍ତ୍ତେ କ୍ୟାଥଲିକ ରାଜବଂଶ ପ୍ରତିଷ୍ଠା କରିବାକୁ ଦାବି କରିବାରୁ ବିସମାର୍କଙ୍କ ନୀତିର ବିରୋଧ ହେଲା । ଫଳରେ ସରକାର ଓ କ୍ୟାଥଲିକ୍ 'କେନ୍ଦ୍ର' ଦଳ ମଧ୍ୟରେ ତୁମୁଳ ବିବାଦ ଆରମ୍ଭ ହେଲା । ପୋପ୍ ମଧ୍ୟ ଏହି ବିବାଦର ସୁଯୋଗ ନେଇ ନିଜ କ୍ଷମତା ବିସ୍ତାର କରିବାକୁ ଚାହିଁଲେ । ଧର୍ମକ୍ଷେତ୍ରରେ ରୋମାନ କ୍ୟାଥଲିକମାନେ ପୋପ୍‌ଙ୍କୁ ସର୍ବୋମୟ କର୍ତ୍ତାରୂପେ ସ୍ୱୀକାର କରନ୍ତି । ତେବେ ପୋପ୍ ଏବଂ ଜର୍ମାନ ସମ୍ରାଟଙ୍କ ମଧ୍ୟରୁ କାହାର ଆଦେଶ ବା ଅନୁରୋଧ ପ୍ରତି ଜର୍ମାନୀର ନାଗରିକ ଭାବରେ ସେମାନେ ଅନୁରକ୍ତ ଦେଖାଇବେ, ତାହା ସେମାନଙ୍କ ପାଇଁ ଏକ ସମସ୍ୟା ସୃଷ୍ଟି କଲା । ବିସମାର୍କ ଚାହୁଁନଥିଲେ କାଇଜର୍‌ଙ୍କୁ ନ୍ୟୂନ ଆସନ ଦେଇ ପୋପ୍‌ଙ୍କୁ ଉଚ୍ଚାସନ ଦେବାକୁ । ସରକାରୀ କ୍ଷେତ୍ରରେ ଓ ଦେଶଭକ୍ତି ଦୃଷ୍ଟିରୁ ଶୃଙ୍ଖଳିତ ନାଗରିକମାନେ କେବଳ କାଇଜରଙ୍କୁ ସମ୍ମାନ ଦେବା ଉଚିତ ବୋଲି ତାଙ୍କର ଥିଲା ଅଭିମତ । ପୋପ୍ ଜଣେ ବାହାର ଲୋକ ଏବଂ ତାଙ୍କର ନିର୍ଦ୍ଦେଶ ଜର୍ମାନୀର ଆଭ୍ୟନ୍ତରୀଣ କ୍ଷେତ୍ରରେ ପ୍ରଭାବ ବିସ୍ତାର କରିବା ଅନୁଚିତ ବୋଲି ମଧ୍ୟ ସେ ମତ ପ୍ରକାଶ କରିଥିଲେ ।

ଏହି ସମୟରେ ଜର୍ମାନୀର କ୍ୟାଥଲିକ୍‌ମାନଙ୍କ ମଧ୍ୟରେ ଏକ କନ୍ଦଳ ଆରମ୍ଭ ହେଲା । ୧୮୭୦ ମସିହାରେ ପୋପ୍‌ଙ୍କ କର୍ତ୍ତୃତ୍ୱ ସମ୍ପର୍କୀୟ ଘୋଷଣାକୁ ଜର୍ମାନ ବିଶପ୍‌ମାନେ ଗ୍ରହଣ କରିପାରିଲେନାହିଁ; କିନ୍ତୁ ଅନୁରକ୍ତ କ୍ୟାଥଲିକ୍ ଭାବରେ ତାହା ଅମାନ୍ୟ କରିବା ମଧ୍ୟ କଠିନ ଥିଲା । ଅଧିକାଂଶ ବିଶପ୍ ଉକ୍ତ ଘୋଷଣାକୁ ଗ୍ରହଣକଲେ ଏବଂ ଆଉ କେତେକ କଲେନାହିଁ । କ୍ୟାଥଲିକ୍ ଗୋଷ୍ଠୀରେ ଏହା ଏକ ବିଭେଦ ସୃଷ୍ଟି କଲା । ଯେଉଁମାନେ ଘୋଷଣାକୁ ସ୍ୱୀକାର କଲେ, ସେମାନେ ଚାହିଁଲେ ଯେ ଘୋଷଣାକୁ ସ୍ୱୀକାର କରିନଥିବା ବିଶପ୍‌ମାନଙ୍କୁ ବିଶ୍ୱବିଦ୍ୟାଳୟ ଏବଂ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନଙ୍କରୁ ବହିଷ୍କାର କରାଯାଉ; କିନ୍ତୁ ବିସମାର୍କ ଏପରି ଦାବିକୁ ଅନୁମୋଦନ କଲେ ନାହିଁ । ଫଳରେ କଳହ ବ୍ୟାପକ ହୋଇ ଜର୍ମାନ କ୍ୟାଥଲିକ୍‌ମାନଙ୍କର ଧର୍ମଜୀବନରେ ନାନା ବିଭ୍ରାଟ ସୃଷ୍ଟି କଲା ।

କ୍ୟାଥଲିକ୍‌ମାନେ ଜର୍ମାନୀରେ କୌଣସି ପ୍ରକାର କର୍ତ୍ତୃତ୍ୱ ପ୍ରତିଷ୍ଠା କରିବା ବିସମାର୍କ ଚାହୁଁନଥିଲେ । ତେଣୁ ୧୮୭୨ ମସିହାରେ ତାଙ୍କ ନିର୍ଦ୍ଦେଶରେ ପାର୍ଲାମେଣ୍ଟରେ କେତେକ

ଆଇନ ପାସ୍ ହେଲା । ଏହି ଆଇନବଳରେ କ୍ୟାଥଲିକ୍‌ମାନେ ଶିକ୍ଷାଦାନରୁ ବଞ୍ଚିତ ହେଲେ । ଉଗ୍ରପନ୍ଥୀ ଯେସୁଇଟ୍‌ମାନଙ୍କୁ ଜର୍ମାନୀରୁ ବହିଷ୍କାର ଆଦେଶ ଦିଆଗଲା । ୧୮୭୩ ମସିହା, ୧୮୭୪ ମସିହା ଏବଂ ୧୮୭୫ ମସିହାରେ ଅନେକଗୁଡ଼ିଏ 'ମେ' ଆଇନ' (May Laws) ପାସ୍ ହେଲା । ଏହାଫଳରେ ଜର୍ମାନ ସମ୍ରାଟ ଶିକ୍ଷାକ୍ଷେତ୍ରରେ ଓ ଖ୍ରୀଷ୍ଟିୟାନ ଧର୍ମଯାଜକ ନିଯୁକ୍ତି କ୍ଷେତ୍ରରେ ପୂର୍ଣ୍ଣ କ୍ଷମତା ପାଇଲେ । ସେ ଦେଶରେ ପୋପ୍‌ଙ୍କର ପ୍ରାଧାନ୍ୟ ଲୋପପାଇଲା । ସରକାରଙ୍କ ଅଧୀନରେ ଦେଶର ଧର୍ମବ୍ୟବସ୍ଥା ପରିଚାଳିତ ହେବାରୁ ନାଗରିକମାନଙ୍କ ପାଇଁ କେବଳ ସମ୍ରାଟ ଏକମାତ୍ର କର୍ତ୍ତାରୂପେ ପ୍ରତିଷ୍ଠିତ ହେଲେ । ସରକାରୀ କ୍ଷେତ୍ରରେ କୌଣସି ହସ୍ତକ୍ଷେପ କରିବାପାଇଁ କ୍ୟାଥଲିକ୍‌ମାନଙ୍କୁ ବାରଣ କରାଗଲା । ଏପରିକି ଧର୍ମକ୍ଷେତ୍ରରେ ମଧ୍ୟ ବହିଷ୍କାର ଆଦେଶ ଦେବାର କ୍ଷମତା ଚର୍ଚ୍ଚ ହାତରୁ ସରକାର କାଢ଼ିନେଲେ । ଧର୍ମଯାଜକମାନଙ୍କ ପାଇଁ ବାଧ୍ୟବାଧକ ପରୀକ୍ଷା ବ୍ୟବସ୍ଥା ହେଲା । ସାଧାରଣଜ୍ଞାନ ଓ ଧର୍ମଦର୍ଶନ ପରୀକ୍ଷାରେ କୃତିତ୍ୱ ହାସଲ କଲେ ଧର୍ମଯାଜକ-ଭାବରେ ସରକାରୀ ନିଯୁକ୍ତି ମିଳିଲା । ଧର୍ମଯାଜକମାନଙ୍କୁ ବିବାହ କରିବାପାଇଁ ବାଧ୍ୟ କରାଗଲା ।

ଏହିସବୁ ଆଇନ ବ୍ୟବସ୍ଥା ଫଳରେ କ୍ୟାଥଲିକ୍ ସମ୍ପ୍ରଦାୟ ବଡ଼ ଉତ୍ତ୍ୟକ୍ତ ହୋଇ-ପଡ଼ିଲେ । ଆଇନକୁ ଅସିଦ୍ଧ ଓ ଅନ୍ୟାୟ ବୋଲି ପୋପ୍ ଘୋଷଣା କଲେ ଏବଂ କେତେକ ଧର୍ମଯାଜକ ତାହା ଅମାନ୍ୟ ମଧ୍ୟ କଲେ । ସରକାର ତେଣୁ ବାଧ୍ୟହୋଇ କଠୋର ନୀତି ଅବଲମ୍ବନ କରିଥିଲେ । ଆଇନ-ଅମାନ୍ୟକାରୀ ଧର୍ମଯାଜକମାନଙ୍କ ଉପରେ ଜୋରିମାନା, ଗିରଫ, ଦରମାବନ୍ଦ, ବହିଷ୍କାର ଆଦି ନାନାପ୍ରକାର ଦଣ୍ଡବିଧାନ ହେଲା । ପୋପ୍‌ଙ୍କ ସହିତ ସମସ୍ତ କୂଟନୀତିକ ସମ୍ପର୍କ ସରକାର ଛିନ୍ନକଲେ ।

ଏହି କଳହ ଦେଶର ବିଭିନ୍ନ ସ୍ତରରେ ବ୍ୟାପିଲା ଏବଂ ଜର୍ମାନୀର ରାଜନୀତିକ-ଜୀବନକୁ ବହୁବର୍ଷ ଧରି ପ୍ରଭାବିତ କଲା । ୧୮୭୭ ମସିହାର ନିର୍ବାଚନରେ 'କେନ୍ଦ୍ର' ଦଳ ରିସ୍‌ଷ୍ଟାଗ୍‌ରେ ସଂଖ୍ୟାଧିକ ଆସନ ଲାଭକଲେ । ତହିଁରୁ ସ୍ପଷ୍ଟହେଲା ଯେ ବିସମାର୍କଙ୍କ ନୀତି ଦେଶରେ ଆଦୃତ ହୋଇନାହିଁ । ଠିକ୍ ଏ ସମୟରେ ଅର୍ଥନୀତି କ୍ଷେତ୍ରରେ କେତେକ ନୂତନ ସମସ୍ୟା ମୁଣ୍ଡଟେକିଲା । ତାହାର ମୁକାବିଲା ପାଇଁ ସରକାରଙ୍କୁ କ୍ୟାଥଲିକ୍‌ମାନଙ୍କ ସହ ବୃଥା କଳହରେ ସମୟ ଓ ଶକ୍ତି କ୍ଷୟକରିବା ଉଚିତ ମନେହେଲାନାହିଁ । ୧୮୭୮ ମସିହାରେ ପୋପ୍ ନବମ ପାୟୁସ ଇହଲୀଳା ସମ୍ବରଣ କରିବାରୁ ତ୍ରୟୋଦଶ ଲିଓ ନୂତନ ପୋପ୍ ଭାବରେ ଅଭିଷିକ୍ତ ହେଲେ । ସେ ଜର୍ମାନ ସରକାର ସହ ସାଲିସ ରାଜିନାମା ପାଇଁ ପ୍ରସ୍ତୁତ ଥିଲେ । ଜର୍ମାନ ସରକାର ମଧ୍ୟ ଏହି ସାଲିସ ରାଜିନାମା ଚାହିଁଥିଲେ । କାରଣ ବିସମାର୍କ ଦେଖିଲେ, କ୍ୟାଥଲିକ୍‌ମାନେ ଏତେ ଶକ୍ତିଶାଳୀ ଯେ ସେମାନଙ୍କୁ ଦମନକରିବା ସମ୍ଭବ ନୁହେଁ । ତା'ଛଡ଼ା ସେ କ୍ୟାଥଲିକ୍‌ମାନଙ୍କର ସମାଜ-ବାଦୀମାନଙ୍କ ସହିତ ମିଳନକୁ ଭୟକରୁଥିଲେ । ସେ ପ୍ରକୃତରେ କ୍ୟାଥଲିକ୍‌ମାନଙ୍କ

ଅପେକ୍ଷା ସମାଜବାଦୀମାନଙ୍କୁ ଅଧିକ ବିପଜ୍ଜନକ ଶତ୍ରୁ ବୋଲି ମନେକରୁଥିବାରୁ ସେମାନଙ୍କୁ ଧ୍ୱଂସକରିବା ଉଦ୍ଦେଶ୍ୟରେ କ୍ୟାଥଲିକ୍‌ମାନଙ୍କର ସାହାଯ୍ୟ ଓ ସମର୍ଥନ ଲୋଡ଼ୁଥିଲେ । ଉଭୟ ପକ୍ଷର ସମ୍ମତି ଥିବାରୁ ସାଲିସ ରାଜିନାମା ହୋଇଥିଲା । ଫଳରେ କ୍ୟାଥଲିକ୍ ବିରୋଧୀ 'ମେ' ଆଇନ' ଗୁଡ଼ିକ ଉଠାଇଦିଆଗଲା । କେବଳ ଧର୍ମଯାଜକମାନଙ୍କର ବିବାହ ବାଧ୍ୟତାମୂଳକ ହୋଇ ରହିଲା; କିନ୍ତୁ ସାଲିସ ରାଜିନାମା ପରେ 'କେନ୍ଦ୍ର' ଦଳର ସମର୍ଥନ ବିସମାର୍କ ଲାଭକରିଥିଲେ ।

୧୮୭୮ ମସିହା ପରେ ବିସମାର୍କ ସମାଜବାଦୀ ଦଳ ପ୍ରତି ଲକ୍ଷ୍ୟ ଦେଇଥିଲେ । ଜର୍ମାନୀରେ ସମାଜବାଦୀ ଗଣତନ୍ତ୍ରର ପ୍ରତିଷ୍ଠାତା ଥିଲେ ଫର୍ଡିନାଣ୍ଡ ଲସାଲ୍ । କାର୍ଲ ମାର୍କସଙ୍କ କମ୍ୟୁନିଷ୍ଟ ମତବାଦଦ୍ୱାରା ସେ ପ୍ରଭାବିତ ହୋଇ ଜର୍ମାନୀ ଶ୍ରମିକମାନଙ୍କୁ ସଂଗଠିତ କରିଥିଲେ । ଏହି ସଂଗଠନ ୧୮୪୮ ମସିହାରେ ଆରମ୍ଭ ହୋଇ ସାମୟିକ ଭାବରେ ଲୋପ ପାଇଥିଲା; କିନ୍ତୁ ୧୮୬୩ ମସିହାରେ ତାହା ପୁଣି ଆତ୍ମପ୍ରକାଶ କରିଥିଲା । ୧୮୭୫ ମସିହା ପରେ ପରେ ଜର୍ମାନୀର ବହୁସଂଖ୍ୟକ ଅଧିବାସୀ ଲସାଲଙ୍କ ସମାଜବାଦୀ ଦଳରେ ଯୋଗ ଦେଇଥିଲେ । ଦିନକୁ ଦିନ ଦଳର ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଇଥିଲା । ସେମାନେ ବିସମାର୍କଙ୍କର ଆର୍ଥନୀତିକ ବ୍ୟବସ୍ଥା ଓ ପୁଞ୍ଜିବାଦକୁ ସମାଲୋଚନା କରୁଥିଲେ । ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ସରକାର ଦେଶର କଳକାରଖାନାକୁ ନିଜେ ପରିଚାଳନା କରନ୍ତୁ ବୋଲି ସେମାନେ ଦାବି କରୁଥିଲେ । ଶିଳ୍ପକାରଖାନାର ଲାଭକୁ ଶ୍ରମିକମାନଙ୍କ ମଧ୍ୟରେ ନ୍ୟାୟ ଭାବରେ ବାଣ୍ଟି ସାମାଜିକ ନ୍ୟାୟ ଓ ସମାଜବାଦ ପ୍ରତିଷ୍ଠା କରିବାକୁ ସେମାନେ ଦାବି ଜଣାଇଥିଲେ । ସ୍ତ୍ରୀ-ପୁରୁଷ-ନିର୍ବିଶେଷରେ ସାବାଳକ ଭୋଟ ପ୍ରଥା ମଧ୍ୟ ସେମାନଙ୍କର ଅନ୍ୟତମ ଦାବି ଥିଲା । ପ୍ରକୃତ ଗଣତନ୍ତ୍ରର ପ୍ରତିଷ୍ଠାପାଇଁ ଗୁପ୍ତଭୋଟ, ସମ୍ବାଦ-ପତ୍ରର ସ୍ୱାଧୀନତା, ରାଜନୀତିକ ଓ ସାମାଜିକ ଅନୁଷ୍ଠାନମାନଙ୍କର ସ୍ୱାଧୀନତା ମଧ୍ୟ ସେମାନେ ଚାହୁଁଥିଲେ । ତେଣୁ ସାମାଜିକ ଓ ରାଜନୀତିକ ସଂସ୍କାର, ପୁଞ୍ଜିପତିମାନଙ୍କ ଉପରେ ଅଧିକ କରଭାର, ଶ୍ରମିକମାନଙ୍କ ପାଇଁ ରବିବାର ଦିନ ଛୁଟି ଓ ଅନ୍ୟାନ୍ୟ କଲ୍ୟାଣକର ଯୋଜନା ଆଦିର ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ସମାଜବାଦୀ ଗଣତନ୍ତ୍ର ଦଳ ଜର୍ମାନୀର ରାଜନୀତିକ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ କଲା ।

ବିସମାର୍କ ପୁଣି ସମସ୍ୟାର ସମ୍ମୁଖୀନ ହେଲେ । କାରଣ ସମାଜବାଦୀ ଗଣତନ୍ତ୍ର-ଦଳର ନୀତି ତାଙ୍କ ନୀତିର ଠିକ୍ ବିପରୀତ ଥିଲା । ସେ ଥିଲେ ରାଜତନ୍ତ୍ର, ସାମରିକ ବ୍ୟବସ୍ଥା ଓ ଦେଶଭକ୍ତିର ପ୍ରତୀକ; କିନ୍ତୁ ସମାଜବାଦୀ ଦଳ ରାଜତନ୍ତ୍ର, ସାମରିକ ବ୍ୟବସ୍ଥା ବା ଉଗ୍ର ଦେଶଭକ୍ତିର ସମର୍ଥକ ନଥିଲା । ସେମାନେ ଗଣତନ୍ତ୍ରର ପ୍ରତିଷ୍ଠା ଓ ବିକାଶ ଚାହୁଁଥିଲେ । ତେଣୁ ବିସମାର୍କ ଏବଂ ସମାଜବାଦୀମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଅତି ସ୍ୱାଭାବିକ ଥିଲା । ବହୁଶ୍ରମ ଏବଂ କଷ୍ଟ ସ୍ୱୀକାର କରି ଗଢ଼ିଥିବା ଜର୍ମାନ ସାମ୍ରାଜ୍ୟକୁ ବିସମାର୍କ ନିଜ ଆଖିରେ ଧ୍ୱଂସହେବା ବରଦାସ୍ତ କରିବେ ବା କିପରି ? ତେଣୁ ସମାଜବାଦୀ ଦଳର ବିଲୋପ ପାଇଁ ସେ କଠୋର

ମତ ଅବଲମ୍ବନ କଲେ । ୧୮୭୮ ମସିହାରେ ସେଥିପାଇଁ ପାର୍ଲାମେଣ୍ଟରେ ଆଇନ ପାସ୍ ହେଲା । ଦେଶରେ କୌଣସି ଅନୁଷ୍ଠାନ ଗଢ଼ିବା, ସଭାସମିତ କରିବା, ପ୍ରଚଳିତ ସାମାଜିକ ବ୍ୟବସ୍ଥାକୁ ଲୋପକରିବା ଉଦ୍ଦେଶ୍ୟରେ ପ୍ରଚାରକରିବା ଆଦି ନିଷିଦ୍ଧ ହେଲା । ଏହି ଆଇନର ଖିଲାପ କଲେ ପୁଲିସକର୍ତ୍ତୃକ ଦେଶରୁ ବହିଷ୍କୃତ ହେବାପାଇଁ ନିର୍ଦ୍ଦେଶ ଜାରି ହେଲା । ଏହି ଆଇନକୁ ଜୋର୍‌ସୋର୍‌ରେ ପୁଲିସ କର୍ମଚାରୀମାନେ ପ୍ରୟୋଗ କଲେ । ଫଳରେ ପ୍ରାୟ ଚଉଦଶହ ପ୍ରକାଶନ ଧ୍ୱଂସ କରାଗଲା । ପନ୍ଦର ଶହ ଲୋକ ବନ୍ଦୀ ହେଲେ ଏବଂ ନଅ ଶହ ଦେଶରୁ ବହିଷ୍କୃତ ହେଲେ ।

କିନ୍ତୁ ବିସମାର୍କ ସମାଜବାଦୀ ଦଳକୁ ବା ଦଳର ସମର୍ଥକମାନଙ୍କୁ କାବୁ କରିବାରେ ସମର୍ଥ ହେଲେନାହିଁ । ବରଂ ତାଙ୍କର କଠୋର ଆଇନ କାନୁନ ଦଳକୁ ଅଧିକ ଶକ୍ତିଶାଳୀ କରିପାରିଥିଲା । ଦଳର ସଂଖ୍ୟା ପୁଣି ବୃଦ୍ଧି ପାଇଲା । ତେଣୁ ବିସମାର୍କ ନିଜର ମତ ପରିବର୍ତ୍ତନ କରିଥିଲେ । ବିସମାର୍କ କଳକାରଖାନାର ଶ୍ରମିକମାନଙ୍କର ଅଧିକାର ସୁରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କର କଲ୍ୟାଣ ସାଧନ ନିମନ୍ତେ ବିଭିନ୍ନ ସଂସ୍କାରମାନ ପ୍ରବର୍ତ୍ତନ କରିବାକୁ ଚାହିଁଥିଲେ ଏବଂ ସେଥିପାଇଁ ଯୋଜନା ମଧ୍ୟ ପ୍ରସ୍ତୁତ କରିଥିଲେ । ପ୍ରକୃତରେ ବିଚାର କଲେ ତାଙ୍କର ଏହି ସଂସ୍କାରମୂଳକ ଯୋଜନାର ପ୍ରଧାନ ଲକ୍ଷ୍ୟ ସାମାଜିକ ନ୍ୟାୟ ନଥିଲା କି ହିତସାଧନ ନଥିଲା । ଜର୍ମାନ ସମାଜବାଦୀମାନଙ୍କଦ୍ୱାରା ଏହିରୂପ କାର୍ଯ୍ୟକ୍ରମ ବହୁପୂର୍ବରୁ ଗ୍ରହଣ କରିନିଆଯାଇଥିଲା । ତେଣୁ ବିସମାର୍କ ଜର୍ମାନ-ସମାଜବାଦୀମାନଙ୍କର ଏହି ବ୍ରହ୍ମାସ୍ତ୍ରକୁ ଅପହରଣ କରିନେଇ ସେମାନଙ୍କୁ ଏକ ଦଳ ହିସାବରେ ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ସେମାନଙ୍କର କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ନିଷ୍ପତ୍ତି କରିଥିଲେ । ବିସମାର୍କ ଏ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ରେସ୍ଷ୍ଟାଗ୍‌ରେ କହିଥିଲେ, "ଶ୍ରମିକ ଯେତେଦିନ ଯାଏ ସୁସ୍ଥ ଅଛି, ତାକୁ କାମ କରିବାର ଅଧିକାର ଦିଅ । ସେ ଯେତେବେଳେ ଅସୁସ୍ଥ ହେବ, ତାର ଯତ୍ନ ନେବାପାଇଁ ଏବଂ ସେ ଯେତେବେଳେ ବୁଢ଼ା ହୋଇଯିବ ତାର ଭରଣ ପୋଷଣ ପାଇଁ ଭରସା ଦିଅ···ତାହାହେଲେ ସମାଜବାଦୀମାନେ ନିରର୍ଥକ ଗାନ ଗାଇବେ ଏବଂ ଶ୍ରମିକମାନେ ସେମାନଙ୍କର ପତାକାତଳେ ବହୁସଂଖ୍ୟାରେ ରୁଣ୍ଡହେବା ବନ୍ଦ କରିଦେବେ ।" ( Bismarck told the Reichstag, "Give the workman the right to work as long as he is healthy, assure him care when he is sick and maintenance when he is old···then the socialists will sing their swan song in vain and the workingmen will cease to swarm to their banner." ) ଅର୍ଥାତ୍ ଏହିସବୁ ସୁବିଧା ଯଦି ଶ୍ରମିକମାନଙ୍କୁ ଦିଆଯାଏ ତାହାହେଲେ ସମାଜବାଦୀମାନଙ୍କର ଜୋର୍‌ସୋର୍ ପ୍ରଚାର ସେମାନଙ୍କୁ ପ୍ରଭାବିତ କରିପାରିବ ନାହିଁ ଏବଂ ସେମାନେ ବହୁସଂଖ୍ୟାରେ

ସେମାନଙ୍କ ଦଳରେ ଆଉ ଯୋଗ ଦେବେନାହିଁ । ବିସମାର୍କ ଶ୍ରମିକମାନଙ୍କ ପାଇଁ କଲ୍ୟାଣକର ଯୋଜନା ପ୍ରସ୍ତୁତ କରିବା ଉଦ୍ଦେଶ୍ୟ ଯାହା ହେଉନା କାହିଁକି ଏକଥା ସ୍ପଷ୍ଟ ଯେ ସେଥିରୁ ସେମାନେ ବିଶେଷ ଉପକାର ପାଇଥିଲେ । ତା'ଛଡ଼ା ସରକାରୀ ସ୍ତରରେ ଏହି ଯୋଜନା ଆୟୋଜନ କରି ସେ ସମାଜବାଦୀ ଦଳର ଆକର୍ଷଣକୁ ନଷ୍ଟକରିଦେବା ଚାହୁଁଥିଲେ । ସେଥିପାଇଁ ଦୁର୍ଘଟଣାଗ୍ରସ୍ତ ଶ୍ରମିକ ପାଇଁ, ରୋଗଗ୍ରସ୍ତ ଶ୍ରମିକ ପାଇଁ ବାର୍ଦ୍ଧକ୍ୟ ସମୟପାଇଁ ବିସମାର୍କ ସରକାରଙ୍କ ତରଫରୁ ଆର୍ଥିକ ସାହାଯ୍ୟ ଓ ଜୀବନବୀମାର ବ୍ୟବସ୍ଥା କରାଇଥିଲେ । ଏହି ନୀତିକୁ ରାଷ୍ଟ୍ରନିୟନ୍ତ୍ରିତ ସମାଜବାଦ କୁହାଯାଇପାରେ । ପୁଞ୍ଜିପତି ଓ ଅନ୍ୟାନ୍ୟ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ବିରୋଧ ସତ୍ତ୍ୱେ ସେ ୧୮୮୩ ମସିହାରେ ପୀଡ଼ିତ-ବୀମା ଆଇନ, ୧୮୮୪ ମସିହାରେ ଦୁର୍ଘଟଣା-ବୀମା ଆଇନ ଏବଂ ୧୮୮୯ ମସିହାରେ ବାର୍ଦ୍ଧକ୍ୟ-ବୀମା ଆଇନ ପ୍ରବର୍ତ୍ତନ କରିଥିଲେ । ଏହା ଏକ ଐତିହାସିକ ସତ୍ୟ ଯେ ବିସମାର୍କଙ୍କର ଶ୍ରମିକ କଲ୍ୟାଣ ବ୍ୟବସ୍ଥା ତାର ରାଜନୈତିକ ଲକ୍ଷ୍ୟ ହାସଲ କରିପାରି-ନଥିଲେ ମଧ୍ୟ ତାହା ସାମାଜିକ ପରୀକ୍ଷାର ଆରମ୍ଭ ହିସାବରେ ଏକ ଯୁଗାନ୍ତକାରୀ ଘଟଣା ଥିଲା ।

ତେଣୁ ସାମାଜିକ ଅନ୍ୟାୟ ଓ ଆର୍ଥନୀତିକ ବୈଷମ୍ୟ ଦୂରୀକରଣ ପାଇଁ ବିସମାର୍କଙ୍କ ପରିକଳ୍ପିତ ରାଷ୍ଟ୍ରନିୟନ୍ତ୍ରିତ ସମାଜବାଦ ଅତି ମହତ୍ତ୍ୱପୂର୍ଣ୍ଣ ନୀତି ଥିଲା । ସେ ଦଗରେ ସେ ଥିଲେ ସମଗ୍ର ବିଶ୍ୱର ପଥପ୍ରଦର୍ଶକ; କିନ୍ତୁ ଦୁଃଖର ବିଷୟ ଏହି ଯେ, ଜର୍ମାନ ସମାଜବାଦୀ ଗୋଷ୍ଠୀ ତାଙ୍କ ସହ ସହଯୋଗ କଲେନାହିଁ । ବରଂ ତାଙ୍କ ପଦକ୍ଷେପ ଯଥେଷ୍ଟ ନୁହେଁ ବୋଲି ସେମାନେ ଅହରହ ସମାଲୋଚନା କରିଥିଲେ । ବିସମାର୍କ ସେମାନଙ୍କର ଗଣତନ୍ତ୍ର ନୀତିକୁ ଘୃଣା କରୁଥିଲେ ଓ ସେମାନଙ୍କର ସମର୍ଥନ କେବେ ଚାହୁଁନଥିଲେ । ଦେଶର ପ୍ରତିଷ୍ଠିତ ସରକାର, ପ୍ରଚଳିତ ସାମାଜିକ ପରମ୍ପରାକୁ ଧ୍ୱଂସକରିବା ନୀତି ସେ ବରଦାସ୍ତ କରିଆନ୍ତେ କିପରି ? ତାଙ୍କର ରାଷ୍ଟ୍ରାୟତ୍ତ ସମାଜବାଦ ନୀତି ସଫଳ ହେଲେ, ସମାଜବାଦୀ ଗଣତନ୍ତ୍ର ଦଳର ପ୍ରାଧାନ୍ୟ ଲୋପ ପାଇବାର ଯଥେଷ୍ଟ ସମ୍ଭାବନା ଥିଲା; ସୁତରାଂ ଉଭୟେ ନିଜନିଜ ପଥରେ ଅଟଳ ରହିଲେ ।

୧୮୭୯ ମସିହାରେ ଅବାଧ ବାଣିଜ୍ୟ ଓ ସ୍ୱଳ୍ପ ଶୁଳ୍କ ନୀତି ପରିହାର କରି ବିସମାର୍କ ଜର୍ମାନୀର ଆର୍ଥିକ ଏବଂ ଔଦ୍ୟୋଗିକ (Industrial) କ୍ଷେତ୍ରରେ ବିରାଟ ପରିବର୍ତ୍ତନ ଆଣିଥିଲେ । ତଦ୍ୱାରା ଦେଶର ଆୟ ବୃଦ୍ଧି ସହିତ ଦେଶୀୟ ଶିଳ୍ପର ବିକାଶ ପାଇଁ ପଥ ଉନ୍ମୁକ୍ତ ହେବ ବୋଲି ତାଙ୍କର ଧାରଣା ଥିଲା । ଦେଶୀୟ ଶିଳ୍ପର ସୁରକ୍ଷା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଜର୍ମାନୀର ଆର୍ଥିକ ସମୃଦ୍ଧି ନ ହେଲେ ଶକ୍ତି ବୃଦ୍ଧି ହେବା ଅସମ୍ଭବ ବୋଲି ସେ ଭାବୁଥିଲେ । ତେଣୁ ଉତ୍ପାଦନ ବୃଦ୍ଧି କରି, ରପ୍ତାନି ବାଣିଜ୍ୟ ପ୍ରସାରପାଇଁ ସେ ଲାଗିପଡ଼ିଥିଲେ । ଏହି ନୀତି ଯୋଗୁ ଜର୍ମାନୀରେ ଶିଳ୍ପ କାରଖାନାର ଦ୍ରୁତ ବିକାଶ ସମ୍ଭବ ହୋଇଥିଲା ।

ଶିଳ୍ପ କାରଖାନା ପାଇଁ କଞ୍ଚାମାଲ ଓ ଉତ୍ପାଦିତ ସାମଗ୍ରୀ ପାଇଁ ବଜାର ଆବଶ୍ୟକ ହେବାରୁ ବିସମାର୍କ ଉପନିବେଶ ସ୍ଥାପନ ଦିଗରେ ଆଗ୍ରହ ପ୍ରକାଶ କରିଥିଲେ । ପ୍ରଥମେ ସେ ଉପନିବେଶର ଗୁରୁତ୍ୱ ବୁଝିନଥିଲେ; କିନ୍ତୁ ନୂତନ ଆର୍ଥିନୀତିକ ବ୍ୟବସ୍ଥାପାଇଁ ଉପନିବେଶ ଅପରିହାର୍ଯ୍ୟ ହେବାରୁ ସେ ଦିଗରେ ପଦକ୍ଷେପ ନିଆଯାଇଥିଲା; କିନ୍ତୁ ସେତେବେଳକୁ ନୂତନ ଉପନିବେଶ ସ୍ଥାପନପାଇଁ କେବଳ ଆଫ୍ରିକା ମହାଦେଶ ଛଡ଼ା ଅନ୍ୟତ୍ର ସୁଯୋଗ ନଥିଲା । ଯାହାହେଉ ବିସମାର୍କଙ୍କ ଉଦ୍ୟମ ଫଳରେ ଜର୍ମାନୀ କାମେରୁନ, ଟୋଗୋଲ୍ୟାଣ୍ଡ, ଜର୍ମାନ ଦକ୍ଷିଣ-ପଶ୍ଚିମ ଆଫ୍ରିକା, ଜର୍ମାନ ପୂର୍ବ ଆଫ୍ରିକା ଓ ନିଉଗିନିର କିଛିଅଂଶ ଲାଭ କରିଥିଲା । ପରେ ପରେ ସାମୋଆ ଦ୍ୱୀପପୁଞ୍ଜ ମଧ୍ୟ ଅଧିକାରଭୁକ୍ତ କରିବାଦ୍ୱାରା ଏକ ସୁବିସ୍ତୀର୍ଣ୍ଣ ଜର୍ମାନ ସାମ୍ରାଜ୍ୟ ଗଠିତ ହୋଇପାରିଥିଲା ।

ତେଣୁ ଦେଖାଯାଏ ଯେ, ବିସମାର୍କଙ୍କ ଗୃହନୀତି କୁଲତୁରକାମ୍ପ୍ କ୍ଷେତ୍ରରେ ସଫଳ ହୋଇପାରି ନଥିଲେ ମଧ୍ୟ ଜର୍ମାନମାନଙ୍କୁ ଏକ ଶୃଙ୍ଖଳିତ ଜାତିରୂପେ ଗଢ଼ିବାରେ, ସେମାନଙ୍କର ଶିକ୍ଷା, ସଂସ୍କୃତି ଓ ଆର୍ଥିନୀତିକ ପ୍ରଗତି ଆଦି କ୍ଷେତ୍ରରେ ତାଙ୍କର ଅବଦାନ ଅପରିସୀମ । ଦେଶରେ ଶିକ୍ଷାନୁଷ୍ଠାନର ସଂଖ୍ୟା ବୃଦ୍ଧି ପାଇଥିଲା । ବୈଜ୍ଞାନିକ ଆଲୋଚନାର କ୍ଷେତ୍ର ବିସ୍ତୃତ ହୋଇଥିଲା, ଶିଳ୍ପକାରଖାନାର ପ୍ରସାର ହୋଇଥିଲା ଏବଂ ବିଜ୍ଞାନ ଓ ଶିଳ୍ପର ସୁନ୍ଦର ସମନ୍ୱୟ ହୋଇଥିଲା । ତା'ଛଡ଼ା ସଙ୍ଗୀତ ଚର୍ଚ୍ଚାପାଇଁ ଅନୁକୂଳ ପରିବେଶ, ସହରମାନଙ୍କୁ ସର୍ବାଙ୍ଗ ସୁନ୍ଦର କରି ଗଢ଼ିବାପାଇଁ ସରକାରୀ ଉଦ୍ୟୋଗ ଓ ସାମାଜିକ କଲ୍ୟାଣ ସାଧନପାଇଁ ପ୍ରଚେଷ୍ଟାର ମଧ୍ୟ ଅଭାବ ନଥିଲା । ଏସବୁର ମୂଳପିଣ୍ଡ ଥିଲା ବିସମାର୍କଙ୍କର ଆଦର୍ଶ, ଅଧ୍ୟବସାୟ ଓ ଉତ୍ସାହ ।

## ବୈଦେଶିକ ନୀତି (Foreign Policy)

୧୮୬୩ ମସିହାରୁ ୧୮୭୧ ମସିହା ମଧ୍ୟରେ ବିସମାର୍କ 'ରକ୍ତ ଓ ଲୌହନୀତି' ଅବଲମ୍ବନ କରି ଇଉରୋପରେ ତିନଥର ତିନି ପଡ଼ୋଶୀ ରାଷ୍ଟ୍ରସହ ଯୁଦ୍ଧରେ ବ୍ୟାପୃତ ହୋଇଥିଲେ । ଏହି ତିନି ଯୁଦ୍ଧ ଫଳରେ ଜର୍ମାନୀର ଏକତ୍ରୀକରଣ ସମ୍ପୂର୍ଣ୍ଣ ହୋଇଥିଲା ଏବଂ ଇଉରୋପରେ ଜର୍ମାନୀର ନେତୃତ୍ୱ ପ୍ରତିଷ୍ଠା କରାଯାଇଥିଲା । ଜର୍ମାନୀର ଏକତ୍ରୀକରଣ ପରେ ପରେ ବିସମାର୍କ 'ରକ୍ତ ଓ ଲୌହନୀତି' ପରିତ୍ୟାଗ କରିଥିଲେ । ଜର୍ମାନୀ ଏକ 'ପରିତୃପ୍ତ ରାଷ୍ଟ୍ର' (Satiated state) ବୋଲି ସେ ଘୋଷଣା କରିଥିଲେ । ଜର୍ମାନୀ ପକ୍ଷରେ ଆଉ ରାଜ୍ୟବୃଦ୍ଧିର କୌଣସି ପ୍ରୟୋଜନ ନାହିଁ ଏହି ବିବେଚନା କରି ବିସମାର୍କ ତାଙ୍କର ପରବର୍ତ୍ତୀ ବୈଦେଶିକ ନୀତି ନିର୍ଦ୍ଧାରଣ କରିଥିଲେ । ସେ ଜର୍ମାନ ଶକ୍ତି ଓ ଜର୍ମାନ-ସାମ୍ରାଜ୍ୟ ଯେପରି ଅକ୍ଷୁଣ୍ଣ ରହିବ ସେ ଦିଗରେ ମନୋଯୋଗୀ ହୋଇଥିଲେ । ତେଣୁ ୧୮୭୧ ମସିହାରୁ ୧୮୯୦ ମସିହା ପର୍ଯ୍ୟନ୍ତ ସେ କ୍ଷମତାରେ ଉଚ୍ଚ ଆସନ ଅଧିକାର କରିଥିଲେ ସୁଦ୍ଧା କୌଣସି ଯୁଦ୍ଧରେ

ଜର୍ମାନୀକୁ ସଂଶ୍ଳିଷ୍ଟ କରିନଥିଲେ । ଏହି ସମୟରେ ସେ ଯେଉଁ ବୈଦେଶିକ ନୀତି ଅନୁସରଣ କଲେ, ତାକୁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ବୋଲି ଗ୍ରହଣ କରାଯାଇପାରେ । ଏହାର ମୂଳମନ୍ତ୍ର ଥିଲା ଇଉରୋପୀୟ ରାଜନୀତିରେ ସ୍ଥିତାବସ୍ଥା ରକ୍ଷାକରିବା ଓ ଫ୍ରାନ୍ସକୁ ଅନ୍ୟ ରାଷ୍ଟ୍ରଠାରୁ ଦୂରରେ ରଖିବା । ଫ୍ରାନ୍ସକୁ ଏକାଟିଆ କରି ରଖିବା ମଧ୍ୟ ଏହି ନୀତିର ଉଦ୍ଦେଶ୍ୟ ଥିଲା ବୋଲି କୁହାଯାଇପାରେ ।

୧୮୭୦ ମସିହା ସେଡାନ୍ ରଣକ୍ଷେତ୍ରରେ ଫ୍ରାନ୍ସର ଶୋଚନୀୟ ପରାଜୟ ଫରାସୀମାନଙ୍କ ପ୍ରତି ଏକ ଦାରୁଣ ଆଘାତ ଥିଲା । ପରାଜୟ ପରେ ପରେ ଭର୍ସାଇଲ ରାଜପ୍ରାସାଦରେ ପ୍ରଥମ ଉଇଲିୟମ୍‌ଙ୍କୁ ସମ୍ରାଟ ଉପାଧିରେ ଭୂଷିତକରି ବିସମାର୍କ ଫରାସୀମାନଙ୍କ ମନର କ୍ଷତକୁ ପୁଣି ମେଲିଦେଲେ । ପୁଣି ଫ୍ରାଙ୍କଫୋର୍ଟ୍ ସନ୍ଧି ଅନୁସାରେ ବିପୁଳ ଖଣିଜ ସମ୍ପଦଭରା ଆଲସେସ୍ ଓ ଲୋରେଇନ୍ ଅଞ୍ଚଳ ଫ୍ରାନ୍ସଠାରୁ ଅଧିକାର କରିବା-ଦ୍ୱାରା ସେ ଉକ୍ତ କ୍ଷତରେ ଲବଣ ସଂଯୋଗ କଲେ । ଆଲ୍‌ସେସ୍ ଓ ଲୋରେଇନ୍‌କୁ ଚତୁର୍ଦ୍ଦଶ ଲୁଇ ଅଧିକାର କରି ଫ୍ରାନ୍ସ ସହିତ ସାମିଲ କରିଥିଲେ । ଶତାଧିକ ବର୍ଷ ଧରି ତାହା ଫ୍ରାନ୍ସର ଅବିଚ୍ଛେଦ୍ୟ ଅଙ୍ଗ ସ୍ୱରୂପ ଥିଲା । ସେଠାକାର ଅଧିବାସୀମାନେ ଫ୍ରାନ୍ସକୁ ନିଜ ମାତୃଭୂମି ରୂପେ ଗ୍ରହଣ କରିନେଇଥିଲେ । ସେଥିପାଇଁ ୧୮୭୧ ମସିହାରେ ଜର୍ମାନୀଦ୍ୱାରା ତାହା ଅଧିକୃତ ହେବାରୁ ଫ୍ରାନ୍ସ ବିଶେଷ କ୍ଷୁବ୍ଧ ହୋଇଥିଲା । ତାହାର ପୁନରୁଦ୍ଧାର ପାଇଁ ଫରାସୀମାନେ ଏକ ପ୍ରତିହିଂସା ଯୁକ୍ତ ସ୍ପୃହା ଥିଲେ । ବିସମାର୍କ ଭାବିଥିଲେ ଯେ, ସମୟକ୍ରମେ ଫ୍ରାନ୍ସ ଆଲସେସ୍ ଓ ଲୋରେଇନ୍ କଥା ଭୁଲିଯିବ; କିନ୍ତୁ ଫ୍ରାନ୍ସର କ୍ରୋଧ ଏବଂ ଉକ୍ତ ମନୋଭାବ ଶାନ୍ତ ନ ହେବାର ଲକ୍ଷ୍ୟକରି ସେ କହୁଥିଲେ, "ଫ୍ରାନ୍ସ ଆମକୁ ଟିକିଏ ଶାନ୍ତିରେ ବଞ୍ଚିବାକୁ ଦେଉ ।" ଫ୍ରାନ୍ସ ବିରୁଦ୍ଧରେ କେବେ କୌଣସି ତାଚ୍ଛଲ୍ୟମୂଳକ କଥା ସେ କହୁନଥିଲେ । ଜର୍ମାନୀ ଏକ 'ପରିତୃପ୍ତ ରାଷ୍ଟ୍ର' (Satiated state) ଏବଂ ତାହାର କୌଣସି ଉପନିବେଶ ଦରକାର ନାହିଁ ବୋଲି କହି ବିସମାର୍କ ବରଂ ଫ୍ରାନ୍ସକୁ ଆଫ୍ରିକାରେ ଉପନିବେଶ ସ୍ଥାପନ କରିବାପାଇଁ ଉତ୍ସାହିତ କରିଥିଲେ । କାରଣ ସେ ଭାବିଥିଲେ ଯେ ଫ୍ରାନ୍ସ ସେ କାର୍ଯ୍ୟରେ ଏପରି ବ୍ୟାପୃତ ରହିବ ଯେ ଆଲସେସ ଓ ଲୋରେଇନ୍ ଫେରି ପାଇବାପାଇଁ ଆଉ ଉଦ୍ୟମ କରିବନାହିଁ; କିନ୍ତୁ ତାଙ୍କର ସେ ଆଶା ନିରାଶାରେ ପରିଣତ ହୋଇଥିଲା ଏବଂ ଫ୍ରାନ୍ସ ଜର୍ମାନୀ ଉପରେ ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲା । ତେଣୁ ଦୁଇଦେଶ ଓ ଜାତି ମଧ୍ୟରେ ଗଢ଼ିଉଠିଥିବା ବିଦ୍ୱେଷର ପରିଣତି କଥା ଚିନ୍ତାକରି ସେ ବ୍ୟସ୍ତ ହେଉଥିଲେ । ଜର୍ମାନ ସାମ୍ରାଜ୍ୟର ସୁରକ୍ଷା ଏବଂ ଇଉରୋପୀୟ ରାଜନୈତିକ ସ୍ଥିତାବସ୍ଥା ରକ୍ଷାପାଇଁ ସେ ତେଣୁ ଏକ କୂଟନୀତିକ ସଂଗ୍ରାମ ଆରମ୍ଭ କଲେ, ଯାହାର ଉଦ୍ଦେଶ୍ୟ ହେଲା ଫ୍ରାନ୍ସକୁ ଇଉରୋପ ମହାଦେଶରେ ଏକ ବନ୍ଧୁହୀନ ରାଷ୍ଟ୍ରଭାବରେ ରଖିବା । ଏହି ଲକ୍ଷ୍ୟ ସାଧନ ପାଇଁ ବିସମାର୍କଙ୍କର ଦୀର୍ଘ କୋଡ଼ିଏ ବର୍ଷର ବୈଦେଶିକ ନୀତି ଉଦ୍ଦିଷ୍ଟ ଥିଲା ।

ଫ୍ରାନସକୁ ବନ୍ଧୁହୀନ କରିବା ଉଦ୍ଦେଶ୍ୟରେ ବିସମାର୍କ ପ୍ରଥମେ ରୁଷିଆ ଓ ଅଷ୍ଟ୍ରିୟା ସହିତ ସୁସମ୍ପର୍କ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ । ୧୮୬୬ ମସିହାରେ ପ୍ରୁସିୟା ଓ ଅଷ୍ଟ୍ରିୟା ଯୁଦ୍ଧ ଏବଂ ୧୮୭୦ ମସିହାରେ ଫ୍ରାନସ ଓ ପ୍ରୁସିୟା ଯୁଦ୍ଧକାଳରେ ଜାର ଦ୍ୱିତୀୟ ଆଲେକ୍‌ଜାଣ୍ଡାର ନିରପେକ୍ଷ ନୀତି ଗ୍ରହଣ କରିବା ସଙ୍ଗେ ସଙ୍ଗେ ପ୍ରୁସିୟା ପ୍ରତି ସହାନୁଭୂତିଶୀଳ ହୋଇଥିଲେ । ଏହି ସହାନୁଭୂତି ଯୋଗୁଁ ଉଭୟ ଯୁଦ୍ଧରେ ପ୍ରୁସିୟା ସଫଳତା ହାସଲ କରିଥିଲା । ତେଣୁ ରୁଷିଆ ଓ ନବ ପ୍ରତିଷ୍ଠିତ ଜର୍ମାନ ସାମ୍ରାଜ୍ୟ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା ପଥରେ କୌଣସି ବାଧାବିଘ୍ନ ନଥିଲା । ଅନ୍ୟପକ୍ଷରେ କିନ୍ତୁ ଜର୍ମାନୀର ଅଭିବୃଦ୍ଧି ଅଷ୍ଟ୍ରିୟାର ରାଜନୈତିକ ସମ୍ମାନକୁ କ୍ଷୁଣ୍ଣ କରୁଥିବାରୁ ଏବଂ ୧୮୬୬ ମସିହା ସ୍ୟାଡୋୱା ରଣକ୍ଷେତ୍ରରେ ଅଷ୍ଟ୍ରିୟା ପ୍ରୁସିୟା କର୍ତ୍ତୃକ ପରାସ୍ତ ହୋଇଥିବାରୁ ନବପ୍ରତିଷ୍ଠିତ ଜର୍ମାନୀ ସହ ଅଷ୍ଟ୍ରିୟାର ସମ୍ପର୍କ ବନ୍ଧୁତ୍ୱାପନ୍ନ ନ ହେବାର ଭୟ ଯଥେଷ୍ଟ ଥିଲା; କିନ୍ତୁ ଅଷ୍ଟ୍ରିୟା ମନରେ ଦୁଃଖ ନ ଦେବା ପାଇଁ ବିସମାର୍କ ତାର କୌଣସି ଅଞ୍ଚଳ ନିଜ ଅକ୍ତିୟାରକୁ ଆଣିନଥିଲେ । ଉଭୟ ଦେଶର ଅଧିବାସୀ ସମ-ଭାଷାଭାଷୀ ହୋଇଥିବାରୁ କାଳକ୍ରମେ ସ୍ୟାଡୋୱା କଥା ବିସ୍ମୃତ ହୋଇଗଲା । ଏହି ସାଂସ୍କୃତିକ ଐକ୍ୟ ଉପରେ ଭରସା କରି ବିସମାର୍କ ୧୮୭୨ ମସିହାରେ କାଇଜର ଦ୍ୱିତୀୟ ଉଇଲିୟମ ଓ ସମ୍ରାଟ ଫ୍ରାନ୍‌ସିସ୍ ଯୋସେଫଙ୍କ ମଧ୍ୟରେ ଏକ କୂଟନୀତିକ ଆଲୋଚନାର ବ୍ୟବସ୍ଥା କରିଥିଲେ । ସେହି ବର୍ଷ ବନ୍ଧୁ ଯୁଲିୟସ ଆଣ୍ଡ୍ରାସି ଅଷ୍ଟ୍ରିୟାର ବୈଦେଶିକ ମନ୍ତ୍ରୀ ନିଯୁକ୍ତ ହେବାରୁ ବନ୍ଧୁତା ପ୍ରତିଷ୍ଠାପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା ।

ପୂର୍ବ ଇଉରୋପରେ ଶାନ୍ତି ପ୍ରତିଷ୍ଠା ଅଷ୍ଟ୍ରିୟା ଓ ରୁଷିଆର ସୁସମ୍ପର୍କ ଉପରେ ନିର୍ଭର କରୁଥିଲା । ତେଣୁ ଆଲେକ୍‌ଜାଣ୍ଡାରଙ୍କ ପରାମର୍ଶକ୍ରମେ ଜର୍ମାନୀ, ଅଷ୍ଟ୍ରିୟା ଓ ରୁଷିଆର ରାଷ୍ଟ୍ରନାୟକ ଓ ବୈଦେଶିକ ମନ୍ତ୍ରୀମାନେ ୧୮୭୨ ମସିହାରେ ବର୍ଲିନ ନଗରୀରେ ଏକତ୍ରିତ ହେଲେ । ଅତି ଆଡ଼ମ୍ବରପୂର୍ଣ୍ଣ ଭାବରେ ବିସମାର୍କ ଏହି ବୈଠକ ଆୟୋଜନ କରିଥିଲେ । ପ୍ରଥମେ ବୈଦେଶିକ ମନ୍ତ୍ରୀସ୍ତରରେ ଏକ କୂଟନୀତିକ ବୁଝାମଣା ଚୂଡ଼ାନ୍ତ ହେଲା । ରୁଷିଆର ଗୋର୍ଚ୍ଚାକୋଭ୍, ଅଷ୍ଟ୍ରିୟାର ଆଣ୍ଡ୍ରାସି ଏବଂ ଜର୍ମାନୀର ବିସମାର୍କ ଏହି ଚୁକ୍ତିରେ ଅଂଶଗ୍ରହଣ କରି ଇଉରୋପର ସ୍ଥିତାବସ୍ଥାକୁ ରକ୍ଷାକରିବା ସଙ୍ଗେ ସଙ୍ଗେ ସାମ୍ୟବାଦୀ ସଙ୍ଘଗୁଡ଼ିକର ମୁକାବିଲା ପାଇଁ ଦୃଢ଼ପରିକର ହେଲେ । ରୁଷ୍ ସହିତ ସମ୍ପର୍କ ନିବିଡ଼ କରିବା ଉଦ୍ଦେଶ୍ୟରେ ସେହି ବର୍ଷ କାଇଜର ସେଣ୍ଟ ପିଟରସବର୍ଗ ଭ୍ରମଣରେ ଯାଇଥିଲେ । ବିସମାର୍କ ଓ ସେନାଧ୍ୟକ୍ଷ ମୋଲଟକ୍ ମଧ୍ୟ ତାଙ୍କ ସହିତ ଯାଇଥିଲେ । ସେଠାରେ ଏକ ଗୁପ୍ତ ସାମରିକ ଚୁକ୍ତି ସମ୍ପାଦିତ ହୋଇ ସ୍ଥିର ହେଲା ଯେ, କୌଣସି ତୃତୀୟ ଇଉରୋପୀୟ ଶକ୍ତିଦ୍ୱାରା ଆକ୍ରମିତ ହେଲେ ଜର୍ମାନୀ ଏବଂ ରୁଷିଆ ପରସ୍ପରକୁ ଦୁଇଲକ୍ଷ ସୈନ୍ୟବଳ ଦେଇ ସାହାଯ୍ୟ କରିବେ । ୧୮୭୩ ମସିହାରେ ଜାର ଦ୍ୱିତୀୟ ଆଲେକ୍‌ଜାଣ୍ଡାର ଭିଏନା ପରିଭ୍ରମଣରେ ଯାଇ ସମ୍ରାଟ ଫ୍ରାନ୍‌ସିସ ଯୋସେଫଙ୍କ ସହ ଗୁପ୍ତ ରାଜନାମାରେ ସ୍ଥିର କଲେ ଯେ, କୌଣସି ତୃତୀୟ

ଭିତ୍ତିରେ ଇଉରୋପୀୟ ଶାନ୍ତି ବିପନ୍ନ ହେଲେ ଅଷ୍ଟ୍ରିୟା ଓ ରୁଷିଆ ସହଯୋଗ ସୂତ୍ରରେ ତାହା ସମାଧାନ କରିବେ ବା ଆବଶ୍ୟକ ହେଲେ ସଂଯୁକ୍ତ ସାମରିକ ଶକ୍ତି ନେଇ ତାହାର ମୁକାବିଲା କରିବେ । ଏହି ଗୁପ୍ତ ରାଜନାମାକୁ ୧୮୭୩ ମସିହା ଅକ୍ଟୋବର ୨୨ ତାରିଖ ଦିନ କାଇଜର ଉଇଲ୍ୟମ ସ୍ୱୀକାର କରିବାରୁ ଜର୍ମାନୀ-ଅଷ୍ଟ୍ରିୟା-ରୁଷିଆ ମୈତ୍ରୀ ସଂଘ (Dreikaiser bund or Three Emperors League) ପ୍ରତିଷ୍ଠିତ ହେଲା ।

ଏହି ଜର୍ମାନୀ-ଅଷ୍ଟ୍ରିୟା-ରୁଷିଆ ମୈତ୍ରୀସଂଘ ମାଧ୍ୟମରେ ବିସମାର୍କ ଫ୍ରାନ୍ସକୁ ପ୍ରତିହିଂସା ଯୁଦ୍ଧପଥରୁ କିଛିକାଳ ପାଇଁ ନିବର୍ତ୍ତାଇ ପାରିଥିଲେ; କିନ୍ତୁ ୧୮୭୫ ମସିହା ବେଳକୁ ମୈତ୍ରୀବନ୍ଧରେ ବିଭେଦ ଦେଖାଦେଇଥିଲା । ରୁଷ୍ ବୈଦେଶିକ ମନ୍ତ୍ରୀ ଗୋର୍ଚାକୋଭ୍ ବିସମାର୍କଙ୍କ ବ୍ୟକ୍ତିତ୍ୱ ପ୍ରତି ଈର୍ଷାପରାୟଣ ହୋଇ ଜର୍ମାନୀ ବୈଦେଶିକ ନୀତିର ସମାଲୋଚନା କରୁଥିଲେ ।

ତୁର୍କୀର ରାଜନୈତିକ ଅବସ୍ଥା ଅତି ଶୋଚନୀୟ ଥିଲା । ତାହାର ସୁଯୋଗ ନେଇ ଅଟୋମାନ ସାମ୍ରାଜ୍ୟ ଅଧୀନସ୍ଥ ସର୍ବ ଓ ସ୍ଲାଭ୍‌ମାନେ ସଦାସର୍ବଦା ସ୍ୱାଧୀନ ହେବାର ଚେଷ୍ଟା କରୁଥାନ୍ତି । ତୁର୍କୀ ଅଧୀନରୁ ମୁକ୍ତହେଲେ ରୁଷିଆ ସେସବୁ ଅଞ୍ଚଳ ଉପରେ ଆର୍ଥନୀତିକ ଓ ରାଜନୀତିକ ପ୍ରଭୁତ୍ୱ ବିସ୍ତାର କରିବାର ସ୍ୱପ୍ନ ଦେଖୁଥାଏ । ତା'ଛଡ଼ା କୃଷ୍ଣସାଗର ବକ୍ଷରେ ନିଜର ସୈନ୍ୟବାହିନୀ ରଖିବାପାଇଁ ସେ ଇଉରୋପୀୟ ଶକ୍ତିମାନଙ୍କର ସମର୍ଥନ ଲୋଡୁଁଥାଏ । ୧୮୭୬ ମସିହାରେ ବଲକାନ ଅଞ୍ଚଳରେ ତୁର୍କୀ ସରକାର ବିରୁଦ୍ଧରେ ଜନଆନ୍ଦୋଳନ ବ୍ୟାପକ ହେଲା । ତାହାକୁ ଆୟତ୍ତ କରିବାରେ ସୁଲତାନ ସମର୍ଥ ହେଲେନାହିଁ । ସୁଯୋଗ ଦେଖି ରୁଷିଆ ବୁଲ୍‌ଗେରିଆ ଅଧିକାର କରିନେଲା । ଅଷ୍ଟ୍ରିୟା ସରକାର ମଧ୍ୟ ଜର୍ମାନୀର ସମର୍ଥନ ପାଇ ବୋସ୍‌ନିଆ ଏବଂ ହାର୍ଜିଗୋଭିନା ଅଧିକାର କରିନେଲେ । ବଲକାନ ସମସ୍ୟାର ସମାଧାନପାଇଁ ଏକ ଇଉରୋପୀୟ ଶାନ୍ତି-ସମ୍ମିଳନୀ ଆହୂତ ହେଲା । ବିସମାର୍କ ତାହାର ଉଦ୍ୟୋକ୍ତା ହେଲେ । ଏହି ସମ୍ମିଳନୀ ବର୍ଲିନ ନଗରୀରେ ୧୮୭୮ ମସିହାରେ ଆୟୋଜିତ ହୋଇଥିଲା । ବିସମାର୍କ ଏହିର ସଭାପତି ପଦ ଅଳଙ୍କୃତ କରିଥିଲେ । ଇଉରୋପର ପ୍ରଖ୍ୟାତ କୂଟନୀତିଜ୍ଞ ଯଥା—ଡିସ୍‌ରାଏଲି, ଗୋର୍ଚାକୋଭ୍, ସୁବାରୋଭ୍, ଅଣ୍ଡ୍ରାସି ଆଦି ସେଠାରେ ସମବେତ ହୋଇଥିଲେ । ରୁଷିଆର ଆଶା ଥିଲା ଯେ, ପୂର୍ବ ସାହାଯ୍ୟ ଓ ବନ୍ଧୁତ୍ୱ କଥା ଚିନ୍ତାକରି ବିସମାର୍କ ନିଶ୍ଚୟ ବଲକାନ ଅଞ୍ଚଳରେ ରୁଷିଆର ସ୍ୱାର୍ଥ ଓ ଆଞ୍ଚଳିକ ବିସ୍ତାରପାଇଁ ଅନୁକୂଳ ଜଣସ୍ତି ଦେବେ; କିନ୍ତୁ ପ୍ରକୃତରେ ତାହା ଫଳବତୀ ହେଲାନାହିଁ । ବର୍ଲିନ ଚୁକ୍ତି ଅନୁସାରେ ଅଷ୍ଟ୍ରିୟାକୁ ବୋସ୍‌ନିଆ, ହାର୍ଜିଗୋଭିନା ଏବଂ ନୋଭିବଜାରର ସଂଯୁକ୍ତ ଅଞ୍ଚଳ ଅଧିକାର ପାଇଁ ଅନୁମତି ମିଳିଲା । ବେସର୍ବିୟା ଏବଂ କୃଷ୍ଣସାଗରରେ ଓ କାସ୍ପିୟାନସାଗର ମଧ୍ୟବର୍ତ୍ତୀ ଅଞ୍ଚଳ ରୁଷିଆକୁ ଦିଆଗଲା । ରୁଷ୍ ବୈଦେଶିକ ମନ୍ତ୍ରୀ ଗୋର୍ଚାକୋଭ୍ ଏଥିରେ ଅସନ୍ତୁଷ୍ଟ ହୋଇ କ୍ରୋଧରେ ସଭାଗୃହ ପରିତ୍ୟାଗ କରିଥିଲେ । ବର୍ଲିନ କଂଗ୍ରେସରେ ବିସମାର୍କ ରୁଷବିରୋଧୀ ନୀତି ଅବଲମ୍ବନ କରିଥିବାର ଅଭିଯୋଗ ସେ

ଆଣିଲେ । ତେଣୁ ବିସମାର୍କ ଏବଂ ଗୋର୍ଚାକୋଭଙ୍କ ମଧ୍ୟରେ ବ୍ୟକ୍ତିଗତ ବିଦ୍ୱେଷ ବୃଦ୍ଧି ପାଇଥିଲା ।

ବର୍ଲିନ କଂଗ୍ରେସ ଉଦ୍‌ଯାପନ ଉତ୍ସବରେ ବିସମାର୍କ କହିଥିଲେ ଯେ, ସେ ଇଉରୋପରେ ଶାନ୍ତିରକ୍ଷାପାଇଁ ଉଦ୍ୟମକରି ସଫଳ ହୋଇଛନ୍ତି । ପ୍ରକୃତରେ କ'ଣ ସେ ସଫଳ ହୋଇଥିଲେ ? ଇଂରେଜ କୂଟନୀତିଜ୍ଞ ଡିସରେଲି ଲଣ୍ଡନ ଫେରି ପ୍ରକାଶ କରିଥିଲେ ଯେ 'ସେ ସମ୍ମାନର ସହ ଶାନ୍ତିରକ୍ଷା କରି ଫେରିଅଛନ୍ତି ।' ପରିସ୍ଥିତିକୁ ପର୍ଯ୍ୟାଲୋଚନା କଲେ କିନ୍ତୁ ଏହିସବୁ ଉକ୍ତି ସଠିକ ନୁହେଁ ବୋଲି ଜଣାଯାଏ । ବଲ୍‌କାନ୍ ଅଞ୍ଚଳରେ କାହାରି ସ୍ୱାର୍ଥରକ୍ଷା ହୋଇନଥିଲା । ସ୍ଲାଭ୍ ଓ ସର୍ବମାନେ ପୂର୍ବପରି ପରାଧୀନ ହୋଇ ରହିବାରୁ ସେମାନଙ୍କର ସ୍ୱାଧୀନତା ସଂଗ୍ରାମ ଅବ୍ୟାହତ ରହିଲା । ବୋସ୍‌ନିଆ ଅଷ୍ଟ୍ରିୟାଦ୍ୱାରା ଅଧିକୃତ ହେବାରୁ ଅଷ୍ଟ୍ରିୟା ବିରୋଧୀ ଆନ୍ଦୋଳନ ତୀବ୍ର ହେଲା । ତାହା ରୁଷିଆର ସାହାଯ୍ୟ ଓ ସହାନୁଭୂତି ପାଇ ଅଧିକ ଶକ୍ତିଶାଳୀ ହେଲା ଏବଂ ଅଳ୍ପ କେତେବର୍ଷ ପରେ ବିଶ୍ୱଯୁଦ୍ଧର ତାହା ପ୍ରଧାନ କାରଣ ହୋଇଥିଲା ।

ରୁଷିଆର ଅସନ୍ତୁଷ୍ଟ ମନୋଭାବରୁ ନିଜକୁ ରକ୍ଷାକରିବା'ପାଇଁ ବିସମାର୍କ ଅଷ୍ଟ୍ରିୟା ସହିତ ଏକ ଗୁପ୍ତ ସାମରିକ ମୈତ୍ରୀର ବ୍ୟବସ୍ଥା କରିଥିଲେ । ୧୮୭୯ ମସିହା ଅକ୍ଟୋବର ୭ ତାରିଖରେ ଏହି ଚୁକ୍ତି ସମ୍ପାଦିତ ହୋଇଥିଲା । ତଦନୁସାରେ ଆଗାମୀ ପାଞ୍ଚବର୍ଷପାଇଁ ରୁଷଆକ୍ରମଣ ବିରୁଦ୍ଧରେ ଦୁହେଁ ମିଳିତ ସାମରିକ ବ୍ୟବସ୍ଥା ଅବଲମ୍ବନ କରିବାର ସ୍ଥିର କଲେ । ଏହି ମୈତ୍ରୀ ୧୯୧୮ ମସିହା ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । ବଲ୍‌କାନ ଅଞ୍ଚଳରେ ସ୍ଲାଭ୍ ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିବାପାଇଁ ବିସମାର୍କ ଅଷ୍ଟ୍ରିୟାକୁ ସମର୍ଥନ କଲେ । ଏହି ଜର୍ମାନୀ-ଅଷ୍ଟ୍ରିୟା ସାମରିକ ମୈତ୍ରୀ ବିସମାର୍କଙ୍କ ଉଚ୍ଚ କୂଟନୀତିକ ପ୍ରତିଭାର ନିଦର୍ଶନ ହେଲେ ହେଁ ବଲକାନ୍ ଅଞ୍ଚଳରେ ରୁଷ ବିରୋଧୀ ନୀତି ଅବଲମ୍ବନ କରିବାଦ୍ୱାରା ସେ ପ୍ରଥମ ବିଶ୍ୱଯୁଦ୍ଧର ପଥ ପରିଷ୍କାର କରିଦେଲେ ।

କିନ୍ତୁ ଏପରି ଧାରଣା ଅମୂଳକ । କାରଣ ଅଷ୍ଟ୍ରିୟା ସହିତ ଗୁପ୍ତ ସାମରିକ ମୈତ୍ରୀ ସ୍ୱାକ୍ଷର କଲେ ମଧ୍ୟ ବିସମାର୍କ ରୁଷ୍ ସହିତ ବନ୍ଧୁତାପାଇଁ ବ୍ୟାକୁଳ ଥିଲେ । ୧୮୮୦ ମସିହାରେ ସାବୁରୋଭ ରୁଷ୍ ରାଷ୍ଟ୍ରଦୂତ ଭାବରେ ବର୍ଲିନକୁ ଆସିବାରୁ ଜର୍ମାନୀ-ରୁଷିଆ କୂଟନୀତିକ ସମ୍ପର୍କ ଭଲଆଡ଼କୁ ଗତିକରିଥିଲା । ଡାର୍ଡାନେଲସ୍ ଅଞ୍ଚଳରେ ରୁଷ୍ ସ୍ୱାର୍ଥରକ୍ଷାପାଇଁ ସମର୍ଥନ ଜଣାଇବାର ପ୍ରତିଶ୍ରୁତି ଦେଇ ବିସମାର୍କ ପୁଣି ଦୁଇଦେଶ ମଧ୍ୟରେ ଭଲ ସମ୍ପର୍କ ସ୍ଥାପନ କରିପାରିଥିଲେ । ୧୮୮୧ ମସିହା ଜୁନ ୮ ତାରିଖରେ ବିସମାର୍କ, ସାବୁରୋଭ ଏବଂ ଅଷ୍ଟ୍ରିୟାର ସେଚେନ୍‌ଙ୍କ ମଧ୍ୟରେ ଏକ ଅତି ଗୁପ୍ତ ରାଜନାମା ସ୍ୱାକ୍ଷରିତ ହୋଇଥିଲା । ଏହି ରାଜନାମାର ସର୍ତ୍ତ ଅତି ଗୁପ୍ତ ଓ ଗୁରୁତ୍ୱପୂର୍ଣ୍ଣ ଥିଲା ।

୧୮୮୧ ମସିହା ଉପରୋକ୍ତ ଚୁକ୍ତି ଫଳରେ ତ୍ରି-ସମ୍ରାଟ ମୈତ୍ରୀଚୁକ୍ତି (Three Emperors' League)ର ପୁନରୁଦ୍ଧାର କରାଯାଇ ତାକୁ ତ୍ରି-ସମ୍ରାଟ ମୈତ୍ରୀରେ ପରିଣତ

କରାଯାଇଥିଲା । ରୁଷିଆ ଓ ଅଷ୍ଟ୍ରିୟା ମଧ୍ୟରେ ଅପ୍ରୀତିକର ଘଟଣା ଘଟିବାର ସମ୍ଭାବନା ମଧ୍ୟ ଦୂରୀଭୂତ ହୋଇଥିଲା । ବଲ୍‌କାନ ଅଞ୍ଚଳରେ ନିଜ ସ୍ୱାର୍ଥର ପରିସର ସେମାନେ ପରସ୍ପର ଭିତରେ ବାଣ୍ଟି ନେଇଥିଲେ । ଏହି ତିନି ସମ୍ରାଟଙ୍କ ମେଣ୍ଟ ଏକ ସାମୟିକ ବ୍ୟବସ୍ଥା ଥିଲା । କାରଣ ବିସମାର୍କ ଅଷ୍ଟ୍ରିୟା ପ୍ରତିବେଶୀ ସହାନୁଭୂତିଶୀଳ ଥିଲେ । ସେଥିପାଇଁ ପୂର୍ବପଟେ ରୁଷିଆ ଓ ଦକ୍ଷିଣରେ ଇଟାଲୀ ସହିତ ଅଷ୍ଟ୍ରିୟାର ଯେପରି କୌଣସି ସଙ୍ଘର୍ଷ ଆରମ୍ଭ ନହୁଏ, ତାହାର ବ୍ୟବସ୍ଥା କରିଥିଲେ ।

୧୮୮୨ ମସିହାରେ ନିଜ ଇଚ୍ଛାନୁସାରେ ଇଟାଲୀ, ଜର୍ମାନୀ ଓ ଅଷ୍ଟ୍ରିୟା ସହିତ ଚୁକ୍ତିବଦ୍ଧ ହୋଇ ନିଜର ଶକ୍ତି ଓ ସାମର୍ଥ୍ୟ ବୃଦ୍ଧି କରିବାକୁ ଚାହୁଁଥିଲା । ଇଟାଲୀପାଇଁ ବିସମାର୍କଙ୍କର ବିଶେଷ ଆକର୍ଷଣ ନଥିଲେ ହେଁ ଫ୍ରାନ୍‌ସ ଯେପରି ତାର ବନ୍ଧୁତ୍ୱ ନପାଏ ସେ ଦୃଷ୍ଟିରୁ ଇଟାଲୀକୁ ନିଜ ପକ୍ଷରେ ଅନ୍ତର୍ଭୁକ୍ତ କରିଥିଲେ । ଇଟାଲୀର ବନ୍ଧୁତ୍ୱ ଉପରେ ତାଙ୍କର ଭରସା ନଥିଲା । ବରଂ ଇଟାଲୀର ଅନିଶ୍ଚିତ ଅପରିପକ୍ୱ କୂଟନୀତିରେ ସେ ବିରକ୍ତି ବୋଧକରୁଥିଲେ । ଯାହାହେଉ, ଅଷ୍ଟ୍ରିୟା ଓ ଇଟାଲୀ ଯେପରି ବନ୍ଧୁ ହୋଇ ରହିବେ ଏହି ଉଦ୍ଦେଶ୍ୟରେ ସେ ଜର୍ମାନୀକୁ ସାମିଲକରି ତ୍ରିଶକ୍ତି ମେଣ୍ଟ (Triple Alliance) ଗଠନ କରିଥିଲେ । ଏହି ସାମରିକ ମେଣ୍ଟ ୧୮୮୨ ମସିହା ମେ ମାସ ୨୦ ତାରିଖ ଦିନ ଭିଏନାଠାରେ ସ୍ୱାକ୍ଷରିତ ହୋଇଥିଲା । ତା'ଦ୍ୱାରା ଇଉରୋପରେ ଶାନ୍ତିସ୍ଥାପନ ଏବଂ ଇଉରୋପୀୟ ଦେଶମାନଙ୍କର ସାମାଜିକ ରାଜନୀତିକ ସୁରକ୍ଷା ପାଇଁ ସମ୍ମିଳିତ ଉଦ୍ୟମ କରିବାର ସଂକଳ୍ପ ଚିନ୍ତାକ୍ଷ କରିଥିଲେ । ସେମାନଙ୍କ ମଧ୍ୟରୁ କେହି ଚତୁର୍ଥ ଶକ୍ତିଦ୍ୱାରା ଆକ୍ରମିତ ହେଲେ ସଂଘବଦ୍ଧ ହୋଇ ଯୁଦ୍ଧକରିବାର ସ୍ଥିରହେଲା । ଏହି ମେଣ୍ଟ ପ୍ରତିରକ୍ଷା-ମୂଳକ ବ୍ୟବସ୍ଥା ଥିଲା ଏବଂ ପାଞ୍ଚବର୍ଷପାଇଁ ସମାହିତ ହୋଇଥିଲା । ଏହି ଗୁପ୍ତଚୁକ୍ତି କେନ୍ଦ୍ର ଇଉରୋପୀୟ ରାଜ୍ୟମାନଙ୍କୁ ଏକତାବଦ୍ଧ କରିପାରିଥିଲା । ଇଟାଲୀ, ଜର୍ମାନୀ ସହ ନିଜକୁ ସମ୍ପୃକ୍ତ କରି ରାଜନୈତିକ ମର୍ଯ୍ୟାଦା ଉପଭୋଗ କଲା । ଅଷ୍ଟ୍ରିୟା ସହ ତାର ବିବାଦୀୟ ମନୋବୃତ୍ତି କାଳକ୍ରମେ ଲୋପପାଇଲା ।

ତ୍ରିଶକ୍ତି ମେଣ୍ଟରେ କୌଣସି ଆକ୍ରମଣ ଯୋଜନା ପ୍ରସ୍ତୁତ ହୋଇନଥିଲା । ଇଉରୋପର ଶାନ୍ତି, ଅଷ୍ଟ୍ରିୟାର ଦକ୍ଷିଣ-ପଶ୍ଚିମ ସୀମାନ୍ତରେ ନିରାପତ୍ତା ଏବଂ ଫ୍ରାନ୍‌ସକୁ ଏକୁଟିଆ ରଖିବାର ଅଭିପ୍ରାୟ ନେଇ ଏହା ଗଠିତ ହୋଇଥିଲା । ବିସମାର୍କ ଏହାକୁ ଶାନ୍ତିସଙ୍ଘ ନାମରେ ଅଭିହିତ କରୁଥିଲେ; କିନ୍ତୁ ତ୍ରିଶକ୍ତି ମେଣ୍ଟର ମୂଳଦୁଆ ଶକ୍ତ ନଥିଲା; କାରଣ ଇଟାଲୀର ଭବିଷ୍ୟତ ନୀତି ଉପରେ ଏହାର ଭବିଷ୍ୟତ ନିର୍ଭର କରୁଥିଲା ।

କୂଟନୀତି କ୍ଷେତ୍ରରେ ବିସମାର୍କଙ୍କ ଆଉ ଏକ କୃତିତ୍ୱ ଥିଲା । ୧୮୮୭ ମସିହାର ରୁଷ-ଜର୍ମାନୀ ମୈତ୍ରୀଚୁକ୍ତି । ଅଷ୍ଟ୍ରିୟା ସହ ସାମରିକ ମେଣ୍ଟ ଥିବା ସତ୍ତ୍ୱେ ରୁଷ ସହିତ ସେ ଚୁକ୍ତିବଦ୍ଧ ହେବାକୁ ଚାହୁଁଥିଲେ; କାରଣ ଜର୍ମାନୀ ଉପରେ ଫ୍ରାନ୍‌ସର ଅହେତୁକ ଆକ୍ରମଣର ଆଶଙ୍କା ଥିଲା । ସେହି ପରିସ୍ଥିତିରେ ରୁଷିଆର ନିରପେକ୍ଷତା ଅତି ଜରୁରି ବୋଲି ସେ ଭାବୁଥିଲେ ।

୧୮୮୪ ମସିହାରେ ଏହି ପ୍ରସ୍ତାବିତ ଚୁକ୍ତିର ଚଠା ପ୍ରସ୍ତୁତ ହୋଇଥିଲା । ତଦନୁସାରେ ପ୍ରସ୍ତାବ ଥିଲା ଯେ ସାକ୍ଷରକାରୀ (ରୁଷିଆ ଓ ଜର୍ମାନୀ) ଶକ୍ତି ମଧ୍ୟରୁ କାହାର ଉପରେ ଆକ୍ରମଣ ହେଲେ ଅନ୍ୟଜଣେ ନିରପେକ୍ଷ ନୀତି ଅବଲମ୍ବନ କରିବା ସଙ୍ଗେ ସଙ୍ଗେ ଯୁଦ୍ଧକୁ ସୀମିତ ରଖିବାର ପ୍ରଚେଷ୍ଟା କରିବ । ୧୮୮୭ ମସିହାରେ ତିନିବର୍ଷପାଇଁ ରୁଷ-ଜର୍ମାନୀ ମୈତ୍ରୀଚୁକ୍ତି ସମ୍ପାଦିତ ହୋଇଥିଲା । ଏହିସବୁ ବ୍ୟବସ୍ଥାଦ୍ୱାରା ଇଉରୋପୀୟ ରାଜନୀତିରେ ସ୍ଥିତାବସ୍ଥା ରକ୍ଷାକରି ଫ୍ରାନ୍ସକୁ ବନ୍ଧୁହୀନ କରିବାରେ ବିସମାର୍କ ଅପୂର୍ବ ସଫଳତା ହାସଲ କରିଥିଲେ । ଇଉରୋପୀୟ କୂଟନୀତିଜ୍ଞମାନଙ୍କ ମଧ୍ୟରେ ତାଙ୍କର ସମକକ୍ଷ କେହି ନଥିଲେ କି ତାଙ୍କପରି ଦକ୍ଷତାର ସହ ବୈଦେଶିକ ନୀତିକୁ ପରିଚାଳିତ କରିବାରେ କେହି ସମର୍ଥ ହୋଇନଥିଲେ ।

୧୮୮୮ ମସିହା ମାର୍ଚ୍ଚ ୯ ତାରିଖ ଦିନ କାଇଜର ପ୍ରଥମ ଉଇଲିୟମ୍‌ଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ମୃତ୍ୟୁ ବିସମାର୍କଙ୍କ ପ୍ରତି ଏକ ଦାରୁଣ ଆଘାତ ଥିଲା; କାରଣ ଉଇଲିୟମ୍ ଥିଲେ ତାଙ୍କର ପରମ ବନ୍ଧୁ ଏବଂ ହିତୈଷୀ । ଉଭୟଙ୍କ ମଧ୍ୟରେ ନିବିଡ଼ ବୁଝାମଣା ଥିଲା । ବର୍ତ୍ତମାନ ଜର୍ମାନ ସାମ୍ରାଜ୍ୟର ଗୃହ ଓ ବୈଦେଶିକ ନୀତି ପରିଚାଳନାରେ ସେ ନୂତନ କାଇଜର ତୃତୀୟ ଫ୍ରେଡରିକଙ୍କଠାରୁ ସେହିପରି ସମର୍ଥନ ଓ ପୃଷ୍ଠପୋଷକତା ଲାଭ କରିବେ କି ନାହିଁ ତାହା ଜଣା ନଥିଲା । କାଇଜର ତୃତୀୟ ଫ୍ରେଡରିକ ଅତିରୁଗ୍ଣ ଥିଲେ ଏବଂ ଅଳ୍ପ କେତେଦିନ ପୂର୍ବେ ଏକ ଅସ୍ତ୍ରୋପଚାର ଫଳରେ ସେ ବାକ୍‌ଶକ୍ତି ମଧ୍ୟ ହରାଇଥିଲେ । ତାଙ୍କର ପରମାୟୁ ମାତ୍ର ୧୦୦ ଦିନ ଥିଲା । ଫଳରେ ଅତି ଅଳ୍ପଦିନ ମଧ୍ୟରେ ବିସମାର୍କ ଆଉ ଜଣେ କାଇଜରଙ୍କୁ ହରାଇଲେ । ତୃତୀୟ ଫ୍ରେଡରିକଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱିତୀୟ ଉଇଲିୟମ୍ କାଇଜର ହେଲେ । ତାଙ୍କ ପ୍ରକୃତି ସହିତ ବିସମାର୍କ ନିଜକୁ ଖାପଖୁଆଇ ପାରିଲେନାହିଁ । ଫଳରେ ୧୮୯୦ ମସିହା ମାର୍ଚ୍ଚ ୧୪ ତାରିଖ ଦିନ ତାଙ୍କୁ ଚାନ୍‌ସେଲର ପଦରୁ ହଟିଯିବାକୁ ପଡ଼ିଲା । ବୈଦେଶିକ ନୀତି କ୍ଷେତ୍ରରେ ସେ ଯେଉଁ ସ୍ଥିତାବସ୍ଥାର ସଂରକ୍ଷକ ଥିଲେ, ତାହା ୧୮୯୦ ମସିହାରୁ ଏକ ନୂତନ ଆଭିମୁଖ୍ୟ ଗ୍ରହଣ କଲା ।

ବିସମାର୍କ ଥରେ କହିଥିଲେ, "ସମ୍ମିଳନର କଳ୍ପନା ମୋ ପାଇଁ ଆଣେ ଦୁଃସ୍ୱପ୍ନ ।" (Bismarck once said, "The idea of Coalitions gives me night mares.") କିନ୍ତୁ ପ୍ରକୃତରେ ବିସମାର୍କ ଏହିସବୁ ସମ୍ମିଳନର ଭିତ୍ତିପତ୍ତନ କରିଥିଲେ ଏବଂ ତା'ଦ୍ୱାରା ପ୍ରକୃତ ଯେଉଁ ବିପଦ୍ସ ସେ ଏଡ଼ିବାକୁ ଚାହୁଁଥିଲେ ତାକୁ ହିଁ ଉତ୍ପାଦିତ କରିଥିଲେ । ତାଙ୍କର ଚୁକ୍ତିବ୍ୟବସ୍ଥା ପ୍ରତି-ଚୁକ୍ତି ସ୍ୱାକ୍ଷର ପାଇଁ ଉତ୍ତେଜିତ କରିଥିଲା । ଫଳରେ ଇଉରୋପ ଦୁଇଟି ସଶସ୍ତ୍ର ଦଳରେ ବିଭକ୍ତ ହେଲା ଏବଂ ତାର ଶାନ୍ତି ବିପନ୍ନ ହେଲା ।

# ବିଂଶ ଅଧ୍ୟାୟ

## ପ୍ରଥମ ବିଶ୍ୱଯୁଦ୍ଧ (The First World War)

## ପ୍ରଥମ ବିଶ୍ୱଯୁଦ୍ଧର କାରଣ
## (The Causes of the First World War)

ସେଡାନ ରଣକ୍ଷେତ୍ରରେ ପରାଜୟ ଲାଭକଲାପରେ ବହୁଦିନ ଧରି ଫ୍ରାନ୍ସ ରାଜନୀତି କ୍ଷେତ୍ରରେ ଅବହେଳିତ ହୋଇ ରହିଥିଲା । ବିସମାର୍କଙ୍କ କୂଟନୀତି ପୂର୍ବ-ଇଉରୋପୀୟ ରାଜ୍ୟ-ଗୁଡ଼ିକୁ ଯେପରି ଭାବେ ସାମରିକ ମେଣ୍ଟରେ ଆବଦ୍ଧ କଲା, ତାହା ଦେଖି ଫ୍ରାନ୍ସ ଆଶ୍ଚର୍ଯ୍ୟ ହେଲା । ଜର୍ମାନୀର ସମକକ୍ଷ ସାମରିକ ଶକ୍ତି ହେବା ତା' ପକ୍ଷରେ ସହଜ ନଥିଲା । ଇଉରୋପୀୟ ସମାଜରେ ସେ ବନ୍ଧୁହୀନ ଥିବାରୁ ପରିସ୍ଥିତି ଲକ୍ଷ୍ୟକରି ହତୋତ୍ସାହ ହୋଇପଡ଼ିଥିବାର ଜଣାପଡ଼ିଥିଲା । ଜର୍ମାନୀର ପ୍ରତିପତ୍ତି ଓ ସାମରିକ ଶକ୍ତିକୁ ଲକ୍ଷ୍ୟକରି ଜାର୍ ଆଲେକ୍‌ଜାଣ୍ଡାର ଥରେ କଥାଛଳରେ ପ୍ରକାଶ କରିଥିଲେ ଯେ, ଦିନେ ନିଶ୍ଚୟ ଫ୍ରାନ୍ସ ଜର୍ମାନୀଦ୍ୱାରା ଆକ୍ରାନ୍ତ ହେବ । ଇଂଲଣ୍ଡର ସାମ୍ରାଜ୍ଞୀ ଭିକ୍ଟୋରିଆ ଏଥିରେ ଏକମତ ହୋଇଥିଲେ ।

ଫ୍ରାନ୍ସର ରାଜନୈତିକ ବିଚ୍ଛିନ୍ନତାର ସୁଯୋଗ ନେବା ବିସମାର୍କ ଚାହୁଁ ନଥିଲେ । ସେ କେବଳ ପ୍ରତିହିଂସା ଯୁଦ୍ଧରେ ଫ୍ରାନ୍ସ ଯେପରି ଆତ୍ମନିବେଶ ନକରୁ ତାହା ଚାହୁଁଥିଲେ । ଜର୍ମାନୀ ସହ ଫ୍ରାନ୍ସର ସମ୍ପର୍କ କେବେହେଁ ଭଲ ନଥିଲା । ସେଡାନ ଯୁଦ୍ଧର ଅପମାନ ଫରାସୀ ଜାତି ଭୁଲିପାରୁନଥିଲା । ୧୮୮୬ ମସିହାରେ ସେନାପତି ବୋଲେଞ୍ଜାର ଫ୍ରାନ୍ସର ଯୁଦ୍ଧମନ୍ତ୍ରୀ ଭାବରେ ଫରାସୀ ଜାତିର କ୍ଷୁବ୍ଧ ମନୋଭାବକୁ ଜର୍ମାନୀ ବିରୁଦ୍ଧରେ ଉତ୍ତେଜିତ କଲେ । ଆଲସେସ୍ ଲୋରେଇନର ପୁନରୁଦ୍ଧାର ଓ ପ୍ରତିହିଂସା ଯୁଦ୍ଧର ଯଥାର୍ଥତା ପାଇଁ ନାନା ପ୍ରକାର ଲେଖାମାନ ପ୍ରକାଶ ପାଇଲା । ଜନମତ କ୍ରମଶଃ ଯୁଦ୍ଧଖୋର ହୋଇ ଦୁଇଦେଶ ମଧ୍ୟରେ ଭଲସମ୍ପର୍କ ପ୍ରତିଷ୍ଠାର ପ୍ରତିକୂଳ ଅବସ୍ଥା ସୃଷ୍ଟି କରିଥିଲା । ଫ୍ରାନ୍ସର ସାମରିକ ଶକ୍ତି ବୃଦ୍ଧି କରିବାକୁ ଉଗ୍ରଜାତୀୟତାବାଦୀମାନେ ବାରମ୍ବାର ଚାପ ଦେଲେ ।

ବୋଲେଞ୍ଜାରଙ୍କ ନୀତିକୁ ଲକ୍ଷ୍ୟକରି ବିସମାର୍କ ଜର୍ମାନୀର ସାମରିକ ପ୍ରସ୍ତୁତି ଦିଗରେ ପଦକ୍ଷେପ ନେଇଥିଲେ । ତାହା ଫ୍ରାନ୍ସ ମନରେ ସନ୍ଦେହ ଓ ଘୃଣା ବଢ଼ାଇବାରେ ସାହାଯ୍ୟ କଲା । ବିସମାର୍କ କ୍ଷମତାରୁ ଅପସରିଯିବା ପରେ କାଇଜର ଦ୍ୱିତୀୟ ଉଇଲିୟମ୍, ରୁଷିଆ ସହିତ ମୈତ୍ରୀଚୁକ୍ତିର ନବୀକରଣ ପାଇଁ ଆଗ୍ରହ ପ୍ରକାଶ କଲେନାହିଁ । ରୁଷିଆର ଜାର୍ ଦ୍ୱିତୀୟ ନିକୋଲାସ୍ ଅବଶ୍ୟ ଆଉ ଛ'ବର୍ଷ ପାଇଁ ଚୁକ୍ତିର କାର୍ଯ୍ୟକାଳ ବୃଦ୍ଧି କରିବାକୁ ଚାହୁଁ-

ଥିଲେ; କିନ୍ତୁ ସେ ବୁଲଗେରିଆକୁ ପ୍ରତିପତ୍ତିଭୁକ୍ତ କରିବାପାଇଁ ଜର୍ମାନୀର ସମର୍ଥନ ଲୋଡ଼ିବାରୁ ଚୁକ୍ତିର ନବୀକରଣ ସମ୍ଭବ ହୋଇନାହିଁ । ଏହା ଜର୍ମାନ ବୈଦେଶିକ ନୀତିର ଏକ ମସ୍ତବଡ଼ ଭୁଲ୍ ଥିଲା । ଏହା ଫଳରେ ଇଉରୋପୀୟ ରାଜନୀତିରେ ରୁଷିଆ ଏକୁଟିଆ ପଡ଼ିଯିବାର ଉପକ୍ରମ ହେଲା । ପରିସ୍ଥିତିର ଗ୍ରାସରେ ପୂର୍ବ ଇଉରୋପର ରାଜତନ୍ତ୍ର (ରୁଷିଆ) ଓ ପଶ୍ଚିମ ଇଉରୋପର ଗଣତନ୍ତ୍ର (ଫ୍ରାନ୍ସ) ପରସ୍ପର ପ୍ରତି ଆକୃଷ୍ଟ ହେଲେ ।

ଫ୍ରାନ୍ସ ଓ ରୁଷିଆର ବନ୍ଧୁଭାବ ପ୍ରଥମେ ଅର୍ଥନୀତିକ ସହଯୋଗରୁ ଆରମ୍ଭ ହୋଇଥିଲା । ୧୮୮୭ ମସିହାରେ ରୁଷିଆର ଆର୍ଥିକ ସଙ୍କଟକୁ ସୁଧାରିବା ପାଇଁ ଫରାସୀ ପୁଞ୍ଜିପତିମାନେ ପଚାଶ କୋଟି ଫ୍ରାଙ୍କ୍ ମୂଳଧନ ହିସାବରେ ସାହାଯ୍ୟ କରିଥିଲେ । ପୁଣି ୧୮୮୮ ମସିହାରେ ୧୯୦ କୋଟି ଫ୍ରାଙ୍କ୍ ଋଣ ଆକାରରେ ରୁଷିଆକୁ ମିଳିଥିଲା । ଏହି ଆର୍ଥିକ ସାହାଯ୍ୟ ସହିତ ସାମରିକ ସାହାଯ୍ୟ ଦେବାକୁ ଫ୍ରାନ୍ସ ସରକାର ମଧ୍ୟ ରାଜି ଥିଲେ ।

୧୮୯୦ ମସିହାରେ କାଇଜର ଦ୍ୱିତୀୟ ଉଇଲିୟମ୍ ଇଂଲଣ୍ଡ ପରିଭ୍ରମଣରେ ଯାଇଥିଲେ । ସେହି ବର୍ଷ ଆଫ୍ରିକାର କେତେକ ଉପନିବେଶ ସଂକ୍ରାନ୍ତରେ ଜର୍ମାନୀ ଓ ଇଂଲଣ୍ଡର ଏକ ରାଜିନାମା ହେବାଦ୍ୱାରା ରୁଷିଆ ମନରେ ଜର୍ମାନୀର ପ୍ରକୃତ ଉଦ୍ଦେଶ୍ୟ ସମ୍ପର୍କରେ ସନ୍ଦେହ ଜନ୍ମିଲା । କାଳେ ଜର୍ମାନୀ ଓ ଇଂଲଣ୍ଡ ମିଳିତଭାବେ ରୁଷ୍ ସ୍ୱାର୍ଥବିରୋଧୀ ନୀତି ଅବଲମ୍ବନ କରିବେ, ଏହି ଭୟରେ ଜାର୍ ଫ୍ରାନ୍ସ ସହ ବନ୍ଧୁତା ସ୍ଥାପନ ନୀତିକୁ ଅଧିକ ଜୋର୍ ଦେଲେ । ସେ ପୁଣି ଆଶଙ୍କା କରୁଥିଲେ ଯେ, ତ୍ରିଶକ୍ତି ମେଣ୍ଟରେ ଇଂଲଣ୍ଡ ଯୋଗଦେବ । ତା'ହେଲେ ଏକ ଚତୁଃଶକ୍ତି ମେଣ୍ଟ ରୁଷିଆ ପାଇଁ ଘୋର ଉଦ୍‌ବେଗର କାରଣ ହେବ । ତେଣୁ ଆତ୍ମରକ୍ଷା ଉଦ୍ଦେଶ୍ୟରେ ସେ ଫ୍ରାନ୍ସ ପଟକୁ ଢଳିଲେ ।

ଅବଶ୍ୟ ୧୮୮୯ ମସିହାରେ ରୁଷିଆ ଫ୍ରାନ୍ସଠାରୁ ବନ୍ଧୁକ କିଣିବା ପାଇଁ ସ୍ଥିରକରି ତାକୁ ପାଞ୍ଚଲକ୍ଷ ବନ୍ଧୁକ ବରାଦ ଦେଇଥିଲା । ୧୮୯୧ ମସିହାରେ ଫରାସୀ ନୌବାହିନୀ ରୁଷିଆକୁ ଶୁଭେଚ୍ଛା ଯାତ୍ରାରେ ଯାଇଥିଲା । କ୍ରମଶଃ ଦୁଇଦେଶ ମଧ୍ୟରେ ବନ୍ଧୁତା ବୃଦ୍ଧି ପାଇଲା । ରୁଷର ବନ୍ଧୁତ୍ୱ ଫ୍ରାନ୍ସକୁ ଅଶେଷ ଆତ୍ମବିଶ୍ୱାସ ଦେଲା । ତାର ବନ୍ଧୁହୀନ ଏକାକୀ ରାଜନୀତିକ ଜୀବନର ଅବସାନ ଘଟିଲା । ପ୍ରତିହିଂସା ଯୁଦ୍ଧର ଆଶା ପୁଣି ତେଜିଉଠିଲା । ଜର୍ମାନୀର କୂଟନୀତିରେ ସେ ଆଉ ଶଙ୍କିତ ହେଲାନାହିଁ । ଫ୍ରାନ୍ସ ଓ ରୁଷିଆ ମଧ୍ୟରେ ଏକ ଦ୍ୱିଶକ୍ତି ମେଣ୍ଟ (Dual Alliance) ୧୮୯୧ ମସିହା ଅଗଷ୍ଟ ମାସ ୧୭ ତାରିଖ ଦିନ ସ୍ୱାକ୍ଷରିତ ହେଲା । ତହିଁରେ ସ୍ଥିର ହେଲା ଯେ, କୌଣସି ବିପଦର ମୁକାବିଲା କରିବା ପୂର୍ବରୁ ଦୁଇଶକ୍ତି ପରସ୍ପର ସହ ଆଲୋଚନା କରିବେ । ତ୍ରିଶକ୍ତି ମେଣ୍ଟର ଯେକୌଣସି ସ୍ୱାକ୍ଷରକାରୀଦ୍ୱାରା ଆକ୍ରାନ୍ତ ହେଲେ ଉଭୟେ ଏକ ସଙ୍ଗେ ସୈନ୍ୟଚାଳନା କରିବେ । ସାମରିକ କ୍ଷେତ୍ରରେ ମିଳିତ ଉଦ୍ୟମ ପାଇଁ ସେନାପତି ସ୍ତରରେ ବ୍ୟବସ୍ଥା ହେବ ।

ଦ୍ୱିଶକ୍ତି ମେଣ୍ଟର ସର୍ତ୍ତମାନ ଗୁପ୍ତ ରଖାଯାଇଥିଲା । ତା' ନକରିଥିଲେ ପରିଣତି ଭୟାବହ ହୋଇଥାନ୍ତା । ରୁଷ୍ ଓ ଫ୍ରାନ୍ସ ଆଉ ମଧ୍ୟ ସ୍ଥିରକଲେ ଯେ, ତ୍ରିଶକ୍ତି ମେଣ୍ଟ

ଯେତେଦିନ ବଳବତ୍ତର ରହିବ, ଦ୍ୱିଶକ୍ତି ମୈତ୍ରୀ ମଧ୍ୟ ସେତିକି ଦିନ ବଳବତ୍ତର ରହିବ । ପ୍ରକୃତରେ ଏହା ଏକ ପ୍ରତିରକ୍ଷାମୂଳକ ଚୁକ୍ତି ଥିଲା । ଜର୍ମାନୀକୁ ପ୍ରଧାନ ଶତ୍ରୁ ରୂପେ କଳ୍ପନା କରି ଏହି ସାମରିକ ମୈତ୍ରୀ ପ୍ରସ୍ତୁତ ହୋଇଥିଲା । ଜର୍ମାନୀକୁ ଏହି ଦ୍ୱିଶକ୍ତି ମୈତ୍ରୀର ସର୍ତ୍ତ ସମ୍ପର୍କରେ କିଛି କଥା ଜଣା ନଥିଲା । ଏପରି ଏକ ମୈତ୍ରୀର ଆୟୋଜନ ହୋଇପାରେ ବୋଲି ଜର୍ମାନୀ ମନରେ ଟିକିଏ ହେଲେ ସନ୍ଦେହ ହୋଇନଥିଲା ।

ତେବେ ତ୍ରିଶକ୍ତି ମୈତ୍ରୀ ଏବଂ ଦ୍ୱିଶକ୍ତି ମୈତ୍ରୀ ସଂଗଠନଦ୍ୱାରା ଇଉରୋପ ଦୁଇ ଭାଗରେ ବିଭକ୍ତ ହୋଇଥିଲେ ମଧ୍ୟ ରାଜନୀତିକ ଭାରସାମ୍ୟ ନଷ୍ଟ ହୋଇନଥିଲା । ଏହି ଦୁଇଟି ମୈତ୍ରୀର ଉଦ୍ଦେଶ୍ୟ ପ୍ରତିରକ୍ଷାମୂଳକ ହୋଇଥିବାରୁ ଶାନ୍ତି ସ୍ଥାପନ ଦିଗରେ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା ସତ; କିନ୍ତୁ ଦ୍ୱିଶକ୍ତି ମୈତ୍ରୀ, ତ୍ରିଶକ୍ତି ମୈତ୍ରୀର ସମ୍ମୁଖୀନ ହୋଇଥିବାରୁ ସେ ସମୟର ଇଉରୋପୀୟ ପରିସ୍ଥିତିକୁ 'ସଶସ୍ତ୍ର ଶାନ୍ତି' (Armed Peace) ନାମରେ ଅଭିହିତ କରାଯାଏ । ଇଉରୋପୀୟ ଶକ୍ତିମାନେ ଯଦିଓ ପରସ୍ପର ମଧ୍ୟରେ ଶାନ୍ତି ସ୍ଥାପନ କରିଥିଲେ, ସେମାନେ ସେମାନଙ୍କର ପ୍ରତିବେଶୀ ରାଜ୍ୟମାନଙ୍କ ଉପରେ ସତର୍କ ଦୃଷ୍ଟି ରଖିଥିଲେ । ତେଣୁ ଭୟ ଏବଂ ସନ୍ଦେହର ବାତାବରଣ ସାରା ଇଉରୋପରେ ବ୍ୟାପିଯାଇଥିଲା । ଆକସ୍ମିକ ଭାବେ ବିପତ୍ତି ପଡ଼ିପାରେ ବୋଲି ଆଶଙ୍କା କରି ତାର ପ୍ରତିରୋଧପାଇଁ ଇଉରୋପର ପ୍ରାୟ ସବୁଶକ୍ତି ସାମରିକ ପ୍ରସ୍ତୁତିରେ ଲାଗିପଡ଼ିଲେ । ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ଦଳରେ ଇଉରୋପ ବିଭକ୍ତ ହେବାର ଫଳ ହେଲା ଏଇଆ ।

ବିସମାର୍କ ଯେତେଦିନ ଯାଏ ଜର୍ମାନୀର ବ୍ୟାପାର ଗୁଡ଼ିକ ଆୟତ୍ତ କରିଥିଲେ, ସେତେ-ଦିନ ଯାଏ ଜର୍ମାନୀ ମୋଟ ଉପରେ ଇଉରୋପରେ ଶାନ୍ତିପ୍ରତିଷ୍ଠା ଦିଗରେ ଏକ ଶକ୍ତିରୂପେ କାର୍ଯ୍ୟ କରୁଥିଲା । ସେ ଜର୍ମାନୀକୁ ଏକ 'ପରିତୃପ୍ତ ରାଷ୍ଟ୍ର' ବୋଲି ଘୋଷଣା କରିଥିଲେ ଏବଂ ତାର ପ୍ରାଧାନ୍ୟ ଉପରେ ପ୍ରତିଷ୍ଠିତ ସ୍ଥିତାବସ୍ଥା ବଜାୟରଖିବା ପାଇଁ ମଧ୍ୟ ଆଗ୍ରହୀ ଥିଲେ । ୧୮୯୦ ମସିହାରେ ବିସମାର୍କଙ୍କର ପତନ ପରେ ପରେ ଜର୍ମାନୀର ଉଚ୍ଚାକାଙ୍କ୍ଷା ବୃଦ୍ଧିପାଇବାରେ ଲାଗିଲା । ସେ ଯୁଗର ସାମ୍ରାଜ୍ୟବାଦୀ ଦୃଷ୍ଟିକୋଣରୁ ବିଚାର କଲେ ଏକଥା ସ୍ପଷ୍ଟ ଜଣାଯାଏ ଯେ, ଯେକୌଣସି ଜାତିର ମହତ୍ତ୍ୱ ଇଉରୋପରେ ତାର ପ୍ରତିଷ୍ଠା ଉପରେ ନିର୍ଭର ନକରି, ଇଉରୋପର ବାହାରେ ତାର ଅଧିକୃତ ରାଜ୍ୟର ପରିସର ଏବଂ ମୂଲ୍ୟ ଉପରେ ନିର୍ଭର କରୁଥିଲା । ଅର୍ଥାତ୍ ସେ ଯୁଗର ତୀବ୍ର ଏବଂ ଉଗ୍ର ଜାତୀୟତାବାଦ ଦାବି କରିଥିଲା ଯେ ଗୋଟିଏ ଜାତିପାଇଁ ଏକ ବଡ଼ ଇଉରୋପୀୟ ଶକ୍ତି ହେବା ଯଥେଷ୍ଟ ନୁହେଁ । ତାକୁ ଏକ ବିଶ୍ୱ-ଶକ୍ତି ହେବାକୁ ପଡ଼ିବ । ଏହି ନୂତନ ଆଦର୍ଶକୁ ବିଚାରକରି ଜର୍ମାନୀ ଦେଖିଲା ଯେ ତାହାର ମହତ୍ତ୍ୱ ପ୍ରତିଦ୍ୱନ୍ଦ୍ୱୀମାନଙ୍କଦ୍ୱାରା ଖର୍ବ କରିଦିଆଯାଇଛି । ଇଂଲଣ୍ଡ, ଫ୍ରାନ୍ସ ଏବଂ ରୁଷିଆ ପ୍ରତ୍ୟେକ ଔପନିବେଶିକ ସାମ୍ରାଜ୍ୟ ଗଠନ କରିଛନ୍ତି । ୧୯୦୦ ମସିହା ବେଳକୁ ପୃଥିବୀକୁ, ବିଶ୍ୱ-ଶକ୍ତି ହେବାପାଇଁ ଆଗ୍ରହାନ୍ୱିତ ପ୍ରାର୍ଥୀମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା । ଇଉରୋପର ବାହାରେ ଜର୍ମାନୀକୁ ଏକ କ୍ଷୁଦ୍ରତମ ଅଂଶ

ଦିଆଯାଇଥିଲା । ଜର୍ମାନୀ ତାର କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ଗର୍ବ ଅନୁଭବ କରିବା ସଙ୍ଗେ ସଙ୍ଗେ ପୃଥିବୀରେ ନିଜକୁ ସବୁଠାରୁ ବଡ଼ଶକ୍ତି ବୋଲି ମନେକରୁଥିଲା । ତେଣୁ ସାମ୍ରାଜ୍ୟ କ୍ଷେତ୍ରରେ ଏକ ନିମ୍ନସ୍ଥାନ ଗ୍ରହଣ କରିବାକୁ ରାଜି ହୋଇନଥିଲା । ପ୍ରକୃତରେ ସେ ବିଶ୍ୱଦରବାରରେ ସମ୍ମାନସୂଚକସ୍ଥାନ (a place in the Sun) ଦାବି କରିଥିଲା । ଅର୍ଥାତ୍ ଜର୍ମାନୀ ତାର ପଦମର୍ଯ୍ୟାଦାକୁ ଖାପଖାଇଲା ଭଳି ଏକ ବିଶ୍ୱ-ସାମ୍ରାଜ୍ୟ ପ୍ରତିଷ୍ଠା କରିବାପାଇଁ ଦୃଢ଼ପରିକର ଥିଲା । କାଇଜର ଦ୍ୱିତୀୟ ଉଇଲିୟମ୍ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ସବୁ ଦିଗରେ ସମ୍ଭାବ୍ୟ ନିର୍ଗମ ପଥ (Outlet) ଏବଂ ସାମ୍ରାଜ୍ୟ ବିସ୍ତାରର ଉପାୟ ଖୋଜିବାରେ ଲାଗିଥିଲେ; କିନ୍ତୁ ସେ ଦେଖିଥିଲେ ଯେ ସବୁଆଡ଼େ ତାଙ୍କପାଇଁ ରାସ୍ତା ବନ୍ଦ । ଫଳରେ ଜର୍ମାନୀ ପୃଥିବୀରେ ଅଶାନ୍ତି ଓ ଅସ୍ଥିରତାର ମୂଳକାରଣ ହୋଇଥିଲା ଏବଂ ତାର ଅତ୍ୟଧିକ ଉଚ୍ଚାଭିଳାଷ ଏବଂ ବିଶ୍ୱ-ସାମ୍ରାଜ୍ୟ ଗଢ଼ିବାର ସ୍ୱପ୍ନ ବିଶ୍ୱଯୁଦ୍ଧର ମୌଳିକ କାରଣ ବୋଲି ଧରାଯାଇପାରେ । ଇଉରୋପୀୟ ଜାତିମାନଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଓ ଦାମ୍ଭିକ ଜର୍ମାନ ଜାତିକୁ ସାମ୍ରାଜ୍ୟ ବିସ୍ତାର ଦୌଡ଼ ପ୍ରତିଯୋଗିତାରେ ପଛରେ ପକାଇଦେବା ଆଶାକରାଯାଇ ନପାରେ । ତେଣୁ ତିନି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ପୃଥିବୀର ବିଭାଜନକୁ ଜର୍ମାନୀ ଅଗ୍ରାହ୍ୟ କରିଦେଇଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରେଜ ସରକାର ଇଉରୋପୀୟ ରାଜନୀତିରୁ ଦୂରେଇ ରହିବାପାଇଁ ଏକପ୍ରକାର ବିଚ୍ଛିନ୍ନ ନୀତି (Policy of Isolation) ଅନୁସରଣ କରିଥିଲେ । ଉପନିବେଶ ପ୍ରତିଷ୍ଠା, ବିଦେଶବାଣିଜ୍ୟ ପ୍ରସାର ଆଦିରେ ଇଂରେଜମାନେ ଅଧିକ ମନ ଦେଇଥିଲେ । ଇଂରେଜମାନଙ୍କୁ ନିଜ ସହ ବନ୍ଧୁତା ସୂତ୍ରରେ ଆବଦ୍ଧ କରିବାପାଇଁ ବିସମାର୍କ ବହୁବାର ଚେଷ୍ଟାକରି ବିଫଳ ହୋଇଥିଲେ । ତେଣୁ ତ୍ରିଶକ୍ତି ମେଣ୍ଟ ପ୍ରତିଷ୍ଠାଦ୍ୱାରା ଇଂଲଣ୍ଡର ମନୋବୃତ୍ତିରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରାଯାଇନଥିଲା; କିନ୍ତୁ ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଇଂରେଜ ବୈଦେଶିକ ନୀତି ପରିବର୍ତ୍ତନ ହେଲା । ୧୮୯୮ ମସିହାରେ ଆଫ୍ରିକାସ୍ଥ ଉପନିବେଶଗୁଡ଼ିକର ସୀମାରେଖା ନେଇ ଫ୍ରାନ୍ସ ସହିତ ପ୍ରଥମେ ମତାନ୍ତର ଘଟିଲା । ସୁଦୂର ପ୍ରାଚ୍ୟରେ ରୁଷିଆ ଓ ଜର୍ମାନୀର ବାଣିଜ୍ୟନୀତି ଇଂରେଜ ସ୍ୱାର୍ଥରେ ବାଧା ସୃଷ୍ଟି କରିବାରୁ 'ବିଚ୍ଛିନ୍ନ ନୀତି' ତ୍ୟାଗ କରିବା-ପାଇଁ ଇଂଲଣ୍ଡ ବାଧ୍ୟ ହେଲା । ନିଜ ସ୍ୱାର୍ଥ ଦୃଷ୍ଟିରୁ ଫ୍ରାନ୍ସ ସହ ନିବିଡ଼ ବନ୍ଧୁତା ସୃଷ୍ଟି କରିବା ଉଚିତ କି ଜର୍ମାନୀ ସହ ବନ୍ଧୁତା କାମ୍ୟ ତାହା କୂଟନୀତିଜ୍ଞମାନେ ଚିନ୍ତାକରିବାକୁ ଲାଗିଲେ । ଲର୍ଡ଼ ସାଲିସ୍‌ବେରୀ, ଲର୍ଡ଼ ବେଲଫୋର୍ ଆଦି ରାଜନୀତିଜ୍ଞ ନେତା ଫ୍ରାନ୍ସ ସହ ସୌହାର୍ଦ୍ଦ୍ୟ ସ୍ଥାପନର ପକ୍ଷପାତୀ ଥିଲେ । କାଇଜର ଦ୍ୱିତୀୟ ଉଇଲିୟମ୍ ଇଂଲଣ୍ଡର ସୌହାର୍ଦ୍ଦ୍ୟ ପ୍ରତି ଆଗ୍ରହୀ ନହେବାରୁ ଇଂଲଣ୍ଡ ବାଧ୍ୟ ହୋଇ ଫ୍ରାନ୍ସ ପକ୍ଷ ଗ୍ରହଣକଲା ।

ଫ୍ରାନ୍ସର ବୈଦେଶିକ ମନ୍ତ୍ରୀ ଡେଲ୍‌କାସି ଇଂଲଣ୍ଡ ସହ ଏକ ନୂତନ ସୁସମ୍ପର୍କ ସ୍ଥାପନ ଦିଗରେ ଚେଷ୍ଟା ଚଳାଇଲେ । ୧୯୦୩ ମସିହାରେ ଇଂଲଣ୍ଡର ଶାସକ ସପ୍ତମ

ଏଡଓ୍ୱାର୍ଡ଼ ଫ୍ରାନ୍ସ ପରିଭ୍ରମଣରେ ଗଲେ ଏବଂ ଫ୍ରାନ୍ସର ରାଷ୍ଟ୍ରପତି ଲୋବେଟ୍ ଇଂଲଣ୍ଡ ପରିଭ୍ରମଣରେ ଯାଇଥିଲେ । ଏହି ପରିଭ୍ରମଣ ଦୁଇଦେଶର ବନ୍ଧୁତ୍ୱକୁ ନିବିଡ଼ତର କଲା । ୧୯୦୪ ମସିହା ଅପ୍ରେଲ ମାସ ୮ ତାରିଖ ଦିନ ଇଂଲଣ୍ଡ-ଫ୍ରାନ୍ସ ସୌହାର୍ଦ୍ଦ୍ୟ ଚୁକ୍ତି ସମ୍ପାଦିତ ହୋଇଥିଲା । ପୂର୍ବର ଶତ୍ରୁତା ଭୁଲି ଦୁଇଦେଶ ବନ୍ଧୁଭାବାପନ୍ନ ହୋଇଗଲେ ।

୧୯୦୪ ମସିହା ବେଳକୁ ରୁଷିଆର ରାଜନୈତିକ ମର୍ଯ୍ୟାଦା ବିଶେଷ ହ୍ରାସ ପାଇଥାଏ । ତାର ଆଭ୍ୟନ୍ତରୀଣ ଦୁର୍ବଳତା ଓ ଜାପାନକର୍ତ୍ତୃକ ପରାସ୍ତ ହେବା ଫଳରେ ନାନା ବିପର୍ଯ୍ୟୟର ସମ୍ଭାବନା ଦେଖାଦେଇଥିଲା । ତେଣୁ ଅବସ୍ଥା ସମ୍ଭାଳିବାପାଇଁ ରୁଷିଆ ସର୍ବଦା ଫ୍ରାନ୍ସ ଓ ଇଂଲଣ୍ଡର ସହଯୋଗ କାମନା କରୁଥିଲା । ଇଂଲଣ୍ଡର ନୌଶକ୍ତି ଓ ଆର୍ଥିକ ସାହାଯ୍ୟ ବିନା ଜର୍ମାନୀକୁ କାବୁ କରିବା ରୁଷିଆ ପକ୍ଷରେ ଆଦୌ ସମ୍ଭବ ନଥିଲା । ତେଣୁ ଇଂଲଣ୍ଡ ସହ ବନ୍ଧୁତ୍ୱରେ ଜଡ଼ିତ ହେବାକୁ ରୁଷିଆର ଶାସକ ଚେଷ୍ଟା ଚଳାଇଲେ । ୧୯୦୭ ମସିହା ମାର୍ଚ୍ଚ ମାସରେ ରୁଷନୌବାହିନୀ ପୋର୍ଟସମାଉଥକୁ ଶୁଭେଚ୍ଛା ଯାତ୍ରାରେ ଯାଇଥିଲା । ବ୍ରିଟିଶ ବୈଦେଶିକ ମନ୍ତ୍ରୀ ଏଡଓ୍ୱାର୍ଡ଼ ଗ୍ରେ' ଓ ରୁଷ ବୈଦେଶିକ ମନ୍ତ୍ରୀ ଇଜଭୋସ୍କି ଦୁଇଦେଶର ରାଜିନାମା ପାଇଁ ଏକ ଚିଠି ପ୍ରସ୍ତୁତକଲେ । ୧୯୦୭ ମସିହା ଅଗଷ୍ଟ ମାସ ୩୧ ତାରିଖରେ ତାହା ସ୍ୱାକ୍ଷରିତ ହେଲା ଏବଂ ଏହି ଇଂଲଣ୍ଡ-ରୁଷ ଚୁକ୍ତି ଇଂଲଣ୍ଡ-ଫ୍ରାନ୍ସ ଚୁକ୍ତିପରି ଏକ ସୌହାର୍ଦ୍ଦ୍ୟ ଚୁକ୍ତି ଥିଲା । ଏହା ଫଳରେ ରୁଷ-ଇଂଲଣ୍ଡ ଫ୍ରାନ୍ସ ଏକ ପୃଥକ କୂଟନୈତିକ ଦଳ ଗଠନ କରିଥିଲେ ଏବଂ ତାକୁ 'ତ୍ରିଶକ୍ତି ସଂଘ' (Triple Entente) ବୋଲି ଅଭିହିତ କରାଯାଏ ।

'ତ୍ରିଶକ୍ତି ସଂଘ' ଗଠନ ଜର୍ମାନୀରେ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଥିଲା । ସେ ମନେକରିଥିଲା ଯେ ଯେଉଁ ତିନି ବୃହତ୍‌ଶକ୍ତି ପୃଥିବୀର ବୃହତ୍ତର ଅଂଶକୁ ନିଜ ନିଜ ମଧ୍ୟରେ ବାଣ୍ଟି ନେଇଛନ୍ତି, ସେମାନେ ସାମ୍ରାଜ୍ୟ କ୍ଷେତ୍ରରେ ଜର୍ମାନୀକୁ ତାର ନ୍ୟାଯ୍ୟ ଦାବିରୁ ବଞ୍ଚିତ କରିବା ଉଦ୍ଦେଶ୍ୟରେ ଏହି ଚୁକ୍ତି ସମ୍ପାଦନ କରିଛନ୍ତି । ତା'ଛଡ଼ା ତାର ଆଶଙ୍କା ହେଲା ଯେ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷିଆର ନୀତିକୁ ସମର୍ଥନ କରିବ ଏବଂ ଏହି ସମର୍ଥନ ଫଳରେ ଫ୍ରାନ୍ସ ଆଲସେସ୍ ଓ ଲୋରେଇନ୍ ଫେରି ପାଇବାପାଇଁ ସାମରିକ ଓ କୂଟନୈତିକ ଉଦ୍ୟମ କରିପାରେ ଏବଂ ରୁଷିଆ ବଲକାନ୍ ଅଞ୍ଚଳରେ ତାର ପ୍ରତିପତ୍ତି ବିସ୍ତାର କରିବାପାଇଁ ମଧ୍ୟ ଅନୁରୂପ ଉଦ୍ୟମ କରିପାରେ । ତେଣୁକରି ଜର୍ମାନୀ ଇଂଲଣ୍ଡ ବିରୁଦ୍ଧରେ 'ପରିବେଷ୍ଟନ' (encirclement) ଅଭିଯୋଗ ଆଣିଥିଲା ଏବଂ ଦୃଢ଼ତାର ସହ କହିଥିଲା ଯେ ଇଂଲଣ୍ଡର ସୁଚିନ୍ତିତ ନୀତି ହେଲା ଜର୍ମାନୀକୁ ଏକ ଶତ୍ରୁଭାବାପନ୍ନ ସଂଘ (ତ୍ରିଶକ୍ତି ସଂଘ) ଦ୍ୱାରା ପରିବେଷ୍ଟିତ କରି ରଖିବା । ଜାପାନ ଏବଂ ଇଂଲଣ୍ଡ ମଧ୍ୟରେ ୧୯୦୨ ମସିହାରେ ଏକ ଚୁକ୍ତି ହେବା ଫଳରେ ଜାପାନ ମଧ୍ୟ ଏହି ସଂଘରେ ଯୋଗଦେଇଥିଲା । ତା'ଛଡ଼ା ଇଟାଲୀ, ଜର୍ମାନୀର ବନ୍ଧୁତା ପ୍ରତି ଉଦାସୀନ ମନୋଭାବ ପ୍ରଦର୍ଶନ କରୁଥିବାରୁ ତାକୁ 'ତ୍ରିଶକ୍ତି ମେଣ୍ଟ'ରୁ କାଢ଼ିନେବାପାଇଁ ଉଦ୍ୟମ କରାଯାଉଛି ବୋଲି ଜର୍ମାନୀ ସନ୍ଦେହ କରିଥିଲା । ଜର୍ମାନୀ

ବିରୁଦ୍ଧରେ ଉକ୍ତ ସଙ୍ଘ ଗଠନପାଇଁ ଇଂଲଣ୍ଡକୁ ଦାୟୀ କରାଯାଇଥିଲା ଏବଂ ବୃହତ୍ତର ବିଶ୍ୱ-ଶକ୍ତିମାନେ ସବୁ ଦିଗରେ ଜର୍ମାନୀର ଅଗ୍ରଗତି ପାଇଁ ବାଧା ସୃଷ୍ଟି କରୁଛନ୍ତି ବୋଲି ଜର୍ମାନୀ ଅଭିଯୋଗ କରିଥିଲା ।

ଜର୍ମାନୀ ବିଚାରିଲା ଯେ, 'ତ୍ରିଶକ୍ତି ସଙ୍ଘ' ଗଠନ ତାର ଉଚ୍ଚାଭିଳାଷ ପୂରଣ ଦିଗରେ ଯେ କେବଳ ଅନ୍ତରାୟ ସୃଷ୍ଟି କରିଛି ତାହା ନୁହେଁ, ତାର ଆନ୍ତର୍ଜାତିକ ପ୍ରଭାବକୁ ମଧ୍ୟ ଦୁର୍ବଳ କରିଦେଇଛି । ତେଣୁ ୧୯୦୭ ମସିହାରୁ ୧୯୧୧ ମସିହା ପର୍ଯ୍ୟନ୍ତ ଜର୍ମାନୀ ଏହି 'ତ୍ରିଶକ୍ତି ସଙ୍ଘ'କୁ ଭାଙ୍ଗିଦେବା, ବଲକାନ୍ ଅଞ୍ଚଳରେ ତାର ବିଶ୍ୱସ୍ତ ବନ୍ଧୁ ଅଷ୍ଟ୍ରିୟାର ସ୍ଥିତି ସୁଦୃଢ଼ କରିବା ଏବଂ ତୁର୍କୀକୁ ତା' ପକ୍ଷକୁ ଆଣିବାପାଇଁ ଆପ୍ରାଣ ଉଦ୍ୟମ କରିଥିଲା । ସେ ମଧ୍ୟ ବିଶ୍ୱ ରାଜନୀତିରେ ଅନ୍ୟାନ୍ୟ ବୃହତ୍ତର ଶକ୍ତିମାନଙ୍କ ସହିତ ସମାନ ଭାଗନେବାପାଇଁ ଦାବି କରିଥିଲା । ଜର୍ମାନୀର ଏ ରୂପ ମନୋଭାବ ଫଳରେ 'ତ୍ରିଶକ୍ତି ସଙ୍ଘ' ଏବଂ 'ତ୍ରିଶକ୍ତି ମେଣ୍ଟ' ମଧ୍ୟରେ କେତେକ ସାମୟିକ ସଙ୍କଟ ସୃଷ୍ଟି କରିଥିଲା । ଏହିସବୁ ସଙ୍କଟ ପ୍ରଧାନତଃ ମରକୋ ପରିସ୍ଥିତିରୁ ଏବଂ ବଲକାନ ପରିସ୍ଥିତିରୁ ଉପୁଜିଥିଲା ଏବଂ ଉଭୟ ସଙ୍କଟ ପାଇଁ ପ୍ରତ୍ୟକ୍ଷ-ଭାବରେ ହେଉ ବା ପରୋକ୍ଷଭାବରେ ହେଉ ଜର୍ମାନୀକୁ ଦାୟୀ କରାଯାଇପାରେ ।

ଯେ ଯାହାହେଉ, ଜର୍ମାନୀ-ଅଷ୍ଟ୍ରିୟା-ଇଟାଲୀର 'ତ୍ରିଶକ୍ତି ମେଣ୍ଟ' ଏବଂ ଇଂଲଣ୍ଡ-ଫ୍ରାନ୍ସ-ରୁଷିଆର 'ତ୍ରିଶକ୍ତି ସଙ୍ଘ' ଇଉରୋପ ମହାଦେଶକୁ ଦୁଇଟି ସାମରିକ ଗୋଷ୍ଠୀରେ ବିଭକ୍ତ କରିଦେଲା । ଇଉରୋପର ଭବିଷ୍ୟତ ନିର୍ଭର କରୁଥିଲା ଦୁଇ ସାମରିକ ଗୋଷ୍ଠୀର ସୁସମ୍ପର୍କ ଉପରେ; କିନ୍ତୁ ସୁସମ୍ପର୍କ ରକ୍ଷା ସମ୍ଭବ ନଥିଲା । କାରଣ ଦେଶ ଦେଶ ମଧ୍ୟରେ ନାନା କାରଣରୁ ପ୍ରତିଦ୍ୱନ୍ଦ୍ୱିତା ଏବଂ ଈର୍ଷା ଲାଗିରହିଥିଲା । ଜର୍ମାନୀର ବିରାଟ ସାମ୍ରାଜ୍ୟ ଗଠନର ପରିକଳ୍ପନା ଏବଂ ତାର ନୌବାହିନୀର ବୃଦ୍ଧି ଇଂରେଜମାନଙ୍କ ମନରେ ସନ୍ଦେହ ଓ ଭୟ ସଞ୍ଚାର କରିଥିଲା । ଉତ୍ତର-ପଶ୍ଚିମ ଆଫ୍ରିକାରେ ଜର୍ମାନୀଦ୍ୱାରା 'ଆଗାଦିର' ଏବଂ ଫ୍ରାନ୍ସଦ୍ୱାରା 'ଫେଜ୍' ଅଧିକାର ଯୋଗୁ କଳହ ଆରମ୍ଭ ହେଲା ।

ଜାତୀୟ ସ୍ୱାର୍ଥରକ୍ଷା ପାଇଁ ସଭିଏଁ ବ୍ୟସ୍ତ ଥିଲେ । ବଲକାନ ଅଞ୍ଚଳରେ ରୁଷିଆ ଓ ଅଷ୍ଟ୍ରିୟା ପରସ୍ପର ପ୍ରତିଯୋଗୀ ଥିଲେ । ସେମାନଙ୍କୁ ସମର୍ଥନ ଜଣାଉଥିଲେ ଯଥାକ୍ରମେ ଫ୍ରାନ୍ସ ଏବଂ ଜର୍ମାନୀ । ଇଟାଲୀର ଭବିଷ୍ୟତ ନୀତି ଅନିଶ୍ଚିତ ଥିବାରୁ ଜର୍ମାନୀ ନିଜର ସାମରିକ ଶକ୍ତି ଯଥେଷ୍ଟ ବୃଦ୍ଧି କରିବା ଉଚିତ ମଣୁଥିଲା । ଜାତି ଜାତି ମଧ୍ୟରେ ଜାତୀୟ ସ୍ୱାର୍ଥନେଇ ନାନା ଷଡ଼ଯନ୍ତ୍ର ଏବଂ ପରିହାସମୂଳକ ସମାଲୋଚନା ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇ ଅବସ୍ଥାକୁ ଜଟିଳ କରୁଥିଲା । ପଡ଼ୋଶୀରାଷ୍ଟ୍ରମାନଙ୍କ ମଧ୍ୟରେ ଅକପଟ ବନ୍ଧୁତ୍ୱ ବିରଳ ଥିଲା । ତେଣୁ ସନ୍ଦେହ, ଭୟ ଓ ଘୃଣା ଆନ୍ତର୍ଜାତିକ ଜୀବନକୁ ବିଷମୟ କଲା । ରାଷ୍ଟ୍ରଗୁଡ଼ିକରେ ସେଥିପାଇଁ ସାମରିକ ପ୍ରସ୍ତୁତି ଆରମ୍ଭ ହେଲା । ନିଜ ନିଜ ସ୍ୱାର୍ଥରେ ଆକ୍ରମଣାତ୍ମକ ଯୋଜନା ମଧ୍ୟ କେତେକ ରାଜ୍ୟ ପ୍ରସ୍ତୁତ କଲେ । ଇଉରୋପର ଭବିଷ୍ୟତ ଅନ୍ଧକାରମୟ ହୋଇଆସିଲା ।

ଆନ୍ତର୍ଜାତିକ ପରିସ୍ଥିତିକୁ ବେଶି ଜଟିଳ କଲା ଜର୍ମାନୀ । ଜର୍ମାନୀର ଆଭ୍ୟନ୍ତରୀଣ ପ୍ରସ୍ତୁତି ଓ ବୈଦେଶିକ ନୀତି ଇଉରୋପକୁ ଧ୍ୱଂସ ମୁଖକୁ ଟାଣିନେଇଥିଲା । ସେ ଥିଲା ଇଉରୋପର ଅତି ଶକ୍ତିଶାଳୀ ରାଷ୍ଟ୍ର । ଅଷ୍ଟ୍ରିୟା ଓ ଇଟାଲୀ ଉପରେ ତାହାର ପ୍ରଭାବ ଅକ୍ଷୁଣ୍ଣ ଥିଲା । ସୁଇଡେନ୍ ଓ ତୁର୍କୀ ମଧ୍ୟ ତାହାର ନେତୃତ୍ୱ ସ୍ୱୀକାର କରୁଥିଲେ । ଦେଶରେ ନାଗରିକମାନଙ୍କୁ ବାଧ୍ୟତାମୂଳକ ସାମରିକ ଶିକ୍ଷା ଦିଆଯାଉଥିଲା । ଯୁଦ୍ଧପାଇଁ ସେମାନଙ୍କ ମନରେ ଆଗ୍ରହ ଓ ଉତ୍ସାହ ବଢ଼ୁଥିଲା । ସମଗ୍ର ଜର୍ମାନୀ ଥିଲା ଏକ ସେନାଗୃହିଣୀ । ଜର୍ମାନମାନେ ଯୁଦ୍ଧକୁ ଭୟ କରୁନଥିଲେ । ସଭ୍ୟତା ଓ ସଂସ୍କୃତିର ମାପକାଠି ରୂପେ ଯୁଦ୍ଧକୁ ସେମାନେ ଆଗ୍ରହର ସହ ଅନାଇ ବସିଥିଲେ । ସେମାନେ ଅଳ୍ପେଶରେ ସାରା ଇଉରୋପ ଓ ସାରା ପୃଥିବୀକୁ କବଳିତ କରିପାରିବାର ଆତ୍ମବିଶ୍ୱାସ ପୋଷଣ କରିଥିଲେ ।

ଏ ଦିଗରେ ଅବଶ୍ୟ ନେତୃତ୍ୱ ଦେଇଥିଲେ କାଇଜର ଦ୍ୱିତୀୟ ଉଇଲିୟମ୍ । ସେ ଥିଲେ ଏକ ଭାବପ୍ରବଣ, ତରୁଣ, ହିତାହିତଜ୍ଞାନଶୂନ୍ୟ ଶାସକ । ତାଙ୍କର ଅଦମ୍ୟ ଅଭିଳାଷ ଥିଲା ଜର୍ମାନୀକୁ ପୃଥିବୀର ସର୍ବଶ୍ରେଷ୍ଠ ଶକ୍ତିରୂପେ ପ୍ରତିଷ୍ଠା କରିବା । ସେଥିପାଇଁ ସେ କେବଳ ସେନାବାହିନୀ, ନୌବାହିନୀ ଗଠନ ଓ ପ୍ରଶିକ୍ଷଣ ଦିଗରେ ମନପ୍ରାଣ ଢାଳି-ଦେଇଥିଲେ । ବିସମାର୍କ ଅନୁସୃତ ସ୍ଥିତାବସ୍ଥା ରକ୍ଷା ନୀତିକୁ ସେ ତ୍ୟାଗକରି ଏକ ଅସହିଷ୍ଣୁ, ଆତ୍ମଘାତୀମୂଳକ ବୈଦେଶିକ ନୀତି ଅବଲମ୍ବନ କଲେ । ତାହା ଠିକ୍ ରୂପେ ପରିକଳ୍ପିତ ହୋଇନଥିଲା । ବରଂ କାଇଜରଙ୍କ ଅଦୂର ଦୃଷ୍ଟିର ତାହା ଥିଲା ଦୃଷ୍ଟାନ୍ତ । ତାଙ୍କର ଅହଙ୍କାର ସ୍ୱଭାବ ଯୋଗୁ ଜର୍ମାନୀର ବୈଦେଶିକ ନୀତି ବର୍ତ୍ତମାନ ଆକ୍ରମଣାତ୍ମକ ହେଲା । କେବଳ ଯୁଦ୍ଧ ଯୁଦ୍ଧ ବୋଲି ସେ ଚିତ୍କାର କଲେ । ସେ ନେପୋଲିୟନ୍ ବୋନାପାର୍ଟଙ୍କ ପଦାଙ୍କ ଅନୁସରଣ କରିବାକୁ ଚାହୁଁଥିଲେ । ଯୁଦ୍ଧଦ୍ୱାରା ପୋଲାଣ୍ଡକୁ ରୁଷିଆକବଳରୁ ମୁକ୍ତ କରିବା ତାଙ୍କର ଇଚ୍ଛା ଥିଲା । ଇଉରୋପରେ ସ୍ଥାନାଭାବ ହେଉଥିବାରୁ ବୃଦ୍ଧିରତ ଜନସମାଜକୁ ବସବାସ ଯୋଗାଇବା ଉଦ୍ଦେଶ୍ୟରେ ଇଂରେଜ ସାମ୍ରାଜ୍ୟକୁ ଭାଙ୍ଗି ବାଣ୍ଟି-ଦେବାକୁ ମଧ୍ୟ ସେ ଚାହୁଁଥିଲେ ।

ଶାସକ ଭାବରେ ଉଇଲିୟମ୍‌ଙ୍କଠାରେ ଦାୟିତ୍ୱଜ୍ଞାନର ଅଭାବ ଥିଲା । କୌଣସି ପରିସ୍ଥିତି ଧୈର୍ଯ୍ୟର ସହ ଶାନ୍ତମନରେ ମୁକାବିଲା କରିବାକୁ ସେ ଅକ୍ଷମ ଥିଲେ । ରାଜନୀତିକ ଅଦୂରଦର୍ଶିତା ତାଙ୍କ କର୍ମମୟ ଜୀବନର ମୂଳମନ୍ତ୍ର ଥିଲା । ସେ ସର୍ବଦା ସାମରିକ ଅଫିସରମାନଙ୍କଦ୍ୱାରା ପରିବେଷ୍ଟିତ ହେବାକୁ ଭଲପାଉଥିଲେ । ସେମାନେ ତାଙ୍କୁ ରାଷ୍ଟ୍ରନୀତି ପରିଚାଳନାରେ ପରାମର୍ଶ ଦେଉଥିଲେ ।

ଏହି ସମୟରେ ଜର୍ଜ ଆଲେକ୍‌ଜାଣ୍ଡାର ସୁଲର ଏବଂ ହାଁସ ଡେଲବ୍ରୁକ୍ ଜର୍ମାନୀର ବିଶ୍ୱନୀତି ସମ୍ପର୍କରେ ପ୍ରଚାର କରିଥିଲେ । ତଦ୍ଦ୍ୱାରା ଜର୍ମାନୀ କପରି ବିଶ୍ୱଶକ୍ତି ହେବାକୁ ଚାହେଁ, ଓ ଜର୍ମାନ ଜାତିର ଭବିଷ୍ୟତ କପରି ତାହା ଉପରେ ନିର୍ଭରକରେ ଆଦି ବିସ୍ତୃତଭାବେ ଆଲୋଚିତ ହୋଇଥିଲା । ଏହି ନୀତିର ସାର୍ଥକତା ପାଇଁ ଯୁଦ୍ଧର ସମ୍ଭାବନା ମଧ୍ୟ ଥିଲା ଏବଂ ତାହା

ଜର୍ମାନମାନଙ୍କୁ ପ୍ରଭାବିତ କରିଥିଲା । ସେଥିପାଇଁ ଦରକାର ଏକ ଶକ୍ତିଶାଳୀ ନୌବାହିନୀ ଗଠନ ଦିଗରେ ମନୋନିବେଶ କରିଥିଲେ । ଏହି ନୀତିକୁ କାର୍ଯ୍ୟକାରୀ କରିବା ଦିଗରେ କାଇଜର ଏବଂ ବୈଦେଶିକ ବ୍ୟାପାର ମନ୍ତ୍ରୀ ବ୍ୟୁଲୋ ଦୃଢ଼ସଙ୍କଳ୍ପ କରିଥିଲେ । ଜର୍ମାନମାନଙ୍କର ଅନ୍ନସଂସ୍ଥାନ ଓ ଶିଳ୍ପକାରଖାନା ପାଇଁ ସାମଗ୍ରୀ ଆଦିର ବ୍ୟବସ୍ଥା କରିବାକୁ ହେଲେ ଜର୍ମାନୀ ଅଧିକ ଅଞ୍ଚଳ ତାର ଅଧୀନକୁ ଆଣିବା ଦରକାର । ଇଉରୋପର ସୀମିତ ପରିସର ମଧ୍ୟରେ ଜର୍ମାନ ଜାତି ବଞ୍ଚି ରହିନପାରେ । ତେଣୁ ସାମ୍ରାଜ୍ୟ ପାଇଁ ବଳପ୍ରୟୋଗ ବା ହିଂସାତ୍ମକ ନୀତି ଦୋଷାବହ ହୋଇ ନପାରେ । ତେଣୁ ଜର୍ମାନୀରୁ ସାମରିକ ଶକ୍ତି ବିଶ୍ୱନୀତି ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କଲା ।

ଏହି ବିଶ୍ୱନୀତି ଆରମ୍ଭ ହେଲା ୧୮୯୭ ମସିହାରେ, ଯେତେବେଳେ ସୁଦୂର ପ୍ରାଚ୍ୟ ଭୂଖଣ୍ଡରେ ଜର୍ମାନୀ କିଆଓ୍ଚୋ ଅଧିକାର କଲା । ନୌବାହିନୀର ଶକ୍ତି ବୃଦ୍ଧି କରି, ନାନା ମାରଣାସ୍ତ୍ରରେ ତାକୁ ସଜ୍ଜିତ କରି ଜର୍ମାନୀ ନିଜ ଲକ୍ଷ୍ୟ ପଥରେ ଆଗେଇ ଚାଲିଲା ।

ଜର୍ମାନୀର ଅଭିଯାନମୂଳକ ବୈଦେଶିକ ନୀତି ଲକ୍ଷ୍ୟକରି, ଫ୍ରାନ୍ସ, ଇଂଲଣ୍ଡ ଓ ରୁଷିଆ ନିଜ ନିଜର ସାମ୍ରାଜ୍ୟବାଦୀ ବିଭେଦ ଭୁଲିଯାଇ 'ତ୍ରିଶକ୍ତି ସଙ୍ଘ' ଗଠନ କରିଥିଲେ । ଜର୍ମାନୀର ଶକ୍ତି ଓ ପ୍ରଗତି ଇଂଲଣ୍ଡକୁ ଆଶ୍ଚର୍ଯ୍ୟ କଲା । ଆଲସେସ୍ ଲୋରେଇନ ପୁନରଧିକାର ଦିଗରେ ପ୍ରତିହିଂସା ଯୁଦ୍ଧକୁ ତୁରନ୍ତ ଆରମ୍ଭ କରିବାପାଇଁ ଫ୍ରାନ୍ସ ଅସ୍ଥିର ହେଲା । ଇଂରେଜମାନେ ବାଣିଜ୍ୟ ବ୍ୟବସାୟରେ ଜର୍ମାନୀର ପ୍ରତିଯୋଗିତା ଲକ୍ଷ୍ୟକଲେ । ବଳାତ୍କାରରେ ଜର୍ମାନମାନଙ୍କପାଇଁ ବଞ୍ଚିବାର ସ୍ଥାନ ଅଧିକାରକରିବା ନୀତିକୁ ସେମାନେ ନାପସନ୍ଦ କଲେ । ଜର୍ମାନୀକୁ ନିଜ ସାମ୍ରାଜ୍ୟ ବା ଉପନିବେଶ ଛାଡ଼ିଦେବାର ଉଦାରତା ସେମାନଙ୍କର ନଥିଲା । ସେମାନଙ୍କର ଏକଚାଟିଆ ବାଣିଜ୍ୟ ବିପନ୍ନ ନହେବାର ବ୍ୟବସ୍ଥା ତେଣୁ କରିବା ଦରକାର ହେଲା ।

ଇଉରୋପ ମହାଦେଶରେ ସର୍ବଶ୍ରେଷ୍ଠ ଶକ୍ତିରୂପେ ପ୍ରତିଷ୍ଠା ପାଇବା ପରେ ବିଶ୍ୱ ରାଜନୀତିରେ ଇଂଲଣ୍ଡ ସହ ଜର୍ମାନୀର ପ୍ରତିଦ୍ୱନ୍ଦ୍ୱିତା ସ୍ୱାଭାବିକ ଥିଲା । ବିଶ୍ୱନୀତି ଜର୍ମାନ ଜାତିର ଲକ୍ଷ୍ୟ ଓ ଆଦର୍ଶ ହେବାରୁ ଏହି ପ୍ରତିଦ୍ୱନ୍ଦ୍ୱିତା ସଙ୍ଘର୍ଷର ରୂପ ନେବା ମଧ୍ୟ ସ୍ୱାଭାବିକ ଥିଲା ।

ଏହି ପ୍ରତିଦ୍ୱନ୍ଦ୍ୱିତାକୁ ପୃଥିବୀର ସର୍ବଶ୍ରେଷ୍ଠ ସ୍ଥଳ-ଶକ୍ତି (ଜର୍ମାନୀ) ଏବଂ ସର୍ବଶ୍ରେଷ୍ଠ ସାମୁଦ୍ରିକ ଶକ୍ତି (ଇଂଲଣ୍ଡ) ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ବୋଲି କୁହାଯାଏ ।

କାଇଜର ଦ୍ୱିତୀୟ ଉଇଲିୟମଙ୍କର ବିଶ୍ୱନୀତି ପୃଥିବୀ ବିଜୟ ପରିକଳ୍ପନାର ଏକ ଆତ୍ମପ୍ରକାଶ ମାତ୍ର । ଫ୍ରାନ୍ସ ପକ୍ଷେ ପରାକ୍ରମଶାଳୀ ଜର୍ମାନୀକୁ ଇଉରୋପର ସଂକୀର୍ଣ୍ଣ ରାଜନୀତିରେ ଆବଦ୍ଧ କରି ରଖିବା ଅସମ୍ଭବ ଥିଲା । ସେତେବେଳେ ଥିଲା ଉପନିବେଶ ସ୍ଥାପନ ଏବଂ ସାମ୍ରାଜ୍ୟ ଗଠନର ଯୁଗ । ବିସମାର୍କ ଉପନିବେଶ ସ୍ଥାପନପାଇଁ ଅନିଚ୍ଛୁକ ଥିବାରୁ ଜର୍ମାନୀ ସେ ଦିଗରେ ଅନ୍ୟାନ୍ୟ ଇଉରୋପୀୟ ରାଜ୍ୟମାନଙ୍କଠାରୁ ପଛରେ ପଡ଼ିଥିଲା ।

ଦ୍ରୁତ ଶିଳ୍ପ ପ୍ରସାର ଫଳରେ କଞ୍ଚାମାଲ ଆମଦାନୀ ଓ ଉତ୍ପାଦନ ଦ୍ରବ୍ୟର ବିକ୍ରୟ ପାଇଁ ବଜାର ଦରକାର ହେବାରୁ ଜର୍ମାନମାନେ ତୁର୍କ ତୁର୍କୀର ରାଜନୈତିକ ଦୁରବସ୍ଥାର ସୁଯୋଗ ନେଇ ଆର୍ଥନୀତିକ ସୁବିଧା ହାସଲ କରିଥିଲେ । ତୁର୍କୀରେ ଜର୍ମାନୀର ଆର୍ଥନୀତିକ ଶୋଷଣ ନୀତିକୁ 'ପ୍ରାଚୀ ପଥେ ପ୍ରଗତି' ନାମରେ ଅଭିହିତ କରି ବ୍ୟୁଲେ ଏକ ନୂତନ ନୀତି ଘୋଷଣା କରିଥିଲେ । ତଦ୍ୱାରା ବର୍ଲିନଠାରୁ ବାଗ୍‌ଦାଦ ପର୍ଯ୍ୟନ୍ତ ଏକ ସୁଦୀର୍ଘ ରେଳପଥ ନିର୍ମିତ ହୋଇଥାନ୍ତା । ମଧ୍ୟ ପ୍ରାଚ୍ୟପାଇଁ ଜର୍ମାନ ବଣିକମାନେ ଯାତାୟାତର ସୁବିଧା ସୁଯୋଗ ପାଇଥାନ୍ତେ । ତୁର୍କୀର ଆଭ୍ୟନ୍ତରୀଣ ଅବସ୍ଥାକୁ ସଜାଡ଼ିବା ପାଇଁ ଜର୍ମାନ କୂଟନୀତିଜ୍ଞ ଓ ବିଶେଷଜ୍ଞମାନେ ନିୟୋଜିତ ହୋଇଥାନ୍ତେ । ଏସିଆ ମାଇନର ଅଞ୍ଚଳର ପୋତାଶ୍ରୟ, ସମୁଦ୍ରୋପକୂଳ ଓ ବଜାର ସହିତ ଜର୍ମାନୀର ଶିଳ୍ପାଞ୍ଚଳ ଯୋଗସୂତ୍ର ସ୍ଥାପନ କରିଥାନ୍ତା । ଜର୍ମାନ ପୁଞ୍ଜିର ବିନିଯୋଗ ପାଇଁ ଉପଯୁକ୍ତ କ୍ଷେତ୍ର ମିଳିଥାନ୍ତା । ତୁର୍କୀର ଖଣିଜ ପଦାର୍ଥର ନିଷ୍କାସନ ଓ ବିନିଯୋଗରେ ଜର୍ମାନମାନେ ଲାଭବାନ୍ ହୋଇଥାନ୍ତେ । ଫଳରେ ଜର୍ମାନୀର ଆର୍ଥନୀତିକ ତଥା ରାଜନୀତିକ ଫାଏଦା ଯଥେଷ୍ଟ ହୋଇଥାନ୍ତା; କିନ୍ତୁ ଜର୍ମାନୀର ସ୍ୱାର୍ଥ ଦୃଷ୍ଟିରୁ ଏହି ପ୍ରାଚୀ ପଥେ ପ୍ରଗତି ଓ ବିଶ୍ୱନୀତି ଯେତେ ଉପାଦେୟ ହେଲେହେଁ, ଇଂଲଣ୍ଡ-ଫ୍ରାନ୍‌ସ-ରୁଷିଆର ସାମ୍ରାଜ୍ୟବାଦ ବିରୁଦ୍ଧରେ ତାହା ଉଦ୍ଦିଷ୍ଟ ଥିବାରୁ ପରିଣତି ଭଲ ହେବାର କୌଣସି ଆଶା ନ ଥିଲା ।

୧୯୦୪ ମସିହାରେ ଇଂଲଣ୍ଡ ଓ ଫ୍ରାନ୍‌ସ ମଧ୍ୟରେ ମୈତ୍ରୀ ଚୁକ୍ତି ଜର୍ମାନୀପାଇଁ ପ୍ରଥମ କୂଟନୀତିକ ପରାଜୟ ଥିଲା । ଜର୍ମାନୀ ଇଉରୋପୀୟ ରାଜନୀତିରେ ଯେପରି ପ୍ରଭାବ ବିସ୍ତାରକରି ନିଜକୁ ପ୍ରତିଷ୍ଠିତ କରିଥିଲା, ତାହାର ପରିଣତି ଥିଲା ଏହି ମୈତ୍ରୀଚୁକ୍ତି । ସେହିପରି ମରକକୋ ପ୍ରଶ୍ନ ନେଇ ଜର୍ମାନୀ ପୁଣି ଥରେ କୂଟନୀତିକ ପରାଜୟ ସ୍ୱୀକାର କଲା । ମରକ୍‌କୋ ଥିଲା ଉତ୍ତର-ପଶ୍ଚିମ ଆଫ୍ରିକାର ଏକ ରାଜତନ୍ତ୍ର ଶାସିତ ଦେଶ । ୧୮୮୦ ମସିହାରେ ସେଠାକାର ସୁଲତାନ ଶାସନକୁ ସମସ୍ତେ ସ୍ୱୀକୃତି ଦେଇଥିଲେ । କିନ୍ତୁ ୧୯୦୪ ମସିହାରେ ଫ୍ରାନ୍‌ସ ଓ ଇଂଲଣ୍ଡ ମଧ୍ୟରେ ଯେଉଁ ଗୁପ୍ତ ରାଜିନାମା ହେଲା, ତହିଁରେ ଗୋଟିଏ ସର୍ତ୍ତ ଥିଲା ଯେ ମିଶର (ଇଜିପ୍ଟ) ଅଞ୍ଚଳରେ ଇଂଲଣ୍ଡ ଔପନିବେଶିକ ସ୍ୱାର୍ଥକୁ ଫ୍ରାନ୍‌ସ ଅନୁମୋଦନ କରିବ ଏବଂ ଉତ୍ତର-ପଶ୍ଚିମ ଆଫ୍ରିକାରେ ଫ୍ରାନ୍‌ସର ଅନୁରୂପ ସ୍ୱାର୍ଥକୁ ଇଂଲଣ୍ଡ ସମର୍ଥନ କରିବ । ସେ ଦୃଷ୍ଟିରୁ ମରକ୍‌କୋ ଉପରେ ରାଜପ୍ରତିନିଧି ସ୍ଥାପନ ପାଇଁ ଫ୍ରାନ୍‌ସକୁ ଅନୁମତି ମିଳିଲା । ଅଳ୍ପ କେତେଦିନ ପରେ ମରକ୍‌କୋର ଆର୍ଥନୀତିକ ଶୋଷଣ ପାଇଁ ଫ୍ରାନ୍‌ସ ଓ ସ୍ପେନ ନିଜ ନିଜ ମଧ୍ୟରେ ବିଭାଗ କରିବାକୁ ସ୍ଥିରକଲେ । କିନ୍ତୁ ଏହି ବ୍ୟବସ୍ଥାରେ ଜର୍ମାନୀର ମତାମତ ନିଆ ନ ଯିବାରୁ କାଇଜର୍ ଖୁବ୍ କ୍ରୋଧାନ୍ୱିତ ହେଲେ । ଫ୍ରାନ୍‌ସର ପ୍ରଶାସନ ବ୍ୟବସ୍ଥା କାର୍ଯ୍ୟକାରୀ ହେଲେ ମରକ୍‌କୋରେ ଜର୍ମାନ ପୁଞ୍ଜିପତି ଏବଂ ବ୍ୟବସାୟୀଙ୍କ ସ୍ୱାର୍ଥ ବାଧାପ୍ରାପ୍ତ ହେବାର ସେ ଅନୁମାନ କଲେ । ତେଣୁ ସୁଲତାନଙ୍କୁ ପ୍ରରୋଚିତ କରିବା ଉଦ୍ଦେଶ୍ୟରେ ୧୯୦୫ ମସିହାରେ ସେ ମରକ୍‌କୋ ଯାତ୍ରାକଲେ । ଟାଞ୍ଜିୟାର ସହରରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରଯାଇଥିଲା । କେବଳ

ବ୍ୟାବସାୟିକ ସ୍ୱାଧୀନତା ଓ ଜର୍ମାନୀର ସ୍ୱାର୍ଥରକ୍ଷା ପାଇଁ ସେ ମରକ୍କୋ ଆସିଥିବାର ପ୍ରକାଶ କଲେ । ସେଠାରେ ସ୍ଥିର ହେଲା ଯେ, ମରକ୍କୋ ସମସ୍ୟାର ସମାଧାନ ପାଇଁ ଏକ ଆନ୍ତର୍ଜାତିକ ସମ୍ମିଳନୀ ଆହୂତ ହେବ । ଏ ପ୍ରକାର ସମ୍ମିଳନୀ ଜର୍ମାନୀ ପାଇଁ ଅନୁକୂଳ ହେବ ବୋଲି କାଇଜରଙ୍କ ବିଶ୍ୱାସ ଥିଲା ।

କିନ୍ତୁ ଜର୍ମାନୀର ଏତାଦୃଶ ପଦକ୍ଷେପରେ ଫ୍ରାନ୍ସ ଉତ୍ପୀଡ଼ିତ ହେଲା । ଫରାସୀମାନେ ମରକ୍କୋ ପ୍ରଶ୍ନ ନେଇ କୌଣସି ଯୁଦ୍ଧରେ ଜଡ଼ିତହେବାକୁ ଚାହୁଁ ନଥିଲେ । ତେଣୁ ଜର୍ମାନୀକୁ ସନ୍ତୁଷ୍ଟ କରିବାପାଇଁ ପ୍ରଧାନମନ୍ତ୍ରୀ ରୋଭିୟାର ମରକ୍କୋରେ ସବୁ ବିଦେଶୀ ରାଜ୍ୟର ବ୍ୟାବସାୟିକ ଅଧିକାର ଅକ୍ଷୁଣ୍ଣ ରହିବ ବୋଲି ଘୋଷଣା କଲେ । ଏହି ପ୍ରଶ୍ନ ନେଇ ଫ୍ରାନ୍ସର ବୈଦେଶିକ ମନ୍ତ୍ରୀ ଡେଲ୍‌କାସିଙ୍କୁ ବିଦାୟନେବାକୁ ପଡ଼ିଥିଲା ; କାରଣ ସେ ଜର୍ମାନୀର କୌଣସି ପ୍ରସ୍ତାବରେ ରାଜି ହେଉନଥିଲେ । ୧୯୦୬ ମସିହା ଜାନୁୟାରୀ ମାସରେ ଆଲ୍‌ଜେସିରସ୍‌ଠାରେ ଆନ୍ତର୍ଜାତିକ ମହାସଭାର ବୈଠକ ବସିଲା । ସେଠାରେ ଫ୍ରାନ୍ସ ଓ ଇଂଲଣ୍ଡ ମିଳିତଭାବେ ଜର୍ମାନୀର ବିରୋଧ କରିଥିଲେ । ଫଳରେ ଜର୍ମାନୀ ପ୍ରତି ଉଭୟ ସରକାରଙ୍କର ଶତ୍ରୁଭାବ ବୃଦ୍ଧି ପାଇଥିଲା ।

ମର୍‌କ୍କୋରେ ଫରାସୀମାନଙ୍କର ଆର୍ଥନୀତିକ ଶୋଷଣ ଓ ରାଜନୀତିକ ହସ୍ତକ୍ଷେପରେ ସ୍ଥାନୀୟ ଅଧିବାସୀମାନେ ଅସନ୍ତୁଷ୍ଟ ଥିଲେ । ସୁଲତାନ ମଧ୍ୟ ନାନା ଅସୁବିଧାର ସମ୍ମୁଖୀନ ହେଉଥିଲେ । ଏହି ଅସନ୍ତୋଷ ଯୋଗୁଁ ୧୯୧୧ ମସିହା ମାର୍ଚ୍ଚମାସ 'ଫେଜ୍‌' ସହରରେ ବିପ୍ଳବ ଆରମ୍ଭ ହେଲା । ବିପ୍ଳବୀମାନେ ଫରାସୀ ଧନଜୀବନ ନଷ୍ଟକରିବାରୁ ଫରାସୀ ସରକାର ସାମରିକ ହସ୍ତକ୍ଷେପଦ୍ୱାରା 'ଫେଜ୍‌' ସହର ଅଧିକାର କରିନେଲେ । ଏହାଦ୍ୱାରା ଆଲଜେସିରସ୍ ଚୁକ୍ତିର ଖିଲାପ ହେଲା ବୋଲି ଜର୍ମାନୀ ପ୍ରତିବାଦ ଜଣାଇଲା । ସେ ଦୃଷ୍ଟିରୁ ଜର୍ମାନୀ ନିଜ ଇଚ୍ଛାନୁସାରେ ମରକ୍କୋନୀତି ଅନୁସରଣ କରିବ ବୋଲି ଧମକ୍ ଦେଲା । ଫଳରେ ଅବସ୍ଥା କ୍ରମଶଃ ଜଟିଳ ହେଲା । ଫରାସୀ ସରକାରଙ୍କ ରାଜନୀତିକ ଉଦ୍ଦେଶ୍ୟ ବୁଝିବାକୁ ଜର୍ମାନୀ ଅକ୍ଷମ ନ ଥିଲା । ମରକ୍କୋରେ ଫରାସୀ ସ୍ୱାର୍ଥରକ୍ଷାପାଇଁ ଅଧିକ ସାମରିକ ଶକ୍ତି ଫ୍ରାନ୍ସ ପ୍ରୟୋଗ କରିପାରେ; ଏହି ଧାରଣା ଦୃଢ଼ୀଭୂତ ହେଲା । ସୁଲତାନ ନିଜ ପ୍ରାଣରକ୍ଷାପାଇଁ ଫରାସୀ ସେନାବାହିନୀର ଶରଣାପନ୍ନ ହେଲେ । ଫ୍ରାନ୍ସ ଯଦି ମରକ୍କୋ ଅଧିକାର କରେ, ତେବେ ସେଥିପାଇଁ ଜର୍ମାନୀକୁ କ୍ଷତିପୂରଣ ମିଳିବା ଉଚିତ ବୋଲି ଜର୍ମାନ ସମ୍ବାଦ ପତ୍ରମାନଙ୍କରେ ଦାବି ପ୍ରକାଶପାଇଲା । ଫ୍ରାନ୍ସ 'ଫେଜ୍‌' ଅଧିକାର କରିବାର ମାତ୍ର ଦୁଇ ସପ୍ତାହ ପରେ ସ୍ପେନ୍‌ର ସୈନ୍ୟବାହିନୀ ଲାରାଚେଠାରେ ଅବତରଣ କରିଥିଲେ । ଫ୍ରାନ୍ସ ଏହାର ପ୍ରତିବାଦ କରି ଜର୍ମାନୀର କ୍ଷତିପୂରଣ ପ୍ରସ୍ତାବରେ ରାଜିହୋଇଥିଲା । ଜର୍ମାନୀ କିନ୍ତୁ ମରକ୍କୋର କୌଣସି ଅଂଶ କ୍ଷତିପୂରଣ ବାବଦରେ ଚାହୁଁ ନଥିଲା । ସେଠାରେ ଫ୍ରାନ୍ସକୁ ପୂର୍ଣ୍ଣ ଅଧିକାର ଛାଡ଼ିଦେଇ ଫରାସୀ କଙ୍ଗୋକୁ ନିଜେ କବଳିତ କରିବାକୁ ଚାହୁଁଥିଲା । ତା' ନହେଲେ ସେ କୌଣସି ପ୍ରୟୋଗ କରିବାକୁ ପ୍ରସ୍ତୁତ ଥିଲା । ଫଳରେ ଜର୍ମାନ ଯୁଦ୍ଧଜାହାଜ ପେନ୍ଥାର ଆଗାଦିର ପୋତାଶ୍ରୟରେ ପ୍ରବେଶ କଲା ।

ଅବସ୍ଥା କ୍ରମଶଃ ଜଟିଳରୁ ଜଟିଳତର ହୋଇପଡ଼ିଲା । ମରକ୍‌କୋ ପ୍ରଶ୍ନ ନେଇ ଜର୍ମାନୀ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧର ସମ୍ଭାବନା ଦେଖାଦେଲା । ଉଭୟ ଦେଶ ମଧ୍ୟରେ ଆଲୋଚନା ଚାଲିଲା । ଦୀର୍ଘ ଗ୍ରୀଷ୍ମସପ୍ତାହର ଆଲୋଚନାରେ ମଧ୍ୟ କୌଣସି ନିଷ୍ପତ୍ତିରେ ସେମାନେ ପହଞ୍ଚିପାରିଲେ ନାହିଁ । ଏହି ସମୟରେ ଇଂଲଣ୍ଡର ହସ୍ତକ୍ଷେପ ଆରମ୍ଭ ହେଲା । ଆଫ୍ରିକାର ପଶ୍ଚିମ ଉପକୂଳରେ ଜର୍ମାନୀ ନୌବାହିନୀକୁ ସ୍ଥାନ ନଦେବା ଇଂଲଣ୍ଡର ଅଭିଳାଷ ଥିଲା । ତେଣୁ ଆଗାଦିର ପୋତାଶ୍ରୟରେ ସେଣ୍ଟାର ରହିଲେ ପରିଣତି ବିଷମ ହେବ ବୋଲି ଇଂଲଣ୍ଡ ଜର୍ମାନୀକୁ ଚେତାବନୀ ଶୁଣାଇଦେଲା । ଫରାସୀ ସରକାର ମରକ୍‌କୋ ବଦଳରେ କଙ୍ଗୋକୁ ପୂରାପୂରି ତ୍ୟାଗ କରିପାରିବେନାହିଁ ବୋଲି ଜଣାଇଦେଲେ ।

ମରକ୍‌କୋ ସମସ୍ୟାରେ ଇଂଲଣ୍ଡର ହସ୍ତକ୍ଷେପଦ୍ୱାରା ଜର୍ମାନୀ ବିରକ୍ତ ହେଲା । ଉଭୟ ଦେଶରେ ନାନା ଉତ୍ତେଜନା ପ୍ରକାଶ ପାଇଲା । ଅର୍ଥମନ୍ତ୍ରୀ ଲଏଡ୍ ଜର୍ଜ ଇଂଲଣ୍ଡ ଜନମତକୁ ଉତ୍ତେଜିତ କରୁଥିଲେ । ଏହି ପ୍ରଶ୍ନ ନେଇ ୧୯୧୧ ମସିହାରେ ଯୁଦ୍ଧ ଆରମ୍ଭ ହୋଇଥାନ୍ତା; କିନ୍ତୁ କାଇଜରଙ୍କ ଦ୍ରୁତବିବେଚନାଯୋଗୁ ଅବସ୍ଥା ଆୟତ୍ତାଧୀନ ହେଲା । ମରକ୍‌କୋ ଉପକୂଳରେ ଜର୍ମାନ ନୌବହର ପ୍ରତିଷ୍ଠାକରିବା ତାଙ୍କର ଉଦ୍ଦେଶ୍ୟ ନୁହେଁ ବୋଲି ସେ ଇଂରେଜ ସରକାରଙ୍କୁ ଜଣାଇଦେବାରୁ ଅବସ୍ଥା ଥଣ୍ଡା ପଡ଼ିଲା । ୧୯୧୧ ମସିହା ନଭେମ୍ବର ୪ ତାରିଖ ଦିନ ଫ୍ରାନ୍ସ ସହିତ ଏକ ରାଜିନାମା ସ୍ୱାକ୍ଷରିତ ହେଲା । ଏହି ରାଜିନାମା ଫଳରେ ମରକ୍‌କୋ ଉପରେ ଫ୍ରାନ୍ସର ରାଜପ୍ରତିନିଧି ସରକାରକୁ ଜର୍ମାନୀ ସ୍ୱୀକାର କଲା ଏବଂ ଫରାସୀ କଙ୍ଗୋର କିଛି ଅଂଶ ପାଇଲା । ଏହି ରାଜିନାମାରେ ଉଭୟ ପକ୍ଷ ଏବଂ ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ର ଆଶ୍ୱସ୍ତ ହେଲେ । ଏହି ଆଗାଦିର ସଙ୍କଟରେ ଇଂଲଣ୍ଡ, ଫ୍ରାନ୍ସକୁ କୂଟନୀତିକ୍ଷେତ୍ରରେ ପୂର୍ଣ୍ଣ ସମର୍ଥନ ଦେବାରୁ 'ତ୍ରିଶକ୍ତି ସଙ୍ଘ'ର ଘନିଷ୍ଠ ସମ୍ପର୍କକୁ ସୁଦୃଢ଼ କରିପାରିଥିଲା; କିନ୍ତୁ ଜର୍ମାନୀ ଏଥିରେ ଅପମାନିତ ହୋଇ ଇଂଲଣ୍ଡ ବିରୁଦ୍ଧରେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ନିଜ ସୈନ୍ୟ ସଂଖ୍ୟା ସତେଇଶ ହଜାର ବୃଦ୍ଧି କରିଥିଲା ।

ମରକ୍‌କୋ ପ୍ରଶ୍ନ ଆନ୍ତର୍ଜାତିକ ପରିସ୍ଥିତିକୁ ଜଟିଳ କଲାପରି ବଲକାନ୍ ସମସ୍ୟା ମଧ୍ୟ ପରିସ୍ଥିତିକୁ ଅଧିକ ସଙ୍ଗୀନ କରିଥିଲା । ଅଭିଜ୍ଞ ରାଜନୀତିଜ୍ଞଙ୍କର ଦୂରଦୃଷ୍ଟି ନେଇ ବିସମାର୍କ ଥରେ ବନ୍ଧୁ ହେର୍ ବଲିନକୁ ଲେଖିଥିଲେ, "ବିଶ୍ୱଯୁଦ୍ଧ ଦେଖିବା ମୋ ଭାଗ୍ୟରେ ନାହିଁ—ତୁମେ କିନ୍ତୁ ଦେଖିବ ଏବଂ ତାହା ଆରମ୍ଭ ହେବ ନିକଟ ପ୍ରାଚ୍ୟରେ ।" ପ୍ରକୃତ-ପକ୍ଷେ ଯେଉଁ ବଲକାନ୍ ସମସ୍ୟାକୁ ଅବହେଳାରେ ସମସ୍ତେ ଦୂରେଇ ରଖିବାକୁ ଚାହୁଁଥିଲେ, ଘଟଣାଚକ୍ର ସମସ୍ତଙ୍କୁ ସେସବୁକୁ ଓଟାରି ନେଇଥିଲା ।

ତୁର୍କୀର ରାଜନୈତିକ ଅଧଃପତନ ବଲକାନ ସମସ୍ୟାର ମୂଳକାରଣ ଥିଲା । ସେଥିପାଇଁ ତୁର୍କୀର ଆଭ୍ୟନ୍ତରୀଣ ପରିସ୍ଥିତି ଓ ବାହ୍ୟଶକ୍ତିଙ୍କ ହସ୍ତକ୍ଷେପ ଦାୟୀ ଥିଲା । ଏହି ରାଜନୀତିକ ଅଧୋଗତିକୁ ବେଗଶୀଳ କଲେ ରୁଷିଆ ପରି ସାମ୍ରାଜ୍ୟବାଦୀ ଶକ୍ତିମାନେ । ସେହିପରି ଅଷ୍ଟ୍ରିଆର ଦ୍ୱୈତ ସାମ୍ରାଜ୍ୟ ଇଉରୋପୀୟ ରାଜନୀତିରେ ତୁର୍କୀ ପରି ଆଉ ଏକ

ବାଲିଘର ଥିଲା । ନାନା ଜାତି ଓ ଉପଜାତିଙ୍କୁ ନେଇ ତୁର୍କୀ ଏବଂ ଅଷ୍ଟ୍ରିୟା ଗଠିତ ହୋଇଥିବାରୁ ସେମାନଙ୍କର ରାଜନୈତିକ ସଂହତି ପ୍ରାପ୍ତ ନଥିଲା କହିଲେ ଚଳେ । ପଡ଼ୋଶୀ ରାଜ୍ୟ ବୁଲଗେରିଆ, ରୁମାନିଆ ଓ ସର୍ବିଆ ଆଦି ଗୃଧ୍ର ବସିଥିଲେ ଅଷ୍ଟ୍ରିୟାର ଅଧଃପତନକୁ । ଜାତିଗତ ବିଦ୍ୱେଷ ଓ ପରସ୍ପର ବିରୋଧୀ ଆର୍ଥନୀତିକ ସ୍ୱାର୍ଥପାଇଁ ଏହି ରାଜ୍ୟମାନଙ୍କ ମଧ୍ୟରେ ସଦ୍‌ଭାବ ଆଦୌ ନଥିଲା ।

ଅଷ୍ଟ୍ରିୟ-ହଙ୍ଗେରୀର ଦ୍ୱୈତ ସାମ୍ରାଜ୍ୟ ଏକ କୃତ୍ରିମ ଭିତ୍ତିରେ ପ୍ରତିଷ୍ଠିତ ହୋଇଥିଲା । ଏଗାରଟି ଜାତି ଓ ଉପଜାତିଙ୍କୁ ନେଇ ତାହା ଗଠିତ ହୋଇଥିଲା । ସେମାନଙ୍କ ମଧ୍ୟରେ ଜର୍ମାନ, ମ୍ୟାଗିୟାର, ସର୍ବ, ସ୍ଲାଭ ଆଦି ଜାତି ପ୍ରଧାନ ଥିଲେ । ଏମାନଙ୍କ ଭିତରେ କୌଣସି ଏକତା ବା ସଦ୍‌ଭାବ ନଥିଲା । ପ୍ରତିବେଶୀ ସର୍ବିଆ ରାଜ୍ୟ ସହିତ ଅଷ୍ଟ୍ରିୟାର ସମ୍ପର୍କ ଖୁବ୍ ଖରାପ ଥିଲା । ସର୍ବିଆର ସର୍ବମାନେ ବହୁକାଳ ଧରି ଜର୍ମାନ୍ ଏବଂ ମ୍ୟାଗିୟାରମାନଙ୍କୁ ଘୃଣା କରୁଥିଲେ । ବୋସ୍‌ନିଆ ଓ ହାର୍ଜିଗୋଭିନାର ଲକ୍ଷ ଲକ୍ଷ ସର୍ବବାସୀ ୧୮୭୮ ମସିହାରେ ଅଷ୍ଟ୍ରିୟାଦ୍ୱାରା ଅଧିକୃତ ଏବଂ ଶାସିତ ହେବାରୁ ସର୍ବିଆ ଅସହ୍ୟ ବୋଧକରିଥିଲା । ତା'ଛଡ଼ା ଭୌଗୋଳିକ କ୍ଷେତ୍ରରେ ସର୍ବିଆ ଥିଲା ଏକ ଭୂବେଷ୍ଟିତ (land-locked) ରାଜ୍ୟ । ତାର କୌଣସି ପଟେ ସମୁଦ୍ର ନଥିଲା । ସର୍ବ ବ୍ୟବସାୟୀ-ମାନଙ୍କୁ ବ୍ୟବସାୟ ବାଣିଜ୍ୟପାଇଁ ଅଷ୍ଟ୍ରିୟା ଭିତରଦେଇ ସମୁଦ୍ର ଉପକୂଳ ଅଞ୍ଚଳକୁ ଯିବାକୁ ପଡ଼ୁଥିଲା । ବିଦେଶୀ ରାଷ୍ଟ୍ରମାନଙ୍କ ସହିତ ବ୍ୟବସାୟ ବାଣିଜ୍ୟ ବୃଦ୍ଧିକରିବାକୁ ହେଲେ ତାକୁ ଅଷ୍ଟ୍ରିୟାର ସଦିଚ୍ଛା ଏବଂ ସହାନୁଭୂତି ଉପରେ ନିର୍ଭର କରିବାକୁ ହେବ; କିନ୍ତୁ ଉପରୋକ୍ତ ପରିସ୍ଥିତି ନେଇ ସର୍ବିଆର ସମ୍ପୂର୍ଣ୍ଣ ବ୍ୟବସାୟ କ୍ଷେତ୍ରରେ ଅଷ୍ଟ୍ରିୟା ସହିତ ମନାନ୍ତର ଘଟିଥିଲା । ଫଳରେ ସର୍ବିଆବାସୀ ଭାବୁଥିଲେ ଯେ, ଅଷ୍ଟ୍ରିୟା ସେମାନଙ୍କର ଆର୍ଥନୀତିକ ପ୍ରଗତିର ପ୍ରଧାନ ଅନ୍ତରାୟ ।

ବୋସ୍‌ନିଆ ଓ ହାର୍ଜିଗୋଭିନା ପ୍ରଦେଶ ଦୁଇଟିକୁ ନିଜ ସହିତ ସାମିଲକରିବା ସର୍ବିଆର ଅଭିପ୍ରାୟ ଥିଲା । ତଦ୍ୱାରା ଆଡ୍ରିୟାଟିକ୍ ସାଗର ପର୍ଯ୍ୟନ୍ତ ତାହାର ସୀମା ବୃଦ୍ଧି ପାଇଥାନ୍ତା ଏବଂ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ତାହାର କୌଣସି ଅସୁବିଧା ହୁଅନ୍ତା ନାହିଁ; କିନ୍ତୁ ଅଷ୍ଟ୍ରିୟା 'ତରୁଣ ତୁର୍କୀ' (Young Turk) ଆନ୍ଦୋଳନର ସୁଯୋଗ ନେଇ ୧୯୦୮ ମସିହାରେ ସର୍ବ-ଭାଷାଭାଷୀ ଏହି ଦୁଇଟି ପ୍ରଦେଶକୁ ଆନୁଷ୍ଠାନିକ ଭାବରେ ନିଜ ସହିତ ମିଶାଇ ଦେଇଥିଲା । ଏହାଦ୍ୱାରା ୧୮୭୮ ମସିହାର ବର୍ଲିନ ଚୁକ୍ତି ପ୍ରତ୍ୟକ୍ଷ ଭାବରେ ଲଙ୍ଘନ କରାଗଲା । ଏହି ଚୁକ୍ତି ଅନୁସାରେ ଅଷ୍ଟ୍ରିୟା ଉକ୍ତ ପ୍ରଦେଶ ଦୁଇଟିକୁ ନିଜ ଅଧିକାରରେ ରଖି ଶାସନ କରିବାକୁ କ୍ଷମତା ପାଇଥିଲା ସତ; କିନ୍ତୁ ସେ ଦୁଇଟିକୁ ନିଜ ସହିତ ସାମିଲ କରିବାକୁ କ୍ଷମତା ପାଇନଥିଲା; କିନ୍ତୁ ଅଷ୍ଟ୍ରିୟା ଜର୍ମାନୀର ସମର୍ଥନ ଉପରେ ପୂରାପୂରି ଭରସା କରି ସବୁ ବାଧାବିଘ୍ନକୁ ଅଗ୍ରାହ୍ୟ କରି ବଲକାନ ଅଞ୍ଚଳରେ ଅଗ୍ରଗାମୀ ନୀତି ଅବଲମ୍ବନ କରିବାପାଇଁ ଦୃଢ଼ସଙ୍କଳ୍ପ କରିଥିଲା । ଅଷ୍ଟ୍ରିୟାର ଆଚରଣ ସର୍ବିଆରେ ବିକ୍ଷୋଭ

ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା; କାରଣ ସେ ବୋସ୍‌ନିୟାର ସ୍ଲାଭ୍‌ମାନଙ୍କୁ 'ବୃହତ୍ତର ସର୍ବିୟା' (Greater Serbia)ର ଅନ୍ତର୍ଭୁକ୍ତ କରିବାପାଇଁ ଆଶାପୋଷଣ କରିଥିଲା । ଇଂଲଣ୍ଡ ବର୍ଲିନ ଚୁକ୍ତିର ଅଯୌକ୍ତିକ ଲଙ୍ଘନ ବିରୁଦ୍ଧରେ ପ୍ରତିବାଦ କରିଥିଲା । ରୁଷିଆ ମଧ୍ୟ ଅଷ୍ଟ୍ରିୟାର ଏପରି କାର୍ଯ୍ୟ ବିରୁଦ୍ଧରେ ପଦକ୍ଷେପ ନେବାପାଇଁ ଧମକ ଦେଇଥିଲା । ତେଣୁ ଏକ ସଙ୍କଟ-ଜନକ ପରିସ୍ଥିତି ଉପୁଜିଥିଲା; କିନ୍ତୁ ଜର୍ମାନୀ ଯେତେବେଳେ ଘୋଷଣା କଲେ ଯେ ସେ ଅଷ୍ଟ୍ରିୟାର କାର୍ଯ୍ୟକୁ ସମର୍ଥନ କରୁଛି ଏବଂ ଅଷ୍ଟ୍ରିୟାକୁ ପୁରାପୂରି ସାମରିକ ସାହାଯ୍ୟ ଦେବ, ସେତେବେଳେ ପୂର୍ବ ପରିସ୍ଥିତି ବଦଳିଗଲା । ରୁଷିଆ ରୁଷ୍-ଜାପାନ ଯୁଦ୍ଧ (୧୯୦୪-୧୯୦୫) ପରେ ସେ ତାର ଶକ୍ତି ସେପର୍ଯ୍ୟନ୍ତ ଫେରି ନପାଇ ଥିବାରୁ ସେ ଆଉ ଏକ ବିପଦ ବରଣ କରିବାକୁ ଚାହିଁନଥିଲା । କ୍ଷୁଦ୍ର ସର୍ବିୟା ରାଷ୍ଟ୍ର ଆଉ କୌଣସି ଉପାୟ ନ ଦେଖି ଅଷ୍ଟ୍ରିୟାର ବଳାତ୍କାର କାର୍ଯ୍ୟକୁ ମାନିନେଇଥିଲା । ତେଣୁ କେନ୍ଦ୍ରଶକ୍ତି (ତ୍ରିଶକ୍ତି ମେଣ୍ଟ)ମାନେ ଏକ କୂଟନୈତିକ ବିଜୟ ହାସଲ କଲେ ମଧ୍ୟ ଏକପକ୍ଷରେ ଅଷ୍ଟ୍ରିୟା ଏବଂ ଅନ୍ୟପକ୍ଷରେ ଉଭୟ ସର୍ବିୟା ଓ ରୁଷିଆ ମଧ୍ୟରେ ତିକ୍ତତା ବୃଦ୍ଧି ପାଇବାରେ ଲାଗିଲା । ଯଥାର୍ଥରେ କୁହାଯାଇଛି ଯେ, "ଯେଉଁସବୁ ଘଟଣା ମହାଯୁଦ୍ଧ ସୃଷ୍ଟି କରିଥିଲା, ତାହାର ଯୋଗସୂତ୍ର ଥିଲା ବୋସ୍‌ନିୟା ସଙ୍କଟ ।" ("The Bosnian crisis formed a link in the chain of circumstances that led to the Great War.") ପ୍ରକୃତରେ ବୋସ୍‌ନିୟା ଓ ହାର୍ଜିଗୋଭିନା ଅଷ୍ଟ୍ରିୟାଦ୍ୱାରା ନିଜ ସହିତ ସାମିଲ କରାଯିବାରୁ ସର୍ବିୟାର 'ବୃହତ୍ତର ସର୍ବିୟା' ଗଢ଼ିବା ଆଶା ଧୂଳିସାତ୍ ହେଲା । ଲକ୍ଷ୍ୟ ସାଧନପାଇଁ ତେଣୁ ସର୍ବିୟା ସରକାର ସର୍ବ-ଜାତୀୟ ଆନ୍ଦୋଳନର ପୃଷ୍ଠପୋଷକତା କଲେ । ଏହି ଜାତୀୟ ଐକ୍ୟ ଆନ୍ଦୋଳନରେ ସେ ରୁଷିଆର ସାହାଯ୍ୟ ନିବେଦନ କଲେ । ପ୍ରଥମେ ଜାତୀୟ ଆନ୍ଦୋଳନରେ ଜଡ଼ିତ ହେବାପାଇଁ ରୁଷ୍ ସରକାର ଅନିଚ୍ଛୁକ ଥିଲେ । ସର୍ବିୟାବାସୀ କିନ୍ତୁ ସେଥିରେ ହତୋତ୍ସାହ ନ ହୋଇ ଅଷ୍ଟ୍ରିୟାବିରୋଧୀ ଜନଆନ୍ଦୋଳନକୁ ତେଜୀୟାନ କରିଥିଲେ । ସର୍ବିୟା ବୋସନିୟାର ରାଜନୀତିକ ମିଳନର ଆଶା ସେମାନଙ୍କୁ ଅପୂର୍ବ ପ୍ରେରଣା ଦେଉଥାଏ ।

ଭବିଷ୍ୟତରେ ଯେତେ ବୋସ୍‌ନିୟା (Bosnia) ଅଧିକାର ନେଇ ସର୍ବିୟା ଓ ଅଷ୍ଟ୍ରିୟା ମଧ୍ୟରେ ଯୁଦ୍ଧର ସମ୍ଭାବନାକୁ ସମସ୍ତେ ଉପଲବ୍‌ଧି କଲେ । ସର୍ବିୟାରେ ଜାତୀୟ-ବାଦୀମାନେ 'ଜାତୀୟ ସୁରକ୍ଷା' ନାମରେ ଏକ ସଙ୍ଘ ଗଢ଼ିଥିଲେ । ଅଷ୍ଟ୍ରିୟା ଏଥିରେ ବିଚଳିତ ହୋଇଥିଲା । ଅଷ୍ଟ୍ରିୟାର ଶାସନାଧୀନରେ ବହୁ ସର୍ବ ଭାଷାଭାଷୀ ଲୋକ ଅଷ୍ଟ୍ରିୟା ସାମ୍ରାଜ୍ୟରେ ବସବାସ କରି ରହୁଥିଲେ । ତେଣୁ ଅଷ୍ଟ୍ରିୟାର ଆଶଙ୍କା ହେଲା ଯେ, ସର୍ବ ଜାତୀୟ ଆନ୍ଦୋଳନ ସେମାନଙ୍କର ରାଜଭକ୍ତିକୁ ଦୁର୍ବଳ କରିଦେବ ଏବଂ ଅଷ୍ଟ୍ରିୟା ସାମ୍ରାଜ୍ୟ ପ୍ରତି ବିଶେଷ କ୍ଷତିକାରକ ହେବ । ତେଣୁ ତା'ର ସାମ୍ରାଜ୍ୟର ଅଖଣ୍ଡତା ରକ୍ଷାକରିବା ଉଦ୍ଦେଶ୍ୟରେ ସେ ସର୍ବିୟାକୁ ଦୃଢ଼ହସ୍ତରେ ଦମନ କରିବାପାଇଁ ଦୃଢ଼ ପ୍ରତିଜ୍ଞା କରିଥିଲା; କିନ୍ତୁ ସର୍ବିୟା କ୍ରମଶଃ

ସାହାଯ୍ୟ ଓ ସମର୍ଥନ ଆଶାରେ ରୁଷିଆ ପକ୍ଷ ଅବଲମ୍ବନ କରିବାରୁ, ଅଷ୍ଟ୍ରିଆ ସରକାରଙ୍କ ପକ୍ଷରେ କୌଣସି ଶକ୍ତିର ସାହାଯ୍ୟ ନ ନେଇ ସର୍ବିଆକୁ ଦମନକରିବା ସମ୍ଭବ ନଥିଲା । ଜର୍ମାନୀ ମଧ୍ୟ ନିଜ ସ୍ୱାର୍ଥ ଦୃଷ୍ଟିରୁ ସର୍ବିଆକୁ ଦୁର୍ବଳ କରିଦେବାପାଇଁ ମସୁଧା କରୁଥିଲା । ସେ ବେଶ୍ ଜାଣିଥିଲା ଯେ ତାର ବର୍ଲିନ-ବାଗ୍‌ଦାଦ ରେଳପଥ ଯୋଜନା କାର୍ଯ୍ୟକାରୀ କରିବାକୁ ହେଲେ ସର୍ବିଆର ସମ୍ମତି ଆବଶ୍ୟକ; କାରଣ ସେହି ଯୋଜନାର ଅନ୍ତର୍ଭୁକ୍ତ ପ୍ରଧାନ ରେଳପଥ ତାର ଅଧିକାରରେ ଥିଲା । ତେଣୁ ସର୍ବିଆକୁ ଦୁର୍ବଳ କିମ୍ବା ଆୟତ୍ତ ନ କଲା ପର୍ଯ୍ୟନ୍ତ ତାର ଯୋଜନା କାର୍ଯ୍ୟକାରୀ ହୋଇପାରିବନାହିଁ ବୋଲି ସେ ଉପଲବ୍ଧି କରିପାରିଥିଲା । ଏହି ପରିପ୍ରେକ୍ଷୀରେ ଜର୍ମାନୀ ଅଷ୍ଟ୍ରିଆ ସରକାରଙ୍କୁ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ସାହାଯ୍ୟ ଓ ସମର୍ଥନ କରିବା ସ୍ୱାଭାବିକ ଥିଲା; ସୁତରାଂ ଅଷ୍ଟ୍ରିଆର ପ୍ରଧାନ ଲକ୍ଷ୍ୟ ଥିଲା ସର୍ବିଆକୁ ଦମନ ବା ଦୁର୍ବଳକରି ରଖିବା ଏବଂ ତାର ପଛରେ ଥିଲା ଉଜ୍ଜ୍ୱଳ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ (in shining armour) ଶକ୍ତିଶାଳୀ ଜର୍ମାନୀ । ସେ ମଧ୍ୟ ଅଷ୍ଟ୍ରିଆ ସପକ୍ଷରେ ଇଉରୋପକୁ ଅବଜ୍ଞା କରିବାପାଇଁ ପ୍ରସ୍ତୁତ ଥିଲା । ଫଳରେ ବଲ୍‌କାନ ରାଜନୀତିରେ ଅସ୍ଥିରତା ଦେଖାଯିବା ସଙ୍ଗେ ସଙ୍ଗେ ବଲ୍‌କାନ ଉପଦ୍ୱୀପରେ ସର୍ବିଆ ଓ ସର୍ବ ଜାତିର ଏକତ୍ରୀକରଣ ପ୍ରଶ୍ନନେଇ ଇଉରୋପୀୟ ଶକ୍ତିମାନେ କଳହରେ ଜଡ଼ିତହେବା ଆଶଙ୍କା ମଧ୍ୟ ଦେଖାଦେଲା । ଅଷ୍ଟ୍ରିଆ ବିରୋଧୀ ପ୍ରଚାର, ଆନ୍ଦୋଳନ ଓ ଗୁପ୍ତଷଡ଼ଯନ୍ତ୍ରର କେନ୍ଦ୍ରସ୍ଥଳୀ ହେଲା ସର୍ବିଆ । ସନ୍ତ୍ରାସବାଦୀମାନେ ବୋସ୍‌ନିଆ ଓ ହର୍ଜିଗୋଭିନା ଅଞ୍ଚଳରେ ନାନା ଷଡ଼ଯନ୍ତ୍ର ଓ ଚକ୍ରାନ୍ତରେ ଲିପ୍ତ ହେଲେ । ତେଣୁ ଅଷ୍ଟ୍ରିଆ ଓ ସର୍ବିଆ ମଧ୍ୟରେ ବିବାଦ ନିକଟ ପ୍ରାଚ୍ୟରେ ଦ୍ୱିତୀୟ ସଙ୍କଟ ସୃଷ୍ଟି କରିଥିଲା ।

ବୋସ୍‌ନିଆ ସମସ୍ୟାର ପ୍ରଭାବ ଇଟାଲୀ ଓ ରୁଷିଆ ଉପରେ ପଡ଼ିଥିଲା । 'ତ୍ରିଶକ୍ତି ମେଣ୍ଟ'ର ସଭ୍ୟ ହେଲେ ମଧ୍ୟ-ବୋସ୍‌ନିଆ ପ୍ରଶ୍ନ ସମାଧାନରେ ତାର ମତ ଲୋଡ଼ା ନଯିବାରୁ ଇଟାଲୀ ଅପମାନିତ ବୋଧ କରୁଥିଲା । ବଲ୍‌କାନ ଉପଦ୍ୱୀପରେ ଅଷ୍ଟ୍ରିଆର ପ୍ରଭାବ ବୃଦ୍ଧି ପାଉ ଏକଥା ଇଟାଲୀ ଚାହୁଁନଥିଲା । କାରଣ ତଦ୍ୱାରା ଆଡ୍ରିଆଟିକ୍ ସାଗର ଓ ଏଜିୟାନ ସାଗରରେ ଇଟାଲୀର ସ୍ୱାର୍ଥ ବାଧାପ୍ରାପ୍ତ ହୋଇଥାନ୍ତା । ସେହିପରି ରୁଷିଆର ଦୃଷ୍ଟିଭଙ୍ଗୀ ମଧ୍ୟ ଅଷ୍ଟ୍ରିଆ ବିରୋଧୀ ଥିଲା । ରୁଷର ସର୍ବ ଜାତୀୟବାଦୀ ସମର୍ଥକମାନେ ସରକାରଙ୍କୁ ସର୍ବିଆ ପାଇଁ ଅଷ୍ଟ୍ରିଆ ବିରୁଦ୍ଧରେ ଯୁଦ୍ଧ କରିବାକୁ ପରାମର୍ଶ ଦେଇଥିଲେ ।

ଫଳରେ ଫ୍ରାନ୍ସ ଯେପରି ଆଲସେସ୍ ଲୋରେନ ପାଇଁ ଜର୍ମାନୀ ସହିତ ଉତ୍ତମ ସମ୍ପର୍କ ପ୍ରତିଷ୍ଠା କରିପାରିନଥିଲା, ସର୍ବିଆ ସେହିପରି ବୋସ୍‌ନିଆ ଓ ହର୍ଜିଗୋଭିନା ନେଇ ଅଷ୍ଟ୍ରିଆ ସହ ଉତ୍ତମ ସମ୍ପର୍କ ପ୍ରତିଷ୍ଠା କରିପାରିନଥିଲା । ବରଂ ସେହି ଦୁଇ ପ୍ରଦେଶ ନେଇ ଅଷ୍ଟ୍ରିଆ ଏବଂ ସର୍ବିଆ ମଧ୍ୟରେ କଳହ ଆରମ୍ଭ ହୋଇଗଲା । ବୃହତ୍ତର ସର୍ବିଆ ଗଠନ ଦିଗରେ ରୁଷର ସମର୍ଥନ ପ୍ରକାଶ୍ୟ ଭାବରେ ତାକୁ ଜଣାଇଦିଆଗଲା ।

ଏକଥା ସ୍ୱୀକାର କରିବାକୁ ହେବ ଯେ ବୋସ୍‌ନିଆ ଏବଂ ହାର୍ଜିଗୋଭିନାକୁ ତାର ସାମ୍ରାଜ୍ୟଭୁକ୍ତ କରିବା ଫଳରେ ଅଷ୍ଟ୍ରିଆର ଶକ୍ତି ବଲ୍‌କାନ ଉପଦ୍ୱୀପରେ ବୃଦ୍ଧି ପାଇଥିଲା । ରୁଷିଆ ତାହା ସହ୍ୟ କରିପାରୁନଥିଲା । ସେ ମଧ୍ୟ ତାର ଶକ୍ତି ଉକ୍ତ ଅଞ୍ଚଳରେ ବୃଦ୍ଧି କରିବା-ପାଇଁ ମନସ୍ଥ କରିଥିଲା । ତେଣୁ ବଲ୍‌କାନ ଅଞ୍ଚଳରେ ପ୍ରାଧାନ୍ୟ ବିସ୍ତାର କରିବାପାଇଁ ଅଷ୍ଟ୍ରିଆ ଓ ରୁଷିଆ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଲାଗିଲା । ରୁଷିଆ ବଲ୍‌କାନ ଉପଦ୍ୱୀପର ରାଷ୍ଟ୍ରଗୁଡ଼ିକୁ ନିଜ ନିୟନ୍ତ୍ରଣାଧୀନ କରିବାକୁ ଚାହିଁଥିଲା । ଅଷ୍ଟ୍ରିଆ ମଧ୍ୟ ତାହା ଚାହିଁଥିଲା । ତୁର୍କି ସୁଲତାନଙ୍କର ଖ୍ରୀଷ୍ଟାନ୍ ବିରୋଧୀ ନୀତି ରୁଷ ସରକାରଙ୍କୁ ବଲ୍‌କାନ ରାଜନୀତିରେ ହସ୍ତକ୍ଷେପ କରିବାକୁ ସୁଯୋଗ ଦେଇଥିଲା । ତୁର୍କୀର ସୁଲତାନ ଅବଦୁଲ ହମିଦ୍ ତାଙ୍କର ଖ୍ରୀଷ୍ଟାନ ପ୍ରଜାମାନଙ୍କ ପ୍ରତି ସଦ୍‌ବ୍ୟବହାର କରିବାପାଇଁ ବାରମ୍ବାର ପ୍ରତିଶ୍ରୁତି ଦେଉଥିଲେ ମଧ୍ୟ ତାହା ସେ ପାଳନ କରୁନଥିଲେ । ସେ ତାଙ୍କ ଅଧୀନରେ ଥିବା ମେସିଡୋନିଆର ଖ୍ରୀଷ୍ଟାନ୍‌ମାନଙ୍କ ପ୍ରତି ଅତି ନିଷ୍ଠୁର ବ୍ୟବହାର କରୁଥିଲେ । ସେମାନଙ୍କ ଉପରେ ଯେଉଁ ଅତ୍ୟାଚାର କରାଯାଇଥିଲା, ତାହା ବ୍ୟାପକ ଅସନ୍ତୋଷ ସୃଷ୍ଟି କରିଥିଲା ଏବଂ ତାହା ଫଳରେ ତୁର୍କୀ ଧ୍ୱଂସ ପାଇଯିବାର ଆଶଙ୍କା ହୋଇଥିଲା । ରୁଷିଆ ବଲ୍‌କାନ ଉପଦ୍ୱୀପରେ ଏହି ବ୍ୟାପକ ଅସନ୍ତୋଷର ସୁଯୋଗ ନେଇ ତାର ତତ୍ତ୍ୱାବଧାନରେ ଏକ ବଲ୍‌କାନ ସଂଘ (the Balkan League) ଗଢ଼ିବାକୁ ସଂକଳ୍ପ କରିଥିଲା ଏବଂ ଏହି ସଂଘକୁ ଏକ ହତିଆର ରୂପେ ଏକଦିଗରେ ତୁର୍କୀ ବିରୁଦ୍ଧରେ ଏବଂ ଅନ୍ୟ ଦିଗରେ ଅଷ୍ଟ୍ରିଆ ବିରୁଦ୍ଧରେ ବ୍ୟବହାର କରିବାକୁ ଚାହିଁଥିଲା । ଏହି କ୍ଷୁଦ୍ର ବଲ୍‌କାନ ରାଷ୍ଟ୍ରଗୁଡ଼ିକ ନିଜମାନଙ୍କ ଅପେକ୍ଷା ପରସ୍ପରକୁ ଅଧିକା ଘୃଣା କରୁଥିବାରୁ ସେମାନେ ମିଳି ଏକ ମେଣ୍ଟ ବାନ୍ଧିବା ଅସମ୍ଭବ ମନେହେଲା; କିନ୍ତୁ ମେସିଡୋନିଆ ପାଇବାର ପ୍ରଲୋଭନ ଶେଷରେ ସେମାନଙ୍କୁ ଏକଜୁଟ କରିଥିଲା ।

ରୁଷିଆର ପରାମର୍ଶକ୍ରମେ ପ୍ରଥମେ ୧୯୧୨ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ସର୍ବିଆ ଓ ବୁଲ୍‌ଗେରିଆ ସେମାନଙ୍କର କଳହ ଭୁଲିଯାଇ ଏକ ଆକ୍ରମଣାତ୍ମକ ଚୁକ୍ତି ସ୍ୱାକ୍ଷର କରିଥିଲେ । ପରସ୍ପରର ସ୍ୱାଧୀନତାକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଆବଶ୍ୟକ ହେଲେ ପରସ୍ପରକୁ ସାମରିକ ସାହାଯ୍ୟ ଦେବାର ସ୍ଥିର ହେଲା । ବଲ୍‌କାନ ଅଞ୍ଚଳ ପାଇଁ କୌଣସି ବୃହତ୍ ଶକ୍ତି ଆକ୍ରମଣ ଆରମ୍ଭକଲେ, ସେମାନେ ମିଳିତ ଭାବେ ଆକ୍ରମଣର ମୁକାବିଲା କରିବାକୁ ନିଷ୍ପତ୍ତି କଲେ । ପୁନଶ୍ଚ ତୁର୍କୀର ବିପର୍ଯ୍ୟୟ ପାଇଁ ବଲ୍‌କାନର ରାଜନୈତିକ ଅବସ୍ଥାରେ କିଛି ପରିବର୍ତ୍ତନ ହେଲେ ସେମାନେ ମିଳିତ ହୋଇ ଯୁଦ୍ଧ କରିବେ ଏବଂ ଯୁଦ୍ଧଲବ୍ଧ ଧନ ବା ଅଞ୍ଚଳ ଜାର୍‌ଙ୍କ ମଧ୍ୟସ୍ଥତାରେ ନିଜ ନିଜ ଭିତରେ ବାଣ୍ଟିନେବେ ।

ଏହି ସର୍ବିଆ-ବୁଲ୍‌ଗେରିଆ ସନ୍ଧି ଆକ୍ରମଣାତ୍ମକ ଥିଲା ଓ ତଦ୍ଦ୍ୱାରା ରୁଷିଆର ପ୍ରାଧାନ୍ୟକୁ ସ୍ୱୀକାର କରାଯାଇଥିଲା । ରୁଷିଆର ପରାମର୍ଶରେ ଏହି ସଂଘରେ ଗ୍ରୀସ୍ ମେ' ମାସରେ ଯୋଗଦେଇଥିଲା ଏବଂ ପରେ ପରେ ମଣ୍ଟିନିଗ୍ରୋ ମଧ୍ୟ ଯୋଗଦେଲା । ଫଳରେ ଚାରୋଟି ବଲ୍‌କାନ ରାଷ୍ଟ୍ର—ସର୍ବିଆ, ବୁଲ୍‌ଗେରିଆ, ଗ୍ରୀସ୍ ଓ ମଣ୍ଟିନିଗ୍ରୋ ମିଶି ତୁର୍କୀ

ବିରୁଦ୍ଧରେ ଏକ ସଙ୍ଘ ଗଠନ କରିଥିଲେ । ଏହି ସଙ୍ଘକୁ ବଲ୍‌କାନ ସଙ୍ଘ କୁହାଯାଏ । ଏହି ବଲ୍‌କାନ ସଙ୍ଘ ତୁର୍କ ସରକାରଙ୍କର ମେସିଡୋନିଆ ଖ୍ରୀଷ୍ଟାନମାନଙ୍କ ଉପରେ ଅତ୍ୟାଚାର ବିରୁଦ୍ଧରେ କ୍ରୋଧ ପ୍ରକାଶ କରିଥିଲା ଏବଂ ମେସିଡୋନିଆକୁ ତୁର୍କୀ କବଳରୁ ମୁକ୍ତକରି ତାକୁ ସଙ୍ଘର ସ୍ୱତନ୍ତ୍ର ରାଷ୍ଟ୍ର ମଧ୍ୟରେ ବାଣ୍ଟିଦେବାପାଇଁ ଚାହିଁଥିଲା । ତା'ଛଡ଼ା ସଙ୍ଘର ସ୍ୱତନ୍ତ୍ର-ଯାକ ରାଷ୍ଟ୍ର ତୁର୍କୀ ବିରୁଦ୍ଧରେ ମିଳିତ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଉପାୟ ପାଞ୍ଚୁଥିଲେ ।

ପ୍ରଥମେ ସେମାନେ ମେସିଡୋନିଆର ଖ୍ରୀଷ୍ଟାନମାନଙ୍କ ଦୁଃଖଦୁର୍ଦ୍ଦଶା ମୋଚନ-କରିବା ଉଦ୍ଦେଶ୍ୟରେ ମେସିଡୋନିଆରେ ବିଭିନ୍ନ ସଂସ୍କାରମାନ ପ୍ରବର୍ତ୍ତନ କରିବାପାଇଁ ତୁର୍କୀ ଉପରେ ଚାପ ପକାଇଥିଲେ; କିନ୍ତୁ ତୁର୍କସରକାର ସେମାନଙ୍କର ଦାବି ସ୍ୱୀକାର କରି-ନଥିଲେ । ଇତ୍ୟବସରରେ ତୁର୍କୀ ଇଟାଲୀ ସହିତ ଟ୍ରିପୋଲିଟାନିଆ ଯୁଦ୍ଧ (Tripolitan War)ରେ ଦୁର୍ବଳ ଏବଂ ଅସ୍ତବ୍ୟସ୍ତ ହୋଇପଡ଼ିଥିଲା । ଏହି ଯୁଦ୍ଧ ସହିତ ଆଲବାନିଆରେ ତୁର୍କୀ ସୁଲତାନ ଅବଦୁଲ ହମିଦଙ୍କ ବିରୁଦ୍ଧରେ ଏକ ସଶସ୍ତ୍ର ବିଦ୍ରୋହ ହେବା ଫଳରେ ବଲ୍‌କାନ ସଙ୍ଘକୁ ଆକ୍ରମଣାତ୍ମକ କାର୍ଯ୍ୟପାଇଁ ଏକ ଚମତ୍କାର ସୁଯୋଗ ମିଳିଗଲା । ଆଲବାନିଆର ବିପ୍ଳବୀମାନେ ସଫଳତା ହାସଲ କରିବା ଦେଖି ବଲ୍‌କାନ ସଙ୍ଘର ସଭ୍ୟ ମଣ୍ଟିନିଗ୍ରୋ ପ୍ରଥମେ ତୁର୍କୀ ବିରୁଦ୍ଧରେ ଯୁଦ୍ଧଘୋଷଣା କଲା । ବିଦ୍ରୋହ ବ୍ୟାପୁଥିବା ଲକ୍ଷ୍ୟ କରି ତୁର୍କୀ ସୁଲତାନ ସର୍ବିଆ ଓ ବୁଲ୍‌ଗେରିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଫଳରେ ବଲ୍‌କାନ ସଙ୍ଘ ତୁର୍କୀ ସହିତ ଯୁଦ୍ଧରେ ବ୍ୟାପୃତ ହେଲା । ଏହି ଯୁଦ୍ଧକୁ ପ୍ରଥମ ବଲ୍‌କାନ ସମର ନାମରେ ଅଭିହିତ କରାଯାଇଛି । ଯୁଦ୍ଧରେ କିନ୍ତୁ ତୁର୍କୀ ସୁଲତାନଙ୍କର ବିଜୟୀ ହେବାର ସୌଭାଗ୍ୟ ନଥିଲା । ଗ୍ରୀସ୍ ସାଲୋନିକା ଅଧିକାର କଲା । ବୁଲ୍‌ଗେରିଆ ସୈନ୍ୟ କନଷ୍ଟାଣ୍ଟିନୋପଲ ଅଭିମୁଖରେ ଅଗ୍ରସର ହେଲେ; କିନ୍ତୁ ବୁଲ୍‌ଗେରିଆକୁ ରୁଷିଆ କନଷ୍ଟାଣ୍ଟିନୋପଲ ଅଧିକାର କରିନେବାକୁ ନିଷେଧ କଲା । ସେହିପରି ଅଷ୍ଟ୍ରିଆ ସର୍ବିଆକୁ ନିଜ ଅଧୀନରେ ଆଲବାନିଆ ନ ରଖିବାକୁ ସତର୍କ କରିଦେଲା । ସେ ଯାହାହେଉ, ସର୍ବିଆ କୁମାନୋଭା ଯୁଦ୍ଧରେ ବିଜୟୀ ହୋଇଥିଲା । ତାର ଆତ୍ମଗୌରବ ଏବଂ ବିଶ୍ୱାସ ବୃଦ୍ଧି ପାଇଲା । ସର୍ବିଆ ଅଷ୍ଟ୍ରିଆର ସତର୍କବାଣୀକୁ ଉପେକ୍ଷା କରିବାରୁ ଅଷ୍ଟ୍ରିଆ ତାର ସୈନ୍ୟବାହିନୀକୁ ଯୁଦ୍ଧ ପାଇଁ ପ୍ରସ୍ତୁତକରି ରଖିଲା । ରୁଷିଆ ମଧ୍ୟ ତାର ସୈନ୍ୟବାହିନୀକୁ ଯୁଦ୍ଧ ପାଇଁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରି ରଖିଲା; କିନ୍ତୁ ଯାହାହେଉ ସେ ଯୁଦ୍ଧ ଏଡ଼ିଯାଇଗଲା ।

ପ୍ରଥମ ବଲ୍‌କାନ ସମର ଫଳରେ ସ୍ୱାଧୀନ ଆଲବାନିଆ ରାଜ୍ୟ ପ୍ରତିଷ୍ଠିତ ହେଲା । ଏହାକୁ ଇଟାଲୀ ଓ ଅଷ୍ଟ୍ରିଆ ସ୍ୱୀକୃତି ଦେଇଥିଲେ । କାରଣ ତଦ୍ୱାରା ଆଡ୍ରିଆଟିକ ସାଗର ଉପକୂଳ ଅଞ୍ଚଳକୁ ସର୍ବିଆ ଅଧିକାର କରିବାରେ ଅକ୍ଷମ ହେଲା । ସ୍ୱାଧୀନ ଆଲ୍‌ବାନିଆ ସହ ସୁସମ୍ପର୍କ ରଖି ଆବଶ୍ୟକ ହେଲେ ସର୍ବିଆ ବିରୁଦ୍ଧରେ ବ୍ୟବହାର କରିବା ସମ୍ରାଟ ଫ୍ରାନ୍‌ସିସ୍ ଯୋସେଫଙ୍କର ଅଭିଳାଷ ଥିଲା ।

ବଲ୍‌କାନ ଯୁଦ୍ଧପାଇଁ ଅଷ୍ଟ୍ରିୟା ଆଗ୍ରହୀ ନଥିବାରୁ ଏବଂ ବହୁ ଯୁଦ୍ଧରେ ତୁର୍କୀ ପରାସ୍ତ ହେବାରୁ ଡିସେମ୍ବର ୩ ତାରିଖ ଦିନ ଯୁଦ୍ଧ ବିରତି ସ୍ୱାକ୍ଷରିତ ହେଲା । ଉକ୍ତମାସ ୧୬ ତାରିଖଠାରୁ ଲଣ୍ଡନଠାରେ ଏକ ଆନ୍ତର୍ଜାତୀୟ ସମ୍ମିଳନୀ ବଲ୍‌କାନ ସମସ୍ୟାର ବିଚାରପାଇଁ ଆରମ୍ଭହେଲା; କିନ୍ତୁ ପ୍ରାୟ ମାସକ ପର୍ଯ୍ୟନ୍ତ ପ୍ରତିନିଧିମାନେ ସମାଧାନର କୌଣସି ପନ୍ଥା ନିର୍ଣ୍ଣୟ କରି ନପାରିଥିବାରୁ ସମ୍ମିଳନୀ ଭାଙ୍ଗିଗଲା ।

୧୯୧୩ ମସିହା ଫେବୃୟାରୀ ମାସରେ ପୁଣି ଯୁଦ୍ଧ ଆରମ୍ଭହେଲା; କିନ୍ତୁ ଅଷ୍ଟ୍ରିୟାର ଦୃଢ଼ନୀତି ଯୋଗୁଁ ଏହି ଯୁଦ୍ଧ ସ୍ଥଗିତ ରହିଲା । ୧୯୧୩ ମସିହା ମେ' ୨୦ ତାରିଖ ଦିନ ଲଣ୍ଡନଠାରେ ଏକ ସନ୍ଧି ସ୍ୱାକ୍ଷରିତ ହେଲା । ତଦନୁସାରେ ଏନସମିଡିଆ ରେଖାର ପଶ୍ଚିମାଞ୍ଚଳ ବଲ୍‌କାନ ସଙ୍ଘ ହସ୍ତରେ ତୁର୍କୀ ଅର୍ପଣ କଲା । ଅର୍ଥାତ୍ ଏହି ସନ୍ଧି ଫଳରେ ତୁର୍କୀ କନଷ୍ଟାଣ୍ଟିନୋପଲ ଓ ତାର ସୁରକ୍ଷାପାଇଁ ଥ୍ରେସର କେତେକ ଅଞ୍ଚଳ ଛାଡ଼ିଦେଲେ, ଅଉସବୁ ଅଞ୍ଚଳ ହରାଇଥିଲା । ସେ ଗ୍ରୀସ୍‌କୁ ମଧ୍ୟ କ୍ରୀଟ ହସ୍ତାନ୍ତରିତ କରିଥିଲା । ସନ୍ଧିର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ଆଲ୍‌ବାନିୟାକୁ ଏକ ସ୍ୱଶାସିତ ରାଷ୍ଟ୍ରରୂପେ ଗଠନ କରାଗଲା । ସର୍ବିୟାର ଆଡ୍ରିୟାଟିକ ସାଗରରେ ପ୍ରବେଶ ରୋକିବାପାଇଁ ଦୃଢ଼ସଙ୍କଳ୍ପ କରି ଅଷ୍ଟ୍ରିୟା ଯେଉଁ ଦାବି ଉଠାଇଥିଲା, ତାକୁ ସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ ଏହା କରାଯାଇଥିଲା । ଫଳରେ ଅଷ୍ଟ୍ରିୟା ଏବଂ ସର୍ବିୟା ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଅତି ତୀବ୍ର ହୋଇଥିଲା; କିନ୍ତୁ ଏକଥା ସ୍ପଷ୍ଟ ଯେ ଜର୍ମାନୀର ଅନୁଚର ତୁର୍କୀ ତାର ଆଶ୍ରିତ ରାଷ୍ଟ୍ରମାନଙ୍କ ହାତରେ ପରାସ୍ତ ହେବାରୁ ରୁଷିୟା ସନ୍ତୋଷ ପ୍ରକାଶ କରିଥିଲା । କେବଳ ଯଦି ରୁଷିଆ ବଲ୍‌କାନ ସଙ୍ଘକୁ ଅଖଣ୍ଡ ରଖିପାରେ ତାହାହେଲେ ସମ୍ଭବତଃ ଏହି ସଙ୍ଘ ତାର ହାତବାରିସି ହୋଇ ରହିବ ଏବଂ ଏହି ସଙ୍ଘର ସମର୍ଥନରେ ବଲ୍‌କାନ ଅଞ୍ଚଳରେ ରୁଷିଆର ଶକ୍ତି ବୃଦ୍ଧି ପାଉଥିବାରୁ ଅଷ୍ଟ୍ରିୟା ତାହା ବରଦାସ୍ତ କରିପାରିଲାନାହିଁ । ତେଣୁ ବଲ୍‌କାନ ସଙ୍ଘକୁ ଧ୍ୱଂସ କରିଦେବାପାଇଁ ଉଦ୍ୟମ ଚଳାଇଲା । ଅଷ୍ଟ୍ରିୟାର କୂଟନୀତିକ କୌଶଳ ଫଳରେ ରୁଷିଆର ଦୁର୍ଭାଗ୍ୟକୁ ଏହି ସଙ୍ଘ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା । କାରଣ ଯେଉଁ ଅଞ୍ଚଳ ସବୁ ବଲ୍‌କାନ ସଙ୍ଘ ପାଇଲା, ବିଶେଷତଃ ତାର ବଣ୍ଟନ ନେଇ ବିଭ୍ରାଟ ଉପୁଜିଲା । ବଲ୍‌କାନ ସଙ୍ଘର ସଭ୍ୟମାନେ ଆଲ୍‌ବାନିୟାର ସ୍ୱାଧୀନତାକୁ ସ୍ୱୀକାର କରିବାକୁ ରାଜି ନଥିଲେ । ଯୁଦ୍ଧରେ ବୁଲ୍‌ଗେରିୟା ଅପେକ୍ଷା ସର୍ବିୟା ଅଧିକ ସୈନ୍ୟବଳ ଦେଇଥିବାରୁ ବିଜିତ ଭୂଖଣ୍ଡର ଅଧିକାଂଶ ଦାବି କରୁଥିଲା । ବିଶେଷତଃ ସେ ଆଲ୍‌ବାନିୟା ନ ପାଇପାରିବାରୁ ମେସିଡୋନିୟାର ଏକ ବଡ଼ ଅଂଶ ଦାବି କରିଥିଲା । ବୁଲଗେରିୟା ଅଷ୍ଟ୍ରିୟାର ପ୍ରରୋଚନାରେ ତାହା ଦେବାକୁ ରୋକ୍‌ଠୋକ୍ ମନାକରିଦେଲା । ରୁଷିଆ ଉଭୟ ସର୍ବିୟା ଓ ବୁଲ୍‌ଗେରିୟା ମଧ୍ୟରେ ଉତ୍ତେଜନାକୁ ପ୍ରଶମିତ କରିବାକୁ ଯାଇ ଅକୃତକାର୍ଯ୍ୟ ହୋଇଥିଲା । ଅଷ୍ଟ୍ରିୟା ବଲ୍‌କାନ ସଙ୍ଘକୁ ଭାଙ୍ଗିଦେବା ଉଦ୍ଦେଶ୍ୟରେ ବୁଲ୍‌ଗେରିୟାକୁ ତାର ମିତ୍ର ସର୍ବିୟା ବିରୁଦ୍ଧରେ ଉତ୍ତେଜିତ କରିଥିଲା । ଅଷ୍ଟ୍ରିୟା ଏହି ନୀତି ଅବଲମ୍ବନ କରିବାରେ ତାର ଯେଉଁ

ଭିତର ଉଦ୍ଦେଶ୍ୟ ଥିଲା, ତାହା ବୁଝାଇବାକୁ ଯାଇ ଅଷ୍ଟ୍ରିଆର ଜଣେ ଉଚ୍ଚ ଅଫିସର କହିଥିଲେ, "ପରସ୍ପରକୁ ଗ୍ରାସକରିବାକୁ ଆମ୍ଭେମାନେ ଶ୍ୱାନମାନଙ୍କୁ ସୁଯୋଗ ଦେବୁ ଏବଂ ତା'ପରେ ଆମ୍ଭେମାନେ ବଲ୍‌କାନରେ ପ୍ରାଧାନ୍ୟ ବିସ୍ତାର କରିବୁ ।" (A high Austrian officer said, "We shall let the dogs devour one another and then we shall dominate the Balkans.") ଅର୍ଥାତ୍ ଅଷ୍ଟ୍ରିଆ ବଲ୍‌କାନ ଉପଦ୍ୱୀପରେ ଆଧିପତ୍ୟ କରିବା ଉଦ୍ଦେଶ୍ୟରେ ସେଠାକାର ରାଷ୍ଟ୍ରମାନଙ୍କ ମଧ୍ୟରେ କଳହ ଲଗାଇଦେଇ ସେମାନଙ୍କୁ ପ୍ରଥମେ ଧ୍ୱଂସ କରିଦେବାକୁ ଚାହୁଁଥିଲା ।

ପ୍ରକୃତରେ ବଲ୍‌କାନ ସଙ୍ଘର ସଭ୍ୟମାନଙ୍କ ମଧ୍ୟରେ କଳହ ବୃଦ୍ଧି ପାଇଲା । ବୁଲ୍‌ଗେରିଆ ଅଷ୍ଟ୍ରିଆଦ୍ୱାରା ଉତ୍ସାହିତ ହୋଇ ୧୯୧୩ ମସିହା ଜୁଲାଇ ମାସରେ ହଠାତ୍ ଦିନେ ସର୍ବିଆ ଉପରେ ଆକ୍ରମଣ କଲା । ତେଣୁ ଦ୍ୱିତୀୟ ବଲ୍‌କାନ ସମର ଆରମ୍ଭ ହେଲା । ଗ୍ରୀସ୍ ବୁଲ୍‌ଗେରିଆ ସହିତ କଳହରେ ଲିପ୍ତ ଥିବାରୁ ତାର ମୁକାବିଲା କରିବାପାଇଁ ସର୍ବିଆ ସହିତ ମେଣ୍ଟ ବାନ୍ଧିଲା । ତା'ପରେ ରୁମାନିଆ ଏବଂ ଏପରିକି ତୁର୍କୀ ମଧ୍ୟ ଆକ୍ରମଣକାରୀ ବୁଲ୍‌ଗେରିଆ ବିରୁଦ୍ଧରେ ସର୍ବିଆ ଓ ଗ୍ରୀସ୍ ସହିତ ମେଣ୍ଟରେ ଯୋଗଦେଲେ ଏବଂ ସେମାନେ ସମସ୍ତେ ମିଳିତ ଭାବରେ ବୁଲ୍‌ଗେରିଆ ବିପକ୍ଷରେ ଯୁଦ୍ଧ କଲେ । ବୁଲ୍‌ଗେରିଆ ଏକାକୀ ଏହି ଚାରିଶତ୍ରୁ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାଧ୍ୟ ହୋଇଥିଲା । ଫଳରେ ଅତିଶୀଘ୍ର ସେ ଯୁଦ୍ଧରେ ପରାସ୍ତ ହେଲା ଏବଂ ପ୍ରଥମ ବଲ୍‌କାନ ସମରରେ ଲାଭକରିଥିବା ଅଞ୍ଚଳମାନଙ୍କ ମଧ୍ୟରୁ କେତେକ ଅଞ୍ଚଳ ହରାଇଲା ।

୧୯୧୩ ମସିହା ଅଗଷ୍ଟ ୧୦ ତାରିଖ ଦିନ ବୁଖାରେଷ୍ଟ ଠାରେ ଚତୁଃଶକ୍ତି ମେଣ୍ଟ ଏବଂ ବୁଲଗେରିଆ ମଧ୍ୟରେ ସନ୍ଧି ସ୍ୱାକ୍ଷରିତ ହେଲା । ବଲକାନ ସମର ସମାପ୍ତ ହେଲା । ଖ୍ରୀଷ୍ଟାନ ବଲ୍‌କାନ ରାଷ୍ଟ୍ରଗୁଡ଼ିକର ଆକାର ବୃଦ୍ଧି ପାଇଲା । ରୁମାନିଆ ମଧ୍ୟ ବୁଲ୍‌ଗେରିଆର କିଛି ଅଂଶ ପାଇଲା । ତା'ଛଡ଼ା ବଲ୍‌କାନ ଯୁଦ୍ଧ ଫଳରେ ସର୍ବିଆର ସାମରିକ ପରାକ୍ରମ ଓ ରାଜନୈତିକ ପ୍ରତିପତ୍ତି ବିଶେଷ ବୃଦ୍ଧି ପାଇଥିଲା । ଗଭୀର ଆତ୍ମବିଶ୍ୱାସ ଓ ଉଚ୍ଚ ଅଭିଳାଷ ନେଇ ସେ ବୃହତ୍ତର ସର୍ବିଆ ଗଠନରେ ଆଗଭର ହେଲା । ଏହି ଲକ୍ଷ୍ୟ ସାଧନରେ ଅଷ୍ଟ୍ରିଆ ଥିଲା ତାର ପ୍ରଧାନ ଶତ୍ରୁ । କାରଣ ବୃହତ୍ତର ସର୍ବିଆ ଗଠନରେ ଅଷ୍ଟ୍ରିଆ ଶାସିତ ବୋସ୍‌ନିଆ ଓ ହାର୍ଜିଗୋଭିନାର ସମ୍ମିଶ୍ରଣ ଏକାନ୍ତ ଜରୁରି ଥିଲା । ସର୍ବିଆର ପ୍ରଧାନମନ୍ତ୍ରୀ ପାସିଚ୍ ଥରେ କହିଥିଲେ, "ପ୍ରଥମ ବଲ୍‌କାନ ସମରକୁ ଇଉରୋପୀୟ ମହାସମରରେ ପରିଣତ କରି ମୁଁ ବୋସ୍‌ନିଆ ଓ ହାର୍ଜିଗୋଭିନା ଅଧିକାର କରିପାରିଥାନ୍ତି; କିନ୍ତୁ ବୁଲ୍‌ଗେରିଆର ମେସିଡୋନିଆ ଭାଗ ବେଶି ପଡ଼ିଯିବ ବୋଲି ଡରିରୁ କ୍ଷାନ୍ତ ହେଲି । ମେସିଡୋନିଆକୁ ସର୍ବିଆ ସହିତ ସାମିଲ କରିସାରି ବୋସ୍‌ନିଆ ହାସଲପାଇଁ ଚେଷ୍ଟାକରିବା ମୋର ଲକ୍ଷ୍ୟ ଥିଲା ।" ତେଣୁ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ସେ ରୁଷିଆ ପରିଭ୍ରମଣରେ ଯାଇ ବହୁପରିମାଣର ଅସ୍ତ୍ରଶସ୍ତ୍ର ସାହାଯ୍ୟ ମାଗିଥିଲେ ।

ସାମୟିକ ଭାବରେ ବଲ୍‌କାନ ସଙ୍କଟରୁ ଇଉରୋପୀୟ ମହାସମର ଆରମ୍ଭ ହେବାର ସମ୍ଭାବନା କମିଗଲା ପରି; କିନ୍ତୁ ଦୂରହେଲା ନାହିଁ । ୧୯୧୩ ମସିହା ଫେବ୍ରୁୟାରୀ ମାସରେ ପଏଙ୍କେୟାର ଫ୍ରାନସର ପ୍ରେସିଡେଣ୍ଟ ହେବା ପରେ ଡେଲ୍‌କାସିଙ୍କୁ ରୁଷିଆରେ ଫ୍ରାନ୍‌ସର ରାଷ୍ଟ୍ରଦୂତ ରୂପେ ନିଯୁକ୍ତ କରିଥିଲେ । ଡେଲ୍‌କାସି ଥିଲେ ପ୍ରତିହିଂସା ଯୁକ୍ତ ମନୋବୃତ୍ତିର ପ୍ରତୀକ । ବଲ୍‌କାନ ପ୍ରଶ୍ନନେଇ ଅଷ୍ଟ୍ରିୟା ସହ ରୁଷିଆର ପ୍ରତିଯୋଗିତାକୁ ସେ ଉତ୍ସାହିତ କରୁଥିଲେ । ଏହି ସମୟରେ ତୁର୍କୀର ଆଭ୍ୟନ୍ତରୀଣ ଦୁର୍ବଳତାର ସୁଯୋଗ ନେଇ କାଇଜର୍ ଦ୍ୱିତୀୟ ଉଇଲିୟମ୍ ବର୍ଲିନ ବାଗ୍‌ଦାଦ ରେଳପଥ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ଚାହୁଁଥିଲେ । ନିଜ ସ୍ୱାର୍ଥକୁ ଜଗିବାପାଇଁ ସେ ଏକୋଟି ଜର୍ମାନ ଯୁଦ୍ଧଜାହାଜ ଏସିଆ ମାଇନର ଉପକୂଳରେ ପ୍ରସ୍ତୁତ ରଖିଥିଲେ । ତା'ଛଡ଼ା ତୁର୍କୀର ସେନାବାହିନୀ ପୁନର୍ଗଠନ ଉଦ୍ଦେଶ୍ୟରେ ଶହ ଶହ ଜର୍ମାନ ସାମରିକ ଅଫିସରଙ୍କୁ କନଷ୍ଟାଣ୍ଟିନୋପଲଠାରେ ଅବସ୍ଥାପିତ କରିଥିଲେ । ଏସବୁ ବ୍ୟବସ୍ଥା ରୁଷପାଇଁ ଅସହନୀୟ ଥିଲା । ତୁର୍କୀର ଆଭ୍ୟନ୍ତରୀଣ ବ୍ୟାପାରରେ ଜର୍ମାନୀର ହସ୍ତକ୍ଷେପ ଓ ପ୍ରଭାବ ବୃଦ୍ଧି ତା' ପାଇଁ ବିପଜ୍ଜନକ ଥିଲା । ତେଣୁ ଜାର୍ ବହୁବାର ପ୍ରତିବାଦ ଜଣାଇଥିଲେ । ଫ୍ରାନ୍ସ ତାଙ୍କୁ ସମର୍ଥନ ଜଣାଇଥିଲା । କାଇଜର୍ କିନ୍ତୁ ସେସବୁ ପ୍ରତିବାଦକୁ କର୍ଣ୍ଣପାତ କରୁନଥିଲେ । ଫଳରେ ତୁର୍କୀ ବ୍ୟାପାରରେ ଜର୍ମାନ ବିରୋଧୀ ପ୍ରଚାର ରୁଷିଆ ଓ ଫ୍ରାନ୍‌ସରେ ଖୁବ୍ ବୃଦ୍ଧି ପାଇଥିଲା ।

୧୯୧୪ ମସିହା ଗ୍ରୀଷ୍ମଋତୁ ସମୟକୁ ଇଉରୋପୀୟ ରାଜନୀତି ବେଶ୍ ସରଗରମ ହୋଇଉଠିଲା । ସବୁ ରାଷ୍ଟ୍ର ଅତି ବ୍ୟସ୍ତରେ ନିଜ ନିଜର ସାମରିକ ଶକ୍ତି ବଢ଼ାଇବାପାଇଁ ଅସ୍ତ୍ରଶସ୍ତ୍ର ଓ ସାଜସରଞ୍ଜାମ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ୧୯୦୯ ମସିହାରୁ ରୁଷିଆ ନିଜ ସେନାବାହିନୀକୁ ଆଧୁନିକ ଏବଂ ଶକ୍ତିଶାଳୀ କରିବା ଦିଗରେ ଅହରହ ଉଦ୍ୟମ ଚଳାଇଥାଏ । ସ୍ଥଳବାହିନୀ ଓ ନୌବାହିନୀର ସଂଖ୍ୟାବୃଦ୍ଧି, ପଶ୍ଚିମ ସୀମାନ୍ତରେ ରେଳପଥ ଓ ଦୁର୍ଗ ନିର୍ମାଣ ମଧ୍ୟ ଜୋର୍‌ସୋର୍‌ରେ ଚାଲିଥାଏ । ରୁଷିଆର ପ୍ରସ୍ତୁତି ଦେଖି ଅଷ୍ଟ୍ରିୟା ଓ ଜର୍ମାନୀ ମଧ୍ୟ ଅନୁରୂପ ବ୍ୟବସ୍ଥା କରୁଥାନ୍ତି । ଅନ୍ୟ ଦିଗରେ ଫ୍ରାନ୍‌ସରେ ମଧ୍ୟ ସେହିପରି ବ୍ୟାପକ ସାମରିକ ପ୍ରସ୍ତୁତି ଚାଲିଥାଏ । ପୂର୍ବପଟେ ରୁଷିଆ ଓ ପଶ୍ଚିମପଟେ ଫ୍ରାନ୍‌ସର ସମରପ୍ରସ୍ତୁତି ଦେଖି ଜର୍ମାନୀ ମଧ୍ୟ ବ୍ୟସ୍ତ ବୋଧକଲା । ଯୁଦ୍ଧ ଯଦି ହୁଏ ତେବେ ତାହାର ଫଳାଫଳ ଉପରେ ଜାତୀୟ ଗୌରବ ଓ ପିତୃଭୂମିର ଭବିଷ୍ୟତ ନିର୍ଭର କରୁଥିଲା । ଏହି ଯୁଦ୍ଧ ୧୯୦୫ ମସିହାରେ ମରକ୍କୋ ଏବଂ ୧୯୧୧ ମସିହାରେ ଆଗାଦିର ପ୍ରଶ୍ନନେଇ ହୁଏତ ଆରମ୍ଭ ହୋଇଯାଇଥାନ୍ତା; କିନ୍ତୁ ବର୍ତ୍ତମାନ ପଏଙ୍କେୟାର, ଆଲ୍‌ସେସ୍, ଲୋରେନ୍ ପୁନରଧିକାର ପାଇଁ ପ୍ରଚାର ଆରମ୍ଭ କରିଦେଲେ । ତା'ସହିତ ବଲ୍‌କାନ ଅଞ୍ଚଳରେ ରୁଷିଆ ଓ ଅଷ୍ଟ୍ରିୟାର ପରସ୍ପର ପ୍ରତି ବିଦ୍ୱେଷ ଇଉରୋପୀୟ ଜାତିଗୁଡ଼ିକୁ ଯୁଦ୍ଧପାଇଁ ଉତ୍ସାହିତ କଲା ।

ଫ୍ରାନ୍‌ସ ଏବଂ ରୁଷିଆ ଅନୁରୂପ ବୈଦେଶିକ ନୀତି ଅନୁସରଣ କରୁଥିଲେ । ସେମାନେ ଇଂଲଣ୍ଡ ଓ ଜର୍ମାନୀ ମଧ୍ୟରେ ଶତ୍ରୁଭାବକୁ ଉତ୍ସାହିତ କରୁଥିଲେ । ଇଂରେଜ ଓ

ଜର୍ମାନ ସରକାର ଯେପରି ବନ୍ଧୁଭାବରେ ଆବଦ୍ଧ ନଥିଆନ୍ତି ଏହା ଉଭୟ ଦେଶର ମୂଳନୀତି ଥିଲା । କାରଣ ଇଂଲଣ୍ଡର ସାହାଯ୍ୟ ଓ ସହାନୁଭୂତି ବିନା ଫ୍ରାନସ ଓ ରୁଷିଆ ସ୍ଥାନବଳ ଥିଲେ । ଜର୍ମାନୀ ସହ ଏକାକୀ ଯୁଦ୍ଧକରିବାକୁ ସେମାନଙ୍କର ସାହସ ବା ଶକ୍ତି ନଥିଲା । ଅବଶ୍ୟ ମଝିରେ ମଝିରେ ରୁଷିଆ ଜର୍ମାନୀକୁ ଫ୍ରାନ୍ସ ଉପରେ ଆକ୍ରମଣ କଲେ ପରିଣତି ସାଂଘାତିକ ହେବ ବୋଲି ଚେତାବନୀ ଦେଉଥିଲା ।

ଅବଶ୍ୟ ଇଉରୋପୀୟ ଗୋଷ୍ଠୀବିବାଦକୁ ସମ୍ମିଭୂତ କଲା ଜର୍ମାନୀ ଅଷ୍ଟ୍ରିୟାର ସାମରିକ ମେଣ୍ଟ । ଏ ଦୁଇଦେଶ ମଧ୍ୟରେ ଅଷ୍ଟ୍ରିୟା ଦୁର୍ବଳପକ୍ଷ ଥିଲା । ତାର ଶାସକ ଫ୍ରାନ୍ସିସ ଯୋସେଫ ମଧ୍ୟ ଅତି ବୃଦ୍ଧ ଥିଲେ । ତାଙ୍କ ମୃତ୍ୟୁ ପରେ ଅଷ୍ଟ୍ରିୟା-ହଙ୍ଗେରୀର ଭବିଷ୍ୟତ ଅନ୍ଧକାରମୟ ବୋଲି ସଭିଏଁ ମନେକରୁଥିଲେ । ଏପରି ଅବସ୍ଥାରେ ଅଷ୍ଟ୍ରିୟା ହଙ୍ଗେରୀର ବୈଦେଶିକ ନୀତି ଓ ସେନାବାହିନୀ ଉପରେ ଜର୍ମାନୀର ପ୍ରତିପତ୍ତି ବୃଦ୍ଧି ପାଇଥିଲା । କୂଟନୀତି କ୍ଷେତ୍ରରେ ଅଷ୍ଟ୍ରିୟା ସମ୍ପୂର୍ଣ୍ଣ ନିର୍ଭର କରୁଥିଲା ଜର୍ମାନୀ ଉପରେ । ତେଣୁ କାଇଜର୍‌ଙ୍କର ଦୃଷ୍ଟିଦୃଷ୍ଟି ଓ ଭାବାବେଶ ଉପରେ ଦୁଇଦେଶର ଭବିଷ୍ୟତ ନିର୍ଭର କରୁଥିଲା ।

୧୯୧୪ ମସିହାରେ ଅଷ୍ଟ୍ରିୟା-ହଙ୍ଗେରୀର ଆଭ୍ୟନ୍ତରୀଣ ଅବସ୍ଥାରେ ନାନା ସଙ୍କଟ ଦେଖାଦେଇଥିଲା । ସ୍ଲାଭ୍ ଜାତିଗୁଡ଼ିକର ସ୍ୱାଧୀନତା ଉଦ୍ୟମ ଅଷ୍ଟ୍ରିୟା ସାମ୍ରାଜ୍ୟର ସ୍ୱାର୍ଥବିରୋଧୀ ହୋଇଥିବାରୁ ଯୁବରାଜ ଫର୍ଡିନାଣ୍ଡ ତାହା ପସନ୍ଦ କରୁନଥିଲେ । ଏତାଦୃଶ ପରିସ୍ଥିତିରେ ଯୁଦ୍ଧ ହେଲେ ଅଷ୍ଟ୍ରିୟା ସରକାର ଅବସ୍ଥା ସମ୍ଭାଳିବା ଅସମ୍ଭବ ହେବ ବୋଲି ବର୍ଲିନକୁ ଜଣାଇଦେଇଥିଲେ । ତେଣୁ ଏକ ଦୁର୍ବଳ, ବିପଦଗ୍ରସ୍ତ ମିତ୍ରରାଷ୍ଟ୍ରକୁ ଧ୍ୱଂସରୁ ରକ୍ଷାକରିବାର ନୈତିକ ଦାୟିତ୍ୱ ଜର୍ମାନୀ ଉପରେ ପଡ଼ିଥିଲା । ତେଣୁ ପରିସ୍ଥିତି ଦେଖି ରାଷ୍ଟ୍ରନୀତିକୁ ଏକ ରାସ୍ତାରେ ପରିଚାଳିତ କରିବାର ଦାୟିତ୍ୱ କାଇଜର୍ ଉଇଲ୍ହେଲମ୍‌ଙ୍କଠାରେ ହିଁ ନ୍ୟସ୍ତ ଥିଲା । ସେ କିନ୍ତୁ ଅଦମ୍ୟ ଆତ୍ମବିଶ୍ୱାସ ନେଇ ସବୁଦେଲେ ଯୁଦ୍ଧର ଅପେକ୍ଷାରେ ଥିଲେ ।

ଅନ୍ୟପକ୍ଷରେ ଯୁଦ୍ଧକୁ ଏଡ଼ିବାପାଇଁ ଇଂଲଣ୍ଡର ମଧ୍ୟ ବିଶେଷ ଦାୟିତ୍ୱ ଥିଲା । ତ୍ରିଶକ୍ତି ସଙ୍ଘର ଶକ୍ତିଶାଳୀ ସଭ୍ୟ ଭାବରେ ଇଂଲଣ୍ଡ ଫ୍ରାନ୍ସ ଓ ରୁଷିଆର ରାଷ୍ଟ୍ରନୀତିକୁ ସେ ପ୍ରଭାବିତ କରିପାରିଥାନ୍ତା; କିନ୍ତୁ ଇଉରୋପରେ ଜର୍ମାନୀର ପ୍ରଭାବ ବିସ୍ତାର ଓ ନୌଶକ୍ତି ବୃଦ୍ଧି ସେ ଚାହୁଁନଥିଲା । ସେ ଦୃଷ୍ଟିରୁ ଶାନ୍ତିରକ୍ଷା ପାଇଁ ତା'ର ଦୃଷ୍ଟିଭଙ୍ଗୀ ଓ ଦାୟିତ୍ୱ ଯଥେଷ୍ଟ ଥିଲେ ହେଁ ନିରପେକ୍ଷ ନୀତି ଅବଲମ୍ବନ କଲେ, ତ୍ରିଶକ୍ତି ସଙ୍ଘ ଭାଙ୍ଗିଯିବା ଭୟରେ ସେ ଫ୍ରାନ୍ସ ଓ ରୁଷକୁ ସମର୍ଥନ ଜଣାଉଥିଲା ।

ତେଣୁ ଇଉରୋପୀୟ ରାଷ୍ଟ୍ରଗୁଡ଼ିକ ଦୁଇଟି ବିବାଦୀୟ ସାମରିକ ମେଣ୍ଟରେ ନିଜ ନିଜକୁ ଭାଗ ଭାଗ କରି ତ୍ରିଶକ୍ତି ମେଣ୍ଟ ଓ ତ୍ରିଶକ୍ତି ସଙ୍ଘ ଗଢ଼ିଲେ । ଆଫ୍ରିକାର ଉପନିବେଶ, ବର୍ଲିନ ବାଗଦାଦ ରେଳପଥ ସହ ତୁର୍କୀର ଆଭ୍ୟନ୍ତରୀଣ ଅର୍ଥନୀତି ଓ ରାଜନୀତିରେ ସମ୍ପୃକ୍ତ

ହୋଇ ଲାଭ ଉଠାଇବାର ଆଶା, ଆଲ୍‌ସେସ୍ ଲୋରାଇନ ପ୍ରଶ୍ନନେଇ ଜର୍ମାନୀ ଓ ଫ୍ରାନ୍‌ସ ଭିତରେ ରହିଥିବା ତିକ୍ତ ମନୋଭାବ, ବଲ୍‌କାନ ଅଞ୍ଚଳରେ ରୁଷିଆ ଓ ଅଷ୍ଟ୍ରିୟାର ପ୍ରଚ୍ଛନ୍ନ ରାଜନୈତିକ ସ୍ୱାର୍ଥ ଏବଂ ସର୍ବୋପରି ସର୍ବ ଓ ସ୍ଲାଭ୍ ଜାତିମାନଙ୍କର ସ୍ୱାଧୀନତା ସଂଗ୍ରାମ ଇଉରୋପୀୟ ରାଜନୀତିରେ ଗୋଷ୍ଠୀବାଦକୁ ଉତ୍ତେଜିତ କଲା । ପ୍ରତ୍ୟେକ ଦେଶରେ ସରକାରୀ କଳ ଯୁଦ୍ଧ ଅନୁକୂଳରେ ପ୍ରସ୍ତୁତି ଓ ପ୍ରଚାର ଆରମ୍ଭ କରିଥିଲା । ଶାନ୍ତି ନାମରେ ସଭିଏଁ ଯୁଦ୍ଧପାଇଁ ସଜବାଜ ହେଉଥିଲେ । ଦେଶ ଦେଶ ମଧ୍ୟରେ ଭୟ, ଘୃଣା, ଗୁପ୍ତ ସାମରିକ ଯୋଜନା ପରିସ୍ଥିତିକୁ ଅତି ଜଟିଳ କରିପକାଇଲା । ମନେ ହେଲା, ସତେ ଯେପରି ସାରା ଇଉରୋପ ଏକ ବିରାଟ ବାରୁଦଭଣ୍ଡାରରେ ନିଜକୁ ପରିଣତ କରିଛି । ସେଥିରେ ଅଗ୍ନି ସଂଯୋଗ ମାତ୍ର ବାକି ଥିଲା—ଯାହା ଫଳରେ ଏକ ଅନାକାଙ୍‌କ୍ଷିତ ରାଜନୀତିକ ଉଦ୍‌ଗିରଣ ସମ୍ଭବ ହୋଇଥାନ୍ତା । ସେହି ଅଗ୍ନି ସଂଯୋଗ ଘଟିଲା ବୋସ୍‌ନିୟାର ରାଜଧାନୀ ସେରାଜେଭୋଠାରେ, ଯେଉଁଠି ୧୯୧୪ ମସିହା ଜୁନ ୨୮ ତାରିଖ ଦିନ ସନ୍ତ୍ରାସବାଦୀ ଗେଭ୍‌ରିଲୋ ପ୍ରିନ୍‌ସିପ୍‌ଙ୍କ ଗୁଳିଗ୍ରେଟରେ ପ୍ରାଣ ହରାଇଲେ ଅଷ୍ଟ୍ରିୟା ସାମ୍ରାଜ୍ୟର ଯୁବରାଜ ଫ୍ରାନ୍‌ସିସ୍ ଫର୍ଡିନାଣ୍ଡ ଏବଂ ତାଙ୍କର ପତ୍ନୀ ସୋଫି ।

୧୯୧୪ ମସିହା ଜୁନ ମାସରେ ବୋସନିୟାକୁ ପରିଭ୍ରମଣରେ ଯିବାପାଇଁ ଯୁବରାଜ ଫ୍ରାନ୍‌ସିସ୍ ଫର୍ଡିନାଣ୍ଡ ବହୁଦିନରୁ ସ୍ଥିର କରିଥିଲେ । ବୋସ୍‌ନିୟାର ଗଭର୍ଣ୍ଣର ପୋସିଓରେକ୍ ସେଥିପାଇଁ କାର୍ଯ୍ୟସୂଚୀ ତିଆରି କରିଥିଲେ । ବୋସ୍‌ନିୟା ଅଷ୍ଟ୍ରିୟା ଶାସିତ ଅଞ୍ଚଳରୂପେ ଯୁବରାଜଙ୍କର ଏପରି ଆଗମନରେ କିଛି ନୂତନତ୍ୱ ନଥିଲା । ତେବେ ବୋସ୍‌ନିୟା ଅଧିବାସୀଙ୍କ ମନରେ ଅଷ୍ଟ୍ରିୟା ଶାସନ ପ୍ରତି ଅନୁରକ୍ତି ଜାଗ୍ରତକରିବା ଏହି ଯାତ୍ରାର ଉଦ୍ଦେଶ୍ୟ ଥିଲା । ରାଜପରିବାରର ବ୍ୟକ୍ତିଗତ ଉପସ୍ଥିତି ବୋସ୍‌ନିୟାର କୃଷକସମାଜ ମଧ୍ୟରେ ଅନୁରକ୍ତିର ପରିମାଣକୁ ଗଭୀର କରି ପାରିଥାନ୍ତା । ଏହି ଯାତ୍ରା ସମୟରେ ଅଷ୍ଟ୍ରିୟା ସେନାବାହିନୀର ରଣକୌଶଳ ପ୍ରଦର୍ଶନ ବୋସ୍‌ନିୟାର ଡ୍ରିନ ଜିଲ୍ଲାରେ ଆୟୋଜିତ ହୋଇଥିଲା । ତାହା ମଧ୍ୟ ଫର୍ଡିନାଣ୍ଡଙ୍କ କାର୍ଯ୍ୟକ୍ରମ ଭିତରେ ଅନ୍ତର୍ଭୁକ୍ତ ଥିଲା । ସେରାଜେଭୋ ନଗରୀ ଯୁବରାଜଙ୍କ ଆଗମନ ଉପଲକ୍ଷ୍ୟେ ସୁନ୍ଦରଭାବେ ସଜ୍ଜିତ ହୋଇଥିଲା । ପ୍ରତ୍ୟେକ ଗୃହ ଓ ବାତାୟନ ନିକଟରେ ତାଙ୍କ ଚିତ୍ରପଟ ଶୋଭାପାଉଥିଲା । ଜୁନ ମାସ ୨୮ ତାରିଖ ରବିବାର ଦିନ ଟାଉନହଲ ଅଭିମୁଖରେ ପତ୍ନୀ ସୋଫିଙ୍କ ସହ ଯୁବରାଜ ଏକ ମଟରଗାଡ଼ିରେ ଯାଉଥିଲେ । ସାମରିକ ପୋଷାକ ପରିଧାନ କରି ଯୁବରାଜ ଅତି ମନୋଜ୍ଞ ଦିଶୁଥିଲେ । ସନ୍ତ୍ରାସବାଦୀ ସର୍ବ ଯୁବକ ଗେଭ୍‌ରିଲୋ ପ୍ରିନ୍‌ସିପ୍ ରାସ୍ତାରେ ଲୁଚିରହିଥିଲେ । ସୁଯୋଗ ପାଇ ସେ ହଠାତ୍ ରାସ୍ତା ଉପରକୁ ଆସି ଯୁବରାଜଙ୍କୁ ଲକ୍ଷ୍ୟକରି ଦୁଇଥର ଗୁଳି ଚଳାଇଥିଲେ । ପ୍ରଥମ ଗୁଳିଟି ଯୁବରାଜଙ୍କ କଣ୍ଠଦେଶରେ ବାଜି ପାଟିବାଟେ ରକ୍ତସ୍ରାବ ହେଲା । ଦ୍ୱିତୀୟ ଗୁଳି ଯୁବରାଣୀ ସୋଫିଙ୍କ ପେଟରେ ବାଜିଲା । ମାତ୍ର ଅଳ୍ପ କେତେ ମିନିଟ୍ ମଧ୍ୟରେ ଉଭୟେ ଶେଷ ନିଃଶ୍ୱାସ ତ୍ୟାଗକଲେ ।

ଏହି ହତ୍ୟାର ପରିଣାମ ଅତି ବିଷମ ହୋଇଥିଲା । କାରଣ ଗ୍ରେବଲେ ପ୍ରିନ୍‌ସିପ୍ 'କଳା ହସ୍ତ' (Black Hand) ନାମକ ଏକ ସନ୍ତ୍ରାସବାଦୀ ସଂସ୍ଥାଦ୍ୱାରା ଯୁବରାଜ ଫର୍ଡିନାଣ୍ଡଙ୍କୁ ହତ୍ୟାକରିବାକୁ ନିଯୁକ୍ତ ହୋଇଥିଲେ । ଏହି ସଂସ୍ଥା ସର୍ବ ଜାତୀୟତାବାଦୀମାନଙ୍କ-ଦ୍ୱାରା ଗଠିତ ହୋଇଥିଲା ଏବଂ ତାହାର ପୃଷ୍ଠପୋଷକ ଥିଲା ସର୍ବିୟା । ତେଣୁ ସର୍ବିୟା ସରକାରଙ୍କୁ ହତ୍ୟାକାରୀ ସରକାର ବୋଲି ଅଭିଯୁକ୍ତ କରି ଅଷ୍ଟ୍ରିୟା ଦୃଢ଼ନୀତି ଅବଲମ୍ବନ କରିବାର ସୂଚନା ମିଳିଥିଲା । ଏହି ସମ୍ପର୍କରେ ଭିଏନାରେ ଥିବା ଇଂରେଜ ରାଷ୍ଟ୍ରଦୂତ ଲଣ୍ଡନକୁ ଲେଖିଥିଲେ, "ସେରାଜେଭୋ ହତ୍ୟାରେ ସର୍ବିୟା ପ୍ରଚ୍ଛନ୍ନ ଅଂଶ ଗ୍ରହଣ କରିଅଛି ବୋଲି ତା'ର ବିରୁଦ୍ଧରେ ଯଥାବିଧି ସାମରିକ ଆୟୋଜନ ଆରମ୍ଭ ହେଲାଣି । ଅଷ୍ଟ୍ରିୟା ବିରୋଧୀ ଜାତୀୟତାବାଦୀ ଆନ୍ଦୋଳନକୁ ଦବାଇବା ପାଇଁ ସର୍ବିୟା ସରକାରର ଦୃଢ଼ ପଦକ୍ଷେପ ନେବା ସମ୍ପର୍କରେ ଅତିଶୀଘ୍ର ଭିଏନାରୁ ନିର୍ଦ୍ଦେଶନାମା ଜାରି ହେବାର ଶୁଣାଯାଉଛି । ତାହା ସର୍ବିୟା ସରକାର ପାଳନ ନ କଲେ ଯୁଦ୍ଧ ଅବଶ୍ୟମ୍ଭାବୀ ହେବ । ଏ ବିଷୟରେ ଜର୍ମାନୀ ଅଷ୍ଟ୍ରିୟାକୁ ସମର୍ଥନ କରିବ ।" ସେହିପରି ଜୁଲାଇ ୨୧ ତାରିଖ ଦିନ ପଏଙ୍କେୟାର ରୁଷ ରାଜଧାନୀ ସେଣ୍ଟପିଟର୍ସବର୍ଗରେ ଅଷ୍ଟ୍ରିୟାର ରାଜଦୂତଙ୍କୁ ଶୁଣାଇ କହିଲେ, "ଆମେ ଶୁଣୁଛୁ ଅଷ୍ଟ୍ରିୟା ସର୍ବିୟା ବିରୁଦ୍ଧରେ ଯୁଦ୍ଧପାଇଁ ତତ୍ପର । ତେବେ ରୁଷ୍ ଜାତି ସର୍ବିୟାର ଅତି ଘନିଷ୍ଠ ବନ୍ଧୁ ଏବଂ ଆମେ ମଧ୍ୟ ରୁଷିଆର ଅତି ଆପଣାର ।"

ସେରାଜେଭୋ ହତ୍ୟାକାଣ୍ଡ ଫଳରେ ଜାତୀୟତାବାଦୀମାନେ ଅଷ୍ଟ୍ରିୟ ସାମ୍ରାଜ୍ୟ ବିରୁଦ୍ଧରେ ବିପ୍ଳବ କରିବାକୁ ପ୍ରେରଣା ପାଇବେ ଏବଂ ବୃଦ୍ଧ ସମ୍ରାଟ ଫ୍ରାନ୍‌ସିସ୍ ଯୋସେଫଙ୍କ ମୃତ୍ୟୁ ପରେ ସାମ୍ରାଜ୍ୟର ଭବିଷ୍ୟତ ଅନିଶ୍ଚିତ ଥିବା ଦୃଷ୍ଟିରୁ ସର୍ବିୟା ବିରୁଦ୍ଧରେ ଦୃଢ଼ପ୍ରତିକାର ବ୍ୟବସ୍ଥା ନିହାତି ଜରୁରି ଥିଲା । ଯୁବରାଜଙ୍କ ହତ୍ୟାକାଣ୍ଡପାଇଁ ସର୍ବିୟାକୁ ପୂର୍ଣ୍ଣ ଦୋଷୀ ସାବ୍ୟସ୍ତ କରି ଅଷ୍ଟ୍ରିୟା ସରକାର ଜୁଲାଇ ୨୦ ତାରିଖ ଦିନ ଏକ ଚରମପତ୍ର ସର୍ବିୟା ଉଦ୍ଦେଶ୍ୟରେ ପଠାଇଲେ । ଏହି ଚରମପତ୍ରର ସାରମର୍ମ ନିମ୍ନୋକ୍ତ ପ୍ରକାର ଥିଲା ।

"୧୯୦୯ ମସିହାରେ ବୋସ୍‌ନିଆ ଅଷ୍ଟ୍ରିୟାଦ୍ୱାରା ଅଧିକୃତ ହେବା ଫଳରେ ସର୍ବିୟାର କୌଣସି କ୍ଷତି ହୋଇନଥିଲା । ସେ ଦୃଷ୍ଟିରୁ ଅଷ୍ଟ୍ରିୟା ବିରୋଧୀ ଆନ୍ଦୋଳନକୁ ପ୍ରତ୍ୟକ୍ଷ ବା ପରୋକ୍ଷ ସାହାଯ୍ୟ ଦେବା ସର୍ବିୟା ପକ୍ଷରେ ଘୋର ଅନ୍ୟାୟ; କିନ୍ତୁ ଗତ କେତେ ବର୍ଷର ଘଟଣାରୁ ବିଶେଷତଃ ଜୁନ ୨୮ ତାରିଖର ନିର୍ମମ ହତ୍ୟାକାଣ୍ଡରୁ ସ୍ପଷ୍ଟ ହୁଏ ଯେ, ଅଷ୍ଟ୍ରିୟା ବିରୁଦ୍ଧରେ ଏକ ଅନ୍ତର୍ଘାତୀ ଯୋଜନା ସକ୍ରିୟ ଭାବରେ କାର୍ଯ୍ୟ କରୁଛି । ଏହି ଯୋଜନା ପାଇଁ ସର୍ବିୟା ସରକାର ସାହାଯ୍ୟ ସହାନୁଭୂତି ପ୍ରଦାନକରିବାଦ୍ୱାରା ହତ୍ୟା ଏବଂ ଆତଙ୍କ ଦିନୁଦିନ ବୃଦ୍ଧି ପାଇଛି । ସର୍ବିୟା ସରକାର ଏହି ଆତଙ୍କବାଦୀ ବା ଷଡ଼ଯନ୍ତ୍ରକାରୀଙ୍କୁ ଅନ୍ତର୍ଘାତୀ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ କୌଣସି ପଦକ୍ଷେପ ନେବା ପରିବର୍ତ୍ତେ ଅଷ୍ଟ୍ରିୟାର ରାଜତନ୍ତ୍ର ସରକାର ବିରୁଦ୍ଧରେ ଚକ୍ରାନ୍ତ କରିବାପାଇଁ ପ୍ରେରଣା ଯୋଗାଇବା ଅତି ଦୁଃଖ-ଦାୟକ ହୋଇଛି । ଅଷ୍ଟ୍ରିୟା ବିରୋଧୀ ପ୍ରଚାର କାର୍ଯ୍ୟକୁ ବନ୍ଦ ନକରି ସେଥିରେ ଉତ୍ତେଜନା ଓ ଉତ୍ସାହ ଯୋଗାଇବା ସର୍ବିୟା ପକ୍ଷରେ ସର୍ବୋପରି ନିନ୍ଦନୀୟ ।"

ଅନୁସନ୍ଧାନରୁ ଜଣାପଡ଼ୁଛି ଯେ ଜୁନ ୨୮ ତାରିଖର ହତ୍ୟାରେ ଜଡ଼ିତଥିବା ହତ୍ୟାକାରୀମାନଙ୍କୁ ବେଲ୍‌ଗ୍ରେଡଠାରେ ଆବଶ୍ୟକୀୟ ଶିକ୍ଷା, ଅସ୍ତ୍ରଶସ୍ତ୍ର, ମାନଚିତ୍ର ଓ ନିର୍ଦ୍ଦେଶ ଦିଆଯାଇଥିଲା । ସେଥିରେ ସର୍ବିୟାର ସରକାରୀ କଳ ମଧ୍ୟ ବ୍ୟବହୃତ ହୋଇଥିବାର ଜଣାପଡ଼ୁଛି ।

"ଏହି ପରିସ୍ଥିତିରେ ଅଷ୍ଟ୍ରିୟାର ରାଜତନ୍ତ୍ରକୁ ବିପନ୍ନ କଲାଭଳି ଚକ୍ରାନ୍ତ ବା ଅପପ୍ରଚାରକୁ ଆଉ ସହ୍ୟକରିବା ଅଷ୍ଟ୍ରିୟା ପକ୍ଷେ ଅସମ୍ଭବ । ତେଣୁ ସେ ଦିଗରେ ବାଧ୍ୟତ କାର୍ଯ୍ୟାନୁଷ୍ଠାନ କରି, ସେରାଜେଭୋର କୁକର୍ମକୁ ନିନ୍ଦାକରି, ଅଷ୍ଟ୍ରିୟା ବିରୋଧୀ ସମସ୍ତ କୁତ୍ସା ଓ ଅପପ୍ରଚାରକୁ ବନ୍ଦକରିବା ବର୍ତ୍ତମାନ ସର୍ବିୟା ସରକାରଙ୍କର କର୍ତ୍ତବ୍ୟ । ସେ ଦିଗରେ ନିମ୍ନୋକ୍ତ ସରକାରୀ ଘୋଷଣା ସର୍ବିୟା ଅତିଶୀଘ୍ର କରିବା ଦରକାର ।

"ଅଷ୍ଟ୍ରିୟା ବିରୋଧୀ ଜାତୀୟ ଆନ୍ଦୋଳନ ଓ ଅପପ୍ରଚାରକୁ ଆମ୍ଭେ ନିନ୍ଦାକରୁ । ଯେଉଁ ସରକାରୀ କର୍ମଚାରୀମାନେ କୌଣସି ଚକ୍ରାନ୍ତ ବା ଅପପ୍ରଚାରରେ ଲିପ୍ତରହି ଅଷ୍ଟ୍ରିୟା ଓ ସର୍ବିୟାର ବନ୍ଧୁତ୍ୱକୁ ନଷ୍ଟକରୁଛନ୍ତି, ସେମାନଙ୍କୁ ଆମେ ନିନ୍ଦାକରୁ । କୌଣସି ଷଡ଼ଯନ୍ତ୍ର ବା ଚକ୍ରାନ୍ତରେ ଯୋଗ ନଦେଇ ତାକୁ (ଚକ୍ରାନ୍ତକୁ) ପଣ୍ଡକରିବା ସର୍ବିୟା ସରକାର ଏବଂ ସର୍ବିୟାବାସୀଙ୍କର କର୍ତ୍ତବ୍ୟ ।" ସର୍ବିୟା ସରକାର ଆଉ ମଧ୍ୟ ପ୍ରତିଜ୍ଞା କରନ୍ତୁ ଯେ, 'ଅଷ୍ଟ୍ରିୟା ବିରୁଦ୍ଧରେ ଜନମତ ଉତ୍ତେଜିତ ହେଲାଭଳି ଅପପ୍ରଚାରକୁ ଦମନ କରିବେ ।' 'ଜାତୀୟ ସୁରକ୍ଷା' ଦଳକୁ ନିଷିଦ୍ଧ କରାଯିବ ଏବଂ ଉକ୍ତ ଦଳର ପ୍ରଚାରପାଇଁ ଉଦ୍ଦିଷ୍ଟ ଛାପାଖାନାକୁ ବାଜ୍ୟାପ୍ତ କରାଯିବ ।"

"ଶିକ୍ଷାଅନୁଷ୍ଠାନ ଓ ଶିକ୍ଷା ମାଧ୍ୟମରେ ଅଷ୍ଟ୍ରିୟା ବିରୋଧୀ ଅପପ୍ରଚାରକୁ ବନ୍ଦ କରାଯିବ ।"

"ସାମରିକବାହିନୀ ଓ ଶାସନକଳରୁ ଅପପ୍ରଚାରକାରୀ କର୍ମଚାରୀମାନଙ୍କୁ ବହିଷ୍କାର କରାଯିବ ।"

"ଅନ୍ତର୍ଘାତୀକାର୍ଯ୍ୟ ଦମନ କରିବାପାଇଁ ସର୍ବିୟା ସରକାର ଅଷ୍ଟ୍ରିୟାଠାରୁ ପ୍ରତ୍ୟକ୍ଷ ସହଯୋଗ ଗ୍ରହଣ କରିବ ।"

"ଯେଉଁମାନେ ଜୁନ ୨୮ ଅପରାଧରେ ସମ୍ପୃକ୍ତ ସେମାନେ ଦଣ୍ଡନୀୟ ହେବେ ।"

"ମେଜର ଟାଙ୍କୋସିଚ୍ ଓ ସିଗାନୋଭିଚ୍‌ଙ୍କୁ ତୁରନ୍ତ ଗିରଫ କରାଯିବ ।"

"ଅସ୍ତ୍ରଶସ୍ତ୍ରର ବେଆଇନ ବ୍ୟବସାୟ, ବିଶେଷତଃ ସୀମାନ୍ତ ଅଞ୍ଚଳରେ ସେଥିପାଇଁ ସରକାରୀ କଳର ଅପବ୍ୟବହାର ଦଣ୍ଡନୀୟ ହେବ ।

"ଜୁନ ୨୮ ପରେ କେତେକ ଉଦ୍ଦେଶ୍ୟମୂଳକ ଅଷ୍ଟ୍ରିୟା ବିରୋଧୀ ଘୋଷଣା ପାଇଁ ସରକାର କ୍ଷମାପ୍ରାର୍ଥନା କରନ୍ତୁ ଏବଂ ଏ ଦିଗରେ ନିଆଯାଇଥିବା ପଦକ୍ଷେପ ସମ୍ପର୍କରେ ବିଶେଷ ବିବରଣୀ ଅଷ୍ଟ୍ରିୟା ସରକାରଙ୍କ ପାଖରେ ଉପସ୍ଥାପିତ କରନ୍ତୁ ।"

ଏହି ଚରମପତ୍ରର ଉତ୍ତର ଦେବାପାଇଁ ସର୍ବିୟାକୁ ମାତ୍ର ୪୮ ଘଣ୍ଟା ସମୟ ମିଳିଥିଲା । ଜୁଲାଇ ମାସ ୨୩ ତାରିଖ ଅପରାହ୍ଣ ୬ଟା ସମୟରେ ଚରମପତ୍ର ସର୍ବିୟା

ସରକାରଙ୍କ ହସ୍ତଗତ ହୋଇଥିଲା । ସେତେବେଳେ ପ୍ରଧାନମନ୍ତ୍ରୀ ପାସିଚ୍ ବେଲ୍‌ଗ୍ରେଡ଼ରେ ନଥିଲେ । ଜୁଲାଇ ୨୫ ତାରିଖ ସକାଳ ୧୦ଟାରେ ମନ୍ତ୍ରିମଣ୍ଡଳର ବୈଠକ ବସିଥିଲା । ତହିଁରେ କୌଣସି ନିଷ୍ପତ୍ତି ନେବା ସମ୍ଭବ ହେଲାନାହିଁ । ସମୟ ନ ଥିବାରୁ ରୁଷିଆ, ଇଂଲଣ୍ଡ ଏବଂ ଫ୍ରାନ୍‌ସ ପ୍ରଭୃତି ମିତ୍ରପକ୍ଷର ପରାମର୍ଶ ନେବା ମଧ୍ୟ ସମ୍ଭବ ନଥିଲା । ସର୍ବିଆ ଚରମପତ୍ରର ଉତ୍ତର ଅତି ବିନମ୍ର ଓ ମିତ୍ରଭାବାପନ୍ନ ହୋଇଥିଲା । ତହିଁରେ ଜୁନ୍ ୨୮ ତାରିଖର ଘଟଣା ପାଇଁ ସର୍ବିଆ ସରକାର ଦାୟୀ ନୁହେଁ ବୋଲି ସୂଚିତ ହୋଇଥିଲା । ଚରମପତ୍ରର ଅନ୍ୟାନ୍ୟ ଦାବୀ ସମ୍ପର୍କରେ ଉତ୍ତର ନିମ୍ନୋକ୍ତ ପ୍ରକାର ଥିଲା—

"ପାର୍ଲାମେଣ୍ଟର ପ୍ରଥମ ଅଧିବେଶନରେ ଅଷ୍ଟ୍ରିଆବିରୋଧୀ ପ୍ରଚାର ବନ୍ଦକରିବାପାଇଁ କଠୋର ଆଇନ ପ୍ରଣୀତ ହେବ । ତାହା ଅମାନ୍ୟ କଲେ ମୁଦ୍ରାଯନ୍ତ୍ରମାନ ସରକାର ବାଜ୍ୟାପ୍ତ କରିନେବେ । ଅନ୍ତର୍ଘାତୀ କାର୍ଯ୍ୟରେ ଲିପ୍ତଥିବାର ସ୍ପଷ୍ଟ ପ୍ରମାଣ ପାଇଲେ 'ଜାତୀୟ ସୁରକ୍ଷା' ଦଳ ଓ ଅନ୍ୟାନ୍ୟ ସଙ୍ଘଗୁଡ଼ିକୁ ଲୋପ କରିଦିଆଯିବ । ଶିକ୍ଷାନୁଷ୍ଠାନରେ ଅଷ୍ଟ୍ରିଆ-ବିରୋଧୀ ଆଲୋଚନା ଓ ଅଧ୍ୟାପନା ବନ୍ଦହେବ । ପ୍ରମାଣିତ ହେଲେ ସାମରିକବାହିନୀର କର୍ମଚାରୀଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯିବ ।

ଅଷ୍ଟ୍ରିଆ ସରକାରଙ୍କ ସହଯୋଗରେ ଅନ୍ତର୍ଘାତମୂଳକ କ୍ରିୟାକଳାପକୁ ଦମନ କରାଯିବା ସମ୍ପର୍କରେ ସର୍ବିଆ ସରକାର ସବୁକଥା ବୁଝିପାରୁନାହାନ୍ତି । ତେବେ ସେ ବିଗରେ ପ୍ରଚଳିତ ଆନ୍ତର୍ଜାତିକ ଆଇନ ଓ ନୀତି ଅନୁସୃତ ହେବ ।

ହତ୍ୟାକାଣ୍ଡ ସହ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଅନୁସନ୍ଧାନ ପାଇଁ ସର୍ବିଆ ସରକାର ରାଜି; କିନ୍ତୁ ଉକ୍ତ ଅନୁସନ୍ଧାନରେ ଅଷ୍ଟ୍ରିଆର ପ୍ରତିନିଧି ସମ୍ପୃକ୍ତ ହେବେନାହିଁ ।

ଜୁଲାଇ ୨୩ ତାରିଖ ସନ୍ଧ୍ୟାରେ ମେଜର ଟାଙ୍କୋସିଚ୍‌ଙ୍କୁ ଗିରଫ କରାଯାଇଛି । କିନ୍ତୁ ସିଗାନୋଭିଚ୍ ଫେରାର ଅଛନ୍ତି ।

ଅସ୍ତ୍ରଶସ୍ତ୍ରର ବେଆଇନ କାରବାର ରୋକିବାପାଇଁ ସର୍ବିଆ ବହୁତ ବ୍ୟବସ୍ଥା ଅତିଶୀଘ୍ର ଗ୍ରହଣ କରିବ ଏବଂ ଫର୍ଡିନାଣ୍ଡଙ୍କ ହତ୍ୟାକାରୀମାନଙ୍କୁ ସୀମାନ୍ତ ଅତିକ୍ରମରେ ସାହାଯ୍ୟ ଦେଇଥିବା କର୍ମଚାରୀମାନଙ୍କୁ କଠୋର ଶାସ୍ତି ଦେବ ।

ବିଦେଶରେ ପ୍ରକାଶିତ ସର୍ବିଆ ରାଜକର୍ମଚାରୀମାନଙ୍କର ଅଷ୍ଟ୍ରିଆ-ବିରୋଧୀ ଘୋଷଣା ପାଇଁ ସର୍ବିଆ ସରକାର ସଫେଇ ଦେବାକୁ ପ୍ରସ୍ତୁତ; କିନ୍ତୁ ସେଥିପାଇଁ ଘୋଷଣାର ଅବିକଳ ନକଲ ସରକାରଙ୍କୁ ଦେବା ଆବଶ୍ୟକ ।"

ଚରମପତ୍ରର ଉପରୋକ୍ତ ଉତ୍ତର ଦିଆହେବା ପୂର୍ବରୁ ସର୍ବିଆ ସୈନ୍ୟଚାଳନାର ଆଦେଶ ଜାରିକରିଥିଲା । ଫଳରେ ଅଷ୍ଟ୍ରିଆ ସରକାର ଚରମପତ୍ରର ଉତ୍ତର ପ୍ରତି କୌଣସି ଗୁରୁତ୍ୱ ନଦେଇ ସର୍ବିଆ ସହିତ କୂଟନୈତିକ ସମ୍ପର୍କ ଛିନ୍ନ କରିଥିଲା । ଜର୍ମାନୀ ସହ ଆଲୋଚନା କରିସାରି ଓ ସମର୍ଥନ ପାଇ ଜୁଲାଇ ୨୭ ତାରିଖ ଦିନ ଅଷ୍ଟ୍ରିଆ ଯୁଦ୍ଧସଜ୍ଜା ଆରମ୍ଭକଲା ଏବଂ ପରଦିନ ସର୍ବିଆ ବିରୁଦ୍ଧରେ ଯୁଦ୍ଧଘୋଷଣା କଲା ।

ଜୁଲାଇ ୨୫ ତାରିଖ ଦିନ ଅଷ୍ଟ୍ରିଆକୁ ଯୁଦ୍ଧ ଅଭିଯାନରୁ କ୍ଷାନ୍ତକରିବା ଉଦ୍ଦେଶ୍ୟରେ ରୁଷ ସରକାର ଆଂଶିକ ସୈନ୍ୟଚାଳନାର ଆଦେଶ ଜାରିକରିଥିଲେ । ଏହା କରିବାଦ୍ୱାରା ରୁଷିଆ ଆଶାକରୁଥିଲା ଯେ ଶେଷ ମୂହୂର୍ତ୍ତରେ ପୁଣି ଅଷ୍ଟ୍ରିଆ ଓ ସର୍ବିଆର ସାଲିସ୍ ସମାଧାନ ହୋଇପାରେ । କିନ୍ତୁ ଜୁଲାଇ ୨୮ ବେଳକୁ ଅବସ୍ଥା ଆୟତ୍ତାଧୀନ ନଥିଲା । ତେଣୁ ବାଧ୍ୟ ହୋଇ ଜୁଲାଇ ୩୦ ତାରିଖ ସନ୍ଧ୍ୟା ୬ଟା ବେଳକୁ ଜାର୍ ନିକୋଲାସ୍ ସର୍ବିଆ ପକ୍ଷଭୁକ୍ତ ହୋଇ ଯୁଦ୍ଧ ଘୋଷଣାରେ ସ୍ୱାକ୍ଷର କଲେ । ଫ୍ରାନ୍ସ, ଇଂଲଣ୍ଡ ଓ ଜର୍ମାନୀରେ ମଧ୍ୟ ଯୁଦ୍ଧପାଇଁ ବିଳମ୍ବର କାରଣ ନଥିଲା । ଇଂଲଣ୍ଡ ପ୍ରଧାନମନ୍ତ୍ରୀ କାଇଜରଙ୍କୁ ଶାନ୍ତିରକ୍ଷାପାଇଁ ଶେଷ ନିବେଦନ କରି ବିଫଳ ହୋଇଥିଲେ । ସର୍ବିଆ ବିପକ୍ଷରେ ଅଷ୍ଟ୍ରିଆର ଯୁଦ୍ଧ ଘୋଷଣା, ଅଷ୍ଟ୍ରିଆ ବିପକ୍ଷରେ ରୁଷର ସୈନ୍ୟଚାଳନା, ଜର୍ମାନୀର ଉଦ୍‌ବିଗ୍ନ ମନୋଭାବ ଓ ରୁଷିଆକୁ ଯୁଦ୍ଧରୁ ଓହରିଯିବାପାଇଁ ଚରମପତ୍ର, ଇଂଲଣ୍ଡର ସତର୍କତା, ଫ୍ରାନ୍ସର ପ୍ରତିରକ୍ଷା ପାଇଁ ଆତୁର ମନୋଭାବ ଆଦି ଲକ୍ଷ୍ୟକଲେ ଯୁଦ୍ଧର ଅବଶ୍ୟମ୍ଭାବୀତ୍ୱ ସମ୍ପର୍କରେ ସନ୍ଦେହ ଥାଇ ନପାରେ । ସେନାପତିମାନଙ୍କ ଚାପ ଫଳରେ ଫ୍ରାନ୍ସ ଅଗଷ୍ଟ ୧ ତାରିଖ ଦିନ ଅପରାହ୍ଣ ୩.୪୫ ମିନିଟ୍‌ରେ ଯୁଦ୍ଧରେ ଯୋଗଦେଲା ଏବଂ ସେହିଦିନ ସନ୍ଧ୍ୟା ୫ଟା ସମୟରେ ବର୍ଲିନ୍‌ରୁ ମଧ୍ୟ ଅନୁରୂପ ଘୋଷଣା ପ୍ରକାଶ ପାଇଲା । ଯୁଦ୍ଧ ଆରମ୍ଭହେଲେ ନିରପେକ୍ଷ ରହିବା ପ୍ରଶ୍ନ ଇଂଲଣ୍ଡର ପ୍ରଧାନ ସମସ୍ୟା ଥିଲା; କିନ୍ତୁ ଅଗଷ୍ଟ ୩ ତାରିଖ ଦିନ ଜର୍ମାନୀ ବେଲ୍‌ଜିୟମ୍ ଆକ୍ରମଣ କରନ୍ତେ, ଇଂରେଜ ସରକାରଙ୍କ ନିରପେକ୍ଷ ନୀତିର ସମାଧି ହେଲା ଏବଂ ଅଗଷ୍ଟ ୪ ତାରିଖ ଦିନ ଇଂଲଣ୍ଡ ଓ ଜର୍ମାନୀ ପରସ୍ପର ବିରୁଦ୍ଧରେ ଯୁଦ୍ଧ-ଘୋଷଣା କଲେ । ସୁତରାଂ ପ୍ରଥମ ମହାଯୁଦ୍ଧ (ବିଶ୍ୱଯୁଦ୍ଧ) ଆରମ୍ଭ ହୋଇଗଲା ।

## ପ୍ରଥମ ବିଶ୍ୱଯୁଦ୍ଧର ବିବରଣୀ

## ( Account of the First World War )

୧୯୧୪ ମସିହା ଅଗଷ୍ଟ ମାସରେ ଇଉରୋପୀୟ ଶକ୍ତିମାନେ ଯୁଦ୍ଧ ଆରମ୍ଭ କଲା ସମୟରେ ଉକ୍ତ ଯୁଦ୍ଧ ଅଳ୍ପଦିନରେ ମୀମାଂସା ହୋଇଯିବ ବୋଲି ମନେକରିଥିଲେ । ଯୁଦ୍ଧ ଦୀର୍ଘ ସାଢ଼େଚାରିବର୍ଷ ବ୍ୟାପୀହେବ ଓ ପୃଥିବୀର ପ୍ରତ୍ୟେକ ଦେଶ ତହିଁରେ ଅଳ୍ପବହୁତ ସଂଶ୍ଳିଷ୍ଟ ହେବ ଧାରଣା କାହାରି ନଥିଲା । ଅଷ୍ଟ୍ରିଆର ଯୁଦ୍ଧଘୋଷଣା ପରେ ପରେ ଅନ୍ୟାନ୍ୟ ଦେଶର ସାମରିକ ମୁଖ୍ୟମାନେ ଯୁଦ୍ଧର ଗତିକୁ ନିୟନ୍ତ୍ରିତ କରି ଫଳାଫଳକୁ ନିଜର ଅନୁକୂଳ କରିବାକୁ ଚାହିଁଥିଲେ । ସେମାନେ ଯୁଦ୍ଧପାଇଁ ବ୍ୟଗ୍ର ଥିଲେ ମଧ୍ୟ ବେଶିଦିନ ଯୁଦ୍ଧ ଚାଲୁରଖିବାର ପ୍ରସ୍ତୁତି କରିନଥିଲେ । ଏହି ଯୁଦ୍ଧର ପ୍ରଣାଳୀ ଓ ଗତିବିଧି ଇତିହାସର ଏକ ଚମକପ୍ରଦ ଘଟଣା ଥିଲା—କାରଣ ବୈଜ୍ଞାନିକଭିତ୍ତିରେ ଏହା ପରିଚାଳିତ ହୋଇଥିଲା ।

ଜର୍ମାନୀର ସୈନ୍ୟସଂଖ୍ୟା ପ୍ରାୟ ପଚିଶଲକ୍ଷ ଥିଲେ ସୁଦ୍ଧା ଯୁଦ୍ଧକୁ ଶୀଘ୍ର ସାରିବାପାଇଁ କାଇଜର ଇଚ୍ଛୁକ ଥିଲେ । ପଶ୍ଚିମ-ଇଉରୋପକୁ ଅଧିକାର କରିବାପାଇଁ ଜର୍ମାନ ସେନାପତିମାନେ 'ସ୍ଲିଫେନ' ଯୋଜନା ପୂର୍ବରୁ ପ୍ରସ୍ତୁତ କରିଥିଲେ । ତଦନୁସାରେ ଦ୍ରୁତ ସୈନ୍ୟଚାଳନାଦ୍ୱାରା ଲକ୍ସେମବର୍ଗ ଓ ବେଲ୍‌ଜିୟମ ମଧ୍ୟରେ ଅଭିଯାନ ଚଳାଇ ଫ୍ରାନ୍ସକୁ ମାତ୍ର ଛ'ସପ୍ତାହ ମଧ୍ୟରେ ପରାସ୍ତ କରିବାକୁ ନିଷ୍ପତ୍ତି ହୋଇଥିଲା । ଫ୍ରାନ୍ସ ଥିଲା ତ୍ରିଶକ୍ତି ସଙ୍ଘର ପ୍ରାଣବିନ୍ଦୁ ଓ ଜର୍ମାନୀର ପ୍ରଧାନ ନିକଟତମ ଶତ୍ରୁ । ତାହାର ବିନାଶ ବିନା ଅନ୍ୟ ରଣକ୍ଷେତ୍ରରେ ବିଜୟୀ ହେବାର କଳ୍ପନା ଜର୍ମାନମାନଙ୍କର ନଥିଲା । ଫ୍ରାନ୍ସର ପତନ ପରେ ପରେ ସେମାନେ ରୁଷ ଉପରେ ଆକ୍ରମଣ କରିଥାନ୍ତେ । ରୁଷିଆର ସେନାବାହିନୀ ଆଧୁନିକ ଢାଞ୍ଚାରେ ଗଠିତ ହୋଇନଥିବାରୁ ତାକୁ ପରାସ୍ତକରିବା କଠିନ ନଥିଲା ।

ସ୍ଲିଫେନ ଯୋଜନା ଅନୁସାରେ ଜର୍ମାନମାନେ ଆଗରୁ ୪ ତାରିଖ ଦିନ ବେଲ୍‌ଜିୟମ ଓ ଲକ୍ସେମବର୍ଗ ମଧ୍ୟକୁ ପ୍ରବେଶ କରିଥିଲେ । ବେଲ୍‌ଜିୟମ ନିରପେକ୍ଷ ରାଷ୍ଟ୍ରରୂପେ ଆନ୍ତର୍ଜାତିକ ସ୍ୱୀକୃତି ଲାଭକରିଥିବାରୁ ଏପରି ଆକ୍ରମଣ ପାଇଁ ଫରାସୀ ସୈନ୍ୟବାହିନୀ ପ୍ରସ୍ତୁତ ନଥିଲେ । ତେଣୁ ଯୁଦ୍ଧରେ ବିଜୟୀ ହେବା ସୈନ୍ୟମାନଙ୍କ ପକ୍ଷେ ସହଜ ହୋଇଥିଲା । ସେମାନେ ଅକ୍ଳେଶରେ ନମୁର ଏବଂ ଲିଜ ସହର ଦଖଲ କରିନେଲେ । ଜର୍ମାନମାନଙ୍କ ଦୁର୍ଦ୍ଧର୍ଷ ଅଭିଯାନ ସମ୍ମୁଖରେ ବେଲ୍‌ଜିୟମର କ୍ଷୁଦ୍ରଶକ୍ତି ପ୍ରତିରକ୍ଷାପାଇଁ ସମର୍ଥ ହେଲନାହିଁ । ସେ ପର୍ଯ୍ୟନ୍ତ ତ୍ରିଶକ୍ତି ସଙ୍ଘର ସେନାବାହିନୀ ବେଲ୍‌ଜିୟମକୁ ସାହାଯ୍ୟ ଦେଇପାରିନଥିଲେ । ଜର୍ମାନ ସେନାପତି ଗଲ୍‌ଓ୍ୱିଜ କମାଣଯୁଦ୍ଧରେ ଅତି ପାରଙ୍ଗମ ଥିବାରୁ ବେଲ୍‌ଜିୟମର ପ୍ରତିରକ୍ଷା ଦୁର୍ଗଗୁଡ଼ିକ ଧ୍ୱଂସକରି ମିଉସ୍ ନଦୀ ଅତିକ୍ରମ କରିଥିଲେ । ଅଗଷ୍ଟ ୨୧ ତାରିଖ ଦିନ ଇଂରେଜବାହିନୀ ବେଲ୍‌ଜିୟମକୁ ସାହାଯ୍ୟ କରିବାକୁ ପହଞ୍ଚିଲେ । ସେମାନେ ପହଞ୍ଚିବା ପରେ ଜର୍ମାନ ଅଗ୍ରଗତି ଶିଥିଳ ହୋଇଥିଲା । ସ୍ଲିଫେନ ଯୋଜନାରେ କେତେକ ତ୍ରୁଟିଥିବା ହେତୁ ତୁରନ୍ତ ବିଜୟ ସମ୍ଭବ ହେଲନାହିଁ । ଫ୍ରାନ୍ସ ଅଭିମୁଖରେ ଯେଉଁ ଜର୍ମାନ ସୈନ୍ୟ ଅଭିଯାନ ଚଳାଇଥିଲେ, ସେମାନଙ୍କର ସେନାଧ୍ୟକ୍ଷ ଥିଲେ କ୍ଲାକ ଓ ମୋଲ୍‌ଟ୍‌କେ । ଫରାସୀ ସେନାପତି ଯୋଫ୍ରେ ମିତ୍ରପକ୍ଷ ବାହିନୀ ଏକତ୍ରିତ କରି ଜର୍ମାନମାନଙ୍କୁ ମାର୍ଣ୍ଣେ ରଣକ୍ଷେତ୍ରରେ ହରାଇବାରେ ସମର୍ଥ ହୋଇଥିଲେ । ଫଳରେ ମୋଲ୍‌ଟ୍‌କେଙ୍କ ସ୍ଥାନରେ ଫକେନହାନ ସେନାଦକ୍ଷ ପଦରେ ନିଯୁକ୍ତି ପାଇଲେ । ଅବଶ୍ୟ ସେତେବେଳକୁ ଫ୍ରାନ୍ସର ଏକଦଶମାଂଶ ଅଞ୍ଚଳ ଜର୍ମାନଦ୍ୱାରା କବଳିତ ହୋଇସାରିଥିଲା ।

ପ୍ରାଚ୍ୟ ରଣାଙ୍ଗନରେ ରୁଷିଆ ଅଷ୍ଟ୍ରିୟା ସହ ବୀରତ୍ୱ ସହକାରେ ଯୁଦ୍ଧ ଚାଲୁ ରଖିଥାଏ । ରୁଷ ସେନାପତି ରେନେନକ୍ୟାମ୍ପ ଓ ସେମ୍‌ସୋନୋଭ୍ ପରସ୍ପର କଳହରେ ବ୍ୟାପୃତ ହେବାରୁ ଜର୍ମାନୀ ବିରୁଦ୍ଧରେ ସଫଳତା ହାସଲ କରିପାରିନଥିଲେ । ବରଂ ଜର୍ମାନ ସେନାଧ୍ୟକ୍ଷ ହିଣ୍ଡେନ୍‌ବର୍ଗ ଓ ଲ୍ୟୁଡେନଡର୍ଫଙ୍କ ସେନାଚାଳନା ଅତି ଉଚ୍ଚକୋଟିର ଥିଲା । ଟେନେନ୍‌ବର୍ଗ ଯୁଦ୍ଧକ୍ଷେତ୍ରରେ ରୁଷିଆର ପ୍ରାୟ ଅଢ଼େଇଲକ୍ଷ ସୈନ୍ୟ ନିହତ ହୋଇଥିଲେ ।

ଜର୍ମାନଦ୍ୱାରା ପରାସ୍ତ ହେବାରୁ ରୁଷିଆର ମର୍ଯ୍ୟାଦା କ୍ଷୁଣ୍ଣ ହେଲେ ମଧ୍ୟ ଅଷ୍ଟ୍ରିୟାକୁ ପରାସ୍ତ କରିବାଦ୍ୱାରା ତାହା କେତେକ ପରିମାଣରେ ଲାଘବ ହୋଇଥିଲା । ଅଷ୍ଟ୍ରିୟାକୁ ଘୋର ଯୁଦ୍ଧରେ ବ୍ୟସ୍ତ ରଖି ରୁଷ ସର୍ବିୟାକୁ ରକ୍ଷାକରିବାରେ ସମର୍ଥ ହୋଇଥିଲା ।

ସ୍ଥଳବାହିନୀକୁ ଯୁଦ୍ଧରେ ବିଜୟଶ୍ରୀ କରିନପାରିବାରୁ ଯୁଦ୍ଧରତ ଦେଶମାନେ ନୌଯୁଦ୍ଧ ଆରମ୍ଭକଲେ । ଏହି ବିଶ୍ୱଯୁଦ୍ଧରେ ନୌବାହିନୀ ନୂତନ ଢଙ୍ଗରେ ମାରଣାସ୍ତ୍ର ଓ ରଣକୌଶଳ ବ୍ୟବହାର କରିଥିଲା । ନୌଶକ୍ତି ଖାବରେ ଇଂଲଣ୍ଡ ଥିଲା ସର୍ବୋତ୍କୃଷ୍ଟ; କିନ୍ତୁ ବୁଡ଼ାଜାହାଜ ଓ ମାଇନସ ଯୁଦ୍ଧରେ ଜର୍ମାନୀ ଶ୍ରେଷ୍ଠ ଥିଲା । ଏହି ନୌଶକ୍ତି ପାଇଁ ଇଂଲଣ୍ଡର ପ୍ରତିରକ୍ଷା ସମ୍ଭବ ହୋଇଥିଲା । ଅନ୍ୟ ପକ୍ଷରେ ଏହି ନୌଶକ୍ତିର ଗ୍ରାସ ପାଇଁ ତୁର୍କୀ ଜର୍ମାନ ପକ୍ଷଭୁକ୍ତ ହୋଇ ଯୁଦ୍ଧରେ ଯୋଗଦେଇଥିଲା । ମିତ୍ରପକ୍ଷକୁ କାବୁକରିବା ଉଦ୍ଦେଶ୍ୟରେ ଜର୍ମାନୀ ଅନିୟନ୍ତ୍ରିତ ବୁଡ଼ାଜାହାଜ-ଯୁଦ୍ଧ ଆରମ୍ଭ କରିଥିଲା । ତଦ୍ଦ୍ୱାରା ବେସାମରିକ ପୋତ ଓ ନିରପେକ୍ଷ-ରାଷ୍ଟ୍ରର ଜାହାଜ ଉପରେ ସେମାନେ ଆକ୍ରମଣ କରିଥିଲେ । ବ୍ରିଟିଶ୍ ଜାହାଜ ଲୁସିଟାନିଆକୁ ଧ୍ୱଂସକରି ଜର୍ମାନମାନେ ଯେଉଁ ଭୁଲକଲେ, ତା ଫଳରେ ଯୁକ୍ତରାଷ୍ଟ୍ର ଆମେରିକା ମିତ୍ରପକ୍ଷ ସହ ଯୁଦ୍ଧରେ ଯୋଗଦାନ କଲା । ଲୁସିଟାନିଆ ଜାହାଜ ଜଳମଗ୍ନ ହେବାରୁ ଶତାଧିକ ଆମେରିକୀୟ ପ୍ରାଣ ହରାଇଥିଲେ । ତେଣୁ ଯୁକ୍ତରାଷ୍ଟ୍ର ଆମେରିକା ନିରପେକ୍ଷ ନୀତି ପରିହାର କରି ବିଶ୍ୱଯୁଦ୍ଧରେ ଯୋଗଦେଇଥିଲା । ଏହା ଜର୍ମାନୀର ସଫଳତାର ସମ୍ଭାବନାକୁ କମାଇଦେଲା । କାରଣ ଯୁକ୍ତରାଷ୍ଟ୍ର ଆମେରିକାର ବିପୁଳ ଧନସମ୍ପଦ, ସେନାବାହିନୀ ଓ ମାରଣାସ୍ତ୍ର ଜର୍ମାନୀ ବିରୁଦ୍ଧରେ ନିୟୋଜିତ ହୋଇଥିଲା ।

ଯୁଦ୍ଧର ପ୍ରଥମବର୍ଷ ଜର୍ମାନୀ ନିଜର ଉପନିବେଶଗୁଡ଼ିକ ହରାଇଥିଲା । ସେମୋଆ, ନିଉଗିନି, ସିଙ୍ଗଟାଓ ଆଦି ଜର୍ମାନ ଉପନିବେଶ ମିତ୍ରପକ୍ଷ ଅଧିକାର କରିନେଇଥିଲେ । ଏଥିରେ କ୍ରୋଧାନ୍ୱିତ ହୋଇ ଜର୍ମାନୀ 'ଜେପେଲିନ' ନାମକ ବ୍ୟୋମଯାନ ତିଆରି କରି ଇଂଲଣ୍ଡର ବେସାମରିକ ଅଞ୍ଚଳ ଓ ଅଧିବାସୀମାନଙ୍କ ଉପରେ ବୋମା ବର୍ଷଣ ଆରମ୍ଭ କରିଥିଲା । ତଦ୍ଦ୍ୱାରା ଜଳ, ସ୍ଥଳ ଓ ଆକାଶ ସ୍ତରରେ ଯୁଦ୍ଧର ଧ୍ୱଂସଲୀଳା ଚାଲୁରହିଲା ।

ଯୁଦ୍ଧର ଦ୍ୱିତୀୟ ବର୍ଷ (୧୯୧୫) ଜର୍ମାନ ସେନାପତି ଫକେନହାନ୍ ଏକ ନୂତନ ସମରକୌଶଳ ପ୍ରୟୋଗ କରିଥିଲେ । ଫ୍ରାନ୍ସ ବିରୁଦ୍ଧରେ ପୂର୍ଣ୍ଣସଫଳତା ସମ୍ଭବ ନ ହେବାରୁ ରୁଷିଆ ବିରୁଦ୍ଧରେ ବଡ଼ଧରଣର ଅଭିଯାନର ଆୟୋଜନ ସେ କରିଥିଲେ । ସେଥିପାଇଁ ଫ୍ରାନ୍ସ ରଣକ୍ଷେତ୍ରରୁ ପୂର୍ବପଟକୁ ସୈନ୍ୟ ଅପସାରଣ କରିବା ଆବଶ୍ୟକ ହେଲା । ଫ୍ରାନ୍ସ ପଟରେ ଉଭୟ ପକ୍ଷ ସୈନ୍ୟମାନେ ଗଭୀର ଟ୍ରେଞ୍ଚମାନ ଖୋଳି ପ୍ରତିରକ୍ଷାମୂଳକ ଯୁଦ୍ଧ ଚାଲୁରଖିଥିଲେ । ବିଷାକ୍ତ ମାରାତ୍ମକ ଗ୍ୟାସ ଯୁଦ୍ଧରେ ବ୍ୟବହୃତ ହେଲା । ଯୁଦ୍ଧର ନିଷ୍ପତ୍ତି-ପାଇଁ ଓ ଶତ୍ରୁକୁ ମାତୃଭୂମିରୁ ହଟାଇବାପାଇଁ ଫରାସୀ ସେନାଧ୍ୟକ୍ଷ ଜୋଫେ ସିଣ୍ଟର ଅଭିଯାନ ଆରମ୍ଭ କରିଥିଲେ । କିନ୍ତୁ ଲୁସ୍ ଯୁଦ୍ଧରେ ତାଙ୍କର କ୍ଷତି ବିଶେଷ ହେବାରୁ ସେ ଟିକିଏ ଥଙ୍ଗି ପଡ଼ିଲେ ।

ଇଂଲଣ୍ଡର ଜନତା ଯୁଦ୍ଧକୁ ଶୀଘ୍ର ଶେଷକରିବାପାଇଁ ଚିତ୍କାର କଲା; କିନ୍ତୁ ଲଏଡ଼ ଜର୍ଜ ଓ ଉଇନଷ୍ଟନ ଚର୍ଚ୍ଚିଲ ପ୍ରଭୃତି ପଶ୍ଚିମପକ୍ଷେ ଯୁଦ୍ଧ ଶୀଘ୍ର ଶେଷହେବା ଅସମ୍ଭବ ବୋଲି ମତ ପ୍ରକାଶ କରିଥିଲେ । ତେଣୁ ସେମାନେ ରୁଷପକ୍ଷେ ଯୁଦ୍ଧ ଶୀଘ୍ର ସାରିବାକୁ ଇଚ୍ଛାକଲେ । ତଦ୍ଦ୍ୱାରା ଯୁଦ୍ଧ ଶେଷ ହେବନାହିଁ ବୋଲି ବିଶେଷଜ୍ଞମାନଙ୍କ ମତ ଥିଲା । ମିତ୍ରପକ୍ଷ ସେନାପତି ଯୋଫ୍ରେ କିଚନର ଓ ଗ୍ରାଣ୍ଡ୍ ନିକୋଲାସ୍ ପରସ୍ପର ମଧ୍ୟରେ ଭଲ ବୁଝାମଣା ରଖିଥିଲେ ।

ଜର୍ମାନମାନେ କିନ୍ତୁ ଚୂଡ଼ାନ୍ତ ବିଜୟପାଇଁ ଆପ୍ରାଣ ଉଦ୍ୟମ ଚଳାଇଥାନ୍ତି । ଯୁଦ୍ଧକୁ ଗତିଶୀଳ କରିବା ଉଦ୍ଦେଶ୍ୟରେ ସେମାନେ ଟ୍ୟାଙ୍କ ନାମକ ନୂତନ ସମରଯାନ ଓ ବହୁପ୍ରକାର ତୋପ ଓ ମାରଣାସ୍ତ୍ର ବ୍ୟବହାର କଲେ । ତଦ୍ଦ୍ୱାରା ଟ୍ରେଞ୍ଚଗୁଡ଼ିକ ଅକାମୀ ହୋଇଗଲା ।

ସେହିପରି ବ୍ୟୋମଯାନର ବହୁଳ ବ୍ୟବହାର ଦ୍ୱିତୀୟ ବର୍ଷର ଉଲ୍ଲେଖଯୋଗ୍ୟ ଘଟଣା । କଳକାରଖାନା, ବନ୍ଦର, ସାମରିକ ଓ ବେସାମରିକ ପ୍ରତିଷ୍ଠାନ ଆଦି ଧ୍ୱଂସ କରିବାକୁ ଲଢ଼ୁଆ ବୋମାବର୍ଷୀ ବ୍ୟୋମଯାନ ବ୍ୟବହୃତ ହେଲା । ସେଥିରୁ ରକ୍ଷାପାଇବା-ପାଇଁ ଇଂରେଜମାନେ ରାତିରେ ନିଷ୍ପ୍ରଦୀପ ବ୍ୟବସ୍ଥା କରିଥିଲେ ।

ଯୁଦ୍ଧରେ କ୍ରମଶଃ ରୁଷିଆର ଅବସ୍ଥା ଅସମ୍ଭାଳ ହୋଇଥିଲା । ଜର୍ମାନଦ୍ୱାରା ପରାସ୍ତ ହେବା ସଙ୍ଗେ ସଙ୍ଗେ ଯୁଦ୍ଧ-ସାମଗ୍ରୀର ବିଶେଷ ଅଭାବ ରୁଷିଆକୁ ମହାସଙ୍କଟରେ ପକାଇଲା । ଦକ୍ଷିଣପକ୍ଷେ ତୁର୍କୀ ଜର୍ମାନ ସହଯୋଗରେ ରୁଷ ଉପରେ ଆକ୍ରମଣ ଆରମ୍ଭ କଲାରୁ ଜାର୍ ନିକୋଲାସ୍ ହତୋତ୍ସାହ ହୋଇପଡ଼ିଲେ । ଯୁଦ୍ଧରେ ସଫଳତା ପାଇଁ ତୁର୍କୀର ଦମ୍ଭ ଅବଶ୍ୟ ନଥିଲା; ତଥାପି ପୂର୍ବେ ବହୁବାର ଇଂରେଜ ଓ ରୁଷୀୟମାନଙ୍କଦ୍ୱାରା ହଟହଟାରେ ପଡ଼ିଥିବାରୁ ଦାଉ ସାଧିବାପାଇଁ ସୁଲତାନ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲେ । କକେସସ୍ ଅଭିଯାନରେ ତୁର୍କୀର ପ୍ରାୟ ସତୁରି ହଜାର ସୈନ୍ୟ ପ୍ରାଣ ହରାଇଥିଲେ । ଇଂରେଜ ସେନାପତି ହାମିଲଟନଙ୍କ ଅଧିନାୟକତ୍ୱରେ ତୁର୍କୀ ଉପରେ ନୌଅଭିଯାନ ଆରମ୍ଭ ହୋଇଥିଲା ।

ସାମରିକ ଅଭିଯାନରେ ବ୍ୟର୍ଥ ହେବାରୁ ଇଂଲଣ୍ଡର କେତେକ ରାଜନୀତିକ ପରିବର୍ତ୍ତନ ଘଟିଥିଲା । ପ୍ରଧାନମନ୍ତ୍ରୀ ଆସକ୍ୱିଥ୍ ବିରୋଧିଦଳକୁ ନେଇ ଏକ ମିଳିତ ମନ୍ତ୍ରି-ମଣ୍ଡଳ ଗଠନ କରିଥିଲେ । ସେଥିରେ ଲଏଡ଼ ଜର୍ଜଙ୍କୁ ସାମରିକ ସାମଗ୍ରୀ ଉତ୍ପାଦନ ଦାୟିତ୍ୱ ଦିଆଯିବାରୁ ଯୁଦ୍ଧର ଗତିବିଧି କ୍ରମଶଃ ବଦଳିଯାଇଥିଲା । ବୃହଦା ମୂଲ୍ୟବାନ ଗୁଳା-ବାରୁଦ, ମେସିନଗନ୍ ଓ ଯନ୍ତ୍ରପାତି ବହୁପରିମାଣରେ ଉତ୍ପାଦିତ ହେଲା । ସମସ୍ତେ ଯୁଦ୍ଧରେ ବିଜୟ ଲାଭପାଇଁ ସନ୍ନିବିଷ୍ଟ ହୋଇପଡ଼ିଲେ । ନାରୀ ଓ ପୁରୁଷ ସମାସ୍ତୃତ ହୋଇ ଦେଶରକ୍ଷା ବ୍ୟବସ୍ଥାରେ ପୂର୍ଣ୍ଣ ସହଯୋଗ କଲେ । ମିତ୍ରପକ୍ଷ ଦେଶମାନଙ୍କରେ ଏକ ନୂତନ ଉତ୍ସାହ

ପରିଲକ୍ଷିତ ହେଲା । ତ୍ରିଶକ୍ତି-ମେଣ୍ଟରୁ ଇଟାଲୀ ଅପ୍ରେଲ ମାସରେ ଓହରିଆସି ମିତ୍ରପକ୍ଷରେ ଯୋଗଦେବାରୁ ବିଜୟଆଶାରେ ଇଂଲଣ୍ଡ ଓ ଫ୍ରାନ୍ସ ଆଦି ଦେଶ ଉଲ୍ଲସିତ ହେଲେ ।

ପୂର୍ବପଟେ କିନ୍ତୁ ଫକେନହାନଙ୍କର ତତ୍ପରତା ଯୋଗୁ ମେ ମାସ ୨ ତାରିଖ ଦିନ ଗୋରଲିସଠାରେ ରୁଷିଆ ଘୋର ପରାଜୟର ସମ୍ମୁଖୀନ ହେଲା । ତଥାପି ସେଠାରେ ଯୁଦ୍ଧ ସମାପ୍ତ ହେଲନାହିଁ । ଏହି ପରାଜୟ ଯୋଗୁଁ ଡିଉକ୍ ନିକୋଲାସ୍ ସେନାଧ୍ୟକ୍ଷ-ପଦରୁ ବିତାଡ଼ିତ ହେଲେ ଏବଂ ଜାର୍ ନିକୋଲାସ୍ ନିଜେ ଉକ୍ତ ଦାୟିତ୍ୱ ବହନ କରିବାଦ୍ୱାରା ଅବସ୍ଥା ଆହୁରି ଶୋଚନୀୟ ହୋଇଥିଲା । କାରଣ ଜାର୍‌ଙ୍କର ଯୁଦ୍ଧପରିଚାଳନାରେ ଦକ୍ଷତା ଆଦୌ ନଥିଲା ।

ଇଂଲଣ୍ଡର ଲର୍ଡ କିଚ୍‌ନରଙ୍କ ହାତରୁ ଅନେକ କ୍ଷମତା ସେନାଧ୍ୟକ୍ଷ ଉଇଲିୟମ୍ ରବର୍ଟସନଙ୍କ ହାତକୁ ଚାଲିଗଲା । ଫ୍ରାନ୍ସ ରଣକ୍ଷେତ୍ରରେ ସେହିପରି ଇଂରେଜ ସେନାପତି ଡଗ୍‌ଲାସ୍ ହେଗ୍‌ଙ୍କୁ ସର୍ବୋଚ୍ଚ ସେନାପତି ଦାୟିତ୍ୱ ଅର୍ପିତ ହେଲା । ଉଭୟେ ପୂର୍ଣ୍ଣପ୍ରାଣରେ ବିଜୟ ହାସଲ ପାଇଁ ଲାଗିପଡ଼ିଲେ ।

୧୯୧୬ ମସିହାରେ ପଶ୍ଚିମ ରଣାଙ୍ଗନରେ ସାମରିକ ଉଦ୍ୟମ ବୃଦ୍ଧି ପାଇଥିଲା । ଫକେନହାନ ଓ ମିତ୍ରପକ୍ଷର ସେନାପତିଗଣ ଦୃଢ଼ସଙ୍କଳ୍ପ ନେଇ କେତେକ ଯୋଜନା ପ୍ରସ୍ତୁତ କଲେ । ଉଭୟେ କେବଳ ବିଜୟର ସ୍ୱପ୍ନ ଦେଖୁଥାନ୍ତି । ସୋମ ରଣକ୍ଷେତ୍ରରେ ମିତ୍ରପକ୍ଷର ଆକ୍ରମଣ ଯୋଜନା କାର୍ଯ୍ୟକାରୀ ହେଲା । ଅନ୍ୟପକ୍ଷରେ ଫକେନହାନ ଫ୍ରାନ୍ସର ଭର୍ଦୁଁ ଦୁର୍ଗ ଅଧିକାରପାଇଁ ଏକ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କଲେ । ଫରାସୀ ଜାତି ପାଇଁ ଭର୍ଦୁଁ ଦୁର୍ଗ ଜାତୀୟ ଶୌର୍ଯ୍ୟ ଏବଂ ଗୌରବର ପ୍ରତୀକ ଥିଲା । ଯୋଫ୍ରେ କିନ୍ତୁ ତାହାର ପ୍ରତିରକ୍ଷାପାଇଁ ବିଶେଷ ଯତ୍ନବାନ୍ ହୋଇନଥିଲେ । ଯୁଦ୍ଧରେ ଉଭୟ ପକ୍ଷର ବିପୁଳ ସୈନ୍ୟକ୍ଷୟ ହୋଇଥିଲା । କେବଳ ଫ୍ରାନ୍ସର ପଞ୍ଚସ୍ତରି ଡିଭିଜନ ସୈନ୍ୟ ସେଠାରେ ନିହତ ହୋଇଥିଲେ ।

ଭର୍ଦୁଁ ଯୁଦ୍ଧ ପରେ କେତେ ଡିଭିଜନ ସୈନ୍ୟ ଫକେନହାନ ଅଷ୍ଟ୍ରିୟାର ପ୍ରତିରକ୍ଷା ପାଇଁ ପଠାଇଦେବାରୁ ଯୋଫେ ଏବଂ ହେଗ୍ 'ସୋମ' ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । 'ସୋମ'ର ସାମରିକ ତାତ୍ପର୍ଯ୍ୟ ଯଥେଷ୍ଟ ଥିଲା । ଏହା ମିତ୍ରପକ୍ଷର ସମ୍ମିଳିତ ଓ କେନ୍ଦ୍ରୀଭୂତ ଆକ୍ରମଣର ଏକ ଦୃଷ୍ଟାନ୍ତ । ଭର୍ଦୁଁ ଯୁଦ୍ଧ ମିତ୍ରପକ୍ଷପାଇଁ ପ୍ରତିରକ୍ଷାମୂଳକ ଥିଲା; କିନ୍ତୁ ସୋମ ଥିଲା ତାର ଠିକ୍ ବିପରୀତ । ଏହି ଯୁଦ୍ଧରେ ଫ୍ରାନ୍ସର ସାମରିକ ଶକ୍ତି ପୂରା ଧ୍ୱଂସ ପାଇଥିଲା ଏବଂ ଏହାପରେ ପଶ୍ଚିମ ରଣାଙ୍ଗନରେ ଯୁଦ୍ଧ ଦାୟିତ୍ୱ ପ୍ରାୟ ଇଂଲଣ୍ଡ ପୂରା ବହନ କରିଥିଲା । ପ୍ରଥମ ବିଶ୍ୱଯୁଦ୍ଧରେ ସୋମ ରଣକ୍ଷେତ୍ରର ଭୟାବହତା ବର୍ଣ୍ଣନାତୀତ । ମାତ୍ର ଗୋଟିଏ ଦିନର ଯୁଦ୍ଧରେ ଇଂରେଜପକ୍ଷ ୫୭୪୦୦ ସୈନ୍ୟ ହରାଇଥିଲେ । ଏହା ଥିଲା ପ୍ରଥମ ବିଶ୍ୱଯୁଦ୍ଧର ଏକ ବିଧ୍ୱଂସୀ ସଂଗ୍ରାମ ଏବଂ ସବୁଠାରୁ ବେଶି ମର୍ମନ୍ତୁଦ । ଦୀର୍ଘ ଦୁଇ ମାସର ଅବିରତ

ଗୋଲାବର୍ଷଣ ଆକ୍ରମଣ ପ୍ରତିଆକ୍ରମଣ ସତ୍ତ୍ୱେ ଯୁଦ୍ଧ ଅମୀମାଂସିତ ରହିଥିଲା । କେବଳ ଲକ୍ଷ ଲକ୍ଷ ସୈନ୍ୟଙ୍କର ପ୍ରାଣନାଶ ଛଡ଼ା ସୋମ ଯୁଦ୍ଧର ଆଉ କିଛି ଲାଭ ବା କ୍ଷତି ହୋଇନଥିଲା । ଜର୍ମାନମାନେ ଏଠାରେ ସାଢ଼େଚାରିଲକ୍ଷ ଏବଂ ମିତ୍ରପକ୍ଷ ଛ'ଲକ୍ଷ କୋଡ଼ିଏ ହଜାର ପର୍ଯ୍ୟନ୍ତ ସୈନ୍ୟ ହରାଇଥିଲେ । ଭବିଷ୍ୟତପାଇଁ ମିତ୍ରପକ୍ଷର ବିଜୟ ସ୍ୱପ୍ନ ଧୂଳିସାତ୍ ହୋଇଯାଇଥିଲା ।

୧୯୧୬ ମସିହାର ନୌଯୁଦ୍ଧମାନଙ୍କ ମଧ୍ୟରେ ଜୁଟଲ୍ୟାଣ୍ଡ ଯୁଦ୍ଧ ଉଲ୍ଲେଖଯୋଗ୍ୟ । ମେ' ୩୧ ତାରିଖ ଦିନ ଜର୍ମାନ୍ ଆଡ଼ମିରାଲ ହିପ୍ପାର ଏବଂ ବ୍ରିଟିଶ୍ ଆଡ଼ମିରାଲ ଜେଲିକୋ ଜୁଟଲ୍ୟାଣ୍ଡ ନାମକ ସ୍ଥାନରେ ପରସ୍ପରକୁ ଭେଟିଥିଲେ । ଉତ୍ତରସାଗର ବକ୍ଷରେ ଡେନ୍‌ମାର୍କ ଉପକୂଳରେ ଏହି ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ପୃଥିବୀର ଦୁଇ ସର୍ବଶ୍ରେଷ୍ଠ ନୌଶକ୍ତି ମଧ୍ୟରେ ପ୍ରଥମ ଓ ଶେଷ ମୁହାଁମୁହିଁ ସଙ୍ଘର୍ଷ ଥିଲା । ଏଠାରେ ଇଂରେଜମାନେ ସଫଳତା ହାସଲ କରି ନୌଯୁଦ୍ଧରେ ନିଜର ଶ୍ରେଷ୍ଠତ୍ୱ ପ୍ରତିଷ୍ଠା କରିପାରିଥିଲେ । ଏଥିରେ ଦୁଇଶହ ପଚାଶ ଜାହାଜ ଏବଂ ପଚିଶ ଜଣ ଆଡ଼ମିରାଲ ଉଭୟ ପକ୍ଷ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ । ଇଂରେଜମାନେ ପ୍ରାୟ ୧୪ଟି ଓ ଜର୍ମାନ୍‌ମାନେ ୧୧ଟି ଜାହାଜ ହରାଇଥିଲେ । ବିନା କାରଣରେ ଜେଲିକୋ ନିଜ ଶକ୍ତିକୁ ଧ୍ୱଂସ କରିବାକୁ ଚାହୁଁନଥିଲେ; କାରଣ ମାତୃଭୂମିର ସୁରକ୍ଷା ପାଇଁ ନୌବାହିନୀ ଗୁରୁତ୍ୱ ବିଶେଷ ଥିଲା । ତେଣୁ ସେ ନିଜ ନୌବାହିନୀକୁ ସ୍ୱଦେଶ ଅଭିମୁଖରେ ଫେରାଇନେଇଥିଲେ ।

ଏହି ବର୍ଷ ଇଉରୋପରେ ଯୁଦ୍ଧର ଆର୍ଥିନୀତିକ ଚାପ ଅନୁଭୂତ ହୋଇଥିଲା । ଜିନିଷପତ୍ରର ଅଭାବ, ଦରବୃଦ୍ଧି, ବାଧ୍ୟତାମୂଳକ ସାମରିକ ଶିକ୍ଷା, ମୃତାହତମାନଙ୍କର ଦୁଃସମ୍ବାଦ, କଳାବଜାର ଆଦି ନାନା ଆର୍ଥିନୀତିକ ଓ ସାମାଜିକ ଗୁରୁଭାରରେ ସାଧାରଣ ଲୋକେ ବ୍ୟଥିତ ହେଲେ । ଦୁର୍ଭିକ୍ଷର କରାଳ ଛାୟା ମଧ୍ୟ ଜର୍ମାନୀ ଆଦି ଦେଶରେ ଦେଖାଗଲା । ରୁଟି, ଚା, ମାଂସ, ସିଗାରେଟ୍ ଆଦି ଦୁଷ୍ପ୍ରାପ୍ୟ ହେଲା । ରୁଷିଆର ଶ୍ରମିକମାନେ ଆନ୍ଦୋଳନ ଆରମ୍ଭ କଲେ ।

ଯୁଦ୍ଧକ୍ଷେତ୍ରରେ ଅନୁକୂଳ ପରିସ୍ଥିତି ସୃଷ୍ଟି କରିବାପାଇଁ ଫକେନ୍‌ହାନଙ୍କ ସ୍ଥାନରେ ହିଣ୍ଡେନବର୍ଗ ନିଯୁକ୍ତି ପାଇଲେ । ଦେଶରେ ୧୮ ବର୍ଷରୁ ୬୦ ବର୍ଷ ପର୍ଯ୍ୟନ୍ତ ସମସ୍ତ ପୁରୁଷମାନଙ୍କୁ ସାମରିକ ଶିକ୍ଷା ଦିଆଗଲା । ତଥାପି ବିଜୟ-ସ୍ୱପ୍ନ ବାସ୍ତବରେ ପରିଣତ ନହେଲାରୁ ସେନାପତି ଲ୍ୟୁଡେନଡର୍ଫ ଅସ୍ୱସ୍ତି ବୋଧକଲେ । ତେଣୁ ସେ ବ୍ୟାପକ ବୁଡ଼ାଜାହାଜ ଯୁଦ୍ଧର ଯୋଜନା ପ୍ରସ୍ତୁତ କରିଥିଲେ । ଅନ୍ୟ ପଟେ ଫରାସୀ ସେନାଧ୍ୟକ୍ଷ ଯୋଫେଙ୍କ ସ୍ଥାନରେ ନିଭେଲ ନିଯୁକ୍ତ ହେଲେ । ନିଭେଲ ଅଳ୍ପବୟସ୍କ ଆଶାବାଦୀ ସେନାପତି ଥିଲେ । ତେଣୁ ଉଭୟ ପକ୍ଷ ଶାନ୍ତି ସ୍ଥାପନ ବଦଳରେ ଯୁଦ୍ଧକୁ ଶୀଘ୍ର ବିଜୟ ଅଭିମୁଖରେ ପରିଚାଳିତ କରିବାକୁ ବ୍ୟଗ୍ର ହେଲେ । ସେମାନେ ଦେଶର ଆର୍ଥନୀତିକ ବିପର୍ଯ୍ୟୟ କଥା ବିଚାରକୁ ଆଦୌ ନେଲେ ନାହିଁ ।

୧୯୧୭ ମସିହାରେ ନୂତନ ଆଶା ନେଇ ପୁଣି ଯୁଦ୍ଧ ଚାଲୁରହିଲା । ଯୁଦ୍ଧ ଶେଷ କରିବା ଲକ୍ଷ୍ୟ ନେଇ ଲଏଡ୍ ଜର୍ଜ ଓ ନିଭେଲ ଏବଂ ଅପର ପକ୍ଷରେ ଲ୍ୟୁଡେନଡର୍ଫ ସଜବାଜ ହେଲେ । ଅଷ୍ଟ୍ରିୟାର ସେନାବାହିନୀକୁ ପୁନର୍ବାର ଜର୍ମାନ ଅକ୍ତିୟାରକୁ ଅଣାଗଲା । ଯୁଦ୍ଧରେ କେନ୍ଦ୍ରଶକ୍ତି ପକ୍ଷରେ ଅଷ୍ଟ୍ରିୟା ଓ ମିତ୍ରଶକ୍ତି ପକ୍ଷରେ ଫ୍ରାନ୍ସ ସେତେବେଳକୁ ଅସ୍ତିତ୍ୱହୀନ । କେବଳ ଜର୍ମାନୀ ଓ ଇଂଲଣ୍ଡ ଭିତରେ ଶକ୍ତି ପରୀକ୍ଷା କରିବାପାଇଁ ଯୁଦ୍ଧ ଚାଲିଥିଲା ।

ଜାନୁୟାରୀ ମାସ ୩୧ ତାରିଖ ଦିନ ଅନିୟନ୍ତ୍ରିତ ବୁଡ଼ାଜାହାଜ-ଯୁଦ୍ଧ ଆରମ୍ଭ ହେଲା ବୋଲି ଜର୍ମାନୀ ଘୋଷଣା କଲା । ଏହାଦ୍ୱାରା ପରିସ୍ଥିତିରେ ଘୋର ପରିବର୍ତ୍ତନ ଦେଖା-ଦେଲା । ନିରପେକ୍ଷ ରାଷ୍ଟ୍ରମାନେ ବର୍ତ୍ତମାନ କ୍ଷତିଗ୍ରସ୍ତ ହେବା ଭୟରେ ଆତଙ୍କିତ ହୋଇ ପଡ଼ିଲେ । ୧୯୧୫ ମାର୍ଚ୍ଚ ୨୮ ତାରିଖ ଦିନ 'ଫାଲବା' ନାମକ ଜାହାଜ ଜର୍ମାନମାନଙ୍କ-ଦ୍ୱାରା ଜଳମଗ୍ନ ହେବାରୁ ଅନେକ ଆମେରିକୀୟ ପ୍ରାଣ ହରାଇଥିଲେ । ତାପରେ କାସିଂ ଓ ଗାଲଫଲାଇଟ୍ ନାମକ ଦୁଇଟି ଜାହାଜ ଉପରେ ଆକ୍ରମଣ ହେବାରୁ ଯୁକ୍ତରାଷ୍ଟ୍ର ସରକାର ବହୁତ କ୍ରୋଧାନ୍ୱିତ ହୋଇଥିଲେ । ୧୯୧୫ ମସିହା ମେ ମାସ ୭ ତାରିଖ ଦିନ ବ୍ରିଟିଶ୍ ଯାତ୍ରୀବାହୀ ଜାହାଜ 'ଲୁସିଟାନିଆ' ଜଳମଗ୍ନ ହେବାରୁ ୧୧୯୮ ଜଣ ଯାତ୍ରୀ ପ୍ରାଣ ହରାଇ-ଥିଲେ । ସେଥିରେ ୧୨୪ ଜଣ ଆମେରିକୀୟ ଥିଲେ । ଏହି ଜନକ୍ଷୟ ଯୋଗୁଁ ଆମେରିକାରେ ଜର୍ମାନୀ ବିରୁଦ୍ଧରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଇଥିଲା ।

୧୯୧୭ ମସିହାରେ ମହାସାଗରବକ୍ଷରେ ଅବାଧ ନୌଚାଳନାର ସ୍ୱାଧୀନତା ଅପହୃତ ଓ ବିପନ୍ନ ହେବାରୁ ଆମେରିକାର ସୌଦାଗରମାନେ ରାଷ୍ଟ୍ରପତି ଉଇଲ୍ ସନଙ୍କ ଉପରେ ନିରପେକ୍ଷ ନୀତି ପରିହାର କରି ଯୁଦ୍ଧରେ ଯୋଗଦେବାପାଇଁ ଚାପ ଦେଲେ । ସବୁଦିନ ନିରପେକ୍ଷ ନୀତି ଅନୁସରଣ କରିବା କଠିନ ମଧ୍ୟ ଥିଲା । ମିତ୍ରପକ୍ଷ ପାଇଁ ବିଶେଷ ସ୍ନେହ-ସହାନୁଭୂତି ଆମେରିକାବାସୀଙ୍କର ନଥିଲେ ମଧ୍ୟ ଜର୍ମାନୀର ସାମରିକ ପ୍ରସ୍ତୁତି କାଇଜରଙ୍କର ବିଶ୍ୱନୀତି, ନୌଶକ୍ତି ବୃଦ୍ଧି, ଉପନିବେଶ ସ୍ଥାପନରେ ଆଗ୍ରହ ଦେଖି ସେମାନେ ଆଶ୍ଚର୍ଯ୍ୟ ଓ କ୍ଷୁବ୍ଧ ହେଉଥିଲେ । ବେଲ୍‌ଜିୟମକୁ ଆକ୍ରମଣ କରିବାଦ୍ୱାରା ଜର୍ମାନୀ ଆନ୍ତର୍ଜାତିକ ବୁଝାମଣା କ୍ଷେତ୍ରରେ ଯେଉଁ ଅପରାଧ କଲା, ତାହାର ସେମାନେ ନିନ୍ଦାକଲେ । ମିତ୍ରପକ୍ଷ ତରଫରୁ ଜର୍ମାନ ସୈନ୍ୟମାନଙ୍କର ବର୍ବର ଅମାନୁଷିକ ଅତ୍ୟାଚାର ପତ୍ରପତ୍ରିକାରେ ପ୍ରକାଶ ପାଇ ଆମେରିକାର ଜନମତକୁ ବେଶ୍ ପ୍ରଭାବିତ କଲା । ତେଣୁ କ୍ରମଶଃ ସେମାନେ ଜର୍ମାନୀ-ବିରୋଧୀ ହୋଇପଡ଼ିଥିଲେ । ଆର୍ଥନୀତିକ ଦୃଷ୍ଟିକୋଣରୁ ମଧ୍ୟ ଯୁକ୍ତରାଷ୍ଟ୍ର ଆମେରିକା ମିତ୍ରପକ୍ଷ ପ୍ରତି ସହାନୁଭୂତିଶୀଳ ଥିଲା । ଇଂରେଜମାନେ ଆମେରିକାରୁ ବିପୁଳ ଅର୍ଥ ଋଣ ଆକାରରେ ନେଇଥିଲେ । ଇଂଲଣ୍ଡ ଯୁଦ୍ଧରେ ଜୟୀ ନ ହେଲେ ଏହି ଋଣ ଆଦାୟ ଅସମ୍ଭବ ଭାବି ଆମେରିକୀୟ ପୁଞ୍ଜିପତିମାନେ ରାଷ୍ଟ୍ରପତିଙ୍କୁ ଶୀଘ୍ର ଯୁଦ୍ଧରେ ଯୋଗଦେବାକୁ ପରାମର୍ଶ ଦେଇଥିଲେ ।

ଫଳରେ ଉକ୍ତ ବର୍ଷ ମାର୍ଚ୍ଚ ମାସରେ ସାମରିକ ପ୍ରସ୍ତୁତିପାଇଁ କଂଗ୍ରେସରେ ବିଲ୍ ଆଗତ ହେଲା । ତାହା କରିବାଦ୍ୱାରା ରାଷ୍ଟ୍ରପତି ଉଇଲସନଙ୍କ ମତକୁ ଦେଶବାସୀ ପ୍ରଶଂସା କଲେ । ଆମେରିକାର ବାଣିଜ୍ୟ-ପୋତଗୁଡ଼ିକର ସୁରକ୍ଷା ପାଇଁ ସମସ୍ତ ପ୍ରହରୀ-ଜାହାଜର ବ୍ୟବସ୍ଥା ହେଲା । ଆତ୍ମରକ୍ଷାପାଇଁ ସେମାନେ ଯେକୌଣସି ଜାହାଜ ଉପରେ ଆକ୍ରମଣ କରିବାର ନିଷ୍ପତ୍ତି ରାଷ୍ଟ୍ରପତି ଜାରି କଲେ । ଏହି ସମୟରେ ଜର୍ମାନୀର ବୈଦେଶିକ ମନ୍ତ୍ରୀ ଜିମ୍ମରମାନ୍ ମେକ୍ସିକୋ ସହ ଯୁକ୍ତରାଷ୍ଟ୍ର ଆମେରିକା ବିରୁଦ୍ଧରେ ଚକ୍ରାନ୍ତ କରୁଥିବା ଜଣାପଡ଼ିଥିଲା । ତହିଁରେ ବିଶେଷ କ୍ରୋଧାନ୍ୱିତ ହୋଇ ଆମେରିକା ସରକାର ଅପ୍ରେଲ ୨ ତାରିଖ ଦିନ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା ଆବଶ୍ୟକ ବୋଲି ନିଷ୍ପତ୍ତିନେଲେ ଏବଂ ତାହା କଂଗ୍ରେସର ଉଭୟ ଗୃହଦ୍ୱାରା ଅନୁମୋଦନ ଲାଭକଲାପରେ ଅପ୍ରେଲ ୬ ତାରିଖ ଦିନ ବିଧିବଦ୍ଧ ଭାବେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧଘୋଷଣା ଜାରିହେଲା । ଆମେରିକା ମିତ୍ରପକ୍ଷ ସହ ଯୋଗଦେବାରୁ ଯୁଦ୍ଧର ପରିଣତିରେ ବିଶେଷ ପ୍ରଭାବ ପଡ଼ିଥିଲା ।

ପଶ୍ଚିମ-ଇଉରୋପରେ ନିଭେଲ ଏବଂ ହେଗ୍‌ଙ୍କର ସମ୍ମିଳିତ ସାମରିକ ଉଦ୍ୟମ ସ୍ୱରୂପ 'ନିଭେଲ ଯୋଜନା' କାର୍ଯ୍ୟକାରୀ ହେଲା । ଉକ୍ତ ଯୋଜନା ଫ୍ରାନ୍ସ ଏବଂ ଇଂଲଣ୍ଡ ସରକାର ଗ୍ରହଣ କରିଥିଲେ । ଏହାର ସମ୍ମୁଖୀନ ହେବାପାଇଁ ଜର୍ମାନମାନେ ସବୁ ପ୍ରକାର ଉଦ୍ୟମ କରିଥିଲେ । ଏହି ଯୋଜନା ଅନୁସାରେ ଅପ୍ରେଲ ୯ ତାରିଖ ଦିନ ଆରାସ ଅଞ୍ଚଳରେ ମିତ୍ରପକ୍ଷ ତରଫରୁ ଆକ୍ରମଣ ଆରମ୍ଭ ହେଲା । ଏହି ଯୁଦ୍ଧରେ ଇଂରେଜ ପକ୍ଷର ଦେଢ଼ଲକ୍ଷ ଏବଂ ଜର୍ମାନୀ ପକ୍ଷର ଏକଲକ୍ଷ ସୈନ୍ୟ ପ୍ରାଣ ହରାଇଥିଲେ । ତଥାପି ଲକ୍ଷ୍ୟପଥରୁ ଓହରି ନଯାଇ ନିଭେଲ୍ ଏଇନ୍ ଉପରେ ପ୍ରବଳ ଚଢ଼ାଉ କରିଥିଲେ । ପ୍ରବଳ ଯୁଦ୍ଧ ସତ୍ତ୍ୱେ ଜର୍ମାନୀ ପ୍ରତିରକ୍ଷାବ୍ୟୂହ ଭେଦକରି ଅଗ୍ରସର ହେବା କଠିନ ଥିଲା । ଯୋଜନା ସଫଳ ନହେବାରୁ ସେନାଧ୍ୟକ୍ଷ ପଦରୁ ନିଭେଲ୍ ବିଦାୟ ନେଲେ ଏବଂ ତାଙ୍କ ସ୍ଥାନରେ ମାର୍ଶାଲ ପାତେଁ ନିଯୁକ୍ତ ହେଲେ । ପାତେଁ ଥିଲେ ବାସ୍ତବବାଦୀ । ସେ ଦେଶବାସୀଙ୍କୁ କୌଣସି ଆଶାର ବାଣୀ ନଶୁଣାଇ ଆମେରିକାର ସାହାଯ୍ୟ ପାଇଁ ଅପେକ୍ଷାକଲେ । ଫରାସୀ ବାହିନୀରେ ସେତେବେଳେ ଯେଉଁ ବିଶୃଙ୍ଖଳା ଓ ନୈରାଶ୍ୟ ଦେଖାଦେଇଥିଲା, ତାହାକୁ ସେ କ୍ରମଶଃ ଦୂର କରିଥିଲେ । ସୈନ୍ୟମାନଙ୍କୁ ଦଣ୍ଡ, ଭୟ, ଆର୍ଥିକ ପୁରସ୍କାର ଓ ଉତ୍ସାହ ଦ୍ୱାରା ସେ ଆୟତ୍ତକୁ ଆଣିଲେ ।

ଏହି ସମୟରେ ରୁଷିଆ ମଧ୍ୟ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ଅସ୍ତ୍ରଶସ୍ତ୍ରର ଅଭାବ ଓ ଉତ୍କଟ ଖାଦ୍ୟାଭାବ ପାଇଁ ସୈନ୍ୟ ତଥା ଦେଶବାସୀ ବିଦ୍ରୋହ ଆରମ୍ଭକଲେ । ଜାର୍ ନିକୋଲାସ୍ ପରିସ୍ଥିତିକୁ ସମ୍ଭାଳିବାରେ ସମ୍ପୂର୍ଣ୍ଣ ଅକ୍ଷମ ଥିଲେ । ରାଜତନ୍ତ୍ର ଶାସନ ରୁଷିଆରେ ଲୋପ ପାଇଲା । କମ୍ୟୁନିଷ୍ଟମାନେ ସରକାର ଗଠନ କଲେ । ଲେନିନ୍, ଟ୍ରଟ୍‌ସ୍କି ଆଦି କମ୍ୟୁନିଷ୍ଟ ନେତାମାନେ ଯୁଦ୍ଧ ଓ ରାଜ୍ୟଜୟ ସପକ୍ଷରେ ନଥିବାରୁ ଶାନ୍ତିସ୍ଥାପନ କରି ସାମ୍ୟବାଦୀସମାଜ ଗଢ଼ିବା ଉଦ୍ଦେଶ୍ୟରେ ସେମାନେ ଜର୍ମାନୀ ସହ ବ୍ରେଷ୍ଟଲିଟୋଭସ୍କ ସନ୍ଧି

ସ୍ୱାକ୍ଷର କଲେ । ତାହା ରୁଷିଆ ପାଇଁ ଘୋର କ୍ଷତିକାରକ ହେଲେ ମଧ୍ୟ ପରିସ୍ଥିତିକୁ ଲକ୍ଷ୍ୟକରି ତାହା ହିଁ ଉତ୍କୃଷ୍ଟ ପନ୍ଥା ଥିଲା ।

ମିତ୍ରପକ୍ଷରୁ ରୁଷିଆ ଓହରିଯିବାବେଳେ ଯୁକ୍ତରାଷ୍ଟ୍ର ଆମେରିକାର ଯୋଗଦାନ ମୁଖ୍ୟ-ସମୟରେ ଅମୃତ ପରି କାମ କଲା । କୁବେରରାଷ୍ଟ୍ର ଆମେରିକାର ଜନ ଓ ଧନସମ୍ପଦ ବଳଯୋଗରେ ମିତ୍ରପକ୍ଷ ପୁଣି ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ ପାଇଁ ଅଗ୍ରସର ହେଲେ । ଜୟଲାଭର ଆଶା ନେଇ ଫିଲଡ୍ ମାର୍ଶାଲ ହେଗ୍ ଜୁଲାଇ ୩୧ ତାରିଖରେ ୟ୍ପ୍ରେସଠାରେ ଆକ୍ରମଣ ଆରମ୍ଭ କଲେ । ଏହା ପାସେଣ୍ଡେଲ୍ ଯୁଦ୍ଧନାମରେ ଅଭିହିତ । ବର୍ଷାଯୋଗୁ ସେଠାରେ ଯୁଦ୍ଧ କରିବା ବହୁତ କଷ୍ଟକର ହୋଇଥିଲା । ସୈନ୍ୟମାନେ ଅଣ୍ଟାଏ କାଦୁଅରେ ପଶି ଯୁଦ୍ଧ କରୁଥିଲେ । ସେଠାରେ ପ୍ରାୟ ତିନିଲକ୍ଷ ଇଂରେଜ ଓ ଦୁଇଲକ୍ଷ ଜର୍ମାନ ସୈନ୍ୟ ହତାହତ ହୋଇଥିଲେ । କେବଳ ଦକ୍ଷିଣରେ କାମ୍ବ୍ରେ ନାମକ ସ୍ଥାନରେ ହେଗ୍ ଟ୍ୟାଙ୍କବାହିନୀଦ୍ୱାରା ଆକ୍ରମଣ ଚଳାଇ ଦଶହଜାର ଜର୍ମାନ ସୈନ୍ୟଙ୍କୁ ବନ୍ଦୀ କରିଥିଲେ ।

ପାସେଣ୍ଡେଲ ରଣକ୍ଷେତ୍ରରେ ଜର୍ମାନୀର ବଳବିକ୍ରମ ସରିଆସୁଥିବା କଥା ଜଣା-ପଡ଼ିଥିଲା । ତେଣୁ ଫ୍ରାନ୍ସ, ଇଂଲଣ୍ଡ, ଇଟାଲୀର ରାଷ୍ଟ୍ରନେତାମାନେ ସାମରିକ ଯୋଜନାର ସମନ୍ୱୟ ପାଇଁ ଏକ ମିଳିତ ଯୁଦ୍ଧପରିଷଦ ଗଢ଼ିବାକୁ ସ୍ଥିର କରିଥିଲେ । ପୂର୍ବରୁ ରଣାଙ୍ଗନରେ ଯୁଦ୍ଧ ବନ୍ଦ ହୋଇଥିବାରୁ ରୁଷିଆ ଏଥିରେ ଯୋଗ ଦେଇନଥିଲା । ଜର୍ମାନ୍‌ମାନେ ବର୍ତ୍ତମାନ ପଶ୍ଚିମ ରଣାଙ୍ଗନରେ ଶକ୍ତି କେନ୍ଦ୍ରୀଭୂତ କଲେ ।

ଯୁକ୍ତରାଷ୍ଟ୍ର ଆମେରିକା ବିଶ୍ୱଯୁଦ୍ଧରେ ଯୋଗଦେବା ଦିନୁ ଯୁଦ୍ଧର ଶେଷ ପର୍ଯ୍ୟାୟ ଆରମ୍ଭ ହେଲା ବୋଲି କୁହାଯାଇପାରେ । ମିତ୍ରପକ୍ଷର ଯାହା କିଛି ଅଭାବ ଅସୁବିଧା ଥିଲା ସବୁ ଆମେରିକା ଯୋଗାଇଦେଲା । ପଶ୍ଚିମ ଇଉରୋପରେ ଯୁଦ୍ଧ ଭୟଙ୍କର ଆକାର ଧାରଣକରିବା ଉପଲବ୍ଧି କରି ଲ୍ୟୁଡେନଡର୍ଫ ରୁମାନିଆ ସହିତ ସନ୍ଧି କରିଥିଲେ ଏବଂ ପଶ୍ଚିମପଟେ ଶତ୍ରୁର ମୁକାବିଲା ପାଇଁ ପ୍ରସ୍ତୁତି ଆରମ୍ଭ କଲେ । ଆମେରିକାରୁ ପ୍ରତି ମାସରେ ପ୍ରାୟ ଲକ୍ଷେ ସୈନ୍ୟ ଆସୁଥିବାରୁ ଯୁଦ୍ଧକୁ ଶୀଘ୍ର ଶେଷ କରିବା ଅତି ଜରୁରୀ ମନେହେଲା । ନଚେତ୍ ଜର୍ମାନ ଉପରେ ବ୍ରେଷ୍ଟଲିଟୋଭସ୍କ ପରି ଏକତରଫା ସନ୍ଧିସର୍ତ୍ତ ମିତ୍ରପକ୍ଷ ଲଦିଦେବାର ଭୟ ଥିଲା । ଜର୍ମାନ ଜାତିର ଗୌରବରକ୍ଷା ଦୃଷ୍ଟିରୁ ଲ୍ୟୁଡେନଡର୍ଫ ଆକ୍ରମଣରେ ଯୋଜନା ପ୍ରସ୍ତୁତ କଲେ; କିନ୍ତୁ ତାଙ୍କ ପାଖରେ ନୂତନ ଧରଣର ଅସ୍ତ୍ରଶସ୍ତ୍ର କିଛି ନଥିଲା । ସୈନ୍ୟସଂଖ୍ୟା ମଧ୍ୟ ମିତ୍ରପକ୍ଷଠାରୁ ତାଙ୍କର କମ୍ ଥିଲା । ପୂର୍ବ ରଣକ୍ଷେତ୍ରରୁ ସୈନ୍ୟ ଆଣି ମଧ୍ୟ ଅବସ୍ଥାରେ ଉନ୍ନତି ଦେଖାଗଲା ନାହିଁ । ତେଣୁ ଗୁପ୍ତ-ଅନ୍ଧକାରରେ ଏବଂ ମିତ୍ରପକ୍ଷର ଦୁର୍ବଳ ସ୍ଥାନମାନଙ୍କରେ ଆକ୍ରମଣ ପାଇଁ ବ୍ୟବସ୍ଥା କଲେ; କିନ୍ତୁ ଏପରି ଆକ୍ରମଣପାଇଁ ହେଗ୍ ଓ ପାଟେଁଙ୍କ ଗଚ୍ଛିତ ସୈନ୍ୟ ସଦାଜାଗ୍ରତ ଥିଲେ ।

୧୯୧୮ ମସିହା ମାର୍ଚ୍ଚ ମାସଠାରୁ ପ୍ରବଳ ଯୁଦ୍ଧ ଆରମ୍ଭ ହେଲା । ସୋମ ଅଞ୍ଚଳରେ ବ୍ରିଟିଶ ପ୍ରତିରକ୍ଷା ବ୍ୟବସ୍ଥାକୁ ତୁଚ୍ଛକରି ଜର୍ମାନମାନେ ଆଗକୁ ମାଡ଼ିଗଲେ । ଇଂରେଜମାନେ

ବାଧ୍ୟହୋଇ ପଛଘୁଞ୍ଚା ଦେଇଥିଲେ । ତେଣୁ ମାମରିକ ବ୍ୟବସ୍ଥାରେ ପୁଣି ଉନ୍ନତିସାଧନ ପାଇଁ ମାର୍ଶାଲ ଫୋସ୍ ନିଯୁକ୍ତ ପାଇଲେ । ତାଙ୍କ ପରିଚାଳନାରେ ହେଗ୍ ଓ ପାତେଁ ଯୁଦ୍ଧ ଗତିବିଧିକୁ ନିୟନ୍ତ୍ରିତ କଲେ । ଜର୍ମାନମାନେ ସୋମ ସଫଳତା ପରେ ଅଧିକ ଉତ୍ସାହ ସହିତ ଯୁଦ୍ଧକଲେ । କ୍ଷୟକ୍ଷତି ପ୍ରତି ଦୃଷ୍ଟି ନଦେଇ ସେପରି ଅବସ୍ଥାରେ ଆକ୍ରମଣ ଅବ୍ୟାହତ ରଖିବା ଜର୍ମାନ ପକ୍ଷେ ଉଚିତ ନଥିଲା । କାରଣ ତଦ୍ୱାରା ତାର ଶକ୍ତି କ୍ରମଶଃ ଦୁର୍ବଳ ହୋଇଆସିଲା । ମିତ୍ରପକ୍ଷ ଠିକ୍ ତାହା ହିଁ ଚାହୁଁଥିଲେ । ଏପ୍ରିଲ ଦ୍ୱିତୀୟ ସପ୍ତାହ ପରେ ଜର୍ମାନ ଆକ୍ରମଣ ଶିଥିଳ ହୋଇ ଆସିଲା । ଜର୍ମାନୀକୁ ଅଧିକ ପଙ୍ଗୁ ଓ ବିପର୍ଯ୍ୟସ୍ତ କରିବା ପାଇଁ ମିତ୍ରପକ୍ଷ ତରଫରୁ ଜୋରସୋରରେ ଚଢ଼ାଉ ଆରମ୍ଭ ହେଲା । ଜିବ୍ରାଲ୍ଟର୍ ଏବଂ ଓଷ୍ଟେଣ୍ଡ ପୋତାଶ୍ରୟ ହରାଇ ଜର୍ମାନୀ ବଡ଼ ହଇରାଣରେ ପଡ଼ିଲା । ତାର ନୌବାହିନୀ ମଧ୍ୟ ଉତ୍ତରସାଗର ମଧ୍ୟରେ ବନ୍ଦୀପ୍ରାୟ ହୋଇରହିଲା । ବାହାରୁ ଜିନିଷପତ୍ର ଆମଦାନୀ କରିବା ସମ୍ଭବ ହେଲନାହିଁ । କେବଳ ଇଂଲଣ୍ଡ ଉପରେ ବୋମାବର୍ଷଣ ଚାଲୁରଖି ଜର୍ମାନୀ ଭାବିଥିଲା ମିତ୍ରପକ୍ଷକୁ ଉତ୍ୟକ୍ତ କରି ରଖିବ; କିନ୍ତୁ ଇଂରେଜମାନଙ୍କର ନୈତିକବଳ ତଦ୍ୱାରା ଭାଙ୍ଗି ନଥିଲା । ଇଂରେଜ ବାୟୁସେନା ଓ ସ୍ଥଳସେନା ସମ୍ମିଳିତ ଭାବେ ଯୁଦ୍ଧ କରୁଥିଲେ । ଏଇଜ୍ ଅଞ୍ଚଳରେ ଗୁପ୍ତ-ସୈନ୍ୟଚାଳନାଦ୍ୱାରା ଲ୍ୟୁଡେନଡର୍ଫ ସାମୟିକ ସଫଳତା ହାସଲକରି ଜୁନ ମାସ ୩ ତାରିଖ ବେଳକୁ ମାର୍ଣ୍ଣେ ପର୍ଯ୍ୟନ୍ତ ଅଞ୍ଚଳ ଦଖଲଭୁକ୍ତ କରିଥିଲେ ।

ପ୍ୟାରିସ୍ ସହର ତଥାପି ପ୍ରାୟ ୫୬ ମାଇଲ ଦୂରରେ ଥିବାରୁ ଲ୍ୟୁଡେନଡର୍ଫ ଯୁଦ୍ଧ ଶେଷ କରିବାର ଉପାୟ ଚିନ୍ତାକରି ବିଚଳିତ ହୋଇପଡ଼ିଲେ । ରେମସ୍ ଅଞ୍ଚଳ ଅଧିକାର କରିବା ପାଇଁ ଓ ଶେଷଥର ପୁଣି ଜୋର୍‌ରେ ଆକ୍ରମଣ କରିବା ଉଦ୍ଦେଶ୍ୟ ନେଇ ସେ ୫୨ ଡିଭିଜନ ସୈନ୍ୟ ଗଚ୍ଛିତ ରଖିଥିଲେ । ଜୁଲାଇ ମାସ ମଧ୍ୟଭାଗରେ ଜର୍ମାନମାନଙ୍କର ପ୍ରଚଣ୍ଡ ଆକ୍ରମଣ ଆରମ୍ଭହେଲା । ମାର୍ଶାଲ ଫୋସ୍ ସେଥିପାଇଁ ପ୍ରସ୍ତୁତ ଥିଲେ । ଫରାସୀ ସୈନ୍ୟ-ମାନଙ୍କର ପ୍ରାଣମୂର୍ଚ୍ଛା । ସଂଗ୍ରାମ ଫଳରେ ରେମସ୍‌ଠାରେ ଜର୍ମାନମାନେ ଆଗକୁ ମାଡ଼ିଯାଇ ପାରିନଥିଲେ; ବରଂ ପଛଘୁଞ୍ଚା ଦେବାକୁ ବାଧ୍ୟ ହୋଇଥିଲେ । ଜୁଲାଇ ୨୦ ତାରିଖରେ ମାର୍ଣ୍ଣେ ଯୁଦ୍ଧର ବିପର୍ଯ୍ୟୟ ସମ୍ବାଦ ପାଇ ଲ୍ୟୁଡେନଡର୍ଫ ବିଜୟର ଆଶା ପରିତ୍ୟାଗ କରିଥିଲେ ।

ଜୁଲାଇ ୨୪ ତାରିଖ ବେଳକୁ ମିତ୍ରପକ୍ଷ ସେନାପତିମାନେ ପୁଣି ଏକତ୍ର ହୋଇ ମିଳିତ ଆକ୍ରମଣର ବ୍ୟବସ୍ଥା କରିଥିଲେ । ଉତ୍ତରରେ ବେଲ୍‌ଜିୟମ ପଟେ ଇଂରେଜମାନଙ୍କୁ ନେଇ ହେଗ୍, ଦକ୍ଷିଣରେ ଭର୍ଦୁ ଅଞ୍ଚଳରେ ପାର୍ସିଙ୍କ ଅଧିନାୟକତ୍ୱରେ ଆମେରିକାର ସୈନ୍ୟ ଓ ମଧ୍ୟଭାଗରେ ଫରାସୀ ସୈନ୍ୟ ମାର୍ଶାଲ ପାତେଁଙ୍କ ସେନାପତିତ୍ୱରେ ଜର୍ମାନମାନଙ୍କ ଉପରେ ଆକ୍ରମଣ କଲେ । ପ୍ରଥମେ ଅଗଷ୍ଟ ୮ରେ ହେଗ୍ ଆକ୍ରମଣ ଅଭିଯାନ ଆରମ୍ଭ କରିଥିଲେ । ଜର୍ମାନମାନେ ତାଙ୍କୁ ପ୍ରତିରୋଧ କରିବାକୁ ସଫଳ ହୋଇନଥିଲେ । ଏହି ଯୁଦ୍ଧ ପ୍ରାୟ ମାସେ କାଳ ଚାଲୁରହିଲା । ପାର୍ସି ଆମେରିକାର ସୈନ୍ୟଙ୍କୁ ନେଇ ଜର୍ମାନ ଅଗ୍ରଗତିକୁ ରୋକିବାରେ

ସମର୍ଥ ହୋଇଥିଲେ । ଯୁଦ୍ଧରେ ଏହି ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଜର୍ମାନମାନଙ୍କର ମାନସିକ ବଳ ଭାଙ୍ଗି ପଡ଼ିଲା । ଆଉ ଆକ୍ରମଣପାଇଁ ସେମାନଙ୍କର ଆଗ୍ରହ ନଥିଲା । ତାହା ଲକ୍ଷ୍ୟକରି ଯୁଦ୍ଧବିରତି ବିଗରେ କଥାବାର୍ତ୍ତା କରିବା ଉଚିତ ବୋଲି ଲ୍ୟୁଡେନଡର୍ଫ ମତ ଦେଲେ । ଯୁଦ୍ଧବିରତି ପାଇଁ ପ୍ରସ୍ତାବ ଦେବାରେ ଆଉ ଏକ କାରଣ ମଧ୍ୟ ଥିଲା । ଜର୍ମାନୀର ଅନ୍ୟତମ ବନ୍ଧୁରାଷ୍ଟ୍ର ବୁଲ୍‌ଗେରିଆ ଫ୍ରାନ୍‌ଦ୍ୱାରା ପରାସ୍ତ ହୋଇ ଯୁଦ୍ଧବିରତି ରାଜିନାମାରେ ସ୍ୱାକ୍ଷର କରିବା ସଙ୍ଗେ ସଙ୍ଗେ କେନ୍ଦ୍ରଶକ୍ତିପକ୍ଷରୁ ଓହରିଯାଇଥିଲା । ତେଣୁ ବନ୍ଧୁହୀନ ଭାବେ ଲ୍ୟୁଡେନଡର୍ଫଙ୍କ ପକ୍ଷରେ ଆଉ ଯୁଦ୍ଧ କରିବା ସମ୍ଭବ ନଥିଲା । ତାଙ୍କ ମତରେ ଜର୍ମାନ ସୈନ୍ୟଙ୍କୁ ଅନ୍ୟ ଦେଶରୁ ଅପସାରଣ କରି କେବଳ ମାତୃଭୂମିର ସୁରକ୍ଷା ପାଇଁ ପ୍ରୟୋଗ କରିବା ଅଧିକ ଉଚିତ ହେବ । ତେଣୁ ଆଉ ବିଳମ୍ବ ନକରି ଅକ୍ଟୋବର ୪ ତାରିଖ ଦିନ ପ୍ରେସିଡେଣ୍ଟ ଉଇଲସନଙ୍କୁ ସମ୍ବୋଧନ କରି ଜର୍ମାନୀ ଯୁଦ୍ଧବିରତି ପ୍ରସ୍ତାବ ଦେଇଥିଲା । ଉଇଲସନଙ୍କ ଚତୁର୍ଦ୍ଦଶ ଦଫା-ସମ୍ବଳିତ ଘୋଷଣା ଜର୍ମାନୀ ଗ୍ରହଣ କରିଥିଲା । ଯୁଦ୍ଧବିରତି ପ୍ରସ୍ତାବ ପାଇ ଉଇଲସନ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଥିଲେ । ଇଉରୋପରେ ଶାନ୍ତି ପ୍ରତିଷ୍ଠା କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିବାରୁ ମିତ୍ରପକ୍ଷର ଅନ୍ୟ ରାଷ୍ଟ୍ରମାନଙ୍କୁ ମତାମତ ନପଚାରି ସେ ଯୁଦ୍ଧବିରତି ପ୍ରସ୍ତାବରେ ରାଜି ହୋଇଥିଲେ । ଜର୍ମାନୀ ଅଧିକୃତ ଅଞ୍ଚଳ ଛାଡ଼ିଦେଇ ରାଜତନ୍ତ୍ର ପରିବର୍ତ୍ତେ ଗଣତନ୍ତ୍ର ସରକାର ପ୍ରତିଷ୍ଠା କରୁ, ଏହି ପ୍ରସ୍ତାବ ସେ ଦେଇଥିଲେ ।

ତରବରରେ ଉଇଲ୍‌ସନ ଯୁଦ୍ଧବିରତି ପ୍ରସ୍ତାବ ଗ୍ରହଣ କରିବାଦ୍ୱାରା ମିତ୍ରପକ୍ଷ ରାଷ୍ଟ୍ରମାନେ ଅସନ୍ତୁଷ୍ଟ ହୋଇଥିଲେ । ଲଏଡ ଜର୍ଜ ଓ କ୍ଲିମାନସୁ ଜର୍ମାନୀକୁ ପୂରା ପରାସ୍ତକରି ତାର ଉପନିବେଶ ଅଧିକାର କରିବାକୁ ଇଚ୍ଛୁକ ଥିଲେ । ସେନାପତି ଫୋସ୍ ଫ୍ରାନ୍ସର ନିରାପତ୍ତା ଦୃଷ୍ଟିରୁ ଜର୍ମାନୀର ରାଇନ୍ ଅଞ୍ଚଳ ଅଧିକାରଭୁକ୍ତ କରିବାରେ ଆଗ୍ରହୀ ଥିଲେ । ଇଂରେଜମାନେ ପୁଣି ଜର୍ମାନୀ ନୌଶକ୍ତିକୁ କବଳିତ କରିବାରେ ଇଚ୍ଛୁକ ଥିଲେ । ତେଣୁ ଏସବୁ ଉଦ୍ଦେଶ୍ୟ ଫଳବତୀ ନହେବା ପର୍ଯ୍ୟନ୍ତ ଯୁଦ୍ଧ ଚାଲୁରଖିବା ସେମାନଙ୍କର ଇଚ୍ଛାଥିଲା ।

ଏସବୁ ଦୃଷ୍ଟିରୁ ଯୁଦ୍ଧ ହୁଏତ ଚାଲୁରହିଥାନ୍ତା; କିନ୍ତୁ ଜର୍ମାନୀର ଚାନସେଲର ମ୍ୟାକ୍ସ ଯୁଦ୍ଧ ସପକ୍ଷରେ ନଥିଲେ । ବୁଡ଼ାଜାହାଜ-ଯୁଦ୍ଧ ତୁରନ୍ତ ବନ୍ଦ କରିବାପାଇଁ ସେ ଆଦେଶ ଦେଇଥିଲେ । ତା'ଛଡ଼ା ଅଷ୍ଟ୍ରିୟାରେ ସେତେବେଳକୁ ଗଣ ଆନ୍ଦୋଳନ ବ୍ୟାପକ ହୋଇ ଚେକୋସ୍ଲୋଭାକିଆ ଏବଂ ହଙ୍ଗେରି ଆଦି ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠିତ ହେଲା । ରାଜତନ୍ତ୍ର ସରକାର ବିଲୋପ ପାଇ ଗଣତନ୍ତ୍ର ସରକାର ସ୍ଥାପିତ ହେଲା । ଅଷ୍ଟ୍ରିୟାର ସୈନ୍ୟମାନେ ଯୁଦ୍ଧ କରିବାକୁ ସଫା ମନା କରିଦେଲେ । ତେଣୁ ଅଷ୍ଟ୍ରିୟାର ସେନାପତିମାନେ ନଭେମ୍ବର ୩ ତାରିଖ ଦିନ ଯୁଦ୍ଧବିରତି ରାଜିନାମାରେ ବାଧ୍ୟ ହୋଇ ସ୍ୱାକ୍ଷର କଲେ ।

ଏତେଦୂର ପ୍ରତିକୂଳ ଅବସ୍ଥାରେ ଜର୍ମାନୀ ତେଣୁ ଯୁଦ୍ଧ ଚଲାଇବାରେ ସମ୍ପୂର୍ଣ୍ଣ ଅକ୍ଷମ ଥିଲା । ମିତ୍ରପକ୍ଷ ଜର୍ମାନୀ ଭିତରକୁ ଅନୁପ୍ରବେଶ କଲା ପରେ ମଧ୍ୟ ବାସ୍ତବ ପରିସ୍ଥିତି ପ୍ରତି

ଧ୍ୟାନ ନଦେଇ କାଇଜର ଲ୍ୟୁଡେନଡର୍ଫଙ୍କୁ ପଦଚ୍ୟୁତ କରିଥିଲେ । ଯୁଦ୍ଧ ଚାଲୁରଖିବା ତାଙ୍କର ଉଦ୍ଦେଶ୍ୟ ଥିଲା; କିନ୍ତୁ ନଭେମ୍ବର ୩ ତାରିଖଠାରୁ ଜର୍ମାନ ନୌବାହିନୀରେ ବିଦ୍ରୋହ ଆରମ୍ଭ ହେଲା; ତେଣୁ ଯୁଦ୍ଧଚାଳନା ସମ୍ଭବ ହେଲାନାହିଁ । ଚାନସେଲର ମ୍ୟାକ୍ସ ଯୁଦ୍ଧବିରତି ରାଜିନାମା ଉପରେ ବେଶି ଗୁରୁତ୍ୱ ଦେଲେ । ଏର୍ଜବର୍ଗରଙ୍କୁ ଯୁଦ୍ଧବିରତି ଚୁକ୍ତି ପାଇଁ ସେ ଫ୍ରାନ୍ସକୁ ପଠାଇଥିଲେ । କୋମ୍ପିନ ଜଙ୍ଗଲର ପରିତ୍ୟକ୍ତ ରେଲଡବା ଭିତରେ ମାର୍ଶାଲ୍ ଫୋଚ୍ ଏବଂ ଏର୍ଜବର୍ଗରର ଆଲୋଚନା ନଭେମ୍ବର ୮ ତାରିଖ ଦିନ ଆରମ୍ଭ କରିଥିଲେ । ସେତେବେଳକୁ ବର୍ଲିନ ନଗରୀରେ ଗଣବିକ୍ଷୋଭ ଯୋଗୁ ରାଜତନ୍ତ୍ର ସରକାରର ସ୍ଥିତି ବିପନ୍ନ ହୋଇଥାଏ । ଦୁଇଦିନ ପରେ କାଇଜର ଦ୍ୱିତୀୟ ଉଇଲିୟମ୍ ବର୍ଲିନରୁ ହଲାଣ୍ଡକୁ ପଳାୟନକଲେ ଏବଂ ଜର୍ମାନୀରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା ।

ଯୁଦ୍ଧବିରତି ଆଲୋଚନା ସମାପ୍ତ ହେବା ପରେ ନଭେମ୍ବର ୧୧ ତାରିଖ ସକାଳ ୫ଟା ସମୟରେ ଚୁକ୍ତି ସ୍ୱାକ୍ଷରିତ ହେଲା । ସେଦିନ ପୂର୍ବାହ୍ଣ ୧୧ଟା ସମୟରୁ ଯୁଦ୍ଧ ବନ୍ଦ ହେଲା । ସବୁଆଡ଼େ ଆନନ୍ଦ ଉଚ୍ଛ୍ୱାସର ତରଙ୍ଗ ଖେଳିଗଲା । ସେଦିନ କାମ କରିବାପାଇଁ କେହି କାରଖାନା ବା ଅଫିସମାନଙ୍କୁ ଗଲେନାହିଁ । ବହୁଦିନର ଭୟ, ଅପମୃତ୍ୟୁ, ଦୁଃଖ-ଯନ୍ତ୍ରଣାରୁ ମାନବସମାଜ ରକ୍ଷା ପାଇଲା । ପୃଥିବୀରୁ ଯୁଦ୍ଧ-ବିଭୀଷିକାକୁ ଦୂରକରି ଶାନ୍ତିପ୍ରତିଷ୍ଠା ପାଇଁ ରାଷ୍ଟ୍ରନାୟକମାନେ ଏକ ସ୍ଥାୟୀ ବନ୍ଦୋବସ୍ତ ଉଦ୍ଦେଶ୍ୟରେ ପ୍ୟାରିସ୍ ସହରରେ ସମବେତ ହେଲେ ।

## ଯୁଦ୍ଧୋତ୍ତର ଅବସ୍ଥା

### ( The Condition of Europe after the War )

ପୃଥିବୀ ଇତିହାସରେ ପ୍ରଥମ ବିଶ୍ୱଯୁଦ୍ଧ ପରି ବିଭୀଷିକାମୟ ଘଟଣା ପୂର୍ବେ କେବେ ଘଟିନଥିଲା । ଦୀର୍ଘ ପ୍ରାୟ ସାଢ଼େ ଚାରିବର୍ଷ ଧରି ପୃଥିବୀର ବିଭିନ୍ନ ସ୍ଥାନରେ ତାହା ଧ୍ୱଂସ ସାଧନ କରିବା ସଙ୍ଗେ ସଙ୍ଗେ ନାନା ଫଳାଫଳର କାରଣ ମଧ୍ୟ ହେଲା । ନୂତନପ୍ରକାର ରଣକୌଶଳ, ସାମରିକ ସରଞ୍ଜାମ, ମାରଣାସ୍ତ୍ର ଆଦିର ପ୍ରଚଳନ ହେଲା । ବୈଜ୍ଞାନିକ ଉପାୟରେ ଯୁଦ୍ଧହେବା ଯୋଗୁ ତାହା ଅଳ୍ପ ସ୍ଥାନରେ ଆବଦ୍ଧ ନହୋଇ ଗତିଶୀଳ ଓ ପ୍ରସାରିତ ହେଲା ।

ଯୁଦ୍ଧରେ ଘଟିଥିବା କ୍ଷୟକ୍ଷତିର ପରିମାଣ ଅକଳନ ଥିଲା । ତହିଁରେ ପ୍ରାୟ ଛ'କୋଟି ପଚିଶ ଲକ୍ଷ ଲୋକ ଅଂଶ ଗ୍ରହଣ କରିଥିଲେ । ସେଥିରେ ଆହତ ଓ ନିହତ ବ୍ୟକ୍ତିଙ୍କ ସଂଖ୍ୟା ଥିଲା ଯଥାକ୍ରମେ ଦୁଇକୋଟି କୋଡ଼ିଏ ଲକ୍ଷ ଏବଂ ଏକକୋଟି ତିରିଶ ଲକ୍ଷ । ଏମାନଙ୍କୁ ଛାଡ଼ି ଭୋକ, ରୋଗ ଓ ବିକଳାଙ୍ଗ ଅବସ୍ଥାରେ କେତେ ଜଣଙ୍କର ମୃତ୍ୟୁ ଘଟିଛି ତାର ହିସାବ ନାହିଁ । ସେହିପରି ଆର୍ଥିକ କ୍ଷତି ମଧ୍ୟ ପ୍ରଭୂତ ଥିଲା । ସର୍ବିଆ, ରୁମାନିଆ,

ବେଲ୍‌ଜିୟମ, ଫ୍ରାନ୍‌ସ ଓ ଜର୍ମାନୀ ପ୍ରଭୃତି ଦେଶର ଆର୍ଥିକ କ୍ଷତି ସର୍ବାଧିକ ହୋଇଥିଲା। ପୋଲାଣ୍ଡର ଖଣିଜ ସମ୍ପଦ, ରାସ୍ତାଘାଟ, ଶସ୍ୟକ୍ଷେତ୍ର ସମ୍ପୂର୍ଣ୍ଣ ଧ୍ୱଂସ ପାଇଥିଲା। ଅଜସ୍ର ଗୋଲାବର୍ଷଣ ଫଳରେ ଅନେକ ଦେଶର ଜମି ଉତ୍ପାଦିକାଶକ୍ତି ହରାଇଥିଲା।

ଯୁଦ୍ଧ ଶେଷ ହେବାପରେ ଇଉରୋପୀୟ ଦେଶମାନଙ୍କରେ ଅର୍ଥନୈତିକ ଦୁରବସ୍ଥା ଦେଖାଦେଲା। ଯୁଦ୍ଧକ୍ଷେତ୍ରରୁ ସୈନ୍ୟମାନେ ଫେରିବାପରେ ଅନ୍ନସଂସ୍ଥାନପାଇଁ କାମ ପାଇଲେ ନାହିଁ। ଯେଉଁ ସବୁ କାରଖାନା ଯୁଦ୍ଧପାଇଁ ସାଜସରଞ୍ଜାମ ପ୍ରସ୍ତୁତ କରୁଥିଲେ, ସେଗୁଡ଼ିକ ବନ୍ଦ ହୋଇଗଲା। ଖାଦ୍ୟଦ୍ରବ୍ୟ ଯୋଗାଇବାରେ ସରକାରମାନେ ଅକ୍ଷମ ହେଲେ। ସାଧାରଣ ଖାଦ୍ୟଦ୍ରବ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଇବା ମଧ୍ୟ ଅସମ୍ଭବ ହେଲା। ମୁଦ୍ରାସ୍ଫୀତି, ଦରବୃଦ୍ଧି, ବେକାର ସମସ୍ୟାରେ ସରକାର ହଇରାଣ ହେଲେ। ସାମାଜିକ ଭ୍ରଷ୍ଟତା ବୃଦ୍ଧି ପାଇଲା। ଅପରାଧସଂଖ୍ୟାବୃଦ୍ଧି ଯୋଗୁ ଧନଜୀବନ ବିପନ୍ନ ହେଲା। ଶିଶୁମାନଙ୍କପାଇଁ ଦୁଗ୍ଧଜାତ ଦ୍ରବ୍ୟ, ରୋଗୀମାନଙ୍କ ପାଇଁ ଔଷଧ ନମିଳିବାରୁ ହଜାର ହଜାର ପ୍ରାଣ ନଷ୍ଟହେଲା।

କେବଳ ଆମେରିକା ଏହି ଦୁର୍ଦ୍ଦଶାରୁ ମୁକ୍ତ ଥିଲା। ସେଠାକାର ପୁଞ୍ଜିପତି ଓ କାରଖାନା ମାଲିକମାନେ ବେଶ୍ ଅର୍ଥ ରୋଜଗାର କଲେ। ରୁଷିଆ, ଜର୍ମାନୀ, ଅଷ୍ଟ୍ରିୟା, ଗ୍ରୀସ୍ ଓ ତୁର୍କୀ ପ୍ରଭୃତି ଦେଶରେ ରାଜତନ୍ତ୍ର ସରକାର ଭୂଷୁଡ଼ି ପଡ଼ିଲା। ରୁଷ-ବିପ୍ଳବ, ଫାସିଷ୍ଟ-ବିପ୍ଳବ ଆଦି ଇଉରୋପରେ ନୂତନ ସମାଜ ଓ ନୂତନ ସରକାର ସୃଷ୍ଟି କଲେ। ରାଜନୀତିରେ ଗଣତନ୍ତ୍ର ବଦଳରେ ଏକଚ୍ଛତ୍ରବାଦ ବେଶି ଜନପ୍ରିୟ ହେଲା।

ବିଶ୍ୱଯୁଦ୍ଧ ଫଳରେ ଇଉରୋପ ମହାଦେଶରେ ଜାତୀୟତାବାଦ ବୃଦ୍ଧି ପାଇଥିଲା। ଯୁଗୋସ୍ଲୋଭିଆ, ରୁମାନିଆ, ଜେକୋସ୍ଲୋଭାକିଆ, ଆଲବାନିଆ ଓ ହଙ୍ଗେରି ଆଦି ନୂତନ ରାଜ୍ୟ ସୃଷ୍ଟି ହେଲା। ଇଂଲଣ୍ଡର ସାମରିକ ଓ ଆର୍ଥନୀତିକ ଶକ୍ତି ଦୁର୍ବଳ ହୋଇପଡ଼ିବାରୁ କାନାଡା, ଆୟରଲାଣ୍ଡ, ଇଜିପ୍ଟ ଆଦି ଦେଶର ସ୍ୱାଧିକାର ଦାବୀ ସଫଳ ହେଲା। ଭାରତ ବର୍ଷରେ ଜନଜାଗରଣ ଅଧିକ ଶକ୍ତିଶାଳୀ ହେଲା। ଏସିଆଡ଼େ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲୋକମାନେ ଆନ୍ଦୋଳନ କଲେ।

ବିଶ୍ୱଯୁଦ୍ଧ ପରେ ପରେ ଏକ ରାଷ୍ଟ୍ରସଙ୍ଘର ଜନ୍ମ ହେଲା। ପୃଥିବୀର ଶାନ୍ତିକାମୀ ରାଷ୍ଟ୍ରମାନେ ଶାନ୍ତିକୁ ଚିରସ୍ଥାୟୀ କରିବାପାଇଁ ଏହି ରାଷ୍ଟ୍ରସଙ୍ଘର ପ୍ରସ୍ତାବକୁ ଅନୁମୋଦନ କଲେ। ଦେଶ ଦେଶ ମଧ୍ୟରେ ଥିବା ରାଜନୈତିକ କଳହର ଶାନ୍ତିପୂର୍ଣ୍ଣ ସମାଧାନ ନହେଲେ ବିଶ୍ୱଯୁଦ୍ଧ ସମ୍ଭବ ବୋଲି ଉପଲବ୍ଧି କରି ସେ ଦିଗରେ ମଧ୍ୟସ୍ଥିର ଭୂମିକା ନେବାପାଇଁ ରାଷ୍ଟ୍ରସଙ୍ଘର ପରିକଳ୍ପନା ହୋଇଥିଲା। ୧୯୨୦ ମସିହା ଜାନୁୟାରି ୧୦ ତାରିଖଠାରୁ ରାଷ୍ଟ୍ରସଙ୍ଘର ପରିକଳ୍ପନା କାର୍ଯ୍ୟକାରୀ ହୋଇଥିଲା। ଏହା ପ୍ରକୃତରେ ଥିଲା ଆମେରିକା ପ୍ରେସିଡେଣ୍ଟ ଉଇଲସନଙ୍କ ପରିକଳ୍ପିତ ଅନୁଷ୍ଠାନ। ରାଷ୍ଟ୍ରସଙ୍ଘର ସାମ୍ବିଧାନିକ ଚଠା ଡେଭିଡ଼ ମିଲ୍ଲର, ସେସିଲ୍ ହାର୍ଷ୍ଟ, କର୍ଣ୍ଣେଲ ହାଉସ୍, ଜେନେରାଲ ସ୍ମଟସ୍ ଆଦି ଆମେରିକୀୟ ଓ

ଇଂରେଜ କୂଟନୀତିଜ୍ଞମାନେ ବିରୋଧ କରିଥିଲେ । ତନ୍ମଧ୍ୟରେ ଜର୍ମାନୀ ଓ ଇଟାଲୀୟମାନଙ୍କୁ ପ୍ରଥମେ ଅଂଶ ଗ୍ରହଣର ସୁଯୋଗ ଦିଆଯାଇନଥିଲା । ପୃଥିବୀର ସ୍ୱାଧୀନ ଶାନ୍ତିକାମୀ ରାଷ୍ଟ୍ରମାନଙ୍କୁ ତାହାର ସଭ୍ୟ ରୂପେ ଗ୍ରହଣ କରାଯାଇଥିଲା । ସଭ୍ୟମାନଙ୍କୁ ନେଇ ଏକ ବିଧାନସଭା ଓ କେତେକ ମୁଖ୍ୟ ସଭ୍ୟଙ୍କୁ ନେଇ ଏକ ପରିଷଦ ଏବଂ ଦୈନନ୍ଦିନ କାର୍ଯ୍ୟ ନିର୍ବାହ ପାଇଁ ସେକ୍ରେଟାରିଏଟ୍ ଗଠିତ ହେଲା । ରାଷ୍ଟ୍ରସଙ୍ଘର ମୁଖ୍ୟ କାର୍ଯ୍ୟାଳୟ ଜେନେଭା-ଠାରେ ଅବସ୍ଥାପିତ ହୋଇଥିଲା । ଅନ୍ତର୍ଜାତୀୟ କ୍ଷେତ୍ରରେ ଯେକୌଣସି ବିବାଦର ସମାଧାନ କରି ରାଷ୍ଟ୍ରସଙ୍ଘ ବିଶ୍ୱଶାନ୍ତି ପ୍ରତିଷ୍ଠା ଦିଗରେ ଏକ ନୂତନ ପଥ ଉନ୍ମୁକ୍ତ କଲା ।

୧୯୧୪-୧୯୧୮ ମସିହାର ବିଶ୍ୱଯୁଦ୍ଧ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଏକ ନବଯୁଗର ସୂତ୍ରପାତ କରିଥିଲା । ସାମାଜିକ ନ୍ୟାୟ ଓ ସାମ୍ୟ ପ୍ରତିଷ୍ଠାପାଇଁ ତାହାର ଅବଦାନ ଯଥେଷ୍ଟ ଥିଲା । ରୁଷ ଦେଶରେ ଯେଉଁ ଲୋକମାନେ କୁସଂସ୍କାରଗ୍ରସ୍ତ କୃଷିନିର୍ଭରଶୀଳ ଜୀବନଯାପନ କରୁଥିଲେ ଓ ଏକଛତ୍ରବାଦୀ ଜାର୍‌ମାନଙ୍କଦ୍ୱାରା ନିଷ୍ପେଷିତ ହୋଇଥିଲେ, ସେମାନେ ବିପ୍ଲବ ଫଳରେ ଲାଭବାନ୍ ହେଲେ । ସାମ୍ୟବାଦର ନୂତନ ରୂପ ରୁଷ ଦେଶରେ ଦେଖାଦେଲା ଏବଂ ଲେନିନ, ଟ୍ରଟସ୍କି, ଷ୍ଟାଲିନ୍ ଆଦି କମ୍ୟୁନିଷ୍ଟ ନେତାମାନେ କାର୍ଲ ମାର୍କ୍‌ସଙ୍କ ଆଦର୍ଶରେ ସୋଭିଏଟ୍ ସରକାର ଗଢ଼ିଲେ । ତାହା କୃଷକ ଓ ମଜଦୁରମାନଙ୍କ ପାଇଁ ଅଶେଷ ଉତ୍ସାହଜନକ ହୋଇଥିଲା ।

ନାରୀ ସ୍ୱାଧୀନତା କ୍ଷେତ୍ରରେ ମଧ୍ୟ ବିଶ୍ୱଯୁଦ୍ଧର ଅବଦାନ ଉଲ୍ଲେଖଯୋଗ୍ୟ । ପୁରୁଷ ସହ ସମକକ୍ଷ ହୋଇ ନାରୀ ବିଶ୍ୱଯୁଦ୍ଧରେ ସାମରିକ ନ୍ୟାୟ ଲାଭକରିବାକୁ ସମର୍ଥ ହେଲା । ରାଜନୀତି କ୍ଷେତ୍ରରେ ମଧ୍ୟ ସେ ପୁରୁଷର ସମୁଚିତ ନ୍ୟାଯ୍ୟ ଅଧିକାର ପାଇବାକୁ ଯୋଗ୍ୟା ବିବେଚିତ ହେଲା । ଶିକ୍ଷା, କର୍ମସଂସ୍ଥାନ ଓ ଜୀବନଧାରଣର ବିଭିନ୍ନ ପରିପ୍ରେକ୍ଷୀରେ ନାରୀ ପୁରୁଷ ମଧ୍ୟରେ ଥିବା ପାର୍ଥକ୍ୟ ଦୂରୀଭୂତ ହେଲା ।

## ପ୍ୟାରିସ ଶାନ୍ତି-ସମ୍ମିଳନୀ ( The Congress of Paris )

ଯୁଦ୍ଧ ଯେତେବେଳେ ଆରମ୍ଭ ହେଲା, ସେତେବେଳେ ତାର ପରିଣତି ସମ୍ପର୍କରେ କୌଣସି ଦେଶର ଧାରଣା ସଠିକ୍ ନଥିଲା । କେନ୍ଦ୍ରଶକ୍ତି ଓ ମିତ୍ରଶକ୍ତିଙ୍କ ଧାରଣା ଥିଲା ଯେ, ଯୁଦ୍ଧ ଦୀର୍ଘଦିନ ସ୍ଥାୟୀ ହେବନାହିଁ, ଅଳ୍ପଦିନ ମଧ୍ୟରେ ସେମାନେ ବିଜୟୀ ହେବେ; କିନ୍ତୁ ଏହି ବିଜୟ-ସ୍ୱପ୍ନ ସେମାନଙ୍କୁ ଦୀର୍ଘ ସାଢ଼େ ଚାରିବର୍ଷ ନାନା ଧ୍ୱଂସ ଓ କ୍ଲେଶର ସମ୍ମୁଖୀନ କରାଇଲା । ଏହି ଦୀର୍ଘ ସମୟ ପରେ ଯୁଦ୍ଧ ଅବସାନ ହେବାରୁ ସମସ୍ତେ ଶାନ୍ତିର ନିଃଶ୍ୱାସ ମାରିଲେ । ଭବିଷ୍ୟତରେ ଯେପରି ଯୁଦ୍ଧ-ବିଗ୍ରହ ନହେଉ, ସେ ଦିଗରେ ଚିନ୍ତାକରିବାପାଇଁ ଜନନାୟକମାନେ ଏକ ସମ୍ମିଳନୀ ଆହ୍ୱାନ କରିଥିଲେ । ଏହି ସମ୍ମିଳନୀର ଉଦ୍ୟୋକ୍ତା ଥିଲେ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ ଉଡ୍ରୋ ୱିଲସନ୍ । ତାଙ୍କର କୂଟନୀତିକ ବ୍ୟୁତ୍ପତ୍ତି

ଯଥେଷ୍ଟ ନଥିଲା । ସେ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ବଢ଼ିଥିଲେ । ଆମେରିକାର ରାଜନୀତି ସହ ସଂଶ୍ଳିଷ୍ଟ ଥିଲେ ମଧ୍ୟ ଇଉରୋପୀୟ ରାଜନୀତି ସମ୍ପର୍କରେ ତାଙ୍କର ପ୍ରତ୍ୟକ୍ଷ ଜ୍ଞାନ ଆଦୌ ନଥିଲା । ସେ ଥିଲେ ସରଳବିଶ୍ୱାସୀ, ନିଷ୍କପଟ ଆଦର୍ଶବାଦୀ । କୂଟନୀତିକ୍ଷେତ୍ରରେ ସଦାସର୍ବଦା ବନ୍ଧୁ କର୍ଣ୍ଣେଲ ହାଉସ୍‌ଙ୍କ ଉପଦେଶ ଗ୍ରହଣ କରୁଥିଲେ । ଇଉରୋପକୁ ଯାଇ ସେ ପୃଥିବୀରୁ ଯୁଦ୍ଧର କାରଣମାନ ଦୂରକରିବା ସଙ୍ଗେ ସଙ୍ଗେ ଚିରଶାନ୍ତି ପ୍ରତିଷ୍ଠା କରିବା ଲକ୍ଷ୍ୟ ରଖିଥିଲେ । ବିଜୟୀ ଓ ପରାଜିତମାନଙ୍କୁ ନେଇ ଏକ ଶାନ୍ତି-ସମ୍ମିଳନୀରେ ସେ ମିଳାମିଶାଦ୍ୱାରା ପରସ୍ପର ମଧ୍ୟରେ ଥିବା ଅଶାନ୍ତି ଓ କଳହକୁ ଦୂରକରିବାକୁ ମନସ୍ଥ କରିଥିଲେ । ତାଙ୍କର ମିଳାମିଶା ଉଦ୍ୟମ ଓ ଶାନ୍ତିସମ୍ମିଳନୀ ପ୍ରସ୍ତାବକୁ ପ୍ରଥମେ ମିତ୍ରପକ୍ଷର ଅନ୍ୟାନ୍ୟ ରାଷ୍ଟ୍ରମାନେ ଆନ୍ତରିକ ସମର୍ଥନ ଦେଇଥିଲେ । ଉଇଲସନ୍ ସେଥିପ୍ରତି ଭ୍ରୂକ୍ଷେପ କରିନଥିଲେ । ଶେଟେନ୍ଟର ପୃଷ୍ଠପୋଷକ ଭାବରେ ସେ ଚାହୁଁଥିଲେ ଶାନ୍ତିପାଇଁ ଏକ ଅନୁଷ୍ଠାନ ଗଢ଼ିବାକୁ । ସେଥିପାଇଁ ସେ ପ୍ରଥମେ ଜର୍ମାନୀର ଯୁଦ୍ଧବିରତି ପ୍ରସ୍ତାବକୁ ଗ୍ରହଣ କରି-ନେଇଥିଲେ । ବିଜୟୀ ଓ ପରାଜିତ ମନୋବୃତ୍ତି ଶାନ୍ତି ଉଦ୍ୟମକୁ ଭଣ୍ଡୁର କରିପାରେ ବୋଲି ତାଙ୍କର ଆଶଙ୍କା ଥିଲା । ତେଣୁ ଫ୍ରାନ୍ସ ଓ ଇଂଲଣ୍ଡର ଇଚ୍ଛାନୁସାରେ ଯୁଦ୍ଧକୁ ପରିଚାଳିତ କରିବାକୁ ସେ ଅନିଚ୍ଛୁକ ଥିଲେ । ଏହି ମନୋଭାବ ନେଇ ସେ ଚଉଦ ଦଫା-ସମ୍ବଳିତ ଏକ ଘୋଷଣା ପ୍ରକାଶ କରିଥିଲେ । ଏହି ଘୋଷଣାର ସାରମର୍ମ ନିମ୍ନୋକ୍ତ ପ୍ରକାର ଥିଲା :

(୧) ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ପ୍ରକାଶ୍ୟ ଭାବରେ ଚୁକ୍ତି ସମ୍ପାଦିତ ହେବା ଏବଂ ଗୁପ୍ତ ମନ୍ତ୍ରଣା ଓ କୂଟନୀତି ନଷିଦ୍ଧ ହେବା ଆବଶ୍ୟକ ।

(୨) ଶାନ୍ତି ଓ ଯୁଦ୍ଧାବସ୍ଥାରେ ମହାସାଗର ବକ୍ଷରେ ଓ ଉପକୂଳ ଅଞ୍ଚଳରେ ନୌଚାଳନାର ଅବାଧ ସ୍ୱାଧୀନତା ସମସ୍ତେ ଉପଭୋଗ କରିବେ ।

(୩) ଯେତେଦୂର ସମ୍ଭବ ଅର୍ଥନୈତିକ ବୈଷମ୍ୟ ଓ ପ୍ରତିବନ୍ଧକକୁ ଦୂର କରାଯିବ ।

(୪) କେବଳ ଜାତୀୟ ସୁରକ୍ଷାପାଇଁ ଆବଶ୍ୟକୀୟ ସାମରିକ-ଶକ୍ତି ଛଡ଼ା ଅନ୍ୟ ସାମରିକ ପ୍ରସ୍ତୁତି ନଷିଦ୍ଧ ହେବ ।

(୫) ରାଷ୍ଟ୍ରମାନଙ୍କର ଔପନିବେଶିକ ସ୍ୱାର୍ଥରକ୍ଷା ପାଇଁ ବ୍ୟବସ୍ଥା କଲାବେଳେ ଉପନିବେଶର ଅଧିବାସୀମାନଙ୍କ ସ୍ୱାର୍ଥକୁ ବିଚାର କରାଯିବ ।

(୬) ରୁଷିଆର ଅଧିକୃତ ଅଞ୍ଚଳରୁ ଜର୍ମାନ ସୈନ୍ୟ ଅପସାରିତ ହେବେ ।

(୭) ବେଲ୍‌ଜିୟମ୍‌ରୁ ବିଦେଶୀ ସୈନ୍ୟ ଅପସାରଣ ଓ ସେଠାରେ ନିରପେକ୍ଷ ରାଷ୍ଟ୍ରର ପୁନଃପ୍ରତିଷ୍ଠା ହେବ ।

(୮) ଫ୍ରାନ୍ସ ଅଧିକୃତ ଅଞ୍ଚଳରୁ ଜର୍ମାନ ସୈନ୍ୟ ଅପସାରଣ ହେବା ସଙ୍ଗେ ସଙ୍ଗେ ଆଲ୍‌ସେସ ଓ ଲୋରେନ୍ ଅଞ୍ଚଳର ପ୍ରତ୍ୟର୍ପଣ ହେବ ।



( ପ୍ରେସିଡେଣ୍ଟ ଉଡ୍ରୋ ଉଇଲସନ୍ )

(୯) ଇଟାଲୀର ସୀମା ନିର୍ଦ୍ଧାରଣ କରାଯିବ ।

(୧୦) ଅଷ୍ଟ୍ରିଆ ଅଧୀନରେ ଥିବା ଜାତିଗୁଡ଼ିକର ସ୍ୱାଧିକାର ନିର୍ଣ୍ଣୟ ପାଇଁ ସୁଯୋଗ ଦିଆଯିବ ।

(୧୧) ରୁମାନିଆ, ସର୍ବିଆ ଓ ମଣ୍ଟିନିଗ୍ରୋରୁ ସୈନ୍ୟ ଅପସାରଣ ଏବଂ ସର୍ବିଆ ନିମନ୍ତେ ସମୁଦ୍ର ଉପକୂଳକୁ ଯୋଗାଯୋଗ ପାଇଁ ଏକ ରାସ୍ତାର ବ୍ୟବସ୍ଥା ହେବ ।

(୧୨) ତୁର୍କୀର ସାର୍ବଭୌମତ୍ୱ ରକ୍ଷାକରିବା ସଙ୍ଗେ ସଙ୍ଗେ ଅଧୀନସ୍ଥ ଜାତିଗୁଡ଼ିକୁ ସ୍ୱାଧିକାର ନିର୍ଣ୍ଣୟର ସୁଯୋଗ ଦିଆଯିବ ଓ ଡାର୍ଡାନେଲିସକୁ ଆନ୍ତର୍ଜାତୀୟ ନିୟନ୍ତ୍ରଣାଧୀନ କରିବାକୁ ପଡ଼ିବ ।

(୧୩) ପୋଲମାନଙ୍କୁ ନେଇ ସ୍ୱାଧୀନ ପୋଲାଣ୍ଡ ରାଜ୍ୟ ଗଠନ ସଙ୍ଗେ ସଙ୍ଗେ ସମୁଦ୍ର ପର୍ଯ୍ୟନ୍ତ ଗମନାଗମନର ବ୍ୟବସ୍ଥା କରିବାକୁ ହେବ ।

(୧୪) ରାଜନୈତିକ ସ୍ୱାଧୀନତା ଓ ଆଞ୍ଚଳିକ ସଂହତି ରକ୍ଷାପାଇଁ ଏକ ରାଷ୍ଟ୍ରସଙ୍ଘ ପ୍ରତିଷ୍ଠା କରାଯିବ ।

ଏହି ପ୍ରସ୍ତାବଗୁଡ଼ିକରେ ପ୍ରେସିଡେଣ୍ଟ ୱିଲସନଙ୍କ ଆଦର୍ଶବାଦ ପ୍ରତିଫଳିତ । ଜାତୀୟତା ଭିତ୍ତିରେ ସ୍ୱାଧୀନ ରାଜ୍ୟ ଗଠନ, ସମୁଦ୍ରବକ୍ଷରେ ଅବାଧ ନୌଚାଳନ, ଅର୍ଥନୈତିକ ବୈଷମ୍ୟ ଦୂରୀକରଣ, ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ଦିଗରେ ରାଷ୍ଟ୍ରସଙ୍ଘର ପରିକଳ୍ପନା ତାଙ୍କର ନିରପେକ୍ଷ ଆଦର୍ଶବାଦ ସୂଚିତ କରେ । ଏହି ଘୋଷଣା ପାଇଁ ସେ ପ୍ରଥମେ ମିତ୍ରପକ୍ଷର ଅନ୍ୟ ଶକ୍ତିମାନଙ୍କୁ ପରାମର୍ଶ ଦେବାକୁ ଆହ୍ୱାନ କରିନଥିଲେ । ତାଙ୍କର ଆଦର୍ଶ ମିତ୍ରପକ୍ଷଦ୍ୱାରା ଗୃହୀତ ହେବ ବୋଲି ସେ ବିଶ୍ୱାସ କରୁଥିଲେ । ସେହି ଆଶା ନେଇ ସେ ଚତୁର୍ଦ୍ଦଶ ଦଫା ସର୍ତ୍ତ ଘୋଷଣା ପରେ ଇଉରୋପ ଯାତ୍ରାକରିଥିଲେ । ତାଙ୍କ ପୂର୍ବରୁ ଆମେରିକାର କୌଣସି ପ୍ରେସିଡେଣ୍ଟ ଇଉରୋପ ଗସ୍ତରେ ଯାଇନଥିଲେ । ବାସ୍ତବରେ ସେ ଇଉରୋପରେ ବିଶେଷ ସମ୍ମାନ ଓ ଜନପ୍ରିୟତା ଲାଭ କରିଥିଲେ । ପୃଥିବୀକୁ ଯୁଦ୍ଧଦାଉରୁ ରକ୍ଷାକରିଥିବାରୁ ତାଙ୍କୁ 'ମେସିଆ', 'ତ୍ରାଣକର୍ତ୍ତା' ରୂପେ ବର୍ଣ୍ଣନା କରାଯାଇଥିଲା । ତାଙ୍କୁ ଦେଖିବାପାଇଁ ହଜାର ହଜାର ଲୋକ ରାସ୍ତାଘାଟରେ ରୁଣ୍ଡ ହୋଇଥିଲେ ।

ପ୍ରତିଦ୍ୱନ୍ଦ୍ୱିତା ଚୁକ୍ତି ସମ୍ପାଦନବେଳକୁ ଫ୍ରାନ୍ସର ରାଜଧାନୀ ପ୍ୟାରିସ୍ ସହରରେ ଶାନ୍ତି ସମ୍ମିଳନୀର ବୈଠକ ବସିବାର ସ୍ଥିର ହୋଇସାରିଥିଲା । ଜର୍ମାନୀ, ଅଷ୍ଟ୍ରିୟା, ହଙ୍ଗେରୀ, ତୁର୍କୀ ଓ ବୁଲ୍‌ଗେରିଆ—ଏହି ପରାଜିତ ରାଷ୍ଟ୍ରମାନଙ୍କୁ ସେଥିରେ ଯୋଗଦେବାକୁ ନିମନ୍ତ୍ରଣ କରାଯାଇ ନଥିଲା । ତା'ଛଡ଼ା ରୁଷିଆ ମିତ୍ରରାଷ୍ଟ୍ରମାନଙ୍କୁ ଛାଡ଼ି ଯୁଦ୍ଧରୁ ଓହରିଯାଇଥିବାରୁ ତାକୁ ଏହି ସମ୍ମିଳନୀରୁ ବାଦ୍ ଦିଆଯାଇଥିଲା । ପରାଜିତ ରାଷ୍ଟ୍ରମାନଙ୍କୁ ସମ୍ମିଳନୀରେ ଯୋଗଦେବାର ସୁଯୋଗ ଦିଆଯାଇନଥିଲେ ମଧ୍ୟ ବୈଠକ ଶେଷରେ ସନ୍ଧିପତ୍ରରେ ସ୍ୱାକ୍ଷର କରିବାକୁ ସେମାନଙ୍କ ପାଇଁ ନିର୍ଦ୍ଦେଶ ଥିଲା । ଆନୁଷ୍ଠାନିକ ଭାବେ ପଞ୍ଚ ବୃହତ୍ ଶକ୍ତି (ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍ସ, ଇଂଲଣ୍ଡ, ଇଟାଲୀ ଓ ଜାପାନ)ର ଆମନ୍ତ୍ରଣକ୍ରମେ ୧୯୧୯ ମସିହା ଜାନୁୟାରୀ ୧୮ ତାରିଖ ଦିନ ଶାନ୍ତିସମ୍ମିଳନୀର ବୈଠକ ପ୍ୟାରିସ୍‌ଠାରେ ଆରମ୍ଭ ହୋଇଥିଲା । ସମ୍ମିଳନୀ ୨୭ଟି ମିତ୍ର ଓ ସହଯୋଗୀ ରାଷ୍ଟ୍ରମାନଙ୍କୁ ନେଇ ଗଠିତ ହୋଇଥିଲା । ଏହି ସମ୍ମିଳନୀର ଉଦ୍ଦେଶ୍ୟ ଥିଲା, ଯୁଦ୍ଧ ସମ୍ପର୍କୀୟ ବିଷୟଗୁଡ଼ିକର ନିଷ୍ପତ୍ତି କରିବା ଏବଂ ପୃଥିବୀରେ ଶାନ୍ତି ଏବଂ ନ୍ୟାୟର ରାଜତ୍ୱ ପ୍ରତିଷ୍ଠା କରିବା । ଆଂଶିକ

ଭାବରେ ସୁବିଧାଦୃଷ୍ଟିରୁ ଓ ମୁଖ୍ୟତଃ ଜର୍ମାନୀ ଯେଉଁ ସ୍ଥାନରେ ଏବଂ ଯେଉଁ ଅଟ୍ଟାଳିକାରେ (ଭର୍ସାଇଲ ରାଜପ୍ରାସାଦରେ) ୧୮୭୧ ମସିହାରେ ଫ୍ରାନ୍ସର ପରାଜୟ ଉତ୍ସବ ପାଳନ କରିଥିଲା, ଠିକ୍ ସେହି ସ୍ଥାନରେ ଏବଂ ସେହି ଅଟ୍ଟାଳିକାରେ ଜର୍ମାନୀକୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ପ୍ୟାରିସ୍ ଶାନ୍ତିସମ୍ମିଳନୀ ପାଇଁ ମନୋନୀତ ହୋଇଥିଲା । ଅନ୍ୟ ସନ୍ଧିଗୁଡ଼ିକ ପରି ଏଠାକାର ସନ୍ଧି ଆପୋଷ-ଆଲୋଚନାର ବିଷୟବସ୍ତୁ ନଥିଲା ଏବଂ ଏହା ବିଜେତା-ମାନଙ୍କଦ୍ୱାରା ପୂର୍ବରୁ ପ୍ରସ୍ତୁତ ହୋଇ ପରାଜିତ ଶତ୍ରୁକୁ ପ୍ୟାରିସ୍‌କୁ ଡକରା ହୋଇ ତାହା ହସ୍ତାନ୍ତର କରାଯାଇଥିଲା ।

ପ୍ୟାରିସରେ ସମ୍ମିଳନୀ ବସୁଥିବାରୁ ଫ୍ରାନସକୁ ଏକପ୍ରକାର ନିମନ୍ତ୍ରଣକାରୀ ବୋଲି ଧରିନିଆଯାଇଥିଲା ଏବଂ ଫ୍ରାନ୍ସର ପ୍ରେସିଡେଣ୍ଟ ପଏନ୍‌କେୟାର ଆନୁଷ୍ଠାନିକଭାବେ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ । ଯୁଦ୍ଧକୁ ସେ ମାନବଜାତିର ଧର୍ମଯୁଦ୍ଧ (Crusade of humanity) ବୋଲି ବର୍ଣ୍ଣନା କରିଥିଲେ ଓ ଏହାର ଫଳାଫଳକୁ ନ୍ୟାୟର ଜୟ ବୋଲି ଘୋଷଣା କରିଥିଲେ ଏବଂ ସମ୍ମିଳନୀ କେଉଁ ଲକ୍ଷ୍ୟ ରଖି ଗଠିତହେବ, ତାର ସୂଚନା ଦେଇ ବକ୍ତୃତା ଶେଷ କରିଥିଲେ । ସେ କହିଥିଲେ, "ଠିକ୍ ଏହି ଦିନ ୪୮ ବର୍ଷ ପୂର୍ବେ ୧୮ ଜାନୁୟାରୀ ୧୮୭୧ ମସିହାରେ ଗୋଟିଏ ଆକ୍ରମଣକାରୀ ସେନାବାହିନୀଦ୍ୱାରା ଭର୍ସାଇଲ ରାଜପ୍ରାସାଦରେ ଜର୍ମାନ ସାମ୍ରାଜ୍ୟ ଘୋଷଣା କରାଯାଇଥିଲା ଏବଂ ଏହା ଫ୍ରାନ୍ସର ଦୁଇଟି ପ୍ରଦେଶ ଅପହରଣ କରାଯାଇ ପ୍ରତିଷ୍ଠିତ କରାଯାଇଥିଲା । ତେଣୁ ଏହାକୁ ପ୍ରାରମ୍ଭରୁ ଅପବିତ୍ର କରାଯାଇଥିଲା ଏବଂ ପ୍ରତିଷ୍ଠାତାମାନଙ୍କର ତ୍ରୁଟିଯୋଗୁ ଏହାର ଜନ୍ମ ହୋଇଥିଲା ଅନ୍ୟାୟରେ । ଏହା ବିସ୍ମୃତି-ଗର୍ଭରେ ଲୀନ ହୋଇଯାଇଛି । ଆପଣମାନେ ଅନ୍ୟାୟର ପ୍ରତିକାର କରିବା ପାଇଁ ଏବଂ ଭବିଷ୍ୟତରେ ଏହାର ପୁନରାବୃତ୍ତିର ପ୍ରତିରୋଧ କରିବାପାଇଁ ଏଠାରେ ସମବେତ ହୋଇଛନ୍ତି । ପୃଥିବୀର ଭବିଷ୍ୟତ ଆପଣମାନଙ୍କ ହାତରେ ଅଛି । ଭଦ୍ରମହୋଦୟଗଣ, ଆପଣମାନଙ୍କର ଗମ୍ଭୀର ଅନୁଧ୍ୟାନ ପାଇଁ ଆପଣମାନଙ୍କ ଉପରେ ଛାଡ଼ିଦେଉଛି ଏବଂ ପ୍ୟାରିସ ସମ୍ମିଳନୀର ଉଦ୍‌ଘାଟନ ଘୋଷଣା କରୁଛି ।" ଫରାସୀ ପ୍ରେସିଡେଣ୍ଟ ପଏନ୍‌କେୟାର ବକ୍ତୃତା ଫ୍ରାନ୍ସର ଜର୍ମାନୀ ବିରୁଦ୍ଧରେ ପ୍ରତିହିଂସା ମନୋଭାବର ସ୍ପଷ୍ଟ ସୂଚନା ଦିଏ । ସେ ଯାହାହେଉ ପଏନ୍‌କେୟାର ପ୍ୟାରିସ ସମ୍ମିଳନୀ ଉଦ୍‌ଘାଟନ କଲାପରେ ଫ୍ରାନ୍ସର ପ୍ରଧାନମନ୍ତ୍ରୀ କ୍ଲିମେନ୍ସ୍ୟୁଙ୍କୁ ହର୍ଷଧ୍ୱନି ମଧ୍ୟରେ ସମ୍ମିଳନୀର ସଭାପତି ରୂପେ ନିର୍ବାଚିତ କରାଯାଇଥିଲା । ଏହି ସମ୍ମିଳନୀକୁ ନୂତନ ବ୍ୟବସ୍ଥାର ଭିତ୍ତିପତ୍ତନ କରିବାକୁ ଏବଂ ନୂତନ ରୂପ ଦେବାକୁ ପଡ଼ିଥିଲା । କାହାଠାରୁ ନିର୍ଦ୍ଦେଶ ନ ପାଇ ବୃହତ୍ ଶକ୍ତିମାନେ ସନ୍ଧି-ବ୍ୟବସ୍ଥା ନିର୍ଣ୍ଣୟ କରିବା ଅଧିକାର ବଳପୂର୍ବକ ଗ୍ରହଣ କରିଥିଲେ । ଅବିଳମ୍ବେ ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଇଟାଲୀ ଓ ଜାପାନ—ଏହି ପାଞ୍ଚ ରାଷ୍ଟ୍ର ସମ୍ମିଳନୀରେ ନିଜର ପ୍ରାଧାନ୍ୟ ବିସ୍ତାର କରିଥିଲେ । ମନେହେଲା ଯେ ଏହିମାନେ କେବଳ ଯୁଦ୍ଧକୁ ନିଷ୍ପତ୍ତିମୂଳକ କରିଛନ୍ତି ଏବଂ ପୋଲାଣ୍ଡ ଏବଂ ରୁମାନିୟା ପରି କ୍ଷୁଦ୍ର ରାଷ୍ଟ୍ରଗୁଡ଼ିକୁ ଯାହା କିଛି ଦିଆଯିବ, ତାହା

ସେମାନଙ୍କୁ ଗ୍ରହଣ କରିବାକୁ ପଡ଼ିବ । ପ୍ୟାରିସ ସମ୍ମିଳନୀ ପରି ଏତେ ବଡ଼ ଏକ ସମ୍ମିଳନୀ ପକ୍ଷରେ ଏପରି କଠିନ କାର୍ଯ୍ୟ ବିଚକ୍ଷଣତା ଓ କ୍ଷିପ୍ରତା ସହିତ ସମ୍ପାଦନ କରିବା ଅସମ୍ଭବ ମନେହେଲା । ତେଣୁ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ ଏବଂ ଅନ୍ୟ ଚାରୋଟି ବୃହତ୍ ଶକ୍ତିଙ୍କର ପ୍ରଧାନମନ୍ତ୍ରୀମାନଙ୍କ ସହିତ ଏହି ପଞ୍ଚ ବୃହତ୍ ଶକ୍ତିଙ୍କର ବୈଦେଶିକ ମନ୍ତ୍ରୀ ବା ସଚିବମାନେ ମିଳି ଏକ ଦଶଜଣିଆ ପରିଷଦ ଗଠନ କରିଥିଲେ । ଭବିଷ୍ୟତରେ ରାଜନୈତିକ ବ୍ୟବସ୍ଥା ଏବଂ ପରାଜିତ ଶତ୍ରୁମାନଙ୍କ ପାଇଁ ସନ୍ଧିସର୍ତ୍ତ ଆଦିର ଖଠା ପ୍ରସ୍ତୁତ କରିବା ଦାୟିତ୍ୱ ପଞ୍ଚ ବୃହତ୍ ଶକ୍ତିଙ୍କଦ୍ୱାରା ଗଠିତ ଦଶଜଣିଆ ପରିଷଦ ଉପରେ ନ୍ୟସ୍ତ ହେଲା । ସେମାନେ ଆଲୋଚନା ବିତର୍କ ଦ୍ୱାରା ସନ୍ଧିସର୍ତ୍ତ ସବୁ ଚୂଡ଼ାନ୍ତ କରିବାକୁ ଚାହିଁଥିଲେ । କିନ୍ତୁ ଏହି କ୍ଷୁଦ୍ର ଗୋଷ୍ଠୀଦ୍ୱାରା ବେଶି ଦିନ ଯାଏ ସନ୍ଧିସର୍ତ୍ତ ବିଷୟରେ ଗୋପନୀୟତା ରକ୍ଷାକରିବା ସମ୍ଭବପର ହୋଇନଥିଲା; କେତେକ ଗୋପନୀୟ ବିଷୟ ପ୍ରକାଶ ପାଇଯାଇଥିଲା । ତେଣୁ ମାର୍ଚ୍ଚ ମାସ ମଧ୍ୟଭାଗରେ ନିଷ୍ପତ୍ତି ନିଆଗଲା ଯେ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ ଓ ଇଂଲଣ୍ଡ, ଫ୍ରାନ୍ସ ଏବଂ ଇଟାଲୀର ପ୍ରଧାନମନ୍ତ୍ରୀମାନେ କେବଳ ମିଳିତ ହେବେ ଏବଂ ପ୍ରଧାନ ପ୍ରଶ୍ନଗୁଡ଼ିକ ବିଷୟରେ ନିଷ୍ପତ୍ତି ନେବେ । ମୋଟ-ଉପରେ ସମ୍ମିଳନୀ ଆନୁଷ୍ଠାନିକ ଭାବେ ସେମାନଙ୍କର ନିଷ୍ପତ୍ତିକୁ ଗ୍ରହଣ କରିନେବେ ବୋଲି ଧରିନିଆଯାଇଥିଲା । ସମ୍ମିଳନୀ ପ୍ରକୃତରେ ଉଇଲସନ୍, ଲଏଡ୍ ଜର୍ଜ, କ୍ଲିମେନ୍ସୁ ଏବଂ ଓର୍ଲାଣ୍ଡୋଙ୍କୁ ନେଇ ଗଠିତ ହୋଇଥିଲା । ଏହି ଚାରି ଜଣ ବୃଦ୍ଧଲୋକ ଏକ ନୂତନ ପୃଥିବୀ ଗଢ଼ିବାର ଭାର ନେଇଥିଲେ । ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଅଭିଜ୍ଞ କୂଟନୀତିଜ୍ଞ ନ ଥିଲେ ।

ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ ପ୍ୟାରିସ ସମ୍ମିଳନୀରେ ଜଣେ ଧୂର୍ତ୍ତ ରାଜନୀତିଜ୍ଞ ଥିଲେ । ନିର୍ବାଚନବେଳେ ଦେଇଥିବା ପ୍ରତିଶ୍ରୁତିକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସେ ପ୍ୟାରିସ୍ ଯାଇଥିଲେ । ସ୍ୱାର୍ଥସାଧନ ନିମନ୍ତେ ନିଜର ନୀତି ଓ ମତ ବଦଳାଇବାକୁ ସେ ଦ୍ୱିଧା ବୋଧ କରୁନଥିଲେ । ବାକ୍‌ଚାତୁରୀ ଓ ପ୍ରବଞ୍ଚନାଦ୍ୱାରା ସେ ତାଙ୍କର ଲକ୍ଷ୍ୟସାଧନ କରିବାକୁ ସକ୍ଷମ ହୋଇଥିଲେ । ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ, ରାଜନୀତିକ ଅଭିଜ୍ଞତା, ଜର୍ମାନମାନଙ୍କ ବିରୁଦ୍ଧରେ ଥିବା ଘୃଣା ଆଦିକୁ ସେ ଠିକ୍ ରୂପେ ନିୟୋଜିତ କରିଥିଲେ । ଯୁକ୍ତରାଷ୍ଟ୍ରର ପ୍ରତିନିଧିତ୍ୱ କରିଥିଲେ ପ୍ରେସିଡେଣ୍ଟ ଉଇଲସନ୍ । ସେ ଇଉରୋପର ପରିସ୍ଥିତି ସହିତ ବିଶେଷ ପରିଚିତ ନ ଥିଲେ । ତାଙ୍କର ମନ କଳ୍ପନା-ରାଜ୍ୟରେ ବିଚରଣ କରୁଥିବାରୁ ସେ ବଡ଼ ଅସୁବିଧାରେ ପଡ଼ୁଥିଲେ । ସେ ପ୍ରକୃତରେ ଥିଲେ ଜଣେ ଉଚ୍ଚମନା ଆଦର୍ଶବାଦୀ । ଗଣତନ୍ତ୍ର ପ୍ରତିଷ୍ଠା ପାଇଁ ପୃଥିବୀକୁ ନିରାପଦ ରଖିବାକୁ ସେ ଚାହୁଁଥିଲେ । ମାନବସମାଜର ଭବିଷ୍ୟତ ନିରାପତ୍ତା ପାଇଁ ସେ କେତେକ ଆଦର୍ଶକୁ ବାସ୍ତବ ରୂପରେଖ ଦେବା ହିଁ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଏବଂ ସେହି ଲକ୍ଷ୍ୟ ପୂରଣ ଉଦ୍ଦେଶ୍ୟରେ ଇଉରୋପ ଯାତ୍ରାକରିଥିଲେ । ଜଣେ

ପର୍ଯ୍ୟବେକ୍ଷକଙ୍କ ମତରେ ଉଇଲସନ୍ ସନ୍ଧିସୂତ୍ରରେ ଉତ୍ସାହିତ କରିବା ଫଳରେ ପ୍ୟାରିସ ବୈଠକରେ ବହୁ ଜଟିଳତା ସୃଷ୍ଟି ହୋଇଥିଲା । ଅନ୍ୟ ଜଣେ ପ୍ରତ୍ୟକ୍ଷଦର୍ଶୀଙ୍କ ମତରେ ସେ ଉଦାସଭାବ ପ୍ରକାଶ କରୁଥିଲେ ଏବଂ ସେଠାରେ ପ୍ରଶ୍ନଗୁଡ଼ିକର ବିଚାର ଆରମ୍ଭ କରିବାପାଇଁ ଅନ୍ୟମାନଙ୍କ ହାତରେ ଛାଡ଼ିଦେଉଥିଲେ । ଯେଉଁ ବିଷୟରେ ତାଙ୍କର ପ୍ରକୃତ ଆଗ୍ରହ ଥିଲା, ତାହା ଦୃଢ଼ତା ସହିତ ସେ ଉପସ୍ଥାପିତ କରୁଥିଲେ ଏବଂ ସମ୍ମିଳନୀଦ୍ୱାରା ଗୃହୀତ



ଇଉରୋପର ଚାରି ବଡ଼ ନେତା :
ବାମରୁ ଡାହାଣକୁ—ଲଏଡ୍ ଜର୍ଜ, ଓର୍ଲାଣ୍ଡୋ, କ୍ଲେମେନ୍ସ୍ୟୁ ଏବଂ ଉଇଲସନ୍
( ବ୍ରାଉନ୍ ଭ୍ରାତାମାନଙ୍କ ଆନୁକୂଲ୍ୟରେ )

ହେବା ପାଇଁ ପ୍ରବଳ ଉଦ୍ୟମ କରୁଥିଲେ । ସମ୍ମିଳନୀରେ ତାଙ୍କଠାରୁ ଆଉ କେହି ଅଧିକ ପରିଶ୍ରମ କରୁନଥିଲେ । ତାଙ୍କର ସ୍ୱାଧୀନ ଚିନ୍ତା ଓ ମତ ଯୋଗୁ ସେ ବହୁଦେଶରୁ ଅନୁରୋଧ ନିବେଦନ ପାଉଥିଲେ ଏବଂ ବହୁ ଦେଶର ପ୍ରତିନିଧି, ବ୍ୟକ୍ତିବିଶେଷ ତାଙ୍କ ନିକଟରେ ପହଞ୍ଚୁଥିଲେ । ଏତେ କାର୍ଯ୍ୟବ୍ୟସ୍ତ ଥାଇ ମଧ୍ୟ ସେ ଧୈର୍ଯ୍ୟ ହରାଇ ନ ଥିଲେ । ଇଟାଲୀର ନେତା ଥିଲେ ପ୍ରଧାନମନ୍ତ୍ରୀ ଭିଟୋରିଓ ଓର୍ଲାଣ୍ଡୋ । ସେ ଅତି ଚତୁର ଓ ବାଙ୍ମୀ

ଥିଲେ । ତାଙ୍କର ନ୍ୟାୟ-ଅନ୍ୟାୟ ବିଗ୍ଭର କରିବାର ଶକ୍ତି ଥିଲା । ସେ ଅନ୍ୟମାନଙ୍କ ଅପେକ୍ଷା ସମସ୍ୟାର ବିଶ୍ଳେଷଣ ଓ ବ୍ୟାଖ୍ୟା ଅଧିକ ପ୍ରାଞ୍ଜଳଭାବରେ କରିବାକୁ ସକ୍ଷମ ଥିଲେ । ଜର୍ମାନୀର ଭାଗ୍ୟ ବିଷୟରେ ତାଙ୍କର ଦେଶ ଆଦୌ ସଂପୃକ୍ତ ହେବାକୁ ଗ୍ଭହୁଁ ନ ଥିବାରୁ ଏବଂ ତାଙ୍କ ଦେଶର ସ୍ୱାର୍ଥ-ବହିର୍ଭୂତ କୌଣସି ସମସ୍ୟା ବିଷୟରେ ମୁଣ୍ଡ ପୂରାଇବାକୁ ଗ୍ଭହୁଁ ନ ଥିବାରୁ ସେ ଶାନ୍ତି ଆଲୋଚନାରେ ସକ୍ରିୟ ଭୂମିକା ଗ୍ରହଣ କରିବାକୁ ରାଜି ନ ଥିଲେ । ତା'ଛଡ଼ା ସେ ଇଂରେଜୀ ଭାଷାରେ ଅନଭିଜ୍ଞ ଥିବାରୁ କେତେକ ଅସୁବିଧାର ମଧ୍ୟ ସମ୍ମୁଖୀନ ହୋଇଥିଲେ । ସମ୍ମିଳନୀରେ ଫ୍ରାନ୍‌ସର ପ୍ରତିନିଧିତ୍ୱ କରିଥିଲେ ପ୍ରଧାନମନ୍ତ୍ରୀ ଜର୍ଜ କ୍ଲିମେନସ୍ୟୁ । ସେ 'ଟାଇଗର' ନାମରେ ଅଧିକ ପରିଚିତ ଥିଲେ । ଉଭୟ ଇଂରାଜୀ ଏବଂ ଫରାସୀ ଭାଷାରେ ସେ ପ୍ରବୀଣ ଥିଲେ ଏବଂ ସେ ଇଉରୋପୀୟ ପ୍ରଶ୍ନଗୁଡ଼ିକ ସହିତ ସମସ୍ତଙ୍କଠାରୁ ଅଧିକ ପରିଚିତ ଥିଲେ । ସେ ବୟୋଜ୍ୟେଷ୍ଠ ଥିବାରୁ ଏବଂ ଫରାସୀ ନଗରୀରେ ସମ୍ମିଳନୀ ଆହୂତ ହୋଇଥିବାରୁ ସମ୍ମାନପୂର୍ବକ ତାଙ୍କୁ ସମ୍ମିଳନୀର ସଭାପତି ପଦ ଅର୍ପଣ କରାଯାଇଥିଲା । ସେ ସମ୍ମିଳନୀ ପରିଗ୍ଭଳନା କରିବାରେ ଅତି ନିପୁଣ ଥିଲେ । ସେ ଗ୍ଭହିଁଲେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କୁ ଧମକେଇ ତାଙ୍କ କାମ ହାସଲ କରିନେଉଥିଲେ । ତାଙ୍କର ସମ୍ମିଳନୀ ପ୍ରତି ବିଶେଷତଃ କ୍ଷୁଦ୍ର ରାଷ୍ଟ୍ରମାନଙ୍କ ପ୍ରତି ବ୍ୟବହାର ବେଳେବେଳେ ଅତି ନିଷ୍ଠୁର ଥିଲା । ସେ ତାଙ୍କର ସହକର୍ମୀମାନଙ୍କୁ ଆଭ୍ୟନ୍ତରୀଣ ପରିଷଦରେ (inner council) ଚତୁରତାର ସହିତ ତାଙ୍କ ସପକ୍ଷକୁ ଆଣିପାରିଥିଲେ । ମନୁଷ୍ୟଚରିତ୍ରର ଦୋଷ-ଗୁଣ ବିଗ୍ଭର କରିବାରେ ସେ ଅତି ଦକ୍ଷ ଥିଲେ । ତେଣୁ ସମ୍ଭବତଃ ସେ ଜାଣିପାରୁଥିଲେ କେବେ ଏବଂ କେଉଁ ପରିମାଣରେ ସଫଳତା ଲାଭ କରିବାକୁ ସେ ଆଶା କରିପାରନ୍ତି ଓ କେବେ ତାଙ୍କୁ ଏକ ଆଲୋଚ୍ୟ ବିଷୟ ତ୍ୟାଗକରିବାକୁ ହେବ । ତା'ଛଡ଼ା ଫ୍ରାନ୍‌ସର ଭବିଷ୍ୟତ ନିରାପତ୍ତା ପାଇଁ ଜର୍ମାନୀକୁ ଦୁର୍ବଳ କରି ରଖିବା ତାଙ୍କର ପ୍ରଥମ ଏବଂ ପ୍ରଧାନ ଲକ୍ଷ୍ୟ ଥିଲା ।

ଗ୍ଭରି ବୃହତ୍ ଶକ୍ତିଙ୍କ ବ୍ୟତୀତ ଗ୍ରୀସ୍, ପୋଲଣ୍ଡ, ଜାପାନ, ବେଲଜିୟମ, ଜେକୋସ୍ଲୋଭାକିଆ, ରୁମାନିଆ, ଦକ୍ଷିଣ-ଆଫ୍ରିକା, ଲେବାନନ୍, କୋରିଆ ପ୍ରଭୃତି ଦେଶରୁ ପ୍ରତିନିଧିମାନେ ନିମନ୍ତ୍ରିତ ହୋଇ ସମ୍ମିଳନୀରେ ଯୋଗଦେଇଥିଲେ । ବୈଠକରେ ଯୋଗଦେବା ସମୁଦାୟ ଦେଶସଂଖ୍ୟା ଥିଲା ସତେଇଶ ଏବଂ ସେମାନଙ୍କ ପ୍ରତିନିଧିସଂଖ୍ୟା ଥିଲା ସତୁରି । ସେମାନେ ସଭିଏଁ ଫରାସୀ ସରକାରଙ୍କ ଅତିଥି ହୋଇଥିଲେ । ସମ୍ମିଳନୀ ଦେଖିବାପାଇଁ ବହୁସଂଖ୍ୟକ ସାମ୍ବାଦିକ ଓ ବିଦେଶୀ ଆଗନ୍ତୁକ ପ୍ୟାରିସ୍ ସହରରେ ଆସି ପହଞ୍ଚିଥିଲେ । ହୋଟେଲମାନଙ୍କରେ ଘୋର ସ୍ଥାନାଭାବ ପଡ଼ିଥିଲା ।

ଉଇଲସନଙ୍କ ଆଦର୍ଶବାଦ ପ୍ରତି ସମ୍ମାନ ଦେଖାଇ ପ୍ୟାରିସ ଶାନ୍ତି ସମ୍ମିଳନୀ ପ୍ରଥମେ ରାଷ୍ଟ୍ରସଂଘ (League of Nations) ପ୍ରତିଷ୍ଠା ବିଷୟ ଆଲୋଚନା କରିଥିଲେ । ଉଇଲସନ୍ ଭାବୁଥିଲେ ଯେ କ୍ଷୁଦ୍ର ସ୍ୱାର୍ଥ ବା ସଂକୀର୍ଣ୍ଣ ସ୍ୱାର୍ଥମୂଳକ ସମସ୍ୟା ପ୍ରଥମେ ଆଲୋଚିତ ହେଲେ ବୃହତ୍ ସମସ୍ୟା ସମାଧାନ ପାଇଁ ସମୟର ଅଭାବ ହେବ । ତେଣୁ

ରାଷ୍ଟ୍ରସଂଘ ପ୍ରସ୍ତାବ ପ୍ରଥମେ ଆଲୋଚିତ ହେଲା । ଉଇଲସନ୍‌ଙ୍କ ସଭାପତିତ୍ୱରେ ସାଂବିଧାନିକ କମିଟି ରାଷ୍ଟ୍ରସଂଘର ସଂବିଧାନ ପ୍ରସ୍ତୁତ କରିଥିଲା । ସେ ଚାହିଁଥିଲେ ରାଷ୍ଟ୍ରସଂଘକୁ ଅତି ଶକ୍ତିଶାଳୀ କରି ଗଢ଼ିବାକୁ । ଏହି ରାଷ୍ଟ୍ରସଂଘ ଅନୁଷ୍ଠାନ ଆନ୍ତର୍ଜାତୀୟ ଦୃଷ୍ଟିକୋଣରୁ ପ୍ୟାରିସ ଶାନ୍ତି ସମ୍ମିଳନୀର ସର୍ବଶ୍ରେଷ୍ଠ ଅବଦାନ । ତାଙ୍କ ଇଚ୍ଛା ପ୍ରତି ସମ୍ମାନ ପ୍ରଦର୍ଶନ-ପୂର୍ବକ ଭର୍ସାଇଲ ସନ୍ଧି ସହିତ ରାଷ୍ଟ୍ରସଂଘର କଭେନାଣ୍ଟ ( ଚୁକ୍ତିପତ୍ର )କୁ ସଂଯୋଗ କରାଯାଇଥିଲା; ଅର୍ଥାତ୍ ଭର୍ସାଇଲ ସନ୍ଧି ଯେଉଁ ଦେଶ ଗ୍ରହଣ କରିବ, ସେ ଦେଶକୁ ରାଷ୍ଟ୍ରସଂଘ ମଧ୍ୟ ଗ୍ରହଣ କରିବାକୁ ବାଧ୍ୟ ।

ଫ୍ରାନ୍ସର ଭବିଷ୍ୟତ ନିରାପତ୍ତା ସମ୍ପର୍କରେ କ୍ଲିମେନ୍‌ସ୍ୟୁ ଅତିଶୟ ଉଦ୍‌ବିଗ୍ନ ଥିଲେ । ସେ ଭାବୁଥିଲେ ଯେ ଅନାଗତ ଆଶଙ୍କା ବିରୁଦ୍ଧରେ ଫ୍ରାନ୍ସକୁ ସୁରକ୍ଷିତ କରି ନ ପାରିଲେ ପ୍ୟାରିସ ସମ୍ମିଳନୀର ସକଳ ବ୍ୟବସ୍ଥା ନିରର୍ଥକ ହେବ । ସେଥିପାଇଁ ସେ ରାଇନ ନଦୀକୁ ଜର୍ମାନୀର ରାଜନୈତିକ ସୀମାରେଖା ହେବାପାଇଁ ଦାବି କରିଥିଲେ । ରାଇନ ନଦୀର ପଶ୍ଚିମ ତୀରରେ ଦଶହଜାର ବର୍ଗମାଇଲ୍ ଅଞ୍ଚଳ ମିତ୍ରପକ୍ଷ ଅଧୀନରେ ରଖିବାକୁ ସେ ମଧ୍ୟ ପ୍ରସ୍ତାବ ଦେଇଥିଲେ । ତା'ଛଡ଼ା ଆଲସେସ୍ ଲୋରେଇନ୍ ଫେରସ୍ତ ପାଇଁ ଦାବି ଜଣାଇଥିଲେ । ଆଲ୍‌ସେସ୍ ଲୋରେଇନ ବିଷୟରେ ଅବଶ୍ୟ କାହାରି ଆପତ୍ତି ନଥିଲା । ସେ ପୁଣି ଚାହୁଁଥିଲେ ଯେ, ଜର୍ମାନୀର ଉପନିବେଶରୁ ଫ୍ରାନ୍ସକୁ କିଛି ମିଳୁ, ଜର୍ମାନୀଠାରୁ ଯୁଦ୍ଧ-କ୍ଷତିପୂରଣ ଅତିରେ ଆଦାୟ ହେଉ ଏବଂ ଜର୍ମାନ ସଶସ୍ତ୍ର ବାହିନୀର ବିଲୋପସାଧନ ହେଉ । ଏହିସବୁ ପ୍ରଶ୍ନନେଇ ବୃହତ୍ ଶକ୍ତିମାନଙ୍କ ମଧ୍ୟରେ ତୀବ୍ର ବାକ୍ୟ ବିନିମୟ ହୋଇଥିଲା । ଫ୍ରାନ୍ସକୁ ଆଶ୍ୱସ୍ତକରିବା ପାଇଁ ରାଇନ ନଦୀର ପୂର୍ବପଟେ ପଚାଶ କିଲୋମିଟର ଅଞ୍ଚଳରେ ସାମରିକ ବ୍ୟବସ୍ଥା କରିବା ନିଷିଦ୍ଧ ହେଲା । ସେ ଅଞ୍ଚଳର କୋଲନ, କବ୍ଲେଞ୍ଜ ଏବଂ ମେଞ୍ଜ ଆଦି ଖଣିଜ ସମ୍ପଦଭରା ସ୍ଥାନଗୁଡ଼ିକ ଫ୍ରାନ୍ସ ନିୟନ୍ତ୍ରଣରେ ଯଥାକ୍ରମେ ପାଞ୍ଚବର୍ଷ, ଦଶବର୍ଷ ଓ ପନ୍ଦର ବର୍ଷପାଇଁ ରଖାଗଲା । ଖଣିଜ ସମ୍ପଦ ଓ ନାନା ଶିଳ୍ପକାରଖାନାଭରା 'ସାର୍' ଅଞ୍ଚଳ ଜର୍ମାନୀ ପାଇଁ ଅତି ଅମୂଲ୍ୟ ସମ୍ପଦ ଥିଲା । ଯୁଦ୍ଧ-କ୍ଷତିପୂରଣ ଆଦାୟ କରିବା ବାଟରେ ଅଟଳ ଥିବାରୁ ଫ୍ରାନ୍ସ ଜର୍ମାନୀର 'ସାର୍' ଅଞ୍ଚଳ ଉପରେ ଆଖି ରଖିଥିଲା । ଅବଶ୍ୟ ଐତିହାସିକ ବା ରାଜନୈତିକ ଦୃଷ୍ଟିକୋଣରୁ 'ସାର୍' ଉପରେ ଫ୍ରାନ୍ସର କୌଣସି ଅଧିକାର ନଥିଲା । ତଥାପି ଚତୁଃବୃହତ୍‌ଶକ୍ତି (ଇଂଲଣ୍ଡ, ଫ୍ରାନ୍ସ, ଯୁକ୍ତରାଷ୍ଟ୍ର, ଆମେରିକା, ଇଟାଲୀ)ଙ୍କର ପରିଷଦ (Council of Big Four)ରେ 'ସାର୍' ସମସ୍ୟା ଏକ ରାଜନୈତିକ ସଙ୍କଟ ସୃଷ୍ଟି କରିଥିଲା । ଉଇଲ୍‌ସନ 'ସାର୍' ଅଞ୍ଚଳକୁ ଜର୍ମାନୀଠାରୁ ବିଚ୍ଛିନ୍ନ କରିବାକୁ ସିଧାସଳଖ ମନାକରିଦେଲେ । ଲଏଡ଼ ଜର୍ଜ ଉଇଲସନ୍‌ଙ୍କୁ ଏ ବିଷୟରେ ସମର୍ଥନ କରିଥିଲେ ଏବଂ 'ସାର୍' ଅଞ୍ଚଳ ଫ୍ରାନ୍ସକୁ ଦେଇ ଆଉ ଏକ 'ନୂତନ ଆଲ୍‌ସେସ୍ ଲୋରେଇନ୍' ସୃଷ୍ଟି କରିବା ବିରୁଦ୍ଧରେ ଉଇଲ୍‌ସନ୍‌ଙ୍କ ମତକୁ ଗ୍ରହଣ କରିନେଇଥିଲେ । ସେ ମଧ୍ୟ ସାମରିକ ଦଖଲ ପରିକଳ୍ପନାର ବିରୋଧ କରିଥିଲେ । ଉଇଲ୍‌ସନ 'ସାର୍' ଅଞ୍ଚଳ ହସ୍ତାନ୍ତରକରଣର

କେବଳ ବିରୋଧ କରିନଥିଲେ; ସେ ମଧ୍ୟ ଲର୍ଡ଼ କର୍ଜନଙ୍କର ଫ୍ରାନ୍ସକୁ 'ସାର୍' କୋଇଲା ଖଣିଗୁଡ଼ିକ ସ୍ଥାୟୀଭାବରେ ଛାଡ଼ିଦେବା ପ୍ରସ୍ତାବର ବିରୋଧ କରିଥିଲେ । ଏଥିରେ କ୍ଲିମାନ୍ସୁ ରାଗିଯାଇ ଉଇଲ୍‌ସନଙ୍କୁ ଜର୍ମାନୀର ସମର୍ଥକ ବୋଲି ଅଭିଯୁକ୍ତ କରିଥିଲେ ଏବଂ ସମ୍ମିଳନୀ ଛାଡ଼ିଯିବା ପାଇଁ ଧମକ ଦେଇଥିଲେ । ଉଇଲସନ୍ ମଧ୍ୟ ନିଜେ ସମ୍ମିଳନୀ ଛାଡ଼ି ଚାଲିଯିବେ ବୋଲି କହିଥିଲେ । ସେ ବଡ଼ ହତୋତ୍ସାହ ହୋଇପଡ଼ିଥିଲେ । ଫଳରେ ଏକ ଆପୋଷ ନିଷ୍ପତ୍ତି ହେଲା । ଏହି ସମସ୍ୟା ସମାଧାନ ପାଇଁ ଏକ କମିଟି ଗଠିତ ହୋଇଥିଲା । ଏହି କମିଟିର ପରାମର୍ଶକ୍ରମେ ସ୍ଥିରହେଲା ଯେ, ଫ୍ରାନ୍ସକୁ 'ସାର୍' ଅଞ୍ଚଳର କୋଇଲାଖଣିର ମାଲିକାନା ସ୍ୱତ୍ୱ ଦିଆଯିବ । ସେଠାରେ ଫରାସୀ ଭାଷାରେ ଶିକ୍ଷାଦାନପାଇଁ ସ୍କୁଲ ପ୍ରତିଷ୍ଠିତ ହେବ ଓ ଫ୍ରାନ୍ସର ମୁଦ୍ରା ପ୍ରଚଳିତ ହେବ; କିନ୍ତୁ ଶାସନ ବ୍ୟବସ୍ଥା ରାଷ୍ଟ୍ରସଙ୍ଘ ତତ୍ତ୍ୱାବଧାନରେ ଚାଲିବ । ପନ୍ଦର ବର୍ଷ ପରେ ସେଠାକାର ଅଧିବାସୀମାନେ ଗଣଭୋଟଦ୍ୱାରା ନିଜର ରାଜନୈତିକ ଭବିଷ୍ୟତ ନିର୍ଣ୍ଣୟ କରିବେ ଏବଂ ସେମାନେ ଯଦି ଜର୍ମାନୀ ସହିତ ରହିବା ସ୍ଥିର କରନ୍ତି, ତେବେ କୋଇଲା ଖଣିଗୁଡ଼ିକୁ ଉଚିତ ମୂଲ୍ୟ ଦେଇ ଫ୍ରାନସଠାରୁ ଜର୍ମାନୀ କିଣିନେବ ।

ଶାନ୍ତିସମ୍ମିଳନୀର ଆଉ ଏକ ସମସ୍ୟା ଥିଲା ଯୁଦ୍ଧ-କ୍ଷତିପୂରଣ । ଆଲ୍‌ସେସ୍ ଲୋରେନ ଏବଂ ଯୁଦ୍ଧ ସମୟରେ ଅଧିକାର କରିଥିବା ସମସ୍ତ ଅଞ୍ଚଳ ଜର୍ମାନୀ ଛାଡ଼ିଦେବା ସ୍ଥିର ହେଲା । ଯୁଦ୍ଧକ୍ଷତିର ପରିମାଣ ଅଳ୍ପ ସମୟ ମଧ୍ୟରେ ନିର୍ଣ୍ଣୟ କରିବା ସମ୍ଭବପର ହେଲା ନାହିଁ । ତା'ଛଡ଼ା କ୍ଷତିପୂରଣ ବିଷୟରେ ବହୁତ ଆଲୋଚନା ହେଲା । ପ୍ରଥମେ ଅବଶ୍ୟ ପ୍ରସ୍ତାବ ଦିଆଯାଇଥିଲା ଯେ ମିତ୍ରଶକ୍ତିମାନେ ଏବଂ ସେମାନଙ୍କର ସହଯୋଗୀ ରାଷ୍ଟ୍ରମାନେ ଯୁଦ୍ଧ ବାବଦରେ ଯେତେ ଖର୍ଚ୍ଚ କରିଛନ୍ତି, ତାହା ଜର୍ମାନୀ ଏବଂ ଅନ୍ୟ ପରାଜିତ ଶକ୍ତିମାନେ ବହନ କରିବେ; କିନ୍ତୁ ପୁଣିର ବିଷୟ, ପରେ ସେହି ପ୍ରସ୍ତାବ ପରିତ୍ୟାଗ କରାଯାଇଥିଲା । ତା'ଛଡ଼ା କ୍ଷତିପୂରଣ ବିଷୟରେ ବିଭିନ୍ନ ରାଷ୍ଟ୍ର ବିଭିନ୍ନ ମତ ଦେଇଥିଲେ । ତେଣୁ କ୍ଷତିପୂରଣ ବାବଦ ଅର୍ଥର ପରିମାଣ ସ୍ଥିର କରାଯାଇ ପାରିଲା ନାହିଁ । ଶେଷରେ ଯୁଦ୍ଧକ୍ଷତିର ପରିମାଣ ନିର୍ଣ୍ଣୟ କରିବାପାଇଁ ଏକ କମିସନ ବସାଯାଇଥିଲା । ଜର୍ମାନୀଠାରୁ କଡ଼ାକଡ଼ି ହିସାବକରି ଯୁଦ୍ଧ-କ୍ଷତିପୂରଣ ଆଦାୟ କରିବା ଦିଗରେ ଇଂଲଣ୍ଡ ଓ ଫ୍ରାନ୍ସର ଜନମତ ଦାବି କରୁଥିଲା । ସେ ଦିଗରେ ଲର୍ଡ଼ କର୍ଜ ଇଂଲଣ୍ଡର ନିର୍ବାଚନବେଳେ ଭୋଟରମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଇଂଲଣ୍ଡ ଓ ଫ୍ରାନ୍ସ ଜର୍ମାନୀଠାରୁ କ୍ଷତିପୂରଣ ବାବଦ ଯଥେଷ୍ଟ ଅର୍ଥ ଆଦାୟ କରିବାକୁ ଚାହିଁଥିଲେ; କିନ୍ତୁ ପରେ ଅର୍ଥର ପରିମାଣ କମେଇଦିଆଯାଇଥିଲା ।

ଯୁକ୍ତରାଷ୍ଟ୍ର ଆମେରିକାର ମିତ୍ରରାଷ୍ଟ୍ରମାନେ ଯୁଦ୍ଧବେଳେ ଇଟାଲୀକୁ ସେମାନଙ୍କ ପକ୍ଷକୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏବଂ ଜାପାନକୁ ସେମାନଙ୍କ ପକ୍ଷରୁ ଓହରିଯିବା ଉଦ୍ଦେଶ୍ୟରେ ସେମାନଙ୍କ ସହିତ ଗୁପ୍ତଚୁକ୍ତିଦ୍ୱାରା ଆବଦ୍ଧ ହୋଇଥିବାରୁ ଉଇଲସନଙ୍କୁ ତାଙ୍କର ଚୌଦ ଦଫା-ସମ୍ବଳିତ ଘୋଷଣାପତ୍ର ବିଷୟରେ ତାଙ୍କର ମିତ୍ରରାଷ୍ଟ୍ରମାନଙ୍କ ସହିତ

କେତେକ ସାଲିସ୍ କରିବାକୁ ପଡ଼ିଥିଲା । ବର୍ତ୍ତମାନ ପ୍ରଶ୍ନ ଉଠୁଛି କାହିଁକି ବିନା ଅନୁସନ୍ଧାନରେ ଉଇଲସନ୍ ଜର୍ମାନ ଟାଇରଲମାନଙ୍କୁ ତାଙ୍କ ନୀତି ଲଙ୍ଘନ କରି ଇଟାଲୀକୁ ହସ୍ତାନ୍ତର କରିବାକୁ ରାଜି ହୋଇଗଲେ ଏବଂ ଜାପାନର ଅସଙ୍ଗତ ଦାବିକୁ ପ୍ରତିରୋଧ କରିବା ସତ୍ତ୍ୱେ ସ୍ୱୀକାର କଲେ । ଏପରି କରିବାଦ୍ୱାରା ଉଇଲ୍‌ସନ ତାଙ୍କର ପ୍ରଶଂସାକାରୀମାନଙ୍କର ଆସ୍ଥା ହରାଇଥିଲେ । ଉଇଲସନଙ୍କର ନୀତି ପରିବର୍ତ୍ତନ ଯୋଗୁ ଲୋକମାନଙ୍କ ମନରେ ହତାଶଭାବ ଦେଖାଦେଇଥିଲା ଏବଂ ସମଗ୍ର ପ୍ୟାରିସ୍‌ରେ ଲୋକମାନଙ୍କର ଦମ୍ଭ ଭାଙ୍ଗି ପଡ଼ିଥିଲା । ଉଇଲସନଙ୍କୁ ଏପରି କରିବାକୁ ପଡ଼ିଥିଲା; କାରଣ ସେ ରାଷ୍ଟ୍ରସଙ୍ଘ ପ୍ରତିଷ୍ଠା ବିଷୟରେ ନିଶ୍ଚିତ ହେବାକୁ ଚାହିଁଥିଲେ ଏବଂ ସେ ଅନୁଭବ କରିଥିଲେ ଯେ, ତାଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ପରିକଳ୍ପନାର ସଫଳତା ପାଇଁ ତାଙ୍କୁ କିଛି ତ୍ୟାଗ କରିବାକୁ ପଡ଼ିବ । ପ୍ରକୃତରେ ଉଇଲସନ ସଂପୂର୍ଣ୍ଣଭାବେ ରାଷ୍ଟ୍ରସଙ୍ଘ ପ୍ରତିଷ୍ଠା କରାଇପାରିଥିଲେ । ଫ୍ରାନ୍‌ସ, ଇଂଲଣ୍ଡ, ଇଟାଲୀ ଏବଂ ଜାପାନ ଯାହା ଚାହିଁଥିଲେ, ସେଥିରୁ ଅଧିକାଂଶ ପାଇଥିଲେ । ଉଇଲସନଙ୍କର ଦୃଢ଼ଧାରଣା ହୋଇଥିଲା ଯେ ରାଷ୍ଟ୍ରସଙ୍ଘ ପ୍ରକୃତରେ ଯଦି ଶକ୍ତିଶାଳୀ ହୁଏ, ପୃଥିବୀର ଅନ୍ୟାନ୍ୟ ସମସ୍ୟାଗୁଡ଼ିକ ସହଜରେ ସମାଧାନ ହୋଇପାରିବ ।

## ଭର୍ସାଇଲ ସନ୍ଧି (୧୯୧୯)

## (The Treaty of Versailles-1919)

ପ୍ରଥମ ବିଶ୍ୱଯୁଦ୍ଧରେ ଜର୍ମାନୀ, ଅଷ୍ଟ୍ରିୟା-ହଙ୍ଗେରୀ, ତୁର୍କୀ ଓ ବୁଲଗେରିଆ ସମ୍ମିଳିତ ଭାବେ କେନ୍ଦ୍ରଶକ୍ତି ନାମରେ ଅଭିହିତ ହେଉଥିଲେ । ପ୍ୟାରିସ୍ ବୈଠକରେ ଜର୍ମାନୀ ସହିତ ଭର୍ସାଇଲ୍ ସନ୍ଧି, ଅଷ୍ଟ୍ରିୟା ସହିତ ସେଣ୍ଟ ଜର୍ମାନ ସନ୍ଧି, ହଙ୍ଗେରୀ ସହିତ ଟ୍ରିୟାନନ୍ ସନ୍ଧି, ତୁର୍କୀ ସହିତ ସେଭରେସ ଓ ଲଉସେନ୍ ସନ୍ଧି ଏବଂ ବୁଲଗେରିଆ ସହିତ ନିଉଲି ସନ୍ଧି ସ୍ୱାକ୍ଷରିତ ହୋଇଥିଲା ।

ତନ୍ମଧ୍ୟରୁ କେବଳ ଭର୍ସାଇଲ ସନ୍ଧି ବିଷୟରେ ନିମ୍ନରେ ଆଲୋଚନା କରାଗଲା ।

ପ୍ୟାରିସ୍ ଆଲୋଚନାରେ ଯୋଗଦେବା ଜର୍ମାନୀର ଇଚ୍ଛା ନଥିଲା । ପ୍ରସ୍ତାବିତ ସନ୍ଧିର ଛଟା ବର୍ଲିନକୁ ଆଣି, ବିସ୍ତୃତ-ବିମର୍ଶ ପରେ ମିତ୍ରପକ୍ଷକୁ ଉତ୍ତରଦେବା ଉଚିତ ହେବ ବୋଲି ଜର୍ମାନୀ ସରକାର ଭାବୁଥିଲେ; କିନ୍ତୁ ମିତ୍ରପକ୍ଷ ସେଥିରେ ରାଜି ହେଲେ ନାହିଁ । ଫଳରେ ଜର୍ମାନ ବୈଦେଶିକ ମନ୍ତ୍ରୀ ଫନ୍ ବ୍ରକ୍‌ଡର୍ଫ ରାଣ୍ଟସାହଙ୍କ ଅଧିନାୟକତ୍ୱରେ ଛ'ଜଣ ପ୍ରତିନିଧି ପ୍ୟାରିସ୍ ଯାତ୍ରାକରିଥିଲେ । ପ୍ୟାରିସ୍ ଉପସ୍ଥିତିକାଳରେ ସେମାନଙ୍କୁ ନାନା ଭାବରେ ଅପମାନିତ ଓ ଲାଞ୍ଛିତ ହେବାକୁ ପଡ଼ିଥିଲା । ସ୍ୱାଧୀନ ଭାବରେ ବୁଲିବାପାଇଁ ସେମାନେ ଅନୁମତି ପାଇନଥିଲେ । ସଶସ୍ତ୍ର ପ୍ରହରୀ ସେମାନଙ୍କୁ ହୋଟେଲ ମଧ୍ୟରେ ଜଗିରହିଥିଲେ । କାହା ସହିତ କଥାବାର୍ତ୍ତା ପାଇଁ ମଧ୍ୟ ସେମାନଙ୍କୁ ଅନୁମତି ମିଳୁନଥିଲା ।

୧୯୧୯ ମସିହା ମେ’ ମାସ ୭ ତାରିଖ ଦିନ ପ୍ରସ୍ତାବିତ ପ୍ରକାଶିତ ଦଫା-ସମ୍ବଳିତ ସନ୍ଧିସର୍ତ୍ତ ଭର୍ସାଇଲ୍ ରାଜପ୍ରାସାଦରେ କ୍ଲିମାନସ୍ୟୁ ଜର୍ମାନ ପ୍ରତିନିଧିମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି, ତହିଁରେ ଦସ୍ତଖତ ପାଇଁ ସେମାନଙ୍କୁ ମାତ୍ର ତିନି ସପ୍ତାହ ସମୟ ଦେଲେ । ଜର୍ମାନୀର ବିଭିନ୍ନ ପତ୍ରପତ୍ରିକା ଓ ସମ୍ବାଦପତ୍ରରେ ସନ୍ଧିସର୍ତ୍ତ ପ୍ରକାଶିତ ହୁଅନ୍ତେ, ଜନମତ ଉତ୍ତେଜିତ ହୋଇଉଠିଲା । କାରଣ ସନ୍ଧିର ସର୍ତ୍ତମାନ ଅତି କଠୋର ଓ ନିର୍ମମ ଥିଲା । ଜର୍ମାନମାନେ ଭାବିଥିଲେ ଯେ, ଉଇଲସନଙ୍କ ଚତୁର୍ଦ୍ଦଶ ଦଫା ଘୋଷଣା ଅନୁସାରେ ସନ୍ଧିର ଶର୍ତ୍ତ ପ୍ରସ୍ତୁତ ହେବ । ମିତ୍ରପକ୍ଷର ସହୃଦୟତା ଉପରେ ସେମାନେ ଆସ୍ଥା ରଖିଥିଲେ । କିନ୍ତୁ ବାସ୍ତବରେ ମିତ୍ରପକ୍ଷ ଉଇଲସନଙ୍କର ଘୋଷଣା ପ୍ରତି ବିଶେଷ ଗୁରୁତ୍ୱ ନଦେବାରୁ ସେମାନେ ଉତ୍ତେଜିତ ହୋଇପଡ଼ିଲେ । ସନ୍ଧିର ସର୍ତ୍ତ ପରିବର୍ତ୍ତିତ ହେବାର ସମ୍ଭାବନା ନଥିଲା; ବରଂ ତାହା ଗ୍ରହଣ ନ କଲେ ମିତ୍ରପକ୍ଷ ପୁଣି ଯୁଦ୍ଧ କରିବାର ଧମକ ଦେଲେ । ତହିଁରେ ଭୟଭୀତ ହୋଇ ଜୁନ ୨୨ ତାରିଖ ଦିନ ଘୋର ଅନିଚ୍ଛାସତ୍ତ୍ୱେ ଜର୍ମାନୀ ସନ୍ଧିସର୍ତ୍ତ ଗ୍ରହଣ କଲା । ଅବଶ୍ୟ ଇତିମଧ୍ୟରେ ଜର୍ମାନ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ ଏବଂ ନୂତନ ମନ୍ତ୍ରିମଣ୍ଡଳ ଦାୟିତ୍ୱ ଗ୍ରହଣ କରିଥିଲେ । ଜର୍ମାନୀର ଏହି ନୂତନ ସରକାର ସନ୍ଧିସର୍ତ୍ତ ଗ୍ରହଣ କରିଥିଲେ । ବୈଦେଶିକ ମନ୍ତ୍ରୀ ମ୍ୟୁଲର୍ ଏବଂ ଉପନିବେଶ ମନ୍ତ୍ରୀ ଜୋହାନ୍ସ ବେଲ୍ ସନ୍ଧିପତ୍ରରେ ସ୍ୱାକ୍ଷର କରିବାକୁ ପ୍ୟାରିସ ଯାତ୍ରାକଲେ । ୧୮୭୧ ମସିହା ଜାନୁୟାରୀ ୨୦ ତାରିଖ ଦିନ ଭର୍ସାଇଲ ରାଜପ୍ରାସାଦର ଯେଉଁ ପ୍ରକୋଷ୍ଠରେ ପ୍ରଥମ ଉଇଲିୟମ୍‌ଙ୍କୁ ଜର୍ମାନୀର ସମ୍ରାଟ ଭାବରେ ଅଭିଷିକ୍ତ କରାଯାଇଥିଲା ଏବଂ ଫ୍ରାନ୍ସକୁ ଆଲସେସ୍ ଲୋରେନ ହସ୍ତାନ୍ତର କରିବାକୁ ବାଧ୍ୟ କରାଯାଇଥିଲା, ସେହି ପ୍ରକୋଷ୍ଠରେ ମ୍ୟୁଲର୍ ଏବଂ ବେଲ୍ ସନ୍ଧିର ନିର୍ମମ ସର୍ତ୍ତମାନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଆଲସେସ୍ ଲୋରେନ୍ ଫ୍ରାନ୍ସକୁ ଫେରାଇ ଦେବାକୁ ବାଧ୍ୟ ହୋଇଥିଲେ ।

‘ଭର୍ସାଇଲ୍ ସନ୍ଧି’ରେ ଦୁଇ ପ୍ରକାର ସର୍ତ୍ତ ସନ୍ନିବିଷ୍ଟ ଥିଲା । ପ୍ରଥମତଃ ଯୁଦ୍ଧ ଅପରାଧ ପାଇଁ ଶାସ୍ତି ଓ ପ୍ରାୟଶ୍ଚିତ୍ତ ପାଇଁ ସର୍ତ୍ତ ଏବଂ ଦ୍ୱିତୀୟତଃ ଭବିଷ୍ୟତରେ ବିଶ୍ୱଶାନ୍ତିକୁ ବିପନ୍ନ ନ କରିବା ଉଦ୍ଦେଶ୍ୟରେ ସର୍ତ୍ତ ବ୍ୟବସ୍ଥା । ପ୍ରଥମ ପର୍ଯ୍ୟାୟର ସର୍ତ୍ତ ଅନୁସାରେ ଜର୍ମାନୀ ଫ୍ରାନ୍ସକୁ ଆଲ୍‌ସେସ୍, ଲୋରେନ୍ ଏବଂ ବେଲଜିୟମ୍‌କୁ ମର୍ସେନେଟ୍, ଇଉପେନ୍ ଓ ମ୍ୟାଲମେଡ଼ି ଅଞ୍ଚଳ ଫେରାଇ ଦେଲା, ଡେନ୍‌ମାର୍କକୁ ଉତ୍ତର ସ୍ଲେସଭିଗ୍ ଅଞ୍ଚଳ ଫେରସ୍ତ ମିଳିଲା । ସାଇଲେସିଆର କିୟଦଂଶ, ପୂର୍ବ-ପ୍ରୁସିୟାର ଏକ ଅଂଶ ପୋଲାଣ୍ଡ ପାଇଲା । ଡାନଜିଗ୍ ନଗରୀକୁ ସ୍ୱାଧୀନ ଭାବରେ ରାଷ୍ଟ୍ରସଙ୍ଘ (League of Nations) ତତ୍ତ୍ୱାବଧାନରେ ରଖାଗଲା । ଜର୍ମାନୀର ଉତ୍ତର-ପୂର୍ବରେ ଥିବା ବଲ୍‌ଟିକ ବନ୍ଦର ମେମେଲକୁ ମିତ୍ରପକ୍ଷ ଅଧୀନରେ ରଖାଗଲା ଏବଂ ପାଞ୍ଚବର୍ଷ ପରେ ତାକୁ ଏକ ସ୍ୱତନ୍ତ୍ର ଅଙ୍ଗ (independent unit) ରୂପେ ଲିଥୁଆନିୟାର ଅନ୍ତର୍ଭୁକ୍ତ କରାଗଲା । ଜର୍ମାନୀ ପୋଲାଣ୍ଡର ବ୍ୟବସାୟ-ବାଣିଜ୍ୟ ସୁବିଧା ପାଇଁ ବଲ୍‌ଟିକ୍ ସାଗର ଯାଏଁ ଏକ ସଂକୀର୍ଣ୍ଣ ରାସ୍ତା ବା ପୋଲିସ କରିଡ଼ର

(Polish Corridor) ଜର୍ମାଣ ସକାଶେ ପଶ୍ଚିମ-ପ୍ରୁସିଆର ଏକ ଅଂଶ ଛାଡ଼ିଦେଇଥିଲା । ଫ୍ରାନ୍‌ସର ଉତ୍ତର ପଟେ ଜର୍ମାନୀ ଫ୍ରାନ୍‌ସର କୋଇଲାଖଣିଗୁଡ଼ିକ ନଷ୍ଟକରି ଦେଇଥିବାରୁ ତା'ର କ୍ଷତିପୂରଣ ବାବଦ ଜର୍ମାନୀ ସାର୍ ଉପତ୍ୟକାର କୋଇଲାଖଣିଗୁଡ଼ିକ ନିଜର ସ୍ୱାର୍ଥରେ ଲଗାଇବା ଲାଗି ଫ୍ରାନ୍‌ସକୁ ପନ୍ଦର ବର୍ଷପାଇଁ ଅଧିକାର ଦେଇଥିଲା । ସାର୍ ଉପତ୍ୟକାର କୋଇଲାଖଣି ଫ୍ରାନ୍‌ସର ଅକ୍ତିଆରରେ ରହିଲେ ମଧ୍ୟ ସେଠାର ଶାସନଭାର ରାଷ୍ଟ୍ରସଙ୍ଘ ଉପରେ ପନ୍ଦର ବର୍ଷପାଇଁ ନ୍ୟସ୍ତ କରାଗଲା ଏବଂ ପନ୍ଦର ବର୍ଷ ପୂରିଗଲା ପରେ ଗଣଭୋଟ କରିଆରେ ସାର୍ ଉପତ୍ୟକାର ଲୋକମାନେ ନିଷ୍ପତ୍ତି କରିବେ, ପ୍ରକୃତରେ ସାର ଉପତ୍ୟକା ରାଷ୍ଟ୍ରସଙ୍ଘର ଅଧୀନରେ ରହିବ ନା ଜର୍ମାନୀ ଅଧୀନକୁ ନା ଫ୍ରାନ୍‌ସ ଅଧୀନକୁ ଯିବ । ତା'ଛଡ଼ା ଜର୍ମାନୀ ଇଉରୋପରେ ତା'ର କେତେକ ଅଞ୍ଚଳ ହରାଇବା ସଙ୍ଗେ ସଙ୍ଗେ ତାକୁ ତାହାର ଦରିଆପାରି ରାଜ୍ୟ ହରାଇବାକୁ ପଡ଼ିଥିଲା । ସେ ତାର ଆଫ୍ରିକାସ୍ଥ ଉପନିବେଶଗୁଡ଼ିକ ଉପରୁ ଅଧିକାର ତ୍ୟାଗ କରିଥିଲା । ସୁଦୂର-ପ୍ରାଚ୍ୟରେ ଥିବା ଜର୍ମାନ ଉପନିବେଶ କିଆଚୌ ଜାପାନକୁ ଦିଆଗଲା । ବିଦେଶରେ ଥିବା ଜର୍ମାନ ସମ୍ପତ୍ତି ବାଜ୍ୟାପ୍ତ ହୋଇଗଲା । ଅନ୍ୟାନ୍ୟ ଉପନିବେଶଗୁଡ଼ିକ ମିତ୍ରପକ୍ଷ କବଳିତ କରିନେଲେ ଏବଂ ଚୀନ, ଶ୍ୟାମ, ମିଶର ପ୍ରଭୃତି ଦେଶରେ ମିଳିଥିବା ବ୍ୟାବସାୟିକ ସୁବିଧାରୁ ଜର୍ମାନୀ ବଞ୍ଚିତ ହେଲା । ବର୍ଲିନ-ବାଗ୍‌ଦାଦ ରେଳପଥରେ ସେ ଯେଉଁ ପୁଞ୍ଜି ଖଟାଇଥିଲା, ତାହା ମଧ୍ୟ ହରାଇଲା । ଜର୍ମାନୀକୁ ତାହାର ଦୁଇଟି ବନ୍ଦର—ହ୍ୟାମବର୍ଗ ଓ ଷ୍ଟେଟିନ୍‌ରେ ଦୁଇଟି ଅଞ୍ଚଳ ଅବାଧରେ ବ୍ୟବହାର କରିବାପାଇଁ ଚେକୋସ୍ଲୋଭାକିଆକୁ ୯୦ ବର୍ଷ ସକାଶେ ପଟ୍ଟାଦେବାକୁ ପଡ଼ିଥିଲା । ଆବଶ୍ୟକ ହେଲେ ମିତ୍ରରାଷ୍ଟ୍ରଗୁଡ଼ିକରେ ଥିବା ଜର୍ମାନୀର ସମସ୍ତ ସମ୍ପତ୍ତି ସେମାନଙ୍କର ପ୍ରାପ୍ୟ ପରିଶୋଧ ପାଇଁ ଜର୍ମାନୀ ଛାଡ଼ିଦେବ ବୋଲି ପ୍ରତିଶ୍ରୁତି ଦେଇଥିଲା । ସେ ମିତ୍ରଶକ୍ତିମାନଙ୍କର ପଣ୍ୟବାହୀ ଜାହାଜଗୁଡ଼ିକ ଧ୍ୱଂସ କରିଦେଇଥିବାରୁ ତାର କ୍ଷତିପୂରଣ ବାବଦ ସେଗୁଡ଼ିକର ସ୍ଥାନପୂରଣ କରିବାପାଇଁ ତାକୁ ଜାହାଜ କିମ୍ବା ଅର୍ଥ ଦେବାକୁ ବାଧ୍ୟ କରାଯାଇଥିଲା । ଜର୍ମାନୀ ସମୁଦାୟ କେତେ କ୍ଷତିପୂରଣ ଦେବ, ତାହା ନିର୍ଣ୍ଣୟ କରିବାପାଇଁ ଏକ ରିପାରେସନ୍ କମିସନ (Reparation Commission) ନିଯୁକ୍ତ କରାଯାଇଥିଲା । ଅବଶ୍ୟ କମିସନ ଯଥାସମୟରେ ନିଯୁକ୍ତ ହୋଇ କ୍ଷତିପୂରଣ ବାବଦ ଜର୍ମାନୀକୁ ୬୬୦ କୋଟି ପାଉଣ୍ଡ (୧୩୨ ବିଲିଅନ ସ୍ୱର୍ଣ୍ଣ ମାର୍କ) ଦେବାକୁ ହେବ ବୋଲି ସ୍ଥିର କରାଯାଇଥିଲା । ରାଇନ୍ ନଦୀକୁ ଏକ ଆନ୍ତର୍ଜାତୀୟ କମିସନଙ୍କ ଅଧୀନରେ ରଖାଗଲା । ଏଲବ, ଡାନ୍ୟୁବ, ଓଡର ଓ ନମେନ ନଦୀଗୁଡ଼ିକୁ ଆନ୍ତର୍ଜାତୀୟକରଣ କରାଯାଇଥିଲା; ଅର୍ଥାତ୍ ଏହି ନଦୀଗୁଡ଼ିକ ବାଣିଜ୍ୟ ପାଇଁ ସ୍ୱାଧୀନ ଜଳପଥରୂପେ ଘୋଷିତ ହେଲେ । କିଏଲ୍ କେନାଲରେ ମଧ୍ୟ ନୌଚାଳନ ଅଧିକାର ସବୁ ଦେଶ ପାଇଲେ । ରାଇନ ଅଞ୍ଚଳରେ ମିତ୍ରପକ୍ଷର ନିୟନ୍ତ୍ରଣବାହିନୀ ମହଜୁଦ ହୋଇ ରହିଲେ । କାଇଜର ଓ ଆଉ କେତେକ ତୁଙ୍ଗ ଜର୍ମାନ ନେତାଙ୍କ ଯୁଦ୍ଧ ଅପରାଧପାଇଁ ବିଚାର କରିବାର ଅଧିକାର ମିତ୍ରପକ୍ଷ ପାଇଲେ ।

ଦ୍ୱିତୀୟ ପର୍ଯ୍ୟାୟର ସର୍ତ୍ତଗୁଡ଼ିକ ମଧ୍ୟରେ ଉଲ୍ଲେଖନୀୟ ସର୍ତ୍ତ ଥିଲା ଜର୍ମାନୀର ସାମରିକ ଶକ୍ତିର ହ୍ରାସ ସାଧନ କରିବା ଓ ଜର୍ମାନ ସାମରିକବାଦ ବିରୁଦ୍ଧରେ ଇଉରୋପକୁ ରକ୍ଷାକରିବା ଉଦ୍ଦେଶ୍ୟରେ ଜର୍ମାନୀର ସୈନ୍ୟ ଓ ସାମରିକ ଅଫିସରଙ୍କ ସଂଖ୍ୟା କମାଇଦେବା । ତେଣୁ ସେନାବାହିନୀରେ ଉଭୟ ସୈନ୍ୟ ଓ ସାମରିକ ଅଫିସର ମିଶି ଏକଲକ୍ଷ ରହିବେ ବୋଲି ସ୍ଥିର କରାଗଲା ଏବଂ ସର୍ତ୍ତ ରଖାଗଲା ଯେ ସାମରିକ ଅଫିସରଙ୍କ ସଂଖ୍ୟା ଚାରିହଜାରରୁ ଊର୍ଦ୍ଧ୍ୱ ହେବ ନାହିଁ । ଧାରାବାହିକ ଭାବରେ ସାମରିକ କର୍ମଚାରୀମାନଙ୍କର ପରିବର୍ତ୍ତନ ରୋକିବା ଉଦ୍ଦେଶ୍ୟରେ ସାମରିକ ଅଫିସରମାନଙ୍କୁ ପଚିଶ ବର୍ଷ ଏବଂ ସାଧାରଣ ସୈନ୍ୟମାନଙ୍କୁ ଅନ୍ତତଃ ବାରବର୍ଷ ଜର୍ମାନ ସେନାବାହିନୀର ତାଲିକାଭୁକ୍ତ ହେବାକୁ ପଡ଼ିବ ବୋଲି ସ୍ଥିର ହେଲା । ସର୍ବଜନୀନ ସାମରିକ ସେବା (Universal Military Service) ଉଠାଇ ଦିଆଯାଇଥିଲା । ଅର୍ଥାତ୍ ବାଧ୍ୟତାମୂଳକ ଭାବେ ସୈନ୍ୟଶ୍ରେଣୀଭୁକ୍ତ କରିବା ନିଷେଧ କରାଯାଇଥିଲା । ଜର୍ମାନ ସେନାବାହିନୀ କେବଳ ରାଜ୍ୟ ମଧ୍ୟରେ ଶାନ୍ତି-ଶୃଙ୍ଖଳା ରକ୍ଷାକରିବା ଏବଂ ସୀମାନ୍ତ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ନିଜକୁ ଉତ୍ସର୍ଗ କରିବେ ବୋଲି ନିଷ୍ପତ୍ତି କରାଯାଇଥିଲା । ସେନାବାହିନୀ ସୀମିତ ହେବା ସଙ୍ଗେ ସଙ୍ଗେ ଯୁଦ୍ଧଜାହାଜ ନିର୍ମାଣ ନିଷିଦ୍ଧ ହେଲା । ବ୍ୟୋମଯାନ ନିର୍ମାଣପାଇଁ ଜର୍ମାନୀକୁ ଅନୁମତି ଦିଆଗଲା ନାହିଁ । ସାମରିକ ଅସ୍ତ୍ରଶସ୍ତ୍ର ଉତ୍ପାଦନ ନିୟନ୍ତ୍ରଣ କରାଗଲା । ହେଲିଗୋଲ୍ୟାଣ୍ଡର (ଦୁର୍ଗଦ୍ୱାର) ଦୃଢ଼ୀକରଣ ବ୍ୟବସ୍ଥାକୁ ଭାଙ୍ଗି ଦିଆଯାଇଥିଲା । ରାଇନ ଲ୍ୟାଣ୍ଡକୁ ବେସାମରିକକରଣ ( demilitarised ) କରାଗଲା । ରାଇନ ନଦୀରେ ଡାହାଣ ତଥା ବାମ ତଟର ନିର୍ଦ୍ଦିଷ୍ଟ ଦୂରତା ମଧ୍ୟରେ ଦୁର୍ଗ ସଂରକ୍ଷଣ ଓ ନିର୍ମାଣ ନିଷିଦ୍ଧ ହେଲା । ଏହିସବୁ ସର୍ତ୍ତ ଠିକ୍‌ଭାବରେ ପାଳନ କରାଯାଉଛି କି ନାହିଁ, ସତର୍କ ଦୃଷ୍ଟିଦେବାପାଇଁ ମିତ୍ରଶକ୍ତିମାନେ ଏକ ଦଖଲକାରୀ ସୈନ୍ୟବାହିନୀ ରାଇନ୍‌ର ପଶ୍ଚିମପଟ ଅଞ୍ଚଳରେ ଅବସ୍ଥାପିତ କରିବାକୁ ସୁଯୋଗ ପାଇବା ସଙ୍ଗେ ସଙ୍ଗେ ତାର ଡାହାଣ ତଟରେ ତିନୋଟି ସେତୁମୁଖ (three bridge heads) ପନ୍ଦର ବର୍ଷ ନିମନ୍ତେ ନିୟନ୍ତ୍ରଣ କରିବାକୁ ମଧ୍ୟ ସୁଯୋଗ ପାଇଥିଲେ । ପରିଶେଷରେ କାଇଜର ଦ୍ୱିତୀୟ ଉଇଲିୟମ୍‌ଙ୍କୁ ଯୁଦ୍ଧସୃଷ୍ଟିକର୍ତ୍ତା ରୂପେ ନୈତିକ ଦୃଷ୍ଟିକୋଣରୁ ଅକ୍ଷମଣୀୟ ଅପରାଧୀ ବୋଲି ସାବ୍ୟସ୍ତ କରାଗଲା ଏବଂ ତାଙ୍କ ବିଚାର ପାଇଁ ମିତ୍ରରାଷ୍ଟ୍ରମାନଙ୍କ ହାତରେ ତାଙ୍କୁ ସମର୍ପଣ କରିବାକୁ ନିଷ୍ପତ୍ତି କରାଗଲା; କିନ୍ତୁ କାଇଜର ସେତେବେଳେ ହଲାଣ୍ଡରେ ଆଶ୍ରୟ ଗ୍ରହଣ କରିଥିବାରୁ ବିଚାରର ସମ୍ମୁଖୀନ ହେବା ଲାଞ୍ଛନାରୁ ମୁକ୍ତ ପାଇପାରିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ସୃଷ୍ଟିର ଦାୟିତ୍ୱ କେବଳ ଜର୍ମାନୀକୁ ଗ୍ରହଣ କରିବାପାଇଁ ବାଧ୍ୟ କରାଯାଇଥିଲା । ତେଣୁ ଜର୍ମାନୀଠାରୁ କ୍ଷତିପୂରଣ ଆଦାୟପାଇଁ ବିଧିବଦ୍ଧ ବ୍ୟବସ୍ଥା ହୋଇଥିଲା । ଏହି ବାବଦରେ ସର୍ତ୍ତମାନ ଆମେରିକାର କୂଟନୀତିଜ୍ଞ ଜନ୍ ଫଷ୍ଟର ଡଲେସ୍ ପ୍ରସ୍ତୁତ କରିଥିଲେ । ତାଙ୍କ ପରାମର୍ଶ ଅନୁସାରେ ସମ୍ପୂର୍ଣ୍ଣ ଦେୟର ପରିମାଣ ରିପାରେସନ କମିସନଙ୍କ ଦ୍ୱାରା ଧାର୍ଯ୍ୟ ହେବା ପୂର୍ବରୁ ମିତ୍ରପକ୍ଷକୁ ଅବିଲମ୍ବେ କ୍ଷତିପୂରଣ ବାବଦ ଏକଶହ କୋଟି ପାଉଣ୍ଡ ଦେବାପାଇଁ ଜର୍ମାନୀକୁ ନିର୍ଦ୍ଦେଶ ଦିଆଯାଇଥିଲା ।

ବାସ୍ତବରେ ଏହି ସନ୍ଧି ଜର୍ମାନୀକୁ ରାଜନୈତିକ, ସାମରିକ ଓ ବ୍ୟାବସାୟିକ ତଥା ଅର୍ଥନୈତିକ ଦୃଷ୍ଟିରୁ ପଙ୍ଗୁ କରିବା ସକାଶେ ଉଦ୍ଦିଷ୍ଟ ଥିଲା । ଏହି ସନ୍ଧି ଫଳରେ ଜର୍ମାନୀ କେବଳ ଇଉରୋପରେ ୨୫ ହଜାର ବର୍ଗମାଇଲ ଅଞ୍ଚଳ ସହିତ ୬୦ ଲକ୍ଷ ଲୋକଙ୍କୁ ହରାଇଲା । ଉପନିବେଶଗୁଡ଼ିକର ପରିସର ଆଲୋଚନା କଲେ ଆଉ ଏକ ଲକ୍ଷ ବର୍ଗମାଇଲ ଅଞ୍ଚଳ ଏବଂ ଏକ କୋଟି କୋଡ଼ିଏ ଲକ୍ଷ ଲୋକ ସେ ହରାଇଲା ବୋଲି କୁହାଯାଇପାରେ । ତାର ଖଣିଜ ସମ୍ପଦର ଶତକଡ଼ା ୬୦ ଭାଗ ଲୌହ, ୪୦ ଭାଗ କୋଇଲା ମିତ୍ରପକ୍ଷ ନେବାରୁ ଶିଳ୍ପବିକାଶ ବାଧାପ୍ରାପ୍ତ ହେଲା । ଜର୍ମାନୀର ରେଲପଥ ମିତ୍ରପକ୍ଷ ରାଷ୍ଟ୍ରମାନଙ୍କର ବ୍ୟବସାୟ ପାଇଁ ବ୍ୟବହୃତ ହୋଇପାରିବାର ସ୍ଥିରୀକୃତ ହେଲା । ତା'ଛଡ଼ା ଜର୍ମାନୀ ତାହାର ଉପନିବେଶଗୁଡ଼ିକ ହରାଇବା ଫଳରେ ସେ ସେଠାରୁ ପାଉଥିବା ତାହାର ସମସ୍ତ ରବର, ଶୁଖିଲା ନଡ଼ିଆ ଶସ (copra) ଏବଂ ଅନ୍ୟ କେତେକ ପଦାର୍ଥ ମଧ୍ୟ ହରାଇଥିଲା ।

ଏହିସବୁ ଥିଲା ଭର୍ସାଇଲ ସନ୍ଧିର ପ୍ରଧାନ ସର୍ତ୍ତ । ୧୯୧୮ ମସିହାର ବ୍ରେଷ୍ଟଲିଟଭସ୍କ ସନ୍ଧି ଦୃଷ୍ଟିରୁ ବିଚାର କଲେ ମନେହେବ ଯେ ଜର୍ମାନୀ ପ୍ରଥମ ବିଶ୍ୱଯୁଦ୍ଧରେ ବିଜୟୀ ହୋଇଥିଲେ ଭର୍ସାଇଲ ସନ୍ଧି ଅପେକ୍ଷା ଅଧିକ କଠୋର ସର୍ତ୍ତମାନ ମିତ୍ରଶକ୍ତିମାନଙ୍କ ଉପରେ ଲଦିଦେଇଥାନ୍ତା । ଅବଶ୍ୟ ପୂର୍ବେ ଏହିପରି ସନ୍ଧି ଅଧିକାଂଶ କ୍ଷେତ୍ରରେ ବିଜୟୀମାନଙ୍କଦ୍ୱାରା ବିଜିତମାନଙ୍କ ଉପରେ ଲଦିଦିଆଯାଉଥିଲା; କାରଣ ସେପରି କରିବାପାଇଁ ସେମାନଙ୍କର ଦୃଢ଼ତା, ଶକ୍ତି ଏବଂ ସାମର୍ଥ୍ୟ ଥିଲା । ପ୍ରକୃତିରେ ଯେତେବେଳେ ଲୋକମାନଙ୍କର କାର୍ଯ୍ୟକୁ ଏତେ ପରୀକ୍ଷା-ନିରୀକ୍ଷା କରାଯାଉ ନଥିଲେ ମଧ୍ୟ ସେମାନେ ଯେଉଁ ମାନବିକତାର ପରିଚୟ ଦେଇଥିଲେ, ଏ ଯୁଗରେ ସବୁ ବିଷୟ ପୁଙ୍ଖାନୁପୁଙ୍ଖ ପରୀକ୍ଷା କରାଗଲେ ମଧ୍ୟ ମିତ୍ରଶକ୍ତିମାନେ ତାକୁ ଉପେକ୍ଷା କରି ଯେଉଁ କଠୋର ସର୍ତ୍ତନିବିଷ୍ଟ ସନ୍ଧି ଜର୍ମାନୀକୁ ଗ୍ରହଣ କରିବାକୁ ବାଧ୍ୟ କଲେ, ତାହା ସେମାନଙ୍କର ମାନବୀୟ ଗୁଣରେ ପରିଚୟ ଦେଇନଥିଲା ।

ଏହି ସନ୍ଧିକୁ ବିଭିନ୍ନ ଦୃଷ୍ଟିକୋଣରୁ ସମାଲୋଚନା କରାଯାଇପାରେ । ଭର୍ସାଇଲ ସନ୍ଧି ନିରପେକ୍ଷତା ଓ ନ୍ୟାୟ ଏହି ସାଧାରଣ ନୀତିର ବିରୋଧ କରିଥିଲା । ପାରସ୍ପରିକତାକୁ ସମ୍ମାନ ନ ଦେଖାଇ ଜର୍ମାନୀଠାରୁ ଆର୍ଥନୀତିକ ସୁବିଧାଗୁଡ଼ିକ ବଳପୂର୍ବକ ଗ୍ରହଣ କରାଗଲା । ପୂର୍ବତନ ଜର୍ମାନ ଉପନିବେଶଗୁଡ଼ିକରେ ଜର୍ମାନ ଶାସନର ଦୋଷ-ଦୁର୍ବଳତା ଦେଖାଇ ମିତ୍ରଶକ୍ତିମାନେ ସେମାନଙ୍କର ସିଦ୍ଧାନ୍ତ ଅନୁସାରେ ଏକ ନୂତନ ଓ ସୁଶିକ୍ଷିତ ଶାସନ ଅଧୀନରେ ସେଗୁଡ଼ିକ ପରିଚାଳିତ ହେବାର ବ୍ୟବସ୍ଥା କଲେ; କିନ୍ତୁ ବିଜୟୀ ଶକ୍ତିମାନେ ସେମାନଙ୍କ ଅଧୀନରେ ଥିବା ଉପନିବେଶଗୁଡ଼ିକର ସୁଶାସନ ପାଇଁ ସେପରି କୌଣସି ଦାୟିତ୍ୱ ନେଇନଥିଲେ । ବିଭିନ୍ନ ଜାତି ପାଇଁ ଯେଉଁ ଆତ୍ମନିୟନ୍ତ୍ରଣ ନୀତି ଗ୍ରହଣ କରାଯାଇଥିଲା ତଦନୁସାରେ ପୋଲ, ଆଲସେସିଏନ୍ ଏବଂ ଅନ୍ୟ କେତେକଙ୍କର ମୁକ୍ତି ନ୍ୟାୟସଙ୍ଗତ ବୋଲି ଧରାଗଲା । କିନ୍ତୁ ଯେତେବେଳେ ଜର୍ମାନ ଅଷ୍ଟ୍ରିଆକୁ ଜର୍ମାନ ସାଧାରଣତନ୍ତ୍ରର ଏକ ଅଂଶ ହେବାପାଇଁ ଅନୁମତି ଦେବା ପ୍ରଶ୍ନ ଉଠିଲା, ସେତେବେଳେ

ତାହା ଅଗ୍ରାହ୍ୟ କରିଦିଆଗଲା । ଉଇଲସନଙ୍କର ଚଉଦ ଦଫା-ସମ୍ବଳିତ ଘୋଷଣାପତ୍ରରେ ପରିଷ୍କାର ନିର୍ଦ୍ଦିଷ୍ଟ ଜବାବ ଦିଆଯାଇଥିଲା ଯେ ରାଷ୍ଟ୍ରୀୟ ସୁରକ୍ଷା ପାଇଁ ଯେତେ ଅଳ୍ପ ପରିମାଣରେ ଅସ୍ତ୍ରଶସ୍ତ୍ର ଆବଶ୍ୟକ ହେବ, ଜାତୀୟ ଅସ୍ତ୍ରଶସ୍ତ୍ର ସେହି ପରିମାଣକୁ ହ୍ରାସ କରାଯିବ । ଏକଥା ସ୍ପଷ୍ଟଭାବରେ କୁହାଯାଇପାରେ ଯେ, ଉପଲବ୍ଧି କଲାଭଳି ସେଦିଗରେ କୌଣସି ଅଗ୍ରଗତି ବିଜୟୀ ଶକ୍ତିମାନଙ୍କଦ୍ୱାରା ହୋଇନଥିଲା । ତେଣୁ ସେମାନଙ୍କର ଆନ୍ତରିକତା ବିଷୟରେ ଜର୍ମାନୀ ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଥିଲା । ଯଦି ଜର୍ମାନୀ ପ୍ରକୃତରେ ବୁଝିଥିଲା ଯେ ଉଇଲ୍‌ସନ୍‌ଙ୍କର ଚଉଦ ଦଫା-ସମ୍ବଳିତ ଘୋଷଣାପତ୍ର ଉପରେ ଆଧାରିତ ସନ୍ଧି ସେ ଗ୍ରହଣ କରିଛି, ତାହାହେଲେ ତା'ପ୍ରତି ବିଶ୍ୱାସଘାତକତା କରାଯାଇଛି ବୋଲି ସେ ମନେକରିବା ଅତି ସ୍ୱାଭାବିକ ।

କିନ୍ତୁ ଭର୍ସାଇଲ ସନ୍ଧିର ନୈତିକ ତ୍ରୁଟିଗୁଡ଼ିକ (Moral defects) ବ୍ୟାବହାରିକ ତ୍ରୁଟିଗୁଡ଼ିକ (Practical defects) ଅପେକ୍ଷା ଅଧିକ ସୁସ୍ପଷ୍ଟ ହୋଇନଥିଲା । ଜର୍ମାନୀ ପରି ଏକ ମହାନ ଜାତି ନିରସ୍ତ୍ରୀକରଣ ଏବଂ ଅନ୍ୟାନ୍ୟ ବିଷୟରେ ପକ୍ଷପାତ ବ୍ୟବହାର ମୁଣ୍ଡପାତି ଅନିର୍ଦ୍ଦିଷ୍ଟ କାଳପାଇଁ ସହ୍ୟ କରିପାରିବା ସମ୍ଭବ ନଥିଲା । ଯଦି ଧରିନିଆଯାଏ ଯେ ଉପନିବେଶଗୁଡ଼ିକ ସେମାନଙ୍କର ଅଧିକାରୀମାନଙ୍କ ପାଇଁ ମୂଲ୍ୟବାନ୍, ତାହାହେଲେ ଜର୍ମାନୀ ପରି ଏକ ମହାନ୍ ଜାତିକୁ ସେ ସୁଯୋଗରୁ ବଞ୍ଚିତ କରିବା ଯୁକ୍ତିଯୁକ୍ତ ନୁହେଁ । ତା'ଛଡ଼ା ପୋଲଣ୍ଡକୁ ଜର୍ମାନୀର କେତେକ ଅଞ୍ଚଳ ହସ୍ତାନ୍ତରିତ କରି ଜର୍ମାନୀକୁ ଦୁଇ ଭାଗରେ ବିଭକ୍ତ କରିବା ଫଳରେ ତାକୁ ଯେଉଁ ଆଘାତ କରାଗଲା, ତାକୁ ସେ କଦାପି ଭୁଲିବ ନାହିଁ; ତେଣୁ ସେ ତାହାର ଅବସ୍ଥାକୁ ସୁଧାରିବାପାଇଁ ଆଉ ଏକ ଯୁଦ୍ଧ ପ୍ରତ୍ୟାଶା କରିବା ସ୍ୱାଭାବିକ । ବିଭିନ୍ନ ସର୍ତ୍ତଦ୍ୱାରା ଜର୍ମାନୀର ପ୍ରାକୃତିକ ସମ୍ପଦକୁ ଅତିମାତ୍ରାରେ କମାଇଦେଲା-ପରେ ତା'ଠାରୁ ବହୁପରିମାଣର କ୍ଷତିପୂରଣ ଫେରାଇକରିବା ଅସମ୍ଭବ ମନେହେଲା । ଏହି ସମ୍ପର୍କରେ ଜଣେ ଐତିହାସିକ କହିଥିଲେ, "ଜଣେ ଗୋଟିଏ ରାଜହଂସୀକୁ ଅନାହାରରେ ରଖି ତା'ଠାରୁ ସ୍ୱର୍ଣ୍ଣୋଜ୍ଜ୍ୱଳ ଅଣ୍ଡା ପାଇବାକୁ ଆଶାକରିବା ଉଚିତ ନୁହେଁ ।" ("One can not-starve a goose and expect it to lay golden eggs.") ଅର୍ଥାତ୍ ଅନାହାରରେ ରଖାଯାଇଥିବା ରାଜହଂସୀଠାରୁ ସ୍ୱର୍ଣ୍ଣୋଜ୍ଜ୍ୱଳ ଅଣ୍ଡା ଆଶାକରିବା ଯେପରି ଅସଙ୍ଗତ, ଜର୍ମାନୀଠାରୁ ତାର ଅର୍ଦ୍ଧେକ ଖଣିଜ ସମ୍ପଦ, ବିସ୍ତୃତ ଅଞ୍ଚଳ ଏବଂ ତାହାର ସମସ୍ତ ଉପନିବେଶ ଆଦି ଛଡ଼ାଇନେଲା ପରେ ତା'ଠାରୁ ବହୁ ପରିମାଣର କ୍ଷତିପୂରଣ ଆଶାକରିବା ସେହିପରି ଅସଙ୍ଗତ ।

ତା'ଛଡ଼ା ଭର୍ସାଇଲ ସନ୍ଧି ଥିଲା ଉଗ୍ର ରାଷ୍ଟ୍ରୀୟତା ବା ଅତିରଞ୍ଜିତ ଜାତୀୟ ସ୍ୱାର୍ଥର ଫଳ । ପ୍ରଥମ ବିଶ୍ୱଯୁଦ୍ଧର (ଜର୍ମାନୀର ଶକ୍ତି ବିଷୟରେ) ତିକ୍ତ ଅନୁଭୂତି ଏବଂ କେତେକ ପରିମାଣରେ ଜର୍ମାନୀର ପୁନର୍ଜାଗରଣ ପ୍ରତି ଭୟ, ଏହି ଉଗ୍ର ରାଷ୍ଟ୍ରୀୟତାକୁ ଉତ୍ସାହିତ କରିଥିଲା । ତେଣୁ ମିତ୍ରରାଷ୍ଟ୍ରମାନେ ଜର୍ମାନୀକୁ ସବୁଦିନ ପାଇଁ ଏପରି ଦୁର୍ବଳ କରି ରଖିବାକୁ-

ପ୍ରବୃତ୍ତି ଥିଲେ ଯେ ଭବିଷ୍ୟତରେ ତାର ସେପରି ଆଉ ଏକ ଯୁଦ୍ଧ ସୃଷ୍ଟି କରିବା ପାଇଁ ଶକ୍ତି ଓ ସାମର୍ଥ୍ୟ ନ ଥିବ । ପ୍ରକୃତରେ ଏହି ସନ୍ଧି ଜର୍ମାନୀକୁ ବୃହତ୍ତ୍ ଶକ୍ତିର ଆସନରୁ ବହୁତଳକୁ ଖସାଇଦେଇଥିଲା ଏବଂ ତା ପ୍ରତି ଯେଉଁ ନିର୍ମମ ବ୍ୟବହାର କରାଯାଇଥିଲା, ସେପରି ବ୍ୟବହାର ସେ କେବେ ପାଇନଥିଲା । ଭର୍ସାଇଲ ସନ୍ଧି 'ଲୁଣ୍ଠିତ ଦ୍ରବ୍ୟମାନ ବିଜେତା-ମାନଙ୍କର ଏବଂ ମିତ୍ରଶକ୍ତିମାନେ ଅନନ୍ୟ ବିଜେତା'—ଏହି ନୀତି ଉପରେ ପ୍ରତିଷ୍ଠିତ । ତେଣୁ ଜର୍ମାନୀକୁ ପରାସ୍ତ କଲାପରେ ମିତ୍ରଶକ୍ତିମାନେ ଜର୍ମାନୀଠାରୁ ତାର କେତେକ ଅଞ୍ଚଳ, ଉପନିବେଶମାନ, ଖଣିଜ ସମ୍ପଦ ପ୍ରଭୃତି ଲୁଟିନେଇଥିଲେ । ଜର୍ମାନୀ ଉପରେ କ୍ଷତିପୂରଣ ବାବଦରେ ବିରାଟ ଅର୍ଥବୋଝ ଲଦିଦେଇଥିଲେ । ଏହି ସମ୍ପର୍କରେ ଲର୍ଡ଼୍ ଜର୍ଜଙ୍କ ଉକ୍ତିରୁ ମିତ୍ରଶକ୍ତିମାନଙ୍କର ମନୋଭାବରେ ସୂଚନା ମିଳେ । ପ୍ରସିଦ୍ଧ ଖାକି ନିର୍ବାଚନ ଜିତିବାପାଇଁ ତାଙ୍କର ସ୍ଲୋଗାନ ଥିଲା, "ଆମ୍ଭେମାନେ କାଇଜରଙ୍କୁ ଫାଶୀ ଦେବୁ ଏବଂ ଜର୍ମାନୀଠାରୁ କଡ଼ା-କ୍ରାନ୍ତି ହିସାବ କରି ନେବୁ ।" ପ୍ରକୃତରେ ଭର୍ସାଇଲ ସନ୍ଧିଦ୍ୱାରା ମିତ୍ରଶକ୍ତିମାନେ ଜର୍ମାନୀକୁ ଦଣ୍ଡଦେବା ସଙ୍ଗେ ସଙ୍ଗେ ତାକୁ ନିରସ୍ତ୍ର ଏବଂ ଅପମାନିତ କରିଥିଲେ । ଅବଶ୍ୟ ଯେଉଁ ଜର୍ମାନ ଜାତି ଗର୍ବରେ ଫାଟି ପଡ଼ୁଥିଲା ଏବଂ ସେମାନଙ୍କର ସାମରିକ ମୁଖ୍ୟମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲା, ତାହା ପ୍ରତି ସହାନୁଭୂତିଶୀଳ ହେବାର ବିଶେଷ କିଛି କାରଣ ନଥିଲେ ମଧ୍ୟ ବିଶ୍ୱର ଭବିଷ୍ୟତ ହିତଦୃଷ୍ଟିରୁ ମିତ୍ରଶକ୍ତିଗୁଡ଼ିକ ଏବଂ ସେମାନଙ୍କ ଦେଶର ଜନମତ ତା' ପ୍ରତି ଅଧିକ ଦୟାପରାୟଣ ଏବଂ କ୍ଷମାଶୀଳ ହେବା ଉଚିତ ଥିଲା । ମିତ୍ରଶକ୍ତିମାନେ ସେପରି ନ ହେବା ଫଳରେ ସେମାନେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ ପଥ ପରିଷ୍କାର କରିଦେଇଥିଲେ । କାରଣ ଜର୍ମାନ ଜାତି ପକ୍ଷରେ ଏହି ଘୋର ଅପମାନ ସହ୍ୟକରିବା ସମ୍ଭବ ନୁହେଁ । ସୁଯୋଗ ପାଇଲେ ଜର୍ମାନମାନେ ଏହି ଅପମାନର ପ୍ରତିଶୋଧ ନେବାକୁ ଦ୍ୱିଧା ବୋଧ କରିବେ ନାହିଁ ବୋଲି ପୃଥିବୀର ବିଭିନ୍ନ ଦେଶର ଲୋକମାନଙ୍କର ଦୃଢ଼ ଧାରଣା ହୋଇଥିଲା । ଯଥାର୍ଥରେ କୁହାଯାଇଛି ଯେ "ଭର୍ସାଇଲ ସନ୍ଧି ଅନ୍ୟ ଏକ ଯୁଦ୍ଧର ବୀଜ ଧାରଣ କରିଥିଲା ।" ("The Treaty of Versailles held the germs of another war.")

ଭର୍ସାଇଲ ସନ୍ଧି ବିଜେତାମାନଙ୍କଦ୍ୱାରା ବିଜିତମାନଙ୍କ (ଜର୍ମାନମାନଙ୍କ) ଉପରେ ଜୋରଜବରଦସ୍ତି ଲଦିଦିଆଯାଇଥିଲା । ଏହାକୁ ଏକ 'ନିର୍ଦ୍ଦେଶିତ ସନ୍ଧି' (dictated peace) ବୋଲି ଅଭିହିତ କରାହୋଇଛି । ଏହା ଦିଆନିଆ ( give and take ) ଭିତ୍ତିରେ ବିଜେତା ଓ ବିଜିତମାନଙ୍କ ମଧ୍ୟରେ ଆଲୋଚନା କରାଯାଇ ସ୍ୱାକ୍ଷରିତ ହୋଇ ନଥିଲା । ଯୁଦ୍ଧର ଅବସାନ ଘଟାଉଥିବା ପ୍ରାୟ ପ୍ରତ୍ୟେକ ସନ୍ଧିକୁ ଅନ୍ତତଃ ଗୋଟିଏ ଅର୍ଥରେ 'ନିର୍ଦ୍ଦେଶିତ ସନ୍ଧି' କୁହାଯାଇପାରେ । କାରଣ ଏକ ବିଜିତ ଜାତି ପରାଜୟର ପରିଣାମକୁ କ୍ୱଚିତ୍ ସ୍ୱତଃପ୍ରବୃତ୍ତ ହୋଇ ଗ୍ରହଣ କରିନଥାଏ । କିନ୍ତୁ ଭର୍ସାଇଲ ସନ୍ଧିରେ ନିର୍ଦ୍ଦେଶର ମାତ୍ରା ଆଧୁନିକ ଯୁଗର ସନ୍ଧିଗୁଡ଼ିକ ଅପେକ୍ଷା ଅଧିକ ସ୍ପଷ୍ଟ ଥିଲା । ବାସ୍ତବରେ

ଜର୍ମାନ ପ୍ରତିନିଧିମାନଙ୍କୁ ଭର୍ସାଇଲକୁ ଡକରା ଯାଇ ସେମାନଙ୍କୁ ସନ୍ଧି-ଚଠା ଦିଆଯାଇଥିଲା ଏବଂ ଜର୍ମାନ ସରକାରଙ୍କର ତାହା ବିଷୟରେ ଯାହା କିଛି ମନ୍ତବ୍ୟ ଦେବାର ଥିଲା ତାହା ଲିଖିତ ଆକାରରେ ତିନି ସପ୍ତାହ ମଧ୍ୟରେ ଦେବାପାଇଁ ଅନୁମତି ଦିଆଯାଇଥିଲା । ସେହି ସନ୍ଧିଚଠାରେ ଥିବା ସର୍ତ୍ତଗୁଡ଼ିକ ବିଷୟରେ ଜର୍ମାନମାନଙ୍କର ଯଥେଷ୍ଟ ପରିମାଣର ଆପତ୍ତି ଥିଲା ଏବଂ ଜର୍ମାନ ସରକାର ସାବଧାନତା ସହିତ ସୂଚନା ଦେଇଥିଲେ ଯେ ଉଇଲସନଙ୍କ ଚଉଦ ଦଫା-ସମ୍ବଳିତ ଘୋଷଣାପତ୍ର ସଙ୍ଗେ ସନ୍ଧିର ସର୍ତ୍ତଗୁଡ଼ିକ ମେଳ ଖାଉନାହିଁ । ଏହି ସନ୍ଧି ଜର୍ମାନୀରେ ବିକ୍ଷୋଭର ଝଡ଼ ସୃଷ୍ଟି କରିଥିଲା । ମିତ୍ରଶକ୍ତିମାନେ ଜର୍ମାନ ସରକାରଙ୍କ ଆପତ୍ତିଗୁଡ଼ିକ ବିଚାର କରି ସାମାନ୍ୟ ପରିବର୍ତ୍ତନ କଲାପରେ ସଂଶୋଧିତ ଚଠା ଜର୍ମାନ ପ୍ରତିନିଧିମାନଙ୍କୁ ଦିଆଯାଇଥିଲା ଏବଂ ସେମାନଙ୍କୁ ଧମକ ଦିଆଯାଇଥିଲା ଯେ ସନ୍ଧି-ଚଠା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଗ୍ରହଣ କରା ନ ଗଲେ ଜର୍ମାନୀ ଉପରେ ଆକ୍ରମଣ କରାଯିବ । ଲଏଡ୍ ଜର୍ଜ ସେମାନଙ୍କୁ କହିଲେ, "ଏହି ସବୁ ସର୍ତ୍ତ ଯୁଦ୍ଧରେ ନିହତ ବୀରମାନଙ୍କର ରକ୍ତରେ ଲେଖାଯାଇଛି···ଆମ୍ଭେମାନେ ଦେଖିବୁ ଯେ ଯେଉଁ ଜାତି ଏହା (ପ୍ରଥମ ବିଶ୍ୱଯୁଦ୍ଧ)କୁ ଜବରଦସ୍ତି ଲଦିଦେଇଛି, ସେ ପୁନର୍ବାର ସେପରି କରିବାପାଇଁ କଦାପି ଅବସ୍ଥାରେ ନ ଥିବ । ଜର୍ମାନମାନେ କହୁଛନ୍ତି, ସେମାନେ ସ୍ୱାକ୍ଷର କରିବେ ନାହିଁ । ସେମାନଙ୍କର ସମ୍ବାଦପତ୍ରଗୁଡ଼ିକ କହୁଛି, ସେମାନେ ସ୍ୱାକ୍ଷର କରିବେ ନାହିଁ । ରାଜନୀତିଜ୍ଞ ସେହି କଥା କହୁଛନ୍ତି । ଆମ୍ଭେମାନେ କହୁଛୁ, 'ଭଦ୍ର ମହୋଦୟଗଣ, ଆପଣମାନଙ୍କୁ ସ୍ୱାକ୍ଷର କରିବାକୁ ହେବ । ଯଦି ଆପଣମାନେ ଭର୍ସାଇଲରେ ତାହା ନ କରନ୍ତି, ଆପଣମାନଙ୍କୁ ବର୍ଲିନରେ ତାହା କରିବାକୁ ପଡ଼ିବ ।" (Lloyd George said, "These terms are written in the blood of fallen heroes.···We must see that the people who inflicted this (war) shall never be in a position to do so again. The Germans say they will not sign. Their news papers say they will not sign. The politicians say the same. We say, 'Gentlemen, you must sign. If you don't do so in Versailles you shall do so in Berlin.") ଜର୍ମାନମାନେ ଏହିପରି ଏକ ଆତ୍ମସମ୍ମାନରହିତ ଆତ୍ମସମର୍ପଣ କରିବାକୁ କୁଣ୍ଠାବୋଧ କରିଥିଲେ । ତତ୍କାଳୀନ ଜର୍ମାନ ସରକାର ଇସ୍ତଫା ଦାଖଲ କଲେ । ପ୍ୟାରିସ କଂଗ୍ରେସ ତରଫରୁ କୁହାଯାଇଥିଲା ଯେ, ଜର୍ମାନ ସରକାର ସନ୍ଧି ଗ୍ରହଣ ନ କଲେ ଜର୍ମାନୀ ଉପରେ ନିଶ୍ଚୟ ଆକ୍ରମଣ ହେବ । ଜର୍ମାନ ଜନତାଙ୍କର ପ୍ରତିରୋଧ ସତ୍ତ୍ୱେ ବହୁ ଜର୍ମାନ ପୁନର୍ବାର ଯୁଦ୍ଧରେ ବ୍ୟାପୃତ ହୋଇ ବିପଦ ବରଣ କରିବାକୁ ଚାହୁଁ ନ ଥିବାରୁ ନୂତନ ମନ୍ତ୍ରିମଣ୍ଡଳ ଗଢ଼ାଗଲା ଏବଂ ସେମାନେ ଜର୍ମାନୀରେ ଶାନ୍ତି ସ୍ଥାପନକରିବା ଉଦ୍ଦେଶ୍ୟରେ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ । ନୂତନ ମନ୍ତ୍ରିମଣ୍ଡଳର ଦୁଇଜଣ ପ୍ରତିନିଧି ଭର୍ସାଇଲ ଯାଇ ୧୯୧୯ ମସିହା ଜୁନ ୨୮ ତାରିଖ ଦିନ ସନ୍ଧି ସ୍ୱାକ୍ଷର କରିଥିଲେ । ମିତ୍ରଶକ୍ତିମାନେ ଜର୍ମାନୀ ଉପରେ

ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଅଠଚାଳିଶ ବର୍ଷ ପୂର୍ବେ ୧୮୭୧ ମସିହାରେ ଜର୍ମାନୀ ଯେଉଁ ଭର୍ସାଇଲ ରାଜପ୍ରାସାଦର ଦର୍ପଣ କୋଠରି (Hall of Mirrors)ରେ ଫ୍ରାନ୍ସକୁ ଅପମାନ ଦେବାପାଇଁ ବିଜୟ-ଉତ୍ସବ ପାଳନ କରିଥିଲା ଏବଂ ଫ୍ରାନ୍ସକୁ ଆଲସେସ୍, ଲୋରେଇନ ହସ୍ତାନ୍ତରିତ କରିବାଲାଗି ବାଧ୍ୟ କରିଥିଲା, ଠିକ୍ ସେହି ରାଜପ୍ରାସାଦରେ ଏବଂ ସେହି କୋଠରିରେ ମିତ୍ରଶକ୍ତିମାନେ ଜର୍ମାନୀକୁ ଅପମାନ ଦେବା ଉଦ୍ଦେଶ୍ୟରେ ଭର୍ସାଇଲ ସନ୍ଧି ସ୍ୱାକ୍ଷର ଉତ୍ସବ ପାଳନ କରିଥିଲେ ଏବଂ ଫ୍ରାନ୍ସକୁ ଆଲସେସ୍ ଲୋରେଇନ୍ ଫେରେଇ ଦେବାପାଇଁ ଜର୍ମାନୀକୁ ବାଧ୍ୟ କରିଥିଲେ ।

ବାସ୍ତବରେ ସନ୍ଧି-ଚୁକ୍ତି ହସ୍ତାନ୍ତର ଉତ୍ସବ ଏବଂ ସନ୍ଧି ସ୍ୱାକ୍ଷର ଉତ୍ସବ—ଏହି ଦୁଇଟିରେ ଜର୍ମାନ ପ୍ରତିନିଧିମାନଙ୍କ ପ୍ରତି ସାଧାରଣ ସୌଜନ୍ୟ ପ୍ରଦର୍ଶନ କରାଯାଇନଥିଲା । ଜର୍ମାନୀର ଦୁଇ ପ୍ରତିନିଧିଙ୍କୁ ସନ୍ଧି ସ୍ୱାକ୍ଷର ଉତ୍ସବରେ ମିତ୍ରଶକ୍ତିମାନଙ୍କର ପ୍ରତିନିଧିମାନଙ୍କ ସହିତ ଏକ ଟେବୁଲରେ ବସିବାପାଇଁ ଦିଆଯାଇ ନଥିଲା । ଅପରାଧୀମାନଙ୍କୁ ପ୍ରହରୀମାନେ କଚେରିର କାଠଗଡ଼ାକୁ ପରିଚାଳିତ କରି ଆଣିବା ଏବଂ ସେଠାରୁ ପୁଣି ନେଇଯିବା ଭଳି ଦୁଇ ଜର୍ମାନ ପ୍ରତିନିଧିଙ୍କୁ ପ୍ରହରୀମାନେ ଦର୍ପଣ-କୋଠରିକୁ ପରିଚାଳିତ କରି ଆଣୁଥିଲେ ଏବଂ ସେମାନଙ୍କର କାମ ସରିଲା ପରେ ସେଠାରୁ ନେଇଯାଉଥିଲେ । ଅପରାଧୀମାନଙ୍କୁ ବନ୍ଦୀଶାଳାରେ ରଖିଲାପରି ଜର୍ମାନ ପ୍ରତିନିଧିଙ୍କୁ କଣ୍ଟାତାର (barbed wire) ଘେରା ଥିବା କୋଠରିରେ ରଖାଯାଉଥିଲା । ତା'ଛଡ଼ା ସେମାନେ ସନ୍ଧି ସ୍ୱାକ୍ଷର କରିସାରି ରାଜପ୍ରାସାଦ ଛାଡ଼ି ଚାଲିଯିବାବେଳେ ପ୍ୟାରିସ୍‌ର ବିକ୍ଷୁବ୍ଧ ଜନତା ସେମାନଙ୍କୁ ଅବଜ୍ଞାସୂଚକ ଧ୍ୱନିକରି ସେମାନଙ୍କୁ ତଡ଼ିଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଉପରକୁ ଟେକା ପଥର ମଧ୍ୟ ଫିଙ୍ଗିଥିଲେ ।

ଏହି ଅଯଥା ଅପମାନ ଜର୍ମାନ ଜାତି ମନରେ ବିଶେଷ ଆଘାତ ଦେଇଥିଲା । ଜର୍ମାନମାନେ ଏହି ଅପମାନଜନକ ସନ୍ଧି ବିରୁଦ୍ଧରେ କିପରି କ୍ରୋଧ ପ୍ରକାଶ କରିଥିଲେ; ତାହା ନିମ୍ନୋକ୍ତ ଘଟଣା ଦୁଇଟିରୁ ଅନୁମାନ କରାଯାଇପାରେ । ପ୍ରଥମ ଘଟଣାଟି ହେଲା ଯୁଦ୍ଧବିରତି ସର୍ତ୍ତ ଅନୁସାରେ ସ୍କାପାଫ୍ଲୋରେ ଅଟକ ରଖାଯାଇଥିବା ଜର୍ମାନ ନୌବାହିନୀକୁ ଭର୍ସାଇଲ ସନ୍ଧି ସ୍ୱାକ୍ଷରର ଅବ୍ୟବହିତ ପୂର୍ବରୁ ରହସ୍ୟଜନକ ଭାବେ ବୁଡ଼ାଇ ଦିଆଯାଇଥିଲା । ଅନ୍ୟ ଘଟଣାଟି ହେଲା ଭର୍ସାଇଲ ସନ୍ଧି ଅନୁସାରେ ଫ୍ରାନ୍ସକୁ ପ୍ରତ୍ୟର୍ପଣ କରିବାକୁ ଥିବା (ତା'ଠାରୁ ୧୮୭୦ ମସିହାରେ ଅପହରଣ କରାଯାଇଥିବା) ପତାକାକୁ ବିକ୍ଷୁବ୍ଧ ଜନତାଦ୍ୱାରା ବର୍ଲିନରେ ପୋଡ଼ି ଧ୍ୱଂସ କରିଦିଆଯାଇଥିଲା । ଏଥିରେ କ୍ଲିମାନ୍ସୋ ଉତ୍ତେଜିତ ହୋଇ ଜର୍ମାନୀ ବିରୁଦ୍ଧରେ ରାଇନ୍ ନଦୀର ପୂର୍ବପଟ ଶିଳ୍ପାଞ୍ଚଳକୁ ଶାସ୍ତିମୂଳକ ଅଭିଯାନ ଚଳାଇବା ପାଇଁ ଦାବି କରିଥିଲେ; କିନ୍ତୁ ତାଙ୍କର ସହଯୋଗୀ ରାଷ୍ଟ୍ରମାନେ ତାହା କରିବାକୁ ରାଜି ହେଲେ ନାହିଁ । ଜର୍ମାନୀ ପରି ଏକ ଆତ୍ମାଭିମାନୀ ଜାତି ଏହି ଘୋର ଅପମାନକୁ ଚିରଦିନପାଇଁ କ'ଣ ନୀରବରେ ସହ୍ୟ କରିବ ? ଅସ୍ତ୍ରଶସ୍ତ୍ର କ୍ଷେତ୍ରରେ ବେଲ୍‌ଜିୟମ୍ ପରି ଏକ କ୍ଷୁଦ୍ର ରାଷ୍ଟ୍ରଠାରୁ ଜର୍ମାନୀକୁ ନ୍ୟୂନତର କରାଯିବାଦ୍ୱାରା ତାର ଆତ୍ମସମ୍ମାନ କ୍ଷୁଣ୍ଣ କରାଗଲା । ସନ୍ଧି ସ୍ୱାକ୍ଷର

କରିବାକୁ ଯାଇଥିବା ଜର୍ମାନ ପ୍ରତିନିଧିମାନେ ଦୃଢ଼ତାର ସହିତ କହିଥିଲେ ଯେ "ସେମାନଙ୍କ ପ୍ରତି ବଳପ୍ରୟୋଗ କରାଯିବାରୁ ସେମାନେ ସନ୍ଧି ସ୍ୱାକ୍ଷର କଲେ ଏବଂ ନ୍ୟାୟ ସେମାନଙ୍କ ପକ୍ଷରେ ଅଛି ।" ଏ କଥା ସ୍ପଷ୍ଟ ଯେ ଭର୍ସାଇଲ ସନ୍ଧି ସାମରିକ ବଳପ୍ରୟୋଗର ଧମକ ଫଳରେ ସ୍ୱାକ୍ଷରିତ ହୋଇଥିଲା । ଜର୍ମାନ ଜାତି ମନେକରିଥିଲା ଯେ ଭର୍ସାଇଲ୍ ସନ୍ଧି ସେମାନଙ୍କ ଉପରେ ଜବରଦସ୍ତି ଲଦିଦିଆଯାଇଥିବାରୁ ନୈତିକତା ଦୃଷ୍ଟିରୁ ତାହା ସେମାନେ ଗ୍ରହଣ କରିବାକୁ ବାଧ୍ୟ ନୁହନ୍ତି ।

ଭର୍ସାଇଲ ସନ୍ଧିରୁ ତେଣୁ ସହୃଦୟତା, ସହାନୁଭୂତି ଓ ଉଦାରତାର ପରିଚୟ ମିଳେନାହିଁ । ଏହା ବିଜୟୀ ରାଷ୍ଟ୍ରମାନଙ୍କର ସ୍ୱାର୍ଥଲୋଭ ଓ କର୍ତ୍ତୃତ୍ୱ ପ୍ରତିଷ୍ଠାର ଏକ ଦୃଷ୍ଟାନ୍ତ । ଭର୍ସାଇଲ ସନ୍ଧି ମିତ୍ରଶକ୍ତିମାନଙ୍କର ପ୍ରତିହିଂସା ମନୋଭାବର ମଧ୍ୟ ସ୍ପଷ୍ଟ ସୂଚନା ଦିଏ । ପରିସ୍ଥିତିର ଚାପରେ ଜର୍ମାନୀ ନୀରବରେ ସବୁ କିଛି ଅବିଚାର ଓ ଅନ୍ୟାୟ ନିଷ୍ପତ୍ତି ସାମୟିକ ଭାବରେ ସହ୍ୟ କରିନେଲା ସତ; କିନ୍ତୁ ସେହି ଦିନଠାରୁ ପ୍ରତିଶୋଧର ଚିନ୍ତା ଓ କଳ୍ପନା ଜର୍ମାନ ଜାତିକୁ ଜର୍ଜରିତ କଲା । ପ୍ରଥମ ବିଶ୍ୱଯୁଦ୍ଧ ଫଳରେ ଜର୍ମାନୀରେ ରାଜତନ୍ତ୍ର ଲୋପ ପାଇଲା ଏବଂ ସାଧାରଣତନ୍ତ୍ର ସରକାର ଗଢ଼ାଗଲା; କିନ୍ତୁ ମିତ୍ରଶକ୍ତିମାନେ ସେହି ସରକାରଙ୍କ ପ୍ରତି ସଦୟ ନହେବା ଏବଂ ଭର୍ସାଇଲ ସନ୍ଧି ବ୍ୟବସ୍ଥାରେ ଏବଂ ସେହି ସନ୍ଧି ସ୍ୱାକ୍ଷରିତ ହେବା ପରେ ମଧ୍ୟ ଜର୍ମାନ ସରକାରଙ୍କ ପ୍ରତି ବୈମାତୃକ ଭାବ ପୋଷଣ କରିବା ଫଳରେ ସାଧାରଣତନ୍ତ୍ରର ସ୍ଥିତି ଦୋହଲିଯାଇଥିଲା । ମିତ୍ରଶକ୍ତିମାନଙ୍କର ଜର୍ମାନୀ ପ୍ରତି ନିର୍ଦ୍ଦୟ ବ୍ୟବହାର ଯୋଗୁ ଜର୍ମାନମାନଙ୍କ ମନରେ ଅଶାନ୍ତି ଏବଂ ଅସନ୍ତୋଷ ଦେଖାଦେଇଥିଲା; ଫଳରେ ସମଗ୍ର ଜର୍ମାନୀରେ ଅସ୍ଥିରତା ପ୍ରକାଶ ପାଇଥିଲା । ଏହି ଅସ୍ଥିରତାର ସୁଯୋଗ ନେଇ ମାତ୍ର ଅଳ୍ପ କେତେବର୍ଷ ପରେ ଭର୍ସାଇଲ ସନ୍ଧି ସର୍ତ୍ତର ଅନ୍ୟାୟ ଏବଂ ଅବିଚାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ସେଠାରେ ନାଜିବାଦ ମୁଣ୍ଡ ଟେକି ଉଠିଲା ।

---

# ସଂସ୍ଥାଦ୍ୱାରା ପ୍ରକାଶିତ
# ଇତିହାସ ସମ୍ବନ୍ଧୀୟ ଅନ୍ୟାନ୍ୟ ପୁସ୍ତକ

ବି. ଏ.

୧ । ଓଡ଼ିଆଜାତିର ଇତିହାସ (୧ମ ଭାଗ)—
ଡକ୍ଟର ନବୀନ କୁମାର ସାହୁ ଟ ୧୫.୦୦

୨ । ଆଧୁନିକ ଭାରତ ଇତିହାସ—ଡକ୍ଟର ଯଜ୍ଞ କୁମାର ସାହୁ ଟ ୧୬.୦୦

୩ । ପ୍ରାଚୀନ ଭାରତ ଇତିହାସ—ଅଧ୍ୟାପକ ଜୟକୃଷ୍ଣ ସାମଲ ଟ ୧୩.୫୦

୪ । ପ୍ରାଚୀନ ରୋମ ଇତିହାସ—
ଅଧ୍ୟାପକ ପ୍ରଫୁଲ୍ଲ କୁମାର ପଟ୍ଟନାୟକ ଟ ୧୪.୫୦

୫ । ଆଧୁନିକ ଇତିହାସ ଚୀନ ଓ ଜାପାନ—
ଡକ୍ଟର ସଦାନନ୍ଦ ଚୌଧୁରୀ ଟ ୧୩.୦୦

୬ । ପ୍ରାଚୀନ ଗ୍ରୀସ୍ ଇତିହାସ—ଅଧ୍ୟାପକ ନିହାରକାନ୍ତ କର ଓ
ଅଧ୍ୟାପକ କରୁଣା ସାଗର ବେହେରା ଟ ୧୧.୨୫

୭ । ମହାରାଣୀ ଭିକ୍ଟୋରିଆ—ଅଧ୍ୟାପକ ବିଭୂତିଭୂଷଣ ମିଶ୍ର ଟ ୫.୦୦

୮ । ଆବ୍ରାହାମ୍ ଲିଙ୍କନ—ଡକ୍ଟର କୃଷ୍ଣଚନ୍ଦ୍ର ଜେନା ଟ ୬.୫୦

୯ । ନେପୋଲିଅନ—ଅଧ୍ୟାପକ ଅନନ୍ତ ଚରଣ ସାହୁ ଟ ୧୦.୦୦

୧୦ । ରଣଜିତ୍ ସିଂ—ଅଧ୍ୟାପକ ଏସ୍. ଏନ୍. ସିହ୍ନା ଟ ୬.୫୦

୧୧ । ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ—
ଡକ୍ଟର ଯଜ୍ଞ କୁମାର ସାହୁ ଟ ୫.୫୦

୧୨ । ଶିବାଜୀ—ଶ୍ରୀମତୀ ମନୋରମା ଦାସ ଟ ୪.୫୦

୧୩ । ହର୍ଷବର୍ଦ୍ଧନ—ଡକ୍ଟର ଯଜ୍ଞ କୁମାର ସାହୁ ଟ ୪.୫୦

୧୪ । ଶେରସାହା—ଡକ୍ଟର କୃଷ୍ଣ ଚନ୍ଦ୍ର ଜେନା ଟ ୫.୦୦

୧୫ । ପ୍ରଥମ ବିଶ୍ୱଯୁଦ୍ଧ—ଅଧ୍ୟାପକ ପି. କେ. ମିଶ୍ର ଟ ୪.୫୦

୧୬ । ଆଉରଙ୍ଗଜେବ—ଅଧ୍ୟାପକ ବି. କେ. ମହାପାତ୍ର ଟ ୩.୦୦

୧୭ । ଆକବର—ଅଧ୍ୟାପକ ଜେ. କେ. ଦ୍ୱିବେଦୀ ଟ ୩.୦୦

୧୮ । ପ୍ରଥମ ବାଜିରାଓ—ଡକ୍ଟର ବି. ସି. ରାୟ ଟ ୩.୫୦